ମାକ୍ସିମ୍ ଗର୍କି



# ଶିକ୍ଷାନବୀଶ୍

ମାକ୍ସିମ୍ ଗର୍କି

# ଶିକ୍ଷା ନବୀଶ୍

ଅନୁବାଦ :
ଅନନ୍ତ ପଟ୍ଟନାୟକ

ପ୍ରକାଶକ :
ନବଯୁଗ ଗ୍ରନ୍ଥାଳୟ
ବଜ୍ରକବାଟି ରୋଡ଼,
କଟକ-୭୫୩୦୦୧
ଅଗଷ୍ଟ, ୧୯୭୮

୧୯୭୮

ମୁଦ୍ରଣ :
ନବଯୁଗ ପ୍ରେସ
ପାଲିତପଡ଼ା, କଟକ-୭୫୩୦୦୨

ମୂଲ୍ୟ : ପନ୍ଦର ଟଙ୍କା

M. Gorky

# MY APPRENTICESHIP

*Translated by :*
**Ananta Patnaik**

*Published by :*
**Nabajuga Granthalaya**
*Bajrakabati Road,Cuttack*-753001

*1978*

*Printed by :*
**Nabajuga Press**
*Palitpara, Cuttack*-753002

*Price : Rs 15.00 only*

ହେଇ, ତେବେ ! ଏଇଠି ମୁଁ ! 'ନୂଆ ଶିଖାଳି' ଗୋଟାଏ—ବୋଲକରା 'ଟୋକା', ଫେଶନଆ କୋଭାଚନ୍ଦ ଦୋକାନରେ, ସହରର ଅସଲ ବଡ ରାସ୍ତା ମଝିରେ !

ମାଲିକଟି ମୋର, ଗୋଲଗାଲିଆ ଝୀଙ୍କିଟିଏ—ଶେଯାଳିଆ, ଫୁଲିଲା ଫୁଲିଲା ମୁହଁ, ହଳଦିଆସିଆ ଦାନ୍ତଗୁଡ଼ିକ, ଆଉ ଡଙ୍ଗାଡଳି ପାଣି ଭଳି କେମିତିକା ଅସନା ଅସନା ପାଣିରେ ଢଳଢଳ ଆଖିଦୁଇଟା ! ମତେ ଲାଗେ ବିଲକୁଲ ଅନ୍ଧ ସେ । ଏଇ କଥାଟାକୁ ଦୃଢ଼ କରି ପ୍ରମାଣ କରିବା ମତଲବ୍‌ରେ ମୁଁ ତାକୁ ଝଟେଇ ହୁଏ ଅନେକ ଥର ।

"ଏଃ, ଯେଉଁ କଦର୍ଯ୍ୟ ମୁହଁଟା ପେଚକଣ୍ଠା ଭଳି ! କେତେ, ମାଠିମୁଠି ମୋଡ଼ି ହେଉଚୁରେ ତାକୁ ।" ମାଲିକଟି ଥରଥର, ବେଶ୍ ଟାଣକରି ବଢେଇଦଏ ମତେ !

ସେଇ ଝାପସା ଝାପସା ଅନ୍ଧାରିଆ ଆଖିଯୋଡ଼ାକ ଯେ ମତେ ଦେଖିପକାଏ, ଭାବିଲାବେଳକୁ ମନଟା ମୋର ଘୃଣାରେ ବସେଇ ଉଠେ କେମିତି । ବିଶ୍ୱାସ ହୁଏ ନାହିଁ, ଆଖିହାଳକ ପ୍ରକୃତରେ ଦେଖିପାରେ ବୋଲି ମତେ ; ହୁଏତ ମାଲିକଟା ଖାଲି ଠଉରେଇ ହୁଏ, ତାକୁ ମୁହଁ ମୋଡ଼ୁଛି ମୁଁ ।

"କେତେଥର କହୁଚ, କହୁନ୍ଥି ତୋ'ବରକ୍ତିଆ ମୁହଁଟାକୁ ମୋଡ଼ିବୁ ନାହିଁ ଏମିତି !" ଆହୁରି ଧୀରେ ଧୀରେ ଜୋରଦେଇ କହେ ସେ । ବହଳିଆ ଓଠହାଳକ ତା'ର ଟିକିଏ ହେଲେ ହାଲଚାଲ ହୁଅନ୍ତା ଭଳି !

"ଏଃ, ବନ୍ଦ କର୍‌ରେ ହାଡ-କୁଣ୍ଡିଆ ! କୁଣ୍ଡେଇହେବୁ ନାହିଁ ଏମିତି !" ଶୁଖିଲା ଶୁଖିଲା ଝସ୍‌ଝସିଆ ଫସ୍‌ଫସ୍ ସ୍ୱରଟା ତା'ର ମୋ ପଛେ ପଛେ ସର୍‌ସର୍ ଗୁରୁଣ୍ଡି ଆସେ ଯେମିତି—"ଦେଖ୍, ସହରର ବଡ ରାସ୍ତା ମଝିରେ ଫାଷ୍ଟ କ୍ଲାସ ଦୋକାନରେ କାମ କରୁଚ, ଚାକରି କରୁଚୁ ତୁ ! ଟୋକାଟାଏ ତୁ ! ତୋର ଦୁଆରମୁହଁରେ ଛିଡ଼ା ହୋଇ ରହିବା କଥା, ଇସ୍ତ୍ରି ଦିଆ କପଡ଼ା ପରି, ଖମ୍ବ ପରି, କାଠ କ ପଥରଖମ୍ବ ପରି, ବୁଝିଲୁ !"

ଇସ୍ତିରିଆ କପଡ଼ା କ'ଣ, ମୋର ଟିକେ ଧାରଣା ଥାଆନ୍ତା ହେଲେ ! ଘଇଁଟାଯାକ ହାତରେ ତ କହୁଣୀଯାଏ ଖୁନ୍ଦି ହୋଇ ରହିଛି, ଦଲ ଦଲ ହେଉଛି ଝୁମୁକା ଝୁମୁକା କାଛୁଗୁଡ଼ାକ, ଲାଲ ଲାଲ କୁଣ୍ଡିଆ, କେଜାଣି କେତେ ! କୁଣ୍ଡେଇ ନ ହୋଇ ଥୟ ଧରନ୍ତୁ କେମିତି ! କାଛୁକୁଣ୍ଡିଆ ପୋକଗୁଡ଼ାକ ତ ଚମ ଭିତର କଣା କରି କୋରି କୋରି ଖାଇଯାଉଥାନ୍ତି ମତେ ନିର୍ଦ୍ଦୟ ଭାବରେ ।

"ହଇରେ ହେ ! ଘରେ କି କାମ କରୁଥିଲୁ ତୁ ?" ମୋ ହାତଦୁଇଟାକୁ ଅନେଇ ଅନେଇ ଥରେ ପଚାରିଲା ମାଲିକ ।

ବୁଲେଟ୍ ଭଳି ମୁଣ୍ଡଟା ତା'ରି, ସେଥିରେ ଠାଏଠାରେ ଲାଗିଯାଇ ନେସି ହୋଇଥାଏ ଧୂସରିଆ କିଆଁହିରି କହିରି ବାଳଗୁଡ଼ାକ ଯେମିତି । ଉତ୍ତର ଦେଲି ମାନେ ମୁଁ, ସେଇ୍ ମୁଣ୍ଡଟାକୁ ହଲେଇଦେଇ ମତେ କାଟିଲାଭଳି ସ୍ୱରରେ କହିଲା ସେ—

"ବାଡ଼ିତଟି ସଫା, ମଇଲା ଓଲାଓଲି ଏଃ..., ଭିକମାଗି ବାଠୁ ଖରାପ, ଚୋରି କରିବାଠୁ ଖରାପ !"

"କରିଚି, ଚୋରି ବି କରିଚି ।" ଖୋଲି କହିପକେଇଲି, ନିହାତି ଗର୍ବରେ ଯେ ନୁହେଁ, ନୁହେଁ !

ସେତିକି ଶୁଣି ବଲେଇ ନିଜ ପଙ୍ଖା ଉପରେ ନଇଁପଡ଼ିଲା ପରି ନିଜ ହାତ-ପାପୁଲି ଉପରକୁ ନଇଁ ପଡିଲା ମାଲିକ । ତୋଳା ଘଇଁଟା କାଢ଼ିପକାଇ କେମିତି ଗୋଟାଏ ଶୂନ୍ୟ ଆଖିରେ ବଙ୍କୀପଟା' କାଉଣ୍ଟର ଉପରେ ହାମୁଡ଼େଇ କହିଲା ଘୁଉ ଘୁଉ ହୋଇ :

"କଅଣ—କ-ଅ-ଣ ! କଅଣ କହିଲୁ ! ଚୋରି କରିଥିଲୁ ତୁ ?"

ବୁଝେଇଦେଲି କଅଣ ଚୋରି କରିଥିଲି, କେମିତି !

"ହଉ, ହଉ, ଗୁଡ୍ ସେକଥା, ଯାଃ ! ଏଠି ମୋ ଜୋତା, ଚଟି କି ଟଙ୍କାପଇସାରେ ହାତ ଦେଉ ଯଦି, ଦେଖ୍ ବୁଦ୍ଧି ନ ଫୁଟି ବୟସ ନ ହେବା ଆଗରୁ ବି ତତେ ଭର୍ତ୍ତି କରିଦେବି ନେଇ ଜେଲରେ !"

କଥାଗୁଡ଼ାକ କହିଲା ସେ ଶାନ୍ତ ଭାବରେ, କିନ୍ତୁ ଡରିଗଲି, ଶଙ୍କିଗଲି ମୁଁ... ଆଗ ଅପେକ୍ଷା ଆହୁରି ବି ରାଗ ଆସିଲା ମନରେ ତା' ପ୍ରତି !

ମାଲିକ ଛଡ଼ା ଦୋକାନରେ ଥାଆନ୍ତି ଆଉ ଦୁ' ଜଣ କର୍ମଚାରୀ—ମୋର ଗୋଟାଏ ଖୁଡ଼ୁତୁତାଦେଢ଼ତା ପୁଅ ଭାଇ ସାଶା, (ୟାକୋଭର ପୁଅ ସେ), ଆଉ ତା' ଉପରର ସହକାରୀ । ସତେ ଯେମିତି ରବାମରି ଚକ୍‌କଣିଆ ଦେହର, କହନହକଆ, ଭଲ ସ୍ୱାସ୍ଥ୍ୟର, ଲାଲ ରଙ୍ଗର ଲୋକଟା ; ଟୋକାଟାଏ । ସାଶା ପିନ୍ଧୁଥାଏ ଗ୍ରୁଡ ଖୋଲା କପରା ଫଙ୍କ କୋଟ । ତା' ତଳେ କାମିଜର ମଣ୍ଡିଦିଆ ବେକ ଆଉ ଗ୍ରୁଡ । ଗ୍ରେଟ ଅର୍ଣ୍ଣେପାରିଆ ତଉଲିଆ ଖଣ୍ଡେ ଗଳାରେ । ଏତେ ଗର୍ବରେ ଫାଟିପଡ଼ୁଥାଏ ଯେ, ତା' ଆଖିରେ ପଡ଼ୁନଥାଏ ମୁଁ ।

ମୋ ଅଜା ଯେଉଁଦିନ ମତେ ଆଣି ପହଞ୍ଚେଇଥିଲେ ମାଲିକ ପାଖରେ, ସାଶାକୁ ଡାକି କହିଥିଲେ—"ଦେଖ୍‌ରେ ଚଗଲଟାକୁ ଟିକେ କାମଦାମ ଶିଖେଇଦେବୁ ।" ସେହିଦିନଇ ଠିକ୍ ମୁହଁଟାକୁ ଗୁରୁଗମ୍ଭୀର କରି ତାଙ୍କୁ କହିଥିଲା ସାଶା—

"ଆଗ ତାକୁ ଶିଖିବାକୁ ହେବ ମତେ ମାନି ଚଳିବ କେମିତି ।"

ମୋ ମୁଣ୍ଡ ଉପରେ ହାତଟି ରଖି ହଲେଇଦେଇ ଆଦରରେ କହିଥିଲେ ଅଜା—"ମାନିବୁ ତାକୁ ବୁଝିଲୁ ! ବୟସରେ ଆଉ ପାହିଆରେ ବଡ଼ ସେ !"

ପ୍ରଭାବ ବିସ୍ତାରୀ ଭଙ୍ଗିରେ ପ୍ରତିପତ୍ତି ଦେଖାଇ ଡୋଳାଦିଇଟା ଗଡେଇ ଗଡ଼େଇ କହିଥିଲା ସାଶା :

"ଦେଖ, ମନେରଖ୍ ଅଜାଙ୍କ କଥା !"

ନିଜର ବଡ ପାହିଆ ଯୋଗୁଁ ପହିଲି ଦିନରୁ ଅତି ନିର୍ଦ୍ଦୟ ସୁଯୋଗ ନେବାକୁ ବାହାରିଲା ସେ ମୋ ଉପରେ ।

"ସେ ଡୋଳାକଡ଼ା ପଡାପକା ବନ୍ଦ କର···କ୍ୟାଶିରନ୍ ।" ତାକୁ ତାଗିଦ୍ କରିଦେଲା ମାଲିକ ।

"ନା—ନା—ମୁଁ···" ଉତ୍ତର ଦେଇଥିଲା ସାଶା, ମୁଣ୍ଡ ତଳକୁ କରି । ମାଲିକ କିନ୍ତୁ ଶେଷ କଲା ନାହିଁ ଧମକଦିଆ—

"ଖବରଦାର ! ଆଉ ଥୋଡି ଲମ୍ବେଇବୁନି ସେମିତି—ଗରାଖମାନେ ଭାବିବେ, ଗୋଟାଏ ଛେଳି ତୁ ।"

ବଡ ସହକାରୀ ଜଣକ ଅନୁଗୃହୀତ ହେଲା ଭଳି ହସିଲା କୃତକୃତ୍ୟ ହୋଇ, ଆଉ କୁଞ୍ଚିତ ଓଠକୁ ଲମ୍ବେଇଦେଲା ମାଲିକ । ସାଶା ସେତେବେଳକୁ [illegible]

ହୋଇ ଲାଜରେ ଲାଲ ପଡ଼ିଯାଉଥାଏ ଗୋଟିଏ ବୁଢ଼ୀ । ବନ୍ଧିବାନ୍ଧି ପଟା ତଳେ ମୁଣ୍ଡଟି ଗୁଞ୍ଜି ଦେଲା ବଡକଟାଏ ପର ବେକ ଭାଙ୍ଗି ଦେଇ ।

ଭାରି ଖରାପ ଲାଗୁଥାଏ ମତେ ସେମିତିକା କଥାବର୍ତ୍ତାଗୁଡ଼ାକ । ଏଇ ଲୋକ କେଇଟା ବେଳେବେଳେ ବ୍ୟବହାର କରୁଥାନ୍ତି ଅଦ୍ଭୁତ ଶବ୍ଦସବୁ । ମନେ ହେଉଥାଏ, ସେମାନେ ଯେମିତି କଥା କହୁଥାନ୍ତି ବିଦେଶୀ ଭାଷାରେ ।

ଲକ୍ଷ୍ୟ କରୁଥାଏ ମୁଁ—ମାଇପିଟିଏ ପଶିଆସିଲେ ଦୋକାନକୁ । ମାଲିକ ପକେଟରୁ ତରବରରେ ଯୁଡ଼ ଯୁଡ଼ୁ ହୋଇ ହାତ କାଢ଼ି ଆଗ ଧରନ୍ତନି ସାଉଁଳନ୍ତଏ ନିଶହାଲକୁ । ମୁହଁରେ ଅଠାରେ ଯେମିତି ଲଗେଇଦିଏ ସାକାରନ ହସ । ସେଇ ହସରେ ଭୁରୁଭୁରୁ ଫୁଟି ଉଠି ଚହଟିଯାଏ ଗାଲ ଦିଓଟିରେ—ତା'ର ଶୂନ୍ୟ ଆଖିର ଭାବ-ବ୍ୟଞ୍ଜକ ଭାଷାକୁ ଚଳେହେଲେ ବଦଳାଇ ନ ଦେଇ । ବଡ଼ ସହକାରୀ ଜଣକ ଝାଉଁଝୁଣ୍ଡି ହୋଇ ସଲଖେଇ ନଏ କହୁଣୀ ଦି'ଟା, ଦି'କଡ଼େ କଟି ଆସୁ କଙ୍କାଳକୁ କୁକୁର ଲାଙ୍ଗୁଡ଼ ଭଳି ଖୋସାମୋଦରେ ଲେଟିଯାଇ ଗୁପ୍ତେଇ ହୁଏ ହାତଦୁଇଟା, ଟିମା ଟିମା ଡୋଳା ଦୁଇଟାକୁ ଲୁଚେଇବା ଚେଷ୍ଟାରେ ମିଟ୍‌ମିଟ୍ କରେ ଆଖି । ଆଉ ମୁଁ ? ମୁଁ ଦୁଆରମୁହଁରେ ଅସ୍ଥିର ଭାବରେ କୁଣ୍ଡେଇ ହୁଏ, ମକଚ ଲାଗେ ହାତକୁ । ଛିଡ଼ା ହୋଇ ଦେଖୁଥାଏ ମୁଁ, ସେ କ ଆଡମ୍ବରରେ ବନ୍ଧି ବଟା ଲାଗି ପୂଜାପୂଜି ହୁଏବଟା !

ସହକାରୀ ଜଣକ ଗୋଟାଏ ଅଦ୍ଭୁତ ଭାବରେ ଆଙ୍ଗୁଳିଗୁଡ଼ାକ ମେଲେଇ ମେଲେଇଦିଏ, ଯେତେବେଳେ ସେ ଆଣୁ ମାଡ଼ି ବା ପାଣ୍ଠିଆ ପକାଇ ଆସି ବସିପଡ଼େ, ପାଦପାଖରେ ତା'ର ପାଦରେ ପରଖି ପରଖି ପିନ୍ଧେଇ ଦେଖିବାକୁ ଲାଗେ ଜୋତା ହଳକ । ସେତେବେଳେ ଥରଥର ହୁଏ ହାତ ଦୁଇଟା, ଛୁଏଁ ନ ଛୁଏଁ ମହିଳାର ଗୋଡ଼କୁ, କାଳେ ଯେଉଁଠି ଭାଙ୍ଗିଯିବ ଯେମିତି । ଅଥଚ, ସାଧାରଣରେ ସବୁବେଳେ ଯେଉଁ ଗୋଡ଼ରେ ହାତ ଦିଏ ସେ, ସେ ଗୋଡ଼ ଦି'ଟା ଥାଏ 'ଇହା' ମୋଟା— ଦିଶୁଥାଏ ବଙ୍କୁଲା ବେକରେ, ଉଗୁଡ଼ା ବୋତଲ ଭଳି ।.

ଥରେ ଦେଖିଟାକୁ ଜାବଜାବୁ କ୍ରି ଦେଲା ସଲସଲେଇ ଉଠିଲା ମାଇପିଟାଏ— ପାଦର ବୁଢ଼ାଆଙ୍ଗୁଠିକୁ ଟାଣିନେଇ ଚିପିଦେଇ କହିଲାଗିଲା—

"ଇଲୋ ମା ! କେମିତି ସଲସଲ କରୁଚ ମ !"

"ଏମିତି ଭଦ୍ରତାରେ ଦେଇ !'' ସଙ୍ଗେ ସଙ୍ଗେ ଓଲଟା ଉତ୍ତର ଦେଲା ଏବକ୍ୱାସ୍ଟି ।''

ମାଇପିଗୁଡ଼ାଙ୍କ ପାଖରେ ତା'ର ନସରପସର, ଯେରବୁଲି ଏତକ ରହସିଆ ଲାଗୁଥାଏ—ହସିପକାଇବା ଡରରେ ମୁହଁ ବୁଲେଇ ନେଉଥାଏ; କିନ୍ତୁ ପୁଣି ଫେରି ଫେରି ଅନେଇବା ଲୋଭଟାକୁ ରୋକିପାରୁ ନ ଥାଏ—ତା'ର ସ୍ବଭାବ ତାଙ୍କୁ ଏମିତି 'ହାସ୍ୟକର' ଥାଏ···! ମନେ ଲାଗୁଥାଏ, ଜୀବନରେ କେବେହେଲେ ମୁଁ ଭଦ୍ରତାରେ ଅଙ୍ଗୁଳିଗୁଡ଼ିକୁ ତ ଏମିତି ଠିଆ ଠିଆ କରିପାରିବି ନାହିଁ କି ଅନ୍ୟମାନଙ୍କ ପରି ଏତେ କୌଶଳରେ, କଣ୍ଢିକାଣ୍ଢି ଜୋତା ପିନ୍ଧେଇ ପାରିବି ନାହିଁ କାହାକୁ ।

ଅନେକ ସମୟରେ ଦେଖୁଥାଏ, ଦୋକାନ ପଛପଟ ଚେୟାର ବସ୍ତୁରିଟିକୁ ଚାଲିଯାଏ ମାଲିକ ନିଃଶ୍ୱାସ ମାରିବାପାଇଁ, ଆଉ ବଡ଼ ସହକାରୀକୁ ଏକା ଏକା ଖରିଦ୍‌ଦାରଙ୍କ ସଙ୍ଗେ କାରବାର କରିବାକୁ ଛାଡ଼ିଦେଇ ସାରାକୁ ତାଙ୍କ ପାଖକୁ । ମନେପଡ଼ୁଛି, ଥରେ ବଡ଼ ଆଲୀ ବଡ଼ ସୁନେଲି କେଶର ସୁନ୍ଦରୀ ତରୁଣୀର ପାଦ ଉପରକୁ ଛୁଇଁଦେଇ ସେ ଆଙ୍ଗୁଠିଗୁଡ଼ାକୁ ଏକାଠି କରି ନଚେଇ ଦେଇ ଚୁମ୍ବି ଲାଗିଥିଲି ସେଇଗୁଡ଼ିକୁ !

"ଛିଃ, କେଡ଼େ ଦୁଷ୍ଟ ମ ସଚେ !" କୁରୁକୁରୁ ହୋଇ ହସିଉଠିଥିଲି ସୁନ୍ଦରୀଟି ।
"ଅହ···ଅହ !" ଓଠ ଗୁଡ଼ି ଗୁଡ଼ି କହୁଥିଲି ସହକାରୀଟି ।

ଏମିତି ହସିଥିଲି, ଏତେ ହସିଥିଲି, ଏଡ଼େ ପାଟିକରି ଏତେ ଜୋରରେ ପେଟରୁ ବାକୁଲି ବାହାରି ପଡ଼ିଥିଲା ମୋର, ତଳେ ପଡ଼ିଯାଇଥାନ୍ତି ଯଦି ଦୁଆର କିଳଣୀଟାକୁ ଧରିପକାଇ ନ ଥାନ୍ତି । ସଙ୍ଗେ ସଙ୍ଗେ କିନ୍ତୁ ମେଲାହୋଇ ଯାଇଥିଲା ଦୁଆରଟା । ମୁଣ୍ଡଟା ବାଡ଼େଇହୋଇ ଯାଇଥିଲା କବାଟ କାଚରେ, ଆଉ କାଚସବୁ ଖସିପଡ଼ିଥିଲା ଖଣ ଖଣ ହୋଇ । ମୋ ଆଡ଼କୁ ଅନେଇ ପାଦ ଝଟେଇ ତଳେ ପିଟି ଲାଗିଥିଲା ସହକାରୀଟା, ଆଉ ମାଲିକ ତା'ର ଓଜନିଆ ସୁନା ମୁଦିରେ ଠୁକ୍‌ଠୁକ୍ କରିଥିଲା ମୋ ମୁଣ୍ଡକୁ । ସାରା ଅଞ୍ଚଳକର ମୋଡ଼ିବ ବୋଲି ବସିଥିଲା ମୋ କାନକୁ । ସେଇଦିନ ହସ୍ତରେ ଘରକୁ ଫେରିଲାବେଳେ କଠୋର ସ୍ୱରରେ ସାବଧାନ କରିଦେଇଥିଲା ·

"ବୁଝିଲୁ, ତଡ଼ା ଖାଇବୁ ତୁ ସେମିତି ବ୍ୟବହାର ଦେଖାଇଲେ । ହୁଁଃ ! କ'ଣ ଗୋଟାଏ ମଜାର ହସିବାର କଥା ଥିଲା ସେଥିରେ ?"

ତା'ପରେ ବୁଝେଇ ଦେଇଥିଲା ସେ ଦୋକାନରେ ବିକାଳି ଲୋକଟା ଯେତିକି ମନମୋହନିଆ ହୁଏ, ସେତିକି ମଙ୍ଗଳ ହୁଏ ମାଇପଙ୍କର ବେପାରର ।

"ଏମିତିକା ମାଇପିଟାର ଜୋତାଟି ଲୋଡ଼ା ନ ଥିବ, ବୁଝିଲ, ଟାଲି ଗୋଟିଏ ସୁନ୍ଦରିଆ ଲୋକକୁ ଆଉ ଥରେ ଦେଖିବା, ସେଇଥିପାଇଁ ଅଉ ହଲେ ହୁଏ

କୋଡା କଣି ବସିବ ସେ । ଏତକ ମୁଣ୍ଡରେ ପଶୁନ ନା ତୋର? ଏଃ, ତତେ ଯେତେ ଯାହା ଶିଖାଇଲେ ବ ସେଇ ଦରପୋଡ଼ା କାଠ୍ ଗୁ ।”

ଅପମାନିଆ ଲାଗିଲା ତା'କଥାଗୁଡ଼ାକ । ଦୋକାନରେ କେହୁ ହେଲେ କେବେ କିଛୁ ମତେ ବତେଇ ଦେଇ ନ ଥାଏ, ଶିଖେଇଦେବାକୁ ବାହାର ନ ଥାଏ । ସାଙ୍ଗ କଥା ତ ଗ୍ରୁଡ଼ !

ପ୍ରତ୍ୟେକ ଦିନ ବଡ଼ସକାଳୁ ମତେ ହିଁଲେଇ ଉଠେଇ ଦେଇଥାଏ ଗ୍ରାଦ୍ ଣ୍ରୀଟା ; ସଦାବେଳେ ରୋଗିଣୀ, କୁନ୍ଥକୁନ୍ଥେଇ, କଟକଟି ମାଇପିଟାଏ, ଉଠେଇ ଦେଉଥାଏ ମୋ ମାଉସୀ-ପୁଅ ଭାଇ ଉଠିବାର ଘଣ୍ଟାକ ଆଗରୁ । ମୁଁ ଯାଇ (ସାମୋୱାର) ଉଠାଚୁଲାଟାକୁ ଲଗାଏ, ପାଣି ତତାଏ । ଚୁଲାଗୁଡ଼ାକ ପାଇଁ ପାଠ ଆଣେ, ବାସନକୁସନ ମାଜିଘଷି ଠିକ୍ କରେ, ପୋଷାକପତ୍ର ବ୍ରସରେ ଝାଡ଼ିଝୁଡ଼ି ସଜାଏ, ମାଲିକର ବଡ଼ ବକାଲଟାର ଆଉ ସାଙ୍ଗର କୋଡାଗୁଡ଼ାକୁ ସାଫ୍ କରେ, ଦୋକାନ ଓଳାଏ, ଧୂଳି ଝାଡ଼େ, ଗୁହ୍ନା କରେ, ଯାହାକୁ ଯେଉଁଠି ପୁଡ଼ିଆପତ୍ର ଦେବାର ଥାଏ, ଦିଏ । ତା'ପରେ ଘରମୁହାଁ ହୁଏ । ସମସ୍ତଙ୍କର ଖାଇବା ଜିନିଷସବୁ ଆଣିବାପାଇଁ ଏଇସବୁ ନିତ୍ୟନୈମିତ୍ତିକ କାମରେ ମୁଁ ବ୍ୟସ୍ତ ଥାଏ ଯେତେ-ବେଳେ, ସାଙ୍ଗକୁ ସେତେବେଳେ ଛିଡ଼ା ହେବାକୁ ପଡ଼େ ଦୁଆର ମୁହଁରେ, ମୋ ଜାଗାରେ । ଏଇଟାରେ ତଳେ ପଡ଼ିଯାଏ ତା'ର ମାନସମ୍ମାନ । ଏ ହୀନିମାନିଆ ଅବସ୍ଥାରେ ସେ ମୋ ଉପରେ ପାଟିକର ଝଗଡ଼େଇ ନ ହୁଅନ୍ତା କେମିତି ?

“ହଇରେ ହେ ଧରମ କୋଢ଼ି ମେଲେଗ୍ରୁଟା ! ତୋ ପାଇଁ ମତେଇ ସବୁ କରିବାକୁ ପଡ଼ୁଥିବ, ନାଇଁ ?”

କାହିଁ କେତେ ପଡ଼ିଅରେ, ବାଲିବଣ ତୋଟାରେ, ଜଳ-ଉଚ୍ଛୁଳା ଓକା ନଈର କୂଳେ କୂଳେ କ ‘କୁନାଭନୋ'ର ଧୂଳିଧୂସରିଆ ଗଳିକନ୍ଦିରେ ଅବାଧରେ ବୁଲିବା ଅଭ୍ୟାସ ଥିଲା, ଯାହା ତାକୁ କ ସେତେବେଳର ସେଇ ଦୋକାନରେ ଚାକିରିକାଳର ତା'ର ଅସ୍ତିତ୍ୱ ନିହାତ ବିରକ୍ତିକର, କ୍ଳାନ୍ତିକର ନ ଲାଗନ୍ତା କେମିତି ! ଏଣୁ ମନେପଡ଼ୁଥାନ୍ତି ମୋର ଆଈ, ମୋର ସାଙ୍ଗସାଥୀମାନେ । ସେମାନଙ୍କୁ ଗ୍ରୁଡ଼ କେମିତିକା ଫାଙ୍କା ଫାଙ୍କା ଯାଉଥାଏ ଦିନଗୁଡ଼ାକ । କାହାକୁ କଣ କହିବ, କେହି କେଉଁଠି ନ ଥାନ୍ତି ମୋର ହୋଇ । ଜୀବନର ଯେଉଁ କୁତ୍ସିତ, ଯେଉଁ ଛନ୍ଦ ଛଳନାମୟ, ଛଣ୍ଡା ଗଢ଼ଣା ସୂତାର ପାଖଟା ଦେଖୁଥାଏ ମୁଁ, ସେଥିରେ ପ୍ରାଣଟା ଅଣନିଃଶ୍ୱାସୀ ହୋଇ ରୁନ୍ଧିହୋଇ ଡାକ ଉଠୁଥାଏ ରାଗରେ ।

ଅନେକ ସମୟରେ, ଲାଗଲାଗ ପ୍ରାୟ, ମାଇପେସବୁ ଦୋକାନକୁ ଆସି ଫେରି-ଯାଆନ୍ତି ଗୋଟିଏ ହେଲେ ଜିନିଷ ନ କଣି । ମାଲିକ ଆଉ ବକାଲ ଦୁ' ଜଣ ସେତେବେଳେ ଜଳିଉଠନ୍ତି ଯେମିତି ।

"କ୍ୟାଶିଅର୍ । ରଖିଦେ ଜୋତାଗୁଡ଼ାକୁ, ରଖିଦେ !" ଚନଗୋଲା ହସକୁ ପାଣି ଫଟେଇଦେଇ ହାଙ୍କନ୍ତି; ଖେଙ୍କି ହୁଅନ୍ତି ମାଲିକ ।

"ଏ ଏଇଠି ଯୋମଣିଟା ଭର୍ତ୍ତି କରିବାକୁ ଥିଲି, ଘୁଷୁରିଟା ! ଘରେ ବସି ବସି ଚଟା ଲାଗିଲି, ବୁଢ଼ୀ ଅନ୍ଧେଇ,ଡାକ୍ତରଣୀଟା, ଏଥୁ ଠିକ୍ କରିନେଲି ଦୋକାନରେ ମୁହଁ ମାରିବ, ରୂପ ଦେଖେଇହେବ ! ଓହୋ ! ମୋ ଭାରିଯା ହୋଇଥାନ୍ତା କି ଦେଖେଇଦେଇ ନ ଥାନ୍ତି ନା ତାକୁ ଦ'ଗୁରିଟା ବାଟ, ଦ'ଗୁରି ବାଧା ବସେଇ, ହାଲିପଟାଟାଏ କରି ।"

ମାଲିକର ଭାରିଯାଟା ପାତଳୀ, ଗହ୍ୱରିଆ ଆଖିରେ କଳା କଳା ଡୋଳା, ମନ୍ତ୍ରବଡ଼ ନାକ । ପାଟି କରି ତା' ଉପରେ କମ୍ପାଏ, ପୃଥିବୀ କମ୍ପାଏ, ଗୋଡ଼ କଚଡ଼େ ତା' ଆଗରେ, ଗୋଇଠା ଘଷଡ଼େ ରାଗରେ, ସତେ ଯେମିତି ମାଲିକଟା କଙ୍କର, ତା'ର କଣାକଙ୍କର !

ଅନେକ ସମୟରେ ମାଲିକ ଆଉ ତା'ର ବିକାଳି ଦ'ଜଣ, କୌଣସି ଗୋଟିଏ ସ୍ତ୍ରୀଲୋକଙ୍କୁ ଓଲଗି ହୋଇ ସୌଜନ୍ୟରେ ତା'ଆଗରେ ନଇଁ, ଲଟେଇଯାଇ, ଆଦର ଅନୁଯୋଗରେ ଲଟପଟେଇ ତାକୁ ବିଦାୟ ଦେଇସାରି ଏମିତିସବୁ ଭଣ୍ଡପଣ କଥା କହନ୍ତି ତା' ସମ୍ପର୍କରେ, ମୁଁ ବ୍ୟତିବ୍ୟସ୍ତ ହୋଇଉଠେ ସେଥିରେ । ମନ ହୁଏ ଦୌଡ଼ି ପଳାଇଯାଇ ପଦାକୁ, ସ୍ତ୍ରୀଲୋକଟା ପାଖରେ ପହଞ୍ଚି କହିଦେବି, ଯାହାସବୁ କହୁଥାନ୍ତି ସେମାନେ ।

ଜାଣିଥାଏ ମୁଁ, ଏଇଟା ଖୁବ୍ ସ୍ୱାଭାବିକ କଥା, ଲୋକେ ତୁମ ପଛରେ ଅତି ଖରାପ କଥା କହିବାକୁ ଟକଟକ ହୁଅନ୍ତି ! କିନ୍ତୁ ତା' ବୋଲି ଦିନ ନାହିଁ ରାତି ନାହିଁ ଏଇ ଧନଟା ଲୋକ, ପ୍ରତ୍ୟେକ ଲୋକ ବିଷୟରେ ଗୁଡ଼ାଏ ଗୁଡ଼ାଏ ମିଛସତ ଗାଉଥିବେ, ଗପି ହେଉଥିବେ, ସତେ ଯେମିତି ପୃଥିବୀରେ ସେହିମାନେ ହେଉଛନ୍ତି ସମସ୍ତଙ୍କଠୁ ବଳି ଚକଳାର ଲୋକ, ସମସ୍ତଙ୍କ ଉପରେ ରାୟ ଦେବା ପାଇଁ ନିଯୁକ୍ତି ପାଇଛନ୍ତି, ଏହା ସଦାବେଳେ କାନରେ ବାଜଥାଏ—ବିଶେଷଭାବେ ଏଇଟାରେ କାହାର ଦେହ ଚିଡ଼ନ୍ତା ନାହିଁ, ଧୈର୍ଯ୍ୟ ତୁଟନ୍ତା ନାହିଁ । ମତେ ଏଇଆ ହିଁ ଉତ୍ୟକ୍ତ କରି ଦେଉଥାଏ ! ସେମାନେ କାହାକୁ ବା ହିଂସା କରୁ ନ ଥାନ୍ତି ? ତାଙ୍କର ନାହି ଡେଉଁଥାଏ ଅଧିକାଂଶ ଲୋକଙ୍କୁ ଦେଖିଲେ । କାହାପ୍ରତି ପ୍ରଶଂସା ପଦେ ତ କେବେ ବାହାରୁ ନ ଥାଏ ପାଟିରୁ ଆଉ ଭଲକରି ଜାଣିଥାନ୍ତି ଖାଲି ପ୍ରତ୍ୟେକ ଲୋକ ଯେନ, କିଛି ହେଲେ କିଛି ଗନ୍ଧିଆ, ଅତି ଅସନାମସନା କଳଙ୍କିଆ କଥା ।

ଦିନେ ଦୋକାନକୁ ଆସିଲା ଚକ୍‌ଚକ୍ ଉଜ୍ଜ୍ୱଳ ଆଖିର ଟୁଲ୍‌ଟୁଲ୍ ଗୋଲାପୀ ଗାଲର ଯୁବତୀଟିଏ । ମଖମଲର ମାଇପିପିନ୍ଧା ଆଲ୍‌ଖାଲ ଭଳି ପରିଚ୍ଛଦଟିଏ

ଦେହରେ । ଗଳାର ବେହରଣଟି କଳା କଳା ନରମ ରୁମର । ତା'ଉପରେ ତୋର ମୁହଁଟି ଫୁଟିଉଠିଥାଏ ଗୋଟିଏ ଫୁଲ ପରି, ଅପୂର୍ବ ! ଆହୁରି ଝଲସିଉଠିଲା, ଆହୁରି ସୁନ୍ଦର ଦିଶିଲା ସୁବର୍ଣ୍ଣଟି--ବାହାର ଆବରଣ ପୋଷାକ କାଢ଼ି ସାଣାର ହାତ ଉପରେ ଫିଙ୍ଗିଦେଲା ମାତ୍ରେ ! ହୀରାର ଦୁଲ ଚକ୍‌ଚକ୍ କରି ଉଠିଲା କାନ ଦୁଇଟିରେ । ତା'ର ସୁଲଳିତ, ସୁବଳିତ ଲାବଣ୍ୟରେ ଗୋଳା ତନୁଟି ଏକାବେଳକେ ସନ୍ଧ୍ୟା ହୋଇ ଗଲା, କେଡ଼େ ଚମ୍ପା ସତେ ନୀଳଧୂସର ଗାଉନରେ ଆହୁରି ସହଜରେ ଝଟଝଟ କଲା । ତାକୁ ଦେଖିଲାକ୍ଷଣି, ମନେପଡ଼ିଲା ମୋର, ସୁନ୍ଦରୀ ଋସିଲପା । ଧରିନେଲି, ରାଜ୍ୟପାଳର ଭଣଯା ହୋଇଥିବ ସେ ନିଶ୍ଚୟ ! ବିଶେଷ ସମ୍ଭ୍ରମ ଦେଖାଇ ତାକୁ ସ୍ୱାଗତ ଜଣେଇଲେ ସେମାନେ--ଅଗ୍ନି-ଉପାସକଙ୍କ ଭଳି ତା'ଆଗରେ ମୁଣ୍ଡ ନୁଆଁଇ ମହୁଗୋଳା ମିଠାସ୍ୱରରେ ଟୁପୁଟୁପୁ ହୋଇ ଅଭ୍ୟର୍ଥନା କଲେ ତାକୁ । ଦୋକାନ ଭିତରେ ଦୌଡ଼ାଦୌଡ଼ି ଆରମ୍ଭ କରିଦେଲେ ଟେନହେଁ ମଜୁଆଳଙ୍କ ଭଳି । ତାଙ୍କର ପ୍ରତିବିମ୍ବଗୁଡ଼ିକ ନାଚିବାକୁ ଲାଗିଲା ସୋ-କେଶ୍‌ର କାଚରେ । ଲାଗିଲା,ସତେ ଯେମିତି ଜିନିଷ ସବୁ—ମିଶିଯାଉଛି, ଏକାଠି ହୋଇଯାଉଛି । ହେଇ, ଏଇ ମୁହୂର୍ତ୍ତିକରେ ନୂଆ ଆକାର ପ୍ରକାରରେ, ନୂଆ ଭଙ୍ଗୀରେ ବର୍ଣ୍ଣାବଳୀର ବିଚିତ୍ର ନକ୍‌ସାରେ ପରିଣତ ହୋଇଯିବ !

ଦାମିକା ଜୋତାହଲେ, ଆଖିପିଛୁଳାକେ ବାଛିସାରି ସେ ପଦାକୁ ଯାଇଥିବ କି ନାହିଁ, ଟାକରା ଫୁଟାଇ ସୁଉସୁଉ ହେଲା ସାପପରି ମାଲିକଟା :

"ଆଃ, କି ଫୁଲେଇ ଅଲଜକୁଆ ଟୋକିଟାଏ ମ ।"

"ପଦେ କଥାରେ—ନାଚୁଣୀଟାଏ !" ଡରଡରକା ନାକ ଟେକି ଭୁନ୍‌ଭୁନ୍ ହେଲା ଦଉ ବିକାଳିଜଣକ ।

କୁହାକୋହି ହେଲେ ସେମାନେ—ପ୍ରଣୟୀମାନଙ୍କ ସମ୍ପର୍କରେ ମହଲାଠିର, କେମିତି ଆମୋଦପ୍ରମୋଦରେ ଅଯୁସବିଳାସରେ ଦିନ କଟାଏ ସେ ।

ଦି' ପହରିଆ ଭୋଜନ ପରେ ଦୋକାନର ପଛପଟ ଗ୍ରେଟ କଣିକିଆ କୋଠରୀରେ ମାଲିକ ଟିକେ ଦେହ ଲମ୍ବେଇଦେଲା—ଦି'ଗ୍ଣରଟା ଘୁଙ୍ଘୁଡ଼ି ମାରିବା ପାଇଁ । ତା'ର ସୁନା ଘଣ୍ଟାର ପିଠିପଟଟା ବାହାର କରିନେଇ କଳାକବ୍‌ଜା ଉପରେ ଟୋପା ଟୋପା କରି କେଇ ଟୋପା ଭିନେଗାର ପକେଇଦେଲା ଚୁପ୍‌ଚାପ । ଭରି ମଜ୍‌ଜିଆ ଲାଗିଲା, ଦେଖିଲା ଯେତେବେଳେ ନିଦରୁ ଉଠି ମାଲିକ ଘଣ୍ଟାଟି ଧରି ହାତରେ ବକ୍‌ବକ୍ ହୋଇ ଆସିଲା ଦୋକାନ ଭିତରକୁ ।

"ଦେଖିଲ, କ'ଣ ଇଏ, ଦେଖିଲ ! ହଠାତ୍ ଘଣ୍ଟାଟା ମୋର ଝାଲେଇଲା କାହିଁକି ? ଏମିତି ତ ଆଗରୁ କେବେ ଘଟି ନାହିଁ । ବୁଝିଲ, ଏଃ, ଖରାପ ଶକୁନଟାଏ ଆସିଥିବ !"

ଦୋକାନରେ ଯା'ଆସ, ଧାଁ'ଧପଡ଼, ଧୂମଧାମ ହୋ'ହାରେ ବ୍ୟସ୍ତତା ; ଘରଭିତରେ ଲହୁଲୁହାଣ ହାଡ଼ଭଙ୍ଗା ଖଟଣି······ବିରକ୍ତିରେ କେମିତି ଗୋଟେ ନିଦୁଲିଆ ଆଚ୍ଛନ୍ନତା ଭିତରେ ରହିଯାଏ ମନଟା । ଦିନକୁ ଦିନ ଅଧିକରୁ ଅଧିକ ମାତ୍ରାରେ ଭାବିଲି :

"କ'ଣ କଲେ ମତେ ନିକାଲିଦେବେ, ମତେ 'ଏକାବେଲକେ' ବିଦା କରିଦେବେ ଏଠୁ ?"

ଧଳାଧଳା ତୁଷାର ବୋଳା ଲୋକଗୁଡ଼ାଏ ତରତରରେ ଧାଆଁନ୍ତି ଦୋକାନର ଦୁଆରମୁହଁ ଆଗରେ, ଟପିଯାଆନ୍ତି ଦୋକାନକୁ । ଲାଗେ, ମଶାଣିକୁ ଯିବାରେ ଉଚ୍ଛୁର ହୋଇଯାଇଛି ସେମାନଙ୍କର, ସେଥିପାଇଁ ପ୍ରାଣପଣେ ଧାଇଁଛନ୍ତି ଚେଷ୍ଟା କରି କରି, ଘୋଷାରି ହୋଇ ମଶାଣିକୁ—କୋକେଇ ପାଖରେ ପହଞ୍ଚିଯିବେ କେମିତି ସଅଳ ସଅଳ । ତୁଷାର ଝଡ଼ରେ ଭାସିଆସେ ପୁଞ୍ଜିକୁ ପୁଞ୍ଜି ତୁଷାର । ସେଥିଭିତରେ ବୋଝେଇ ଗାଡ଼ିଗୁଡ଼ିକୁ ଦୋହଲେଇ ଦୋହଲେଇ ଟାଣିଟାଣି ଚାଲନ୍ତି ମଢ଼ିଆ ଘୋଡ଼ାଗୁଡ଼ାକ । ଦୋକାନର ପଛଆଡ଼େ ଗିର୍ଜାର ଘଣ୍ଟା ବାଜିଉଠେ ନିଃଶ୍ୱାସ ନନେଇ । କାରଣ କେଉଁଦିନ ଆସିଯାଇଥାଏ 'ଲେଣ୍ଟ'ଉତ୍ସବଟା । ସେଇ ଗିର୍ଜାଘଣ୍ଟାର ଅଛାଡ଼ ଆବାଜଟା, ମୁଣ୍ଡ ଉପରେ ଆସି ଆଘାତ ଦିଏ,ଠାଣୁଆ ତକିଆର ମାଡ଼ଭଳି । ନାଃ, ଯନ୍ତ୍ରଣା ଦିଏ ନାହିଁ ସତ, କିନ୍ତୁ ତାବଦା କରିଦିଏ, ଅଚଳ ଅଚେତ କରିଦିଏ ମଥାକୁ ।

ଥରେ ନୂଆ ଜିନିଷପତ୍ର ପେଟିଟାର ବନ୍ଧାବନ୍ଧି ଖୋଲୁଥାଏ ଅଗଣାରେ । ଗିର୍ଜା ଜଗୁଆଳି ବୁଢ଼ାଟି ଆସି ହାଜର ହେଲା ମୋ ପାଖରେ—କେମିତିକା ଅଡ଼ଢଙ୍ଗିଆ—ଗୋଟାଏ ପାଖ ଖ୍ରେଟ, ଆଉ ଗୋଟାଏ ବଡ଼—ଆଖାଡ଼ୁଆ ଅସନା ଆକୃତିର ବୁଢ଼ାଟିଏ । କନା-କଣ୍ଢେଇ ଭଳି ନରମା ପୁରୁସ୍ତରୁ ଆଉ ଲୋଗ୍ୱକୋଗ୍ୱ ଚମରେ କୁତୁକୁତା ଦେହ ବା ! ଯେତେ ଯେମିତି କୁକୁରଗୁଡ଼ାଏ କେବେ କାମୁଡ଼ି ଭିଣିଭଣା କରିଦେଇଥିଲେ ବୁଢ଼ାଟିକୁ !

"ମୋ ପାଇଁ ହେଲେ ବର୍ଷାଦିନ ଜୋତା (ଗ୍ୟାଲେଶ)ଲୁଚେଇକରି ଦେବୁନାହିଁ ନା, ପୁଅ !" ପଚାରିଲା ବୁଢ଼ାଟି ।

କିଛି କହିଲି ନି ମୁଁ । ପାଖରେ ଖୋଲା ପେଟିଟିଏ ଉପରେ ବସିପଡ଼ିଲା ବୁଢ଼ା । ହାଇମାରି, ଓଠ ଉପରେ କ୍ରୁଶଚିହ୍ନ ଆଙ୍କି ହେଲା ଥରେ ଦି'ଥର ଶୂନ୍ୟରେ । ଜଣେଇଲା ପୁଣି ଅନୁରୋଧଟା—

"ଦେବୁଟିକି ? ଦେବୁ ନା ଏଇକ୍ଷଣି ?"

"ଲୁଚେଇ କରି ଦେବା, ଚୋରି କରିବା ଖରାପ, ' ପାପ !" ପଦକରେ ଜଣେଇଦେଲି ତାକୁ ।

"କରାଯାଏ ତ ପୁଣି ! ଦେଖ୍ ପୁଅ, ମୋ ବୟସ ଖାତିରରେ······"

ମୋ ଘରକଥରେ ଯେଉଁମାନେ ଥିଲେ, ସଦାବେଳେ ଘେରିରହୁଥିଲେ ମତେ, ତାଙ୍କଠୁଁ କେମିତି ବେଶ୍ ଦିଲଖୁସିଆ ଭାବରେ ଅଲଗା ଥିଲି ବୁଢ଼ାଟି । ମୁଁ ଯେ ତାକୁ ଜୋତାହଳକ ଲୁଚେଇକରି ଦେବି, ଏଥିରେ ଏମିତି ଧ୍ରୁବ ଧାରଣା ଆସିଯାଇଥିଲା ତା'ର ସେ ମତଗତି ଦେଖି ତା'ର ରାଜି ହୋଇଗଲି— ଝରକା ବାଟେ ବର୍ଷାଧି ଜୋତା ହଳେ ଚପଜଳ ଗଳେଇ ଖସେଇଦେବି ତା' ହାତକୁ ।

"ବେଶ୍ !" ଶାନ୍ତଭାବରେ କହିଲା ସେ—ଏମିତି କିଛି ବିଶେଷ ସନ୍ତୋଷ ବା ପ୍ରସନ୍ନତାର ସହିତ ନୁହେଁ । "ମତେ ବୋକା ବନେଇଦେବୁ ନାହିଁ ତ ଆଉ ? ନା ଦବୁ, ବୋକା କରି ଛାଡ଼ିବୁ ? ଠିକ୍, ଠିକ୍ ! ନା, ଦେଖୁଚି, ନୋହୁଁ ତୁ, କାହାକୁ ବୋକା ବନେଇ ଠକିବା ଲୋକ ନୋହୁଁ ତୁ ।"

ମିନିଟିଏ କି ଦି' ମିନିଟ କାଳ ଖୁସ୍ ହୋଇ ବସି ରହିଲା ବୁଢ଼ା, ଜୋତା ଆଗରେ ଓଦା ଓଦା ପାଣିଫାଟି ଆସୁଥିବା ମଇଳା ମଇଳା ତୁଷାରରେ ଆଙ୍ଗୁଠି ଆଙ୍ଗୁଠି ଗାର କାଟିଲା, ଲଗେଇଲା ମାଟିର ସିଗାରେଟ୍ ଣା ନଳୀ ବା ସିଗାରେଟ୍ ଚଲମକୁ ଆଉ ଥିଲା ଥିଲା ହଠାତ୍ ମୋତେ ଶିହରେଇଦେଲା କଥାରେ—

"କିନ୍ତୁ ଦେଖ, ମୁଁ ଯଦି ବୋକା ବନାଏ ତତେ ? ମୁଁ ଯଦି ସେଇ ଜୋତାହଳକ ମାଲିକ ପାଖକୁ ନିଏ, ଆଉ କହେ, ମତେ ଅଧ ରୁବଲ ପାଇଁ ବିକି ଦେଇଛୁ ତୁ, ଏଃ, ଯାହାର ଦାମ ଦି' ରୁବଲରୁ ବେଶୀ, ତୁ ତାକୁ ଦେଉଛୁ ଅଧ ରୁବଲରେ—ଏମିତି ଟିକିଏ ହାତ ଖର୍ଚ୍ଚ ପାଇଁ, ଏଃ !"

କାଠ ପାଲଟି ଅନେଇରହିଲି ବୁଢ଼ାକୁ, ସତେ ଯେମିତି ଯାହା କହୁଥିଲା, ତା' କରିପାରିଥାଏ ମୁଁ ! ସେ କିନ୍ତୁ ଧୀରେ ଯୁକ୍ତେ କହି ଚାଲିଲା ନ କେଇ ସ୍ୱରରେ— ତା'ର ଆଖି ଯୋଡ଼ିକ ଥାଏ ତା' ବୁଟ୍ ଯୋଡ଼ା ଉପରେ, ସମୁଦାୟ ମୁଣ୍ଡଟି ଥାଏ ନେଳି ନେଳି ବାଇଗଣି ଧୂଆଁର କୁଣ୍ଡଳୀ ଭିତରେ ।

"ମାଲିକ ନିଜେ ଯଦି ଖେଞ୍ଚିଖାଞ୍ଚି ବିରକ୍ତ କରି କହେ ମତେ—'ଯା'ମୋର ସେ ଟୋକାଟାକୁ ପରଖି କରି ଦେଖ ! ଦେଖ୍, କେତେଦୂର ଚୋର ସେଇଟା ? ---'ଣ ତେବେ—?"

"ନା, ତତେ ଜୋତାଫୋଡା କିଛୁ ଦେବନି ।" ସାଗରେ କହିଉଠିଲି, ବତେଇ ଦେଲି ମୁଁ ।"

"ହେଁ, ଥରେ କଥା ଦେଇ ଆଉ ସେଥିରୁ ଓଧୁରିପାରିବୁ ନାହିଁ, ଖସିଯାଇ-ପାରିବୁନି ବାବୁ ! ବୁଝିଲୁ !"

ମୋ ହାତଟା ଧରିପକାଇ ସେ, ମତେ ଟାଣିନେଲା ତା' ପାଖକୁ । କାଳୁଆ ଆଙ୍ଗୁଠିରେ ତା'ର ଟିପକଲା ମାରି ମୋ କପାଳରେ ଓଁଟାରିଲା ଓଁଟାରିଲା ସ୍ୱରରେ ଟାଣିହୋଇ କହିଲା ଥରକନି—

"ଏଇ ନେଏ ତୋର ଜୋତା । ଏମିତ କେମିତ ରାଜ ହୋଇଗଲୁ ରେ ତୁ ?"

"ତୁମେ ମତେ ମାଗିଲ ! ମାଗିନ ?"

"ଅନେକ କଥା, ଅନେକ ଜିନଷ ତ ମାଗିପାରିଥାନ୍ତି, ମୁଁ ଯଦ କହିଥାନ୍ତି, 'ଯା !' ଖ୍ରୀଷ୍ଟ୍ର କର ଯା, ତକାଏଥ କର ଗିର୍ଜାରେ, ଲୁଟକରି ଗିର୍ଜାକୁ,ମାନିଥାନ୍ତୁ— ଶୁଣିଥାନ୍ତୁ ତ ? କରିଥାନ୍ତୁ ତ ତା' ଏମିତ କେମିତ ଲୋକଙ୍କୁ ବିଶ୍ୱାସ କରୁଛୁ ରେ ! ଏମିତ ବିଶ୍ୱାସ କରି କଣ ଚଳିପାରିବୁ ରେ, କୋଲାଛୁଆଟି ମୋର !"

ମତେ ଠେଲିଦେଇ ପାଖରୁ ଉଠିପଡ଼ିଲା, ଛଡ଼ାହେଲା ସେ ।

"ଖ୍ରୀଷ୍ଟ୍ର ଜୋତା ମୋର ଲୋଡ଼ା ନାହିଁରେ ବାବୁ. ଲୋଡା ନାହିଁ । ବୁଝିଲୁ ! ଏମିତ କିଛୁ ବଡ଼ିଆ ଭଦ୍ରଲୋକଟାଏ ନୁହେଁ ମୁଁ । ଯାହା ହେଉ ପଛେ, କେମିତ ହେଲେ ପିନ୍ଧିବ ବର୍ଷାଥ ଜୋତା ଗ୍ୟାଲୋଶ୍ । ଟିକଏ ରହସ୍ୟ କରୁଥିଲି ତୋ ସାଥିରେ । କିନ୍ତୁ ମୋଠି ଯେତେବେଳେ ତୋର ଏତେ ବିଶ୍ୱାସ, ଗିର୍ଜା ଉପରର ଘଣ୍ଟାଘରକୁ ଉଠିବାକୁ ଛାଡ଼ିଦେବ ତତେ—'ଇଷ୍ଟର ଟାଇମ୍,' ଉତ୍ସବଟା ଅସୁ, ଘଣ୍ଟା ବଜେଇପାରିବୁ ଆଉ ସହରଟାକୁ ଦେଖିପାରିବୁ ତୁ ।"

"ଦେଖିଛୁ ମୁଁ ସହର ।"

"କିନ୍ତୁ ଘଣ୍ଟାଘର ଉପରୁ ? ଖାରି ସୁନ୍ଦର !"

ଧୀରେ ଧୀରେ ଆଗେଇଲା ସେ, ତୁଷାର ଭିତରେ ଜୋତା ଆଗକୁ ମାଡ଼ି-ମାଡ଼ିକା ଠେଲିଠେଲିକା ଚାଲିଲା ଆଉ ଯେତେବେଳେ ଅଦୃଶ୍ୟ ହୋଇଗଲା ଗିର୍ଜାର ଗୋଟିଏ କୋଣରେ କେଉଁଠି । ତାକୁ, ତା'ର ଯିବାଟାକୁ ଅନେଇଥିଲି

କେମିତ ଗୋଟାଏ ଯନ୍ତ୍ରଣାରେ, ଅସ୍ୱସ୍ତିରେ ଅସ୍ଥିର ହୋଇ ବସ୍ତୁସ୍ୱରେ ଭାବିଲି— ବୁଢ଼ାଟା କ'ଣ ସତରେ ମୋ ସାଙ୍ଗେ ଥଟ୍ଟା ଖେଳୁଥିଲା ନା ମାଲିକ ତାକୁ ପଠେଇଥିଲେ ମତେ ପରଖିବାପାଇଁ । ଦୋକାନକୁ ଫେରିଯିବା ଲାଗି ପାଦ ଚଳିଲା ନାହିଁ । ମାଡ଼ ମାଡ଼ ପଡ଼ିଲା, କେମିତ ଦବି ଦବି ଗଲା ଗୁଡ଼ଟା ।

"ହଇରେ ହେ ବଦମାସ୍ ! ଏଠି ଏତେବେଳଯାଏ କ'ଣ କରୁଛୁ ରେ ତୁ ?" ଅଗଣାକୁ ଦୌଡ଼ି ଆସୁଆସୁ ଡ଼ାକଛାଡ଼ିଲା ସାଣା ।

ରକ୍ତ ଯେମିତ ଚହଟିଗଲା ମୁଣ୍ଡକୁ ହଠାତ୍ ଗୋଟାଏ ରାଗର ହାବୁକାରେ । ଷଣ୍ଢଆସୀଟା ଉଣ୍ଠେଇ ନଚେଇଲାଗିଲି ତା'ସାମନାରେ ।

ଜାଣିଥାଏ ମୁଁ, ସେ ଆଉ ବଡ଼ ବକାଲିକଣକ ମିଶି ଚୋରି କରନ୍ତି ମାଲିକଠୁ । ବୁଝ୍‍ହଲେ କି ଜୋଡାହଲେ ସେମାନେ ଆଗ ଲୁଚେଇଦିଅନ୍ତି ନେଇ ଚୁଲିର ଚମିଣି ଭିତରେ ; ଯେଠି ଲୁଚେଇ ରଖନ୍ତି ଦୋକାନ ବନ୍ଦ ହେବାଯାଏ, କୋଟ୍‍ର ଅସ୍ତିନ ଭିତରେ ପୂରେଇ ଚୋରି ମାଲକୁ, ଚୁପଚାପ ଖସିଯାଆନ୍ତି କେତେବେଳେ । ତାଙ୍କର ଏହି ଚୋରିଲୀଳା ଯେତିକ ମତେ ଖରାପ ଲାଗୁଥାଏ, ସେତିକ ଭୟଭୀତ କରିଦେଉଥାଏ । କାରଣ, ମାଲିକର ସାବଧାନବାଣିଟିକ ପାଶୋର ଯାଇ ନ ଥାଏ ମୋ ମନରୁ ।

"ଚୋରି କରୁ ତୁ ?" ପଚାରିଲି ସାଣାକୁ ।

"ମୁଁ ନୁହେଁ, କରେ, ବଡ଼ ବକାଲିଟା କରେ ।"—ଅତ ନିଷ୍ଠୁରିଆ ଭାବରେ କହିଲି ସାଣା—"ମୁଁ ତାକୁ ସାହାଯ୍ୟ କରେ ଖାଲି । ସେ ମତେ କହେ, 'ଦେଖ, ଯାହା କହୁଚ, କର !' ମୁଁ ଯଦି ତା' ନ କରେ, ତାକୁ ନ ମାନେ, ମତେ ପେଞ୍ଚରେ ପକେଇଦେବ ସେ ! ଆଉ ମାଲିକ କଥା କହୁଚୁ ଯେ, ଦିନେ ସେ ତ ଏମିତ ବକାଲିଟାଏ ଥିଲା ଗୋଟାଏ ଦୋକାନରେ । କୋଉ ପେଞ୍ଚପାଞ୍ଚ, କୋଉ କୌଶଳଟା ତାକୁ ଅଜଣା ? ଦେଖ, କାଲି ଉଁଚଁ ପାଟି ଫିଟେଇବୁ ନାହିଁ କୋଉଁଠି ! ସବୁ ଦେଖୁଥିବୁ, ଶୁଣୁଥିବୁ ପଛେ……।"

ସେ କହିଲାବେଳେ ଦର୍ପଣରେ ମୁହଁ ଦେଖିହେଉଥାଏ ନଜର, ଆଉ ସଜାଡ଼ି ହେଉଥାଏ ଗଲାବନ୍ଧଟାକୁ । ବଡ଼ ବକାଲିର ଅଙ୍ଗୁଳି ଭଳି ଛଳନାମୟ ଭାବରେ ଚଳୁଥାଏ ଆଙ୍ଗୁଳିଗୁଡ଼ିକ ତାର ବାହାରକୁ ଲମ୍ବି ଲମ୍ବି ଯାଇ, ମେଲି ମେଲି ହୋଇ । ସବୁବେଳେ ସେ ମୋ ମୁଣ୍ଡରେ ଭର୍ତ୍ତି କରିବାକୁ ଚେଷ୍ଟା କରୁଥାଏ, ମୋଠୁଁ ବଡ଼, ପୁରାପୁରି ବଡ଼ ସେ । ମୋ ଉପରେ ମାଲିକାନା ଜାହିର କରିବା ହକ ~'ର । ତେଣୁ ମୋଟା ଗମ୍ଭୀରିଆ ଗଳାରେ ମୋ ଉପରେ ପାଟି କରିବା, ମତେ

ହାଙ୍କିବା ଆଉ କର୍ତ୍ତୃତ୍ୱପୂର୍ଣ୍ଣ ଭଙ୍ଗୀରେ ଉଦ୍ଧତ ସ୍ୱରରେ 'ହୁକୁମ' ଝାଡ଼ିବା, ସଙ୍କେତ ଦେବା ଧର୍ମ ତା'ର—କିଛି ଆଦେଶ ଦେବା ବେଳରେ । ତା'ଠୁଁ ଢେଙ୍ଗା ଆଉ ବଳୁଆ ଥାଏ ମୁଁ ସତ, ଥାଏ କିନ୍ତୁ କେମିତି ନନ୍ଦନନ୍ଦିକା ପତଳା ଅଡ଼ଢଙ୍ଗିଆ । ସେ ଥାଏ ନରମା, ସୁକୁମାରିଆ, ଗଣ୍ଠି ମୁଠିଆ, ଚକ୍‌ଚକିଆ । ତା'ର ମାଇପିପିଲା ଫ୍ରକ୍ ଭଳି କୋଟ୍‌ରେ ବେଶ ବଡ଼ବଡ଼ୁଆଙ୍କ ପରି ପ୍ରଭାବଶାଳୀ ଦିଶୁଥାଏ ସେ । କିନ୍ତୁ ଦିଶୁଥାଏ କେମିତି କଦର୍ଯ୍ୟଆଟା—ଦେଖିଦେଲେ ହସ ରୋକିହେବ ନ ଥାଏ ଆଦୌ । ରାନ୍ଧୁଣୀଟାକୁ ଦେଖିଲେ ତା'ର ଅଇ ଉଠୁଥାଏ ପେଟରୁ ଯେମିତି ! ପ୍ରକୃତରେ ରାନ୍ଧୁଣୀଟି ଗୋଟାଏ ଅଦ୍ଭୁତ ଜୀବ—ଖରାପ କି ଭଲ କିଛି ସ୍ଥିର କରି କହି ହେଉ ନ ଥାଏ, ବାରି ହେଉ ନ ଥାଏ ତା' ସମ୍ପର୍କରେ ।

"ସବୁଠୁଁ ବଳି ଲଢ଼େଇଭିଡ଼େଇକୁ ଭଲପାଏ ମୁଁ, ଜାଣିଚ ନାଁ ?"—କଳାକଳା ଜଳନ୍ତା ଆଖିଦୁଇଟିକୁ ମେଲେଇ ଓସାରେଇଦେଇ ବେଳେ ବେଳେ କହିପକାଉଥାଏ ସେ ରାନ୍ଧୁଣୀଟା—"ଆଉ ମୋ ପାଖରେ କିଛି ଯାଏଆସେ ନାହିଁ, ସବୁ ସମାନ—କୁକୁଡ଼ା, କୁକୁର କି ଗୃଷୀଫାଷି, ଯିଏ ଲଢ଼ାଲଢ଼ି ହୁଅନ୍ତୁ—ସମାନ, ସମସ୍ତେ ସମାନ ।"

ଅଗଣାରେ ଯଦି କୁକୁଡ଼ା କି ପାରାଗୁଡ଼ାକ ଲଢ଼େଇ ଆରମ୍ଭ କରିଦିଅନ୍ତି, ଝୁମ୍ପାଝୁମ୍ପି, ହଣାହଣି ହୁଅନ୍ତି ଚଞ୍ଚୁରେ ଚଞ୍ଚୁରେ, ସେ ଦେଖିଲାମାତ୍ରେ ଯେତେଯାହା କରୁଥାଉ ପଛେ ଛାଡ଼ିଦେଇ ଧାଇଁଯାଏ, ଝରକା ପାଖରେ ଠିଆ ହୋଇ ରହେ ଆଉ କୋଉଥିକି କାନ ନ ଦେଇ, କାଳିଙ୍କ ଭଳି ଏକ ଲମ୍ଫରେ ଲଢ଼େଇଟା ଶେଷ ନ ହେବାଯାଏ । ସଞ୍ଜବେଳେ ମତେ ଆଉ ସାଶାକୁ ଉସ୍‌କାଏ—

"ଆରେ ପିଲା ଦି'ଟା, ବସିଚ କାହିଁକରେ ଏମିତି ଏଠି ! ଯା, ପଦାକୁ ଯାଇ ଆଚ୍ଛାକରି ଲଢ଼ିଆସ ନାଁ ଦୁହାଏ ଆଗ ।"

ସାଶା ତାତି ଯାଇ ସଅଁ ସଅଁ ହୁଏ :

"ପିଲା ! ମୁଁ କ'ଣ ପିଲା ? ହଇଲେ ବୁଢ଼ୀମାଙ୍କଡ଼ୀ, ଧେଡ଼ବୋକଡ଼ ! ବଡ଼ ବକାଲର ଜୁନିଅର ଆସିଷ୍ଟାଣ୍ଟ ମୁଁ, ଜାଣୁ !"

"ଏଁ ସତେ କଲେ ! ଏତେ ଶକ୍ତ କଥାଟା ! ବୁଝିଲୁ ହାତକୁ ଦି' ହାତ ହେବାଯାଏ ତୁ ପିଲାଟିଏ ହୋଇ ରହିବୁ ମୋ ଆଗରେ, ବୁଝିଲୁ ।"

"ବୁଢ଼ୀ ଧୋକଡ଼ୀ, ମୁଣ୍ଡବୁଲେଇ, ଅଣ୍ଡାଭଙ୍ଗେଇ, ହଇଲେ !"

"ବୁଝିଲୁ, ସଇତାନଟା, ଅସରପାକୁଆଟା ! ଯେତେ ଜ୍ୱଲକଚାରୁର ହେଲେ କ'ଣ ହେବ, ଠାକୁରଙ୍କ ଭୁଲ, ମସ୍ତବଡ଼ ଭୁଲ ତୁ !"

ପାଶ ଦେଇ ଚାଲିଗଲେ, ବଡ଼ଭୂଆ ହୁଏ ଗାନ୍ଧି ଣୀଟାର କଥା କହିବାର ଭଙ୍ଗୀରେ ; ତାଙ୍କୁ ଯେତେବେଳେ ଚିହ୍ନାଇଦିଏ, ସେତେବେଳେ ଏମିତି ଗୋଟାଏ ବ୍ରହ୍ମାଣୀ ହାଣେ ଗାନ୍ଧି ଣୀଟା, ଯତେ ଯେମିତି ତାଙ୍କୁ ନିପାତ କରିଦେବ ଏକାବେଳକେ ; ଆଉ ସଙ୍ଗେ ସଙ୍ଗେ ନାକ ଟୁଙ୍ଗାଡ଼ି କହିଉଠେ—

"ଫୁ ! ବଳୁଛୁଆ ଅସରପାଚୁଆଟା ବଳଟେନାଙ୍କୁ—ଭଗବାନଙ୍କର କେତେ ଭୁଲରେ ବୁ ।''

ସେ ମତେ ଅନେକ ଥର କହିଛି କୋବଲେଇଛି, ଗାନ୍ଧି ଣୀର ତକିଆରେ ଧନକଣ୍ଟା ରଖିଦେବୁ ଯା ! ଶୋଇଲାବେଳେ ସେ ତା' ମୁହଁରେ ମହମ କି ହାଣ୍ଡି-କଳା କି ଅଙ୍ଗାର ଚୂନା ବୋଳିଦେବୁ ଯା ! ନଇଲେ ଆଉ କିଛି ଏମିତିକା 'କାମିକା' ଆଡିଲିଗିରି ଦେଖାଇବୁ ଯା ! କିନ୍ତୁ ଗାନ୍ଧି ଣୀଟାକୁ ମତେ ଡ଼ର, ଠିକ୍ ଜାଣିଥାଏ ମୁଁ ମତେ ଧରିପକାଇବ ସେ । ବଡ଼ ପାଗଳା ନିଦ ତା'ର । ଅନେକ ସମୟରେ ସେ ଘୁଆଁକୁ ଘୁଆଁ ଉଠିପଡ଼େ, ବତି ଜଳାଏ, ବସି ବସି ଘଉର କୋଉ କଣକୁ ହେଲେ ଏକ ଆଖିରେ ଶୂନ୍ୟ ଉଦାସ ଦୃଷ୍ଟିରେ ଅନାଇରହେ ; ବେଳେ ବେଳେ ଚୁଲି ପଛପଟରେ ମୋ ଖଟଣା କଥିକ ଗୁଲିଆସେ ; ଝିପଝିପିଆ ବୁଝିଆ ସ୍ୱରରେ ଫିସଫିସ କରି କହି ହୁଲାଏ ମୋତେ—

''ଜାହିଁକି କେଜାଣି, ଶୋଇପାରୁନ ରେ ଆଲୁଓଣା ! କେମିତିକା ଡରକୁଛି ମୁଁ ! କହ, କିଛି ଗପ କର ମ ।''

ତନ୍ଦ୍ରାରେ, ଦରଦର ଚାଆଁ ଅବସ୍ଥାରେ ମୁଁ ତାଙ୍କୁ କ'ଣ ହେଲେ କିଛି ଗୋଟାଏ ଗପ ଶୁଣାଏ । ସେ ସେଠି ମୋ ପାଖରେ ବସିରହେ ଚୁପ୍ରୁପ ଦୋହଲେ ବସି ଆଗକୁ ପଛକୁ, ପଛକୁ ଆଗକୁ । ମତେ ଲାଗେ, ତା'ର ତାପିଲା ଦେହଟାରୁ କେମିତି ଗୋଟାଏ ବାସନା ବାହାରେ, ମହମର ବା ଝୁଣା ଫୁଣ୍ଡା କି ଅଗରବତୀର ଆଉ ଖୁବ୍ ଶୀଘ୍ର ସରିଯିବ, ତାର ଦନ ସରିଯିବ, ହୁଏତ ସେ ମରିଯିବ ସେଇ ମିନିଟ୍ରେ । ଭୟରେ ମୋ ସ୍ୱରଟା ଉଚ୍ଚ ହୋଇଉଠେ । କିନ୍ତୁ ମତେ ସେ ବାଧା-ଦେଇ ରୋକିଦିଏ, ବନ୍ଦ କରେ ।

''ଶ୍ ! ହେଇ ସେଇ ଜାରଜଗୁଡ଼ାକ ଉଠିପଡ଼ିବେ ରେ······ଭାବିବେ ମୋର ପ୍ରେମିକ ବୁ !''

ସବୁବେଳେ ସେ ବସେ ସମାନ ଗୋଟିଏ ବୋଲି ଭଙ୍ଗୀରେ, ଗୋଟିଏ ବୋଲି ଢ଼ଙ୍ଗରେ—ଗୋଟିକିଯାକ ନଇଁ ଯାଇ ଝୁଲିପଡ଼ି ଆଗକୁ, ହାତଦୁଇଟି ଗୁଞ୍ଜି-ଦେଇ ଅଣ୍ଟୁ ଦୁଇଟିର ସନ୍ଧିରେ ହାଡ଼ୁଆ ହାଡ଼ୁଆ ଗୋଡ଼ ଦୁଇଟାକୁ ଯୋଡ଼ି ଉଚ୍ଚ-

ଦେଇ ଏକାଠି, କ୍ଷଣରେ ! ଏମିତକ ଅଖାଭଳି ହାଡ଼ବୃଣା ମୋଟା'ଖଦ୍ଦ'ର ପୋଷାକ ତଳୁ ତା'ର ଫିଲପଟ ଛାତି ଭିତରୁ ବାହାରିପଡ଼େ ପଞ୍ଜରା ହାଡ଼ଗୁଡ଼ାକ— ଲେସ୍ କୋଟ୍ ଟିଣ ପଟ୍ଟରେ ବନ୍ଧା ଢଙ୍କା ଲୁହାପାତର ଘେର ଭଳି ! ବହୁତ, ବହୁତ ବେଳଯାଏ ଭୁନହୋଇ ବସେ ସେ—ଥାଏ ଥାଏ ହଠାତ୍ ଫିସ୍ ଫିସ୍ କରି ଆରମ୍ଭ କରିଦିଏ—

"ମରିଯାଆନ୍ତି କି ମୁଁ, ନସ୍ତାର ପାଆନ୍ତି କି ଏ ଦୁଃଖରୁ, ଏ ଦୁର୍ଦ୍ଦଶାରୁ ।"

ନଇଲେ କାହା ଆଡ଼କୁ ମୁହଁ ବୁଲେଇ କାହାକୁ ଲକ୍ଷ୍ୟ କରି କହିହୁଏ—

"ମ, ମୋ ଜୀବନଟା ମୁଁ କଟେଇଲି ଯେମିତି ଇଚ୍ଛା ସେମିତି···ସେଥିରେ କ'ଣ ମ ଅଛି କାହାର ?"

ଟିକିଏ ହେଲେ ସଙ୍କୋଚ କରେ ନାହିଁ, ଦୋଦୋପାଞ୍ଚ ହୁଏ ନାହିଁ, କି ଆହବ ଯାଏ ନାହିଁ—ମୋ 'ଗପକୁହା'ର ମଝିରେ ଧଡ଼୍ ଡ଼୍କିନା ଉଠିପଡ଼ି ହଠାତ୍ ମତେ ବନ୍ଦକରି ଦିଏ ଗୋଟାଏ କର୍କଶିଆ ସ୍ୱରରେ "ଶୁଅ, ଶୋଇପଡ଼ ।" ତା'ପରେ ପାଉଁଶିଆ ରୂପରେ ମିଳେଇଯାଏ ସେପଘରର ଛାଇ ଗୁଡ଼ାକରେ ।

"ବୁଢ଼ୀ ଡାହାଣୀଟା, ପ୍ରେତନୀଟା—" ପଛରେ ତା'ର କହିହୁଏ ଯାଣା ! ସ୍ୱା ଶୁଣି ଶୁଣି ଥରେ ପ୍ରସ୍ତାବଟା ଦେଲି—"ତା' ମୁହଁରେ ଶୁଣୋଉନୁ, କହୁନୁ କାହିଁକି, କହିଦେ ଏକଥା !"

"ଖାବୁଚ୍ କ'ଣ ମୁଁ ଡରୁଚ ? ନାଇଁ,"—ଚୋକିନା ଓଲଟା ଜବାବ ଦେଲା ମତେ । ସଙ୍ଗେ ସଙ୍ଗେ କଳୁ ଗରଗର ହୋଇ, ମୁହଁ ଫଣଫଣ କରି କହିଲା—"ନା, କହିବ ନାହିଁ, ମୁହଁରେ ତା'ର କହିବ ନାଇଁ କେବେହେଲେ । ହୁଏତ ପ୍ରକୃତରେ ସେ ଡାହାଣୀଟାଏ, କଞ୍ଚାଖାଇ ଡ଼ାହାଣୀ ।"

ସବୁବେଳେ ପୂଣା, ସବୁବେଳେ ଇଘି ଇଘି ସମସ୍ତଙ୍କୁ, ଚଡ଼ଚଡ଼, ଫଅଁ ଫଅଁ ଗାରୁଗାରୁ ସ୍ୱରରେ—ଘନ ଛାରି ପ୍ରକୃତଟା ମତେ ଯେ ଅନ୍ୟ କାହା ତୁଳନାରେ ଅଧିକା କିଛି ଦସ୍ତାମାସ୍ତା ଦେଖାଉଥାଏ, ଏମିତି ନୁହେଁ । ସକାଳ ଛଅଟାରେ ପାଦରେ ତା'ର ହଲେଇଦେଇ, କୋଞ୍ଚ୍ ଦିଏ, କୋଞ୍ଚ୍ ଦିଏ, ଠେଲିଦିଏ, ପାଟିକରେ—

"କେତେ ଘୁଙ୍ଗୁଡ଼ିମାରିବୁ ରେ କେତେ ? ଯା, ଜାଳେଣି ଆଣ ଯା ଉଠାଚୁଲ୍ଲୀ ଲଗାଇ ପାଣି ତତାଯା । ଆଳୁରୁ ଚୋପାଛଡ଼ା ଯା ।"

ସାଣା ବି ଉଠିପଡ଼େ ତା'ପାଟିରେ, ତା'ଡାକହାକରେ ।

"କାହିଁକି ଏମିତି ଆକାଶଛୁଡ଼ା ପାଟିଟାଏ କରୁଚୁ ଲୋ ଝିଅରରୁ!" କେକେଇଁଆ କୁକୁରଆ ସ୍ୱରରେ କହିଦିଏ ସାଣା, "ରଃ, କହିଦେଉଚି ଯେ ମାଲିକକୁ ମତେ ଶୁଆଇଦେଉନୁ କେମିତି ତୁ ।"

ଉଜାଗରରେ ରାତିଯାକ, ଲାଲପଡ଼ିଥାଏ, ଜଳୁଥାଏ ଆଖିଦି'ଟା ରାନ୍ଧୁଣୀର । ସେଥିରୁ ଦୃଷ୍ଟିଟାଏ ଚମକେଇ ଛୁଟିଦିଏ ତା' ଆଡ଼କୁ, ତରବରରେ ରୋଷଘରେ ତା'ର ହାତଥାଳଟାକୁ ଘୁଞ୍ଚେଇ ନେଉ ନେଉ ଆଉ ଗୋଟାଏ ଠାଅଁକୁ ।

"ଫଃ । ବିଶ୍ୱକର୍ମାର ଭୁଲରେ ତୁ ! ମୋ ସାବତପୁଅ ହୋଇଥିଲେ ବି ଅଁଳାକରି ତତେ କେଞ୍ଚାଟାଏ, ଖୁଞ୍ଚାଟାଏ କ'ଣ ଦେଇ ନ ଥାନ୍ତି ମୁଁ ।"

"ଦୂରଃ ବୁଢ଼ୀ ! ଯମ ଖାଉ ଲୋ ତତେ ।" ଗାଳିଦିଏ, ପାଟିକରେ ଏଁଳଟି ସାଣା । ପରେ ଦୋକାନକୁ ଯିବାବାଟରେ କହେ ମତେ "ରଃ ତାକୁ ଏଠୁ ହାକଲେଇ ଦେଉଛି, ତଡେଇ କରିଦେଉଛି, ରଃ ! ଗୃହିଁ ନ ଥିବ ଯେତେବେଳେ, ଲୁଣ ପକେଇ ଦେବ ଖାଇବା ଜିନିଷରେ—ସବୁ ଲୁଣିଆ ହେଲେ ପ୍ରତ୍ୟେକ ଥର, ତାକୁ ବାହାର ନ କରି ଯିବେ କୁଆଡ଼େ ସେମାନେ ? ନଇଲେ କିରାସିନ ଢାଳିଦେବ ରଃ । ଅଃରେ ତୁ କରୁନୁ ଯା—ତୁ କାହିଁକି କରୁନୁ ଯେ ?"

"ତୁ କରୁନୁ କାହିଁକି ?"

"ଛେଃ, ଡରକୁଳାଟା ।" ଫୁଁଫୁଁ ହୁଏ ନାକ ଫୁଲେଇ, ଘୁଷୁରି ଭଳି ସାଣା ।

ଦିନେ ଆମ ଅଖି ଆଗରେ ଠିକ୍ ଠକ୍କିନ ମରିଗଲା ରାନ୍ଧୁଣୀଟି । ଉଠା-ଚୁଲ୍ଲିଟାକୁ ଟେକିବାପାଇଁ ସେ ଥରଟିଏ ମାତ୍ର ନଇଁ ପଡ଼ିଥିବ, ଟଳିପଡ଼ିଲା ହଠାତ୍ । କିଏ ଯେମିତି ଠେଲିଦେଲା ତା'କୁ ଛୁଡରୁ, ଟଳିପଡ଼ିଲା ମେଞ୍ଚାଟିଏ ହୋଇ । ହାତ ଦୁଇଟାକୁ ଲମ୍ବେଇ ଦେଇ ଦି'ପଟରେ, ପାଟିରୁ ତା'ର ଗୋଟିଏ କଣରୁ, ଥୋପି ଥୋପି ହୋଇ ଝରି ସୃଷ୍ଟି ହୋଇଗଲା ରକ୍ତ ଧାରୁଟିଏ ।

ସଙ୍ଗେସଙ୍ଗେଇ ଦୁହେଁ ଯାକ ବୁଝିପାରିଲୁ ଆମେ—ଚାଲିଗଲା ରୋଷେୟାଣୀ ଭୟରେ କାନ୍ଦୁ ଡାକୁଇ ଅନେକ ରହିଲୁ କୁକୁରକାକର ହୋଇ । ଶେଷରେ କେତୋଟି ମୁହୂର୍ତ୍ତ ପରେ ସାଣା ଧାଇଁଗଲା ବିକଳରେ ରୋଷେଇଘର ଭିତରୁ ବାହା-ରକୁ । କଣ କରିବ କିଛି ବାଟଘାଟ ଦିଶୁ ନ ଥାଏ ମତେ । କିଛି ଠିକ୍ କରି ନ ପାରି ଥଳିହୋଇ ଆଉଜିପଡ଼ିଲି ଝରକା-ପାଖଆ ଦେହରେ, ରାସ୍ତା ଆଲୁଅ ଆଡ଼କୁ ।

ମାଲକ୍ ଆସିଲା । ଗ୍ରେପେସ୍ୱାଣୀ ପାଖରେ ଲେପ୍‌ଟେଇ ଟିକେ ଆଣ୍ଟେଇକରି ବସିଲା ଉଦ୍‌ବେଗରେ । ଟିପଦେଲା, ତା'ର ମୁହଁରେ ହାତ ବୁଲେଇଲା, କହିଲା—

"ଆଃ ମରିଯାଇଚ ଠିକ୍ । କଣ ? ତମେ ସବୁ ଭାବୁଚ କ'ଣ ମରିନାହିଁ ?"

ଘର କୋଣରେ ଥାଏ ଯୀଶୁଙ୍କ ଚିତ୍ରପଟ । ସେଇ ଚିତ୍ରପଟରେ ଅଲୌକିକ ସାଧକ 'ନିକୋଲାସ'ର ଶ୍ରେଷ୍ଠ ପ୍ରତିମୂର୍ତ୍ତିଟିକୁ ମୁହଁ ବୁଲେଇ ଅନେଇଲା .ମାଲିକ । ତା'ପରେ କୃଶଚନ୍ଦ୍ର ଆଙ୍କି ଲାଗିଗଲା ଛାତରେ ନଜର । ପ୍ରାର୍ଥନା ସାରି, ବାଟଘର ଆଡକୁ ଅନେଇ ଡାକିଲା—

"କ୍ୟାଥିରିନ୍, ଦୌଡ଼୍ ପୁଲିସକୁ କହିଆ ଯା ।"

ପୁଲିବାଲାଟିଏ ଅସିଲା, ନସରପସର ହେଲା, ପକେଟରେ ରୁବଲଟିଏ ପୂରେଇଲା, ଚାଲିଗଲା କୁଆଡ଼େ, ଫେରିଲା ଟିକକପରେ, ଗୋଟାଏ ମାଲବୁହାଗାଡ଼ି ବା ବୋର୍ଡ଼ ଆଣିଏ ନେଇ ସାଥିରେ । ଗ୍ରେଷେସ୍ୱାଣୀକୁ ମୁଣ୍ଡଆଡ଼ୁ ଗୋଡ଼ଆଡ଼ୁ ଧରି ସେମାନେ ବୋହି ବାହାର କରିନେଲେ ପଦାକୁ । ମାଲିକର ଭାରିଯା ଦୁଆରବାଟେ ଗୁହିଁଦେଲା, ଡାକ ହୁକୁମ ଦେଲା ମତେ—

"ଭଲକରି ଘଷିଘାଷି ଧୁଅ ଚଟାଣଟାକୁ !"

"ଯାହାହେଉ ଭଲ ହେଲା ; ସଞ୍ଜ ସଞ୍ଜ ଚାଲିଗଲା ଗନ୍ଧୁଣୀଟା ।" ଦେଖିଚ୍ଛିହିଁ ମତଟା ପ୍ରକାଶ କଲା ମାଲିକ ।

ବୁଝି ପାରିଲି ନାହିଁ, ଭଲ ହେଲା କେମିତି !

"ଇରେ, ନଭେଇଦେ" ନା ରେ, ଆଲୁଅ ନଭେଇଦେଏନା ! ଶୋଇବା ପାଇଁ ବିଛଣା ଧରିଥାଉଁ କ ନାହିଁ ମୂର୍ତ୍ତିଟିଭଳି ହୋଇ ତା'ଠି ନାହିଁ ନ-ଦେଖା ଲୁଆଁଣିଆ ମିଞ୍ଚାସରେ ଅତି ବନସ୍ବରେ କହିଲା ସାଶା—

"ଡର ମାଡୁଚି ?"

ମୁଣ୍ଡଟିକୁ ଘୋଡ଼େଇ ଦେଇ କମ୍ବଳରେ ତୁନି ହୋଇ ପଡ଼ିରହିଲା ଅନେକ ସମୟ । ରାତଟି ବି ରହିଲା ତୁନି ହୋଇ ! ସତେ ଯେମିତି କାନ ଡେରି ଶୁଣିଲା ସବୁ କ'ଣ, ଅପେକ୍ଷା କଲା କ'ଣ କିଛି ଘଟିବ, ବା । ମନେ ହେଉଥାଏ, ଆଉ ମୁହୂର୍ତ୍ତିରେ ଠିକ୍ ଠଣଠଣ ବାଜିଉଠିବ ଘଣ୍ଟାଗୁଡ଼ାକ, ସହରଟାଯାକର ସମସ୍ତେ ବାଇବିଛ ହୋଇ ଧାଇଁବାକୁ ଆରମ୍ଭ କରିଦେବେ ; ଭୟରେ ପାଗଳ ହୋଇ ଡ଼ାକ ପକେଇବେ ହାଉହାଉ କରି ।

"ଆ, ଚୁଲ୍ଲୀ-ପଟା ଉପରେ ଶୋଇବା ଆ !" କମ୍ବଳତଳୁ ନାକଟିକୁ କାଢ଼ି ଥରକର ନରମେଇ କେବଳ ସୂଚେଇଲା ସାଶା !

"ଚୁଲ୍ଲୀ ଉପରଟା ଗରମ ଖାଲି !"

ପୁଣି ଚୁପ ପଡ଼ିଲା ସାଶା !

"ଏଃ, ହଠାତ୍ କେମିତି ଗୁଲିଗଲା ମ ସେ ସତେ ! ନାହିଁ ?" ଶେଷରେ ପାଟି ଫିଟାଇଲା ସାଶା—"ମୁଁ ଭାବୁଥିଲି କ'ଣ ନା ଡାହାଣୀଟାଏ ସେ ! ନାହିଁରେ ଶୋଇପାରୁନି, ନିଦ ହେଉନିରେ ମୋଟେ !"

"ମୋର ବି !"

ଗପିବାକୁ ଲାଗିଲା ବର୍ଣ୍ଣନା କରି କରି—ମଲା ମଣିଷସବୁ ସେମାନଙ୍କ କବର ଭିତରୁ ଉଠନ୍ତି, ବାହାରନ୍ତି କେମିତି । ନିଜ ନିଜର ଘରଦ୍ୱାର ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବଙ୍କୁ ଲୋଡ଼ି, ରାତିଅଧ ଯାଏ, ପାହାନ୍ତା ପହର ଯାଏ ସହରଯାକ ବୁଲନ୍ତି କେମିତି ।

"ମଲା ଲୋକଙ୍କ ଖାଲି ମନେରଖନ୍ତି ମ ସହରଗୁଡ଼ିକୁ—" ଧିର୍ ଧିର୍ କରି କହିହେଲା—"ରାସ୍ତାଘାଟ, ଘରଦ୍ୱାର—ଆଉ କିଛି କଣ ତାଙ୍କର ମନେ ରହେ ?"

ଲାଗିଲା, ଚାରିଆଡ଼ୁ ଆହୁରି କେମିତି ବେଶି ନିସ୍ତବ୍ଧ ହୋଇ ଆସୁଛି, ଅନ୍ଧାରଟା ଆହୁରି ବେଶି ଘୋଟି ଘୋଟି ଆସୁଛି, ଜମାଟ ହୋଇଯାଉଛି । ମୁଣ୍ଡ ଟେକିଲା ସାଶା ।

"ଦେଖିବୁ କରେ, ସିନ୍ଦୁକ ଭିତରେ ମୋ କ'ଣ ଅଛି ?" ପଚାରିଲା ଚୁପ୍‌କିନି !

ଆଗରୁ ଅନେକ ଥର ଆଶ୍ଚର୍ଯ୍ୟ ହୋଇ ଭାବୁଥାଏଁ—ଜାଣନ୍ତି କି କ'ଣ ସବୁ ଲୁଚେଇ ରଖିଛି ସାଶା କାଠପେଡ଼ିଟା ଭିତରେ । ସବୁବେଳେ ତ ତାଲା ପକେଇଥାଏ ସେ ସେଥିରେ । ଆଉ ଖୋଲୁଥାଏ ଯେତେବେଳେ, ଖୋଲୁଥାଏ ଅତି ବେଶି ସତର୍କତାର ଢଙ୍ଗ ଦେଖାଇ । କେତେବେଳେ ଟିକେ ଉଙ୍କି ମାରି ଦେଖିବାକୁ ଚେଷ୍ଟା କଲେ ଭିତରଟାକୁ, ଅତି ରୁକ୍ଷଭାବରେ କହିଉଠୁଥାଏ ସେ—

"ହେଇକ୍,ରଃ ! କ'ଣ ଦେଖୁଛୁ ସେମିତି ?"

ଏବେ ମୁଁ କହୁଲ ଯେତେବେଳେ ଦେଖିବାକୁ ମନ ହେବ ନାହିଁ କାହିଁକି କାହାର, ଉଠିବସିଲା ସେ ବଛଣା ଉପରେ—ତା'ର ସ୍ୱାଭାବିକ ହୁକୁମଦଆ ଉଦ୍ଧତ ଭଙ୍ଗୀରେ ହୁକୁମ ଦେଲା ମତେ, କାଠପେଡ଼ିଟାକୁ ଆଣି ତା'ଗୋଡ଼ ପାଖରେ ରଖିବା ପାଇଁ । ଗଳାରେ ତା'ର, ଚେନ୍‌ରେ ପାଞ୍ଚାନ୍ନଆ ଚାବି ଗୁଚ୍ଛିଟି ପାଖରେ ଝୁଲୁ-ଥାଏ ସବୁବେଳେ । ଘୋଷେଇଘର ଅନ୍ଧାରକୁ ଅନେଇଦେଇ, ଆଖି ବୁଲେଇଆଣି ସବୁଆଡ଼ରେ, ଗୁରୁତ୍ୱର ସହିତ ଗମ୍ଭୀର ହେଲା ସେ, ଖସ୍‌ଖସ୍ କରିଦେଲା ମୁହଁଟିକୁ । କାଠପେଡ଼ିରୁ ତାଲାଟିକୁ ଖୋଲି ଦ'ଥରତିନିଥର ଫୁଙ୍କିଲା ଯୋଡ଼ଣିଟିକୁ—ସତେ ଏତେ ତାଡ଼ ଥିଲା ଯେମିତି ! ଶେଷରେ ପେଡ଼ି ଫିଟାଇ ସେଥିରୁ ଟାଣି ବାହାର କରିଆଣିଲା ଅନ୍ତର୍ବାସ କେତୋଟି

ଆଡ଼େଇ କରି ରହିଲି, ପେଡ଼ିଟାରୁ ଅଧେ ପୂରିରହିଥିଲା ଔଷଧ ବଟିକା ଖୋଳରେ, ପୁରୁଣାପୁଡ଼ିଆ ଉପରର ଚକ୍‌ଚକ୍ କାଗଜ, ଲୁଣିଖାଇଥିବା ମାଛ ଓ କୋଡ଼ା କାଳିରଖା ଖାଲି ଟିଣରେ ।

"ସେସବୁ କ'ଣ ଯେ ?"

"ରହ, ଦେଖିବୁ, ରହ !"

ପେଡ଼ିଟାକୁ ଚିପିଧରି ଗୋଡ଼ ଦୁଇଟି ମଝିରେ ନଇଁପଡ଼ି ତା' ଉପରେ ଗୁମ୍‌ଗୁମ୍ ହେଲା ନିଶ୍ୱାସ ରୋକିନେଇ—

"ସ୍ୱର୍ଗରେ ଥାଇ ହେ ଈଶ୍ୱର······"

ଆଶା କରି ବସିଥିଲି, ଦେଖିବି ଖେଳଣାଗୁଡ଼ିଏ । ନଜର ବୋଲି କେବେ ହେଲେ ତ ଗୋଟିଏ ଖେଳଣା ନ ଥିଲା ମୋର କି ପାଇ ନ ଥିଲି କେଉଁଠି ଜୀବନରେ । ବାହାରକୁ ସେଗୁଡ଼ିକୁ ଦେଖାଇବା ଦୃଷ୍ଟିରେ ନିତାନ୍ତ ଶ୍ରେଷ୍ଠ ଜିନିଷ ବୋଲି ଦେଖୁଥିଲେ ବି ଯେଉଁମାନଙ୍କ ଖେଳଣା ଥିଲା ; ସେହିମାନଙ୍କ ପ୍ରତି ଗୋପନରେ ଈର୍ଷାପୋଷଣ କରୁଥିଲି ମନରେ । ଯାଶାଟା ସଯତ, ଧୀର ପ୍ରକୃତିର । ଖେଳଣା-ଗୁଡ଼ିଏ ରଖିଥିବ ନିଶ୍ଚୟ—ଏଇ ଧାରଣାଟା ଭଲ ଲାଗୁଥାଏ । ସତ କହିଲେ, ଅତି ବେହିଆ ଭାବରେ ସେଗୁଡ଼ିକୁ ଗୋପନରେ ରଖିଥିଲା ଯାଶା । ତଥାପି ତାର ଲାଜଲାଜପଣ ଭାରି ମନକୁ ପାଇଲା ମୋର ।

ପହିଲି ବାକ୍‌ସଟି ଖୋଲି ସେଥିରୁ ସେ ବାହାର କଲା ଚଷମା ଫ୍ରେମ । ତାକୁ ଲଗେଇ ମୋ ଆଡକୁ ଚାହିଁଲା କଠୋରଭାବରେ, କହିଲା—

"ଦେଖ୍ କାଚ ନାହିଁ, ଭାଙ୍ଗିଯାଇଛି, ଯାଏ ଆସେ କଣ ? ଏଇ ତ !

ଏମିତି ସ୍ତ୍ରୀକୁ ପିନ୍ଧିବା କଥା ।"

"ଦେଲୁ ଟିକେ ମୁଁ ଅନାଏ ତା' ଭିତରୁ !"

"ହୁଁ, ତୋ ଆଖିକି ମାନିବ ନାହିଁବେ । ସ୍ତ୍ରୀ ପାଇଁ ଲୋଡ଼ା କଟିମିଟିଆ ଗାଢ଼ କଳା ଆଖି । ତୋ ଆଖି ତ କେମିତି ପତଳା ହାଲୁକା ରଙ୍ଗର ।" ଏମିତି ହସାଣ୍ଟ ଲୋକ ଭଳି ଗଳାଖଙ୍କାର ଅଗ୍ରୁନକ ସ୍ୱରରେ ଏତେ ଜୋରରେ ବଡ଼ ପାଟି କରି ବୁଝେଇ ବସିଲା ଯେ, ରେଣ୍ଟପରେ ଗୃହଆଡ଼କୁ ଗାର ଭଳି ଦୃଷ୍ଟି ପକେଇବାକୁ ଲାଗିଲା ନିଜ ପାଟିରେ ନିଜେ ଡରିଯାଇ ସେ ।

କାଳିଟିଣ ଭିତରୁ ଗୋଟିକରେ ଭରପୂର ହୋଇ ରହିଥିଲା ବନ୍ଧେ ବୋତାମ ।

"ପାଇଛି, ସବୁ ରାସ୍ତାରୁ ପାଇଛି, ବୁଝିଲୁ !" ଗର୍ବରେ ଗ୍ରୀବ ଫୁଲେଇ କହିହେଲା ସାଣା—"ଏକୁଟିଆ ନିଜେ ନିଜେ ମୁଁ !—ସଇଁ ଜିଣିଛି !"

ତୃତୀୟ ବାକ୍ସଟିରେ ଥିଲା ପିତ୍ତଳର କେତୁଟା ବଡ଼ ବଡ଼ ପିନକଣ୍ଟା; ସେତକ ବି ମିଳିଥିଲା ରାସ୍ତାରୁ । ଜୋତାକଣ୍ଟା, ଜୋତା-ବକ୍‌ଲସ—ବ୍ୟବହାର ହୋଇ-ସାରିଥାଏ ସେତକ, ଭଙ୍ଗାଟୁଟା ଅଧିକାଂଶ, କେଇଟା ଅଟୁଟା ବା ପିତ୍ତଳର ଦୁଆରମୁହଁ କୁହୁଣ୍ଡା ଆଉ ଗୋବ, ମାଇପିଙ୍କ ଚରୁଣୀ ଗୋଟାଏ, "ସ୍ୱପ୍ନକଥା ଆଉ ଭାଗ୍ୟକଥନ" ବହିଖଣ୍ଡେ, ଆଉ ଆଉ ସମାନ ଏମିତିକା ରୂପଗୁଣର, ଏମିତିକା ମୂଲ୍ୟର ଜିନିଷ ।

ମୁଁ ଯେତେବେଳେ ଏଣେତେଣେ ବୁଲି ବାଟଘାଟରୁ ବାଛିବୁଛି ଆଣୁଥିଲି ଛିଣ୍ଡା କନାକବାଟି, ହାଡ଼ଫାଡ଼ କେତେ କ'ଣ, ସେତେବେଳେ ଗୋଟିଏ ମାସରେ ଗୋଟେଇ ପାରିଥାନ୍ତି ଏମିତିକା ଅମୂଲ୍ୟ ଅଳିଆ ଆବର୍ଜନା ଦଶଗୁଣ । ସାଣାର ଧନସମ୍ପଦ ଦେଖି, ତା'ର ସଞ୍ଚିତ ଭଣ୍ଡାରକୁ ଅନେଇ ହୃଦୟ ମୋର ପୂରିଉଠିଲା ଦୁଃଖରେ, ହତାଶାରେ, କେମିତିକା ଗୋଟାଏ ବିରକ୍ତିରେ । ବିବ୍ରତ ହୋଇପଡ଼ିଲି ଯେମିତି ! ତା' ପ୍ରତି ଦୟା· ଆସିଲା ଖୁବ୍ । ମନରେ ଟିକିନିଖି କରି ପରଖିନିରେଖି ଦେଖୁଥାଏ ପ୍ରତ୍ୟେକ ଜିନିଷକୁ ; ଆଙ୍ଗୁଠିରେ ଛୁଇଁଛୁଇଁ ଆଉଁସୁଥାଏ ସ୍ନେହରେ, ଆଦରରେ । ତା'ର ବହଳିଆ ମୋଟା ଓଠଦୁଇଟି ଚପିଚପି ହେଉଥାଏ ହାକିମିଆ ବଡ଼ଲୋକୀ ଭିତରର ଅନଧିକାର ଝର୍ଚ୍ଚାରେ ; ଡ଼ୋଳାଦୁଇଟି ବାହାରି ପଡ଼ୁଥାଏ ମଧୁର ମମତାଭରା ଏକାନ୍ତ ଉତ୍କଣ୍ଠାମୟ ପ୍ରୟାସରେ । କିନ୍ତୁ ଚାଁଦମାହାଳକରେ ପିଲିଳିଆ ମୁହଁଟା ତା'ର ଦିଶୁଥାଏ କିମ୍ଭୂତକିମାକାର !

"ସେ ଜିନିଷଗୁଡ଼ାକ ରଖି କଣ କରିବୁରେ ତୁ ?"

ଚଷମା ଫ୍ରେମ ଭିତରୁ ମୋ ଉପରେ ହାଲୁଆ ଦୃଷ୍ଟି ପକାଇ ଗଭୀରଭାବରେ ତା'ର ବୟଃସନ୍ଧି ବେଳର ଦରଦର ଫଟା ଗଳାରେ କହିଉଠିଲି ସେ—

"ତୋ ଇଚ୍ଛାଟା, କିଛି ଦେବ ମୁଁ ତତେ, ନାହିଁ ?"

"ନା, ଧନ୍ୟବାଦ !"

ମୁହୂର୍ତ୍ତେ ଚୁପ ରହିଲି, କିଛି ଉତ୍ତର ନ ଦେଇ । ମନା କରିଦେଲି ମୁଁ, ଆଗ୍ରହ କି ଅନୁରାଗ ଦେଖାଇଲି, ନାହିଁ ତା'ର ଅମୂଲ୍ୟ ଧନଦରବ ପ୍ରତି । ଜାଣିପାରିଲି, ମନେମନେ ଆହତ ହେଲା ସେଥିରେ ।

"ଆଣ୍, ଆଗ ତଉଲିଆଟା ଆଣ୍ ଆଗ, ସବୁ ଚକ୍‌ଚକ୍ କରିଦେବା ଏଇକ୍ଷିଣି ।" ତା'ପରେ କଥାଟି ଏଇ ବାଢ଼ିବସିଲା ପାଖରୀ—"ଏଃ, ଧୂଳି ଜମିଯାଇଚି ସବୁଥିରେ ।"

ଘଷାମଜା ପାଇ ଚକ୍‌ଣ ଆଉ ଚକ୍‌ଚକ୍ କରି ରଖାହେଲା ପରେ ନାଧସମ୍ପତ୍ତିତକ କାନ୍ଥ ଆଡ଼କୁ ମୁହଁ କରି କଡ଼େଇ ହୋଇ ଶୋଇଲା ପାଖ । ବାହାରେ କେତେବେଳେ ଅରମ୍ଭ ହୋଇଯାଏଥାଏ ବର୍ଷା । ଝରକାରେ ପିଟିହେଉଥାଏ ପବନ ।

"ରଃ, ଅପେକ୍ଷା କର ! ବଗିଗୁ ମାଟିଟା ଶୁଖିଯାଉ କି ଏମିତି ଗୋଟାଏ ଜିନଷ ଦେଖାଇବି ତତେ, ଦେଖିଲେ ଆଖି ଖୋସିହୋଇଯିବ, ନିଃଶ୍ୱାସ ରୋକ ହୋଇଯିବ ତୋର ।" କରୁଣ ଲେଉଟେଇ, ମୁହଁ ନ ବୁଲେଇ କଣେଇ ହେଲା ସେ ଗୁଆଁ କୁଗୁଆଁ ।

କିଛି ଜବାବ ନ ଦେଇ ଗୁରୁଣ୍ଡି କରି ଯାଇ ଲମ୍ବେଇଦେଲି ନିଜକୁ ଅଗଣାରେ ।

ସେକେଣ୍ଡ କେଇଟି ପରେ ହଠାତ୍ ସେ ସଳଖହୋଇ ତାଆଁ ଟାଏ ମାରି ଛିଟିପଡ଼ିଲା ; କାନ୍ଥଟାକୁ ଅଣ୍ଡାଳି ଲାଗିଲା ଠାଆକୁ ଠାଆ, ଧରିବାକୁ ବାହାରିଲା ମୁଠା ମୁଠା କରି, ନଖରେ ଆଞ୍ଚୁଡ଼ି ଆଞ୍ଚୁଡ଼ି ! ଏମିତିକା ଗୋଟାଏ ସ୍ୱରରେ କହିଲା ଯେଉଁଥିରୁ ଜଣାପଡ଼ିଲା, ତା'ର ହୃତ୍‌ପିଣ୍ଡଟା ପାଣି ଫାଟିଯାଉଛି ଡରରେ !

"ମତେ···ମତେ ଡର ମାଡ଼ୁଛି······ହେ ଠାକୁରେ, ହେ ପ୍ରଭୁ, ଏ କି ଡର, ଏ କି ଡର ! ରକ୍ଷା କର, ଦୟାକର ହେ ପ୍ରଭୁ······"

ମୋ ଦେହଟା ବି ହେମାଳିଆ ହୋଇଆସିଲା ଡରରେ । ଲାଗିଲା, ସତେ ଯେମିତି ପ୍ରେତାତ୍ମାଣୀଟା ଝରକା ପାଖରେ ଆସି ଠିଆହୋଇଛି ମୋ ଅ...

ପିଠି କରି, କପାଳଟାକୁ ଝରକା କାଚରେ ମାଡଦେଇ ଛିଡ଼ାହୋଇଛି, ଯେମିତି ଛିଡ଼ା ହେଉଥିଲା ସେ ଠିକ୍, ଲୁକୁଡ଼ାଲଢ଼େଇ ଦେଖିଲାବେଳେ ।

ସୁଁ ସୁଁ, କଇଁକଇଁ ହୋଇଉଠୁଥାଏ ସାଶା—କାନ୍ଥଟାକୁ ଆମ୍ଭ ଗ୍ଭ ବାନ୍ଧାର ଅନ୍ଧା ପାଇଁ ମୁଠେଇବାକୁ ଯାଇ; ଗୋଡ଼ଦୁଇଟା ତା'ର କେମିତି କେମିତି ହୋଇ-ଯାଉଥାଏ ପିତ୍ତଳାମଗ୍ନ କମ୍ପରେ ଯେମିତି ! ରୋଷେଇଘରର ଗୋଟାଏ କୋଣରୁ ବିପରୀତ କୋଣକୁ ଆଡ଼ବାଗରେ ଡେରଗ୍ଭରେ ମୁଁ ଆଖିବୁଜି ବାହାରିଲି ଏକମୁହାଁ, ସତେ ଯେମିତି ତାଡ଼ିଲା କୋଇଲା ବଛେଇ ହୋଇ ରହିଥିଲା, ଦୌଡ଼ଗଲି କଲବଲ ହୋଇ ତା' ଉପରେ; ଦୌଡ଼ି ବା ଦୌଡ଼ିପାରିଲି କୋଉଠି ? ଗୁରୁଣ୍ଡି-ଗୁରୁଣ୍ଡି ଯାଇ ପହଞ୍ଚିଲି ତା'ପାଖରେ ।

କାନ୍ଦିଲୁ, ଦହେଁଯାକ ସୁଁ ସୁଁ ହୋଇ କାନ୍ଦିଲୁ—ଆମେ କାନ୍ଦି କାନ୍ଦି ଥକ୍କି ପଡ଼ିବାଯାଏ କାନ୍ଦିଲୁ—ଶୋଇପଡ଼ିଲୁ କେତେବେଳେ !

ଏହାର କିଛି ଦିନ ପରେ, ଥରେ ଆମକୁ କାମରୁ ଛୁଟି ମିଳିଥାଏ ବେଳାବେଳି······ଦି'ପହର ଯାଏ କାମ କରିସାରି ଫେରିଲୁ, ଫେରିଲୁ ଆମେ ଘରକୁ ଖାଇବାପାଇଁ । ମାଲିକ ଆଉ ତା' ଭାରିଯା ଦି'ପହରିଆ ନିଦରେ ଶେଯରେ ଗଡ଼େଇଉଡ଼େଇ ହେବାକୁ ଲାଗିଲେ ଘର ଭିତରେ ତାଙ୍କର । ସାଶା କେମିତିକା ଲୁଚିଗାରେଡ଼ିଆ ସ୍ୱରରେ ରହସ୍ୟଜନକ ଭାବରେ ଡାକିଲା ମତେ—

"ଆ, ଆ !"

ଅନୁମାନ କରିନେଲି, ସେ ମତେ ଦେଖାଇବାକୁ ଯାଉଛି ସେଇ ଜିନିଷଟି ଯାହା ଦେଖିଲେ ମୋ ଆଖି ଖୋସିହୋଇଯିବ, ନିଃଶ୍ୱାସ ବନ୍ଦ ହୋଇ ଯିବ ମୋର ।

ବଗିଗ୍ଭକୁ ଗ୍ଭଲିଲୁ—ଦୁଇଟି ଘର ମଝିରେ ସରୁଆ ହୋଇ ଲୋଲାଏ ବୋଲି ଭୂଇଁ । ସେଇଥିରେ କେଜାଣି କେଉଁକାଳର ମରିହଟି ଅମଳର ଦଶପନ୍ଦରଟା ଆଡାଗି ଗଛ; ବିଶାଳ ଗଣ୍ଠିଟିମାନରେ ଭୁମଭଳି ଫରୁଫରିଆ ଶିଉଳି, କାଳିଆ କାଳିଆ ବକଲ ନ ଥାଇ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ନିର୍ଜୀବଭାବରେ ଭୂଷିହୋଇ ରହିଥାଏ ଆକାଶରେ । ଗୋଟିଏ ହେଲେ ଚଢ଼େଇବସା ନ ଥାଏ କୋଉଥିରେ, କୋଉଠି । ସେଇ ଗଛଗୁଡ଼ାକ ବଢ଼ିକୁଡ଼ି ଉଠିଥାଏ ମଶାଣିରେ, କାରଖାନାରେ ବିରାଟ ବିରାଟ ସମାଧି ପରି । ବାଡାପି ଗଛ ଛଡା ଆଉ କୌଣସି ଗଛ ନଥାଏ ସେଠି-ବୁଦାଟିଏ, ଲଟିଟିଏ କି ଦୁବଘାସ କେରାଏ ନ ଥାଏ କୋଉଠି । ଚଲାବାଟର ମାଟିଟା ସାନ୍ଧିହୋଇ ପାଲଟିଯାଇଥାଏ ସତେ ଯେମିତି ଲୁହା, ସେମିତିକା ଟାଣ ଆଉ କଳା ! ଗଲାବର୍ଷର ପଗୁସଢ଼ା ଝଙ୍ଗାପତ୍ରଗୁଡ଼ାକ ତଳେ ତଳେ ଯେଉଁଠି ଦେଖା-

ଯାଉଥାଏ ଯେଉଁ ଚେନାଏ ମେନାଏ ମାଟି, ସେଇଠି ସେ ମାଟି ଉପରେ ଚକାଏ ଲେଖାଁ ଫିମ୍ପିର ବୋଲ, ସରୁ ସରୁ ଜାଆଁ ଭଳି ଟିକଟିକି, ପାଣିକୁଳିଆ ଓଦାଳିଆ ମାଟି ଉପର ଘାସ ପର ବାଟବୁଳା ମନ୍ଦାଏ ମନ୍ଦାଏ ପାଣି ଉପରେ ଶିଉଳିଆ ସର ପର ।

ଯାଣା ଘରକୋଣଟାକୁ ଗୁଡ଼ି ଗୋଡ଼ ବୁଲେଇ ଗୃକିଲ ଗ୍ରସ୍ତାକଡ଼ର ବାଡ଼ ଆଡ଼କୁ; ଛୁଟା ହେଲିଯାଇ ଗୋଟାଏ ଆଡାପି ଗଛ ମୂଳରେ ; ପନ୍ତଶାଗରର ଝରକାଟାକୁ ଏକଲପ୍ଯରେ ନଣଶି କର ଅନେକ ରହିଲ ମୁହୂର୍ତ୍ତେ ଖଣ୍ଡେ । ତା'ପରେ ପାଣ୍ଡିଆ ପକେଇ ବସିପଡ଼ି ହାତରେ ଖୋଳିଲାଗିଲ ପଜଗୁଡ଼ାକ । ଗୃହ୍ନ ଗୃହ୍ନ ଦେଖାଦେଲ ଗଣ୍ଡି ଗଣ୍ଡିଆ ଚେରଟାଏ, ତା'ପାଖରେ, ମାଟିଭିତରେ, ଗମ୍ଭିରରେ ଖୁବ୍ ଦ'ଖଣ୍ଡ ଇଟା । ଟାଣି ବାହାରକଲ ସେ ଇଟା ଦ ଖଣ୍ଡକୁ । ତା'ତଳେ ଥିଲ ଗୁଡ ଟିଣ ଗୃଦରରୁ ଚକୁଡ଼ାଏ । ସେ ଟିଣତଳେ ପୁଣି ଗୃରକୋଣିଆ ପଙ୍କା ଖଣ୍ଡେ ! ଶେଷରେ ଦେଖିଲ, ଚେର ତଳେ ତଳେ ଭିତରକୁ ଭିତର ପଶିଯାଉଛି ବଡ଼ଗାତ ଟାଏ ସୁଡ଼ଙ୍ଗ ପର ।

ଦିଆସିଲକାଠିଟାଏ ମାର ମୁଣ୍ଡି ମହମବତିଟିଏ ଜଳେଇଲ ଯାଣା । ତାକୁ ଗାତରେ ପୂରେଉ ପୂରେଉ କହିଲ—

"ଅନା ! ଡର ନା ।"

ଠିକ୍ ବାର ହେଉଥିଲ ଡରୁଥିଲ ସେ ନକେ ! ମହମବତୀଟା ଥରୁଥିଲ ତା' ହାତରେ । ଗୋଟିକିଯାକ ଶେତା ପଡ଼ିଯାଇଥାଏ ସେ । ଓଠହଲକ ଓହଲ ପଡ଼ିଥାଏ; ସବେ ଅବା ଫୁଗୁଳି ଆସୁଥାଏ ମୁହଁରୁ କେମିତି ଗୋଟାଏ 'ଅପ୍ରୀତକର' ଶବ୍ଦରେ ; ଆଖିଯୋଡ଼କ ଓଦା ଓଦା, ଛଳଛଳ କରୁଥାଏ ଲୁହରେ । ଯେଉଁହାତଟି ଖାଲିଥାଏ ତା'ର, ଯେଉଁଥିରେ କିଛ ଧର ନ ଥାଏ ସେ; ସେଇ ହାତଟିକୁ ଅସ୍ଥିର ଭାବରେ ଥରକୁ ଥର ବୁଲେଇ ଆଣୁଥାଏ ପିଠିରେ । ତା ଡରଟା ରୋଗ ଭଳି ସଞ୍ଚର ଗଲ ମୋ ମନରେ ବି । ଯେତେଦୂର ପାରେ ସାବଧାନ ହୋଇ ଅନେଇଲ ମୁଁ ଚେର ତଳକୁ ଗ୍ରେଟ ଗୋଟିଏ ପ୍ରତୀକ ଭୂମି ପାଇଁ ଯେମିତି ସେଇଟି ରଚନା କରଦେଇଥାଏ ଗ୍ରେଟ ଖିଲଣ ! ଯାଣା ଜଳାଇଦେଲା ଉନୋଟି ବତୀ । ଗାତଟି ପୂରଉଠିଲା ନେଳ ଆଲୁଅରେ । ଭୂମିଟି ଥାଏ ବାଲ୍ଟିଏ ଗଭୀର, କିନ୍ତୁ ବେଶ୍ ଓସାରିଆ । ତାର କାନ୍ଥଗୁଡ଼ିକରେ କାରୁକାମ ଭାବରେ ଖଞ୍ଜା ହୋଇଥାଏ ରଙ୍ଗୀନ କାଚ ଆଉ ଚୀନ୍‌ମାଟି ବାସନର ଟୁକୁରା । ମଝିରେ ଗୋଟିଏ ଉଚ୍ଚପିଣ୍ଡ ଉପରେ ଥାଏ ଗ୍ରେଟକଫିନ୍ ବା ଶବାଧାର ଗୋଟିଏ—ପତଳା ଟିଣ ପାତରେ ପଲସ୍ତରା ହୋଇଥାଏ ଯେମିତି । କମକୁଟ ସୂତା-ଝାଲର ଭଳି ଉଲୁରା କନା କପଡ଼ା ଟୁକୁରାରେ ଚ...

ହୋଇଥାଏ ଅଧାଅଧି । ଏହା ବେଢ଼ଣି ତଳୁ ବାହାର ପଡ଼ୁଥାଏ ଘରଚଟିଆର ପାଉଁଶିଆ 'ନାଙ୍ଗର' ପକ୍ଷୀ ଆଉ ଚଞ୍ଚୁଟା । ତା' ମୁଣ୍ଡ ପାଖରେ ଗ୍ରେଟ ଗୋଟିଏ ଟେବୁଲ, ସେଥିରେ ପିତ୍ତଳର ଟିକେ ପାତ୍ରା ତ୍ରିଭୁବନ ବେଲର ଲୁଣ । ତା'ର ତଳ ପାଖରେ ପାପଦାମାରେ ଜଳୁଥାଏ ମହମବତୀ । ସେଇ ପାପଦାମାଟି ସଜାହୋଇଥାଏ ମୁନେଲି ଭ୍ରୂପେଲ୍ କର କାଗଜରେ ।

ମସୃଣିଆ ମସୃଣିଆ ଶିଖାଗୁଡ଼ିକ ବତୀର, ନଇଁଆସୁଥାଏ ଗୁମ୍ଫାମୁହଁ ଆଡ଼କୁ ; ଗୁମ୍ଫା ଭିତରଟା ଠାଏ ଗୁଇଗୁଇଆ, ଅସ୍ପଷ୍ଟଭାବରେ ଚକ୍‌ଚକ୍ କରୁଥାଏ କେଉଁଠି କେମିତି, ଆଲୁଅଟା ଦିଶୁଥାଏ ବହୁବର୍ଣ୍ଣିଳ । ମୋ ନାକରେ ଗୋଟିକ ପରେ ଗୋଟିଏ କେଉ୍ ପର ଆସି ପିଟିହେଲା ମାଟିର, ଗରମ୍ ଚରମ୍ ତରଳା ମହମର ଆଉ ପଗୁସଢ଼ା ପନ୍ତରର ଗନ୍ଧ । ଆଖିଆଗରେ ତେଣେ ତେଉଁ ତେଉଁ ନାଚଲା, ଥରଥର ହେଲା ଭାଙ୍ଗି ଭାଙ୍ଗି ଛନ୍ଦଛନ୍ଦ ଗୋଟିଏ ଇନ୍ଦ୍ରଧନୁରେ ଝଲମଲ ବାଦ୍ଧସ । ଏଇସବୁ, ଏଇସବୁ, ଭସ୍ମକୁ ମୋର ପୋଛି ନଭେଇଦେଇ ମନରୁ ସୃଷ୍ଟି କରଦେଲା କେମିତି ଗୋଟାଏ ଉତ୍ପୀଡ଼କ ବନ୍ୟସ୍ତ ଭାବ !

"ସୁନ୍ଦର, ଝୁବ୍ !" ନାଇଁ ? ଜାଣିବାକୁ ଗ୍ରୁହିଁଲା ସାଣା ।

"କୋଉଥିପାଇଁ ଏ, ଏସବୁ ?"

"ଗୋଟାଏ ପବିତ୍ର ସ୍ଥଳୀଏ, ପୂଜାପୀଠ ଏ ।" ବୁଝେଇଦେଲା ସେ—"କ'ଣ ବିଶ୍ଳନ ସେମିତ ?"

"କେଜାଣି !"

"ଆଉ ଏ ଘରଚଟିଆ, ଶବ ଗୋଟାଏ ! ହୁଏତ ଗୋଟାଏ ଅଲୌକିକ ମନ୍ତ୍ର ଜାଣେ କେମିତ ଏହା ମରଛି—ନଦୋଷିବଳ ଭାବରେ ହୁଏତ – ଏହାର ଶବକୁ ପାଲଟେଇ ଦେବ ପବିତ୍ର ସ୍ମୃତିଚିହ୍ନ ରୂପରେ ।"

"ତୁ କ'ଣ ସ୍ଥା'କୁ ପାଇଥିଲୁ ମଲା ଅବସ୍ଥାରେ ?"

"ନା ! ଉଡ଼ିଆସିଥିଲା ଗୃଳଆ ଭିତରକୁ । ଟୋପିରେ ଧରପକାଇ, ଚପି-ଦେଇଥିଲି ଅଣନିଶ୍ୱାସୀ କରଦେଇ ।"

"କାହିଁକ ଯେ ?"

"ଏମିତ ଖାଲ ।"

ଚୁହିଁଲ ସେ ମୋ ଆଖି ଦୁଇଟାକୁ, ପଚାରିଲା ପୁଣି—

"କ'ଣ ରେ, ଖୁବ୍ ସୁନ୍ଦର ନୁହେଁ ଏଇଟି ?"

"ନା !"

ନଇଁପଡ଼ିଲା ଟିକିଏ ଗୁମ୍ଫା ଉପରେ । ଚଞ୍ଚଳ ଘୋଡ଼ାଇଦେଲା ପଟାଟି ତା' ଉପରେ, ରଖିଲା ଟିଣ-ପାତଟା । ଇଟା ଦ'ଖଣ୍ଡ ଥୋଇସାରି ଆଗ ଜାଗାରେ ଛିଡ଼ା ହୋଇ ଧୂଳି ଝାଡ଼ିଦେଲା ଆଣ୍ଠୁରୁ, ଦେହମୁଣ୍ଡରୁ । ସଙ୍ଗେ ସଙ୍ଗେ କହୁ କହୁ ଯାଉଥାଏ ରୁକ୍ଷ ଭାଷାରେ—

"କାଇଁକି ତତେ ଭଲ ଲାଗୁନାହିଁରେ, କାହିଁକି ?"

"ଦୁଃଖ ହେଉଛି ମନରେ ଘରଚଟିଆଟି ପାଇଁ ।"

ଶୂନ୍ୟ ଦୃଷ୍ଟିରେ ଲକ୍ଷ୍ୟ କରି ଗୁହିଁଲା ମତେ ସତେ ଯେମିତି ହଠାତ୍ ଅନ୍ଧ ପାଲଟିଗଲା ! ସେ ତାପରେ ଗୁଡ଼ରେ ମୋର କଷିଦେଲା ବିଧାଟାଏ ଜୋରରେ ପାଟି କରି କରି—

"ହଇରେ ବୋକା, ନିର୍ବୁଦ୍ଧିଆ ! ହିଂସୁକୁଟିଆ ତୁ ! ଈର୍ଷା ହେଉଛି ତୋର । ସେଇଥି ପାଇଁ କହୁଛୁ ତୁ—ଭଲ ଲାଗୁନି ତତେ—ଭଲ ଲାଗୁନି ଏସବୁ ! ହୁଏତ ମନେମନେ ଧରିନେଇଛୁ, ନାହିଁ ? କାନାତାନାସ୍ୱା ଷ୍ଟ୍ରୀଟରେ ତୋ ବଗିଗୃରେ ତୁ ଆହୁରି ସୁନ୍ଦର କରି ରଖିଛୁ ଏମିତିକା କିଛି, ନାଇଁ ?"

"ହଁ, ରଖିଛି, ତା ରଖନ୍ତି ନାହିଁ କାହିଁକି ?" ଦୋଦୋପାଞ୍ଚ ନ ହୋଇ ଉତ୍ତର ଦେଲି ଠୋ କିନା—ମନେ ପଡ଼ିଗଲା, ସେଇ ଯେଉଁ ନଗ୍ରୋଳା କୋଣରେ ବସାଟିଏ ବାନ୍ଧିଥିଲି, ନିଜ ପାଇଁ ।

ସାଶା ଦେହରୁ କାଢ଼ି ଫିଙ୍ଗିଦେଲା ତା'ର ଫ୍ରକ୍ କୋଟଟା । ଟେକିଟାକି ମୋଡ଼ିନେଲା କାମିଜର ଆସ୍ତିନ । ନିଜ ପାପୁଲିରେ ଛେପଲେଣ୍ଡାଏ ପକାଇ ଡାକ ମାରିଲା—

"ବେଶ୍ ତେବେ, ଆ ! ଲଢ଼ି ଠିକ କରିନେବା ଆ……!"

ଆଦୌ ଇଚ୍ଛା ହେଉ ନ ଥାଏ ଲଢ଼ିବାପାଇଁ । ସେ ସବୁ ଦେଖି କେମିତି କ୍ଳାନ୍ତିରେ, ବିରକ୍ତିରେ ଭରିଯାଇଥାଏ ମନଟା—ଭଲ ଲାଗୁ ନ ଥାଏ ମତେ । ମାଉସୀପୁଅ ଭାଇର ରାଗକୁ ସହ୍ୟ କରିପାରିଲି ନାହିଁ, ଅନେଇପାରିଲି ନାହିଁ ତା'ର ସେ କ୍ରୋଧରେ ପାଚିଲା ଲାଲ ମୁହଁଟାକୁ ।

ସେ ଧାଇଁ ଆସିଲା ମୋ ଆଡ଼କୁ, କୁଦିପଡ଼ିଲା ମୋ ଉପରେ—ଗୁଡ଼ରେ ଘୁଷି ପରେ ଘୁଷି ମାରି ମତେ ଚିତ୍‌ପଟାଙ୍ଗ କରି ପକେଇଦେଲା ତଳେ । ତା'ପରେ ପାଦ ଦ'ଟାକୁ ତା'ର ଫରକଟେଇ ଦେଇ ବସିପଡ଼ିଲା ମୋ ଉପରେ ।

"ଜୀଇଁବୁ ନା ମରିବୁ ?" ଚିତ୍କାର କଲା ଜୋରରେ ।

ତା'ଠୁଁ ବଳୁଆ ଥିଲି ମୁଁ । ଏଥର ତେଜିଉଠିଲି, ପ୍ରକୃତରେ ତେଜି-ଉଠିଲି, ଚିହିଁକି ଗଲି । ମିନିଟ୍‌କ ପରେ ଦେଖିଲି, ତଳେ ମୁହଁମାଡ଼ି ପଡ଼ିରହିଛି ସେ । ହାତଦୁଇଟା ରହିଛି ମୁଣ୍ଡ ଉପରେ—ମୁହଁ ମାଡ଼ି ଗଅଁ ଗଅଁ ହେଉଛି ଟାଲୁ ।

ଶଙ୍କିଗଲି, ଚେଷ୍ଟା କଲି ଉଠେଇବାକୁ ତାକୁ । ସେ କିନ୍ତୁ ଭଉଁଓଟାର ହୋଇ ବାଡ଼େଇପିଟି ହୋଇ ବାଧା ଦେଲା ମତେ । ସେଥିରେ ଆହୁରି ବେଶୀ ଆତଙ୍କିତ ହୋଇଉଠିଲି—ଘୁଞ୍ଚିଆସିଲି ତା' ପାଖରୁ, କ'ଣ କରିବି ଭାବିଚିନ୍ତି ନ ପାରି ।

"ଏଥର ପାଇଚି ତତେ ବାଗରେ,ଧରିଚି ତତେ ମାଲିକ ନ ଦେଖିବାଯାଏ, ଘୁଞ୍ଚୁନୁ ଏଠୁ ବୁଝିଲୁ, ଘୁଞ୍ଚୁନୁ ଏଠୁ ! ତା' କହିବି, ଫିଟେଇ କହିବି ସବୁ । ଦେବ ସେ ନିକାଲି ଦେବ ସେ ଏକାବେଳକେ !"

ପାଟି କରି କାଟିସିଁପି ଧମକେଇଲା ମତେ ! ସେଥିରେ କି ରକ୍ତ ଚଢ଼ିଚି ଯାଇ ନଥାନ୍ତା ମୋ ମୁଣ୍ଡରେ । ସତେ ଯେମିତି ପାଗଳ ହୋଇଗଲି ମୁଁ । ଦଉଡ଼ିଗଲି ଗୁମ୍ଫା ପାଖକୁ, ଝିଙ୍କି ବାହାର କରିଆଣି ଫିଙ୍ଗିଦେଲି ଇଟାକୁ ବାଡି ତାଆଁଇ, ଫୋପାଡ଼ିଦେଲି କଫିନକୁ, ଚଡ଼େଇକୁ, ଯାହା ସବୁ ଥିଲା ଭିତରେ ଖୋଳି ବାହାର କରି ଅଣି ଦଳିଦେଲି ମନ୍ଥିଦେଲି ପାଦରେ

"ହେଇ ହେଲା, ହେଇ ହେଲା ! ଦେଖ୍ ଏବେ ଦେଖ୍ !"

ମୋ 'ରାଗ'ରେ ତା'ର ପ୍ରତିକ୍ରିୟାଟା ଘଟିଲା ଅଦ୍ଭୁତ ପ୍ରକାର ! ସେ ଉଠିବସିଲା ଧୀରକିନା । ଅଳ୍ପ ଖୋଲି ହୋଇଗଲା ପାଟିଟି, କୁଞ୍ଚିହୋଇ ଉପରକୁ ଉଠିଗଲା ଭୂରୁଯୋଡ଼ିକ । କିଛି ନ କହି ଖାଲି ଅନେଇରହିଲା ମୋ ଆଡ଼କୁ । ମୋ କାମତକ ଶେଷ ହେଲା ପରେ, ଚଞ୍ଚଳରେ ନୁହେଁ, ଧୀରେସୁସ୍ଥେ ଉଠି ଧୂଳି ଝାଡ଼ିହେଲା ଦେହରୁ, ଜାମାପଟାରୁ । କାନ୍ଧରେ କୋଟ୍‌ଟି ପକାଇ, ସ୍ୱରରେ ଗୋଟାଏ ଭୟାବହତା ଆଣି କହିଲା ଶାନ୍ତ ଅବିଚଳିତ ଭାବରେ—

"ଏବେ ଦେଖିବୁ ଯେ ବୁଝିବୁ କ'ଣ କଣ ହେବ ! ରହ, ଅପେକ୍ଷା କର । ତୋ'ର ପାଇଁ ବିଶେଷକରି କରିଥିଲି ଏସବୁ । ଗୁଣିଗାରେଡ଼ି, ଡାହାଣୀ କାରବାର ଏ ! ଏବେ ଏଣିକି ?"

ତା' କଥାରେ ସତେ ଯେମିତି କଟାହେଲା ଗଛଭଳି ଟଳିଟଳି ହେଲି ମନେ ମନେ ମୁଁ । କୋହଲମାରି ଆସିଲା ଗ୍ରୀତ ଭିତରଟା । ଚାଲିଗଲା ସେ, ଏମିତିକି ପଛକୁ ଆଖି ଫେରାଇ ଥରେହେଲେ ଅନାଇଲା ନାହିଁ ମତେ । ତା'ର ସେହି 'ଶାନ୍ତ' ଗମ୍ଭୀର ଭାବଟା ମତେ ପୁରାପୁରି ଦବେଇ ଦଳି ଦେଇଗଲା ଯେମିତି !

ଠିକ କରିନେଲି, ତହିଁଆରଦିନ ପଳେଇବି ମୁଁ, ପଳେଇବି ସେଇ ସହରରୁ, ମାଲିକ ପାଖରୁ, ସାଣା ଆଉ ତା'ର ଗୁଣିଗାରେଡ଼ି ଡାହାଣୀ କାରବାରଠୁ ଦୂରକୁ, ସେଇ ଅର୍ଥହୀନ, ଅଜ୍ଞାନ, ନୀରସ, ନିଷ୍ପ୍ରାଣ, ଭୟଙ୍କର ଜୀବନ କ୍ଷେତ୍ରରୁ ।

ନୂଆ ଗ୍ରେପ୍ତେସ୍ୱାଣୀଟି ମତେ ତହିଁଆରଦିନ ବଡ଼ଭୋରରୁ ନିଦରୁ ଉଠେଇବାକୁ ଯାଇ ପାଟି କରି ଉଠିଲା—

"ହେ ମହାପ୍ରଭୁ ! ଏ କ'ଣ ହେଇଚିରେ ତୋ ମୁହଁ !"

"ଗୁଣିଗାରେଡ଼ିର କାମ !" ଭାବିଲି ସବୁ ସରିଗଲାଣି, ଶେଷ ମୁହୂର୍ତ୍ତ ଆସିଗଲା !

କିନ୍ତୁ ରୋପେସ୍ବାଣୀଟି ହସିଉଠିଲି ହୋ ହୋ ହୋଇ, ଏତେ ଜୋରରେ ଯେ ତା' ଆରଶିରେ ନିଜ ମୁହଁ ଟାକୁ ଦେଖିଦେଇ ମୁରୁକେଇ ଟିକେ ହସି ନ ପକେଇ ରହିପାରିଲି ନାହିଁ ମୁଁ । ମୁହଁ ଟାଯାକ ମୋର ବୋଲା ହୋଇଥାଏ ଆଙ୍ଗୁଳେ ବହଳ କଳା, ହାଣ୍ଡି କଳା କି କଣ !

"ସାଣା କରୁଛ ନା ?" ପଚାରିଲି ତାଙ୍କୁ !

"ହଁଏତ ମୁଁ !" ପୁଣି ସେମିତି ହୋ ହୋ ହୋଇ ହସିଲି ରୋପେ-ସ୍ବାଣୀଟା ।

ପାଲ୍‌ସ୍ କରି ବସିଲି ଜୋତାହଳକ । ପଟେ ଜୋତାରେ ହାତ ପୂରେଇଲି-ମାତେ ପିନ୍ କଣ୍ଟାଟାଏ ଗଳିଗଲା ସେଥିରେ ।

ପିନ୍‌କଣ୍ଟା ଆଉ ଛୁଞ୍ଚିସବୁ ଲୁଚି ହୋଇଥିଲା ପ୍ରତ୍ୟେକ ଜୋତାରେ, ଆଉ ଖଞ୍ଜା ହୋଇଥିଲା ଏମିତି ଚତୁରତାରେ, ଯେମିତି ହେଲେ ଗଳି ଯାଇଥାନ୍ତା ମୋ ହାଡ଼ ଭିତରେ, ମାଉଁସରେ । ଥଣ୍ଡା କାଲୁଆ ପାଣି ଢାଳେ ନେଇ, ଚୁପ୍‌ଚୁପ ଯାଇ ସନ୍ତର୍ପଣରେ ଅଜାଡ଼ିଦେଲି ସେଇ 'ଗୁଣିଆ', ସେଇ ଯାଦୁକର ମୁଣ୍ଡରେ । ସେତେବେଳେ ଯାଏ ଶୋଇଥାଏ ସେ, କି ଶୋଇବାର ଛଳନା କରିଥାଏ କେଜାଣି ।

ଏହା ସତ୍ତ୍ୱେ ମତେ ଆଉ କିଛି ସୁଖ ଲାଗିଲା ନାହିଁ ଏଣିକି । ମନରୁ ମୋର ଦୂର କରିପାରିଲି ନାହିଁ କଫିନ୍ ବା ଶବାଧାରର ସେହି ଦୃଶ୍ୟଟା—ହେଇ ସେଥିରେ ଶୋଇଛ ସେଇ ପାଉଁଶିଆ ଲୋମ୍ବକୋମ୍ବ 'ଫଷ୍ଟା'ର, କରୁଣ କେଡ଼େ ଗ୍ଲେଟ ଶେତାଳିଆ ଚଞ୍ଚୁରୁ ଘରଚଟିଆଟି, ଘୁରିପାଖରେ ଝିଲ୍‌ଝିଲ୍ କରୁଛି ଗୁଇଗୁଇଆ ହରଙ୍ଗୀ ଆଲୁଅର ରେଖାଗୁଡ଼ିଏ । ଅକାରଣରେ ଚେଷ୍ଟା କରୁଛି ମିଶି ଏକାଠି ହୋଇଯିବ, ପାଲଟିଯିବ ଇନ୍ଦ୍ରଧନୁ ଗୋଟିଏ । ଗ୍ଧୁଁ ଗ୍ଧୁଁ, ହେଇ, କେମିତି ବଡ଼ ମେଲି ମେଲି ଯାଉଛି କଫିନ୍‌ଟା ! ବଢ଼ି ବଢ଼ି ଯାଇଛି ଚଢ଼େଇର ଥାବା, ମେଲି ମେଲି ଯାଉଛି, ଉଠୁଚି, ଉପରକୁ ଉଠୁଚି, ସିଧାସଳଖ ଉଠୁଚି, କମ୍ପିଉଠୁଚି ଶିରାଗୁଡ଼ାକ ତା'ର ଥରି ଥରି କମ୍ପନରେ କେମିତି, ଜୀବନ୍ତ ସେ ।

ଯୋଜନା କରି ଠିକ୍ କରିନେଲି ସେହିଦିନ ସନ୍ଧ୍ୟାରେ ଚମ୍ପଟ୍ ଦେବି ସେଠୁ । କିନ୍ତୁ କିରାସିନ ଚୁଲ୍ଲୀ ଉପରେ ମାଂସଖୋଳଟାକୁ ଗରମ କରୁଥାଏ । ଖାଇବାକୁ ଦେବା ପୂର୍ବରୁ; କେମିତି କାହିଁକି ତନ୍ଦ୍ରା ଆସିଲା ଟିକିଏ, ସ୍ୱପ୍ନ ପାଇଲି ଯେମିତି । କେତେବେଳେ କେଜାଣି ଉଚ୍ଛୁର ପଡ଼ି ଚୁଲ୍ଲୀରେ ପଶିଲା ଖୋଲଟା । ହୁତ ହୁତ ନିଆଁ ଟାକୁ ନିଭେଇ ଦେବାକୁ ଯାଇ ତରବରରେ ପାତ୍ରଟାକୁ ଓଲଟେଇଦେଲି ନିଜ ହାତ ଉପରେ । ଡାକ୍ତରଖାନାକୁ ବୁହାହେବା ଛଡ଼ା ଆଉ ଗତି ଥିଲା ବା କଣ ସେଦିନ !

ଡାକ୍ତରଖାନାର ଭୟଙ୍କାରିଆର ବିକଟ ଆଜି ବି ଦୁଃସ୍ୱପ୍ନ ଭଳି ମନେ

ପଡ଼ିଯାଇ ଛାତ ଥରଉଠେ । ପାଉଁଶିଆ ଆଉ ଧଳା ଧଳା ଆଚ୍ଛାଦନରେ ଭେଲା ଭେଲା ରୂପ, ଥରଥର ହଲଦିଆସିଆ ଶୂନ୍ୟତା ଭିତରେ ଗଅଁ ଗଅଁ ଘୁଉଁ ଘୁଉଁ ଶବ୍ଦ ସେଗୁଡ଼ାକର । ଡେଙ୍ଗା ଲୋକଟା ସେଇ—ଆଶାବାଡ଼ି ଉପରେ ଭରାଦେଇ, ଛୁରୁହଲକ ନଶ ଭଳି ତା'ର ଲମ୍ବା କେଡ଼େ କଳା ଦାଢ଼ିଟାକୁ ହଲେଇ ହଲେଇ ରଡ଼ି ଛାଡ଼ୁଛି—

"ରଃ, ତୋ କଥାରେ ରିପୋର୍ଟ କରୁଛି ରଃ, ସମ୍ମାନନୀୟ ପ୍ରଧାନ ଧର୍ମଯାଜକଙ୍କୁ ।"

ଖଟିଆଗୁଡ଼ିକ ଲାଗୁଥାଏ ଗୋଟିଏ ଗୋଟିଏ କଫିନ୍ । ରୁଗ୍ଣପୀଡ଼ିତ ଲୋକସବୁ, ନାକଗୁଡ଼ିକ ଟେକିଦେଇ, ଲକ୍ଷ୍ୟ କରି ଛାତତଳକୁ ଚିତ୍ ହୋଇ ସେଥିରେ ଶୋଇରହିଥାନ୍ତି ସେଇ ମଲା ଘରଚଟିଆ ଭଳି ! ଦୋହଲୁଥାଏ ହଲଦିଆ କାନ୍ଥ, ଛାତତଳଟା ଫୁଲି ଫୁଲି ଉଠୁଥାଏ ପବନରେ ପାଲ ଯେମିତି ! ବଡ ବଡ଼ ଢେଉ ଭଳି ଆଗକୁ ପଛକୁ ଦୋହଲେଇ ଦୋହଲେଇ ଖଟିଆଗୁଡ଼ାକୁ ନଚଉଥାଏ ଚଟାଣର ସମୁଦ୍ରଟା । ସବୁ ସେଠି ଲାଗୁଥାଏ କେମିତିକା ଭୂତପ୍ରେତର ଲୀଳାରେ ଭସ୍ମାଙ୍କାରିଆ ନିରାଶାରେ ବିଷାଦରେ ଆଚ୍ଛନ୍ନ । ଦୂରରେ, ଝରକା-ଗୁଡ଼ାକଠୁ ଦୂରରେ, ନିସ୍ପନ୍ଦ ଡାଲଗୁଡ଼ାକ ବାହାର ଗଛରୁ ସବୁ ଗୋଟାଏ ଅଦୃଶ୍ୟ ହାତରେ ନାଚି ନାଚି ଥରିଥରି ଦିଶୁଥାଏ ଗ୍ରବୁକଗୁଡ଼ାଏ ଯେମିତି !

ପାତଳା ଲାଲମୁଣ୍ଡିଆ ମୁରଦାର୍ଟାଏ ନାଚିଲା ଦୁଆରମୁହଁ ପାଖରେ ଗ୍ଲେଟ ଗ୍ଲେଟ ଗେଡ଼ା ଗେଡ଼ା ହାତ ଦୁଇଟାରେ ତାର ପୋଡ଼ିହେଲା ଗୁଦରଟାକୁ ଟାଣି ଟାଣି ନାଚିଲା ଚଇଁ ଚଇଁ କରି କନ୍ଧ ହୋଇ—

"ତମର ଏ ପାଗଳାମି ବରଦାସ୍ତ କରିବି ନାହିଁ ମୁଁ । ପାଗଳଙ୍କ ଭିତରୁ କାହାକୁ ରଖିବି ନାହିଁ ମୁଁ !"
"ମହାମାନନୀୟ ଭଦ୍ରଭଜନ ଧର୍ମଯାଜକ ଆଜ୍ଞା !" ଡାକଗୁଡ଼ିଲା, ଆଶାବାଡ଼ି ଉପରେ ଭରାଦେଇଥାଏ ଯିଏ ।

ଅଜା, ଅଈ ଆଉ ଯିଏ ଯେମିତି, ସବୁବେଳେ କହନ୍ତି, ଶୁଣିଥାଏ ମୁଁ— ହସ୍ପିଟାଲରେ ଲୋକଙ୍କୁ ମାରିଦିଆଯାଏ ଷୋକଉପାସରେ । ତେଣୁ ସ୍ଥିର କରିନେଲି, ଦିନ ସରିଆସିଲା ମୋର । ଗୋଟିକଯାକ ପୋଷାକଖୋଲରେ ପଶି ଘୋଡ଼ଣି ଭିତରେ ଥାଇ ଚକମାପିବା ମାଇପିଟାଏ ଆସିଲା କେଉଁଠୁ । ମୋ ବଛଣା ମୁଣ୍ଡରେ ଲଟକା ହୋଇଥିବା ସିଲଟଟାରେ ଲେଖି ଲାଗିଲା କଣ ଚକ୍ଖଡ଼ିରେ । ଚୂନଚୂନା ହୋଇଯାଉଥାଏ ଚକ୍ଟା ଗୁଣ୍ଡଗୁଡ଼ିକ ଝଡ଼ି ଝଡ଼ି ପଡ଼ୁଥାଏ ମୋର ମୁଣ୍ଡ ବାଳ ଉପରେ—

"ନାଆଁ କଣରେ ତୋର ?" ପଚାରିଲା ମାଇପିଟି ।

"ମୋର ନାଆଁ ଫାଆଁ କିଛି ନାହିଁ ।"

"ଏଁ, କିଛି ନାହିଁ ?"

"ନା !"

"ଏଃ, ରଖ ତୋ ଫାଜିଲମି କହୁଚ ! ପାଇବୁ ଯେ ନଇଲେ । ଆଚ୍ଛା କର ପାଇବୁ ପାନେ !"

ଠିକ୍ ଏଇ ପାନେ ଦେବେ ସେମାନେ, ଏକଥା ଭାବିନେଇଥିଲି ନିଶ୍ଚିତକରି । ଏଇଥିପାଇଁ ମନା କରିଥିଲି କିଛୁ କହିବାକୁ, ଉତ୍ତର ଦେବାକୁ । ବଳେଇ ଭଲ ଥୁ ଥୁ କରି, ମ୍ୟାଉଁ ମ୍ୟାଉଁ କଥା ପଦକ ନିଜର କହି ଚମ୍ପିଚମ୍ପିକା ବଳେଇପରି ପୁଣି ଉଭାଇଗଲି କୁଆଡ଼େ ମାଇପିଟି ।

ଜଳେଇଦେଇଗଲା କିଏ ଜଣେ ଆସି ବଣା ଯୋଡ଼ାଏ । ହଳଦିଆ ଆଲୁଅର ମୁଣ୍ଡଳ ଦିଇଟା ଗ୍ଲାସତଳେ ଝୁଲିବାକୁ ଲାଗିଲା ନଷ୍ଟ ହୋଇଯାଇଥିବା ଆଖି ଦିଇଟା ଭଳି, ଦୋହଲିଲା, ମିଟିମିଟି ହେଲା, ଜଳକା ହୋଇ କି ଅନ୍ଧପଣରେ ପରସ୍ପର ସହିତ ପୁଣି ମିଶିବାକୁ, ମିଶି ଏକାଠି ହୋଇଯିବାକୁ ଆକୁଳ ହୋଇ ଯେମିତି !

"ଖେଳିବା ଆସ, ତାସ ବାଜିଏ ଖେଳିବା ଆସ ।" କିଏ ଜଣେ କହି-ଉଠିଲା ଘରକୋଣରୁ ।

"ଗୋଟିଏ ବୋଲି ହାତରେ ଖେଳିବ କେମିତି ଯେ ?"

"ଓଃ, ହାତଟା ତମର କାଟିଦେଲେ ସେମାନେ, ନାହିଁ ?"

ସଙ୍ଗେ ସଙ୍ଗେ ଧରିନେଲି, ସେମାନେ ତା' ହାତଟି କାଟି ପକାଇଥାନ୍ତି ସେ ତାସ ଖେଳୁଥିଲା ବୋଲି । ଭୟରେ ବସ୍ମୟରେ ଭାବିହେଲି, ମତେ ପୂର୍ଣ୍ଣପୂର୍ଣ ଜୀବନରେ ମାରିଦେବା ପୂର୍ବରୁ କଣ ଯେ ନ କରିବେ ସେମାନେ ମୋ ପ୍ରତି !

ହାତ ଦୁଇଟା ମୋର ଜଳାପୋଡା କଲା, ବଥେଇଲା, ସତେ ଯେମିତି କିଏ ଠିକ୍ ଖୋଲତାଡ଼ି ଉପାଡ଼ିବାକୁ ଲାଗିଲା ମୋ ହାଡ଼ଗୁଡ଼ାକୁ । ଭୟରେ, ଯନ୍ତ୍ରଣାରେ ଚୁପ୍ ଚୁପ୍ କାନ୍ଦିଲି ମୁଁ, କାନ୍ଦିଲି ମୁଁ ଖାଲି ଆଖିଦୁଇଟାକୁ ବୁଜିଦେଇ ଜୋରରେ, ଯେମିତି କି କେହି ଦେଖିପାରିବ ନାହିଁ ଲୁହକୁ ମୋର । କିନ୍ତୁ ଧାର ଧାର ହୋଇ ବୋହିଲାଗିଲା ଲୁହ, ଝରଝର ହୋଇ ଟୋପାକୁ ଟୋପା ପଡ଼ିଲା ମୋ ଗାଲ ଉପରେ ଭିଜେଇଦେଇ ଗାଲମୁଣ୍ଡାକୁ ମୋର--ସୁରସୁର୍ ହୋଇ ପଶିଲା କାନ ଭିତରେ ।

ଆସିଲା, ଯୋଟି ଆସିଲା ସିଧଟା । ଲୋକଗୁଡ଼ାକ ଥରଥର, ଗୁରୁଣ୍ଡି ଗୁରୁଣ୍ଡି, ଅଣ୍ଟେଇ ଆଣ୍ଟେଇ, ପେଟେଇ ପେଟେଇ ଚଢ଼ିଲେ ଯାଇ ଖଟିଆଗୁଡ଼ାକ ଉପରେ । ନିଜ ନିଜକୁ ଲୁଚେଇ ଦେଲେ, ପଶିଲେ ସବୁ ପାଉଁଶିଆ ପାଉଁଶିଆ କମ୍ବଳ ଭିତରେ । ମୁହୂର୍ତ୍ତିକୁ ମୁହୂର୍ତ୍ତି ଗମ୍ଭୀରରୁ ଗମ୍ଭୀର, ଗଭୀରରୁ ଗଭୀର ନୀରବତା, ବେଳେବେଳେ ଭାଙ୍ଗିଲା ଖାଲି ତାହା ଘରକୋଣର ଗୋଟାଏ ଟୁପୁରୁଟୁପୁରୁ ହେଲା ଶବ୍ଦରେ ।

"ନା, କିଛୁ ହେବ ନି, କିଛି ମିଳିବ ନି ଯେଥିରୁ । ସେ ମରଦଟା ଜାନୁଆର ଗୋଟାଏ । ସେ ମାଇପିଟି ଗୋଟାଏ ଜନ୍ତୁ ଗୋଟାଏ" —

ମନହେଲା—ଯାଉଛି ଯିବ ଆଈଙ୍କୁ ଲେଖିବ, ଓହଳ ବକଳ ହୋଇ କାକୁତିମିନତି କରି ଲେଖିବି—ଏଇ ଏବେ ବେଳ ଥାଉଁ ଥାଉଁ ମତେ ଉଦ୍ଧାର କରିନେଉ, ରକ୍ଷା କରୁ ସେ ! କିନ୍ତୁ ଲେଖିପାରିଲି ନାହିଁ । ହାତଟା ସକାଣେ । ଲେଖିବା ପାଇଁ କାଗଜ ବା ଥିଲା କୋଉଠି ! ଠିକ୍ କଲି--ପଳେଇବି, ଝପି-ପଳେଇବି ଯେମିତି ହେଉ ।

ଲାଗୁଥାଏ, କାଲି କାଲି ପାଇଁ ମାଡ଼ିଆସିଛି—ବସା ବାନ୍ଧିଛି ରାତିଟା । ଚାଲିବ ନାହିଁ ଆଉ ! ଥରଥର ପାଦଦିଟା'କୁ ଖସେଇଲି ଖଟ ଉପରୁ । ଆଗେଇଲି ଯାଉଁ ଲଦୁଆର ଆଡ଼କୁ ! ଫାଳେ ଖୋଲାଥାଏ ସେଥିରୁ । ଲମ୍ବା ବାଟଘରେ ଗୋଟାଏ ବେଞ୍ଚ ଉପରେ, ଦେଖି ପକାଇଲି ହଠାତ୍, ଧୂଆଁର କୁଣ୍ଡଳି ଭିତରେ ଅଡୁଆଡଡ଼ୁଆ ଧୂସରିଆ ବାଳର ମୁଣ୍ଡଟିଏ । ଗାଢ଼େ ଗାଢ଼େ ପଶିଯାଇଛି 'କଳା କଳା' ଆଖି ଯୋଡ଼ାକ । ଏକଲୟରେ ଲାଖିରହିଛି କେମିତି । ଲୁଚିଯିବାକୁ ସମୟ ଥିଲା କୋଉଠି—

"କିଏ ବୁଲୁଚରେ ସେଠି ? ଆ ଏଠିକି, ଆ !"

ସ୍ୱରଟି ଥିଲା ବେଶ ନରମ । ଭୟଦେଖାଇ ଦଣ୍ଡିକର ଭଳି ନୁହେଁ । ପାଖକୁ ଗଲି ତାର ଅନେଇଲି ଦଣ୍ଡେନାକୁ, କଣ୍ଟାଳିଆ ଦାଢ଼ିରେ ଭରପୂର ଗୋଲଗାଲ ମୁହଁଟିକୁ । ଲୋକଟିର ମୁଣ୍ଡରେ ଧଳା ଧଳା ପାଉଁଶିଆ ବାଳ-ଗୁଡ଼ିକ, ଲମ୍ବାଳିଆ ସବୁ—ରୂପାର ଜ୍ୟୋତିର୍ମଣ୍ଡଳ ଭଳି—ତାର ବଅଁ ଦେବତାଙ୍କ ଛବିରେ ଥାଏ ଯେମିତି ।

କମରପଟିରୁ ଝୁଲୁଥାଏ ମାଳେ ବୋଲି କଣ୍ଠି । ଆଉ ଟିକିଏ ବେଶୀ ଲମ୍ବ ହୋଇଥିଲେ ଦାଢ଼ିଟା ଓ ମୁଣ୍ଡର ବାଳତକ, ଦିଶୁଥାନ୍ତା ସେ ସାଧୁ ସନ୍ଥ ପିଟରଙ୍କ ପରି ।

"ସେଇ ନା ତୁ, ହାତ ପୋଡ଼ିଯାଇଛି ଯାହାର—ସେଇ ନା ତୁ ! ରାତିରେ ବୁଲୁଚୁ କାହିଁକରେ ଏମିତି, କୋଉଥିପାଇଁ ? ଜାଣିଚୁନା ଆଇନ କାନୁନ କଣ ? ଠିକ ନୁହେଁ ବୁଲିବାଟା ଏଇ ।"

ଧୂଆଁର ମେଘପଟଳ ସୃଷ୍ଟି କରିଦେଇ ମୁହଁ ଉପରେ ମୋର, ସେ କି ସ୍ନେହରେ ଉଷୁମ ଉଷୁମ ହାତକୁ ତାର ବଢ଼େଇ ଦେଇ ବେକରେ ମୋର ଟାଣି-ନେଲା ମତେ ଗ୍ରୁଡ ଉପରକୁ ତାର ।

"ଡର ମାଡ଼ୁଚି କରେ ?"

"ହୁଁ"

"ପଦ୍ମଲେ ପଦ୍ମଲେ ଏମିତି ଡରମାଡ଼େରେ ସମସ୍ତଙ୍କୁ ଏଠି । କିନ୍ତୁ ଡରିବାର କଣ ଅଛି ? ଯେ ମତେ ପୁଣି ? କହାର କଚ୍ଛ କ୍ଷତି ଘଟୁ, ଖରାପ ହେଉ, ସ୍ୱା କଣ ଚାହିଁଛୁ ନା ଚାହେଁ ମୁଁ ? ନା ସେଥିପାଇଁ ବାଟ ଫିଟେଇ ଦେବ ଏଁ ! ପିକା ଟାଣିବୁ ପିକା ! ନାଁ, ଠିକ ! ଟାଣୁନା ତୁ, ଟାଣିବା ଉଚିତ ନୁହେଁ ବ ତୋର । ଏତେ

ଅଳ୍ପ ବୟସ ତୋର । କହୁଥିଲା ପିଲାଟିଏ ତୁ । ଯାଉ, ଦ ସ୍ବରଟା ବର୍ଷ ଯାଉ ! କେଉଁଠି ରେ ତୋ ବାପ ମା, କେଉଁଠି ? ଏଁ ନାହାଁନ୍ତି, ନା ? ଠିକ୍ ଠିକ୍– ନ ଥାନ୍ତି । ଚନ୍ତା କଣ ? ତାଙ୍କ ବିନା ଚଳିଯିବୁ ତୁ ବେଶ୍–ମାନେ ଚଳିଯିବୁ ତୁ ଯଦି ଡରକୁଳା ନ ହେଉ, ଭୀରୁପଣିଆ ନ ଦେଖାଉ—କୁକୁଡ଼ାପରି ଡରରେ ଧଳାପରି ନ ଝାଡ଼ୁ ।''

ଅନେକ ଦିନ, ଅନେକ ଦିନ ଯାଇଥିବ —ଏମିତିକା । ଜଣେ କାହାଠୁ କେବେ ଶୁଣିଥିବ ନା, ଏତେ ସରଳ, ସହଜ, ସହୃଦୟତାମୟ କଥା ପଦେ, ଏମିତି, ଶୁଣିବାକୁ କି ଖୁସି ଲାଗୁ ନଥାଏ ସତେ ! କେବେ ଭଲ ମୁହଁ ଖୋଲି ପ୍ରକାଶ କରି ହୋଇଥାନ୍ତା ଆନନ୍ଦ ଟିକକ, ସେଇ ଆନନ୍ଦ ଟିକକ ।

ସେ ମତେ ଧରି ଧରି ବାଟ କଢେଇ ନେଇଗଲା ମୋ ଖଟ ପାଖକୁ ।

"ବସ ଟିକଏ ମୋ ପାଖରେ ।'' ଆକୁଳରେ ଅନୁନୟ କଲି ମୁଁ—

"ମୁଁ ବସିବି ? ହଁ, ବସିବି ନ କାହିଁକି ?'' ଉତ୍ତର ଦେଲା ସେ !

"... · ତୁମେ ? ତୁମେ କିଏ ସେ—''

"ମୁଁ ? ସେନ୍ୟଟିଏ ମୁଁ, ପ୍ରକୃତରେ ସୈନ୍ୟଟିଏ ମୁଁ । ଲଢ଼ୁଥିଲି ସିଏ କଙ୍ଗେସରେ ଦିନେ । ଯୁଦ୍ଧରେ ଅସଲ ଯୁଦ୍ଧରେ । ସ୍ବାଭାବିକ, ଖୁବ୍ ସ୍ବାଭାବିକ ଏଇଟା– ସୈନ୍ୟର ଜୀବନ କଣ ଲଢ଼ିବା ପାଇଁ ନା ? ଯୁଦ୍ଧପାଇଁ ଲଢ଼ିଥିଲି ହିଁଅରେ ମୁଁ ହଙ୍ଗେରୀୟ, ସାରକେଶୀୟ ଆଉ ପୋଲଶ୍‌ଙ୍କ ସାଙ୍ଗରେ, ଯୁଦ୍ଧ—ବୁଝିଲୁ, ଯୁଦ୍ଧ, ମସ୍ତ ଏକ ସଇତାନ ସେଇଟା—ମସ୍ତ ଏକ ଅମଙ୍ଗଳ—''

ମୁହୂର୍ତ୍ତକ ଲାଗି ବୁଜି ହୋଇଗଲା ଆଖି ଯୋଡ଼ିକ ମୋର; ଖୋଲିଲି ଯେତେବେଳେ, ଦେଖିଲି ଆଉ ଆସି ବସିଛି ପାଖରେ, ସୈନ୍ୟଟି ବସିଥିଲା ଯୋଉଠି—ଆଉ ସୈନ୍ୟଟି ଛିଡ଼ା ହୋଇଛି, କହୁଛି ଥରି ଥରି—

"ତା ହେଲେ ଗ୍ଭଲିଗଲେ, ସମସ୍ତେ ଗ୍ଭଲିଗଲେ—ସମସ୍ତଙ୍କର କାଳ ହୋଇଗଲା ଏକାବେଳକେ, କଣ କହୁଚ ଯେ ଏଁ କି କଥାଏଁ—''

ଖେଳଖେଳକା ତେଇଁ ତେଇଁକା ଆସିଲା ଭଲ ଶୀଂଟିଏ ଆସିଲା ଆଉ ଗଲା ଝକ୍ ଝକ୍ ସୂର୍ଯ୍ୟଟା ଆଖି ପିଛୁଳାକେ ସୁନେଲି କିରଣରେ ରଞ୍ଜି ଦେଇ ଯେତେ ଯାହା ଥିଲା ଓ୍ବାର୍ଡ଼ଟିରେ ସେଇ, ରଞ୍ଜିଦେଇ ଉଭେଇଗଲା ପୁଣି ଥରେ ଲେଉଟି ଆସିବା ପାଇଁ ଆଡ଼ୁର ଗୋଟାଏ ଆଲୁଅର ଝଡ଼ରେ ଆଲୁଅର ବିସ୍ଫୋରଣରେ ବି !

ମୋ ଉପରେ ନଇଁପଡିଲା ଆଉ କହିବା ପାଇଁ ମତେ—

"କଣ ରେ, କୁନ ପାରିଛି ଟିକି ଶୁଆଟି ମୋର । ତତେ କଣ ମାଇଲେ ଧଇଲେ ସେମାନେ ? କହିଲି ମୁଁ, ସେଇ ଲାଲମୁଣ୍ଡିଆ ହାଏନାଟାକୁ କହିଲି ମୁଁ...... ।"

"ରହ, ଟିକଏ, ମିନଟିଏ, ଯାଉଛି ମୁଁ ସବୁ ଠିକ୍ ଠାକ୍ କରିଦେବି, ଅଇନ-

କାନୁନ୍ ଅନୁସାରେ !" ଯାଉଁ ଯାଉଁ କହୁ କହୁ ଗଲ ସୈନ୍ୟଟି ।

"ଲଜ୍ଜୁଛ, ବାଲଖାନ ଲୋକ ନୁହେଁ ତ ସୈନ୍ୟଟି ?" ଗାଲ ଉପରୁ ଲୁହ ପୋଛୁ ପୋଛୁ ନିଜକୁ ନିଜେ ପଚ୍ଚାରି ହେଲେ ଆଈ ।

ଏତେ ପରେ ବି ଭାବୁଥାଏ ସେତେବେଳେ—ସ୍ୱପ୍ନ ଦେଖୁନି ତ ମୁଁ—, କାନ୍ଟି ପାଟି ଫିଟେଇ କହିପାରୁ ନ ଥାଏ କିଛୁ ।

ଅସିଲେ ଡାକ୍ତରଟିଏ, କୋଉଠୁ । ଘାଆ ହାତକୁ ଧୋଇଧାଇ ଔଷଧ ଲଗେଇ ପଟି ବାନ୍ଧିଲେ ସେଥିରେ । ତା'ପରେ ଆଈ ଆଉ ମୁଁ ବାହାରିଲୁ ସହର ମଝିରେ, ବାଟେବାଟେ ଘୋଡାଗାଡ଼ିରେ ।

"ଅଜାବୁଢ଼ାର—ମ, ଗଲଣି, ମୁଣ୍ଡଟା ଗଲଣି ପୂରାପୂରି ।" ଏଡ଼ିକି ନିଜକୁଣା, ନିପଟ ଆଣୁଆ କୁରୁପଣଟା – ପେଟ ଆଉଣ୍ଡେଇ ଦେବ ପରା ସେ । ଏଇ ମ, ବେଶୀଦିନ ତଳେ ନୁହେଁ, ଘୋଡ଼ାଜିନ୍ ବିକାଳି ସେଇ ଖ୍ଲିସ୍ ! ନୂଆ ନୂଆ ସାଥୀ କଣଥାଏ ତାକୁ—ସେ ଗେ୍ରରେଇ ନେଲା ଶହେ ରୁବ୍ଲୁଆ (ଟଙ୍କିଆ) ନୋଟ୍ । ଆଳେ୍, ଦେଖେ ଲୋ ! କି ପାଟି କି କଳକଳିଆ ଲୋ ସେତେବେଳେ ଓ୍ୱା—ଓଃ ।"

ଝଲମଲ କରି ଝଲସୁଥାଏ ଖରା । ଭାସି ଭାସି ଗଲୁଥାଏ ମେଘଗୁଡ଼ାକ ଦଲକୁ ଦଲ ଧଳା ଧଳା ଚଢ଼େଇ ପରି ଆକାଶରେ—ଗଲୁଥାଏ ଆଡ଼ବାଗରେ ଏ କଣରୁ ସେକଣ । କାଠପଟାର ରାସ୍ତାଟି ଟପି ବରଫର ଜମାଟବନ୍ଧା ସ୍ତୁପ ଉପରେ ଭଲ୍‌ଗାର, ଗଲଲୁ ଆମେ—ଠିକ୍ ଯେଉଁଠି ମୁହାଁମୁହିଁ ହୋଇ ଫୁଲ୍‌ଫୁଲ୍ ଉଠିଥାଏ ଭଲ୍‌ଗା—ପଟାର ତଳେ ତଳେ ଯେଉଁଠି ସୁର୍ ସୁର୍ କରୁଥାଏ ପାଣିର ପରସ୍ତଟିଏ, ପତଳା ଝକ୍‌ଝକ୍ କରି ଉଠିଲା—, ଚମକ ଅଣି; ଗିର୍ଜାର ଗମ୍ବୁଜରେ, ବଜାରରେ, ଧୀରେ ଧୀରେ ବଡ଼ରୁ ବଡ ହୋଇ ଅସି ଚୂଡ଼ାରେ ଠିକ୍, ସୁନେଲି ଝଲୁଛି । ହାବୁଡ଼ ଗଲୁ ଚଉଡ଼ାମୁହିଁ ମାଇପିଟିଏ ସିଲକ୍ ପରି ନରମ ନରମ ଉଲେର ବୋଝଟାଏ ଧରି ଆସୁଥାଏ ସେ—ଆସୁଥାଏ ପୁଣି ଥିର୍‌ଥିର୍‌କା ବସନ୍ତଟି—କେତେ ବା ଆଉ ଡେରିଥାଏ ଇଷ୍ଟରଟାଇଡ୍, ଇଷ୍ଟର ଉତ୍ସବର ଆସିଲା ପ୍ରାୟ ସେଇଟି ।

ଭରଦିଆ ପରି ଗୀତଗାଇ ଉଠିଲା ହୃଦୟଟି ମୋର ।

"କେତେ ଭଲ ଲୋ ତୁ, କିଏ ତତେ ଭଲ ନ ପାଇ ରହିପାରିବ ଲୋ ଆଈ ?"

କାହିଁ, ବସ୍ତୁହରେ ଅଖି ଖୋସି ହୋଇଗଲା ନା ଆଈର !

"ଏତ ସାଧାରଣିଆ କଥାଟିଏ ରେ, ତୁ ମୋ ରକ୍ତର ଯେ"— ସରଳରେ କହିଲା ସେ, ପଦିଏ ସତ କହୁଛି ସେ ବଡେଇ ନ କରି, ସତ

କହୁଛୁ । କାହିଁକି କେଜାଣି ଅଜଣା ଅଚହ୍ନା ଲୋକେ ବି ଭଲ ପାଅନ୍ତି ରେ ମତେ—ବଢ଼ାଉ କରୁ, ସଂପଦ କରୁ ସବୁର ମାଆ ମେରି—"ଅନେଇଥାଉ ସମସ୍ତଙ୍କୁ ।"

ଟିକଏନାକୁ ହସିହସିକା ଆତ୍ରେକନ ଯୋଡ଼ିଦେଲ ଆଗ ପଦରେ ; "ଖୁସି ହେବା ମ କେତେ ଆମୋଦରେ ମାତାଉଠିବ ମ ସେ । ମେରି ବା ! ମେରି ! ତାର ପୁଅ (ଯୀଶୁ) ପୁଣି ଜୀଇଁ ଉଠିବ ସେ' ଜୀଇଁ ଉଠିବ ଏ ମନ୍ଦିରେ—ଆମର, କଲ୍ଲ ମୋ ଝିଅଟି ଭ୍ୟାରୁଣାଟି ମୋର……"

ନୀରବ ହୋଇଗଲ ସେ—

## ଦୁଇ

ଅଜାଙ୍କ ସାଙ୍ଗରେ ଭେଟ ହୋଇଗଲ ଅଗଣାରେ—ଆଣ୍ଠୁ ପକେଇ ବସି ଯୋଉଠି ସେ ଟାଙ୍ଗିଆରେ ଗ୍ରୁହୁଁ ଗ୍ରୁହୁଁ ମୂନଆ କରୁଥିଲେ ଗୋଜଣା କି ଖୁଣ୍ଟିଟାଏ । ଟାଙ୍ଗିଆଟାକୁ ଉହୁଙ୍କେଇ ଉଷୁଏଇଲେ ସେ, ସତେ ଯେମିତି ଫିଙ୍ଗିବେ ମୋ ଉପରକୁ—ମୋ ମୁଣ୍ଡକୁ । ତାପରେ ନିଜ ମୁଣ୍ଡରୁ ଝିଙ୍କିନେଇ ଟୋପିଟାକୁ କହି ହେଲେ ନାକ ଛୁଗୁଡ଼ି, ତାଚ୍ଛଲ୍ୟରେ—

"ଆସିବା ହେଉ, ଗହଣକୁ ଆମର, ମହାମାନ୍ୟବର ମହାଶୟ ! ଆସିବା ହେଉ ! ଗୃକିରଟା ଇତ ହୋଇଗଲ ତେବେ ଆପଣଙ୍କର, ନାହିଁ ? ବେଶ୍, ଏବେ ଏଣିକି ଜୀବକାର୍ଜନରେ ଲଗନ୍ତୁ ଆଜ୍ଞା—ସବୁଠୁଁ ବଳି ଭଲରୂପେ ଜାଣନ୍ତି ଯେମିତି ସେଇ ଉପାୟରେ ! ଲଗନ୍ତୁ ଏବେ—ଫୁ—"

"ଜାଣୁ ମ ସବୁ ଜାଣୁ, ହାତଟିକୁ ହଲ", ହାତ ହଲେଇ ତେଉ କାଟି-କାଟିକା ଶୂନ୍ୟରେ, ଅଜାଙ୍କ କଥାରେ ବାଧାଦେଲ ଆଈ । ଘରେ ପଶୁ ପଶୁ 'ସାମୋଭାର' ( ଉଠାଚୁଲ୍ଲୀ ) ଟାକୁ ଲଗାଉ ଲଗାଉ କହିଲ ସେ—

"ଏଥର ଅଜାର ତୋର, ବୁଝିଲୁ, ଉଷ୍ଟାହୋଇଯାଉଛି ଆଛା! କଣ ପରଗୁଡ଼ାକ, ଉଡୁର ଯାଉଛି ଗ୍ରୁଲଟା ବୁଝିଲୁ—ଯେତେ ଯାହା ଟଙ୍କାଟୋକର ଥିଲ ବୁଢ଼ାର, ସବୁ ନେଇ କୁଢ଼େଇ ଦେଇଥିଲ ସେଇ ଧର୍ମପୁଅ ନିକୋଲଇ ମ' ତାର ଅଣ୍ଟିରେ—କ'ଣ ତା ପୁଞ୍ଜିଲଗାଣରେ ଖଟେଇଥାନ୍ତା ସେ, ବୁଢ଼ାପାଇଁ—ଏଃ, ଟିପ କାଗଜ ଖଣ୍ଡେ ରଖିଥାନ୍ତା ଭଲ, ଏତେ କଥା କଲ, ମତେ ହେଲେ କହିଥାନ୍ତା କେବେ ; ଏବେ କଲ୍ଲ ଜଣା ପଡ଼ୁଛି, ଯାଉଛି, ସଫା ହୋଇ ଯାଉଛି ସବୁ—ନିର୍ମଳ । ପରତକ ଉଣ୍ଡି ହୋଇଯାଉଛି ବୁଢ଼ାର ! ଯାଉଛି, ହୁ[illegible]

ଯାଇଛୁ, କାହିଁକି ଜାଣୁ—ଏଇ ଯୋଡ଼ ଦୁଃଖୀରଙ୍କଙ୍କି ଆମେ ଦେଲୁ ନାହିଁ କିଛୁ । ଯାହା ଭରସା ହେଲୁନ୍ତି ଟିକିଏ କାହାର । ହେଲେ ଯେତେ ଯିଏ ସ୍ନାନ-କପାଳିଆ, ଅଙ୍ଗାରେ ଟିକିଏ ହେଲେ ଦୟା କଲୁ ନ ତାଙ୍କୁ । ସେଇଥିପାଇଁ ବୁଝିଲୁ, ଧନ ! ସେଇଥିପାଇଁ, ଠାକୁରେ କ'ଣ କଲେ ନା, ପାଞ୍ଚିଲେ ବସି ମନକୁ ମନ—ମୁଁ କାହିଁକି ଭଲ କରିବ ଏଇ କ୍ୟାଣିଶନ୍‌ଗୁଡ଼ାଙ୍କର ? ଏଇଆ ମନେ ମନେ ସେ ଠିକ କଲେ ଆଉ ଥିଲେ ଥିଲେ ନେଇଗଲେ, ଉଡ଼େଇ ନେଇଗଲେ ସବୁ ଏକାବେଳକେ''—

"ବୁଝିଲୁ ବାପ !" ସ୍ବରଆଡ଼କୁ ଚାହିଁଲା ସେ—ଆଖି ବୁଲାଇ ଆଣିଲା, ଯାହା କହୁଥିଲା ତାହାର ଜମରଶି କହିବା ଆଗରୁ ପୁଣି—

"ପାରୁପର୍ଯ୍ୟନ୍ତ ଲାଗିଛରେ , ଚେଷ୍ଟା କରୁଛ ଧାପେନାକୁ ହେଲେ ହୃଦସ୍ତମ୍ଭଟାକୁ ତରଳେଇ ନରମେଇ ଦେବା ପାଇଁ ମହାପ୍ରଭୁଙ୍କର—ଯେମିତି କି ସେ ବେଶୀ ନିର୍ଦ୍ଦୟ ହେବେ ନି ବୁଢ଼ାଟା ପ୍ରତି । ରାତି ରାତି ବୁଲୁଛୁ କାହାକୁ ନ କହି ନ ବୋଲି ମୋର ନିଜର ରୋଜଗାରରୁ ମ ଦୟା ଧର୍ମରୁ କିଛୁ ବାଣ୍ଟି ବାଣ୍ଟି କା—ମନକୁ ଯଦି ପାଏ ଚୋର, ଯିବା ଆମେ, ଯିବା ଆଜି ରାତିରେ । ପଇସା ପତ୍ର କିଛୁ ରଖିଛୁ ମ, ରଖିଛୁ ।''

ଖାଉଁ ଖାଉଁ ହୋଇ ମାଡ଼ିଆସିଲେ ଅଜା । ରାଗରେ ମୁହଁ ଭୁରୁକୁଞ୍ଚେଇ, କହିଲେ ସେ, "ଦେଖି ଆସୁଛ ବୋରାବର—ସବୁ ଖାଇଖାଉ, ସବୁ ଗିଳିଦେଇ ପାର କେମିତି !''

"ତମର କିଛୁ ଗିଳି ଦେଉନୁ ମ, ଖାଇ ଯାଉନୁ ।" ଜବାବ ଦେଲା ଆଇ । "ମନଟା ଖାଲି ଖାଲି ହେଉଛି ଯଦି, ଆସିପାର, ବସିପାର ଆମ ସାଥିରେ । ବହୁତ, ବହୁତ ଅଛି ସମସ୍ତଙ୍କ ପାଇଁ—''

ଖାଇବା ପାଇଁ ଟେବୁଲ ପାଖରେ ବସି ପଡ଼ିଲେ ଅଜା ! "ଢାଳ କପେ, ଢାଳ ମୋ ପାଇଁ !'' ମେସ୍ରାଟି ଭଳି ଖୁତୁରୁ ଖୁତୁରୁ ହେଲେ ସେ ।

ଆଏ ସବୁ, ଯେମିତି ଥାଏ ଘରଟିରେ—କୋଉଠି କିଛୁ ନ ବଦଳି—ଖାଲି ମାଆ ଶୋଉଥିବା କଣଟି ଛଡ଼ା ଥାଏ, ପଡ଼ିରହିଥାଏ ଅତି କରୁଣ ସ୍ବରରେ ଫାଙ୍କା ହୋଇ ସେଇଟି ! ବଇଛଣା ମୁଣ୍ଡରେ ଅଜାର, କାନ୍ଥରେ ଲଟକା ହୋଇଥାଏ କାଗଜ ଖଣ୍ଡେ—ଲେଖା ହୋଇଥାଏ ସେଥିରେ ବଡ ବଡ଼ ଛପା ଅକ୍ଷରରେ—"ରକ୍ଷାକର, ଉଦ୍ଧାର କର ଯୀଶୁ ! ମୋର ଆତ୍ମାକୁ । ତୁମର କରୁଣାଟିକି ବର୍ଷୁ ଆଉ ଯୀଶୁ ! ଜୀବନର ଶେଷ ମୁହୂର୍ତ୍ତଯାଏ ମୋର—ଥାଉ, ଅହରହ ଥାଉ ମୋ ସାଥିରେ ଯୀଶୁ !"

"କିଏ ଲେଖିଚ ସ୍ୱାକୁ ?''

ଉଁ ଚୁଁ, ଉତ୍ତର ଦେଲେନି ଅଜା, ଟିକିଏନାକୁ ରହି ମୁରୁକେଇ ମୁରୁକେଇ ହସିକା କହିଲା ଆଇ—

"ସେ କାଗଜ ଖଣ୍ଡିକର ଦାମ ଶହ ଶହ ଦୁବଲ ।"

"ତୋର ସେଥିରେ କଣ ଅଛି ଲୋ !" ପାଟିକରି ଉଠିଲେ ଅଜା । "ମୋ ଇଚ୍ଛା—ଯାହା ଅଛି ମୋର, ଅଜଣା ଅଚିହ୍ନା ଯାହାକୁ ତାହା ଦେଇଦେବି ମୁଁ ! ତୋର କ'ଣ ଯାଏ ଆସେ ଲୋ !"

"ଆଉ କଣଟା ଅଛି କଣ ଦେବ ! ଯେତେବେଳେ ଥିଲା କିଛି କୁଞ୍ଚୁ କୁଞ୍ଚୁ ହେଉଥିଲା ମନଟା ଫିଟୁ ନଥିଲା ହାତ, ଆଉ ଏଇକ୍ଷିଣି !" ଶାନ୍ତ ଭାବରେ ଟିପପ୍ଣୀ ଦେଲା ଆଈ ।

"ଚୁପ୍ କର !" କଇଁ କଇଁଆ ସ୍ୱରରେ ପାଟି କରି ଉଠିଲେ ଅଜା !

ସବୁ ଥିଲା, ସେମିତ ଥିଲା, ଯେମିତ ରହିବା କଥା ଯେମିତ ରହି ଆସିଥିଲା କେଜାଣି କେତେ ଦିନରୁ !

ନିଦ ଭାଙ୍ଗିଲା କୋପ୍ରାର, ଘରକଣରେ ଟ୍ରଙ୍କ ଉପରେ ଟୋକେଇ ଦୋଳିରେ ଆଖି ମେଲିଲା ସେ । କନାକବାଟି, ପୁଡ଼ିଆରେ ଫୁଲିଲା ଫୁଲିଲା ଆଖି ପତା ଦୁଇଟି ତଳୁ ତାର ଆଖିର ଗାଢ଼ ନୀଳ ଚକ ଚକ ଜ୍ୟୋତିଟିକ ବା ଧରି ହେଉଥିଲା ବା କେତେକେ ! ଆହୁରି ବେଶୀ ପାଉଁଶିଆ, ଆହୁରି ବେଶୀ ଶେତା ପଡ଼ିଯାଇଥିଲା ସେ । କେମିତ ଉଦାସ, ଅବସନ୍ନ ଦିଶୁଥିଲା ଆଉ କେଉଁଥିକି କୌତୂହଳ ନ ଥିଲା ଆଦୌ । କିଛି ବୁଝିବା ଅବସ୍ଥାରେ ନ ଥିଲା ସେ—ସରି ସରି ଆସୁଥିଲା ମୁହୂର୍ତ୍ତିଗୁଡ଼ିକ ତାର— ଗୋଟିଏ ବାକି ଥିଲା ବା ପଞ୍ଚଭୂତରେ ମିଶି ମିଶି ଯିବାଯାଏଁ ସେ, ଅସ୍ତିତ୍ୱହୀନ ହୋଇ ଆସିଥିଲେ, ମତେ ଚହ୍ନି ନପାରି ଚୁପ୍‌ଚାପ ମୁହଁ ବୁଲେଇନେଲା ସେ । ବୁଜିଦେଲା ଆଖିଯୋଡ଼ିକ ।

ପଦାକୁ ବାହାରି ଶୁଣିଲି ଶୋଚନୀୟ ଖବରଟା—ନାହିଁ, ଭ୍ୟାଖୀର ଆଉ ନାହିଁ—ଚାଲି ଯାଇଛି ବସନ୍ତରେ—ଇଷ୍ଟର ଉତ୍ସବର ପୂର୍ବରୁ ଯେଉଁ ସପ୍ତାହଟି ପଡେ ସେହି ଅଧିବାସର ସପ୍ତାହ 'ପ୍ୟାଶନ ସପ୍ତାହରେ' 'ଖାବ' ମଧ୍ୟ ଚାଲି ଗଲାଣି ସହରକୁ—ପୁରାପୁରି ଅଚଳ ହୋଇପାରିଛି ! 'ସ୍ଲାଜ'ର ଗୋଡ଼ ଦୁଇଟି, ଆଉ ବ୍ୟବହାର କରି ହେଉନି ଜମାରୁ । ତେଣୁ ଘରୁ ବାହାରି ଯାଇଆସି ପାରୁନି କୋଉଠିକି, ଗୋଟି ଗୋଟି କରି ଏସବୁ ବର୍ଣ୍ଣନା କରିବାକୁ ଯାଇ ମୋ ଆଗରେ, କ୍ରୋଧରେ କହିଉଠିଲା—କଳାଆଖିଆ 'କୋପ୍ରା'ମା'—

"କେଡ଼େ ବେଗରେ ଚାଲି ଯାଉଛନ୍ତି ରେ, ମରିଯାଉଛନ୍ତି ଟୋକାଗୁଡ଼ାକ !"

"ଜଣେ ତ କେବଳ ଭ୍ୟାଖୀର, ଜଣେ ମରିଚି !"

"ଜଣେ ମରୁ, ପାଁଚଜଣ ମରନ୍ତୁ—ସମାନ ଏକ କଥା ! ଏକ ଘଟଣା—ଚୁଲ୍ଲା ଉପରକୁ ଆସିପାରିବ ନାହିଁ, ଚାଲିଗଲା ସିଏ ଦାଣ୍ଡରୁ, ସିଏ ଗଲା ନାହିଁ, ମଲା ନାହିଁ ତ ଆଉ କଣ ହେଲା ? କୁଆଡ଼େ ଗଲା ସେ ? ତମେ ଜଣକ ସାଙ୍ଗରେ ଚହ୍ନା ପରିଚୟ ହୋଇ ମିଶିଥିବ କି ନାହିଁ. ତା' ସାଙ୍ଗରେ ଦୁଃଖସୁଖ ହୋଇଥିବ କି ନାହିଁ, ମୁହୂର୍ତ୍ତିକରେ ହଠାତ୍ ତାକୁ ସେତିକବେଳେ ସେମାନେ ଠିକ୍ ପଟାଳି

ଦେବେ କାମକୁ ନଇଲେ ସେଠିକବେଳେ ଶେଷନିଶ୍ୱାସ ଛାଡ଼ିବ ସେ—ବିଦାୟ ହୋଇଯିବ କାଳ କାଳ ପାଇଁ ! ଏଃ ! ନୂଆଲୋକ ସବୁ କିଏ କେଉଁଠୁ ଆସି ରହିଲେଣି ତୁମ ଅଗଣାର, ଟେସନୋକୋଭଙ୍କ ଘରେ—ସ୍ୱେଭସେସ୍ୱେନ୍‌ସ୍କୋଭ ସେମାନେ ! ପୁଅଟିଏ ଅଛି ତାଙ୍କର, 'ନୁଣ୍ଟ୍‌କା' । ଆଚ୍ଛାଟିଏ, କୌତୁକିଆ,ଚକ୍‌କଣିଆ, ଚକ୍‌ଚକିଆ ବେଶ୍ ! ଚାଲାଖ ବି । ଆଉ ଅଛନ୍ତି ଝିଅ ଯୋଡ଼ିଏ, ଗୋଟିଏ ଗ୍ରେଟ ଖୁବ୍, ଆରଟି ଗ୍ରେଟୀ, ଯାଆଆସ କରେ ଆଶା ବାଡ଼ିଟିଏ ଧରି—ଦେଖିବାକୁ ସୁନ୍ଦରୀ, ଖାସ ସୁନ୍ଦରୀ—ରୂପସୀ କହନ୍ତି ଯାହାକୁ !"

ମିନିଟ୍‌ଏ ଖଣ୍ଡେ କଣ ଭାବି ହେଲି, ତାପରେ ନିଜ କଥାରେ ନିଜେ "ହଁଅ ରେ, ମୁଁ ଆଉ ଚର୍କା, ବୁଝିଲୁ ; ପୂରାପୂରି ପୂରାପୂରି ପ୍ରେମରେ ପଡ଼ିଗଲୁଣି ତାର ! ସବୁବେଳେ ଏଣୁ କଳକଳିଆ ଆମର !"

"ସତେ ନା ? ତା' ସାଥିରେ, ସେଇ ଝିଅ—"

"ଆରେ ନା ମ ! ନିଜ ଭିତରେ ଆମର ! ତା ସାଥିରେ କାହିଁକି ? ତା ସାଙ୍ଗରେ ଅକାଳେ ସକାଳେ କେମିତି କେବେ !"

ଜାଣିପାରିଥାଏ ମୁଁ ଏତେବେଳକୁ, ବଡ଼ ବଡ଼ ପିଲାଏ କି ଟୋକାଏ କାହିଁକି ବୟସ୍କଲୋକେ ବି ପ୍ରେମରେ ପଡ଼ନ୍ତି, ଜାଣିଥାଏ ପ୍ରେମର ସ୍ଥୂଳ ତାତ୍ପର୍ଯ୍ୟଟା କଣ । ଏଥର କିନ୍ତୁ କେମିତି ଲାଗିଗଲା ; ବିଚଳିତ ହୋଇଗଲି ମୁଁ—କୋସ୍ତ୍ୟା ପାଇଁ ଦୁଃଖ ହେଲା ମନରେ—ତାର ସେଇ ନିହନିହକିଆ ଢଙ୍ଗ। ସରଳ ଲାଜକୁଳା ରୂପର ଗଢ଼ଣଟା ଆଉ ଧପ୍ ଧପ୍ ହୋଇ ଜଳୁଥିବା ଅଙ୍ଗାରିଆ କଳା କଳା ଆଖି ଯୋଡ଼ିକ କେଜାଣି କାହିଁକି ମନେ ପଡ଼ିଯାଇ ଅପ୍ରତିଭ କରିଦେଲା—ବିଭ୍ରମରେ ପକେଇଦେଲା ମତେ ।

ସେହିଦିନ ସଂଜରେ ହିଁ ମୋର ଭେଟ ହେଲା ସେଇ ଗ୍ରେଟୀ ଝିଅଟିର ସାଙ୍ଗରେ । ଅଗଣାକୁ ଓହ୍ଲେଇ ଆସୁଥାଏ ସେ, ପାହାଚରେ ହଠାତ ଖସିପଡ଼ିଲା ଆଶାବାଡ଼ିଟା ତାର । କେଡ଼େ ଦୁର୍ବଳଟିଏ, କେଡ଼େ ପତଳୀ ! ମହମ ଭଳି ଧଳା ଧଳା. ଆଙ୍ଗୁଠିରେ ଜାବୁଡ଼ି ଧରି ରେଲିଙ୍ଗକୁ ଛିଡ଼ା ହୋଇ ରହିଲା ସେ, ଅସହାୟା ଭାବରେ । ଆଶାବାଡ଼ିଟାକୁ (ତଳୁ ଗୋଟେଇ ଉଠେଇ ନେବାକୁ ଚେଷ୍ଟାକଲି ମୁଁ) ହାତରେ ମୋର ଭିଡ଼ା ହୋଇଥିବା ବ୍ୟାଣ୍ଡେଜ ବାଧା ହେଲା ସେଥିରେ । ଅନେକ ସମୟ ଯାଏ ମୁଁ ଅକାରଣରେ ଢମ ଦେଖାଇ ବ୍ୟତିବ୍ୟସ୍ତ ହେଲି, ଧୈର୍ଯ୍ୟ ହରାଇ ଉତ୍ତ୍ୟକ୍ତ ହୋଇ ଉଠିଲି ଶେଷରେ—ଛିଡ଼ା ହୋଇଥାଏ ସେ ପାହାଚ ଉପରେ—ହସୁଥାଏ ଥିରି ଥିରି ।

"ହାତଟା କଣ ହୋଇଚି ତୁମର ?" ପଚାରିଲା ସେ ।

"ପୋଡ଼ିଯାଇଛି, ପୋଡ଼ି ଦେଇଛି ମୁଁ !"

"ଆଉ, ଗ୍ରେଟୀଟିଏ ମୁଁ ! ତୁମେ କଣ ରହି ଏଇଠି, ଏଇ ଆମ ଅଗଣାରେ, ହସପିଟାଲରେ ଥିଲ ବହୁତ ଦିନ ? ମୁଁ ଥିଲି କିନ୍ତୁ ! ଉଃ, ବହୁତ ବହୁତ ଦିନ ।"

[illegible]ଟି ପକାଇ ଯୋଗକଲା ଏତକି ଝିଅଟି ।

ପୁରୁଣା କାନ୍ଥ ସଜ ମଣ୍ଡିଦଆ ଧଳା ପୋଷାକଟିଏ ପିନ୍ଧିଥାଏ ସେ—ସେଇ ଚଳ ବଚଳ ପୋଷାକଟି ନେଳିନେଳି ଯୋଡ଼ା ଝାପୁରେ ନାଲ୍ ଭଳି ଛବିରେ । ଚକ୍‌କଣ ହୋଇ, କୁଣ୍ଡାପାଉଁଳା ବାଳଗୁଡ଼ିକ—ଗ୍ରେଟ ଗୁଣ୍ଡ୍ରିଆ ବହଳ ବେଣୀଟିଏ ଲମ୍ବିଥାଏ ଗ୍ରୀବ ଉପରେ ତାର । ଆଖି ଯୋଡ଼ିକ ବେଶ୍ ବଡ଼ ବଡ଼ ଧୀର ସ୍ଥିର, ନିଶ୍ଚଳ, ଶାନ୍ତ, ମଧୁର ଗଭୀରତାରେ ଝକ୍ ଝକ୍ କରୁଥାଏ ଆଗ୍ନେୟ ନୀଳ ଦ୍ୟୁତିରେ କେମିତି ମଳିନ ଶୀର୍ଣ୍ଣ ମୁହଁଟିକୁ ଉଜଳାଇ ଦେଇ ଝଲସିତ କରି ସ୍ନିଗ୍ଧ ଏକ ଗାମ୍ଭୀର୍ଯ୍ୟରେ ଯୁଳଳିତ ହସଟିଏ ଲାଖି ରହିଥାଏ ଅଧରରେ । ମତେ କାନ୍ତି ଭଲ ଲଗିଲା ନାହିଁ, ମନକୁ ପାଇଲା ନାହିଁ ମୋର ତାର ରୂପଟି—ରୋଗଣା ରୋଗଣା ଅବୟବଗୁଡ଼ିକ ତା'ର କହୁଥିଲା ଯେମିତି—

"ଛୁଅଁ ନା, ଛୁଅଁ ନା, ମତେ ଅନୁଗ୍ରହ କର !"

ମୋ ସାଥୀଗୁଡ଼ିକ କେମିତି ଯେ ତା' ପ୍ରେମରେ ପଡ଼ିଥିଲେ କେଜାଣି ?

"ବହୁତ ଦିନ ହେଲା ଭୋଗୁଛି ମୁଁ ରୋଗରେ ।" ସଙ୍ଗେ ସଙ୍ଗେ ଜଣେଇ ଦେଲା ସେ ମତେ, ଏମିତିକି କହିଲା ସେ ଏତିକି ସ୍ୱରରେ କେମିତି ଗୋଟାଏ ଗଭୀର ଆଗ୍ରହ ଫୁଟେଇ । "ସତ୍ତୋଶୁଣୀଟି ଆମର ଏମିତି କରିଦେଲା ମତେ—ଗୁଣି ଗାରେଡ଼ି କରି—ମାଆ ସାଥିରେ କଳି ଲଗିଥିଲା ତାର । ମାଆକୁ ହନ୍ତସନ୍ତ କରିବା ପାଇଁ ଈର୍ଷାରେ ପୋଡ଼ିଜାଳି ମାରିବା ପାଇଁ ହଂସକୁଟୀ ଅତପାତଟା ଯେ, କେଜାଣି କି ମନ୍ତ୍ରଯନ୍ତ୍ରର କଳ ଯେ ! ହସପ୍ରି . ାଲଟା ଷଣ୍ଢ ଖରାପ ଭୟଙ୍କରିଆ ଲାଗୁଥିଲା, ନାହିଁ ?"

"ହଁଅଁ !"

କେମିତି ଖଣ୍ଡ ଅଡୁଆ ଅଡ଼ୁଆ ଲାଗୁଥାଏ ମତେ—ଘର ଭିତରକୁ ଚାଲିଗଲି ମୁଁ ।

ରାତି ଅଧକୁ, ପାହାନ୍ତା ସରିକି, ଆଇ ମତେ ନିଦରୁ ଉଠେଇଲା ଆସ୍ତେକିନା ।

"ଯିବା କରେ ? ଦେଖ, ଯଦି ମଙ୍ଗଳ କରୁ, ଭଲକରୁ ସବୁରି—ହାତ ତୋର ତେବେ ଭଲ ହୋଇଯିବ ରେ, ଶୀଘ୍ର ଶୀଘ୍ର ଭଲ ହୋଇଯିବ ।"

ବାହାଟିକୁ ଧରି ସେ ମତେ ଅନ୍ଧାରରେ ବାଟ କଡ଼ାଇ ଚାଲିଲା, ଯେମିତି ଅନ୍ଧଟିଏ ମୁଁ! ମୁହଁକୁ ମୁହଁ ଦିଶୁ ନଥାଏ—କଟିମିଟିଆ ଅନ୍ଧାରରେ—କେମିତି ଓଦାଳିଆ ସନ୍ତସନ୍ତିଆ ରାତିଟା, ଖରସ୍ରୋତା ନଈଟି ଭଳି ସମାନ ଏକ ବେଗରେ ବହୁଥାଏ ପବନ—

ହେମାଳିଆ ବାଲିରେ ଜୋହ୍ଲ ମାରି ଯାଉଥାଏ ପାଦଗୁଡ଼ିକ ! ସେଇଥିରେ ଆଗେଇ ଯାଇ ସାବଧାନରେ ସନ୍ତର୍ପଣରେ ଖୁବ୍, ଆଇ ଯାଇ ପହଞ୍ଚୁଥାଏ ସହର-ବାସୀ ଲୋକଙ୍କର ବୁଜାଆଉଜା ଅନ୍ଧାରିଆ ଝରକାଗୁଡ଼ିକ ପାଖରେ, ହାତ ଚିହ୍ନ ଆଙ୍କି ଆଙ୍କି ଶୂନ୍ୟରେ ଆଗ ତିନି ତିନିଥର, ଝରକା ପିଣ୍ଡି ଉପରେ ରଖି ଦେଉଥାଏ ପାଞ୍ଚଟି ଲେଖାଏଁ କପେନ୍, ତିନିଖଣ୍ଡି ବତ୍ତୁରି, ଶେଷରେ ଥରେଥରେ ଦୃଶ୍ଯ

ସେମିତ ନ୍ୟୁଣ ଚନ୍ଦ୍ର ଆଙ୍କୁ ଆଙ୍କୁ ଶୂନ୍ୟରେ—ମୁହଁଟେକ ନକ୍ଷତ୍ରହୀନ ଆକାଶକୁ—ଅନେଇ ରହି ଟିକଏ କହୁଥାଏ ଗୁନ ଗୁନ କରି ।

"ପୁଣ୍ୟମୟୀ ମାଆ ଗୋ, ସ୍ୱର୍ଗର ରାଣୀ ଗୋ ! ଦୟାକର ଲୋ, ସହାୟ ହୁଅ ଲୋ ସମସ୍ତଙ୍କ—କରୁଣାମୟୀ ଲୋ—ସମସ୍ତେ ତ ପାପୀ ପାପିନୀ ଲୋ ଆମେ !" ତୋ ଆଗରେ, ମଙ୍ଗଳମୟୀ ଲୋ—

ଘରଠୁ ଆମର ଯେତକ ଦୂରକୁ ଦୂରକୁ ଯାଉଥାଉ—ସେତକ ସେତକ ଅନ୍ଧାରଟା ଗାଢ଼ରୁ ଗାଢ଼ତର ହୋଇ ଆସୁଥାଏ—ସେତକ ନିଶବ୍ଦ, ନିଶବ୍ଦ, ନିର୍ଜନ ଲାଗୁଥାଏ ସ୍ୱରିଆଡ଼ଟା । ନୈଶ ଆକାଶର ମାପ ପରିମାପହୀନ ଅତଳ ଗହ୍ୱରଟା ଗ୍ରାସକରି ଯାଉଥାଏ,-ମନେ ହେଉଥାଏ ଚନ୍ଦ୍ର ତା'ର ସମସ୍ତଙ୍କୁ । ଧାଇଁ ଆସିଲା କୁକୁରଟାଏ କୋଉଠୁ, ଆମକୁ ଶୁଙ୍ଘି ଛୁଡ଼ାହେଲା (ଭୁକ ଭୁକକା ) । ଆଖି ଦୁଇଟା ତା'ର ଦପ୍ ଦପ୍ କରି ଉଠିଲା ଅନ୍ଧାରରେ, ଭୟରେ ଜାକି ଧରିଲି ଆଈକୁ—ମା'କୁ ।

"ଡରୁଚୁ କରେ ? ଡର ନା !" ସାହସ ଦେଲା ଆଈ । କୁକୁରଟାଏ ମ, ସେଇଟା—ଆଉ କ'ଣ ଭୂତ ପ୍ରେତ ସଇତାନ୍‌ଙ୍କ ପାଇଁ ସମୟ ଅଛି—ଡେରି ହୋଇଗଲାଣି ପରା, ବଡ ବଳା ପଡ଼ିଗଲାଣି—କୁକୁଡ଼ା ବୋବେଇଲେଣି—ହେଇ !"

କୁକୁରଟିକୁ ସେ ପାଖକୁ ଡାକଲା, ମୁଣ୍ଡଟି ତା'ର ଆସୁଡେଇ ଆଉଁସି ଦେଲା ଟିକଏ—କହିଲା, "ଯାଆରେ କୁକୁ ଯାଆ—ଦେଖ୍, ଆଉ ଡରନା ମୋ ନାତିକ !",

କୁକୁରଟି ଦଣ୍ଡି ହେଲା ଆସି, ଗୁଡ଼େଇ ଘୁଡ଼େଇ ହୋଇ ଘଷି ହେଲା ମୋ ଗୋଡ଼ରେ । ଚାଲିଲୁ ଆମେ ତିନ୍ହିକ ତିନହେଁ । ଥରି ଥରି ହୋଇ ବାରେଟି ଥର ଆଈ ମା ଗଲା ଆଇଲା ଗୋଟିଏ ଘରର ଝରକା କଡକ—ରଖି ଆସିଲା, 'ଗୁପ୍‌ଚୁପିଆ' କରୁଣାତକ ତା'ର ଝରକା ପିଣ୍ଡି ଉପରେ । ସିନ୍ଦୂରି ଫାଟିଆସିଲା, ଉଜ୍ଜ୍ୱଳ ହୋଇ ଆସିଲା ଆକାଶଟା । ଜାଙ୍ଗୁଲି ଜାଙ୍ଗୁଲିଆ ଅନ୍ଧାରରେ ଭସି ଭସିକା ପ୍ରକାଶ ପାଇ ଆସିଲା ପାଉଁଶିଆ ହୋଇ ଘରଗୁଡ଼ିକ । ନାପୋଲନାମ୍ବା ଗିର୍ଜାର ଘଣ୍ଟାଘରଟାର ରୂପେଲି ରୂପ ଫିଟିଆସିଲା, ଚକ ଭଳି ଠିକ୍ । କବରସ୍ଥାନର ଇଟାକାନ୍ଥଟା ଦିଶିଲା, କାଇଁଶ ବାଉଁଶରି ବାଡ଼ ଭଳି, ଆଲୁଅରେ ଭେଦ ହୋଇ ବି ଅସ୍ୱଚ୍ଛ ଗ୍ଛଇଗ୍ଛଇକିଆ, ସୁତୁରି କନ୍ଥ !

"ବୁଢ଼ୀ ଆଈ ମା'ଟା ତୋର, ଥକ .ପଡ଼ିଗଲାଣିରେ !" ଆଈ ମା'ଟି କହିଲା ମୋର, ରହି ରହିକା । ଘରକୁ ଫେରିଲା ବେଳ ହୋଇଗଲା ରେ ଘରକୁ ! ବଡ଼ିଭୋରରୁ ଯେତେବେଳେ ବିଛଣା ଗ୍ଛଡ଼ି ଉଠିବେ ଘରଣୀଟିମାନ, ଦେଖିବେ ସବୁ ପୁଣ୍ୟମୟୀ ମାଆ ମେରି ପିଲା ଛୁଆଙ୍କ ପାଇଁ ତାଙ୍କର ରଖିଯାଇଛନ୍ତି—ଏତେ ଟିକେ ଟିକେ ହେଲେ ବି କିଛି । ସବୁରି ପାଇଁ ଯଥେଷ୍ଟ ନ ହେଲେ କ'ଣ ହେଲା,

ଟିକିଏ ବି ତ ଲୋଡ଼ା ସେ ଧନ, ଫିଙ୍ଗି ହେବ କୋଉଠୁ......?ଆଦରରେ କିଏ ସେତିକି ନେବ ନାହିଁ ଯେ—ମରଣ ହେଉ ନାହିଁ ଲୋ ସାଣା ! ଆଲୁଓପାରେ—ଲୋକଙ୍କର କି ସ୍ୱପ୍ନମାନଆ କି ନାରଖାରଆ ଜୀବନ ମ ସତେ ! କେହି ଟିକେ ତାଙ୍କୁ ପଚ୍ଚାରନ୍ତା ହେଲେ କେବେ, ଅନାନ୍ତା ଥରେ ଆନ୍ତ୍ରଆଖିରେ ( ସନ୍ନାଥନ୍ତା ) ତାଙ୍କର—

ଧନୀଜନ ଶୁଣେ ନାହିଁ ଦେବତାର କଥା
ଶେଷ ବିଗ୍ଭରରଦନ ପବିତ୍ର ବାରତା,
ଦରିଦ୍ରର ଲାଗି ତାର ହୃଦ ଉଦାସୀନ
ସୁବର୍ଣ୍ଣ ଆଶାରେ ତାର ମନ ଥିବ ଲୀନ ।
ସୁବର୍ଣ୍ଣ ଅଙ୍ଗାରେ ପୋଡ଼ି ଯିବ ଯିବ ନାଶ
ନରକ ବ୍ୟତୀତ ତାର କାହିଁ ଅଧିବାସ !

"ଏଇତ ଦସ୍ୟାର କଥାରେ, ଆମର ସିନା ଉଚିତ ସମସ୍ତେ ସମସ୍ତଙ୍କୁ ଦେଖା ଚାହାଁ କରିବା, ସମସ୍ତଙ୍କର ତତ୍ତ୍ୱ ନେବା · ଆଉ ଠାକୁରେ ତ ସମସ୍ତଙ୍କୁ ଚାହିଁଛନ୍ତି, ସବୁବେଳେ ଚାହିଁଥାନ୍ତୁ କାମନା କରନ୍ତା, ବୁଝିଲୁ ମନଟି ମୋର ଖୁସି ଖୁସି, ତୁ ପୁଣି ମୋ ପାଖରେ—ମୋ ପାଖରୁ ଫେରି ଆସିଛୁ ।"

ମୋର ବି ଖୁସିରେ ପୂରି ଉଠୁଥାଏ ମନଟା । ଅଥ ନାଗୃତ୍ୱରେ ଧୀର ଶାନ୍ତ ଭାବରେ ଅବଶ୍ୟ । କେମିତି ଅସ୍ପଷ୍ଟ ଭାବରେ ଅନୁଭବ କରୁଥାଏ, ମୁଁ ସତେ ଏମିତି କିଛି ସହିତ ସଂପର୍କ ଆସିଛି ମୋର—କେବେହେଲେ ଯାହା ପାସୋର ଯିବ ମନରୁ । କସରା କୁକୁରଟା ଗୋଡ଼ ଘୋଷାରି ଘୋଷାରି ଚାଲିଥାଏ ମୋ କରେ କରେ । କେମିତିକା କୋକିଶିଆଳିଆ ମୁହଁ ଲମ୍ବେଇ...... ଦୋଷକରି କ୍ଷମା ମାଗିଲା ଭଳି ଦୟାଦ୍ର ଆଖିରେ !

"ଏଇଟି କ'ଣ ରହିବ ଆମ ଘରେ—ଆମ ସାଙ୍ଗରେ ?"

"ମ, ରହିବ ନାହିଁ କାହିଁକି ମ, ରହିବାକୁ ଚାହେଁ ଯଦି ! ରହ, ଗୋଟାଏ ବିସ୍କୁଟ୍ ଦିଏ ତାକୁ—ବଳି ପଡ଼ିଚି ତ ଦ'ଟା, ଆ ଆ ଟିକିଏ ବସିବା ଆଗ ଏ ବେଞ୍ଚ ଉପରେ—କେମିତି କେଜାଣି କ୍ଳାନ୍ତ ଲାଗୁଚି !"

ବସିଲୁ ଯାଇଁ ଗୋଟାଏ ଫାଟକ କରରେ ଆମେ । କୁକୁରଟି ଗୋଡ଼ ପାଖରେ ଶୋଇ ଚେକେଇଟି ହେଲା ଶୁଙ୍ଖିଲା ଶୁକୁଟା ବିସ୍କୁଟ୍‌ଟାକୁ ।

ଜାଣିଚୁନାରେ ଗୋଟିଏ ଇହୁଦୀ ସ୍ତ୍ରୀଲୋକ ଅଛି ଏଠି, ନଅଟି କୁଆଁରିଆ ତା'ର । ଗୋଟିଏ ଆରଟିଠୁ ଗ୍ରେଷ୍ଠା; ଏମିତି ପାହାଚକୁ ପାହାଚ । 'କେମିତି ତୁ ଚଳୁ ଲୋ ମୋସେସ୍ୱେଭନା ?' ପଚାରିଲି ତାକୁ, "ଭଗବାନଙ୍କ ଦୟାରୁ, ଭଗବାନଙ୍କୁ ନେଇ ବଞ୍ଚିଚି ଲୋ ଭଉଣୀ, ନଇଲେ ବଞ୍ଚି ପାରନ୍ତି କୋଉଠୁ ?"

ସଙ୍ଗେ ସଙ୍ଗେ ଢୁଲେଇ ଶୋଇପଡ଼ିଲି ମୁଁ । ଉଷ୍ମ ମ କୋଳଟିକୁ ପଶିଯାଇ ଆଈମା'ର ଜାକିଜୁକି ହୋଇ ପରମ ଆରାମରେ—ଆରାମର ନୀଡ଼ଟି ପାଇ ସେମିତି !

ପୁଣିଥରେ ଜୀବନଟି ବୋହିଯିବାକୁ ଲାଗିଲା କୂଳ ଉଚ୍ଛୁଳେଇ ଉଦ୍‌ବେଳ ଗତିରେ ପ୍ରଖରରୁ ପ୍ରଖରତର ବେଗରେ । ପ୍ରତ୍ୟେକଟି ନୂଆ ନୂଆ ଦିନର ପ୍ରାଣର ପ୍ରସାରରେ, ଉଦାର ଆଉ ପ୍ରଶସ୍ତ ଧାରାରେ କେତେ ଭରପୂର କରି ଚଉଟିକୁ ମୋର, ଏଭଳି ଏକ ଅପୂର୍ବ ଭାବଗ୍ରସ୍ତତାରେ ସତେ, ଯାହା ଯେତିକି ଉଲ୍ଲସାଇ ମୁଗ୍‌ଧ କଲା ମତେ, ସେତିକି ତ୍ରସ୍ତ-ଆତଙ୍କିତ, ଉତ୍‌ପୀଡ଼ିତ କରି ଚାଲିଛି କେଜାଣି କେତେ ଚିନ୍ତାରେ, ଭାବନାରେ ।

ଚାହୁଁ ଚାହୁଁ ସେ କି ବାସନା ଜାଗିଉଠିଲା ମନରେ ମୋର—ଥରକୁ ଥର, କେତେ ଥର ସମ୍ଭବ ଦେଖିଥିବି କି କେମିତି ଗ୍ରେଟି ଝିଅଟିକୁ ସେଇ—କଥାବାର୍ତ୍ତା ହେଉଥିବି ତା ସାଥିରେ । ନଇଲେ ଖାଲି ଚୁପ୍-ଚାପ ବସି ରହିଥିବି ପଛେ ଯାଇ ନିରୋଳାରେ ନିବିଡ଼ ନୀରବତା ଭିତରେ, ପାଖଟିରେ ତାର,—ଫାଟକ କଡ଼ର ବେଞ୍ଚ ଉପରେ । ତା' ସାଥିରେ ନୀରବତାଟିକି ବି ଥିଲା, କେଡ଼େ ମଧୁର ସୁଖମୟ କେତେ ପ୍ରୀତିକର ସତେ ! ସ୍ୱଚ୍ଛ ଆଉ ନିର୍ମଳ ଥିଲା ସେ, ବିହଙ୍ଗୀଟିଏ ପରି ଠିକ୍ ! କି ଚମତ୍କାର ଚାତୁରୀରେ ବର୍ଣ୍ଣନା କରୁନଥିଲା ବା ଡ଼ନ୍‌ନଦୀ ଅଞ୍ଚଳର କସାକ୍‌ମାନଙ୍କର ଜୀବନର କାହାଣୀଗୁଡ଼ିକ । ସେହି ଅଞ୍ଚଳରେ ଅନେକ ଦିନ କଟିଥିଲା ତାର, 'ଦୁଧସର' ତିଆରି କାରଖାନାର କଳମିସ୍ତ୍ରୀ ତାର 'ଦାଦା'ଟିର ସାଙ୍ଗରେ । ସେତେବେଳକୁ ତାର ବାପା, 'ଫିଟର', ଯୋଡ଼େଇ ମିସ୍ତ୍ରୀ—ନ ଥାନ୍ତି ସେଠି, ଚାଲିଯାଇଥାନ୍ତି କାମର ତାଗିଦାରେ ନିଝ୍‌ନିନୋଭ-ଗୋରୋଦକୁ ।

''ମୋର ଆଉ ଜଣେ ଦାଦା ଅଛନ୍ତି, 'ଜାର୍'ଙ୍କ ପାଖେପାଖେ ଥାଇ 'ଜାର୍'ଙ୍କ ପାଇଁ କାମ କରନ୍ତି ସେ ।

ଛୁଟି ଦିନଗୁଡ଼ିକରେ ସଞ୍ଜ ହୋଇ ଆସେ ଯେତେବେଳେ, ଗଳିକନ୍ଦିରେ ଯେତେ ଯିଏ ଥାଆନ୍ତି, ସଦାକୁ ବାହାରି ନ ଆସି ଘର ଭିତରୁ ତାଙ୍କର ଅସ୍ଥ ଧରି ରହିପାରନ୍ତି ବା କେତେକେ ! ଟୋକାଟୋକୀ ସବୁ ଛୁଟି ଯାଆନ୍ତି କବର ସ୍ଥାନକୁ, ଗୀତଗାଳି ଆମୋଦପ୍ରମୋଦରେ ବୁଲାବୁଲି କରିବା ପାଇଁ । ବୟସ୍କ ଯେତେ ପଶନ୍ତି କେଉଁଠି ମଦଖଟିରେ—ମାଇପେ ଆଉ ପିଲାଏ ଖାଲି ରହିଯାଆନ୍ତି ରାସ୍ତା-ଦାଣ୍ଡଗୁଡ଼ିକରେ, ବସନ୍ତି ସବୁ ବେଞ୍ଚ ଉପରେ ନଇଲେ ଫାଟକ ପାଖରେ ଧୂଳି ବାଲି ଉପରେ ବି ବସିପଡ଼ି କୋଳାହଳ ସୃଷ୍ଟି କରି ଦିଅନ୍ତି ତୁଚ୍ଛାକୁ ବହେ ବହେ କଳି କଜିଆରେ, ଖୁସିବାସିଆ ମିଛସତ ଗପସପରେ । ପିଲାଙ୍କର ଗଡ଼ିବାରେ ଲାଗେ ବଲଗୁଡ଼ିକ, ନଅ ନଅଟା ପିନ୍‌କଣ୍ଟା ଉପରେ ଚଟକା ଚଟକା ଖେଳଣାମାନ ରଖି ତାକୁ ସବୁ ଲକ୍ଷ କରନ୍ତି ସେମାନେ 'ସ୍କିଟଲ୍' ଖେଳରେ, ନଇଲେ ବା ମଜି ଯାଆନ୍ତି "ଶାରମ୍ୟାକଲେ" (ଲୁଚିଆ ଖେଳ) ଖେଳରେ—ମାଆମାନେ ସେମାନଙ୍କ ଖେଳର ଦକ୍ଷତାକୁ ପସନ୍ଦ କରି ବାହାବା କରନ୍ତି ବସିବସିକା, କେତେବେଳେ ବା ମଧୁରିଆ ମଧୁରିଆ ଗାଳିରେ ଚଳେଇ ଚଳେଇ ଦିଅନ୍ତି ସେମାନଙ୍କୁ ଅଡ଼ୁଆ ତଡ଼ୁଆ

ଧରଲେ ଖେଲର ଗୀତ ସେମାନଙ୍କର ! ଏତେ ହୋ ହୋ, ଏତେ ପାଟିତୁଣ୍ଡ— ବଧିର ହୋଇଯାଏ କାନଗୁଡିକ । କାଲ କାଲ ପାଇଁ ଅପାସୋର ଏତେ ହସ-ଖୁସି ଏତେ ଆମୋଦ ପ୍ରମୋଦ ! ଆମେ ସବୁ ଯେତେ ସିଏ ପିଲାଏ ଥାଉଁ, ଆମର ପାଖେ ପାଖେ ବୟସ୍କମାନଙ୍କର ଉପସ୍ଥିତିଟା, ସେମାନଙ୍କର ଆମର ଖେଳକୌତୁକ ପ୍ରତି ଦୃଷ୍ଟି ଆଉ ମନୋଯୋଗଟିକ ଏମିତି ମତେଇ ଦଏ, ଉତ୍ସାହିତ କରେ ଆମକୁ··· ଏତକ ପ୍ରବଳ ଉତ୍ତେଜନାରେ, ପୁଣି ସମାସୋଷିଆ ପ୍ରତିଦ୍ୱନ୍ଦିତାରେ ମଗ୍ନ ହୋଇ-ଯାଉ ଖେଳ ଖେଳକା ; କନ୍ତୁ କୋସ୍ତୋମା, ଚର୍କ୍ରା ଆଉ ମୁଁ—ଖେଳରେ ଯେତେ ପାଗଳ ହୋଇଯାଉଥିଲେ ବି କେମିତି ହେଲେ ସମସ୍ତ କରି ଠିକ୍ ଦୌଡ଼ିଯାଉ ଗ୍ରେଟୀଟି ପାଖକୁ—ଆଉ ତା ଆଗରେ ବଢ଼େଇ କାକୁ ସବୁ ଆମର ବଳବିକ୍ରମ କଥା ବଖାନ କରି ।

"ଦେଖିଛ ନା ଲୁବ୍ମିଲା ! କେମିତି ମୁଁ ଏକା ଲଖକେ ଚତୁପଟାଙ୍କ କରିଦେଲି ପିନ୍‌ଗୁଡ଼ାକୁ ?"

ସ୍ନିଗ୍ଧ ହସଟିଏ ହସି ଦେଇ ମୁଣ୍ଡ ହଲାଏ ଲୁଦମିଲା ।

ପହିଲେ ପହିଲେ ଆମ ଦଳଟା ସବୁବେଳେ ଚେଷ୍ଟାକରି କଳକୌଶଳରେ ରହି ଯାଉଥିଲା ଗୋଟାଏ ପଟରେ—କିଛିଦିନ ପରେ ଦେଖିଲି, ଚର୍କ୍ରା ଆଉ କୋସ୍ତୋମା ଦୁହେଁ ରହିଲେଣି ଯାଇ ଦୁଇ ପଟରେ—ପରସ୍ପରର ବିପକ୍ଷରେ । ସବୁ କ୍ଷେତ୍ରରେ ତେଣିକି ସାମନା ସାମନି ହେଲେ ସେମାନେ, କି ବଳ କି କୌଶଳ ! ସବୁଥିରେ, ଏମିତିକି ଲୁହ ବୁହା ବୋହି ଲଢ଼ାଲଢ଼ିରେ ପହଞ୍ଚିଗଲେ ସେମାନେ । ଦିନେ ଏମିତି ବେପରୁଆ ପ୍ରାଣମୂର୍ଚ୍ଛା ଲଢିଲେ ଯେ ପୁଣି ବୟସ୍କମାନଙ୍କୁ ଭିଡିଓଟାଣି ବାଧା ଦେଇ ଛଡ଼େଇବାକୁ ପଡ଼ିଲା ସେମାନଙ୍କୁ । ଶେଷରେ ଛଡ଼େଇ ନ ପାରି ସେ ଦୁହିଁଙ୍କ ଉପରେ ପାଣି ଅଜାଡ଼ିଲେ ବୟସ୍କତକ, ସତେ ଯେମିତି କୁକୁର ଦି'ଟା –

ଲୁଦ୍‌ମିଲା ବସିଥାଏ ଥରେ ବେଞ୍ଚ ଉପରେ—ତାର ଭଲ ନରୋଗ ପାଦଟିକୁ ପିଟି ଲଗିଥାଏ ଭୂଇଁରେ । ଲଢ଼ୁଆ ଦି'ଜଣ ଲଢ଼ି ଲଢ଼ି ଯେତେବେଳେ ଭୁମା ମାରିବା ପରି ମାଡ଼ି ଆସୁଥାନ୍ତି ତା' ଆଡ଼କୁ, ସେତେବେଳେ ସେ ଠେଲି ଦେଉଥାଏ ସେମାନଙ୍କୁ ଆଖାଦାଡ଼ିରେ କେଞ୍ଚିଦେଇ ଟିକିଏ—କହି ଦେଉଥାଏ—

"ଏ କଣ ମ ! ଏ କଣ ମ ! ଏଣେ କଣ ମ !"

"ବନ୍ଦ କର ! ବନ୍ଦ କର ! ଏ !"

ଦେଖିଲି, କେମିତି ଶେତା ପଡ଼ିଗଲା, ନିରକ୍ତିଆ ହୋଇଗଲା ତାର ମୁହଁ, ଆଖିଯୋଡ଼ିକ ଛଳ ଛଳ ହୋଇଉଠିଲା ଲୁହରେ, ଡୋଳା ଦୁଇଟି ଉପକ୍ରମ କଲା ବାହାରି ପଡ଼ିବ ଯେମିତି—ସତେ ବା ମୂର୍ଚ୍ଛା ହୋଇ ପଡ଼ିଯିବ ସେ !

ଆଉ ଥରେ, ସ୍କିଟଲ ଖେଳରେ ନିର୍ଲଜ୍ଜ ଭାବରେ ହାରିଗଲା କୋସ୍ତୋମା ଚର୍କ୍ରା ପାଖରେ ଯାଇ ସେପଟେଇ କରି ଶୋଇପଡ଼ିଲା ଗୋଟାଏ ପନିପରିବା ଦୋକାନର 'ଜଅ' ପେଡ଼ି ତଳରେ—ଆଉ କାନ୍ଦ ଲଗିଲା ମୁହଁ ମୁହଁ ହୋଇ ତୁନିତୁନି କରି ! ଇସ୍, କି କଦର୍ଯ୍ୟ ଦୃଶ୍ୟ ଥିଲା ସେଇଟା ! ଏତେ ଜୋରରେ ଦାନ୍ତ

ଚମ୍ପିଥିଲା ସେ ତା' ମାଢ଼ିର ମାଂସପେଶୀ ଫୁଲିଯାଇ ବାହାର ପଡ଼ିଥିଲା ପଦାକୁ । ପତଳା ସରୁଆ ମୁହଁଟା ତାର ସତେ ଅବା ପାଲଟି ଯାଇଥିଲା ପଥର ! ତେଣେ ବଡ଼ ବଡ଼ ଠୋପାରେ ଲୁହଠୋପାଗୁଡ଼ାକ ଗଡ଼ି ଆସୁଥାଏ ତାର କଳା କଳା ଚକ୍ଷୁରେ ନଇଁ ନଇଁ ପଡ଼ୁଥିବା ଆଖି ଦ'ଟାରୁ । ଆଶ୍ୱାସନା ଦେବାକୁ ବାହାରିଲି ଯେତେବେଳେ ଲୁହଗୁଡ଼ାକୁ ଢୋକ ଢୋକ ଶୋଷି ଶୋଷି ନେଇ ସଅଁ ସଅଁ ହେଲା, ନିଶ୍ୱାସ ନ ନେଇପାରି ।

"ଉଃ, ଉଃ ଟିକେ—ଗୁଡ଼ିବ ଆଗ ଇଟାଟାଏ ଗୁଡ଼ିବ ତା' ମୁଣ୍ଡକୁ, ଛତୁ କରିଦେବ ଏକାବେଳକେ—ଦେଖିବୁ, ଉଃ !"

ଗୋଟାଏ ଉଦ୍ଧତ ଭଙ୍ଗୀରେ ଗୁଡ଼ ଫୁଲେଇ ଠିଆ ହୋଇଥାଏ ଚନ୍ଦ୍ରା—ରାସ୍ତା ମଝିକୁ ଆଗେଇଗଲା ସେ ଅଭିଆଡ଼ୀ ପଣ କଟିବାକୁ ଯାଉଥିବା ଟୋକାଙ୍କ ପରି ଟୋପିଟାକୁ ଅଣେଇ ଦେଇ ମୁଣ୍ଡର ଗୋଟାଏ କରକୁ, ହାତ ଦ'ଟାକୁ ଭର୍ତ୍ତିକରି ରଖି ପକେଟ ଭିତରେ ।

"ଧୂଆଁ ଖିଆଟା ଆରମ୍ଭ କରୁଛୁ ଏଥର, ଶୀଘ୍ର," ଦାନ୍ତ ଚପି ଛେପ ପକାଇବା ଯୋଗ୍ୟତାଟା ହାସଲ କରିଥାଏ ସେ ନୂଆ ହୋଇ । ସେଇ କୃତିତ୍ୱଟା ଦେଖେଇ ହୋଇ କହିଲା ସେ, ଚନ୍ଦ୍ରା – "ଦ' ଦଅଚ୍ଚ ଚେଷ୍ଟା କଲିଣି ମୁଁ, ତଥାପି କେମିତି ମୁଣ୍ଡ ଘୂରଉଚି—ବାନ୍ତି ବାନ୍ତି ଲାଗୁଛି—ଏଇ ଆଃ !"

ଭାରି ଖରାପ ଲାଗିଲା ମତେ ଏସବୁ, ପିତା ହୋଇଗଲା ମନଟା – ବୁଝି ପାରିଲି—ସାଥୀ ଦୁଇଟାଙ୍କୁ ହରେଇ ବି ଏଥର ! ମନେହେଲା, ଲୁଦ୍‌ମିଲା ହିଁ ଏହାର ମୂଳରେ ।

ଦିନେ ସନ୍ଧ୍ୟାଲଗି ଆସୁଥାଏ, ହାଡ଼ଫାଡ଼, କନାକନ୍ଥା, ଆଉ ଯାହା ତୁଚ୍ଛ ଜିନିଷଗୁଡ଼ାକ ଗୋଟେଇଥାଏଁ ଆଗରୁ ; ବାଛୁବୁଛୁ ଅଲଗା କରୁଥାଏଁ ଅଗଣାରେ ବସି ବସି—ଲୁଦ୍‌ମିଲା ଗୁଲି ଗୁଲି ଆସିଲା ପାଖକୁ—ଆଣାବାଡ଼ରେ ଭରା ଦେଇ ଠିଆ ହେଲା ଟଳ ଟଳ ହୋଇ । ଡାହାଣ ହାତଟିକୁ ହଲେଇ ହଲେଇ ।

"କରେ", ତନଥର ମୁଣ୍ଡ ବଙ୍କେଇ କହିଲା ସେ, "କୋସ୍ତୋମା ଯାଇଥିଲା କ ତୋ ସାଥିରେ ?"

"ହଁ !"

"ଚନ୍ଦ୍ରା ?"

"ଚନ୍ଦ୍ରା ତ ଆଉ ଖେଳୁନ ଆମ ସାଥିରେ । ଦେଖ୍ ତୁ ! ତୁ ଏସବୁ ମୂଳରେ, ତୋରି ଯୋଗୁଁ ଏକଥା, ତୋରି ଦୋଷ ଏ । ଦହିଁଙ୍କି ଦହେଁ ସେମାନେ ପ୍ରେମରେ ପଡ଼ିଛନ୍ତି ତୋର, ସେଇଥିପାଇଁ ଲଢ଼ୁଛନ୍ତି ଏମିତି !"

ଲାଜରେ ଲାଲ ପଡିଗଲା ଗୋଟାକଯାକ—କଳ୍ପ ଟାପରା କରି ଉତ୍ତର ଦେଲା ଟିକକ ପରେ—

"କଣ କହୁଲୁ ! ସତେ ନା ! ମୋ ଦୋଷ ? କାହିଁକି ମୋର ଦୋଷ ହେଲା କେମିତି ?"

"ତୁ···ତୁ କାହିଁକି ସୁବିଧା ଦେଲୁ ସେମାନଙ୍କୁ, ଭଲ ପାଇବାକୁ ତତେ ?"

"ମୁଁ ତ ତାଙ୍କୁ କହିନ ମତେ ଭଲ ପାଅ ବୋଲି !" ରାଗରେ ଠୋକିକି ଜବାବ ଦେଲା ସେ—କହି ଗ୍ଲାଲା, "ବାଜେ, ବାଜେ, ନିହାତି ବାଜେ, ତୁଚ୍ଛା କଥାଗୁଡ଼ାକ ! କି ମାନେ ଫାନେ ଅଛି ସ୍ୟା'ର ? ବଡ ମୁଁ ସେମାନଙ୍କଠୁ ବୟସରେ ବଡ ମୁଁ, ମତେ ଚଉଦ ବର୍ଷ । ତୁମଠୁ ବେଶୀ ବୟସର ଝିଅଙ୍କ ସାଙ୍ଗେ ତ ତମେ ଆଉ ପ୍ରେମ କରିବ ନାହିଁ ?"

"କିନ୍ତୁ କରୁନୁ, ତୁ କରୁନୁ ପ୍ରେମ କରୁନୁ, ତା' ସତ୍ତ୍ୱେ ବି ?" ପାଟିକରି ଉଠିଲି, ତାକୁ ଆଘାତ ଦେବା ଅଭିପ୍ରାୟରେ । "ଦେଖୁଚୁ ତ ଦୋକାନୀ ଖ୍ଲିପ୍ପର ଭଉଣୀଟାକୁ, ପ୍ରକୃତ ବୟସ ତାର କେତେ, କେତେ ବଡ଼ ସେ ! କିନ୍ତୁ ଦେଖ୍ ପିଲାଗୁଡ଼ାକ ମାତିଛନ୍ତି କେମିତି ତା' ସାଥିରେ, ଘେରି ରହିଛନ୍ତି ତାକୁଇ ।"

ଲୁଦ୍‌ମିଲାର ଆଶାବାଡ଼ିଟା ଭୁଇଁ ଭିତରେ ଗଲା ଗଲା, ପଶିଗଲା ଗଭୀରରୁ ଗଭୀରକୁ ଯେମିତି ! ଦୂରଗଲା ସେ ଚଟିଟାଏ ପରି, ସାମନା କରିବା ପାଇଁ ମତେ !

"ଜାଣିନୁ, କିଛି ଜାଣିନୁ ତୁ ?" ତରବରରେ ଏକା ନିଃଶ୍ୱାସକେ କହି ଗ୍ଲାଲା ସେ, ସ୍ୱରରେ ଲକ୍ଷି ଲକ୍ଷିକା ଥରଥର ଉଠିଲା ଲୁହ । ଝଲସି ଉଠିଲା ସୁନ୍ଦର ଆଖି ଦୁଇଟି, "ସେଇ ଦୋକାନୀ ମାଇକିନାଟା, ଖରାପ, ଦୁଃଚ୍ଚରିତ୍ରାଟାଏ ଖାନ୍‌କିଟାଏ—କିନ୍ତୁ ମୁଁ ? ସେସବୁରୁ, ଭବୁଛୁ କ'ଣ ମୁଁ ତାରି ପରି ? ଏବେ ବି ପିଲାଟିଏ ମୁଁ, ମତେ ଛୁଇଁବା ଉଚିତ ନୁହେଁ, ଚୁମ୍ବିବା ଗେଲ କରିବା ଠିକ୍ ନୁହେଁ, ଠିକ୍ ନୁହେଁ କାହାରି ! ଆଉ ସେସବୁ କାମ—ତୁ ଯଦି ପଢ଼ିଥାନ୍ତୁ 'କାମଗୃଦଲକା' ବହିଟିର ଦ୍ୱିତୀୟ ଭାଗଟା, ଏମିତି କଥା କହନ୍ତୁ ନାହିଁ, କି କହି ନ ଥାନ୍ତୁ କେବେହେଲେ ।"

ଘୁଉଁ ଘୁଉଁ ହୋଇ କାନ୍ଦି କାନ୍ଦିକା ଗ୍ଲାଲଗଲେ ସେ—ଲୁଦ୍‌ମିଲା । ମନଟା ମୋର ଭାଙ୍ଗିପଡ଼ିଲା ଦୁଃଖରେ ତା'ରି ଲାଗି । ଲାଗିଲା, ଅଜଣା ମୋର, ପ୍ରକୃତ କେତେ ସତ ଥିଲା ତା' କଥାରେ । ମୋ ସାଙ୍ଗମାନେ ତାକୁ ଚିପିବେ, ଚୁମ୍ବିବେ କାହିଁକି ସେ—! ଅଥଚ କହି ହେଉଚନ୍ତି, ଦାବୀ କରୁଛନ୍ତି ସେମାନେ, ଗର୍ବରେ ପୁଣି ତାକୁ ଭଲ ପାଆନ୍ତି ସେମାନେ ?

ତହିଁଆରଦିନ, ଅପରାଧର ପ୍ରାୟଶ୍ଚିତ୍ତ ପାଇଁ କିଣିଲି ସାତ କୁପକ୍‌ର ବାର୍ଲି ମିଠେଇ ! ଜାଣିଥାଏ ଲୁଦ୍‌ମିଲାର ମନଲାଖି ମିଠେଇ ସେଇଟି, ସେଇ ମିଠେଇକୁ ସେ ଭଲ ପାଉଥାଏ ଖୁବ୍ ।

"ଏଥିରୁ କିଛି ?······"

"ଯା", ନିକଲ୍ ! ବାହାରି ଏଠୁ ମୋ ସାମନାରୁ ! ଯାଃ, ଆଉ ସାଙ୍ଗ ହେବନି" ତୁମର ହବୁ ମୁଁ, ଜବରଦସ୍ତି ଟଣାଓଟରା ରାଗରେ କହି ପକେଇଲା ଆଗ

ମୁହୂର୍ତ୍ତିକ ପରେ କିନ୍ତୁ ମିଠେଇଡକ ନେଉ ନେଉ ମତାମତଟା ଦେଲି—ମୁଁ "ଏତିକ ଅନ୍ତତଃ କାଗଜରେ ଗୁଡ଼େଇ ଆଣିବା କ'ଣ ଉଚିତ ନ ଥିଲି ତୋର ? ଦେଖ୍ କି ଅସନା ହୋଇଛି ତୋ ହାତଟା ।"

"ଧୋଇଥିଲି ହାତ ମୁଁ, ଗ୍ରିତିଲିନ ମଇଳାଗୁଡ଼ାକ—"

ମୋର ଗୋଟିଏ ହାତକୁ ଧରିଲି ସେ ତା'ର ଉଷୁମ ଉଷୁମ ଶୁଖିଲି ହାତରେ—ଓଲଟ ପାଲଟ କରି ଦେଖିଲି ପରଖି ପରଖି ।

"ଇସ୍, ବୁଇଟାଯାକ ହାତ ନଷ୍ଟକରି ସାରିଲୁଣି—"

"ତମ ଆଙ୍ଗୁଠିଯାକ ତ କଣା ! ଠାଆକୁ ଠାଆ ଫୁଟିଯାଇଛି ପୁରାପୁରି—।"

"ଛୁଞ୍ଚିରେ—କମ୍ ତ ସୀଆଁସୀଇଁ କରେ ନା ମୁଁ !"

କେତୋଟି ମିନିଟ୍ ପରେ ଗୃହଆଡ଼େ ଆଖି ବୁଲେଇ ଆଣି ପ୍ରସ୍ତାବଟାଏ ଦେଲି ସେ—

"ଗ୍ଲ. କୋଉଠି ଲୁଚକରି ବସିବା, ପଢ଼ିବା 'କାମ୍‌ଚଦାଲିକା' କେମିତ ? ମନ ହେଉନ ?"

ସୁବିଧା ଜାଗାଟିଏ ଖୋଜି ଠିକ୍ କରିବାକୁ ସମୟ ଲାଗିଲି ଆମକୁ । ଶେଷରେ ଠାବକଲି ବାହୁଲ୍ 'ଗାଧୁଆଘରକୁ ଯିବା ବାଟଟି, ଅନ୍ଧାରିଆ ଖୁବ୍—କିନ୍ତୁ ଝରକା ପାଖରେ ତ ବସି ପାରିବୁ । ଝରକାର ମୁହଁଟି ଥାଏ, ନିଶ ଗୃହଆ-ଘର ଆଉ କଂସେଇଖାନ! ମଝିରେ ଅଳିଆ ଆବର୍ଜନା, ଘାସ-କୃଟାଭରା ଗଳି ରାସ୍ତାଟା ଆଡ଼କୁ ! କ୍ୱଚିତ୍ କାହାର ପାଦ ପଡ଼ୁଥିବ ସେ ରାସ୍ତାରେ-କ୍ୱଚିତ୍ କେହି ଭୁଲ କ୍ରମେ ଆସୁଥିବେ ବା ସେଠିକି ।

ଲୁଦ୍‌ମିଲା ଯାଇ ବସିଲି ଝରକା ପାଖରେ—ତା'ର ଖଣ୍ଡେ ଗୋଡ଼ଟି ଲମ୍ବି ରହିଲି—ବେଞ୍ଚ ଉପରେ—ଭଲଟି ଝୁଲିଲି ତଳକୁ । ମୁହଁ ସାମନାରେ ତା'ର ଖୋଲିକଲି ଗୋଟିଏ ଉପର-କଣ ମୋଡ଼ା ଚିହ୍ନିତଆ ପୃଷ୍ଠାର ବହି—ଅନର୍ଗଳ ତା' ପାଟିରୁ ଝରିବାକୁ ଲାଗିଲି ନିଷ୍ପ୍ରାଣ, ନିର୍ଜୀବ ବା ମାହା ମାହା ଅବୋଧ ଶବ୍ଦ-ଗୁଡ଼ାଏ । କିନ୍ତୁ ଏହା ଏତେ ହୃଦୟସ୍ପର୍ଶୀ ହେଲି ଯେ ଅଭିଭୂତ ହୋଇଗଲି ମୁଁ ।

ବସିଥାଏ ମୁଁ ତଳେ, ଚଟାଣରେ—ଦେଖି ପାରୁଥାଏ ତା'ର ଗମ୍ଭୀର ଆଖି ଦୁଇଟିରୁ ନିଃସୃତ ହୋଇ ନୀଳାଭ ଅଗ୍ନିଶିଖା ଦୁଇଟି ଗତି କରୁଥାଏ କପରି ଅତି ଚମତ୍କାର ଭାବରେ, ବହିର ପୃଷ୍ଠାଗୁଡ଼ିକ ଉପରେ ; ବେଳେବେଳେ ଲୁହରେ ବାଷ୍ପମୟ ହୋଇ ଉଠୁଥାଏ ସେଇ ଆଖିଯୋଡ଼ିକ—କୋମଳ ସ୍ୱରଟି ଯେତେବେଳେ ସେ ଉଚ୍ଚାରଣ କରୁଥାଏ ଅବୋଧ ଭାବରେ ସନ୍ଧିସାମଞ୍ଜସ୍ୟ ଯୁକ୍ତ ଅପ୍ରଚଳିତ ସାଧାରଣରେ ଅବ୍ୟବହୃତ ଶବ୍ଦ କେତୋଟି । ସେହି ଶବ୍ଦଗୁଡ଼ିକୁ ସତେ ଯେମିତ ମନେମନେ ମୁଠାକୁ ମୁଠା ସାଉଁଟି ନେଉଥାଏ ମୁଁ, ବିଭିନ୍ନ ଭାବରେ

ମୋଡ଼ାମୋଡ଼ି ଭଙ୍ଗାଭଙ୍ଗି କରି ଚେଷ୍ଟା କରୁଥାଏ ମୁଁ ଯୋଡ଼ାଯୋଡ଼ି କରି ସେଥିରେ ସଙ୍ଗେ ସଙ୍ଗେ ପଦ୍ୟ ରଚନା କରିବା ପାଇଁ, ଏଇ କାମରେ ଏକାଳି ବ୍ୟସ୍ତହୋଇ ଲାଗି ପଡ଼ୁଥାଏ—ଯେ ସେ ବହିଟି କୋଉଥି ପାଇଁ, 'କ'ଣ ଯେବା ଲେଖା, ତାହା ବୁଝିବା ପାଇଁ କେମିତି ସଂଭବ ବା ହୋଇଥାନ୍ତା, ସେତେବେଳେ—

କୁକୁରଟି ଶୋଇଥାଏ ମୋ ଆଣ୍ଠୁ ଉପରେ, ମୋ କୋଳରେ । ତା'ର ନାଆଁ ରଖିଥାଏ ମୁଁ—'ପବନା'—କାରଣ ସେ ଥାଏ ଯେମିତି ଲମ୍ବା-ଗୋଡ଼ିଆ, ବାଳ-ବାଳୁଆ ସେମିତି ପବନ ବେଗରେ ଧାଇଁବାକୁ ଧୁରନ୍ଧର । ଆଉ ଘାଉଁ ଘାଉଁ ହୋଇ ଭୁକୁଥାଏ ସେ ହେମନ୍ତର ପବନ ଭଳି ଶିର୍ ଶିର୍ ଶବ୍ଦ କରିକରି ଚମ୍‌କ ଭିତରେ !

"ଶୁଣୁଛ ତ ?" ପଚାରିଲା ଝିଅଟି !

ମୁଣ୍ଡ ଝାଙ୍କାରି, ହୁଁ କଲି ମୁଁ । କଳ୍ପି ବେଳକୁ ବେଳ ଅଧିକରୁ ଅଧିକ ଉନ୍ମାଦନା ଆଣିଦେଲା 'ଗ୍ରନ୍ଥିଳ' ଶବ୍ଦଗୁଡ଼ିକର ସମାବେଶ, ସେଗୁଡ଼ିକର ଗୁରୁଗମ୍ଭୀର ଯୋଜନା ! ଅଧିକରୁ ଅଧିକ ଉତ୍‌କଣ୍ଠିତ ହୋଇଉଠିଲି ଗୋଟିଏ ଗୀତର ଶବ୍ଦଗୁଡ଼ିକ ପରି ସେଗୁଡ଼ିକରୁ ପ୍ରତ୍ୟେକଟିକୁ ଗୋଟି ଗୋଟି କରି ଉଚ୍ଛୁଳ ନକ୍ଷତ୍ର ଭାବରେ ଗୁନ୍ଥି ଖଞ୍ଜିଖାଞ୍ଜି କରି ନୂଆ ଏକ ବିନ୍ୟାସରେ ମୂର୍ତ୍ତି କରିବା ପାଇଁ ।

ଅନ୍ଧାର ହୋଇଆସିଲା ଯେତେବେଳେ ବହିଟି ଧରିଥିବା ପାଣ୍ଡୁର ହାତଟିକୁ ଝୁଣ୍ଟେଇଦେଲା ଲୁଦ୍‌ମିଲା ।

"ଖୁବ୍ ସୁନ୍ଦର, ନୁହେଁ ?" ପଚାରିଲା ଥରିକାନ—"କହି ନଥିଲି ନା, ଭାରି ବଢ଼ିଆ ହେବ—ସୁନ୍ଦର...... ।"

ସେହିଦିନ ପରଠୁଁ ଅନେକଥର ଆମେ ଯାଉଁ ବସୁ ଯାଇ ଗାଧୁଆଘର ଆଡ ବାଟଘରଟିରେ ସେମିତି । ତୃପ୍ତିରେ ନିଃଶ୍ୱାସ ମାରିଲି, ଆଶ୍ୱସ୍ତି ହେଲି ଲୁଦ୍‌ମିଲା ଯେତେବେଳେ ଖୁବ୍ ଅଳ୍ପ ଦିନ ଭିତରେ ଫିଙ୍ଗି କାମଚଦ୍‌ଲକା—ନିଷ୍କୃତି ପାଇଲା ତା କବଳରୁ । ସେଇ ଅସରନ୍ତି ବିଷୟବସ୍ତୁର ପଦେ-ହେଲେ କିଛି, ଶବ୍ଦଟିଏ ବି, ମୁଁ କହି ପାରି ନଥାନ୍ତି ଲୁଦ୍‌ମିଲାକୁ—ଗଳ୍ପଟି ଅସ-ରନ୍ତି ଥିଲା—କାରଣ, ତା'ର ଥିଲା (ଯେଉଁ ଦ୍ୱିତୀୟ ଭାଗଟି ପଢ଼ା ଆରମ୍ଭ କରିଥିଲୁ ଆମେ), ତୃତୀୟ ଭାଗ ଆଉ ଲୁଦ୍‌ମିଲା ବି କହୁଥିଲା ଏମିତିକି ଆଉ ଗୋଟିଏ ଭାଗ ଥିଲା, ଚତୁର୍ଥ ଭାଗ ।

ଆମକୁ ବେଶ୍ ଭଲେ ମଜା ଲାଗୁଥିଲା ବର୍ଷାଦିନଗୁଡ଼ିକ ଅବଶ୍ୟ ଯଦି ଶନିବାର ପଡୁ ନ ଥିଲା ସେହି ଦିନଗୁଡ଼ିକରୁ କେଉଁଟିରେ—କାରଣ ଗାଧୁଆ ଘରଟାକୁ ଉଷୁମ କରାଯାଉଥିଲା ସେହି ସମୟରେ ।

ବର୍ଷାଦିନଗୁଡ଼ିକରେ ଅବିରଳ ଧାରାରେ ବି ଅସରାକୁ ଅସରା ମେଘ ବର୍ଷୁଥିଲା ଯେତେବେଳେ,—ଯେ ଏଆଡ଼େ ସମସ୍ତେ ବାହାରକୁ ନ ବାହାରି ପଶୁଥିଲେ

ଘର ଭିତରେ । ତେଣୁ ଆମର ଅନ୍ଧାରିଆ ଝରକା ପାଖ ବାଟରେ କାହାରି ଆଉ ଯାଆଆସର ସମ୍ଭାବନା ନଥିଲା । କାରଣ ଲୁଦ୍‌ମିଲାର ଛାତି ପୁଣି ଧୁକ୍‌ ଧୁକ୍‌ କରୁଥାଏ ଭୟରେ ? କାଳେ କେତେବେଳେ ଆମେ ଧରା ପଡ଼ିଯିବୁ—

"ସେମାନେ କ'ଣ ଭାବବେ ଜାଣ ?" ଥରେ ପଗ୍ଚରି ବସିଲା ଥରକାନ, ନରମେଇ ।

ମୁଁ ଯେ ଜାଣି ନ ଥାଏ, ନୁହେଁ । ଜାଣିଥାଏ ବୋଲି ତ ଡର ଥାଏ ମୋର, ଧରାପଡ଼ିଯିବୁ ନାହିଁ ତ ? ତଥାପି ଆମେ ସେଠି ବସି କଥାବାର୍ତ୍ତା ହେଉଥାଉ ଘଣ୍ଟା ଘଣ୍ଟା ଧରି ଏକାଥରକେ । ବେଳେବେଳେ ମୁଁ ତାକୁ ଶୁଣାଉଥାଏ ଆଇମା'ର କାହାଣୀ ଆଉ ସେ ମୋ ଆଗରେ ମନେପକାଇ ବର୍ଣ୍ଣନା କରୁଥାଏ ମେଦ୍‌ଭେଦଡ୍‌ସା ନଈକୂଳରେ କସାକ୍‌ମାନଙ୍କ ଜୀବନର ଆଖ୍ୟାନଗୁଡ଼ିକ ।

"ଭାରି ବଢ଼ିଆ ମ ସେଠି ।" କହିଲାକ୍ଷଣି ନିଃଶ୍ୱାସଟିଏ ବାହାରି ଆସୁଥାଏ ତା ଛାତି ଭିତରୁ ! "ଏଠି ଲାଭଲ ନୁହେଁ । ଏ ଜାଗାଟା ତ ଖାଲି ଭିଟଭିକାରୀଙ୍କ ପାଇଁ ।"

ମନେମନେ ସ୍ଥିରକରି ନେଲି—ବଡ଼ ହେଲେ ନିଶ୍ଚୟ ମୁଁ ଯିବି ମେଦ୍‌ଭେଦଡ୍‌ସା ନଈଟାକୁ ଦେଖିବ !

ଅଳ୍ପଦିନ ପରେ ଆଉ ଆମକୁ ବସିବାକୁ ପଡ଼ିଲା ନାହିଁ ଗାଧିଆଘର ବାଟମୁହଁରେ । ଗୋଟିଏ ପଶମ ବେପାରୀ ପାଖରେ ଚାକିରୀ ପାଇଲେ ଲୁଦ୍‌ମିଲାର ମାଆ । ଭଉଣୀଟି ତା'ର ଭର୍ତ୍ତି ହେଲା ସ୍କୁଲରେ । ଭାଇ ତା'ର କାମ କଲା ଯାଇ ଗୋଟାଏ ଟାଇଲ କାରଖାନାରେ । ଯେଉଁଦିନ ପାଗ ଅତି ଖରାପ ହେଉଥାଏ, ମୁଁ ଯାଇ ଲୁଦ୍‌ମିଲାକୁ ସାହାଯ୍ୟ କରୁଥାଏ ରନ୍ଧାରନ୍ଧରେ—ଘରଦ୍ୱାର, ଶୋଷେଇ ଘର ପ୍ରଭୃତିର ଓଳାଓଳି ସଫା ସଫରେ ।

ତୁମେ ମୁଁ ତ ବେଶ୍‌ ଚଳୁଛେ ହେଲେ ଗିରସ୍ତ ଭାରିଜା ଭଳି—ନାଇଁ !" ହସିଲି ସେ—"ଖାଲି ଅମେ ଶୋଉନୁ ଯାହା ଏକାଠି, ତେବେ ଆମେ ଚଳୁଛୁ ଅନ୍ୟର ଭଲଭାବରେ—ଗିରସ୍ତଗୁଡ଼ାକ ତ କେବେହେଲେ ସାହାଯ୍ୟ କରନ୍ତି ନାହିଁ ଭାରିଯାଙ୍କୁ ସବୁ !"

କେତେବେଳେ ଯଦି କିଛି ପଇସାପତ୍ର ପାଇ ଯାଉଥାଏ ମୁଁ, ବା ବଳିପଡ଼ୁଥାଏ ମୋ ପାଖରେ, ତା'ଲାଗି କିଣି ନେଉଥାଏ ମିଠେଇ କିଛି, ନୁହେଁ ଚା' ତିଆରି କରି ପିଉଥାଉ ଖୁସିରେ । ପରେ ଥଣ୍ଡାପାଣି ଢାଳି ଶୀତଳେଇ ଦେଉଥାଉ ସାମୋଭରଟାକୁ । ଯେମିତି କି ଲୁଦ୍‌ମିଲାର ରାଗୀ ଚଡ଼ଚଡ଼ା ମା'ଆଟି ଧରି ପାରିବେ ନାହିଁ ଆମେ ତାକୁ ଜଳାଉଥାଉ ବୋଲି । କେତେବେଳେ କେମିତି ଆଇମା' ଆସି ବସୁଥାଏ ଆମ ପାଖରେ—ଆମକୁ ମଜାର ମଜାର ଗପ ଶୁଣାଇଲା ବେଳେ ହାତ ତା'ର ବ୍ୟସ୍ତ ରହୁଥାଏ ଲେସ୍‌ କିମ୍ବା କନା-

ପଟାରେ ଫୁଲପଣ ଭୁଣାଭୁଣି କାମରେ । ଆଉ ଯେତେବେଳେ, ଯେଉଁଦିନ ଅଜା ମୋର ସ୍କୁଲ ଯାଆନ୍ତି ସହରକୁ, ଲୁଦ୍‌ମିଲ୍ଲା ଆସୁଥାଏ ଆମ ଘରକୁ । ଏମିତିକା ଦିନଆରେ କାହାକୁ ପରବାଏ କରନ୍ତି କାହିଁକି ସେ ! ମାତି ଯାଉଥାଉ ମଜ୍ଜିଆଲିଆ ଉତ୍ସବରେ !

ଆଇମା କହେ ଅସି ସେତିକିବେଳେ :

"ଭାରି ବଢ଼ିଆ ଜାକଜମକିଆ ଜୀବନ ଆମର—ନାହିଁ ? କିଏ ମତେ ମନା କରିବ ଲେ ମୋ ଧନରେ ମୁଁ ଯଦି ଭୋଜିଭାତ କରି ଖାଇଲି—?"

ସେ ଉତ୍ସାହିତ କରୁଥାଏ ଆମ ବନ୍ଧୁତ୍ୱକୁ—ଏକାଠି ବସା ଉଠାକୁ ।

"ଏଇଟି କଣ ଗୋଟିଏ ଭଲ କଥା ନୁହେଁ କି – ପୁଅଟିଏ ଝିଅଟିଏ ଯଦି ସାଂଗ ହୁଅନ୍ତି । ଖାଲି କିଛି ଦୁଷ୍ଟାମି ଫୁଷ୍ଟାମି ନ କଲ, ହେଲା—"

ଆଉ କେତେ ସରଳରେ, ସିଧାସଳଖ ଭୁଝେଇ ଦେଉଥାଏ ସେ, ଆଇମା ଆମକୁ "ଜିବ୍ଭଣ୍ଡିଆଗିରି କାଢ଼ି ଦୁଷ୍ଟାମି ଫୁଷ୍ଟାମି କିଛି କରିବାର" ଅର୍ଥଟା କଣ ? ସେ କି ମାଧୁର୍ଯ୍ୟ, ସେ କି ସୌନ୍ଦର୍ଯ୍ୟ, କି ପ୍ରେରଣା ଥିଲି କଥା କୋଡୋଟିରେ ତାର, ସଙ୍ଗେ ସଙ୍ଗେ ବୁଝିନେଇଥିଲି ମୁଁ—ସୂର୍ଯ୍ୟପୂର୍ବ ନଫୁଟିବା ଯାଏଁ – ଉଚିତ ନୁହେଁ, ଫୁଲଗୁଡ଼ିକୁ ଛୁଇଁବା, ଛୁଇଁଦେଲେ ତ ବାସନାଟିକି ବାହାରିପାରିବ ନାହିଁ, ସେଥିରୁ କି ଆଉ ଫଳ ଧରିବ ନାହିଁ କେବେହେଲେ ।

ଦୁଷ୍ଟାମି କିଛି କରିବାକୁ ମୋର ବି କେବେ ମନ ହେଉ ନଥାଏ ଆଦୌ । କିନ୍ତୁ ତା' ବୋଲି ଏଇଟି ଯେ ପ୍ରତିବନ୍ଧକ ହେଉଥାଏ ଯେଉଁ ବିଷୟଟିକୁ ଲୋକେ ଚର୍ଚ୍ଚା ନ କରି ଆଡ଼େଇ ଯାଆନ୍ତି, ଚୁପ୍‌ଚାପ ସେଇ ବିଷୟ ଚେନ ଲୁଦ୍‌ମିଲ୍ଲା ଓ ମୁଁ ଆଲୋଚନା କରିବାରେ – ଏହା ନୁହେଁ, ତେବେ ଏଇଟା ସ୍ୱାଭାବିକ ଥାଏ— ଏ ବିଷୟରେ କଥାବାର୍ତ୍ତା ହେଉଥାଏ ଯେତେବେଳେ ଆବଶ୍ୟକତା ପଡ଼ୁଥାଏ ; କାରଣ, ଆମ ଆଗରେ ଆସି ଥରକୁଥର ଅନେକ ସମୟରେ ବା କେମିତି ଗୋଟାଏ ବାଧ ବାଧକତା ସ୍ୱତଃ ଜବରଦସ୍ତି ଦେଖା ଦେଉଥାଏ ଆମ ଉପରେ ଲଦି ହୋଇ ପଡ଼ୁଥାଏ ଅତି ସ୍ଥୂଳରୂପରେ ଯୌନସମ୍ପର୍କର କଥାଟା—ଗଭୀର ଭାବରେ ଆମକୁ ଆହତ କରି, ଲଜ୍ଜିତ ଓ ଅପମାନିତ କରି ।

ଲୁଦ୍‌ମିଲ୍ଲାର ବାପା ସ୍ୱେଭେସେସ୍ୱେଙ୍କୋ ପ୍ରାୟ ଚାଳିଶ ବର୍ଷ ବୟସର । ଖାସା ଡଉଲଡାଉଲ ଚେହେରା । କୁଞ୍ଚ କୁଞ୍ଚ ବାଳ—ବହଳିଆ-ଲମ୍ବାଳିଆ, କଞ୍ଚା କଞ୍ଚା ଭୁରୁ—ଏଇ ଭୁରୁ ଯୋଡିକୁ ସେ ଟେକିଟେକି ଦିଅନ୍ତି ସତେ ଯେମିତି ଅଦ୍ଭୁତ ଗୋଟାଏ ନିଜସ୍ୱ ଦର୍ପରେ ଭଙ୍ଗୀରେ, ପ୍ରକୃତରେ କିନ୍ତୁ ଅତି ଆଶ୍ଚର୍ଯ୍ୟଜନକ ଭାବରେ ପଦେ ଅଧେ କଥା କହେ କି ନାହିଁ ଚୁପ୍‌ଚାପ ମୌନ ଲୋକଟିଏ—କେବେ ହେଲେ ତାଙ୍କ ମୁହଁରୁ ପଦେ କିଛି ଶୁଣିଲି ଭଳି ମନେ ହେଉନି ମୋର । ପିଲା- ଗୁଡ଼ିକୁ ସ୍ନେହରେ ଆଦରରେ ଗେଲ କଲାବେଳେ ମୂକ-ବଧିର ଭଳି ଶବ୍ଦ କରନ୍ତି

ସେ କେବଳ । ଏମିତ କ ଉଁ-ଚ୍ଁ ପାଟି ନ କରି—ଶବ୍ଦଟିଏ ନ ଶୁଣେଇ ପିଟି ଯାଆନ୍ତି ସେ ଭରିଯାକୁ ନକଚ୍—ପିଟନ୍ତି ଯେତେବେଳେ !

ଛୁଟି ଦିନର ସନ୍ଧ୍ୟାଗୁଡ଼ିକରେ ସାଜସଜ୍ଜା ହୁଅନ୍ତି, ପିନ୍ଧନ୍ତି ନେଳି କୁର୍ତ୍ତାଟିଏ, ଓସାରିଆ ମଖମଲ-ପ୍ୟାଣ୍ଟ ଆଉ ଚକ୍‌ଚକ୍ ବୁଟ୍ ଯୋଡ଼ା ହଲେ—ଫାଟକ ଆଡ଼କୁ ବାହାରି ପଡ଼ନ୍ତି ଗୋଟିଏ ବେଶ୍ ବଡ଼ିଆ ଆକାଙ୍କ୍ଷାନେଇ । ହଲ୍ ହଲ୍ ଝୁଲୁଥାଏ ସେଇ କାନ୍ଧରେ ଓହଳି, ଚମ-ରସିରେ ଗୋଟାଏ । ଫାଟକ ନିକଟରେ ଛିଡ଼ା ହୁଅନ୍ତି ଯାଇ ସୈନିକଟିଏ ସେ, ବନ୍ଧୁକ ଧରି, ବୁକୁଟିକୁ ଖାଡ଼ା କରିଇ ସାମରିକ ସଲାମ—ଭଙ୍ଗୀରେ ।

ଗୃହୁଁ ଗୃହୁଁ ଆମୋଦପ୍ରମୋଦର ପଟୁଆରଟା ଆସେ, ଟଳିଯାଏ ଫାଟକଟିକୁ । ରୂପସୀ କିଶୋରୀ, ତରୁଣୀ ଆଉ ବୟସ୍କା ଧାଡ଼ିକରି ଆସନ୍ତି, ମଲ୍ଲାଳଗୁଡିଏ—ଟ୍ରେସ୍ ଟ୍ରେସ୍ ମାନ (ଲଜ୍‌ଲଜ) ସୁହାଣୀରେ । ଚାଲି ଚାଲି ଘ୍ରେଭେସେଘ୍ରେସ୍ରୋ ଆଡେ ଦରଦର କୁଆଁ ପତାଗୁଡ଼ିକ ତଳୁ ତାଙ୍କର ଅଥବା ଖୋକଲି ଖୋକଲି ଆଖିରେ ସିଧାସଳଖ ଖୋଲାଖୋଲି ଅନେଇ ଅନେଇ ତାଙ୍କୁ ଅପଲକ ଦୃଷ୍ଟିରେ—ଛିଡ଼ା ହୋଇଥାନ୍ତି ସେ ତଳଓଠଟିକୁ (ଅଧରଟିକୁ) ଚିପି ଚିପି ବାହାର କରିଦେଇ ଆଗକୁ । କଳା କଳା ଆଖି ତାଙ୍କର ନିରେଖି ନିରେଖି ପରଖି ନେଉଥାଏ ମନଲାଖିକୁ ବାଛି ବାଛି ଠିକ୍ କରିବା ପାଇଁ ସେମାନଙ୍କ ଭିତରୁ । ଆଖିରେ ଆଖିରେ ସେଇ ନୀରବ କଥାଭାଷାରେ ; ନୀରବ ଯୋଗାଯୋଗରେ, ଅଳାପରେ । ପୁରୁଷର ଆଗରେ ତରୁଣୀ ରମଣୀଗୁଡ଼ିକଙ୍କର ସେଇ ମନ୍ଥର-ସତେ ଅବା ନିୟୂତ ନିର୍ଦ୍ଦେଶିତ । ଅବଶ୍ୟମ୍ଭାବୀ ଶୋଭାଯାତ୍ରାରେ ଫୁଟି ପଡ଼ୁଥାଏ ବିଭତ୍ସ ଅତି ଜଘନ୍ୟ ସ୍ପୃହା ଯେମିତ ! ମନେହେଉଥାଏ ଆବେଗାତ୍ମକ ସଙ୍କେତରେ ତାଙ୍କର ସେମାନଙ୍କ ଭିତରୁ କେହି ଅକୁଣ୍ଠିତ ମନରେ, ଅଶଙ୍କ ଭାବରେ ସିଧା-ସଳଖ ଲେଟିଯିବେ ରାସ୍ତାର ଧୂଳି ଉପରେ ।

“ଏଃ, ଅଖି ମାରୁଛି କଣେଇ କଣେଇ ସେମାନଙ୍କୁ ଛେଳିଟାଏ ! ଦେହଆ ନଳଠାଟାଏ—ଘୃଷୁରିଟାଏ !” ଭୁଟ୍ ଭୁଟ୍ ହୁଅନ୍ତି ଲୁଦ୍‌ମିଲ୍ଲାର ମାଆ । ଦିଶୁଥାନ୍ତି ସେ ଘୋର ଘୋର ହୋଇ ମୁଣ୍ଡିଗୁଞ୍ଜୁଣି ପରି—ଛୁଣ୍ଡିଛୁଣ୍ଡା—ଡେଙ୍ଗା ଆଉ ପତଳୀ-ଲମ୍ବା ଧ୍ୱସ୍ତବିଧ୍ୱସ୍ତ ମୁହଁଟି—ଟାଇଫସର ଆକ୍ରମଣବେଳେ ଉଷ୍କା ହୋଇ କଟାକଟି କେଶଗୁଡ଼ିକ ତାଙ୍କର ।

ତାଙ୍କ ପାଖରେ ବସିଥାଏ ଲୁଦ୍‌ମିଲ୍ଲା । ବୁଥାଟାରେ ନିଷ୍ଫଳ ଭାବରେ ଏଣୁ ତେଣୁ କେଜାଣି କେତେ ନାନାପ୍ରକାର ପ୍ରଶ୍ନ ପଚାରି ଚେଷ୍ଟା କରୁଥାଏ ମନକୁ ତାଙ୍କର, ଦୃଷ୍ଟି କି ତାଙ୍କର ଫେରାଇଦେବା ପାଇଁ ଅନ୍ୟ ଦିଗକୁ ।

“କାହିଁକି ଲଗିଚ୍ଲେ ମୋ ସାଙ୍ଗରେ, ଦେ-ମତେ ଏକୁଟିଆ ଟିକେ ବସିବାକୁ ଦେ—ଶ୍ମାନକପାଳୀ ଗ୍ରେଟୀଟା ।” ଆଗ୍ରହିରେ ଆଖି ମିଟ୍‌ମିଟ୍ କରି, ଅଧେ ବୁଜି ଅଧେ ଖୋଲି ଗାରୁ ଗାରୁ ହୁଅନ୍ତି ମାଆ । ତାଙ୍କର ଗ୍ରେଟ ଗ୍ରେଟ ସରୁ ସରୁ ମଙ୍ଗୋଲୀୟ

ଆଖି ଦୁଇଟି ଅଦ୍ଭୁତ ଭାବରେ ନିଷ୍ପ୍ରଭ ଦିଶେ—ନିଷ୍ଫଳ ହୋଇ ରହେ—ଯିଏ ଯେମିତି କଣ କିଛୁ ଦେଖିଥାଏ, ଧରି ପାରିଥାଏ, ଦୃଢ଼ଭାବେ ଲଗିରହେ ସେଥିରେ ।

"ରାଗ୍ ନା, ବ୍ୟସ୍ତ ହୁଅନା, ମାଆ ! ରାତି ମାଗି ଲଭ ନାହିଁ ଲୋ କିଛୁ !" ଆଶ୍ୱାସନା ଦିଏ ଲୁଡ଼ମିଲ୍ଲା । "ଦେଖ୍ ଦେଖ୍, ଶେଯ ତିଆରି କଲା ଡାକ୍ତର ବିଧବା ମାଇପିଟା ମ—କେମିତି ସାଜ ହୋଇଛି ଲୋ ଗୋଟି କଯାକ !"

"ମୁଁ ତା'ଠୁ କେତେ ଗୁଣରେ ସାଜ ହେଉଥାନ୍ତି ଲୋ—ତମେ ଟଙ୍କା ନ ଥାନ୍ତି ଯଦି ମୋ କାନ୍ଧରେ । ତମେ ଟଙ୍କା ଖାଇ ସାଇଲଣି ଲୋ ମତେ—ଘରେ ବାହାରେ ସବୁଠି—ଗିଳି ସାରିଲଣି ଲୋ ।" ପୃଥୁଳକାୟ ବିଧବା ଟାକୁ ଏକା ଲୟରେ ଅନେଇ ରହି ଶୋକାର୍ତ୍ତ ହୃଦୟହୀନତାରେ ଉତ୍ତର ଦିଅନ୍ତି ମାଆ ।

ସେଇ ପୃଥୁଳଦେହୀ ମାଇପିଟା ଦିଶୁଥାଏ ଗ୍ରେଟ ଗୋଟିଏ ଚଳନ୍ତା ଘର ଭଳି ! ସ୍ତନ ଦୁଇଟି ତାର ବାହାରି ପଡ଼ୁଥାଏ ଅଳିନ୍ଦ ପରି ଘରର । ଲାଲ ପାଟ୍ଟି ମୁହଁଟି ତାର, ଶକ୍ତକରି ଭିଡ଼ା ଶାଗୁଆ ରୁମାଲରେ କୁଞ୍ଚ ଟାଏ ନାକ ହେଲା ଭଳି ଗୃପିହୋଇ ମନେପକାଇ ଦେଉଥାଏ ସୂର୍ଯ୍ୟାସ୍ତରେ ଉଜ୍ଜ୍ୱଳ ବନ୍ଧୁ ଲୋକଙ୍କ ଶୋଇବା ଘର ଉଉମିଂଟାଣର ଗଡ଼ାଣିଆ ଛାତତଳେ ଫାଳକିଆ ଗ୍ରେଃ ଝରକାଟିଏ ବା !

ସ୍ୱେଭେସେପ୍ୱେଙ୍କୋ ଦୋହଲେଇ ଦିଲେ ଗ୍ଲାସ ଉପରକୁ ଟେକିଟେକେ ଆକ୍'ଉନ୍‌ଟାକୁ—ଆରମ୍ଭ କରିଦେଲେ ବଜେଇବା ପାଇଁ । କ ସୁଲଳିତ ଉନ୍ମାଦନା-ମୟ ସ୍ୱରସଙ୍ଗତର ବିପୁଳ ଐଶ୍ୱର୍ଯ୍ୟ ନିଃସୃତ ହୋଇ ଆସି ବାଜାଟିରୁ ସେଇ, ସେ କ ମୋହାବେଶମୟୀ ଗତିରେ ଲୋଭେଇ ଭସାଇ ନେଇ ଚାଲିଲା ସମସ୍ତଙ୍କୁ ଅଜ୍ଞାତ ରହସ୍ୟମୟ ସ୍ଥଳୀକୁ । ସତେ କେଉଁଠି—ରାସ୍ତାର ଅନ୍ଧଗଳିରୁ ଛୁଟି ଆସିଲେ ଯିଏ ଯେଉଁଠି ଥିଲେ କିଶୋରକିଶୋରୀ ପାଦତଳେ ଲୋଟିଯିବା ପାଇଁ ସାଂଗୀତକର ଉଲ୍ଲାସରେ—ରୁଦ୍ଧଶ୍ୱାସ ହୋଇ ଗ୍ରହିଁ ରହିଲେ ମୁଗ୍ଧ ହୋଇ, ସୂଚକିତ ସ୍ତବ୍ଧତାରେ ଯେପରି ।

"ରଃ, ଟିକଏ—କିଏ ଜଣେ ଆଜ୍ଞା କରି ପ୍ରହାରଟାଏ ଦେବାଯାଏ । ତାହାଠୁ ପ୍ରହାରଟାଏ ପାଇବା ଯାଏ", ସତର୍କ କରିଦେଲେ ସ୍ୱେଭେ-ସେପ୍ୱୋଙ୍କୋଙ୍କ ସ୍ତ୍ରୀ ।

ଦସ୍ତାରେ ସୁଦ୍ଧା, ଉତ୍ତରଟିଏ ନ ଦେଇ କଣେଇ କରି ଘୁରିଲେ କେବଳ ସ୍ୱେଭେସେପ୍ୱୋଙ୍କୋ ।

ଶେଯତିଆରକଲାବାଲୀର ସ୍ତ୍ରୀଟି ବସିପଡ଼ିଲା ନାଥୁନିନା ରାସ୍ତାର ଦୋକାନ ସାମନା ବେଞ୍ଚରେ—ବସି ବସି ଶୁଣିଲା ସେ ସେଇଠି—ମୁଣ୍ଡଟି ଝୁଙ୍କା

ଝୁଲି ପଡ଼ଲା ଗୋଟିଏ କଡ଼କୁ—ସ୍ତନ ଦୁଇଟି ଉଠୁଥାଏ ପଡ଼ୁଥାଏ ପ୍ରଖର ନିଃଶ୍ୱାସରେ ।

କବର ସ୍ଥାନଠୁ ଦୂରରେ ଟିକେ ଖୋଲା ମଇଦାନଟା—ଧୋଇ ହୋଇ ଯାଇଥାଏ ଅସ୍ତାୟମାନ ସୂର୍ଯ୍ୟର ଗୋଲାପୀ ଆଲୋକରେ—ନଈଟିର ମୁହାଁଣ ଆଡ଼କୁ ଠିକ ରାସ୍ତାରେ ସୂଅର ଅନୁକୂଳରେ ଭାସି ଭାସି ଚାଲିଥାଏ ଉଜ୍ଜ୍ୱଳ ଆଉ ବର୍ଣ୍ଣିଲ ପୋଷାକର ଆବରଣରେ ଫୁଲାକୁ ଫୁଲା ମାଂସପିଣ୍ଡ ସବୁ ଗୃହ ପାଖରେ ସେଗୁଡ଼ିକର ଉଦୈର୍ଘ୍ୟ ରଚି ଘିରି ଘିରି ହେଉଥାନ୍ତି ପିଲାଏ । କେମିତିକା ମଉଆଳହୋଇ ଉଠୁଥାଏ ପବନ—ସମସ୍ତର ପରିବେଶଟା, ସୂର୍ଯ୍ୟ କିରଣରେ—ଉତ୍ତପ୍ତ କାଂସେଇ ଖାନାଗୁଡ଼ିକର କେମିତି ମଧୁରିଆ ମଧୁରିଆ ଚର୍ବିଲ ବାସନା—ରକ୍ତର ଗନ୍ଧ— ସେଇଥିରେ ପ୍ରବଳ ପୁଣି କେଜାଣି କେତେ ମିଶ୍ର ସୁଗନ୍ଧ !—ଆଉ ତେଣେ କିନ୍ ପ୍ରସ୍ତୁତକାରୀଙ୍କ ଅଗଣାରୁ ଆସୁଥାଏ ଚମତ୍କାର ଲୁଣିଆ ଲୁଣିଆ ଉତ୍କଟ ତୀବ୍ର ଗନ୍ଧ ! ଅକାରଣରେ ଅନ୍ୟ ଚଢ଼େଇଗୁଡ଼ାକ ପରି ବକର ବକର ମାଇପି-ଗୁଡ଼ାଙ୍କର ପାଟିତୁଣ୍ଡ, ହୋ ହୋ ଗର୍ଜନଗୁଡ଼ାକ ମର୍ଦ୍ଦଙ୍କର, କେଁ କେଁ ଇଆ ଖାଖା କାନ୍ଦଣା ଛୁଆ ପିଲାଙ୍କର, ସ୍ନିଗ୍ଧ ମଧୁର ନମ୍ର ସ୍ୱରରେ ଧୀର ଗୁଞ୍ଜନଟି ଆକର୍ଡଅନ୍‌ର । ଏ ସବୁ ମିଶି ସୃଷ୍ଟି କରିଥାଏ ଦ୍ରୁତରୁ ଦ୍ରୁତତର ସ୍ୱଗତ ଏକ ଛନ୍ଦରେ—

ପ୍ରତ୍ୟେକଟି କଥା, ପ୍ରତ୍ୟେକ ଘଟଣା, ପ୍ରତ୍ୟେକ ବସ୍ତୁ ସେଠି ସ୍ଥୂଳ ଆଉ ନଗ୍ନ, ଗଭୀର ଅନ୍ଧକାରମୟ । କୃଷ୍ଣକାୟ ଜୀବନ ପ୍ରତି ଜନ୍ମାଇ ଦେଉଥାଏ ବିପୁଳ ଅଉ ପ୍ରବଳ ଆସକ୍ତ । ଏତେ ନିର୍ଲଜ ଭାବରେ ପାଶବିକ, ଏତେ ଉନ୍ମତ୍ତ ଭାବରେ ନିଜ···ଶକ୍ତିର ପ୍ରକାଶପଥର ସନ୍ଧାନ ଲାଗି ବ୍ୟଗ୍ର ।

ପ୍ରଚଣ୍ଡ କୋଳାହଳ, ପ୍ରବଳ ପାଟିତୁଣ୍ଡ ଭିତରେ ବେଳେବେଳେ ଅତି ଚମତ୍ପ୍ରଦ ତାତ୍ପର୍ଯ୍ୟପୂର୍ଣ୍ଣ ଶବ୍ଦସବୁ ଆସି ହୃଦୟରେ ବାଜେ ଆଉ ତାହା ସବୁ ଆସ୍ଥାନ ଜମେଇ ରହିଯାଏ ମସ୍ତିଷ୍କରେ—

"ସମସ୍ତେ ତ ତମେ ଏକାବେଳକେ ଲଦି ହୋଇ ପଡ଼ିବ ନାହିଁ, କୁଦି ପଡ଼ିବ ନାହିଁ ତା' ଉପରେ, ସମସ୍ତେ ତ ଆଉ ଏକାବେଳକେ ଯାଇ ମାଡ଼ିବସି ପାରିବ ନାହିଁ ତାକୁ, ଜଣକ ପରେ ଜଣେ ସିନା ପାଳିକରି ମାଡ଼ ଚଢ଼େଇବାକୁ ହେବ ନିର୍ଧୂମ ମନଇଚ୍ଛା, ଆଚ୍ଛାକରି ।"

"କିଏ ଆମକୁ ଦୟା କରିବ ରେ ଆମେ ଯଦି ନିଜକୁ ନିଜେ ଦୟା ନ କରୁ ?"

"ଦେଖୁଛୁ, ଭଗବାନ ମାଇପିଗୁଡ଼ାଙ୍କୁ ଗଢ଼ିଥିଲେ ଏମିତି—ଗଢ଼ିବା ···ରୀ ରହସ୍ୟରେ !"

ରାତି ନିକଟେଇ ଆସେ । ପବନଟା ବେଳକୁ ବେଳ ସତେଜ ହୋଇ ଉଠେ—କୋଳାହଳ ଲୋପ ପାଇଯାଏ ! ଘରର ଆବରଣୀରେ ପୋଷାକରେ କାଉଘରଗୁଡ଼ିକ ଫୁଲି ଫୁଲି ମେଲି ଲମ୍ବି ଯାଏ କେମିତି ଓସାର ହୋଇଯାଏ ! ସାନ ସାନ ପିଲାଙ୍କ ଭିତରୁ କେତେକ ଘୋଷରା ହୋଇ ଯାଆନ୍ତି ଘର ଭିତରକୁ; ଶୋଇବା ସମୟରେ କେତେକ ବାଡ଼ା-ଗୁଡ଼ିକର ଘରରେ ହିଁ ଶୋଇ ପଡ଼ନ୍ତି ମାଆମାନଙ୍କର ଗୋଡ଼ପାଖରେ କି କୋଳରେ । ରାତରେ ବଡ଼ ବଡ଼ ପିଲାଗୁଡ଼ିକ ଶାନ୍ତ ହୋଇ ଆସନ୍ତି ଆଉ ଅମାନିଆ କି ଅଶାନ୍ତ ହୁଅନ୍ତି ନାହିଁ । କେହି ଯେତେବେଳେ ଲକ୍ଷ୍ୟ କରି ନ ଥାନ୍ତି, ସେତିକି-ବେଳେ ଉଭାନ ହୋଇଯାନ୍ତି ସ୍ପେଭସେସ୍ପେଙ୍କୋ । ସତେ ଯେମିତି ତରଳ ବାଷ୍ପ ହୋଇଯାଏ; ଶେଯ ଢଆଣକଲାବାଲା ବଧବାଟି ଉଭେଇଯାଏ ବି ! କବର ସ୍ଥାନଠୁ ଦୂରରେ, ବହୁତ ଦୂରରେ କେଉଁଠୁ ଏବେ ଭାସି ଆସେ ଗଭୀର ଗଳାର ଆକର୍ଡ଼ିଅନ୍‌ର ସ୍ୱର—ଲୁଦ୍‌ମିଲ୍ଲାର ମାଆ ବସି ରହିଥାନ୍ତି ଯେମିତି ବେଞ୍ଚଟି ଉପରେ ବଙ୍କେଇ ଯାଇ ଧନୁଟି ପରି—ପିଠିଟି ତାଙ୍କର ଦିଶୁଥାଏ ବିଲେଇର ପିଠି ଯେମିତି ! ଆଇମା ଚାଲିଗଲା, ଧାଇଁଟିଏ ଅଭ୍ର ବାହାଘର ଲାଗି ମଧ୍ୟସ୍ଥିକାରିଣୀ ଆମର ପଡ଼ୋଶୁଣୀ ସୁପେଖଲା ସାଥିରେ ଚାହା ପିଇବା ପାଇଁ ।—ସେଇ ପଡ଼ୋଶୁଣୀଟି ଆମର ଯେମିତି ବିଶାଳ ସେମିତି ନାକଟି ପାଇଥାଏ ବଡ଼କ ଚଞ୍ଚୁ ଭଳି । ତାର ପିଲପଟ ସମତଳିଆ ମର୍ଦ୍ଦାନ ଛାତିରେ ଲାଗିଥାଏ ସୁନାର ପଦକ ଗୋଟାଏ, "ମରି ସରି ଯାଉଥିବା ଲୋକଙ୍କୁ ଉଦ୍ଧାର କରିବା ପାଇଁ" ଡାହାଣୀଟାଏ, ପୁଣି ଗୁଣିଆଣୀଟାଏ ମନେକରି କଏ ବା ଡ଼ରୁ ନଥାଏ ତାକୁ । ଆମ ଗଳିରେ ଶୁଣାଯାଏ, କହନ୍ତି ସବୁ—ଥରେ ସେ କୁଆଡ଼େ ଗୋଟାଏ ହୁତ୍ ହୁତ୍ ଜଳନ୍ତା ଘର ଭିତରୁ ଟେକିଟାକି କରି ବୋହି ଆଣିଥିଲା ଏକାଥରକେ ଛନୋଟି ପିଲା ଆଉ ରୋଗିଣୀ ମାଇପିଟିକୁ ।

ଆଇମାର ଭଲ ପଡ଼େ ତା ସାଥିରେ—ସାଙ୍ଗ ସେମାନେ । ଯେତେବେଳେ ସେମାନେ ରାସ୍ତାରେ ଆସୁ ଆସୁ ହାବୁଡ଼ିଯାନ୍ତି ପରସ୍ପରକୁ, କେମିତି ଗୋଟିଏ ବିଶେଷ ଧରଣର ମଧୁର ହାର୍ଦ୍ଦିକତାରେ ହସାହସି ହୁଅନ୍ତି ବହୁତ ଦୂରରେ ଥିଲେ ବି ।

କୋସ୍ତ୍ରୋମା ଆଉ ମୁଁ ଆମ ଫାଟକପାଖେ ବେଞ୍ଚରେ ଯାଇ ବସିଲୁ ଲୁଦ୍‌ମିଲ୍ଲା ପାଖରେ । ଲୁଦ୍‌ମିଲ୍ଲାର ଭାଇକୁ ଲଢ଼ିବା ଲାଗି ଚ୍ୟାଲେଞ୍ଜ କରିଥାଏ, ଲଢ଼େଇ ଡାକରା ଦେଇଥାଏ ଚୁର୍କା । ସେମାନେ ଏବେ ଗଳିମୁଠାରେ ଧରାଧରି ଭିଡ଼ାଭିଡ଼ି ହୋଇ ଧୂଳି-ଉଡ଼ା ଆରମ୍ଭ କରିଦେଲେ ।

"ବନ୍ଦକର !" ଭୟରେ ପାଟିକରି ଉଠିଲା ଲୁଦ୍‌ମିଲ୍ଲା ।

କୋସ୍ତୋମା ନଜର କଲାଆଖିର କଣୁଆ ଗୃହାଣୀକୁ ନବଦ୍ଧ ରଖି ତା ଉପରେ, ଗପି ଲଗିଥାଏ ଶିକାରୀ କାଲନନ୍‌ଟା ସମ୍ପର୍କରେ- ଝ ଭୁଝ୍ ଭୁଣ୍ଟଆ ପୋପସ୍ତ ଫିମ୍ପି ମସ୍ତ ବୁଢାଟିଏ—ଆଖିରେ ତାର୍ ଧୂର୍ତ୍ତତା । ଏଡ଼େ କୁଜାଡ଼ିଆ ନାଆଁ—ବସ୍ତିଟାରେ କାହାକୁ ଅଛପା ନଥାଏ । ଅଲଦ୍ଦନ ତଳେ ମରଯାଇଥାଏ ସେ—କହୁ ଯାଉଥାଏ କୋସ୍ତୋମା—କବର ସ୍ଥାନର ବାଲରେ ତା କଫିନ୍‌ଟାକୁ ପୋତବେ କଣ ଗୁଡ଼ ଅସିଥିଲେ ବାହାରେ, ଭୂଇଁ ଉପରେ, ଅନ୍ୟ କବର ଗୁଡ଼ାକଠୁଁ ଟିକିଏ ଅଲଗା କର—ଦୂରଛଡ଼ା ଭାବରେ କଲା କଫିନ୍‌ଟା ରହଥାଏ ଗୋଟାଏ ଲମ୍ବା ସ୍ପୃଷ୍ଟର ବାଡ଼ ଭିତରେ- କଫିନ୍‌ର ଢୋଡ଼ଣି ଉପରେ ଧଳା ରଙ୍ଗରେ ଚନ୍ଦ୍ର ହୋଇଥାଏ ଗୋଟିଏ କ୍ରୁଶଚହ୍ନ ଗୋଟାଏ ତେଣ୍ଡା, ଗୋଟିଏ ସ୍ୱତବାଡ଼, ଆଉ ଦଖଣ୍ଡି ହାଡ଼ ।

କହୁଥାନ୍ତି ସମସ୍ତେ, ବୁଢା କୁଆଡ଼େ କଫିନ ଭିତରୁ ଉଠୁଥାଏ, ବାହାରୁଥାଏ ପ୍ରତ୍ୟେକ ଦନ ରାତରେ ; ବାହାରୁଥାଏ କ'ଣ ସବୁ ଖୋଜିବା ଉଦ୍ଦେଶ୍ୟରେ, ପହଲ କୁକୁଡ଼ା ଡାକଯାଏ ବୁଲବା ପାଇଁ କବର ସ୍ଥାନରେ ।

"ଏମିତ ଭୟଙ୍କର କଥାଗୁଡ଼ା, ଗପ ନା" ! ଅନୁରୋଧ କର କହଲ ଲ୍ୟୁଦ୍‌ମିଲ୍ଲା ।

"ଗୁଡ ମତେ, ଯିବାକୁ ଦେ !" ଲ୍ୟୁଦ୍‌ମିଲ୍ଲା ଭାଇର ମୁଠାରୁ ନଜକୁ ମୁକୁଳେଇ ନେଇ ପାଟିକର ଉଠିଲ ଚର୍କ୍ଵା । କୋସ୍ତୋମା ଆଡ଼କୁ ମୁହଁ ବୁଲେଇ ବଡ୍ରୁପ କଲ—"କାହିଁକ ମିଛଗୁଡ଼ାଏ ଗପୁଛୁ ରେ । ନଜେ କଣ ଦେଖିନ ମୁଁ—କଫିନ୍‌ଟା ପାଇଁ ଗାତ ଖୋଳୁଥିଲେ, ସେମାନେ—ଯୁଗ୍ଧଶିଳାଟା ପାଇଁ କବରର ଉପରଟାକୁ ଖାଲ ରଖିଦେଇ ଆସିଲେ । କ'ଣ ନା ରାତରେ ତା' ଭୂତଟା କବର ସ୍ଥାନଟାଯାକ ବୁଲୁଚ—ମଦୁଆ କଣ୍ଟାର ଟୋକା ଫାନ୍ଦ କର ହେଉଛ ସବୁ ।"

"ଗଲୁ ରାତଟା କଟାଇବାକୁ ଗଲୁ, କବର ସ୍ଥାନରେ, ଏତେ ଠିକ୍ କର କହୁଚୁ ଯଦ !" ଚର୍କ୍ଵା ଆଡ଼କୁ ଟିକଏ ହେଲେ ନ ଅନେଇ ଠୋ କନ ତାକୁ ଜବାବ୍ ଦେଲ କୋସ୍ତୋମା ।

ଯୁକ୍ତ କଥା କଟାକଟି ଆରମ୍ଭ ହୋଇଗଲ ସେମାନଙ୍କ ଭିତରେ— ବପର୍ଣ୍ଣ ଭାବରେ ମୁଣ୍ଡଟି ହଲଇ ମାଆ ଆଡ଼କୁ ମୁହଁ ବୁଲେଇଲ ଲ୍ୟୁଦ୍‌ମିଲ ।

"ରାତରେ କ'ଣ ଭୂତସବୁ ଯାଆ ଆସ କରନ୍ତି, ମାଆ ?" ପଚାରଲ ସେ ମାଆକୁ !

"ହଁ କରନ୍ତି ।" ସତେ ଯେମିତ ଦୂରରୁ କଏ ଡାକ ଉଠେଇ ଆଣିଥାଏ, ସେମିତକା ସ୍ୱରରେ କହୁ ଦୃଢ଼ଭାବରେ ପ୍ରମାଣ ଯୋଗେଇଦେଲ,

ଦୋକାନର ମୋଟା ଥାକୁଲ, ଲାଲଗାଲିଆ କୋଡ଼ିଏ ବର୍ଷର ପୁଅ ଭ୍ୟାଲ୍‌ଓକ୍ କେତେବେଳେ ଅଳସେଇ ଚାଲି ଆସିଥାଏ ଆମ ପାଖକୁ, ଶୁଣୁଥାଏ ଯୁକ୍ତିତର୍କ, ବାକ୍‌ବିତଣ୍ଡା ସବୁ ଆମର ।

"ଦେଖ, ମୁଁ ତାକୁ କୋଡ଼ିଏ କୁପକ୍, ଦଶଟା ସିଗାରେଟ୍ ଦେବି, ସକାଳ ଯାଏ ସିଏ ଶୋଇ ପାରିବ କଫିନ୍ ଉପରେ । କିନ୍ତୁ ପାରିବ ନାହିଁ ଯଦି ମୋ ମନଇଚ୍ଛା କାନ ମୋଡ଼ିବି ତୁମର ! ହେ—ଏଥର କ'ଣ କହୁଚ ସବୁ ?"

ଟାଣିଓଟାର ହୋଇ ନୀରବତା ଘୋଟି ଆସିଲା, ଅପ୍ରାଭାବିକ ଭାବରେ; ଭାଙ୍ଗିଲା, ଲୁଦ୍‌ମିଲ୍ଲା ମାଆଙ୍କ ସ୍ୱରରେ—

"କି ବାଜେ କଥା ସ !" କହି ଉଠିଲେ ସେ— "ସେମିତିକା କାମ କରିବାକୁ ପିଲାଙ୍କୁ ସବୁ କୁହାଯାଏ ନା କ'ଣ ?"

"ମତେ ରୁବ୍‌ଲଟାଏ ଦେ, ମୁଁ କରିବି !" ଫୁସୁଫୁସୁ କରି କହିଲା ଚୁର୍କା !

"କୋଡ଼ିଏ କୁପକ ପାଇଁ କରିବାକୁ ଡର ମାଡ଼ୁଛି, ନାହିଁ ?" ଈର୍ଷାରେ ଅସ୍ପଷ୍ଟାରେ ପଚାରିଲା କୋସ୍ତୋମା ! ଯାଚ୍, ରୁବଲଟାଏ ଯାଚ୍ ଭାଲ୍‌ଓକ୍ ସେ ସିବ ନାହିଁ ସ କେବେହେଲେ । ତୁଚ୍ଛାଟାରେ ବଢ଼େଇ କାଢ଼ୁଚି ।"

"ବେଶ୍ ତେବେ, ଦେବି ରୁବଲଟାଏ, ଦେବି !"

ଚୁର୍କା ଭୂଇଁ ଛାଡ଼ି ଉଠିଲା, ବାଡ଼ଟାକୁ କୁଣ୍ଢେଇ କୁଣ୍ଢେଇ ଧୀରେ ଧୀରେ ଚାଲିଗଲା । କୋସ୍ତୋମା ପାଟିରେ ଆଙ୍ଗୁଠି ପୂରେଇ ଶୂନ୍ୟରେ ସୁସିର ମାରିଲା କଇଁ କଅଁ କରି । ଲୁଦ୍‌ମିଲ୍ଲା ସେତେବେଳେ ଉଦ୍‌ବେଗରେ କହି ଉଠିଲା—

"ଇଲେ ମା ! ଏତେ ଯଦି—ଏମିତି ବଢ଼େଇ ଦେଖେଇବା ଅର୍ଥ କ'ଣ ଥିଲି ?"

"ଡରକୁଲା ପିଲାଟାଏ ସ"—ଚିହ୍ନାଇ ଦେଲା ଭ୍ୟାଲ୍‌ଓକ୍ ।—"କ'ଣ ନା ଦାଣ୍ଡଘାଟରେ ସମସ୍ତଙ୍କଠୁ ବଳି ଓସ୍ତାଦ୍ ଲଢ଼ୁଆ ଏମାନେ ! କୁକୁରଛୁଆ-ଗୁଡ଼ାକ, ତୁମେ—ଏଇଆ ଛଡ଼ା କଣ ଆଉ ତମେ ।"

ଅପମାନଟା ସହିଯିବୁ ? ବାଧିଲା ଭାରି, ସେଇ ମୋଟା ଥାକୁଲାଟାକୁ ଭଲ ପାଉ ନ ଥାଉଁ—ସବୁବେଳେ ସେ ପିଲାଗୁଡ଼ାଙ୍କୁ ଚିହ୍ନାଇ ମଜେଇ ବଦ୍‌ମାସି କରିବା ପାଇଁ ଶିଖଉଥାଏ, ଝିଅଗୁଡ଼ାଙ୍କ ନାଆଁରେ ଅତି କଦର୍ଯ୍ୟ ମିଛ କଥା ଗପୁଥାଏ—ଆଉ ତାଙ୍କୁସବୁ ଥଟା କରିବା ପାଇଁ, ତା ସଙ୍ଗେ ଫନ୍ଦିକିମି ଦେଖେଇବା ପାଇଁ ଫୁସୁଲଉଥାଏ । ପିଲାଏ ତା କଥା ମାନୁଥାନ୍ତି, ସେଇଥିପାଇଁ ପାନେ ପାନେ ବି ପାଉଥାନ୍ତି, କୋଉ କାରଣରୁ କେଜାଣି ମୋ କୁକୁରଟାକୁ ଦେଖି ପାରୁ ନ ଥାଏ ଆଦୌ, ଘୃଣା କରୁଥାଏ—ତା ଉପରକୁ ଟେକା ଫିଙ୍ଗୁ

ଥାଏ ତା'ର ଗୋଟାଏ ମସ୍ତ କାମ—ଥରେ ଯଦିନେ ତାକୁ ରୁଟିଖଣ୍ଡେ ଦେଇଥିଲି ଛୁଞ୍ଚୀ ଭର୍ତ୍ତି କରି ସେଥିରେ ।

କିନ୍ତୁ ସବୁଠୁ ବଳି ଆହୁରି ବେଶୀ ବାଧିଲା—ଦେଖିଲୁ, ଚର୍ଚ୍ଚି ଯେତେବେଳେ ଅପମାନିଆ ହୋଇ ଗ୍ଭଲିଗଲା ଲଙ୍ଗୁଡ଼ ଜାକି ।

ଭ୍ୟାଲ୍‌ଓଜ୍‌କୁ କହିଲି ମୁଁ—

"ଦେ, ମତେ ରୁବଲ୍‌ଟାଏ, ମୁଁ ଯିବି ?"

ହୋ ହୋ ହୋଇ ହସିଉଠିଲା ସେ, ମତେ ଧମକେଇ ବାଧ୍ୟ କରିବା ମତଲବ୍‌ରେ—ରୁବଲ୍‌ଟିଏ ବଢ଼େଇ ଦେଲା ଲୁଦ୍‌ମିଲ୍ଲା ମାଆଙ୍କ ହାତକୁ ।

"ନା, ନା, ମୋର ଲୋଡ଼ା ନାହିଁ, ଗ୍ଭହେଁନା ମୁଁ, ନେବିନି ମୁଁ ।" ରାଗରେ କହି କହି ଗ୍ଭଲିଗଲେ ଲୁଦ୍‌ମିଲ୍ଲାର ମାଆ । ଲୁଦ୍‌ମିଲ୍ଲା ବି ମନା କରିଦେଲା, ଛୁଇଁବି ନାହିଁ ରୁବଲ୍‌ଟାକୁ । ଏଥିରେ ଆମକୁ ଆହୁରି ବେଶୀ ଚିଡ଼ାଇବା ପାଇଁ ତେଜି ଉଠିଲା ଭ୍ୟାଲ୍‌ଓଜ୍ । ପଇସାପତ୍ର ଦାବୀ ନ କରି ସେମିତି ଯିବା ପାଇଁ ବାହାରୁଥିଲି ମୁଁ—କିନ୍ତୁ ସେଇ ମୁହୂର୍ତ୍ତରେ ଆଇମା ଆସି ପହଞ୍ଚିଗଲେ କୋଉଠୁ । ଘଟଣାଟା କଣ, କଣ ସବୁ ଗ୍ଭଲିଛି, ଶୁଣିସାରି ସେ ରୁବଲ୍‌ଟି ନେଇ ମତେ କହିଲା ଶାନ୍ତ ଅବିଚଳିତ ଭାବରେ !

"କୋଟ୍‌ଟା ପିନ୍ଧି—କମ୍ବଳ ଖଣ୍ଡେ ନେଇ—ସାହାନ୍ତା ବେଳକୁ ଥଣ୍ଡା ହେଉଛି ଭାରି ।"

ତା' କଥାରେ ମନରେ ମୋର ଦମ୍ଭ ଆସିଲା, ଭରସା ହେଲା—ଭୟଙ୍କର ଗୋଟାଏ କିଛି, ଘଟିବ ନାହିଁ ନିଶ୍ଚୟ ।

ଭ୍ୟାଲ୍‌ଓଜ୍ ସର୍ତ୍ତ ବାଢ଼ିଲା--ମତେ ସକାଳଯାଏ କଫିନ ଉପରେ ହିଁ ବସି ରହିବାକୁ ହେବ ବା ଶୋଇ ରହିବାକୁ ହେବ—ଯାହା ଯଡ଼ୁ ପଡ଼େ, ଏମିତିକି ବୁଢ଼ା କାଲିନିନ୍ ସେଥିରୁ ଉଠେଇ ବା ଗୁରୁଣ୍ଡି ବାହାରିଲା-ବେଳେ କଫିନ୍‌ଟା ହଲିବାକୁ ଆରମ୍ଭ କଲେ ବି ମତେ ସେମିତି ରହିବାକୁ ହେବ—ସେଠୁ ଚଳିବାକୁ ହେବ ନାହିଁ । ଯଦି ତେଇଁ ପଡ଼େ କଫିନ ଉପରୁ, ତେବେ ବାଜିଟା ହରାଇବି ମୁଁ ।

"ଦେଖ୍ ଏଥର," କହିଲା ଭ୍ୟାଲ୍‌ଓଜ୍, "ଗ୍ଭଉଯାକ ଆଖି ରଖିବି ତୋ ଉପରେ ।"

କବର ସ୍ଥାନକୁ ଯିବା ପାଇଁ ବାହାରିଲି ଯେତେବେଳେ, ଆଇମା କ୍ରୁଶ ଚହ୍ନଟି ଶୂନ୍ୟେ ଶୂନ୍ୟେ ଆଙ୍କିଲା ମୋ ଉପରେ, ଆଉ ମତେ ଧୀରେ ଧୀରେ କହିଲା—

"ଯଦି କିଛି ଦେଖିଲୁ ଦୋଷ ଲାଗିବ, ହଲଚଲ ହେବୁନି ଆଦୌ । ଖାଲି ଭଲରୁ ଚିକେ ପ୍ରାର୍ଥନା କରିବୁ 'କୁମାରୀ ମେରୀଙ୍କୁ ।

ଧାଇଁ ଧାଇଁ ଚାଲିଲି ମୁଁ ବାମଟା କେମିତି ସଅଳ ସଅଳ ଶେଷ କରିଦେବ । ସେଥିପାଇଁ ମନଟା ଅଥୟ ଉଦ୍‌ବ୍ୟସ୍ତ ହୋଇ ଉଠୁଥାଏ । ଭ୍ୟାଲିଓକ୍, କୋଷ୍ଟୋମା ଓ ଆଉ କେତୋଟି ପିଲା ଚାଲିଥାନ୍ତି ମୋ ସାଥିରେ । ଇଟା କାନ୍ଥଟା ଉପରେ ଚଢ଼ିଲାବେଳେ କମ୍ବଳରେ ଗୁଡ଼େଇ ହୋଇଗଲା ପାଦଟା—ଉଁଠୁ ଉଠୁ କଗୃଢ଼ ହୋଇପଡ଼ିଲି ମୁଁ—ବାଲିରେ ପଡ଼ି ଓଲଟି କନ୍ଥ ଛୁଟା ହୋଇଗଲି ମୁହୂର୍ତ୍ତିକରେ ଉଠିପଡ଼ିବା ଭଳି ଇଟା କାନ୍ଥର ଆରପଟରୁ ଆସିଲା, ଶୁଣିଲି—ହୋ ହୋ ହସ ! ଘର ଭିତରେ କୋଉଠି କ'ଣ ଗୋଟାଏ ଟୁଙ୍କକାନ ହେଲା ମୋର—ଗୋଟି ପୁଛା ହେମାଳ ହୋଇ ଆସିଲା ଦେହଟା—ଅଣ୍ଟାଟାଏ ପଶିଯାଇ ପିଠିରେ, ମେରୁଦଣ୍ଡରେ ତଳୁ ଉପରୁ, ଉପରୁ ତଳ ହେଲା ଯେମିତି ।

ଟଳ ଟଳ ହୋଇ ପଡ଼ି ଉଠି ପହଞ୍ଚିଲି କଫିନ୍ ପାଖରେ । ତା'ର ଗୋଟାଏ କଡ଼ ଭାଙ୍ଗି ହୋଇ ରହିଥାଏ ବାଲିରେ, ଆଉ କଡ଼ରେ ବାହାରକୁ ଦିଶୁଥାଏ ଫ୍ରେମ୍ ବା ଗ୍ରାଂଚରାଟାର ଟିକି ଟିକି ଚଟା ପାଦ କେତୋଟି—ଯତେ ଯେମିତି କିଏ ତାକୁ ଉଠେଇ ଖୋଲିବାକୁ ଚେଷ୍ଟା କରୁଥିଲା, ପାରି ନ ଥାଏ । କଫିନ୍‌ର ଧାରରେ ବସିପଡ଼ିଲି, ଆଖି ବୁଲିଗଲା ଚାରି ଆଡ଼କୁ । ଠାଆକୁ ଠାଆ କୂଦ, ତା ଉପରେ ଘଞ୍ଚାଳିଆ ହୋଇ ଯତେ ଅବା ବୁଣା ହୋଇଥାଏ, ପାଉଁଶିଆ ପାଉଁଶିଆ ବା ଧୂସରିଆ କଣ୍ଟାଗୁଡ଼ାକ । ସେସବୁର ଡେଙ୍ଗଡେଙ୍ଗା ଜଳନ୍ତା ଗଛଗୁଡ଼ିକ ଚମ ଧୂଡ଼ୁ ଧୂଡ଼ୁ ହାତଗୁଡ଼ିକୁ—ଆଲିଙ୍ଗନ କରି ଜାକିଟି-ମକଟି ଧରିଥାଏ ରୁମ ଭଳି ଟାଙ୍କୁର ଉଠିଥିବା ଠିଆ ଠିଆ ସମାଧିକୂଦ-ଗୁଡ଼ିକୁ । ଏଠି ସେଠି, କଣ୍ଟାଗୁଡ଼ିକ ମଝିରେ ମଝିରେ ଏକୁଟିଆ ପଡ଼ି ଯାଇଥିବା କବରକୁ ସବୁ ସଯୋଗ କରି ଛୁଆ ହୋଇଥାଏ ସବୁ ସବୁ ରୋଗଣା ରୋଗଣା ବାର୍ଚ ଗଛ କେତୋଟି । ସେହି ବାର୍ଚଗଛର ଗୁଳରେ ସତେ ଅବା ବୁଣା ହୋଇଥାଏ ଆଉ ତା ଭିତର ଭେଦ ଭେଦ ଉଠିଥାଏ ଅନାବନା ବଡ଼ ବଡ଼ ଘାସ । ଏହି ଝିଲମିଲ ପାଉଁଶିଆ ଛୁଣ୍ଡା କେଙ୍କଡ଼ା ଆବଡ଼ାଖାବଡ଼ା ଦୃଶ୍ୟଟା ଲାଗିଲା ସବୁଠୁ ବଳି ଭୀଷଣ—ବିରାଟ ଗୋଟାଏ ଦୈତ୍ୟ—ଆକୃତିର ଚୁପାରୂପ ଭଳି ରହିଥାଏ କବର୍ ସ୍ଥାନର ଗିର୍ଜାଟି—ନଷ୍ଟଲ ବନ୍ଧଗୁଡ଼ିକ ଭିତରେ ମୁହାଁମୁହିଁ ଝଲମଲ କରି ଉଠୁଥାଏ ଖାଲି ଗ୍ରେଟ ପାଣ୍ଡୁର ବୁଡ଼ିଯାଉଥିବା ଜହ୍ନଟି ।

ସ୍କାଜର ବାପଟା, "ନହାଉ ନକମ୍ବା ବାଜେ ମୃତ୍ସିକ୍ ମଲୁଆ"—ଜଗୁଆଳଘଣ୍ଟାଟାକୁ ବଜେଇଲା ଅଳସ ଭାବରେ । ଯେତେଥର ସେ ଘଣ୍ଟାର ଦଉଡ଼ିକୁ ଟାଣୁଥାଏ ସେତିକି ଥର ସେଇଟି ଗୋଟାଏ ଦୁର୍ବଳା ଗୁଡ଼ପଟା, ଦେହରେ ଦାଙ୍କି ଅତି କରୁଣ ଝିଙ୍ଗ୍ ଝିଙ୍ଗ୍ ସ୍ୱର ସୃଷ୍ଟି କରୁଥିଲା

ତା' ପରେ ରହି ରହି_ସଂକ୍ଷିପ୍ତ ସ୍ୱରରେ ଆସୁଥାଏ ଗ୍ରେଟ ଘଣ୍ଟାଟିର କେମିତି ଗୋଟାଏ ଛୁଟିଅସ୍ତ୍ର ଆବାଜ୍।

ମନେପଡ଼ିଲା ମୋର ଜଗୁଆଳର କଥାଟି "ହେ ଠାକୁରେ ରକ୍ଷାକର ଆମକୁ ସବୁ ଅନିଦ୍ରାରୁ ଉଜାଗର ରାତିଗୁଡ଼ିକରୁ।"

ସବୁ କେମିତି ବୀଭତ୍ସ, ଭୟଙ୍କର—କେତେକ କାରଣରୁ ନିଃଶ୍ୱାସ-ରୋଧୀ! ଗମ୍ ଗମ୍ ହୋଇ ଝାଳ ବୋହିଗଲା ଦେହରୁ—ସଜଟି ବେଶ୍ ଥଣ୍ଡା ଲାଗୁଥିଲା ଯଦିଓ। ଜଗୁଆଳର କୁଡ଼ିଆରେ ପହଞ୍ଚି ପାରିବି ତ ଯଦି ବୁଢ଼ା କାଲିନନ୍ କଫନ୍ ଭିତରୁ ବାହାରେ, ବାହାରିବା ପାଇଁ ମୁହଁ କାଢ଼େ—

ଠିକ୍ ନିଶ୍ଚି କରି ଜାଣିଥାଏ ମୁଁ କବର ସ୍ଥାନଟିକୁ—ଅନେକ ଅନେକ ଥର ଖେଳିଥାଏ ମୁଁ ସେଠି ସେ କବରଗୁଡ଼ାକ ମଝିରେ, ଷ୍ଟାଜ ଆଉ ଅନ୍ୟ ସବୁ ବନ୍ଧୁଙ୍କ ସାଥିରେ। ହେଇ, ସେଠି, ଗୀର୍ଜା ନିକଟରେ ମାଆର କବରଟି—ସେଇଠି କବର ଦିଆ ହୋଇଛି ତାକୁ! କବରରେ ଶୋଇଛି ସେ!

ସମସ୍ତେ ଶୋଇପଡ଼ି ନ ଥାନ୍ତି ସେତେବେଳ ଯାଏ। ବସ୍ତିରୁ ଭାସିଆସୁଥାଏ ଚାଲକୁ ଚାଲ ହସର ଛଟ୍‌କା, ଟେନାଏ ଟେନାଏ ଗୀତ, କଥାର ଟୁକୁରା କେଉଁଠି ପାହାଡ଼ଗୁଡ଼ିକରେ ରେଲବାଇ ବାଲିଖାଡରେ କି ନିକଟରେ କାଠଯୋଉକା ଗାଁରେ କେଁ କେଁ କଶରମିଚର ହେଉଥାଏ, ଘୁଉଁ ଘୁଉଁ କଇଁ କଇଁ ହେଉଥାଏ ଆକଡ଼ିଅନ୍‌ଟାଏ। ଅହୋରାତ୍ର ମାତାଲ କହ୍ନାଇ ମାସ୍କାଗ୍ରେଭ ଟଲଟଲ ହୋଇ ଆସିଲା କବର ସ୍ଥାନର ପାଚେରୀର ଆରପଟେ ଠିକ୍—ବାରି ପାରିଲି ତାକୁ ତାର ଗୀତ ପଦକରୁ—

ମାଆଟି ଆମର ଦୁଷ୍ଟ ବଡ଼,
ଏଡ଼େ ମାନଥାନ ବଢେଇ କାଢେ
ଛୁଟିଟି ଦେନେଇ ମଥାଟି ଟେକେ—
କେଉଁ ଟୋକାକୁ ବା ଦୁରୁଏ ପାଖେ
ଆମ ବାପାକୁ ଅନାଇ ଡାକୁଇ ଦେଖେ!

କାନରେ ବାଜିଲା ଜୀବନର, ଜୀବନ୍ତ ଲୋକର ପ୍ରେମନିଃଶ୍ୱାସର ଶବ୍ଦ। ବଳ ଆସିଲା, ଉତ୍ସାହ ଆସିଲା, ମନରେ କଳ୍ପି ଘଣ୍ଟାର ପ୍ରତ୍ୟେକଟି ଧ୍ୱନି ସହିତ ହେଲକୁହେଲ ସବୁ ନିଃଶବ୍ଦ, ସବୁ ନିସ୍ତବ୍ଧ ହୋଇଆସିଲା—ଏଇ ନିଃଶବ୍ଦତା, ନିସ୍ତବ୍ଧତା—ସ୍ରୋତସ୍ୱିନୀ ଭଳି ଉଦ୍‌ବେଳ, ତରଙ୍ଗାୟିତ ହୋଇଉଠିଲା ପ୍ରାନ୍ତରଗୁଡ଼ିକରେ—ବୁଡ଼ାଇ ଦେଇ, ଭସାଇଦେଇ, ନିଶ୍ଚିହ୍ନ କରିଦେଇ ଆଉ ଯେତେ ଯାହା ଥିଲା ଯେଉଁଠି, ଢେଉ ପରେ ଢେଉ ଉଠିଲା—ନିଃଶବ୍ଦତାର—ଗାଜଳ

ଆଉ ଉଠିଲି ନଗ୍ନଟିଆ ପ୍ରାନ୍ତର ଉପରେ—ଗୁଡ଼ାଇ ଦେଇ ସୀମାହୀନ ତଳାତଳହୀନ ଶୂନ୍ୟତାର ଜଙ୍ଘାପିତ ହୋଇଗଲି—ନିର୍ବାଣ ପାଇଗଲା ମୋର ଆତ୍ମାଟା— ଶୂନ୍ୟତାର ସେଇ ଅଥଳ ପାରାବାରରେ, ହଜିଗଲା ଯେଉଁଠି କାହିଁ କେଉଁ ଅପହ୍ନବରେ ଜାଉଁଛନ୍ତି, ଜକ୍ ଜକ୍ ହୋଇ ଜଳୁଛନ୍ତି ଖାଲି ତାରା-ଗୁଡ଼ିକ—ଯେଉଁଠି ଆଉ ସବୁ ନିହତ ହୋଇଯାଇଛୁ, ଲୋପ ପାଇଯାଇଛୁ ମୃତ ଆଉ ପ୍ରଚଳନ ଓ ପ୍ରବର୍ତ୍ତନର ଅତୀତ, ଅପ୍ରଚଳିତ – ସେଇଥିରେ ହିଁ ମିଳାଇଗଲା ହଜିଗଲା ମୋର ଆତ୍ମା ।

କମ୍ବଳଟି ଘୋଡ଼ାଇଁ ହୋଇ ଗୋଡ଼କୁ ଜାକିଜୁକି ନେଇ ବସିଲି ମୁଁ ଗୀଜାଁକୁ ମୁହଁକରି—ଯେତେ ଥର ହଲଚଲ ହେଲି ଟିକିଏ—ସେତେ ଥର ମଟ ମଟ କଟ କଟ କଲା କଫିନ୍‌ଟା—ରଗଡ଼ ହୋଇ ରଚ ରଚ ହେଲା ବାଲି ।

କଣଟାଏ ମାଟିରେ ବାଜିଲା ଆସି ପଛ ପଟରେ ମୋର—ବାଜିଲା ଆସି ଥରେ, ପୁଣି ଥରେ—ତା'ପରେ ଭଙ୍ଗା ଇଟା ଖଣ୍ଡେ ପଡ଼ିଲା ଆସି କଫିନ ପାଖରେ । ଭୟରେ ଚମକି ପଡ଼ିବା କଥା । ସଙ୍ଗେ ସଙ୍ଗେ କିନ୍ତୁ ଅନୁମାନ କରିନେଲି ମୁଁ—ଭ୍ୟାଲଓକ୍ ଓ ତାର ସଗୀମାନେ ମତେ ଡରେଇବା ପାଇଁ ଢେକାପଥର ପକାଉଛନ୍ତି ପାଚେରି ଡିଆଁଇ । ନିକଟରେ ଯେ ଲୋକ ଅଛନ୍ତି ଏଇଥିରେ ହିଁ ପ୍ରୁଷ୍ଟବୋଧ କଲି—ଭଲ ଲାଗିଲା ମତେ ।

ମାଆ କଥା ମନେପଡ଼ିଲା ମୋର । ଥରେ ସିଗାରେଟ୍ ଟାଣିବାକୁ ବାହାରିଥାଏ, ସିଗାରେଟ୍-ଟଣା ଶିଖିଥାଏ, ମାଆ ଜାଣିପାରି ବ, ଘୁରି ଘୁଟ ପିଟିଲା, ସେତେବେଳେ କହି ପକେଇଥିଲି :

"ଛୁଉଁ ନା ମତେ······ହାତ ଦେନା ମୋ ଦେହରେ ମାଆ—ଏମିତି ତ ଖରାପ ଲାଗୁଛୁ ମତେ—ବାନ୍ତି ବାନ୍ତି ଲାଗୁଛୁ; ମୁଣ୍ଡ ଘୂରୁଛୁ", ଚାଲିଗଲି ମୁଁ ଚାଳୀ ପଛକୁ—ଶୁଣିଲି ଆଇ ମା'କୁ କହୁଥାଏ ମା :—

"କି କଠିଣ ମନଟା ମ ପିଲାଟାର ! କାହାକୁ ଭଲପାଏ ନି ସେ !"

ମାଆ ଏ କଥା କହୁଛୁ—ଶୁଣିଲାମାତ୍ରେ କେମିତି ଖରା କଷ୍ଟ ହେଲା ମନରେ । ମାଆ ଯେତେବେଳେ ଏହା ପରେ ଦଣ୍ଡଦେଲା ମତେ, ସେତେବେଳେ ତା' ଲାଗି ଦୁଃଖ ହେଲା ଯେମିତି ଅପମାନିଆ ଲାଗିଲା ବ ସେମିତି । ତାର ଦଣ୍ଡଗୁଡ଼ିକ ବୃଚିତ୍ ମୋର ପ୍ରାପ୍ୟ ଥିଲା—ପ୍ରାପ୍ଯ ନ ଥିଲା କହିଲେ ଚଳେ ।

ପ୍ରକୃତରେ ବହୁତ ଘଟଣା ଘଟେ ଜୀବନରେ । ବଡ଼ ଦୁଃଖ ହୁଏ, ଯନ୍ତ୍ରଣା ହୁଏ । ପାଚେରି ଆରପଟର ସେଇ ଟୋକାଗୁଡ଼ିକ, ସେମାନେ ଭଲରୂପେ ଜାଣିଥାନ୍ତି

କବର ସ୍ଥାନରେ—ଏକୁଟିଆ ରହିବା ମୋ ପକ୍ଷରେ କେଡ଼େ ଭୟାବହ ବା ନୁହେଁ । ତଥାପି ସେମାନେ ଆହୁରି ଡରାଇବାକୁ ଲାଗି ପଡ଼ିଲେ କାହିଁକି ?

ଇଚ୍ଛା ହେଲା, ପାଟିକରି କହିବି ସେମାନଙ୍କୁ—ଶୁଣେଇ ଦେବି ସେମାନଙ୍କୁ, "ନରକକୁ ଯାଅରେ, ଯମ ମୁହଁକୁ ଯାଅ ରେ ସବୁ ।"

କିନ୍ତୁ ସେଇଟା ତ କମ୍ ବିପଦ ଡାକି ଆଣି ନ ଥା'ନ୍ତା । କିଏ ଜାଣେ ଯମ ବା ସଇତାନ କି ଭଲ ଭାବରେ ନେଇଥାନ୍ତା କଥାଟାକୁ ? ସେ ଯେ ନିକଟରେ ଖୁବ୍ ନିକଟରେ ଥିଲା—ଏଥିରେ କ'ଣ ସନ୍ଦେହ ଥିଲା ଭଲା ତଳେ ହେଲେ !

ଘରିଆଡ଼ି ଅଭ୍ରରେ ପୂରିଥାଏ 'ବାଲୁଖଣ୍ଡଟା'—ବାଲିର ବିସ୍ତୃତିଟା । ଜହ୍ନ ଆଲୁଅରେ ଦବ ଦବ ଟିକିଏ, ଝକ୍ ଝକ୍ କରୁଥାଏ ସେଗୁଡ଼ିକ, ସେହିଥିରୁ ମନେପଡ଼ିଗଲା ମୋର ।

ଦିନେ ଓକା ନଈରେ କେମିତି ଶୋଇଥିଲି ମୁଁ ଗୋଟିଏ କାଠଭେଲା ଉପରେ—ଶୋଇ ଶୋଇ ଏକ ଲୟରେ ଅନେଇ ରହିଥିଲି ପାଣିକୁ ! ହଠାତ୍ ମୋ ଆଖି ସାମନାରେ ଝଟକି ଉଠିଲା ଚଗଲା ଦୁଷ୍ଟ, ଛୁଆ ପାଣିଭୂତଟିଏ । କରିକିଆ ହୋଇ ଏମିତି ଗତିକଲା ସେଇଟି, ଆସିଲା ସେଇଟି—ଲାଗିଲା, ଦର୍ଶୁତ ଠିକ୍ ମଣିଷର ଗାଲଭଳି, ମତେ କେମିତି ତରିକରେ ଚାହିଁଲା ଗୋଲ ଗୋଲ ତା'ର ଗ୍ରେଟ ଚଢ଼େଇ ଆଖିରେ । ମ୍ୟାପ୍‌ଲ ପତ୍ରଭଳି ଫଡ଼୍ ଫଡ଼୍ ହୋଇ ପାଣିର ଅତଳ ଗହ୍ୱରକୁ ଡେଇଁ ପଡ଼ିବା ଆଗରୁ ।

ସ୍ମୃତିଟା ମୋର ସକ୍ରିୟ ହୋଇଉଠିଲା ପ୍ରବଳ ଆଉ ପ୍ରଖର ଭାବରେ, ଜୀବନର ମୋର ବିଭିନ୍ନ ଘଟଣାକୁ ଠେଲି କରି ଆଣି । ରଚନା କରିଦେଲା ବାଧାର ପାଚେରୀଟିଏ—ଅବରୋଧର ପାଚେରୀଟିଏ ରଚନା କରିଦେଲା କଳ୍ପନାର ବିରୁଦ୍ଧରେ—କଳ୍ପନାର ସାମନାରେ—ସେଇ ଯେଉଁ କଳ୍ପନା ଜିଦ୍ ଧରି ବାଧାକରି ସୃଷ୍ଟି କରଉଥିଲା ସମସ୍ତ ପ୍ରକାର ବିଭୀଷିକା ।

ହେଉ, ଦୃଷ୍ଟାନ୍ତ ସ୍ୱରୂପ ଦେଖିଲେ—ହେଉ ହିଙ୍କଟାଏ ମାଡ଼ିଆସିଲା ବୋଧହୁଏ ଅପ୍ ଅପ୍ କରି ବାଲିରେ ତା'ର ବେଣ୍ଟାଣ ଗ୍ରେଟ ଗ୍ରେଟ ପଂଝା-ଗୁଡ଼ିକୁ ପକେଇ । ଏଇଥିରେ ଭାବି ବସିଲି ମୁଁ—ଗୋଟାଏ ଘରଭୂତ ଏମିତିକା ଟିକିଟିଏ ଠିଆ ଠିଆ କଣ୍ଢାଳିଆ ରୁମର ।

ମନେପଡ଼ିଲା, ଆଇମା କେମିତି ଚୁଲ୍ଲୀ ପାଖରେ ଆଉଜି କରି, ଦଣ୍ଡବତ କରିବା ଭଙ୍ଗୀରେ ଆଗକୁ ନଇଁ ବସେ—ଆଉ ମନ୍ତ୍ର ଗାଇଲା ପରି କହିହୁଏ :

"ଭଲ ଭୂତଟିରେ ମୋର ଟିକି ଭୂତଟି, ଭଲ ହେଉରେ ତୋର··· ଦେଏରେ ଦେ ଗିଳିଦେଏ ଅସରପାଗୁଡ଼ାକୁ···"

ଦୂରରେ, ବହୁ ଦୂରରେ, ଅଦୃଶ୍ୟ ସହରଠୁ ଦୂରରେ ବହୁ ଦୂରରେ—ଆଲୁଅ ଟିକେ ଫିଟି ଫିଟି ଆସିଲା ଆକାଶରେ—

ଉଜ୍ଜ୍ୱଳ ହୋଇଆସିଲା ଆକାଶଟା । ଭୋରର ଶୀତୁଳିଆ ପବନଟା ଛୁଇଁ ଛୁଇଁ ଗାଲ ଦିଓଟିକୁ ମୋର, ମାଡ଼ି ମାଡ଼ି ପଡ଼ିଲା ଆଖିପତା ଯୋଡ଼ିକ, ଖସି ଖସି ଲାଗିଲା ସତ—ଜାକ ଜୁକ ହୋଇ ମେଣ୍ଟିଏ ହୋଇଗଲି ମୁଁ—ବଲଟାଏ ପରି ଗୋଲ ହୋଇଗଲି । ଜାକିଜୁକି ହୋଇ ଶୋଇଲି, ମୁଣ୍ଡ ଉପରକୁ ଟାଣିଦେଲି କମ୍ବଳଟାକୁ, ଆସୁ, ଯାହା ପାରୁଛି ଯାହା ଆସୁଛି, ଆସୁ ।

ଆଈମା ଆସି ଉଠେଇଲା ମତେ କେତେବେଳେ, କମ୍ବଳଟିକୁ ଟିକେ ଟାଣି ଟାଣି, ଭଡ଼ି ଭଡ଼ି ଛନ୍ଦାହୋଇ ଥାଏ ପାଖରେ, କହୁଥାଏ—

"ଉଠରେ—ଧନ ଉଠ ! କଣ ଅଣ୍ଡା ଧରିଲା ? ଏମିତି କ'ଣ ଭୟ ଜନ୍ମାଇଲା ଭଳି କିଛି ଥିଲା ?"

ହଁ—ମା ଡରମାଡ଼ିଲା ।

"ହଁ ମା, ଡର ମାଡ଼ୁଥିଲା ସତ, କିନ୍ତୁ କାହାକୁ କହୁ ନାହିଁ, ସେଇ ପିଲା-ଗୁଡ଼ାକ ନ ଜାଣନ୍ତୁ ଯେମିତ !"

"କାହିଁକି ଯେ ? ଜାଣିବେନି କାହିଁକି ଯେ ?" ଆଶ୍ଚର୍ଯ୍ୟ ହୋଇ ଟିକିଏ ପଚାରିଲା ଆଈମା—"ତୋର ଯଦି ଭୟ କରିବାର କାରଣ ନ ଥିଲା, ତା'ହେଲେ କଣ ଯେନି ତୁ ଗପ କରିବୁ—ତୋର ଗପ ଦେଖେଇବା ରହିଲା କଣ ?"

ଘରଆଡ଼େ ମୁହାଁଇଲୁ । ବାଟରେ ସ୍ନେହରେ ଆଉ ଆବେଗରେ କହିଲା ଆଈ ମା—

"ନିଜେ ତତେ ସବୁ ପରଖି ଦେଖିବାକୁ ହେବରେ କୁନି କୁନି ପାରିବୁଆଟି ମୋର ; ନିଜେଇ ତତେ ଶିଖିବାକୁ ହେବ—ଟିକିନିଖି ସବୁ ନିଜ ପାଇଁରେ ତୋର, ତୁ ଯଦି ନିଜେ ଖୋଜି ବାହାର ନକରୁ କିଛି, ନିଜ ବାଟ ନକାଟୁ କେହି ଶିଖେଇବେ ନାହିଁ, ବତେଇବେ ନାହିଁରେ !"

ସଞ୍ଜବେଳ ପୁଣି ମୁଁ "ବୀରେନ୍ଦ୍ର" ହୋଇ ଯାଉଥିଲି ଆମ ଗଳିରେ ସମସ୍ତେ ପଚାରିହେଲେ ମତେ :

"ଭାରି ଭୟଙ୍କରିଆ ନ ଥିଲା ?"

ଆଉ ଯେତେବେଳେ ମୁଁ କହିଲି—"ହଁ, ଥିଲା !" ମୁଣ୍ଡଟିମାନ ହଲେଇ କହି ଉଠୁଥିଲେ ସେମାନେ—"ଦେଖିଲ, ଦେଖୁଛ ?"

ନିଜର ଦୃଢ଼ ବିଶ୍ୱାସଟାକୁ ବଡ଼ପାଟିରେ ଘୋଷଣା କଲା ଦୋକାନଦାର :—

"ସ୍ୱାମୀମାନେ, ସେମାନେ ମିଛ କହୁଥିଲେ, କାଲିନନ୍ କବର ଭିତରୁ ବାହାରୁଛି । ଯଦି ସେ ବାହାରୁଥିବ, ସେ କ'ଣ ଆଉ ପିଲାଟାକୁ ଦେଖି ଡର-ଯାଇଥାନ୍ତା ? ଗୋଟାଏ ଚଟକଣାରେ ତ ସେ କବର ସ୍ଥାନରୁ ବାହାରେ ଉଡ଼େଇ ଦେଇଥାନ୍ତା ପିଲାଟାକୁ—ଭଗବାନ ଜାଣନ୍ତୁ—କୁଆଡେ ଦୋଲି କୁଆଡେ !"

ସୋହାଗମୟ ବସ୍ଯୁସ୍ବରେ—ସଚକିତ ସ୍ନେହରେ ମତେ ଅନେଇଲା ଲୁଦ୍‌ମିଲ୍ଲା—ଏମିତିକି ଖୁସ୍‌ ହୋଇଗଲେ ଅଜା ବି । କାରଣ, ସେ ଦାନ୍ତ ନକୁଟି ଛିଁ ଛିଁ ହେଲେ ଖାଲି ଚର୍କ୍କା । କେବଳ ରାଗରେ ଜର୍ଜ୍ଜର ହୋଇ କହିଲା—

"ଏଇଟା ବା କି କଥା ତା ପାଇଁ—ଖୁବ୍‌ ସହଜ । ତାର ଆଈମାଟା ଡାହାଣୀ ଯେ !"

## ତିନି

ସକାଳର ଚାରିଟି ଭଲ ଗୁରୁତ୍ୱପୂର୍ଣ ଘଡିରେ ମଳଣପତ୍ର ଉଭେଇଗଲା ଖାଇଟି ମୋର, କୋଳପ୍ୟା । ସେ ଆଈମା ଆଉ ମୁଁ ଶୋଉଥାଉ ବାହାରେ ଯାଇ ଗୋଟିଏ ଗୃହଆରେ—କାଠଗଦା ଉପରେ ପୁରୁଣା ଛିଣ୍ଡା ମଇଳା କନା, କନ୍ଥା, ଅଖାଫଖା ବିଛେଇ ଦେଇ । ନାଆଁକୁ ମାତ୍ର କାନ୍ଥ । ଗୋଟାଏ ଏମିତି ଦୋହଲା—ପାତଳା ମାଟି ଆଉ ପଟେ ଘରମାଲିକ ରଖିଥାଏ କୁକୁଡ଼ାଗୁଡ଼ିକ । ପ୍ରତ୍ୟେକ ଦିନ ସନ୍ଧ୍ୟାରେ କାନରେ ଆମର ବାଜୁଥାଏ ପେଟପୂରା ଖାଇପିଇ ବେଶ୍‌ ତୃପ୍ତ ଯେତେକ କୁକୁଡ଼ାଗୁଡ଼ିକର କକ୍‌ କକ୍‌ ଆଉ ଡେଣାଗୁଡ଼ିକ ଫଡ୍‌ ଫଡ୍‌ ଶବ୍ଦ—ପ୍ରତ୍ୟେକ ଦିନ ସକାଳେ ପୁଣି ଉଠିପଡ଼ୁ ଥାଉଁ ସୁନେଲି ଗୋଟାଏ ମୁରୁଗା ବା କୁକୁଡ଼ାର ଗମ୍ଭୀର ଗଳାର ଚଢ଼ାଧର ଡାକରେ !

"ତୋ ମୁଣ୍ଡଟା କାଟିଦେଇ ନାହାନ୍ତିରେ ସେମାନେ, କାଟିଦେବା ଉଚିତ !" ସକାଳୁ ଦିନେ ନିଦରୁ ଉଠୁ ଉଠୁ ଅତି ଅସନ୍ତୋଷରେ କଡ୍‌ କଡ଼୍‌ ହେଲା ହେଲା ଆଈମା ।

ସେତେବେଳକୁ ଉଠି ସାରିଥାଏ ମୁଁ । ଶୋଇ ଶୋଇ ଦେଖୁଥାଏ, କାନ୍ଥର କଣାଗୁଡ଼ିକ ବାଟେ ଝର ଆସୁଥାଏ ଝଲସି ଆସୁଥାଏ ସୂର୍ଯ୍ୟ କିରଣର ସରୁ ସରୁ ସୂଅଟି ମାନ—ରୂପେଲି, ଧୂଳିକଣା ସବୁ ନାଚୁଥାଏ ସେଥିରେ ପକ୍ଷୀ କାହାଣୀର ଶବ୍ଦ୍‌ଟିମାନ ପରି । କାଠଗଦାରେ ଖସ୍‌ ଖସ୍‌ ହେଉଥାନ୍ତି ମୂଷାଗୁଡ଼ିକ-କଳା ଟୋପିଟୋପି ପରି ଯେଉଁ ଲାଲ୍‌ ଲାଲ୍‌ 'କାଚ ପୋକ' ସୁର୍‌ସାର ହୋଇ ଧାଉଁଥାନ୍ତି ଆଗକୁ ପଛକୁ ।

ବେଳେବେଳେ ଖସି ରକ୍ଷା ପାଇବାପାଇଁ ଗହ୍ବର ଅଣନିଶ୍ୱାସିଆ ବାଷ୍ପରୁ ଗୁରୁଣ୍ଡି ଗୁରୁଣ୍ଡି ବାହାରପଡ଼େ ଗୃହଆରୁ—ପଳେଇ ଯାଏ ଗୃହ ଉପରକୁ ବସିଥାଇ ମୁଁ ଦେଖୁଥାଏ ଅଳସ ଭଙ୍ଗି ଉଠନ୍ତି ପଡ଼ୋଶୀ ସବୁ-ବିଶାଳକାୟ

ନିଷ୍ପାପ ଦେଖାଉଥିବା ଆଖିଗୁଡ଼ାକର ଦିଶୁଥାଏ କାହାର, ନିଦରେ ଫୁଲିଲା ଫୁଲିଲା ମୁହଁ ।

ଝରକାଗୁଡ଼ିକ ଭିତରୁ ଗୋଟିକରୁ ବୋତଲରୁ ସୋଲିଠିପି ଫିସ୍ କିନା ଛୁଟିକଲା ଭଳି,ଜଟବାନ୍ଧିଆ ମୁଣ୍ଡଟି ବାହାର ପକାଇ ମାଝି ଫର୍ମାନଭିର୍—ଗୋଟାଏ ସବୁବେଳେ ଗର୍ ଗର୍, ମାତାଲଟାଏ ସେ—ଫୁଲିଲା ଫୁଲିଲା ଆଖିର ସୋରମ୍ପିଆ ଡଣା ଦୁଇଟିକୁ ବୁଲେଇ ବୁଲେଇ ନେଇ ଟେକଦେଇ 'ଖଗ୍'କୁ ସ୍ୟାଁଆଡ଼କୁ ଘୁଁଘୁଁ ହେଲା ଘୁଷୁରିଟାଏ ପରି । ଅଜା ତାଙ୍କର ପତଳା ଲାଲ ବାଲଗୁଡ଼ିକୁ ଦ'ହାତରେ ସାଉଁଳି ସାଉଁଳି ଦୌଡ଼ିଆସିଲେ ଅଗଣାକୁ । ତରତରରେ ଧାଇଁଥିଲେ ସେ ଗାଧୁଆ ଘରକୁ – ଥଣ୍ଡାପାଣିରେ ମୁହଁ ହାତ ପଖାଳିବେ ବୋଲି । ଘରମାଲିକର ଜିଭଲହକ ସବୁବେଳେ ବକର ବକର ଗ୍ରେଫେଆଣୀଟା ଖଣ୍ଡାନାକୀ ବ୍ରଣମୁହଁୀଟା ଦିଶୁଥାଏ କୋଇଲିଟାଏ ଭଳି—ଘରମାଲିକଟା ନିଜେ, ଜଣାଯାଉଥାଏ ମାଉଁସିଆ ମୋଟା ବୁଢ଼ା ପାଗ୍ରଟାଏ ଯେମିତି ! ପ୍ରତ୍ୟେକେ ପ୍ରତ୍ୟେକେ—ମତେ ଲାଗୁଥାନ୍ତି ଗୋଟାଏ ଗୋଟାଏ ଚଢ଼େଇ କି ଜନ୍ତୁଜାନ୍ତୁ ଯେମିତି ।

ବେଶ୍ ନିର୍ମଳ ରମଣୀୟ ସକାଳଟା, କାହିଁକି କେଜାଣି ବିଷାଦରେ ଭରି ଉଠୁଥାଏ ମନଟା – ଆକୁଳ ହୋଇ ଉଠୁଥାଏ ହୃଦୟଟା—ଯାଆନ୍ତିକି ଟିକେ ବଣ ବାଲି ପଡ଼ିଆ କୋଉଁଠିକି—ବସନ୍ତି କି ବୁଲନ୍ତି ଯାଇ ଏକୁଟିଆ ! ଜାଣିଥାଏ କାଲି ମୁଁ ଏଇ,ଏଇ ଲୋକଗୁଡ଼ାକ ନିଶ୍ଚୟ ନଷ୍ଟ କରିଦେବେ ଉଜ୍ଜ୍ୱଳ ନିର୍ମଳ ଦିନଟିକୁ ।

ଥରେ ଏମିତି ମୁଁ ଖଟ ଉପରେ ଉଠି ଶୋଇଥାଏ, ଆଈମା ତାଙ୍କର ମୁଣ୍ଡ ହଲେଇ ବଛଣାକୁ ଠାରିଦେଇ କହିଲେ—ଧୀର ଧୀର କରୁଣ ସ୍ୱରରେ—

"କୋଲିଆ ଚାଲିଗଲା—ଆଉ ନାହିଁ ।"

କୋଲିଆ, କୁଆଟିଏ ସେ—ଖସିଯାଇଥାଏ ଲାଲ୍ ନରମ କନାର ତକିଆରୁ ପଶମ ଗ୍ରେଟ ଶେଯଟି ଉପରକୁ । ଗୋଟାଏଗୁଡ଼ା ନେଳା ପଡ଼ିଯାଇଥାଏ, ଲଙ୍ଗଳା-ହୋଇ ଯାଇଥାଏ । କାମିଜ୍‌ଟି ତାର ଟେକା ହୋଇଯାଇଥାଏ ବେକଯାଏଁ ପ୍ରାୟ ବାହାର ପଡ଼ୁଥାଏ ଖୋଲରେ ଫୁଲିଲା ପେଟଟି ଆଉ ଘାଆ ଘାଆଡ଼ର ଭରି ଚହ୍ନରେ ଗୋଡ଼ଦୁଇଟି । ହାତ ଦୁଇଟି ଗୁଞ୍ଜି ହୋଇ ଭିତ୍ତି ହୋଇରହିଥାଏ ପିଠିପଟେ ପିଠି ଘଷିରେ, ସତେ ଅବା ନିଜକୁ ଉଠେଇବାକୁ ଟେକିବାକୁ ଚେଷ୍ଟା କରୁଥିଲା ସେ—ମୁଣ୍ଡଟି ତାର ଇଷତ୍ ଢଳିଯାଇଥାଏ ଗୋଟିଏ କଡ଼କୁ ।

"ଭଲ ହେଲା—ଚାଲିଗଲା ସେ," ପାଚିଲାବାଲ ଦ କେଶ୍ୱ ଖଟରେ ହାତ ପୂରେଇ କୁଣ୍ଡାଉ କୁଣ୍ଡାଉ କହିଲେ ଆଈମା—ନଇଲେ କେମିତି ବା ବଞ୍ଚି ପାରିଥାନ୍ତା—ବଞ୍ଚିଥିଲେ ଚଳିପାରିଥାନ୍ତା—ଇସ୍ ତା ଭଳି ଦୁଃଖୀ ଏତେ ଅଭାଗା ଜୀବନଟିଏ !

ଅଜା ଆସିଲେ—ଆଦରରେ ଯତ୍ନରେ କୁଆଟିର ନିବୁଜ ଆଖି ଦୋ'ଟିକୁ ଛୁଇଁ ଛୁଇଁକା ଦେହ ପାଖରେ ନାଚଗଲେ ଗୋଡ଼ ବାଜେଇ ଧୀହାଏ—

"ମ, ମ ଏ କ'ଣ ? ଅଧୁଆ ହାତରେ ଛୁଅଁ ନାହିଁ ତାକୁ," ଖିତ୍ରଖିବରେ କହିଉଠିଲି ଆଈ ମା !

"ଆସିଲି ସଂସାରକୁ—ମାରିଲି ନିଃଶ୍ୱାସ ଦି' ଗୁଟା, ଖାଇଲି ପିଇଲି—ସବୁ, ସବୁ କୋଉଥିପାଇଁ ନୁହେଁ...... ତୁଛାକୁ"—ଝୁପ୍ ଝୁପ୍ ହେଲେ ଅଜା ! ଗୁଡ଼ାଏ'—

"ଦେଖିଲେ ମାଆ କଣଗୁଡ଼ାଏ କହିଯାଉଛନ୍ତି !" ବାଧା ଦେଲି ଆଈମା ।

ଆଈମା ଆଡ଼କୁ ଶୂନ୍ୟ ଉଦାସ ଦୃଷ୍ଟିରେ ଗୁହିଁଲେ ଟିକଏ ଅଜା—ଗୁଲିଗଲେ, ବାହାରିଗଲେ ଅଗଣାକୁ ।

"କର, ଯା'ଇଚ୍ଛା ତା କର—ଯା ଭଲ ଦିଶୁଚି," କହି କହିଗଲେ ସେ—'ତାକୁ କବର ଦେବାକୁ ପଇସାଟିଏ ନାହିଁ ମୋ ପାଖରେ ।"

"ହାୟରେ ଦୁଃଖର, ଦୟାର ଜୀବଟି ମୋର ।"

ମୁଁ ଗୁଲିଗଲି ବାହାରକୁ—ଫେରିଲି ସଂଜ ବେଳକୁ—ସେଦିନ ।

କବର ଦିଆଗଲା କୋଲିସ୍ୱାକୁ ତହିଁଆରଦିନ ସକାଳେ । ଗୀର୍ଜାକୁ ଗଲିନି ମୁଁ—ମଶାଣୀ କବରସ୍ଥାନରେ ସମସ୍ତ ଅନ୍ତ୍ୟେଷ୍ଟିକ୍ରିୟାଟା ପୂରାପୂରି ଶେଷ ହେବାଯାଏ ବସିରହିଲି ମାଆର କବର ପାଖରେ—ସେଇଠିଇ ଖୋଲା ହୋଇଥାଏ ମୋ ଗ୍ରେଟ ଭାଇଟି ପାଇଁ ! ମୋ କୁକୁରଟି ଆଉ ସ୍ୱାକ୍‌ର ବାପା ବସିଥାନ୍ତି ମୋ ପାଖରେ । ସ୍ୱାକ୍‌ର ବାପା କବରଟା ଖୋଳିବା ପାଇଁ ଏମିତି ନାଆଁକୁ ଖାଲି ନେଇଥାନ୍ତି କି ନାହିଁ—ସେଇ କଥା ଯେମିତି ଫୁଲପଣରେ ଘୋର୍‌ତେଇ ଗାଇ ହେଉଥାନ୍ତି ମୋ ଆଗରେ ।

"ଏଇ ତୁ ଖାଲି ମୋର ଗୋଟିଏ ବନ୍ଧୁ ବୋଲି—ନଇଲେ, ବୁଝିଲି ଦାବୀ କରିଥାନ୍ତି ରୁବଲ୍‌ଟାଏ ।"

ହାଲଦିଆ ଗାତଟାକୁ ଏକଲୟରେ ଅନେଇ ରହିଥାଏ ମୁଁ—ସେଥିରୁ ନିର୍ଗତ ହେଉଥାଏ କେମିତି ଗୋଟାଏ କୁତ୍ସିତ ଗନ୍ଧ । ଆଖିରେ ପଡ଼ିଲା କଳା କଳା ଛଉଫୁଟା ପଟା କେତୋଟି । ସାମାନ୍ୟ ଟିକେ ହଲଚଲରେ ଗାତଟାର ଅନ୍ଧାରିଆ ଗର୍ତ୍ତରେ ସୁର୍ ସୁର୍ ହୋଇ ଖସିବାକୁ ଲାଗିଲା ବାଲିଗୁଡ଼ାକ । ଜାଣିଶୁଣି ହଲଚଲ ହେଲି—ଏପଟ ସେପଟ ହେଲି ମୁଁ—ଯେମିତି ବାଲିଗୁଡ଼ାକ ଝର ଝର ପୋତିଦେବ—ଘୋଡ଼ାଇ ପକାଇବ ସେଇ ପଟା କେତୋଟିକୁ !

"ଏମିତିକା କୌଶଳ, ଗୁଲିଖି—ତୋର ପଟିବ ନାହିଁ ବାବୁ !" ସିଗାରେଟ୍ ପାଇପ୍‌ରେ ଦମେ ଧୂଆଁ ଟାଣୁଟାଣୁ ଉଆରିଲା ମତେ ସ୍ୱାକ୍‌ର ବାପା !

ଗ୍ରେଟ ଧଳା କଫିନ ବୋହି ଆଣିଲି ଆଈମା—"ନିକମ୍ମା ମ୍ୟୁଜିକ୍ ମୂଲିଆଟା ନେଇ ସ୍ୱାକ୍‌ର ବାପା କୁଦିପଡ଼ିଲା ଗାତ ଭିତରକୁ—ଆଈମା ହାତରୁ ସେଇ କଫିନ୍‌ଟି ନେଇ ରଖିଲା ଠିକ୍ ଫିମ୍‌ମିସିଆ ଛଉଫୁଟା ପଟାଗୁଡ଼ିକ ମୁଣ୍ଡରେ—କୁଦାମାରି ପୁଣି ବାହାରି ଆସିଲା ଗାତରୁ—ପାଦରେ ଆଉ କୋଡରେ

ଠେଲ ଠେଲ ଭରି କରି ଲଗିଲା ବାଲା ! ତା' ପାଇପ୍ଟାରୁ ଧୂଆଁ ଉଠୁଥାଏ 'ଭୁସ ଭୁସ' ହୋଇ ଧୂପଦାନୀରୁ ବାହାରିଲା ଭଳି ! ଆଇମା ଆଉ ଅଜା ନୀରବରେ ସାହାଯ୍ୟ କରିଯାଉଥାନ୍ତି ତାକୁ—ସେଇ ମ୍ୟୁଜିକ୍ ବା ମୂଲିଆକୁ । ପୁରୋହିତ ନାହିଁ—ଭିକାରୀଟି ନାହିଁ—କେହି କୁଆଡ଼େ ନ ଥା'ନ୍ତି—ନିଶୁଣିର ଗହଳି ଭିତରେ ଥାଉଁ ଖାଲି ଆମେ ଚାରିଜଣ !

ଜଗୁଆଳି ହାତକୁ ପଇସା ବଢ଼େଇ ଦେଉଁ ଦେଉଁ ଆଇମା ଗାଳିଦିଆ ସ୍ୱରରେ କହିଲି—

"ମୋ ଖରସ୍ତା ମାଡ଼ିଟିକ ଖର୍ଚ୍ଚିଲୁ ତୁ, ଖର୍ଚ୍ଚିଲୁ ?"

"ଆଉ କରିଥାନ୍ତା କ'ଣ, ଆଉ କ'ଣ ବାଟ ଥିଲା ଭଲା ! ତଥାପି ତ ପଡ଼ୋଶୀ ଗୋଟାକର ମାଟିରୁ କିଛି ଆଣିଲେ—ଠିକ୍ ଅଛି, ଠିକ୍ ଅଛି, ଷଡ ହୋଇନ !"

କବର ଆଗରେ ମୁଣ୍ଡ ନୁଆଁଇ ଧରଣୀକୁ ଦଣ୍ଡବତ କଲା ଆଇ ମା— ନିଃଶ୍ୱାସରେ ପେଲି ହେଉଥାଏ କେମିତି—ସୁଉଁ ସୁଉଁ ହୋଇ କାନ୍ଦିଲା ଟିକିଏ— ଧୀରେ ଧୀରେ ଚାଲିଗଲା ସେଠୁଁ । ପଛେ ପଛେ ତା'ର ଚାଲିଲେ ଅଜା, ପୁରୁଣା ଟିଣ୍ ଲମ୍ବା କୋଟ୍ଟିକୁ ଟାଣି ଟାଣି—ଟୋପିର ସାମ୍ନାକୁ ନୁଆଁଇ, ଆଗ ଆଡ଼ଟା ତଳେ ଆଖିଯୋଡ଼ିକ ଲୁଚାଇ

"ହଳ ହୋଇ ନଥିବା ଅନାବାଦୀ ଭୂଇଁରେ ଆମେ ବନ୍ଧନ ବୁଣିଥିଲୁ, ଆମର ।" ଡାମଗ୍ରାକାଉଟାଏ ବାଲରେ ଘିଆରରେ ତେଇଁ ତେଇଁ ଗଲାଭଳି ଝିରୁ ଭିରୁ ଆଖିରେ ଏଣିକି ତେଣିକି ଅନେଇ ଅନେଇ, ଆମ ଆଗେ ଆଗେ ଯାଉଁ ଯାଉଁ ହଠାତ୍ କହି ଉଠିଲେ ଅଜା :

"କଣ କହିଲେ ଅଜା ?" ପଚାରିଲି ଆଇମାକୁ ।

"ଠାକୁରେ ଜାଣନ୍ତି ! ତାଙ୍କର ତ ମତଗତି ଅଲଗା"—ଉତ୍ତର ଦେଲା ଆଇ ମା !

ଗରମ ପଡ଼ୁଥାଏ ସେ ଦିନ, ଧୀରେ ଧୀରେ ପାଦ ପୋତାଇ ଆଗରେ ମୋର ଚାଲିଥାଏ ଆଇମା —ଉଷୁମ ଉଷୁମ ବାଲିରେ ଗଳି ଗଳି ପଡ଼ୁଥାଏ--ବସିଯାଉ- ଥାଏ ପାଦ ଦୁଇଟି ତାର । ଅଧିକାଂଶ ସମୟରେ ଅଟକି ଯାଉଥାଏ, ରୁମାଲରେ ଝାଳ ପୋଛିବା ପାଇଁ ମୁହଁରୁ, କପାଳରୁ ।

ବହୁତ ଚେଷ୍ଟାକରି ଆବେଗଟାକୁ ଚାପି ରଖି ପଚାରିଲି, "କବର ଭିତରେ ସେହି କଳାକୋଟପିଆ ଜନଯଟା— ସେଇ କଣ ମାଆର କଫିନ୍ ?"

"ହଁ", ରୁକ୍ଷ ଭାବରେ କହିଲା ଆଇମା, "ସେଇ ନର୍ଯ୍ୟମ୍ ବୋକା ବୁଢ଼ା— କବରଖୋଳାଳଟା ! ବର୍ଷଟାଏ ହୋଇନି କେତେ ମାସ ଯାଇଛି ବା—ଭ୍ୟାଉଆ ପଚଗଲାଣି, ପଡ଼ିବାକୁ ଆରମ୍ଭ କଲାଣି । ସେଇ ବାଲି ସକାଶେ—ପାଣି ପଶିଯାଉଛି ସେଥିରେ ! ମାଟିଟା ଭଲ ।"

"ଏମିତି କଣ ସତି ଯାଆନ୍ତି ସମସ୍ତେ ?"

"ସମସ୍ତେ ! ସାଧୁସନ୍ଥମାନେ ରକ୍ଷା ପାଆନ୍ତି !"

"ତୁ କେବେ ସଢ଼ି ବୁନ ପଚବୁନ ଆଇ !"

ଅମ୍ବଜନ ଅଟକିଗଲା ,ସଳଖି ଦେଲା ମୋ ମୁଣ୍ଡରେ ଟୋପି ଟାକୁ । ଗମ୍ଭୀର ଭାବରେ କହିଲା—

"ସେ ବୟସ୍ବରେ ଭାବନା କରୁ । ଏଇକ୍ଷଣି ଭାବିବା ଉଚିତ ନୁହେଁ ତୋର ଏ ବୟସରେ ! ବୁଝିଲୁ !"

କିନ୍ତୁ ମୁଁ ଭାବିହେଲି ଗୁଆଁକୁ ଗୁଆଁ—

"କେତେ କୁତ୍ସିତ କେତେ ଘୃଣ୍ୟ—ଭୟଙ୍କର ମୃତ୍ୟୁଟା ! କେତେ ଜଘନ୍ୟ ସତେ !"

ଭାରି ଖରାପ ଲାଗୁଥାଏ ମତେ ।

ଆମେ ଘରେ ପହଞ୍ଚିଲା ବେଳକୁ ଅଜା 'ସାମୋଭାର' ଉଠାଉଛନ୍ତି ଟାକୁ ଲଗେଇ ଖାଇବା ଟେବୁଲକୁ ସଜାଡ଼ି ସାରିଥାନ୍ତି ।

"ଆସ, ଆମର ଟିକେ ଚାହା ପିଇବା ଦରକାର—ପାଗଟା ଏଡ଼େ ଖରାପ ।" କହିଲେ ସେ । "ମୋ ଚାହା ପଇଟି ମୁଁ ଦିଆଇବି ଆମ ସମସ୍ତଙ୍କ ପାଇଁ ବି ।"

ଆଇ ମା ପାଖକୁ ଯାଇ ତାର ପିଠି ଥାପୁଡ଼େଇଲେ ଦ'ଗୁଣ ଥର । "କଣ କହୁଚ, ଏଁ—କଣ କହୁଚ ମାଆ—ମନକୁ ଯାଉଚି ତ ?"

ଆଇ ମା ହାତଟେକି ଟିକିଏ ହଲେଇଦେଲା ପରେ କହିଲା, "କଣ କରିବ ସେ—କଣ କହିବାକୁ ଅଛୁ ।"

"ଠିକ୍, ଏଇଆ ଠିକ୍ ! ଭଗବାନ ତାଙ୍କର ରାଗରୋଷଗୁଡ଼ାକ ଢାଳିବାରେ, ଅଜାଡ଼ିବାରେ ଲାଗିଛନ୍ତି ଆମ ଉପରେ, ଆମକୁ ସବୁ ଆମ ଦେହ ମନରୁ ଛପେଇ ନେଇ ନେଇ ଟିକି ଟିକି କରି ପରିବାର ବଂଶଗୁଡ଼ାକ ଯଦି ଏକାଠି ଛନ୍ଦିବାନ୍ଧି ହୋଇ ରହିଥାନ୍ତେ, ଶକ୍ତକରି ହାତର ଆଙ୍ଗୁଠିଗୁଡ଼ାକ ଭଳି ଡମରୁ—ଏଃ ।

କେଜାଣି କେବେ, ଅନେକ ଦିନ ତଳେ ଏମିତି ଧୀର ଶାନ୍ତଭାବରେ ଏମିତି ମଧୁର ମମତାର ସହିତ ପଦେ ଅଧେ କହିଥିବେ ବା ଉତ୍କଣ୍ଠ ହୋଇ ଶୁଣୁଥାଏ ମୁଁ—ଆଶା ହେଉଥାଏ ସେ କମେଇଦେବେ ମୋ ଯନ୍ତ୍ରଣାଟିକ, "ଅଉ ମନରୁ ମୋର ପାସୋରିଇଦେବେ ସେହି କଳା କଳା ଦ'ଗୁଣ ଚେନା ଦେଖେଇ ଚମକ ଉଠୁଥାଏ ଯେଉଁ ହଳଦିଆ ଗାତଟା ମୋ ଆଗରେ (ଆଖିରେ) !

ତୀକ୍ଷ୍ଣ ଭାବରେ କିନ୍ତୁ ବାଧାଦେଲା ଆଇ ମା ।

"ଆଉ ! ସେତିକି ଥାଉ—ବନ୍ଦକର, ବାପା ! ଜୀବନଟାଯାକ ତ କହୁ ହେଉଛ ସେହି କଥାଗୁଡ଼ାକ । କେବେ ଭଲ କାହାର ସାହାଯ୍ୟରେ ଆସିଛୁ ସେସବୁ ।" ଜୀବନଟାଯାକ ଖାଇଲାଗିଛୁ ଲୋକଗୁଡ଼ାଙ୍କ ଭିତରେ ପଶି ପଶି—ଏମାନଙ୍କ ଖାଇଲା ଭଳି ଲୁହାକୁ ସବୁ । ଆଉ ପୁଣି ।"

ଖୁଁ କନ ହୋଇ ଅଜା ଗୃହିଁଲେ ଥରେ ଆଇ ମା'କୁ—ରୁନ ପଡ଼ିଗଲେ ଲୁଏଁ ଲୁଏଁ !

ସନ୍ତ୍ରରେ ଫାଟକ କଡ଼ରେ, ଲୁଦ୍‌ମିଲାକୁ କହିଲି ସବୁ, ସକାଳେ ଯାହାସବୁ ଦେଖିଥାଏ । କିନ୍ତୁ ଦେଖିଲି ତା ଉପରେ କିଛି ପ୍ରଭାବ ପକେଇଲା ନାହିଁ ଘଟଣାଟା । ତା ମନରେ କିଛି ଭାବଗ୍ରସ୍ତତା ବି ଆଣିଲା ନାହିଁ ଘଟଣାଟା ।

''ଭଲ ବରଂ ଅନେକ ଗୁଣରେ ଭଲ ବାପ-ମା-ଛେଉଣ୍ଡ ହେବା—ମୋର ବାପ ମାଆ ଯଦି ମରିଯାଆନ୍ତି, ଭଉଣୀଟିକୁ ଛାଡ଼ି ଦିଅନ୍ତି ଭାଇ ପାଖରେ, ଭାଇର ଦେଖାରଖା ପାଇଁ—ଆଉ ଜୀବନର ବାକି ସମୟତକ କଟେଇ ଦିଅନ୍ତି ଗିର୍ଜାରେ ସନ୍ନ୍ୟାସିନୀ ବା ମାତାଟିଏ ହୋଇ । ଆଉ କଣ କରି ପାରନ୍ତି ବା ? ବାହା ତ ହୋଇ ପାରିବ ନାହିଁ କେବେହେଲେ । ଭ୍ରେଟୀ ମୁଁ କାମ କରି ପାରିବ ନାହିଁ ଯେହେତୁରୁ । ଆଉ ପୁଣିଏ ଭ୍ରେଷ୍ଟ ପିଲା ସଂସାରକୁ ଆଣିବ ବା କାହିଁକି ?

ବୁଦ୍ଧି ଶୁଦ୍ଧି ଥାଇ କହନ୍ତି ଯେମିତି ସବୁ, ବସ୍ତୁରଶୀଲ ଭାବରେ କହିଲା ସେ ଆମ ସାହିର ସବୁ ମାଇପିଙ୍କପରି, କିନ୍ତୁ ମତେ ଲାଗୁଛି ସେହି ସନ୍ତ୍ରପରଠାରୁ ମୋର ଯାହା ଆଗ୍ରହ ଅନୁରାଗ ଥିଲା ତୁଟିଗଲା ତା'ଠୁ । ପ୍ରକୃତରେ କହିଲେ ମୋ ଜୀବନର ଧାରାଟା ଏମିତି ହୋଇଉଠିଲା, ତା' ସାଙ୍ଗରେ କେବେ କ୍ୱଚିତ୍ ବା ଭେଟ ହୋଇଥିବ ।

ମୋ ଭାଇଟିର ମୃତ୍ୟୁପରେ କିଛି ଦିନ ବିତି ଯାଇଥାଏ—ଅ.. । ମୋତେ କହିଲେ, "ଯା, ଆଜି ରାତିରେ ସଅଳ ସଅଳ ଶୋଇ ପଡ଼ିବୁ ଯା ! ସିନ୍ଦୁର ନଫାଟୁଣୁ ଉଠାଇ ଦେବି ତତେ ଯିବା କାଠପାଇଁ ଯିବା ଜଙ୍ଗଲକୁ ।"

"ଆଉ ମୁଁ ବି ଗୋଟେଇବି ଚେରମୂଳ !'' ଜଣେଇଲି ଆଇମା !

ଆମ ବସ୍ତିଠୁ ପ୍ରାୟ ଦି' ତିନମାଇଲ ଦୂରରେ ପାଟଭୂମି ଫିର ଆଉ ବାର୍ଚ ଗଛର ଜଙ୍ଗଲ । ବୁଦୁବୁଦୁକିଆ ଗଛ ଆଉ ଶୁଖିଲା ତାଳପତ୍ରରେ ଭର୍ତ୍ତି । ଗୋଟିଏ ଦିଗରେ ଏହା ବିସ୍ତାରି ରହିଥାଏ ଓକା ନଈ ଯାଏ, ଅନ୍ୟ ଦିଗରେ ଅତିକ୍ରମ କରିଥାଏ ମସ୍କୋ-ଅଭିମୁଖୀ ପ୍ରଶସ୍ତ ରାଜ-ପଥଟିକୁ । ଏହାର ବୁଦାବୁଦାକିଆ ପ୍ରକୃତି ଉପରେ ସମୁଚ୍ଚ କୃଷ୍ଣ ଛୁଞ୍ଚିଣୀ ତମ୍ବୁଟିଏ ପରି ଊର୍ଦ୍ଧ୍ୱଗ ହୋଇ ଉଠିଥାଏ ଫିର ବା ପାଇନ୍ ତରୁପୁଞ୍ଜିକ ପୁଞ୍ଜିକୁପୁଞ୍ଜ ଏହାକୁ ଡ଼କାଯାଉଥାଏ ''ଶାଭେଲଭର କେଶର ।''

ଏହି ସମସ୍ତ ଥିଲା କାଉଣ୍ଟ 'ଶୁଭାଲଭଙ୍କର' ସମ୍ପତ୍ତି । ସେ ଥିଲେ ଏହାର ସ୍ୱତ୍ତ୍ୱାଧି-କାରୀ କିନ୍ତୁ ଏହାର ସୁରକ୍ଷା ଦିଗରେ ଶିଥିଳ ଖୁବ୍, କେମିତି ହୁଗୁଲା ପ୍ରକୃତିର [illegible]

କୁନାଭିନୋ ସହରର ଅଧିବାସୀସବୁ ଜଙ୍ଗଲଟିକୁ ସଦାବେଳେ ମନେ କରୁଥିଲେ ସେମାନଙ୍କର ନିଜର ବୋଲି । ସେଥିରୁ ଅବାଧରେ ଡାଳପତ୍ର, କାଠିକୁଟା ନେଉଥିଲେ ସେମାନେ, ଏମିତିକି ଅକାରଣରେ ହାଣି ଶୁଆଇ ଦେଉଥିଲେ ଖାଲି ଶୁଖିଲା ମଲା ଗଛଗୁଡ଼ିକ ନୁହେଁ, ଜୀଅନ୍ତା ଚନଛନିଆଁ ଗଛଗୁଡ଼ିକୁ ! ଶରତକାଳ ଆସିଲା କ୍ଷଣି ବାହାରି ପଡୁଥିଲେ ଦଳ ଦଳ ହୋଇ ଜଙ୍ଗଲକୁ—ହାତରେ କୁରାଢ଼ି ଆଉ ଟାଙ୍ଗିଆ ଧରି, ଅଣ୍ଟାରେ ଦୌଡ଼ିମାନ ଗୁଡ଼େଇ, ଶୀତଦିନ ସକାଶେ ଜାଳେଣିକାଠ ସଂଗ୍ରହ କରିବେ, ବୁହାଇ ନେବେ—ସାଇତି ରଖିବେ ।

ଖୋର ଖୋରରୁ ତିନହେଁ ଆମେ ଅତିକ୍ରମ କରିଗଲୁ ଶିଶିରରେ ଭିଜା ଭିଜା ଚକ୍ ଚକ୍ ରୂପେଲି ଆଉ ଶ୍ୟାମଳ ବର୍ଣ୍ଣର ପଡ଼ିଆଗୁଡ଼ିକୁ ! ସତେ ଅବା ଖଣ୍ଡ ଚମ୍ପତ ନଇଲେ ନିସ୍ପୃହ ଆଉ ଉଦାସ-ରୂପସୀ ସୂର୍ଯ୍ୟଟି ଏମିତି ଧୀରେ ଧୀରେ ନଇଁ-ଆସିଲା ଓକା ନଈର ବୁକୁ ଉପରେ, ଦସ୍ତୋଭୋଲଭି ଗିରିମାଳାର ଆରକ୍ତିମ ସାନୁ-ଦେଶକୁ ଛୁଇଁ ଛୁଇଁ ଗୋଟାଏ କରରେ ସେଗୁଡ଼ିକର ଉଠିଆସିଲା, ସବୁଜ ଉପବନ ଆଉ ସ୍ୱର୍ଣ୍ଣିମ ମୀନାର ସେଇ ଶୋଭନ ଶୁଭ୍ର ନିଝ୍ନିନୋଭଗୋରୋଦର ଉପରେ । ସ୍ନିଗ୍ଧଶୀତଳ ତନ୍ଦ୍ରାଳସ ସମୀରଣଟିଏ ବହି ଆସୁଥାଏ ଶାନ୍ତ ଆଉ ନିସ୍ତଳ, ପଙ୍କିଳ ଓକାନଈ ଉପରୁ ! ଟୋପା ଟୋପା ଶିଶିର ଖଣ୍ଡ ଖଣ୍ଡ ଯେମିତି, ସେଇ-ଥିରେ ହିଁ ଝୁଲୁପଡ଼ି ଶିରଟିମାନ ଦୋଳାଉଥାଏ ସୁନେଲି ଝୁମୁକା ଫୁଲଗୁଡ଼ିକ । ଗଭୀର ମୌନତାରେ ମାଟିରେ ଝରି ଝରି ପଡ଼ୁଥାଏ ନୀଳ ଅପରାଜିତାଗୁଡ଼ିକ ! ବହୁ ବର୍ଣ୍ଣରେ ବିଚିତ୍ର ତୃଣଫୁଲଗୁଡ଼ିକ ଜିଦ୍ ଧରି ସତେ ବା ଆମେମାସ୍ତୁ ସ୍ୱତରେ ଗାଡ଼ ହୋଇ ରହିଥାଏ, ଛାଡ଼ିବାକୁ କୁଣ୍ଠିତ ତୃଣର ଶଯ୍ୟାଗୁଡ଼ିକରୁ । "ରାତିର ରୂପସୀ, ଲବଙ୍ଗଆକୃତିର ନାଲିଆସିଆ (ପିଙ୍କ୍) ଫୁଲଗୁଡ଼ିକ ଚାରିଆଡ଼େ ବିସ୍ତାରିତ ହୋଇ ଉଠିଥିଲା—ଲାଲ ଲାଲ ତାରାଗୁଡ଼ିଏ ଯେମିତି ।

ଜଙ୍ଗଲଟା ମାଡ଼ି ଆସିଲା ଆମ ଆଡ଼କୁ ଗୋଟାଏ ପରେ ଗୋଟାଏ ସୈନ୍ୟ ଶ୍ରେଣୀ ଭଳି ନିବିଡ଼ ଭାବରେ । ଶାଖାମସ୍ତ ଫିର୍ ଗଛଗୁଡ଼ାକ ଦିଶୁଥାଏ ପ୍ରକାଣ୍ଡ ବିହଙ୍ଗମଭଳି ! ଆଉ ବାର୍ଚଗୁଡ଼ିକ ମନେହେଉଥାଏ, ଲାଜକୁଳି ତରୁଣୀଟିମାନପରି-ପଡ଼ିଆ ଉପରେ ଖସି ଆସୁଥାଏ ଜଳୀୟ ପାଟଭୂମିର ତୀବ୍ର ଗନ୍ଧଟା । କୁକୁରଟି ମୋର ପାଖେ ପାଖେ ଚାଲୁଥାଏ, ଲାଲ ଜିଭଟାକୁ ଲହ ଲହ କରି ଅଟକେ ଯାଉଥାଏ । ଶୁଂଘ୍ ଶୁଂଘ୍ ହେଉଥାଏ, କେମିତି ଗୋଟାଏ ଅନସ୍ତସ୍ୱତା ବୋଧରେ ହଲଉଥାଏ କୋକଣିଆଳିଆ ମୁଣ୍ଡଟିକୁ ।

ଅଜା ପିନ୍ଧିଥାନ୍ତି ଆଇମାର ଗରମ କୁର୍ତ୍ତା ଆଉ ଗୋଟିଏ ନଚ୍ଳିଆ ଟୋପି [illegible] ଅବା ଶ୍ଳେଶ କରି ଗଲାଭଳି ପାଦ ଚପି ଚପି ଆଗେଇ ଗଲାବେଳେ ମନକୁ

ମନ ହଉଥାନ୍ତି ସେ ତାଙ୍କୁ ଦୁଇଟା ଭଳ ! ସବୁ ସବୁ ଗୋଡ଼ ଦୁଇଟା ବଙ୍କେଇ ବଙ୍କେଇ ପଡୁଥାଏ—ସତେ ଯେମିତି କାହା ଉପରେ ଲଟେଇ ଲଟେଇ ସୱାସ୍ତ ଭଳ ଯାଉଥାନ୍ତି ସେ । ଆଇମା ପିନ୍ଧଥାଏ ନେଳ ବ୍ଲାଉଜ, କଳା ସ୍କାର୍ଟ (କଟୀବାସ) ଆଉ ମୁଣ୍ଡରେ ବାନ୍ଧଥାଏ ଧଳା ରୁମାଲ । ସେ ଗଡ଼ି ଗଡ଼ି ଯାଉଥାଏ ଏତେ ବେଗରେ ଯେ କଠିଣ ହେଉଥାଏ ତା' ସାଙ୍ଗରେ ପାଦ ପକେଇ ଚାଲିବା । ଧୀରସ୍ଥିର ଶାନ୍ତ ଆଉ ପଙ୍କିଳ 'ଓନ୍ନା'ଟି ରହି ରହି ଥର୍ ଥର୍ ବହି ଆସୁଥାଏ ତନ୍ଦ୍ରାଳସ ସମ ରଣ ।

ଜଙ୍ଗଲର ଯେତକ ନକଟ ହେଉଥାଏଁ, ଅଜା ସେତକ ସେତକ ଉତ୍ସାହରେ ମାତ ଉଠୁଥାନ୍ତି । 'ଗଲାଖଙ୍କାର ଶୁଂଘି ଶୁଂଘି କଣ ସବୁ ବାଉଳା ଭଳ ହୋଇ ବହେ ବହେ ପବନ ନାଃଶ୍ୱାସରେ ଟାଣୁଥାନ୍ତି—ଘ୍ରାଣ୍ଡୁଥାନ୍ତି । ପ୍ରଥମେ ରହି ରହି ଅବେଗରେ ଛିଣ୍ଡ୍ ଛିଣ୍ଡା ଆଉ ଅସ୍ପଷ୍ଟ ଭାବରେ କହିବାକୁ ଆରମ୍ଭ କରଦେଲେ । ତାପରେ ଖୁସିରେ ବଢ଼େଇ ହୋଇ ସୁନ୍ଦର ସ୍ୱଚ୍ଛଳ ସାବଳୀଳ ଭାବରେ କହିଗଲେ, ସତେ ଯେମିତି ମୁହୂର୍ତ୍ତିକୁ ମୁହୂର୍ତ୍ତି—ଅଧିକରୁ ଅଧିକ ମୁଖର ହୋଇ ଉଠିଲେ ।

"ଭଗବାନଙ୍କର ଉଦ୍ୟାନ ହେଉଛି ଜଙ୍ଗଲ, ତାକୁ ସବୁ ଅନ୍ୟଠି କେହି ରଚନା କର ନାହିଁ—ସେଥିରେ ଗଛ, ଲତା ରୋପଣ କରନ୍ତ । ତାକୁ ସବୁ ଗଢ଼ିଛି ପବନ—ଭଗବାନଙ୍କର ମୁଖନିଃସୃତ ସ୍ପର୍ଶରେ ବା ଐଶ୍ୱରିକ ନାଃଶ୍ୱାସ ଏମିତି ହେଉଥିଲା । ଝିଗୁଲରେ ସେଠି ମୋ ଟୋକା ବୟସରେ ଯେତେବେଳଯାଏ ଥିଲି ନାଉରଟାଏ—ଆଃ ଆଲେକ୍‌ସି ମୁଁ ଯାହା ଦେଖିଛି ଭାଗ୍ୟରେ ପାଇବୁ ନାହିଁରେ ତୁ—ଦେଖି ପାରବୁ ନାହିଁ ଆଉ । 'ଓନ୍ନା'ର କୂଳେ କୂଳେ କାସିମଭଠାରୁ ମୁରମ ଯାଏ—ଜଙ୍ଗଲ ଖାଲି ଜଙ୍ଗଲ ! ନଇଲେ ଭଲ୍‌ଗାଠୁଁ ଦୂରରେ ଜଙ୍ଗଲ ଲମ୍ବିଯାଇଛ ୟୁରାଲ ଯାଏଁ । ଇଃ କ ଚମତ୍କାର, କେତେ ଆଶ୍ଚର୍ଯ୍ୟଜନକ—ଶେଷ ନ ଥାଏ ତା'ର ।"

ଭୂରୂ ଯୋଡ଼ିକ ତଳୁ ଆଇମା କଣେଇ କର ମତେ ଟିକେ ଦୃଷ୍ଟି ଦେଇ ଆଖିମାରଲି—ଅଜା ପାଦ ପୋଷାର ଠେଲ୍ ପେଲ୍ ହୋଇ ଚାଲଥାନ୍ତି ସେମିତି—ଝୁଣ୍ଟି ଝୁଣ୍ଟି ପଡୁଥାନ୍ତି ସରଗୁଡ଼ାକ ଉପରେ । ମୋ ମନରେ ଚେରମାଡ଼ି ରହି-ଯାଇଛି ଯେଉଁ କଥା କେତୋଟି, ସେଇ ଶୁଖିଲ ଶୁଖିଲ ଶବ୍ଦ କେତୋଟିକୁ ଉଡ଼େଇ ଉଡ଼େଇ·········

"ଆମେ ବାହି ନେଉଥାଉ ସୂର୍ଯ୍ୟମୁଖୀ ଫୁଲମଞ୍ଜି ତେଲାରେ ବୋଝେଇ ପଃଡନ ଗୋଟାଏ ସାରତୋଭ'ଠୁଁ "ମାକାର ଧାନ୍ୟ" ମେଳାକୁ । ଆମ ଉପରେ ସର୍ଦ୍ଦାର ଥାଏ, ମାଝି ସର୍ଦ୍ଦାର "କର...

ପୁରେଶ୍ୱର ଲୋକ ସେ । ଆଉ ନାହାକୁ 'ସୋଡ଼ୁଅ'ରେ ପାଣି କାଢ଼ିବାକୁ ଥାଏ 'ତାତାର' ଜାତିର ଜଣେ, କାସିମଭର ଲୋକ ସେ । ତା ନାଆଁ 'ଆସଫ' । ଯଦି ସ୍ମୃତିଭ୍ରମ ଯୋଗୁଁ ଭୁଲ ନ କରୁଥାଏ ମୁଁ । 'ଝିଗୁଲ' ଧରିଥାଉଁ କି ନାହିଁ ପୁଅର ଓଲଟା ଆଉ ପବନ ଉଠିଲା—ସେଇ ପବନ ମାଡ଼ରେ ପଡ଼ିଲୁ । ଏକା ମାଡ଼କେ ଆମର ଜୁନକାଲ ଦେଲା—ଏକଦମ୍ ଥମିକେଇ ଅଟକେଇ ଦେଲା ଆମକୁ । ଆଉ ରଙ୍କି ପାରିଲୁ ନାହିଁ—ଯଅଁ ଯଅଁ ହେଉଥାଉ ସମସ୍ତେ—ଆଉ ଉପାୟ ନ ଦେଖି ପଟତନଟାକୁ କୂଳରେ ଡେଶ ଦେଇ ବନ୍ଧ ଉପରକୁ ଉଠିଲୁ । ଗଦ୍ଦମକାଉ ଟିକେ ସିଝେଇ ନେବୁ । ସେତେବେଳେ ମେ ମାସଟା—ଭଲ୍‌ଗା ଟା ଦଶଆଟାଏ—ଯେମିତି ଯେଉଁଆଡ଼େ ଚାହିଁବ ତା' ଉପରେ ହଂସ ପର ମାଲକୁ ମାଲ ଧଳା:ଟୋପି—ହଜାର ହଜାର ସଖ୍ୟାରେ ଭରି ଚାଲିଥାଏ କ୍ୟାସ୍ପିସ୍ୱାନକୁ । ଆଉ ତେଣେ ଝିଗୁଲର ପାହାଡ଼ ପର୍ବତ ସବୁ ସବୁଜ ହୋଇ ଉଠିଥାଏ ଆକାଶକୁ । ଧଳା ବଉଦ ସବୁ ଛୁଇଁ ଛୁଇଁ ଯାଉଥାଏ ସେଗୁଡ଼ିକୁ ଆଉ ସୂର୍ଯ୍ୟଟା ପୃଥିବୀ ଉପରେ ଅଜାଡ଼ି ଦେଉଥାଏ ତରଳା ସୁନା । ଆମେ ତେଣୁ ବିଶ୍ରାମ ନେଲୁ, ନିଃଶ୍ୱାସ ମାରିଲୁ—ସେଇ ସବୁକୁ ଆକଣ୍ଠ ପିଇଗଲୁ ଯେମିତି । ହୃଦସ୍ପନ୍ଦଟା ତରଳ ଯାଉଥ ଏ କେମିତି । ନଈ ଭିତରେ ବନ୍ଧ ତଳକୁ ଉଭିଗ୍ରି ପିଟୁଥାଏ ବା ଯେମିତି ହେମାଲ, କାଳୁଆ ମାଶ ଯାଉଥାଏ ଦେହ କାନ୍ଥ କୂଳଟି ଥାଏ ଉଷ୍ମମୂଳଆ, କେମିତିକା ମିଠା ମହକଟାଏ ଖେଳୁଥାଏ ସେଠି । ସଞ୍ଜ ସଞ୍ଜ ବେଳକୁ ସେଇ 'ଢଣଲୋ'ଟା ଆମର 'ପବନ' ପ୍ରକୃତିର··· · ······ଲୋକ । ବେଶ୍ ବୟସ ହୋଇ ଆସିଥାଏ—ଉଠିପଡ଼ିଲା ବସିବାଠୁଁ । ଟୋପିଟିକି କାଢିଦେଲା ମୁଣ୍ଡରୁ, କହିଲା, 'ବୁଢ଼ିଲ ପିଲାଏ ଆଉ ମୁଁ ତମର 'ପ୍ରଭୁ' ମାଲିକ ନୁହେଁ କି ଚାକର ନୁହେଁ । ଏକା ଏକା ଯିବାକୁ ପଡ଼ିବ ଏଣିକି—କାରଣ ଚାଲିଲି ଏଥର ବଟକୁ ! ଆଁ' କରି ଅନେଇ ରହିଲୁ ଆମେ । କିଏ କେବେ ଭଲା ଶୁଣିଥିଲା ଏମିତି କଥା ? ଅସଲ ମାଲିକ ପାଖରେ କେହି ଆମର ଉତ୍ତର ଦେବାକୁ ନଥିଲେ । ଆମେ ଚର୍ଚ୍ଚକୁ କେମିତି—ଲୋକେ ତ ଆଉ ମୁଣ୍ଡ ନ ଥାଇ ଯାଆସ କରନ୍ତି ନାହିଁ । ସତ କଥା ହେଉଛି—ସ୍ୱାମୀ ମୂଳରେ ଥିଲା ଭଲଗା । ଏମିତିକି ଆମେ ଏକାବେଳକେ ବିପଥରେ ଯାଇ ପାରିଥାନ୍ତୁ । ଆଉ ମଣିପ ହେଉଛି ସବୁଠୁ ବଳି ଜାଲୁଆର······କେଉଁଥିରେ ତାର ଶାନ୍ତି ନାହିଁ, କେଉଁଠି ତାର ଥମିବାର ନାହିଁ—ତେଣୁ ଆତଙ୍କିତ ହୋଇଉଠିଲା, କିନ୍ତୁ ସେ ଅଟଳ ରହିଲା, ଦୃଢ଼ ରହିଲା ନିଜ କଥାରେ "ଯା ଏମିତି ବନ୍ଧ ରହିବାକୁ ଚାହେଁ ନା ମୁଁ 'ମେଣ୍ଢା-ପାଳକ' ହୋଇ ତମ ପାଇଁ—ଚାଲିଲି ମୁଁ ବଣକୁ ।" ଆମ ଭିତରେ କେଇଜଣ ଥାଆନ୍ତି, ଚାହିଁଲେ ତାକୁ ବଳେ ନାସ୍ତିକ ମାର୍କ ଚଢ଼ାଯାଉ, ବାନ୍ଧି ରଖାଯାଉ—ଆଉ କେଇଜଣ ଭାବୁଥାନ୍ତି ଠିକ୍ ତା'ର ଭଲ—ତାର ଭଲ ମତ ସେମାନଙ୍କର ।

ସେମାନେ ପାଟି କରି ଉଠିଲେ, "ଚୁପ୍ କର !" ଆଉ ସେଇ ତାତାର ସୋଡ଼ୁଅ-ଲାଲୁଟା କହି ଉଠିଲା, "ମୁଁ ବି ଚାଲିଲି ତା ସାଙ୍ଗରେ ।" ବଡ଼ ଖରାପ କଥା ।

ଯାଜସ୍ବ ଆୟୁଷ୍ୟ ଦୁଇଥର । ତାର ମୂଲ୍ୟ ବାକୀ ଥାଏ ମାଲିକ ଉପରେ । ଆଉ ତୃତୀୟ ଥର କ ଆସି ଅଧାବାଟରେ ଥାଏ । ସେ କାଳରେ ବହୁତ ପଇସା ସଞ୍ଚଯାଏ ହୋ ହୋ ହେଲୁ, ପାଟି ଗୋଳ ଲଗିଲା ଆମ ଭିତରେ—ରାତି 'ହେଉଁ ହେଉଁ' ସାତଜଣ ଚାଲିଗଲେ ଜଙ୍ଗଲକୁ । ଆମକୁ ଛାଡ଼ି ଦେଇ ସେଠି । ଏଇଆ— ଏଇଆ ଆଣେ ଜଙ୍ଗଲଟା ତମପାଇଁ—ଏମିତିକା କରେ ତମକୁ''

''ସେମାନେ କଣ ଗଲେ ଡକେଇତ ହେବାପାଇଁ ?''

''ହୁଏତ ଡକେଇତ, ହୁଏତ ମୁନିଋଷି—କିଛୁ ଗୋଟାଏ ହେବେ ବୋଲି ସେ କାଳରେ ଲୋକେ ସ୍ତ୍ରୀ'ଙ୍କ ଭିତରେ ବେଶୀ କିଛୁ ତଫାତ୍ ଦେଖୁ ନ ଥିଲେ ।''

ଆଈ ମା ନମ୍ରୁ ଚିହ୍ନ ଆଙ୍କିଦେଲି ଛାତିରେ ।

"ଆଃ, ହେ—ମା ଠାକୁରାଣୀ ! ମା ! ମା ! ଲୋକଙ୍କ କଥା ଶୁଣିଲାକ୍ଷଣି ହୃଦୟଟା ଫାଟିଯାଏ ।"

ସଇତାନ୍ କ୍ୱାଡ଼ିକି ଆମକୁ ଲୋଭ ଦେଖେଇ ନେଇଯାଉଛି ଜାଣିବା ପାଇଁ ଯଥେଷ୍ଟ ବୁଦ୍ଧିଶୁଦ୍ଧି ମିଳିଛି ଆମକୁ ଭଗବାନଙ୍କ କୃପାରୁ ।

ରୋଗଣା ରୋଗଣା ଫିର୍ ଗଛର ବଣ ଆଉ ଠାଆକୁ ଠାଆ ଦହଲି ପାଟଭୂଇଁ ଏହାର ମଝିରେ ଗୋଟିଏ ପାଣି, ସନ୍ତସନ୍ତିଆ ଚଲାବାଟ । ଏଇ ବାଟରେ ଯାଇ ପଶିଲୁ ଆମେ ଜଙ୍ଗଲରେ । ଭାବୁଥାଏଁ ମୁଁ 'ପୁରେଖର' ସେହି 'କଣଲେ' ଭଲି ଶରଦନ ପାଇଁ ଜଙ୍ଗଲରେ ପଶିଲେ କେଡ଼େ ଚମତ୍କାର ହୁଅନ୍ତା ! ସେଠି ମାର୍ ଧର ଲଢ଼େଇଭିଡ଼େଇ ନାହିଁ ; ମଦପିଆପିଇ, କଜିଆକଜିଆ, ହୋ ହୋ ପାଟିତୁଣ୍ଡ ନାହିଁ । ସେଠି ପାପୋର ହୋଇଯିବ, ମନକୁ ଆସିବ ନାହିଁ ଅଜାର ଯେଉଁ ଲୋଭ । ବାଲୁକାର ବସାରରେ ' ତୋର ମାଆର ସେଇ କବର—ସେଇ ସବୁ ଯାହା ଆଘାତ ଦିଏ ତତେ; ପାଣ୍ଡୁଟିକଟି ପକାଏ ମନକୁ ଆଉ ଏତେ ଖରା ଏତେ ଦୁଃସହ ଯେ ଦାବି ଦାବି ଦିଏ ହୃଦୟକୁ ।

ଶୁଖିଲା ଜାଗାଟିରେ ପହଞ୍ଚିଲା ମାତ୍ରେ ଆଈ ମା କହିଲା, "ଟିକିଏ କଣ ପାଟିରେ ପକାଇବା ବେଳ ହେଲଣି । ବସ ସବୁ ।''

ତାର ଝୁଡ଼ିଟିରୁ ବାହାର କଲା କିଛି ପାଉଁରୁଟି । କଞ୍ଚା ପିଆଜ, ଅଗ୍ରର, ଲୁଣ ଆଉ କନାପୁଡ଼ିଆରେ ଥିବା ଘରତିଆରି ଛେନାପୁଳାଏ । କେମିତି ଅସ୍ଥିରି ସନ୍ଦେହ ଆଖି ମିଟି ମିଟି କରି ସେସବୁକୁ ନଇଁ ଚାହିଁଲେ ଟିକେ ଅଜା ।

"ଏବେ ଦେଖ ତୋ—କଣ ଟିକଏ ଆଣି ନ ମୁଁ !"

"ମନ୍ଦ କଣ ହେଲ ମ—ଯଥେଷ୍ଟ ତ ଅଛି ଆମ ସମସ୍ତଙ୍କ ପାଇଁ ।

ଗୋଟାଏ ଜେଙ୍ଗା ପାଇନ ଗଛର ଧୂସରଙ୍ଗର ଗଣ୍ଡିଟାକୁ ପିଠି ଆଉଜେଇ ବସିଲୁ ଦୁହେଁ । ଝୁଣା ବାସନାରେ ପୂର ରହୁଥାଏ ଜଙ୍ଗଲଟା । ସୁଲ୍ ସୁଲ୍ ହୋଇ ମଧୁର୍ ଦୁଆ ସ୍ନିଗ୍ଧ ପବନ ବହୁ ଆସୁଥାଏ ପତ୍ରିଆରୁ । ନୁଆଁଇ ନଇଁଇ ଦେଇ ଯାଉଥାଏ ଘାସଗୁଡ଼ିକୁ । ଧୂସର କଳାଅସିଆ ହାତରେ ଆଉ ତୋଳିବାକୁ ବାହାରିଲ ଫୁଲପତ୍ର କଣ ସବୁ । ଖୋଜିବାକୁ ଲାଗିଲୁ ଚେରମୂଳ ଜେଜେ କଣ । ସଙ୍ଗେ ସଙ୍ଗେ ମତେ ଶୁଣାଉଥାଏ, କିନ୍ତୁ କଦଳୀ ଆଉ 'ସେଣ୍ଟଜନ୍' ବୋଲି ଗୋଟିଏ ଉଦ୍ଭିଦର ଆରୋଗ୍ୟକାରୀ ଗୁଣଗୁଡ଼ିକ ଓ ଆଉ ଫୁଲପତ୍ର ଫଳମୂଳ, ଅଠାଳିଆ ଅଠାଳିଆ ରୋଜ୍-ବେ ବା ଗୋଲ୍ଡ ଥ୍ରେଡ୍ ଉଦ୍ଭିଦ, ଗୋଟିକର ଏହିଭଳି ରୋଗ ନିରୋଧକାରୀ ଶକ୍ତି ଯାଦୁ ଭଳି କାମ ଦେଖାଏ କେମିତି କେଉଁ ପ୍ରକାର ଯେପରିର କେତେକ ରୋଗ ଉପରେ !

ଶ୍ରେଷ୍ଠ ଶ୍ରେଷ୍ଠ ଗଛ ଓ ବୁଦାଗୁଡ଼ିକୁ କାଟିବାରେ ଲାଗିପଡ଼ିଲେ ଅଜା । ମୋର କାମ ଥାଏ ସେଗୁଡ଼ିକୁ ଆଣି ଗୋଟିଏ ଜାଗାରେ ଏକାଠି ଗଦା କରିବା । କିନ୍ତୁ ମୁଁ ଥରେ ଥରେ ଲୁଚିଲୁଚିକା ଖସିଗଲି ବଣ ଭିତରକୁ ଆଉର ପଛେ ପଛେ । ଆଉ ସେତେବେଳକୁ ବିଶାଳକାୟ ଗଛର ଗଣ୍ଡିଗୁଡ଼ିକ ଭିତରେ ହଜି ହଜି ବୁଲୁଥାଏ ପାଲପଣ ସେମିତି, ପାଦ ତାର ମାଟି ଛୁଉଁଥାଏ କି ନାହିଁ, ଲୁଇଁ ହପଟର ପାଇନ୍,ଫିର୍, ପ୍ରଭୃତିର ଛୁଞ୍ଚି ଭଳି ପତ୍ରର ତାର କୋମଳ ଆସ୍ତରଣରେ ବେଳେବେଳେ ବୁଡ଼ ମାରୁଥାଏ ସତେ ବା ବୁଡ଼ି ଲାଗିଥାଏ ପାଣିରେ । ଆଗହୁଥାଏ, ଅଜ ନିଜକୁ ନିଜେ କହୁ ଯାଉଥାଏ—

"ଏଥର ଖୁବ୍ ସଫଳ ଆସିଛୁ—ଛତୁଗୁଡ଼ାକ ଦେଖାଦେଇଛି । ଏହାର ଅର୍ଥ ବେଶୀ ମିଳିବ ନାହିଁ ; କମ୍ ପରିମାଣର ମିଳିବ ବା ଯାହା, ଠାକୁରେ ତମେ ବଡ଼ ଖିଲାପ ଭାବରେ ଯତ୍ନ ନେଉଛ ଗରିବମାନଙ୍କର । ଛତୁ ହେଉଛି—ଯେଉଁମାନଙ୍କର କିଛି ଖାଦ୍ୟ ଜିନିଷର ସନ୍ଧାନ ସୁଦ୍ଧା ନାହିଁ ସେହିମାନଙ୍କର ଆହାର—ଫଳ ।"

ନିଃଶବ୍ଦରେ ତା' ପଛେ ପଛେ ବୁଲୁଥାଏ ମୁଁ ; ପ୍ରାଣପଣେ ଚେଷ୍ଟା କରୁଥାଏ, ତା ଆଖିରେ ଯେମିତି ନ ପଡ଼େ । ଚାହୁଁ ନ ଥାଏ ମୁଁ ତାର ଭଗବାନ, ବେଙ୍ଗପେଙ୍ଗ ଓ ଘାସପତ୍ର, ଗଛବୃକ୍ଷ ସହିତ କଥାବାର୍ତ୍ତାରେ ବାଧା ଦେବ ।

ସେ କିନ୍ତୁ ଦେଖି ପକାଇଲା ମତେ—

"ହଇରେ ! ଅଜା ପାଖକୁ ପଳେଇ ଆଇଲୁଟି ; ଆ—ଜାଣିକି ଆସିଲୁ ବା ?"

ତରୁଲତା ଆଉ ଉଦ୍‌ଭିଦଗୁଡ଼ିକରେ କମନୀୟମୟ ଝଲମଲଗା ରେଶମୀ ପୋଷାକରେ—ସେ କି ସୌନ୍ଦର୍ଯ୍ୟର ପ୍ରାଚୁର୍ଯ୍ୟରେ ଶୋଭାପାଉଥାଏ ଶ୍ୟାମାଙ୍ଗୀ ଧରଣୀଟି । ତାହାର ବୁକୁ ଉପରେ ନଇଁପଡ଼ି ଆଉମା ଗଡ଼ିଗଲା ମୋ ଆଗରେ । ଭଗବାନ କେମିତି ଥରେ ଥରେ ମନୁଷ୍ୟ ଉପରେ ଏତେ ରୁଷ୍ଟ ହୋଇ ଉଠିଥିଲେ ଯେ ସେ ଗୋଟାଏ ପ୍ରଳୟ ବଢ଼ିରେ ପ୍ଲାବିତ କରିଥିଲେ ଧରଣୀକୁ, ଆଉ ସେଥିରେ ନିଃଶେଷ କରିଦେଇଥିଲେ ମନୁଷ୍ୟ ଜାତିକୁ ।

"କିନ୍ତୁ ବେଳ ଦେଖି ଶୁଭ ମୁହୂର୍ତ୍ତରେ ତାଙ୍କର ସ୍ନେହ ଆଶିଷ ବର୍ଷଣୀ ମା'ଆ ଟୋକେଇରେ ଗୋଟେଇ ଠୁଳକରି ରଖିଲେ ବୀହନଗୁଡ଼ିକ, ଆଉ ଲୁଚେଇ ଦେଲେ ପୁଣି ଠାକୁରଙ୍କ ଆଗରୁ । ବଢ଼ି ଛାଡ଼ିଗଲା—ଗଲେ ସେ ସୂର୍ଯ୍ୟଙ୍କ ପାଖକୁ, କହିଲେ, "ମଙ୍ଗଳ କର ଟିକଏ—ମଙ୍ଗଳମୟ ହୁଅ ! ଶୁଖେଇ ଦିଅ ପୃଥିବୀଟିକୁ, ଶୁଖେଇଦିଅ ଏମୁଣ୍ଡ ସେମୁଣ୍ଡ ପର୍ଯ୍ୟନ୍ତ । ଶାନ୍ତ ସୁଶୀଳ ସାଧୁଲୋକ-ଗୁଡ଼ିକ··· ମ— କାଳ କାଳ ସ୍ତୁତି କରୁଥିବେ ତୁମକୁ—ତୁମର ପ୍ରଶଂସା ଗାଉଥିବେ କାଳ କାଳ ପାଇଁ ।—ସୂର୍ଯ୍ୟ ଏଣୁ ଶୁଖେଇ ଦେଲେ ପୃଥିବୀକୁ ।

ମା'ଆ ଠାକୁରାଣୀ ବୁଣିଦେଲେ ଲୁଚେଇଥିଲେ, ଯେଉଁ ବୀହନଗୁଡ଼ିକ, ଦନକରେ ଆଖି ପଡ଼ିଲା ଭଗବାନଙ୍କର—ପୁଣି ପୃଥିବୀଟି ଫୁଲି ଉଠିଛି ଘାସପତରେ, ପଶୁ-ପକ୍ଷୀରେ—ହାଉଯାଉ ହେଉଛନ୍ତି ଲୋକଗୁଡ଼ିକ । କାହାର ଏତେ ସାହାସ. କହି ଉଠିଲେ ସେ, ମୋ ଇଚ୍ଛା ବିରୁଦ୍ଧରେ ଲଢ଼େଇ ଦେଲା ଜା'ର ଇଚ୍ଛାକୁ । ତା'ପରେ ମା'ଆ ତାଙ୍କର ମାନିଗଲେ ସବୁ । ପୃଥିବୀଟା ଏମିତି ସରିଯାଇଥିଲା ଅବହେଳାରେ ଉପେକ୍ଷାରେ ଏକାଟିଆ ଟି ପଡ଼ିଥିଲା । ଏହା ଦେଖି ଭଗବାନଙ୍କର ବି ଘୋର ଦୁଃଖ ହେଉଥିଲା ମନରେ । ତେଣୁ ସେ ମା'ଆଙ୍କୁ କହିଲେ, "ଭଲ କରିଚୁ ମା'ଆ, ଯାହା କରିଚୁ ଭଲ କରିଚୁ ତୁ ।"

ଭଲ ଲାଗିଲା ଗପଟି, କିନ୍ତୁ କାହିଁକି କେଜାଣି ସନ୍ଦେହ ଆସିଲା ମନରେ ଗମ୍ଭୀର ହୋଇ କହିଲି ମୁଁ ।

"ସତରେ କଣ ଏମିତି ହୋଇଗଲା, ଏମିତି ଘଟିଥିଲା—ଆଇ ? " ବନ୍ୟାର ବହୁତ ପରେ ତ ଜନ୍ମ ହୋଇଥିଲେ ମ୍ୟାଶ୍ରୀ ?

ଏଥର ବିସ୍ମିତ ହେବାର ପାଳ ପଡ଼ିଲା ଆଇର ।

"କିଏ ତତେ କହିଥିଲା ରେ ଏମିତି—? ଏମିତିକା କଥା ?"

"ସ୍କୁଲରେ ସେମାନେ—ବହିରେ ଲେଖା ହୋଇଛି ଯେ ।"

ଏତକ ଶୁଣି ଆଶ୍ୱସ୍ତ ହେଲ ଟିକଏ—କହିଲି ।

"ଶୁଣିବୁନଟି, ତାଙ୍କ କଥା ସବୁ ଶୁଣିବୁନଟି—ଭୁଲିଯା ବହିରେ ଯା'ସବୁ ଅଛି ଭୁଲି ଯା ! ମିଛ ତାହା ମିଛ, କହେ ବହିଗୁଡାକ ।"

କେଡ଼େ ଖୁସିରେ ହସିଲି ଆଈ ମା ଥରକାନ ସଁବୁ ହସଟିଏ ।

"ଭବାଳ ଦେଖି, ଏମିତକା ଗୋଟାଏ କଥା ଫାନ୍ଦ ବସିବା—ଏମିତକା ଗୋଟାଏ ଫିସାଦ କାଢ଼ିବା – ବୋକା, ବୋକାଗୁଡ଼ାକ । ସତେ ଯେମିତ ମାଆ ନ ଥାଇ ଭଗବାନ ରହିପାରନ୍ତି । କଏ ତେବେ, କଏ ଜନ୍ମ ଦେଇଛି ତାଙ୍କୁ—ଏଁ ?"

"ମୁଁ କଣ ଜାଣେ ମ ?"

"ହୁଁ, ସ୍ୱା ନା ଯେ କଥା ! ପାଠ ପଢ଼ି ପଢ଼ି ଏଇଠି ପହଞ୍ଚୁ କଣ ମ—ମୁଁ ଜାଣେ ନା !"

"ପାଡ୍ରିଟା କହୁଥିଲି—ମ୍ୟାରୀ ଜନ୍ମିଛନ୍ତି ଯୋଆଚମ ଓ ଅନାଙ୍କ ଔରସରୁ ।

ବୋଝ ଉପରେ ଲଳତାବଡ଼ା ଥିଲି ଏଇଟି ! କଠୋର ଭାବରେ ମୋ ଅଖିକ ପିଧାସଲଖ ମୋ ଅଖିକ ଅନେଇଲି ଆଇମା, କହିଲି,—

"ହୁଁ ! ଅନ୍ୟ କଥାରେ କହିଲେ ସେ ହେଉଛନ୍ତି ମ୍ୟାରୀଥା ଯୋଆଚ-ମୋଭନା ? ଦେଖ୍ ତୋ ଚମତା ଉତ୍ତର ଦେବ, ଯଦି ଏମିତକା କଥା ସବୁ କହୁ, ଭାରୁ ! ବୁଝିଲୁ ?

ମିନଟ୍‌କ ପରେ ବୁଝାଇଲି ଆଈ ମା :

"ପୁଣ୍ୟମୟୀ କୁଆଁରୀ ମାଆ ଥିଲେ, ସବୁବେଳେ ଥିଲେ—ସମସ୍ତଙ୍କ ଆଗରୁ, ଭଗବାନ ଜନ୍ମିଥିଲେ ତାର ଠୁ—ତା ପରେ···"

"ଯୀଶୁ ଖ୍ରୀଷ୍ଟଙ୍କ କଥା ତେବେ କଣ ?"

ଆଈ ମା ଚନ୍ଦ୍ରା ବଭ୍ରାଟରେ ପଡ଼ି ଆଖିଯୋଡ଼କ ବୁଜିଦେଲି ।

"ଯୀଶୁ ? ହୁଁ—ଓ—ଯୀଶୁ ? ହୁଁ, – ଓ—ହୁଁ—ଖ୍ରୀଷ୍ଟ—"

ଦେଖିଲି ଜଡ଼ାପଟଟା ହେଲ ମୋର । ସୃଷ୍ଟିର ରହସ୍ୟରେ ଗୁଡ଼େଇ ତୁଡେଇ ଛନ୍ଦି ଦେଇଛି ଆଈ ମା'ଙ୍କୁ, ଏଇଥିରେ ନଜେ ମୁଁ ବଉଳାଉ ହୋଇଗଲି—ମୋ ମୁଣ୍ଡ ବ ବଗିଡ଼ି ଗଲି ।

ଜଙ୍ଗଲର ଭିତରକୁ—ଦୂରକୁ ଦୂରକୁ ଯିବାକୁ ଲାଗିଲୁ । ସୁନେଲି ସୂର୍ଯ୍ୟ କିରଣ ଭେଦ କରୁଥାଏ ଯେଉଁ ସୁନୀଳ କୁଜ୍‌ଝଟୀକା—ସେଇ କୁଜ୍‌ଝଟୀକା ବା ଭିତର ଭିତରେ ପଶି ପଶି ଗ୍ଲଲୁ, ଉଷ୍ମୁରେ ଆରାମରେ ରହିଥାଏ ଜଙ୍ଗଲଟି—ତାର

ଏକ ଅଦ୍‌ଭୁତ ପ୍ରକାର ଶବ୍‌ଦରେ ସ୍ୱପ୍ନିଳ ତନ୍ଦ୍ରିକ ଶବ୍‌ଦରେ ତୁମକୁ ସ୍ୱପ୍ନିଳ, ତନ୍ଦ୍ରିକ କରି କେଉଁଠି ଟୁକ୍ ଟୁକ୍ କରୁଥାଏ କପୋତ । ଚଇଁ ଚଇଁ କରୁଥାନ୍ତି ଚେମିଣି, କୁଉ କୁଉ ହେଉଥାନ୍ତି କୋଇଲି ; ସୁସିଟ୍ ମାରୁଥାଏ ହଳଦୀବସନ୍ତ ଭଳି । ଅପରନ୍ତୁ ଗୀତ ତାଳି ଦେଉଥାନ୍ତି । ହଂସୁକୁଟିଆ ଆତପାତଆ ସ୍ନେଲ୍-ପିଙ୍କ୍ ଆଉ କେଉଁଠି ବା ସେଇ ଅଦ୍‌ଭୁତ ଚଢ଼େଇଟା, ପାଇନ୍‌ଫିନ୍‌ଚ ସୁଲଳିତ ସ୍ୱନଟିଏ ମେଲି ଦେଇଥାଏ ଭବବମଗ୍ ଘଡରେ । ପାନ୍ନା ରଙ୍ଗର କଇଁଛ ଆଉ ବେଙ୍ଗଗୁଡ଼ିକ ଡେଇଁ ପଡୁଥାନ୍ତି ଆମ ପାଦତଳରୁ । ଗୋଟାଏ ଘାସ-ସାପ ହଠାତ୍ ସ୍ନେଲି ମୁଣ୍ଡଟି ତା'ର ଟେକିଲା, ତା'ର ଲୁଚିବା ସ୍ଥାନ ଗଛ ଚେର ଭିତରୁ । କୁନି କୁନି ଦାନ୍ତିମାନ ଟୁକ୍ ଟୁକ୍ କରି ଗୁଣ୍ଡୁଚିମୂଷାଟିଏ ଚମକିଗଲା ପରି ଗୋଛାଏ ଭଳି ଲଙ୍ଗୁଡ଼ିଟିକୁ ଟେକି ଦେଇ, ନଚେଇ ଦେଇ ପାଇନ୍ ଡାଳଗୁଡ଼ିକର ଗହଳରେ । ଅସଂଖ୍ୟ ଅସଂଖ୍ୟ ଜିନଷ ଥିଲା ଦେଖିବାପାଇଁ । ଯେତେ ଦେଖୁଥିଲେ ମନ ହେଉଥାଏ ଆହୁରି ଅହୁରି ଦେଖିବା ପାଇଁ ଅନବରତ—ଯିବାପାଇଁ—ଆଗେଇବା ପାଇଁ ଅନବରତ ।

ବଡ଼ିଟ ବଡ଼ିଟ ଗ୍ରୀଷ୍ମ ମୂର୍ତ୍ତିମାନ ପ୍ରେତଟିମାନ ଭଳି କେଉଁଠୁ ଆସି ଅଖିପିଛୁ-ଳାକେ ଚମକ ଉଠୁଥାଏ ପାଇନ୍ ଗଛ । ଗହଳରେ ଗଣ୍ଡିଗୁଡ଼ିକ ଭିତରେ ଉଭେଇ ଯାଉଥାଏ, ମୁହୂର୍ତ୍ତିକରେ ଲିଭିଯାଉଥାଏ ସବୁଜ ଗଭୀରତାରେ, ଅତଳ ଗହ୍ୱରରେ ଯେଉଁଠୁ ପୁଣି ଝଲସି ଯାଉଥାଏ ସେମିତି କ୍ଷଣକ ପାଇଁ ନୀଳ ନୀଳ ରୁପେଲି ଆକାଶରୁ ଚେନାଏ ଭୂଇଁ ଉପରେ ଠାଆକୁ ଠାଆ ବଛେଇ ହୋଇ ରହିଥାଏ । ଶିଉଳିରେ କମକୂଟ ସତେ କପଷ ହୋଇ ବୁଣା—ଯେମିତି ବଳାସର ଗାଳିଚା । କେଉଁଠି ବା ବନ୍ଧହୋଇ ରହିଥାଏ ନୀଳକୋଳିଗୁଡ଼ିଏ—ଜାମୁକୋଳି, କାନକୋଳିର ଫେଷ୍ଟୁନ୍ ମାଳ । ବଳବେରି, ଭଇଁଶିକୋଳିଗୁଡ଼ିକ ରକ୍ତ ଟୋପାପରି ଚକ୍ ଚକ୍ କରୁଥାଏ ଘାସ ଉପରେ ଆଉ ଛତୁଗୁଡ଼ିକର ମିଠାଳିଆ ବାସନା ନାକପୁଡାରେ ବାଜି ବାଜି ଲୋଭତୁର କରି ଦେଉଥାଏ ମତେ ।

"ମାଆ ଲୋ, କୁଆଁରୀ ଦେବୀ ଲୋ, ମଙ୍ଗଳମୟୀ ସଂସାର ଉଜଳକାରିଣୀ ଲୋ" ନିଶ୍ୱାସଟିଏ ପକେଇ ସ୍ତୁତି କଲା ଆଇ ମା ।

ସତେ ଯେମିତି ଜଙ୍ଗଲଟା ଥିଲା ତାର— ଆଉ ସେ ଥିଲା ଜଙ୍ଗଲର । ଗ୍ଭଲୁଥାଏ ସେ ମନ୍ତ୍ର ଗୋଟାଏ ମାଇ ଭାଲୁଟିଏ ପରି । ସବୁ ନିରଖି ନିରଖି ଦେଖି, ପରଖି ; ସବୁ ପସନ୍ଦକରି—ବାହାବା କରି, ସ୍ନେହରେ ଶ୍ରଦ୍ଧାରେ ଆଉ କୃତ-ଜ୍ଞତାର ଶବ୍‌ଦ କେତୋଟି ଆଉଡ଼େଇ ଆଉଡ଼େଇ ଟୁପ୍ ଟୁପ୍ କରି ଗଭୀର ଆନ୍ତରିକତାରେ ପ୍ରାଣର ମଧୁର ଉତ୍ତାପ ଲାଗୁଥାଏ । ସତେ ଯେପରି ବହିଯାଉଥାଏ ତାହାରିଠୁ ନିସୃତ ହୋଇ ନିବିଡ଼ ବନଭୂମିକୁ—ବିଶେଷରେ ଆମୋଦଜନକ, ଆନନ୍ଦଦାୟକ ହୋଇଥାଏ ମୋପାଇଁ—ଦେଖୁଥାଏ ଯେତେବେଳେ ପାଦତଳେ

ଟାଇଁହୋଇ ମଣିଷ ହୋଇ ପୁଣି ତେଜ ଉଠୁଥାଏ ଶିହରଣଗୁଡ଼ିକ—ଆଉ ସ୍ୱାଚ୍ଛ-ନ୍ଦ୍ୟ, ସାବଲୀଳ ହୋଇ ବୁହୁଥାଏ ରକ୍ତରେ।

ଯାଉଁ ଯାଉଁ ଭାବୁଥାଏ ମୁଁ—ଏଣୁ ତତ୍କାଳୀନ ହେଲେ କେତେ ଭଲ ହୁଅନ୍ତା ସତେ, ଧନୀ ଲୋକଙ୍କଠୁ ଶ୍ରେଣୀଗତ ବାର୍ଦ୍ଧି ଦଅନ୍ତ ସବୁ ଗରିବଙ୍କୁ ? ସମସ୍ତେ ସମଷ୍ଟିରେ ରହୁଥାନ୍ତେ, ଆମୋଦ ପ୍ରମୋଦରେ ମାତନ୍ତେ, ଭଲମନ୍ଦରେ ଭାଗୀଦାର, ସ୍ୱଚ୍ଛନ୍ଦରେ ଆନନ୍ଦରେ ରହନ୍ତେ—ହିଂସାଦ୍ୱେଷ କଣ ନ ଜାଣି ସ୍ୱଚ୍ଛ ଆଉ ନାମୁଡ଼ା 'କଡ଼ମାପ', ଖରାପ କୁକୁର-ଗୁଡ଼ାଙ୍କ ଭଳି ପରସ୍ପରକୁ ନ କାମୁଡ଼ନ୍ତେ ନ ଭୁକନ୍ତେ କି ! କେତେ ଭଲ ହୁଅନ୍ତା ସତେ—ଆମମାନଙ୍କ ଠାକୁର ଆଉ 'ପୂର୍ଣ୍ଣମୟୀ' କୁଆଁରୀ ଦେବୀଙ୍କ ପାଖକୁ ଯାଇ ମିନତି କରି କହନ୍ତି—ପ୍ରକୃତ ଶାନ୍ତି ସଭଟିଏ—କେବେ ଦୁଃଖ ଦୁର୍ଦ୍ଦଶାରେ ପଡ଼ନ୍ତ ଲୋକଙ୍କୁ ବାକି, କି ବନ୍ଧୁତ୍ୱଭାବରେ କେମିତି ଆଘାତ ଲାଗି ଦଶଟାଯାକ ପରସ୍ପରକୁ କରକ ଦେଉଥିଲେ କୁତ୍ସିତ ବାଣୀରେ। ଅକାରଣରେ, କେତେ କେତେ ଯନ୍ତ୍ରଣା, କେତେ ଯାତନା ଭରି ରହିଛି ପୃଥିବୀରେ ! ସତ ବିଶ୍ୱାସ ଆସନ୍ତା କୁଆଁରୀ ଦେବୀଙ୍କ ମନରେ—କହନ୍ତି ମୁଁ, ଦଅନ୍ତୁ ସେ ମତେ, ବୁଦ୍ଧି ଦଅନ୍ତୁ ସେଭଳି, ଜ୍ଞାନ ଦଅନ୍ତୁ—ଯେଉଁଥିରେ ବଦଳେଇ ପାରିବ ପ୍ରତ୍ୟେକ ଭଉଣୀକୁ—ପ୍ରତ୍ୟେକ ଜଣଙ୍କୁ। ଉନ୍ନତ ଆଉ ଉତ୍କୃଷ୍ଟ କରିପାରିବ ସେମାନଙ୍କୁ ବଦଳାଇବା ପାଇଁ, ସବୁ ଉନ୍ନତ ଆଉ ଉତ୍କୃଷ୍ଟ କରିବା ପାଇଁ ଦଅନ୍ତୁ ଜ୍ଞାନ, ଦଅନ୍ତୁ ଶକ୍ତି—ଦଅନ୍ତୁ ମତେ। ଶୁଣନ୍ତୁ ଲୋକେ ମୋ କଥା—ଶୁଣନ୍ତୁ, ବିଶ୍ୱାସ କରନ୍ତୁ ମତେ ; ଆସ୍ଥା ରଖନ୍ତୁ ମୋ' ଠି, ଜାଣୁଥିବୁ କରି କହୁଛି—ଜୀବନର ଉନ୍ନତ ପ୍ରଣାଳୀ, ଉନ୍ନତ ପନ୍ଥା ବାହାର କରି ପାରିବ ମୁଁ । ଏବେ ମଧ ମୁଁ ଚାଲୁଥାଏ ; କିଏ ଯାଏଅଛେ ଏଥିରେ; ଯୀଶୁ ତ ମୋଟେ ବର୍ଷ କର ହୋଇଥିଲେ ଯେତେବେଳେ ବଡ଼ପଣ୍ଡିତ ଲୋକମାନେ ମନ୍ଦିରରେ ଶୁଣିଥିଲେ ତାଙ୍କର କଥାଗୁଡ଼ିକ, ଶୁଣିଥିଲେ ଯାହା କହୁଥିଲେ ସେ ।

ଅରେ ମୋ ଭାବନାରେ ମୋ ଚିନ୍ତାରେ ଏମିତି ମଜିଗଲି—ମୁଁ ଗଛପତ୍ରଙ୍କ ଗୋଟାଏ ଗହଳିଆ ଗାଡ ଭିତରେ । ମଲା ଡାଳରେ ଅଣ୍ଟା ଛନ୍ଦିହୋଇ-ଗଲା ଗୋଟାଏ ଡର ମୋର, ସ୍ୱୟଂ ହୋଇଗଲା ମୃଣ୍ଡ ପଛପଟର ଚମ । କେବେ ଗାଡ ଭିତରେ କାହିଁ ଯାଇଁ ଚଲେ କେଉଁଠି ଜାଲୁଆ, ଅଠାଳିଆ କାଦୁଅରେ ବସିଥାଏଁ ଯେତେବେଳେ, ଲାଜ କଥା ପ୍ରକୃତରେ, ବୁଝିଲି ଗାଡରୁ ଉପରକୁ ଚଢ଼ି ବାହାରିବାକୁ ଅକ୍ଷମ ମୁଁ । ପାଣିକରେ ଡାକନ୍ତି ଆମମା ମନରେ ଅତଙ୍କ ଗଣିଲା ପାଇଁ—କାହିଁ ତା' ଛଡ଼ା ଆଉ କିଛି କରିବାକୁ ଉପାୟ ବା କେଉଁଠି ।

ଅଣ୍ଟି ପିନ୍ଧୁଲାବେଳେ ସେ ଉଠେଇନେଲା; ଉଦ୍ଧାର କଲା ମତେ । ଆଉ କୃତଜ୍ଞ ହୋଇ ଅଣ୍ଟି ହେଉଁ ହେଉଁ ଗୁଡ଼ ଉପରେ ନଜର କହଲା ଟିକିଏ ଆକୁଳତାରେ—

"ଠାକୁରେ, ବନ୍ଧୁଲୋକ । ଭାଗ୍ୟକୁ ଖାଲି ଗାଡଟାଏ କଣ ହୋଇଯାଉନାହିଁ ଖାଲି ଯଦି ଥାଆନ୍ତା ଏଥିରେ ।"

ଝର ଝର ଲୁହ ଭିତରେ ହସିଦେଲା ସେ—ଆଇମା ! ମତେ ନେଇ ଯୋଉଥାଇ ଦେଲା ଝରଣାରେ ଗୋଟିଏ । ଆଖୁ ଡ଼ା ଉଷୁମ କଡା ଜାଗାଗୁଡ଼ିକରେ, ଦେହରେ 'ମୋର ଯୋଉଲି ଅଣି ମକଚ ମାକଚ ପକଟଗୁଡ଼ିଏ କଣ । ମୋ ଯନ୍ତ୍ରଣା—ପଚ୍ପଚା ଖାଇଯିବ ଯେମିତି । ବାନ୍ଧିଦେଲା ତାର ବ୍ଲାଉଜରେ, ମତେ ଧରି ଧରି ନେଇଗଲା ଗୋଟିଏ ରେଲବାଇ ଗାର୍ଡ଼ର ବସାକୁ । ଘରକୁ ଯିବାଲାଗି ଦୁର୍ବଳ ହୋଇ ପଡ଼ୁଥାଏ—ଏତେ ହାଲିଆ ହୋଇ ପଡ଼ୁଥାଏ ମୁଁ—

ପ୍ରତ୍ୟେକ ଦିନ ପ୍ରାୟ ମୁଁ ଆଇମାକୁ କହୁଥାଏ, "ଚାଲ ଯିବା ଚାଲ ଜଙ୍ଗଲକୁ ।"

ଭାରି ଖୁସିରେ ରାଜି ହୋଇ ଯାଉଥାଏ, ସମ୍ମତି ଦେଉଥାଏ— ଏମିତି ଶରତ ଶେଷଯାଏ ସମସ୍ତଟା କଟିଗଲା ଆମର । ଚେରମୂଳ ଖୋଳି, ଛତୁ ତୋଳି ତୋଳି, ବାଦାମ ଗୋଟାଇ—ଏମିତି ଯାହା ସବୁ ସଂଗ୍ରହ କରୁଥାଉ, ବିକି ଦେଉଥାଉ ବଜାରରେ । ସେଇ ପଇସାରେ ଚଳିଯାଉଥାଉ କୌଣସି ମତେ ।

ଶୋଷକଗୁଡ଼ାକ ସତେ ! ଚେଁ ଚେଁ କାଉଁ କାଉଁ ହେଉଥାନ୍ତି ଅଳା, ଆମେ ଯଦିଓ ଟିପ ଦେଉ ନଥାଉ ତାଙ୍କର ଖାଦ୍ୟ ଜିନିଷରେ ।

ଜଙ୍ଗଲଟା ମନରେ ମୋର ଜାଗରିତ କଲା କଭଳି ଗୋଟାଏ ଶାନ୍ତ ଅଉ ସ୍ନିଗ୍ଧତାର ମଧୁର ହତୋତ୍ସାହିତା ଓ ପ୍ରସନ୍ନତାର ଭାବ—ଏହା ହିଁ ଆଶ୍ୱାସ ଦେଇ ଉପଶମ ଆଣିଲା ମୋ ଯନ୍ତ୍ରଣାର ; ସହାୟ ହେଲା ସମସ୍ତ ପ୍ରକାର ଅଶାନ୍ତି, ଅସୁଖ, ନିରାନନ୍ଦ ଭାବକୁ ଭୁଲିଯିବା ପାଇଁ । ସେଇ ସଙ୍ଗେ ସଙ୍ଗେ ବିକାଶ ପାଇଲା ସମସ୍ତ ଘଟଣା, ସମସ୍ତ ବିଷୟ ପ୍ରତ୍ୟେକ ଇନ୍ଦ୍ରିୟଗ୍ରାହ୍ୟ ଢଙ୍ଗରେ ଉପଲବ୍ଧି ଓ ଅବଧାରଣା କରିବାରେ ମୋର ଅଦ୍ଭୁତ ଦକ୍ଷତା ; ତୀକ୍ଷ୍ଣତର ହୋଇ ଉଠିଲା ମୋର ଦୃଷ୍ଟି ଆଉ ଦୃଢ଼ । ସମସ୍ତ ବିଷୟରେ ଧାରଣାକ୍ଷମ ହୋଇ ଉଠିଲା ସ୍ମୃତି ଆଉ ପ୍ରସାରିତ ହେଲା ଯାବତୀୟ ଭାବରାଶି । କଳ୍ପ-ଗଳ୍ପର ଆଶ୍ରୟ ଓ ଆଧାର ମୋର !

ଆଗ ଅପେକ୍ଷା ଦିନକୁ ଦିନ ଅଧିକରୁ ଅଧିକ ଚକିତ ଆଉ ମୁଗ୍ଧ ହୋଇ ଉଠିଲି ଆଇମାକୁ ମୋର ଲକ୍ଷ୍ୟ କରି କରି । ସବୁବେଳେ ମୁଁ ବିଶ୍ୱାସୁଥିଲି—ସେ ଥିଲା ଊର୍ଦ୍ଧ୍ୱରେ, ସମସ୍ତଙ୍କର ଊର୍ଦ୍ଧ୍ୱରେ ବ୍ୟକ୍ତି ଗୋଟିଏ, ସମସ୍ତଙ୍କଠୁ ବଳି ଉଦାର ଆଉ ଦୟାର୍ଦ୍ର, ବିଜ୍ଞ ଆଉ ବିଶ୍ୱରଣୀୟ ପୃଥିବୀର ବକ୍ଷରେ । ଅବିଚଳିତ ଭାବେ କ୍ରମାନ୍ୱୟରେ ମୋର ଏହି ନିଶ୍ଚିତ ଧାରଣା ଓ ବିଶ୍ୱାସକୁ ଦୃଢ଼ରୁ ଦୃଢ଼ତର ଭାବରେ ପ୍ରମାଣିତ କଲା ସେ, ମୋର ଆଇମା ନିଜେ ।

ସନ୍ଧ୍ୟାରେ ଥରେ ଛତୁ ଖୋଳା ସାରି ଘରକୁ ବାହୁଡ଼ି ଆସିଥାଉଁ ଆମେ— ଜଙ୍ଗଲର ଧାରରେ ଶେଷ ମୁଣ୍ଡରେ ପହଞ୍ଚି ଯାଇଥାଉଁ ପ୍ରାୟ । ଆଇମା ବସିଲା ଟିକେ ବିଶ୍ରାମ ନେବା ପାଇଁ । ଆଉ କିଛି ଅଧିକା ଛତୁ ଥିବ ଦେଖିବା ପାଖ ଆଖରେ—ସେହି ଆଶାରେ ଚାଲିଗଲି ମୁଁ—

ହଠାତ୍ ତା'ର ପାଟି ଶୁଣି ଫେରିପଡ଼ି ଗୁହିଁଲି ମୁଁ—ବାଟ ମଝିରେ ଶାନ୍ତ ଭାବରେ ବସିଥାଏ ସେ ସେମିତ । ଆଗରୁ ଆଣିଥାଇଁ ଯେଉଁ ଛତୁତକ, ବସି ବସି ଛଡ଼ାଉଥାଏ ସେଗୁଡ଼ିକର ଚେର ,ସଜାଡ଼ୁଥାଏ ନାଡ଼ଗୁଡ଼ିକୁ । ପାଖରେ ତାର ଛଡ଼ା ହୋଇଥାଏ ହାଡ କଙ୍କାଳର ଧୂସରିଆ ପାଉଁଶିଆ କୁକୁରଟାଏ—ଜିଭଟା ତାର ଲହକ ପଡ଼ିଥାଏ ଆଗକୁ ।

"ଯାଆ—ଗୁଲିଯାଆ, ଗୃଲ ଯାଆ । ମ, କେମିତକା ଭଲ ଜନ୍ତୁଟାଏ ମ—ଏଁ ! " କହି ହେଉଥାଏ ଆଇମା—"ଯାଆ ମ, ଗୁଲିଯା—ଠାକୁରେ ଅଛନ୍ତି ତୋର ।"

ବେଶୀଦିନ ଆଗରୁ ନୁହେଁ, ଭ୍ୟାଲର୍ଓକ୍ ବିଷ ଦେଇ ମାରି ଦେଇଥାଏ ମୋ କୁକୁରଟିକୁ—ଇଗ୍ଲ ହୋଲ ଲୋଭ ଦେଖେଇ ଏଇ ନୂଆଟିକି ସାଙ୍ଗରେ ନେବି । ଦୌଡ଼ିଗଲି ବାଟ ମଝିକୁ । କୁକୁରଟା ମୁଣ୍ଡ ନ ବୁଲେଇ ଖିଲଣ ଭଳି ଅଦ୍ଭୁତ ଭାବରେ ବଙ୍କେଇ ଗଲା କେମିତ—ଗୁହିଁଲା ମତେ କେମିତ ନିର୍ମମ ଆଉ ନିଷ୍ଠୁର, କ୍ଷୁଧାରେ ଈର୍ଷା ଦରଜର ଆଖିରେ—ଆଉ ଲଙ୍ଗୁଡ଼ଟା ଗୋଡ଼ ସନ୍ଧିରେ ତାର, ଛୁଟିଲା ଲମ୍ଫଦେଇ ଜଙ୍ଗଲ ଭିତରକୁ ।

ଜନ୍ତୁଟାର ଗନ୍ଧ ନଥିଲା କୁକୁରର ଗନ୍ଧ ଭଳି—ମୁଁ ଯେତେବେଳେ ମୁଷିର ମାଉଳି ପାଟିରେ ଆଙ୍ଗୁଳି ଦେଇ, ସେ ଉନ୍ମତ୍ତ ଭାବରେ କେମିତ ପଶିଗଲା ବୁଦାଗୁଡ଼ିକ ଭିତରେ ।

"ଦେଖିଲୁ ତାକୁ ?" ହସି ହସି ପଗ୍ଗ୍ଭରିଲା ଆଇମା । "ପହିଲେ ତ ମୁଁ ତାକୁ ଭୂଲରେ ଭାବିଥିଲି କୁକୁରଟାଏ ବୋଲି । ତା' ପରେ ଆଉ ଥରେ ଅନେଇଲି ତାକୁ । ଦାନ୍ତଗୁଡ଼ାକ, ନଖ ଆଉ ପଞ୍ଝା, ଥୋମଣିଟା, ବେକଟା ପୁଣି ତାର—ହେଟାର ଯେମିତ । ତାପରେ ଆଚ୍ଛା କହିଲି ମୁଁ ତାକୁ—ହେଟାଟିଏ ହୋଇଥିବ ଯଦ ତୁ, ଭଲ ହେବ, ସବୁଠୁ ଭଲ ଗୁଲିଯିବୁ ତୁ ରହିବୁନି ଏଠି, ଭାଗ୍ୟକୁ ହେଟା-ଗୁଡ଼ାକ ବଡ ଶାନ୍ତ ଥାଆନ୍ତି ଖରାଦିନରେ ।"

କେବେହେଲେ ଜଙ୍ଗଲରେ ହଜି ଯାଉ ନଥିଲା, ବାଟ ଭୁଲୁ ନଥିଲା ଆଇମା । ଠଉରେଇ ଦେଉଥିଲା ଘର ବାହୁଡ଼ା ବାଟଟା—ନିର୍ଭୁଲ ଭାବରେ । ଚେରମୂଳର ବାସନାରୁ ବାରି ପାରୁଥିଲା କେମିତକା ଛତୁ ଫୁଟିଥିବ ଗୋଟିଏ ଜାଗାରେ । କେମିତକା ଧରଣର ପୁଣି ଆଉ ଗୋଟିଏ କେଉଁଠି । ଆଉ ଅନେକ ସମୟରେ ସେ ପରୀକ୍ଷା କରୁଥିଲା, ଏ ଦିଗରେ ମୋର ପ୍ରବେଶ ହେଲାଣି କ ନାହିଁ, ଜ୍ଞାନ ଆସିଲାଣି କ ନାହିଁ ।

"କୋଉ ଗଛତଳେ ନାଲଫଲ୍ର ଫୁଟେ ?" ଭଳି "ସିଗ୍ରେସ୍ଫେଙ୍କା" ଭଳି ହୃଦକର ମଧୁର ଗୁଣର ଛତୁକୁ ଜାଣିବ କେମିତ ବିଷାକ୍ତ ଛତୁଠୁଁ ? ପଣଲଟି (ferns) ତଳରେ ଛପି ରହିଥାଏ କେମିତକା ଛତୁ ?"

କୋଉଠି ଗୋଟାଏ ଗଛ ଦେହରେ ବକଲାରେ ଟିକିଏ ନାକୁ ଆଖୁ ତ୍ରା ଚାହ୍ନ ଯେଉଁଥିରୁ ସେ ଠଉରେଇ ନେଇ ପହଞ୍ଚିଯାଏ ଗୁଣ୍ଡୁଚି ଖୋଲରେ । ତା' ପରେ ଗଛରେ ଚଢେ ମୁଁ । ଗୁଣ୍ଡୁଚି ବସାକୁ ଝାଡ଼ିଝୁଡ଼ି ଦିଏ, ଶୀତଦିନ ପାଇଁ ଯେତେ ବାଦାମ୍ ସଞ୍ଚ ରଖିଥାଏ । ବେଳେବେଳେ ଗୁଣ୍ଡୁଚି ବସାରୁ ମିଳିଯାଏ ଦଶ ପାଉଣ୍ଡ ଖଣ୍ଡେ ବାଦାମ୍ ।

ଏହିଭଳି କାମରେ ଥରେ ମୁଁ ବ୍ୟସ୍ତ ଥାଏ ଯେତେବେଳେ ଶିକାରୀଟାଏ ଦୂରରୁ ଛରରା ମାରିଲା—ମୋ ଡାହାଣପଟ ମାଂସରେ ଗଳିଗଲା ସତେଇଶଟି ଛରରା । ଛୁରୀରେ ଖୋଳି ଆଇମା ବାହାରକଲା ଏଗାରଟି ସେଥିରୁ । ବାକୀତକ ମୋ ଚମତଳେ ରହିଥିଲା ଅନେକଦିନ । ଧୀରେ ଧୀରେ ଘାଏଁ ଘାଏଁ ବାଟକାଢ଼ି ବାହାରିଥିଲା ସେଗୁଡ଼ିକ ।

ନିର୍ବିକାରଭାବରେ ଟିଁ ଚୁଁ ନ ହୋଇ ମୁଁ ସବୁ ଯନ୍ତ୍ରଣା ସହିଯାଉଛି— ଏଥିରେ ଆଇମାର ଖୁସି ଦେଖେ କିଏ ?

"ସାବାସ୍ ବାପ ! ଭଲ-ଖାସା ପିଲାଟି ମୋର !" କହେ ସେ । ଯନ୍ତ୍ରଣାକୁ ହଟେଇବା ମାନେ ଲଢ଼େଇରେ ଜିଣିବା । ସହିଗଲେ ତ ମୁକ୍ତିଜଣା ହେଲା—

ଛତୁ ଆଉ ବାଦାମ ବିକାରୁ କେତେବେଳେ ଯଦି ବଳକା କିଛି ପଇସାପତ୍ର ମିଳୁଥିଲା—ସେ ଚୁପ୍‌ଚାପ ଯାଇ ତାର ସେଇ 'ଗୋପନ ନୀରବ କରୁଣା'ଟିକ ଥୋଇ ଆସୁଥିଲା ଝରକା ପିଣ୍ଡିଗୁଡ଼ିକ ଉପରେ, ଅଥଚ ସେତିକବେଳେ ସେ ଛୁଟିଦିନଗୁଡ଼ିକରେ । ସହସ୍ର ଗଣ୍ଠିର ତାଳିପକା ଚିରାକନାରେ ଗୁଡ଼େଇହୋଇ କିଷ୍ଟିନ୍‌ରେ ଯାଆସ କରୁଥିଲା ଆଇମା ।

"ଇଃ, ଅନା—ଭିଖାରୁଣୀଠୁ ବି ହୀନ—ମୁହଁରେ କାଳି ଦେଉଚ ମୋର କି ଲଜ୍ଜା ଅପମାନ ।" ଖାଉଁ ଖାଉଁ ହୁଅନ୍ତି ଅଜା ।

"କଣ ହେଲା ସେଇଠୁ । ବେଶ୍ ହେଲା ଭିଖାରୁଣୀ ହେଲି ମୁଁ । ମୁଁ ତମର ଝିଅ ନୁହେଁ କି ଟୋକୀଟାଏ ନୁହେଁ ଯେ ଘଇତା ଖୋଜି ହେଉଛି ।"

ସେମାନଙ୍କର କଳିଟା ଦିନକୁ ଦିନ ବଢ଼ିବାକୁ ଲାଗିଲା—ଅନେକଥର କଳି କଲେ ସେମାନେ ।

ମୁଁ ସମସ୍ତଙ୍କଠୁ ବଳି ବେଶୀ ପାପ କରିନ; ନିଜର ଦୁଃଖ ଆଉ ଅପମାନ, ଆହତ ମନୋଭାବକୁ ପ୍ରକାଶକରି ପାଟିକରି ଉଠନ୍ତି ଅଜା ।

ଆଇମା ଥାଏ ଥାଏ ଚିହାଇ ଦିଏ ତାଙ୍କୁ ।

"ଯମକୁ ବିନା ଜଣାରେ ମଣିଷର ମୂଲ୍ୟଟା କଣ ।" ଆମେ ଏକୁଟିଆ ଥିଲାବେଳେ ମତେ ବୁଝେଇବାକୁ କହିବ ସେ ଥରକିନ । "ବୁଢ଼ାର ଯମକୁ ଖସି ଡର, ରକ୍ତଟା ପାଣି ଫାଟିଯାଏ ମ ତାର ! ଦେଖୁଚୁ ନା କଣ ଡର ଖାଲି କେମିତି ବୁଢ଼ା ପାଲଟି ଯାଇଛି ସେ । ଆଲୋ ମା ଦୟାର ଜୀବଟିଏ ମ !"

ଜଙ୍ଗଲରେ ଖରାଦିନଟା ସବଳ ଆଉ ଶକ୍ତ କରିଦେଲା ମୋର ଶରୀରକୁ

କିନ୍ତୁ ମତେ ଆଉ ମେଳାପାଇକର ରହିଲା ନାହିଁ । ମୋର ଖେଳସାଥୀଙ୍କଠି ଆଉ ଲୁଦମିଲ୍ଲାଙ୍କଠି ବି ଆଉ ଆଗ୍ରହ ବୋଲି କିଛୁ ରହିଲା ନାହିଁ—ଛୁଟିଗଲା ତାର ଗୃହୁଫାଟିକ, ବରଫିକର ହୋଇଉଠିଲା ମୋ ପାଖରେ ।

ଦିନେ ଅକା ସହରରୁ ଫେରିଲେ ଗୋଟିକିଯାକ ଓଦା ହୋଇ । ଶରତର ମଝାମଝି, ଜୋରରେ ବର୍ଷା ହେଉଥାଏ । ଘରଚଟିଆଭଳି ଅଗଣାମୁହଁରେ ଠିଆ ହୋଇ ବଜସ୍ଥ ଦର୍ପରେ କହିଲେ—

"କି ହୋ ! ଅଲସୁଆ ବାବୁ; କାଲି କାମକୁ ଯିବା ଉମର ।"

"କୋଉଠିକି ?" ଚଢ଼ି ଚଢ଼ି ହୋଇ କହିଲା ଆଈ ମା ।

" ଡମ ଭଉଣୀ ମାତ୍ରିଓ୍ୟୋମ ଘରକୁ— ତା ପୁଅ ପାଖରେ କାମ କରିବା ପାଇଁ ।"

" ପସନ୍ଦଟା ଭଲ ହେଲା ନାହିଁ—ଖରାପ ପସନ୍ଦଟା କଲୁ ବାପା ।"

"ଚୁପ୍‌କର—ଆଈବୁଢ଼ୀ ବୋକୀ । କିଏ ଜାଣେ ତାକୁ ଶିଖେଇ ମଣେଇ 'ଡ୍ରାପ୍‌ଟସ୍‌ମ୍ୟାନ' କରି ଗଢ଼ିଦେବେ ହୁଏତ ।"

ପଦେ କିଛୁ ନକହି ମୂଣ୍ଡଟି ନୁଆଁଇ ଦେଲା ଆଈ ମା । ସେହିଦିନ ସନ୍ଧ୍ୟାରେ ଲୁଦ୍‌ମିଲ୍ଲାକୁ କହିଲି ସହରକୁ ଯାଉଛି ରହିବ ସେଠି ।

"ମତେ ବି ସେଠିକି ନିଆଯାଉଚି ଶୀଘ୍ର", ଭାବିଚିନ୍ତି କହିଲା ଲୁଦମିଲ୍ଲା । ବାପାଙ୍କ ଇଚ୍ଛା, ସେମାନେ ମୋ ଗୋଡଟି କାଟି ଦିଅନ୍ତି । ସେମାନେ କହୁଛନ୍ତି ସେମିତି କଲେ ଭଲ ହୋଇଯିବ ।"

ଏଇଦିନ ଭିତରେ କେମିତି ଆହୁରି ଧଡ଼ଆ ହୋଇଯାଇଥାଏ ସେ । ମୁହଁଟିରେ ତାର ନେଳିଆସିଆ ପଡ଼ି ଆସିଥାଏ । ଆଖି ଦିଓଟି ବାହାରି ପଡ଼ୁଥାଏ ବଢ଼ି ଯାଇଥାଏ ଯେମିତି ।

"ଡରଲାଗୁଚି କି ? ଭୟ ହେଉଚି ମନରେ ?" ପଚାରି ଦେଲି ।

"ହୁଁ ।" ଉତ୍ତର ଦେଲା ଧୀରକିନ—ଆଉ କାନ୍ଦିବାକୁ ଆରମ୍ଭ କରିଦେଲା ଭୁନ ଭୁନ ।

ତାକୁ ସାନ୍ତ୍ୱନା ଦେଇ କିଏ ବା କହିଥାନ୍ତା—କିଏ ବା ଥିଲା ? ସହରରେ ଚଳିବ—ମତେ ବି ଡର ମାଡୁଥାଏ ଖୁବ୍‌ । ଅନେକ ବେଳଯାଏ ପରସ୍ପରକୁ ଲଗା ଲଗି ହୋଇ ଅଧାଶୁଆ ଭାବରେ ଦୁହେଁ ଯାକ ବସି ରହିଲୁ କି ଦୁଃଖର କି ବେଦନାର ନୀରବତା ଭିତରେ ।

ଏଇଦିନଟି ଥାଆନ୍ତା କି—ଆଈମାକୁ କହିଥାନ୍ତି, ସେ ଯେମିତି ଝିଅଦିନେ ଭିକମାଗି ଯାଉଥିଲା ସେମିତି ଯିବାପାଇଁ । ଆମେ ତାହା ହେଲେ ସାଙ୍ଗରେ ନେଇଥାନ୍ତୁ ଲୁଦମିଲ୍ଲାକୁ—ଗ୍ଲେଟ ଗାଡ଼ିଟିରେ ବସାଇ ମୁଁ ତାକୁ ଟାଣି ଟାଣି ନେଉଥାନ୍ତି—

କିନ୍ତୁ ଶରତ କାଳଟା ! ଓଦାଳିଆ ପବନଟା ଓଲେଇ ଦେଇ ଯାଉଥାଏ ରାସ୍ତାଗୁଡ଼ିକୁ, ଗଳିକନ୍ଦିଗୁଡ଼ିକୁ—ଆକାଶର ଓଢଣୀ ଭଳି ଘୋଡ଼େଇ ରହିଥାଏ

ମେଘ—ଯାହାର ଶେଷ ନଥାଏ କେଉଁଠି । ମଳିଣ ପଡ଼ିଆସିଲା ପୃଥିବୀ—ମଇଳା ହୋଇଗଲା—ଗମ୍ଭୀର ଆଉ ସତେ ଯେପରି ରାଗରୋଷରେ ଗରଗର ହୋଇ ଉଠିଲା ପୃଥିବୀ !

## ଘର

ପୁଣି ବାହାରିଲି ସହରକୁ, ରହିଲି ଯାଇ ଚନ୍ଦନପୁର ଧଳା ଦୋମହଲା ଘରେ, ଠିକ୍ ଗୋଟିଏ ବଡ଼ କଫିନ ପରି । ବହୁତ ଲୋକ ଧରିବେ ସେଥିରେ । ଘରଟି ନୂଆ କରି ରୋଗେଇ ଥାଏ ଯେମିତି ; ଝୁମ୍ପୁକେଇ ଉଠିଥାଏ, ଭିଖାରୀଟିଏ ହଠାତ୍ ଗୁଡ଼ାଏ ଧନସମ୍ପତ୍ତି ଉତ୍ତରାଧିକାର ସୂତ୍ରରେ ପାଇ କେମିତି ଭୁଣ୍ଡ ଲଳସିଆରେ ଗିଳି ଫୁଲ୍‌ଫାଲ୍ ଉଠେ ସେମିତି ଠିକ୍ । ଘରଟି ଗଳିରାସ୍ତା ଆଡ଼କୁ ଥାଏ କରଙ୍କଆ ହୋଇ । ପ୍ରତି ମହଲାରେ ଆଠଟି ଲେଖାଏଁ ଝରକା ଅନେଇ ଥାଏ । ରାସ୍ତାକୁ ଚାରୋଟି ଲେଖାଏଁ ଝରକା ପୁଣି ଘରର ମୁହଁ ଯେଉଁ ଦିଗକୁ ହେବା ଉଚିତ ହୋଇଥାନ୍ତା ପ୍ରକୃତରେ ସେହି ଦିଗକୁ । ତଳ ମହଲାର ଝରକା ସବୁର ମୁହଁ ଥାଏ ଅଗଣାର ଗୋଟାଏ ଅଧା ଅଣଓସାରିଆ ସଙ୍କୀର୍ଣ୍ଣ ଗଳିବାଟ ଆଡ଼କୁ । ଗଳିବାଟ ଆଡ଼କୁ ଉପର ମହଲାର ଝରକା ସବୁ ଅନେଇ ରହିଥାଏ । ଯେମିତି ବାଡ଼ ଡେଇଁ ଗୋଟାଏ ଅସନା ଗୋହିରୀ ଆଉ ଗୋଟିଏ ଧୋବଣୀର କୁଡ଼ିଆଟିକୁ ।

ଗଳିରାସ୍ତା କହିଲେ ସାଧାରଣରେ ଯାହା ବୁଝାଏ, ତାହାର ଚିହ୍ନ-ବର୍ଣ୍ଣ ନଥାଏ କୋଉଠି । ଘରଟିର ସାମନାରେ ପ୍ରକୃତରେ ଯାଏ ସେହି ଅସନା ଗୋହିରୀଟା, ଦି ଜାଗାରେ ତାକୁ ଆଡ଼ବାଟରେ କାଟି ଖୋଲା ହୋଇଥାଏ ସଙ୍କୀର୍ଣ୍ଣ ପାଣି ମାହାଳି । ବାଆଁ ପଟେ ଗୋହିରୀଟି ଲମ୍ବି ଯାଇଥାଏ ବନ୍ଦୀ ବା କଏଦୀଙ୍କ ବସତି ଯାଏ—ସେଇଠି ଠିକ୍ ଘରମାଲିକମାନେ ବାଛି ନେଇଥାନ୍ତି ଜାଗାଟିଏ । ସେମାନଙ୍କର ଅଳିଆ ଆବର୍ଜନା ନେଇ ବନ୍ଧ ଉପରେ କୁଢ଼େଇବା ପାଇଁ । ଏଣୁ ଗୋହିରୀର ତଳ ପଟରେ ସବୁବେଳେ ଯୁରୁ ସୁରୁ ହୋଇ ଫିଟିଥାଏ ବହଳିଆ ବହଳିଆ ଶାଗୁଆ ରଙ୍ଗର ଝରଣା । ତାହାଣରେ ଗୋହିରୀଟା ଯାଇ ଯାଇ ଶେଷ ହୋଇଥାଏ ପଚାସଢ଼ା ଦୁର୍ଗନ୍ଧମୟ କ୍ୟେକ୍‌ଧୀନ୍ ଗାଡିଆରେ । ଗୋହିରୀର ମଝାମଝି ଜାଗା ଆମ ଘରର ସାମ୍ନା । ସେଥିରୁ ଅଧିକ ଭର୍ତ୍ତି ହୋଇ ରହିଥାଏ ଅଳିଆରେ । ତା' ଉପରେ ବଢୁଥିବା ଗୁଗୁଚିଆ, କଣ୍ଟାମରିଚ, କଣ୍ଟେଇକୋଳିର ବଣ । ଗୋହିରୀର ଆର ଅଧକଟିକୁ ବଗିଚାରେ ପରିଣତ କରିଥାଏ ପାଦ୍ରି ଡରମେଦନ୍ତ ପୋକୋଭସ୍କି । ସେଇ ବଗିଚାରେ ଥାଏ ସରୁ ସରୁ ଫାଳିଆ କାଠପଟାରେ ତିଆରି ଝରିଦାନିଆ ଘର ଗୋଟାଏ । ଭାଙ୍ଗି ଯାଇଥାଏ କାଠପଟା ଗୁଡ଼ାକ ।

ସ୍ଥାନଟା ଥାଏ ଅତି ଅସମ୍ଭବ ଭାବରେ ମାନ୍ଦା, କାଉଁନ୍ଦା, ଜଘନ୍ୟ ଭାବରେ ନିଜକୁ ଦେଖେଇ ହୋଇ ଫୁଲ୍ଲପଣରେ କୁତ୍ସିତ ଶରତକାଳର ପାଣି ପାଗରେ ଆଣ୍ଠୁଏ ଆଣ୍ଠୁଏ ବହଳର ଦାଗୁଆ ଘାସ ତଳର କାଦୁଆ । ଖାଲଟି ଦେଖାଯାଏ

ଗୋଟାଏ ପ୍ରକାର ଲାଲ ଆଲକାତରା ଯେମିତ, ନାର୍ଦ୍ଦମା ଭବରେ ଲାଗି ଯାଉଥାଏ ପାଦରେ । ଏତେ ଅଳ୍ପ ଜାଗାରେ ଗଦାକୁ ଗଦା ଏତେ ମଇଳା ଏତେ ଅବର୍ଜନା ଆଗରୁ କେବେ ଦେଖି ନ ଥାଏ, ମୁଁ । ବନ ବୁଲ ପତ୍ରଆର ନିର୍ମଳ ପବିତ୍ରତାରେ ଅଭ୍ୟସ୍ତ ମୁଁ । ସହରର ଏହି କୁତ୍ସିତ ଦୁର୍ଗନ୍ଧମୟ କଣଟା ମତେ ଏମିତ ଏକାବେଳକେ ହତାଶ କରିଦେଲା ତାହା କଥାରେ କହି ହେବ ନାହିଁ ।

ଗୋହିରିକୁ ଟପି କିଛି ଦୂରଯାଏ ଲମ୍ବି ରହିଥାଏ ଭଙ୍ଗା ନୁଆଣିଆ ବାଡ଼ଗୁଡ଼ାକ—ତାହାର ଭିତରେ ଦିନେ ଆବିଷ୍କାର କଲି କସରା ବା ବାଦାମୀ ରଙ୍ଗର ଘର—ଆଗେ ଜୋତା ଦୋକାନରେ ବୋଲକରା ପିଲା ଭବରେ କାମ କଲାବେଳେ ସେଇଠି ରହୁଥିଲି ମୁଁ । ଏହି ଘରଟା ଏତେ ନିକଟରେ, ମନଟାକୁ ଆହୁରି ଦବେଇ ଦେଲା, ଆହୁରି ବେଶୀ ଦୋଷ ଲାଗିଲା କେମିତ, ପୁଣି କାହିଁକି ସେହି ସାହିରେ ସେହି ଗଳିରେ ରହିବ ମୁଁ ?

ମୋର ନୂଆ ମାଲିକଙ୍କ ସାଙ୍ଗରେ ସାମାନ୍ୟ ହେଲେ ବ ଆଗରୁ ଜଣାଶୁଣା ଥିଲା ମୋର । ଆଗେ କେବେ ସେ ଆଉ ତାଙ୍କ ଭାଇ ଯାଇଥିଲେ ମାଆକୁ ମୋର ଦେଖିବା ପାଇଁ । ମାଲିକର ଭାଇଟି ସେତେବେଳେ ବଂଶୀ କି ସୁସିର ବଜାଇବା ଭଙ୍ଗୀରେ ନାକରେ ଯେମିତ ବେଶ୍ କୌତୁକିଆ ସ୍ବରରେ କହୁଥିଲେ ।

"ଆନ୍ଦ୍ରେଇ-ବାପା, ଆନ୍ଦ୍ରେଇ—ବାପା !"

ଦିହିଙ୍କ ଭିତରୁ ଢଲେ ହେଲେ କାହାର କିଛି ପରିବର୍ତ୍ତନ ଘଟି ନ ଥାଏ । ବଡ଼ ଭାଇଟିର ନାକ ଇଗଲ-ଚଞ୍ଚୁ ଯେମିତ, ବାଳସବୁ ବେଶ୍ ଲମ୍ବା ଖୁବ୍ ଆମୋଦୀ, ଖୁସ୍ ମିଜାଜୀ— ଜଣାପଡ଼ୁଥାଏ ହୃଦୟଟି ଉଦାର । ସାନଭାଇ ଭିକ୍ଟର । ସେମିତ ଘୋଡାଭଳି ମୁହଁ, ଟିପୁଟିପୁ ଦାଗ, ହଳଦିଆ ହଳଦିଆ ବ୍ରଣ ଚିହ୍ନ ବୋଧହୁଏ । ତାଙ୍କର ମାଆ ମୋ ମାଆର ଭଉଣୀ କିନ୍ତୁ ସେ ଯେମିତ ଖରଚୁଣ୍ଡା ସେମିତ ଚଡ଼ଚଡ଼ା, ରାଗୀ, ତାର ବଡ଼ପୁଅ ବାହା ହୋଇଥାଏ ଗାଢ଼ କଳା ଆଖିର ମାଇପିଟିଏ— ଗୋରା ଆଉ ମୋଟୀ—ଗହମ ତିଆରି 'ବନ୍' ପିଠାଭଳି ।

ମୋ ରହିବାର ପ୍ରଥମ କେଇଟି ଦିନ ଭିତରେ ଦୁ'ଥର୍‌ସେ କହିସାରିଥାଏ ମତେ—

"ଥରେ ତୋ ମାଆକୁ ମୁଁ ଦେଇଥିଲି ସିଲ୍କ ଚିଲା ଉପର କୁର୍ତ୍ତା, ଅଙ୍ଗାବରଣୀ ତା ଆଲଖାଲା ଗୋଟିଏ, କଳା କଳା ମାଳିଗୁଡ଼ିଏ ଥିଲା ସେଥିରେ ।"

କାହିଁକି କେଜାଣି, କିଛି କାରଣ ଥିବ ବା ! କେବେହେଲେ ବିଶ୍ୱାସ ଆସୁ ନ ଥାଏ—ଧାରଣା ହେଉ ନ ଥାଏ । ସେ ପ୍ରକୃତରେ କିଛି ଉପହାର ଦେଇଥିବ ମୋ ମାଆକୁ ଆଉ ତାକୁ ଗ୍ରହଣ କରିଥିବ ମାଆ ! ଆଉଥରେ ସେ ମତେ ଏ କଥା ... ପକାଇ ଦେଲାକ୍ଷଣି କହିଲି ମାଝେ କହିଲି—

"ଦେଇ ପାରଛ ଯଦି, ଏତେ ବଡ଼େଇ କାହିଁ କହି ହେଉଛ କାହିଁ ?"

ଏକାବେଳକେ ସ୍ତବ୍ଧ ହୋଇ ଚମକି ପଡ଼ିଲି, ଘୁଞ୍ଚିଗଲି ପଛକୁ ଟିକିଏ ! "କଥା—କଣ ? କଅଣ କହିଲୁ ତୁ ? କାହା ସାଙ୍ଗରେ କଥା ହେଉଛୁ— କାହାକୁ କଣ କହୁଚୁ, ଜାଣିଚୁଟି ?"

ମହାକୁ ମହା, ନାଲି ନାଲିଦାଗ ଉକୁଟି ଉଠିଲା ମୁହଁରେ । ଡୋଳା ଦିଇଟା ଏ କଣରୁ ସେ କଣ ଗଡିବାକୁ ଲାଗିଲା ଆଖିରେ । ଡୋଳା ଦିଇଟା ଗଡ଼େଇ ଡ଼ାକ ପକେଇଲି ଗିରସ୍ତକୁ ତାର ।

ହାତରେ କମ୍ପାସ, କାନରେ ପେନ୍‌ସିଲ୍—ସେମିତି ଘରେ ପଶି ଆସିଲେ ସେ । ଗିରସ୍ତଟି ତାର ସବୁ ଶୁଣିସାରିଲା ପରେ ଘରଯାଠୁ ପୂର୍ବାପର କହିଲେ ସେ ମତେ :

"ଦେଖ୍, ଏକା କେବେଁ ସବୁ କଥାରେ ହାତ ପୂରେଇବୁ ନାହିଁଟି— ଆଗଚଲା ହୋଇ ଉଦ୍ଧତ କ ଅମାନିଆ ହେବୁ ନାହିଁଟି ।"

ତା ପରେ ଅଧୈର୍ଯ୍ୟ ଭାବରେ ବୁଲି ପଡ଼ିଲେ ଘରଯା ଆଡ଼କୁ—

"ଏମିତିକା ତୁଚ୍ଛା ନିରର୍ଥକ କଥାଗୁଡ଼ାକରେ ବିରକ୍ତ କର କାହିଁକି ?"

"ଏମିତିକା ତୁଚ୍ଛା କଥାରେ ଆଉ ବିରକ୍ତ କରିବ ନାହିଁ କହୁଚ୍ଛ ।"

"କଣ ହେଲା, କଣ କହିଲ ତୁଚ୍ଛ ନିର୍ବୋଧ ନିରର୍ଥକ । ତମର ରକ୍ତର ଯେତେବେଳେ—ତମ ଜ୍ଞାତି—"

"ଧୁତ୍ତେରିକି, ମୋ ରକ୍ତର—ମୋ ଜ୍ଞାତି-" ପାଟିକରି ଉଠି, ଦମ ଦମ ହୋଇ ତୋଫାନଭଳି ବାହାରିଗଲେ ସେ—

ମତେ ଭଲ ଲାଗୁ ନ ଥାଏ, ଏଇମାନେ ମୋ ଆତ୍ମୀୟ ରକ୍ତର, ଏଇ କଥାଟି ! ଲକ୍ଷ୍ୟକରି ଦେଖିଛି ମୁଁ ବନ୍ଧୁବାନ୍ଧବ ସବୁ, ଜ୍ଞାତିକୁଟୁମ୍ବ ସବୁ, ଅଜଣା ଅଶୁଣା ଅପରିଚିତ ଲୋକଙ୍କଠୁ ବଳି ପରସ୍ପରପ୍ରତି ଅତି କଦର୍ଯ୍ୟ ବ୍ୟବହାର କରନ୍ତି । ପ୍ରତ୍ୟେକେ ପ୍ରତ୍ୟେକର ସେମାନେ ଭଲରୂପେ ଜାଣନ୍ତି ଦୁର୍ବଳତା, ଆଉ ଉପହାସର ସୀମିତପ୍ରକୃତିଗୁଡ଼ିକ ଅନ୍ୟ ଯେକୌଣସି ବ୍ୟକ୍ତି ଅପେକ୍ଷା, ସେହିମାନେ ହିଁ କୁତ୍ସା ରଟାନ୍ତି, ବନେଇ ଚୁନେଇ ମିଥ୍ୟାଗୁଡ଼ାଏ ଗପନ୍ତି । ନିଜ ନିଜ ମଧ୍ୟରେ କଳିତକରାଳରେ ମାତନ୍ତି, ଲଢ଼ାଲଢ଼ି ମାଡ଼ଗୋଳ ହୁଅନ୍ତି ଅଧିକାଂଶ ସମୟରେ ।

ମୋର ମନକୁ ପାଇଥାନ୍ତି ମାଲିକଟି—ଖୁବ୍ ଭଲ ଲାଗୁଥାନ୍ତି ମତେ । ପଛକୁ ବାଲତକ ଗୁଚ୍ଛି କାନ ପାଖରୁ—କାନପଛକୁ ପୁଣି ଯୁରୁଖୁରୁରେ ତାକୁ ଖସେଇ ନେବାର କେମିତି ଗୋଟିଏ ମନ କିଣିନେଲାଭଳି ରୀତିଟିଏ ଥାଏ ତାଙ୍କର । କାହିଁକି କେଜାଣି ସେ ଖାଲି ମତେ ବାରମ୍ବାର ମନେପକାଇ ଦେଉଥାନ୍ତି ଯେମିତି ତାଙ୍କୁ ଦେଖିଲେ ବାରମ୍ବାର ମୋର ମନେପଡ଼ୁଥାଏ ଭାଗ୍ୟ ବଢ଼ିଆ ଏ—

ଭଣ୍ଡି ସୁନ୍ଦର ! ଅନେକ ହସନ୍ତି ସେ, ଅନେକ ସମୟରେ ହସନ୍ତି ହୃଦସୂଖୋଲି ଭାବରେ । ସେତକବେଳେ ଧୂସର ଆଖି ଦୁଇଟି ତାଙ୍କର ଝଲକଉଠେ, ଜ୍ୟୋତିଟିଏ ବାହାରି ଆସେ । ସ୍ନେହଶୀଳ ମଧୁର ପ୍ରକୃତରେ—କୌତୁକଆ ମଉଜିଆ କୁଞ୍ଚନଟିମାନ ଦେଖାଯାଏ ତାଙ୍କର ଶ୍ୟେନ-ନାସାର ଦୁଇ କରରେ, କୁଞ୍ଚ କୁଞ୍ଚ ହୋଇଉଠେ ତାଙ୍କର ଶ୍ୟେନ-ନାସାର ପାଖ ଦୁଇଟି ।

'ବହୁତ ବହୁତ ହେଲା ତମର ମାଡ଼ଗୋଳ, ଗରଜିଲା, ଗରଜିଲା କୁକୁଡ଼ା ଛୁଆଗୁଡ଼ିକ—ବହୁତ ହେଲା", ହସି ହସିକା କହନ୍ତି ସେ ମାଆଙ୍କୁ ଆଉ ଘରଯାକୁ ତାଙ୍କର ଛୋଟ ଛୋଟ ଖୁଦ୍ର ହେଲା ଘନଫଳଗ୍ନ ଦାନ୍ତଗୁଡ଼ିକ ଦେଖେଇ ।

ଏମିତ ଜୋଉଦନ ନ ଥାଏ, ଯେଉଁଦନ କଳି କରୁ ନ ଥାନ୍ତି ସେଇ ମାଇପି ଦୁଇଟି । ସବୁବେଳେ ଆଶ୍ଚର୍ଯ୍ୟ ଲଗୁଥାଏ ମତେ କେଡ଼େ ଚଞ୍ଚଳ ତାତ ଉଠୁଥାନ୍ତି ସେମାନେ । ସତ ନ ପାହୁଣ୍ଡୁ, କହିବାକୁ ଗଲେ, ଭୋର ଭୋରରୁ ପ୍ରକୃତରେ ଦୁଇଟିଯାକ ଦଉଡ଼ଧାପଡ଼ ଲଗେଇ ଦଅନ୍ତି ଘରଗୁଡ଼ିକରେ, ଏମିତ ଅବସ୍ଥାରେ ପୁଣି ବାଳ କୁଣ୍ଡାହୋଇ ନ ଥାଏ କାହାରି, ପୃଗ୍‌ପୃଗ ମୁକୁଳା, ଉଠୁଥାଏ ଓହଳ ପଡ଼ୁଥାଏ ବଣ୍ଡୁଙ୍ଖଳ ଭାବରେ, ଅଡୁଆ ଚଡ଼ୁଆ ହୋଇ ଛୁଟନ୍ତି ଏଘରୁ ସେ ଘରକୁ, ସତେ ଯେମିତ ନିଆଁ ଲଗିଯାଇଛି କୋଉଠି ଜଳୁଛି ସମୁଦାୟ ଘରଟା ! ଉଛାଟାକୁ ଖାଲି ଏମିତ ପାଟିରୁଣ୍ଡକର ବ୍ୟତବ୍ୟସ୍ତ ହୋଇ ଏଣେତେଣେ ନାଚନ୍ତି ଦନଟାଯାକ—କେବଳ ଦ'ପହରେ କି ରାତରେ, ଖାଇଲାବେଳେ ନ ହେଲେ ଗ୍' ପିଇଲାବେଳେ ଟେବୁଲ ପାଖରେ ବସି ବାଧହୋଇ ଯାହା ନିଃଶ୍ୱାସ ମାରନ୍ତି, ବିଶ୍ରାମ ପାଆନ୍ତି ! ଖାଇ ଖାଇ ପିଇ ପିଇ ନିଜକୁ ଅଧାଅଧି ଅଚେତ ଅଚଳକରି ଦଅନ୍ତି ସେମାନେ । ଖାଇଲାବେଳେ ଆଲୋଚନା କରନ୍ତି ଖାଇବା ଜିନଷ ଯେବ ଅଲଗାଭାବରେ କଳ୍ପ କଥା କଟାକଟି— ଉତ୍ତର ଦଆଦେଇ ଗୃହେ ଆତୁର ଏକ ବଡ଼ ଗୁରୁତର କଳର ଆୟୋଜନ ସେ ! ଶାଶୁ ଯାହା ଯେମିତ ଯେତେ ଭଲକରି ରାନ୍ଧଥାନ୍ତୁ ପଛେ, ବୋହୂ କହି ଉଠନ୍ତି—

"ମାଆ ମୋର ଏଇଟିକୁ ଏମିତ କେବେ ତିଆରି କରେ ନାହିଁ— ରାନ୍ଧେ ନାହିଁ ।"

"ସ୍ୱାଦୁ ତେବେ ଖରାପ ହୋଇନ ନଶ୍ଚୟ ।"

"ନା, ଖରାପ ନୁହେଁ—ଭଲ, ବହୁତ ଗୁଣ ଭଲ ।"

"ତାହାହେଲେ ଯାଉନ ଛାହିଁକ-ରହନ ଯାଇ ମାଆ ପାଖରେ ?"

"ଏଠି ତ ମାଲକାଣୀ ମୁଁ, ଏଠି କଣ କର୍ତ୍ତ୍ରୀ ଘରଣୀ ମୁଁ ନୁହେଁ ?"

"ଆଉ ତମେ ବସୁରୁଚ, ମୁଁ କଣ ତେବେ ଏଁ ?"

"ବହୁତ, ବହୁତ ହେଲା—ଗରଜିଲା କୁକୁଡ଼ା ଛୁଆଗୁଡ଼ିକ ମୋର ।" ଥାଏ ଥାଏ କହିଉଠେ ଗିରସ୍ତ "କଥା କଣ—ପାଗଳ ହେଲଣି ନା କ'ଣ ?"

ସେ ଘରେ ପ୍ରତ୍ୟେକ କଥା, ପ୍ରତ୍ୟେକ ଘଟନା ଥାଏ ଅତି ଅବୋଧ୍ୟ ସ୍ୱବରେ ଅଦ୍ଭୁତ ଆଉ ହାସ୍ୟକର, ସ୍ପେସେଇଘରୁ ଖାଇବା ଘରକୁ ଯିବାକୁ ହେଲେ ବାଟରେ ପଡ଼େ ଘରଟାଯାକର ଗୋଟିଏ ବୋଲି ଅଣଓସାରିଆ ଗ୍ରେଟ ପାଇଖାନା । ଏଇ ବାଟେ ବୋଧହୁଏ ନଆସାଏ ଖାଇବା ଜିନସ ଆଉ ଉଠାଚୁଲି ସାମୋଭର । ବହୁତ ଥଟ୍ଟା ପରିହାସ ଆଉ କୌତୁକିଆ ଆମୋଦଜନକ ରହସ୍ୟିଆ ଘଟନାର ଇଏ ଥାଏ ମୂଳ କାରଣ । ମୋର ଦୈନନ୍ଦିନ କାମ ଭିତରେ ଥାଏ—ପାଇଖାନା ଧୂଆ ଓ ଛାଁଚ୍ଚି କୁଣ୍ଡଟାରେ ପାଣି ଭର୍ତ୍ତି କରିବା । ପାଇଖାନା ଦୁଆରମୁହଁର ଓଲଟା ଦିଗରେ ସାମ୍‌ନାରେ ଠିକ୍ ସାମ୍‌ନା ଦାଣ୍ଡପଟ ଦୁଆରମୁହଁ କବାଟ ପାଖରେ ଶୁଏ ମୁଁ ସ୍ପେସେଇ ଘରେ । ସ୍ପେସଇଘର ଚୁଲିନିଆଁର ଧାସରେ ମୋ ମୁଁଣ୍ଡଟା ତାତିଯାଏ, ଗରମ ହୋଇଯାଏ ଆଉ ତେଣେ ଦାଣ୍ଡପଟ କବାଟତଳ ଫାଙ୍କରେ ଯେଉଁ ସୁରୁସୁରୁ ହେମାଳ ପବନ ଆସେ, ଯେଥିରେ କାଲି ମାରିଯାଏ ପାଦଯୋଡ଼ିକ । ତେଣୁ ଶୋଇବାକୁ ଯିବାବେଳକୁ ମୁଁ କଣ କରେ ନା ସବୁ ଘର ଚଟାଣରେ ଯେତେ ଯେଉଁଠି ଦରି ମସିଣା ପଡ଼ିଥାଏ, ଗୋଟେଇ ନିଏ, ମୋ ଗୋଡ଼ରେ ଲଦିଦିଏ ।

କେମିତି ବଡ଼ ଉଦାସିଆ ଉଦାସିଆ, ଖାଲି ଖାଲି ଲାଗେ ବୈଠକ-ଖାନା ଗଲି ଅଛିଲାଙ୍କ ପାଇଁ କ ଖାଇସାରି ବସାଉଠା କରିବା ପାଇଁ—ଘରଟାର ମେଜିଆ, ସେଥିରେ ଥାଏ ବଡ଼ ବଡ଼ ଲମ୍ବା ଆରସି, ଦୁଇଟି ତାସଖେଳ ଟେବୁଲ୍, ବାରଟି ସଲଖ-ପିଠିଆ ଚେୟାର ଆଉ 'ନଭା' ପତ୍ରିକାର ଗ୍ରାହକ ସୁବିଧାକୁ ସେ··· ବା ଉପହାର ରୂପେ ମିଳିଥିବା ଯୁନେଲି ଫ୍ରେମ୍‌ରେ ବନ୍ଧେଇ ଛବିଗୁଡ଼ିଏ । ବଡ଼ ବୈଠକଖାନା ଘରଟି ପାଖରେ ଥାଏ ଗ୍ରେଟ ଘରଟିଏ—ନସ୍ପେଲାରେ ବସାଉଠା ପାଇଁ—ଏଇଟିରେ ତିଳ ପ୍ରମାଣେ ଖାଲି ସ୍ଥାନ ନଥାଏ କେଉଁଠି—ଭରି ରହିଥାଏ ଜାକଜମକିଆ ଢଙ୍ଗରେ ସ୍ପ୍ରିଙ୍ଗ୍‌ଲଗା ଧୂଳାଗଦାଗଦିଆ ଆସବାବ୍-ପତ୍ର ଆଉ ବୋହୂର ଯୌତୁକରୁ କେତେକ ରୂପାର ବାସନ କୁସନ, ସୁଦିଆ ଥାଳିଆ କପ୍ ଟୁଭିତର ପ୍ରଦର୍ଶନ ପାଇଁ ଥିବା ଶେଲ୍‌ଫଗୁଡ଼ିକ, ତିନୋଟି ଲ୍ୟାମ୍ପ ଆକୃତିରେ ପରସ୍ପର ସହିତ ପ୍ରତିଯୋଗିତା କରୁଥାନ୍ତି ଯେମିତି । ଏହି ଘରଟିର ଚୂଡ଼ାନ୍ତ ଗୌରବ ରୂପେ ଶୋଭା ପାଉଥାନ୍ତି—ଦମ୍ପତିଙ୍କ ଶୋଇବାଘର ଭିତରେ ସଜା ହୋଇଥାଏ ବିରାଟ ଗୋଟାଏ ପଲଙ୍କ, ଟ୍ରଙ୍କସବୁ ଆଉ ପୋଷାକ ରଖା ଆଲମାରି ବା ଓ୍ୱାଡ଼ରୋବ କେତୋଟି—ଏହି ଓ୍ୱାଡରୋବରୁ ସବୁ ବାହାରୁଥାଏ ଧୂଆଁପତ୍ର ଓ ରୁକ୍ଷ୍ମିଣୀହାଡ଼ପୋଗ୍ରା ପତ୍ରର ବାସନା ।

ସବୁବେଳେ ଖାଲି ରହୁଥାଏ ଏହି ତିନୋଟିଯାକ ବଖରା ଅଥଚ ପରି-ବାରଟିର ସମସ୍ତେ ଗ୍ରେଟ ଖାଇବାଘର ବଖୁରିଟିରେ ରହୁଥାନ୍ତି । ଚଳପ୍ରଚଳ ହେଉଥାନ୍ତି, ଖୁନ୍ଦିଖାନ୍ଦିରେ ପରିବାରଟି ଜାକିଜୁକି ଚାପିଚୁପି ହୋଇ ଚଳୁଥାଏ ଏଇ । ଏଣୁ ଅନବରତ ପ୍ରତ୍ୟେକେ ହାବୁଡ଼ୁଥାନ୍ତି—ପ୍ରତ୍ୟେକର ବାଟରେ ସକାଳୁ

ଆଠଟାରେ ପ୍ରାତରାଶ ସାରିବା ସଙ୍ଗେ ସଙ୍ଗେହିଁ ଗିରସ୍ତି ଆଉ ତାଙ୍କ ଘର ଖଞ୍ଜା ଟେବୁଲଟିକୁ ମେଲେଇ ଲମ୍ବା କରି ଦିଅନ୍ତି—ତା ଉପରେ ଧଳା ଧଳା କାଗଜ ଫର୍ଦ୍ଦମାନ ବଛେଇ ଦିଅନ୍ତି—ଅଙ୍କାଅଙ୍କି ଯନ୍ତ୍ରପାତି, ପେନ୍‌ସିଲ, ଇଣ୍ଡିଆନ-ଇଙ୍କ୍‌ରେ ଭର୍ତ୍ତି ଥାଳିଆ ପ୍ରଭୃତି ଆଣି ଲାଗିଯାଆନ୍ତି କାମରେ—ଜଣେ ରହେ ଟେବୁଲର ଗୋଟିଏ ମୁଣ୍ଡରେ, ଆଉ ଜଣକ ତା ସାମନାରେ ଆର ମୁଣ୍ଡରେ । ଟେବୁଲଟା ଦୋହଲେ କେମିତି ଥରଥରିଆ । ମାଡ଼ିବସେ ଘରଟିଯାକର ଜାଗା । ମୋର ଯୁବତୀ ମାଲିକାଣୀ ଆଉ ପିଲାଟିର ଧାଇ ବାହାରି ଅସିଲାମାତ୍ରେ 'ଶିଶୁପାଳନ' ଘରୁ ସେଥିରେ ବାଡେଇ ହୋଇଯାଆନ୍ତି ଯେତେ ସତର୍କ ଥିଲେ ବି—

"ଏ ବାଟ ଗ୍ଭଡ଼ ବାଧା ନ ଦେଇ ରହି ପାରୁ ନ ଟି ଏଁ ।" ଏମିତି ଏକ ଘଟଣାରେ ଦିନେ ପାଟି କରି ଉଠିଲା ଭିକ୍ଟର ।

ଆହତ ଆପମାନିତ ମୁହଁଟାକୁ ଗିରସ୍ତ ଆଡ଼କୁ ବୁଲେଇ ଜବାବ୍ ଦେଲା ମାଲିକାଣୀ—

"ଭସ୍‌ୟା କହି ଦେ ତାଙ୍କୁ, ଏମିତି ପାଟିଫାଟି ନ କରିବା ପାଇଁ ମୋ ଉପରେ—"

"ହଲାନା ତା'ହେଲେ ଟେବୁଲଟାକୁ !" ଶାନ୍ତ ଭାବରେ ପରାମର୍ଶ ଦେଲେ ସ୍ୱାମୀ ।

"ପେଟରେ ପିଲା ମୋର । ଅସଜ ମାଇପିଟା ମୁଁ—ଏଠି ତ ସବୁ ଜମା ହୋଇଛି—ସବୁ ଭର୍ତ୍ତି ।"

"ବେଶ୍ ତେବେ, ଆମେ ନେଇଯାଉଛୁ କାମଟାକୁ ଆମର ବୈଠକଖାନାକୁ ।"

ହେ ଭଗବାନ ! କଏ କେବେ ଶୁଣିଥିଲା ଭଲା ବୈଠକଖାନାରେ—କାମ ?

ପାଇଖାନାର ଦୁଆରମୁହଁରେ ଦେଖାଦେଲା ମୋର ବଡ଼ ମାଲିକାଣୀ ମାଜିସ୍ତ୍ରୋନା ଆଇଭାନୋଭ୍ନା । ଲାଲ ଟୁକୁଟୁକୁ ଗୋଟିକଯାକ, ଚୂଲି ଉପର ତାଉଆରୁ କଢା ଗାଜର ।

"ଦେଖ୍ ରେ, କଥା ଦେଖ୍, ଭସ୍‌ୟା" ! ପାଟିକରି ଉଠିଲା ସେ – ବଡ଼ ମାଲିକାଣୀ ଏଠି ପଛେ ତମେ କାମ କରି କରି ଆଙ୍ଗୁଠି ଘୋରି ହୋଇଗଲାଣି, ଆଉ ଇଏ ଆମର ଆପତ୍ତି କରୁଛନ୍ତି, କ'ଣ ନା—ସ୍ୱାଙ୍କର କୁକୁରଛୁଆ ପଲଟା ପାଇଁ ଗୃହ ଗୃହଟା ବଖରା ନଅଣ୍ଟ ହେଉଛି—ଯଥେଷ୍ଟ ନୁହେଁ—ରାଜ-ଦୁଲଣୀଟାଏ ବାହା ହୋଇଛି—ତୁମ ମୁଣ୍ଡରେ ଟିକଏ ହେଲେ ଦିହି ଥାଆନ୍ତା—ବୁଦ୍ଧି ଥାଆନ୍ତା ଟିକେ !"

ଅସ୍ୱସ୍ତିରେ ବିରକ୍ତିରେ ହସି ଉଠିଲା ଭିକ୍ଟର !

"ହଉ ବହୁତ ହେଲା, ବହୁତ ହେଲା !" ଚିଆଁରିଲା—ପାଟିକଲା । 'ଇମିଟି' !

କନ୍ତୁ ଗଣ୍ଡଯାଟି ତାର, ଆଗ ତୁହାଏ ଗାଳ ବର୍ଷିଦେଇ ଶାଶୁ ଉପରେ ଟେବୁଲ ଉପରେ କଗୃଡ଼ ହୋଇପଡ଼ିଲା ଆଉ ବାଗରେ ଆଉକଣ୍ଠି କଣ୍ଠି ହୋଇ ଉଠିଲା ।

"ଗୃଳ ଯାଆନ୍ତ କ, ମରଯାଆନ୍ତ କଲେ ମୁଁ—ଏ ଜୀବନଟା ଯାଉ ନାହିଁ ଲୋ ଯା !"

"ମୋ କାମରେ ବାଧା ଦେଉଛୁ—ଯା' ଯମମୁହଁକୁ ଯା—ନଉ, ସଇତାନ ନେଉ ତୁମକୁ !"ଜୋରରେ ଆହୁରି ଚିତ୍କାର କଲା ସ୍ୱାମୀ । ଏକାବେଳକେ ଫିକା ପଡ଼ିଯାଇ ଶ୍ରମର ଓଟସ୍ୱରେ ନିଜକୁ ରୋକିବାପାଇଁ ଅତ୍ୟଧିକ ଚେଷ୍ଟାରେ । "ପାଗଳ ଘର, ପାଗଳଖାନା ଏ ! ଆରେ, ଯେତେ ଯାହା ହେଉ—ତମର ପାଇଁ ତ ଖାଡ଼ାପଡ ! ବୁଢ଼ା ହୋଇ ହୋଇ ଅଣ୍ଟାପିଠି ଭାଙ୍ଗି ମରୁଛି ମୁଁ—ତୁମର ମୁହଁରେ ନାନା ପାଇଁ ତୁମ ତାଙ୍କ ପାଇଁ । ଘରଜଳା କୁକୁରଛୁଆ ଗୁଡ଼ାକ—"

ପ୍ରଥମେ ପ୍ରଥମେ ଏଇ କଳିକଜିଆରେ ଡର ଯାଉଥାଏ, ବର୍ଣ୍ଣେଷକର ଥରେ ଶିହରି ଉଠିଲି, ଡର ଝାଳରେ ଜୁଡ଼ୁବୁଡ଼ୁ ହୋଇଗଲି—ଖଣ୍ଡଯାଟି ଯେତେବେଳେ ପାଉଁରୁଟିକଟା ଛୁରୀଟାକୁ ମୁଠେଇ ପକାଇ ଜବରଦସ୍ତ ଗାଧୁଆ-ଘରେ ପଶିଗଲା, କବାଟ ବନ୍ଦ କରିଦେଲା—ଆଉ ପାଗଲୀଙ୍କପରି ଚିତ୍କାର ଶୁଭିଲା ଆକାଶ ପାତାଳ ଫଟେଇ । ମୁହୂର୍ତ୍ତିକ ଲାଗି ସବୁ ତୁନିତାନ୍ ହୋଇଗଲା, ଗୋଟାଏ ଭୟଙ୍କର ମରଣ କାଳର ନିସ୍ତବ୍ଧତା ଦେଖାଦେଲା ଯେମିତି । ତା' ପରେ ଗିରସ୍ତନି ଗୁଟିଗ୍ରିଟି ହୋଇ ଧାଇଁଗଲେ ଦୁଆରମୁହଁକୁ । କବାଟରେ ଭିଡ଼ିଦେଲେ ଦେହକୁ ନିଜର, ବଙ୍କେଇଗଲେ ଧନୁଭଳି ଅଣ୍ଟାରୁ ।

"ଚଢ଼, ଚଢ଼ ମୋ ଉପରେ, ଭାଙ୍ଗି ଦେ, ଭାଙ୍ଗି ଦେ ଝରକାକୁ—ଟାଣ୍ ବାହାର କରି ଦେ—କୁହୁଣ୍ଡାଟାକୁ କବାଟରୁ !" ସେ ଡାକ ଛାଡ଼ିଲେ ମତେ ।

ଆଖି ପିଛୁଳାକେ ମୁଁ ହାଜର ହୋଇଗଲି ତାଙ୍କ ପିଠି ଉପରେ । ଭାଙ୍ଗିଦେଲି କବାଟ ଉପରେ ଥିବା କାଚକୁ କିନ୍ତୁ ଯେତେବେଳେ ତଳକୁ ନଇଁ ପଡ଼ିଲି ହୁକ୍‌ଟାକୁ ଫିଟେଇବା ଲାଗି, ଖଣ୍ଡଯାଟି ଗୀବେଣ୍ଟରେ ଦ' ଥର ପାହାରେ କଷିଦେଲା ମୋ ମୁଣ୍ଡକୁ ; ତେବେ କୌଣସିମତେ ହୁକ୍ ଫିଟେଇ ଖୋଲିଦେଲି କବାଟଟିକୁ ତା'ପରେ ଝଡ଼ଭଳି ଲମ୍ଫଦେଇ ଖଣ୍ଡଯାକୁ ତାର ଆକ୍ରମଣ କଲା ଗିରସ୍ତନି । ଟାଣିଘୋସାରି ନେଇଗଲା ଝାଇବାଘର ଭିତରକୁ—ହାତରୁ ଝିଙ୍କି ଛଡ଼େଇନେଲା ଛୁରୀଟାକୁ । ମୋର ପାହାରଖିଆ ଦରଜ, ପସ୍ରାସ ମୁଣ୍ଡଟାକୁ ଆଉଁସୁଥାଏ—ତାର ସେବାରେ ଲାଗିଥାଏ, ସେତିକବେଳେ ବୁଝିଲି ବୃଥାଟାରେ ଗୁଡ଼ାଏ ଯନ୍ତ୍ରଣା ଭୋଗିଲି, କଷ୍ଟ ଦହିଲି ମୁଁ । ଛୁରୀଟା ଏତେ ଦନ୍ଥଡ଼ା ଥିଲା, ସେଥିରେ କାହାରି ଗଲାଫଲା କାଟିବା ତ କାହୁଁ କେଉଁ ଦୂରର

କଥା—ଲହୁଣୀ କାଟିବା ବି ସମ୍ଭବ ହୋଇ ନ ଥାନ୍ତା । ଆଉ ବି ମାଲିକଙ୍କ ପିଠିରେ ଚଢ଼ିବାଟା କି ଦରକାର ଥିଲା ଯେ ! ଗୋଟାଏ ଟ୍ରଙ୍କ ଉପରେ ଛିଡ଼ାହୋଇ ଝରକାଟାକୁ ଛୁଇଁ ପାରୁଥାନ୍ତି, ଆରପଟୁ କବାଟଟା ଖୋଲିବାକୁ ସହଜ ହୋଇଥାଆନ୍ତା ଯେ କୌଣସି ବଡ଼ ମଣିଷ ପାଖରେ । ତାର ହାତଦୁଇଟା ତ ମୋ ହାତରୁ ଲମ୍ବା ହୋଇଥାଆନ୍ତା ନିଶ୍ଚୟ । ଏହି ଘଟଣା ପରେ ସେ ଘରେ ଯେତେ ଯାହା ଦୃଶ୍ୟାଭିନୟ ଚାଲିଲା—କେହିଁଟି ଆଉ ଶଙ୍କା ଆଣିଲା ନାହିଁ ମନରେ, ଦବେଇ ଦେଲା ନାହିଁ ଗ୍ଲୁଢକୁ ।

ଭାଇ ଦୁଇଟି ଥିଲେ ଗିର୍ଜା ସଙ୍ଗୀତ-ମଣ୍ଡଳ ବା ଐକ୍ୟତାନ ସଙ୍ଗୀତର ଗାୟକ ମଣ୍ଡଳର ସଭ୍ୟ । ବେଳେବେଳେ କାମ କରୁ କରୁ ଥରେ ଥରେ ଗାଆନ୍ତି ସେମାନେ । ବଡ଼ଭାଇଟି ତାର ଗମ୍ଭୀର ଗଳାରେ ଉଦାସସୁରରେ ଆରମ୍ଭ କରେ ।

ଫେଣ ଉଠୁଥିବା ପାଣିରେ ପାଣିରେ
ବୁଲେଇ ବୁଲେଇ ଗୁଡିଦେଲି ମୁଁ ଯେ ତରୁଣୀର ମୁଦିଟିଏ ।
ସାନ ଭାଇଟି ଯୋଗକରେ ତାର ଚଢ଼ାସୁରରେ ସପ୍ତମରେ :
ମୁଦିଟିର ସାଥେ ଗଲା ସରଗର ସୁଖ ମୋ
ଏ ମରଲୋକର ସୁଖଶିଖ ଗଲା ଲୋଟି ।

ଶିଶୁପାଳନ ଘରଟିରୁ ମୋ ସାନ ମାଲିକାଣୀଙ୍କର ଭୁନ ଭୁନ ବପା ଚପା ସ୍ୱର ଶୁଭେ—

"ତମେ ସବୁ କଣ ପାଗଳ ନା କ'ଣ ? ତମର ସବୁ ମୁଣ୍ଡ ବିଗିଡ଼ିଲାଣି ନା କଣ ? ଜାଣି ନ କ'ଣ, ଛୁଆଟା ଶୋଇଛି—ଶୋଇଚ ଏଇକ୍ଷଣି ?"

ନଇଲେ :

"ବାହାଡୋଲା ଲୋକଟାଏ ଭଇୟା—କୁଆଁସି ଝିଅଙ୍କ ପେନ ଆଉ କୋଉ ଯୁବତୀ ପେନ ଗୀତ ବୋଲିବା ପାଏ ନାହିଁ । ତେବେ କଣ ସୁନ୍ଦର ସଙ୍ଗୀତ ଆଉ ଏହା ଛଡ଼ା······ବେଳ ହୋଇଗଲାଣି, ଘଣ୍ଟାବାଜି ଉଠିବ ସଧ୍ୟା ବେଳର ପ୍ରାର୍ଥନା ସକାଶେ ।"

"ବେଶ୍ ତ, ଅମେ ତା'ହେଲେ ଗାଇବୁ—ଗିର୍ଜାର ଗୀତ କିନ୍ତୁ ମାଲିକାଣୀ ମୋର ଜିଦ୍ ଧରେ ବାଧ କରେଇ ବାରମ୍ବାର କହେ ଯେଉଁଟି ଇଚ୍ଛା ସେଇଟି ଗୀର୍ଜାଗୀତ ବୋଲି ହୋଇ ନ ପାରେ, ହେବା ଉଚିତ ନୁହେଁ—ବିଶେଷରେ ଏଇଟି ପ୍ରଗଲଭ ଗୋଟାଏ ସ୍ପଷ୍ଟ ଇଙ୍ଗିତରେ ଦେଖାଇଦିଏ ଶୌଚ ଘରଟିକୁ ।

"ସୀମା ଅଛି, ସୀମା ଅଛି ସବୁଥିର—ସୀମା ଟପିଲେ," ଗାଉଁ ଗାଉଁ

ନ୍ତ୍ରଏ ମୋ ମାଲିକ । "ଆମକୁ ଆଉ ଗୋଟାଏ ଘର—ବଡ଼ ଘରକୁ ଯିବାକୁ ହେବ ଏଣିକି ।"

ଏମିତିକା କେତେଥର ଯେ କହୁହୋଇଥିବ—ଯେମିତି ହେଉ ନୂଆ ଟେବୁଲଟିଏ ଆସିବେ କିମ୍ବା ତିନବରଷ ଯାଏ ଏହି କଥା ଯୋରଦାର ହୋଇଆସୁଥାଏ ।

ଶୁଣୁଥାଏ, ଯେତେବେଳେ ଏମାନେ ଆଲୋଚନା କରୁଥାନ୍ତି ସାଇପଡ଼ିଶାଙ୍କ ସମ୍ପର୍କରେ—ମନେପଡ଼ୁଥାଏ କୋଡ଼ାଦୋକାନରେ ସତମିଛ କଲଙ୍କର ଗପ-ଗୁଡ଼ାକ । ଦିନକୁ ଦିନ ମୋ ପାଖରେ ଏଠି ବି ସ୍ପଷ୍ଟ ହୋଇ ଉଠିଲା ମୋର ଏହି ମାଲିକମାନେ ମଧ୍ୟ ନିଜନିଜକୁ ବିଗ୍ଚରୁଛନ୍ତି ସହରର ସମସ୍ତଙ୍କଠୁଁ ବଳି ଶ୍ରେଷ୍ଠ ଆଉ ଉତ୍କୃଷ୍ଟ ବ୍ୟକ୍ତି । ଏମାନେହିଁ କେବଳ ଜାଣନ୍ତି ସଠିକ୍ ଆଉ ନିର୍ଦ୍ଦେଶ ଆଚରଣ ବ୍ୟବହାରର ନିୟମ ସବୁ—ଏହି ନିୟମଗୁଡ଼ାକ ମୋ ବୁଦ୍ଧିର ଅଗମ୍ୟ ଥାଏ, ଉପଲବ୍ଧିର ବାହାରେ—ଆଉ ଏହି ନିୟମ ଅନୁସାରେ ହିଁ ଏମାନେ ବିଗ୍ଚର କରୁଥାନ୍ତି ଦୁନିଆର ଅନ୍ୟ ସମସ୍ତଙ୍କୁ । ଅନ୍ୟମାନଙ୍କୁ ବିଗ୍ଚର କରିବାର ସେମାନଙ୍କର ଏଇ ଅଭ୍ୟାସଟା ମୋ ମନରେ ଗୋଟାଏ ତୀବ୍ର କ୍ରୋଧ ଆଉ ପ୍ରତିରୋଧର ଭାବ ଆଣୁଥାଏ ସେମାନଙ୍କ ବିରୁଦ୍ଧରେ ଆଉ ସେମାନଙ୍କ ନିୟମ ବିରୁଦ୍ଧରେ—ସେହି ନିୟମଗୁଡ଼ିକ ଲଙ୍ଘନ କରିବାରେ ଏଣୁ ମୋ ମନରେ ସନ୍ତୋଷ ଫୁଟି ଉଠୁଥାଏ, ସବୁଠୁ ବଳି ଗଭୀରତମ ସନ୍ତୋଷ ।

କଠିନ, ବଡ଼ କଠିନ ପରିଶ୍ରମ କରିବାକୁ ପଡ଼ୁଥାଏ ମତେ । ପୋଇଲି ଶୁକ୍ରବାରର କାମ ତୁଲେଇବାକୁ ଯାଇ ପ୍ରତିଦିନ ମତେ ତଳେଇ ସଫା କରିବାକୁ ହେଉଥାଏ ଗ୍ରେଷେଇଘରଟା । ମାଜିଘଷି ଚକ୍‌ଚକ୍ କରିବାକୁ ପଡ଼ୁଥାଏ ଉଠାଚୁଲି ବା ସାମୋଭାରଟା—ପୁଣି ବୁଧବାରରେ ପୁଣି ମାଜିବାକୁ ହେଉଥାଏ ଆଉ ସବୁ କଂସା ପିତ୍ତଳର ବାସନଗୁଡ଼ାକ ଶନିବାର ଗୁଡ଼ାକରେ ଓଳେଇ ସଫା କରିବାକୁ ହେଉଥାଏ ପ୍ରତ୍ୟେକ ଘରର ଚଟାଣ ଆଉ ଦୁଇଟିଯାକ ପାହାଚଶ୍ରେଣୀ । ଜାଳେଣିକାଠ କାଟିଆଣି ଭୁକ୍ତେଇବାକୁ ପଡ଼ୁଥାଏ ଚୁଲିରେ । ଅଇଁଠାବାସନ ଧୋଉଥାଏ, ପନିପରିବା ଧୋଇନେଇ ସଜେଇ ରଖୁଥାଏ । ମାଲିକାଣୀ ପାଖରେ ବଜାରକୁ ଯାଉଥାଏ ତାର ଝୁଡ଼ିଟାକୁ ବୋହିବାପାଇଁ—ଏହାଛଡ଼ା ମତେ ହିଁ ଦୌଡ଼ିବାକୁ ପଡ଼ୁଥାଏ ତେଜରାତି,ଦୋକାନକୁ, ଡାକ୍ତର ଦୋକାନକୁ ମଧ୍ୟ ।

ମୋର ବଡ଼ ମାଲିକାଣୀ—ଆଇମାର ସେ କଟକଟୀ, 'କଳହୁଡ଼ୀ' ରାଗୀ ଭଉଣୀଟା ପ୍ରତିଦିନ ଉଠେ ସକାଳ ଛ'ଟାରେ । ଅଳକେ ମୁହଁ ହାତ ଧୂଆଧୋଇସାର ଅଣ୍ଟୁମାଡ଼ି ଦସିପଡ଼େ ସେଇ ରାତିପିନ୍ଧା ଗ୍ଲେଟ ପୋଷାକରେ ଦଅଁ ଦେବତାଙ୍କ ଚଉପଟ ଆଗରେ, ତାପରେ ଅନେକ ସମୟ ଯାଏ ଓଜର ଆପତ୍ତି ଜଣାଏ ଠାକୁରଙ୍କୁ—ପ୍ରାର୍ଥନା କରେ ନିଜ ସମ୍ପର୍କରେ ବା ନିଜର ପୁଅବୋହୂଙ୍କ ବିଷୟରେ ।

"ହେ ବଡ଼ ଠାକୁରେ, ହେ ମହାପ୍ରଭୁ !" ହାତର ପାଞ୍ଚଆଙ୍ଗୁଠିକୁ ଏକାଠି

କର, ଗୋଲ୍ଫୁକଯାନ ଝିପକୁ ଗୋଟିଏ ଶବ୍ଦରେ ପହଞ୍ଚାଇ, କପାଳଟିକୁ ଠୁକେଇ ଠୁକେଇ, ଏକାବେଳକେ ଦୁଃଖରେ ଶୋକରେ ଦୀର୍ଘ ପଡ଼ିଲା ସ୍ୱରରେ ଜଣାଣ କରେ—"ହେ ମହାପ୍ରଭୁ—ଆଉ କିଛି ଗୃହ୍ଣୁଁ ନ ମୁଁ ତୋଠୁ, ଆଉ କିଛି ମାଗୁନ ମୁଁ, ଖାଲି ଟିକିଏନାକୁ ବଞ୍ଚାଇ ଦିଅ, ପ୍ରଭୁ ଟିକିଏନାକୁ ଶାନ୍ତି—ତୋର ଇଚ୍ଛା ହୁଏ ଯଦି—ତୋର ଇଚ୍ଛା, ହେ ଠାକୁରେ !"

ତାର ଅଶ୍ରୁଳିଆ ଡାକରେ ପ୍ରଥମେ ପ୍ରଥମେ ନିଦ ଭାଙ୍ଗି ଯାଉଥିଲା ମୋର—ଉଠିପଡ଼ୁଥିଲି ମୁଁ—ଶୋଇ ଶୋଇ କମ୍ବଳ ଭିତରୁ ଅନେଇ ରହି ଲକ୍ଷ୍ୟ କରୁଥିଲି ତାକୁ, ଗୁନ୍ଦିଅ'ରେ ଭୟରେ କେମିତି ଶୁଣୁଥିଲି ତାର ଆତୁରିଆ ଆକୁଳ ହୃଦୟର ଆବେଗ ଗଦ୍‌ଗଦ ପ୍ରାର୍ଥନାର କଥାଗୁଡ଼ିକୁ । ଶରତ କାଳର ସକାଳଟା ଆସି ଗୃହିଁ ଦେଉଥିଲା ଅନ୍ଧାରିଆ ଅନ୍ଧାରିଆ ଗୃହାଣୀରେ ବର୍ଷାଧୂଆ ଘେଷଘର ଝରକାବାଟରେ । ଭୋରର କାଡ଼ରେ ହେମାଳରେ ସେଇ ତାର ଅର୍ଥାତ୍ ମୋର ବଡ଼ ମାଲିକାଣୀର ପାଉଁଶିଆ ଧୂସରିଆ ରୂପଟା ଘନ ଘନ ନଜରେ ଥିଲା, ଉଠୁଥିଲା—ସେ ଯେତେବେଳେ ଭୟଙ୍କର ଭାବରେ କଟୁଣଚକ୍ଷୁ ଆଙ୍କି ହେଉଥିଲା ମହାପ୍ରଭୁଙ୍କ ସ୍ମରଣା କରି କରି ଯେତେବେଳେ ଶ୍ରେଷ୍ଠ ମୁଣ୍ଡଟି ଉପରୁ ତାର ଖସି ପଡ଼ୁଥିଲା ବଡ଼ ରୁମାଲଟି—ତାର ପାତଳା ପାତଳା ବିବର୍ଣ୍ଣିଆ ବାଳ କେରିଏ କେରିଏ ଏଣେତେଣେ ବିଶୃଙ୍ଖଳ । ଭାବରେ ଲୁଳି ପଡ଼ୁଥିଲା କାନ୍ଧ ଉପରେ । ବାଆଁ ହାତରେ ଘୁଞ୍ଚିଦେଇ ତାରବେଗରେ ରୁମାଲଟାକୁ ସକାଡ଼ି ଦେଇ ଭୁକ୍‌ଟୁଭୁକ୍‌ଟୁ ହେଉଥିଲା ।

"ଏଃ, ମଲି ମୋର ନିଆଁ ଲଗା କନାଟା ।"

ଜୋରରେ ବେଗରେ ଅଧ କପାଳକୁ, କାନ୍ଧକୁ ପେଟକୁ କଟୁଣଚକ୍ଷୁ ଘାତରେ ବାଡ଼ୋଇ ହୋଇ ଖିଙ୍କାର ହୋଇ ଖେଁ କିନ ଜଣାଉଥିଲା—ନା—ଗାଇଯାଉଥିଲା ତା ପ୍ରାର୍ଥନା ପଦ "ମତେ ଯଦି ଭଲ ପାଅ, ଭଲରେ ଦେଖ, ହେ ଠାକୁରେ, ହେ ମହାପ୍ରଭୁ, ଦିଅ, ଆଗୁତେରେ ଦଣ୍ଡ ଦିଅ—ଗୁଡ଼େଇ ଗୁଡ଼େଇ ଦଣ୍ଡଦିଅ—ସେଇ ମୋର ବୋହୂଟିକୁ—ହେ ମହାପ୍ରଭୁ-ପାଉ, ପାନେ ପାଉ ସେ । ଯେମିତି ଅପମାନ ଦେଇଛି ମତେ ସେଥିପାଇଁ ଶୁଝୁ ଋଣ ଶୁଝୁ ସେ ମହାପ୍ରଭୁ, ଏତିକରେ ! ଆଉ ହେ ବଡ଼ଠାକୁରେ—ଖୋଲିଦିଅ, ଆଖି ଖୋଲିଦିଅ ମୋ ପୁଅର—ଦେଖୁ ସେ, ସେ ମାଇପିଟି, ସେ ବୋହୂଟା ମୋର କେମିତି, ଆଉ ଭିକ୍‌ଟରଟା ବି କେମିତି ଆଉ ଦୟାକରି ଭିକଟରକୁ ଆଡ଼େଇଦେଇ ଅନାଅ ତାକୁ—ହେ ଦୟାମୟ ! ଦୟାକରି, କରୁଣାଭରାନେତ୍ରରେ ଦେଖ ତାକୁ ହେ······"

ଭିକ୍‌ଟର ମଧ୍ୟ ଘେଷଘରେ ଏଇଠି ଶୋଉଥାଏ ଢିଞ୍ଚା ଖଟ ଉପରେ । ମାଆର ଆପତ୍ତି—ଅଭିଯୋଗରେ ଉଠିପଡ଼ି ଥରେ ସେ ନିଦ ମଲମଳହୋଇ କହିଲା ।

"କାଉଁ କାଉଁ—ଖଉଁ ଖଉଁ—ପୁଣି ଏ ସମୟରେ ଭୋରଟାରୁ । ଦିଅ ଦେବତାଙ୍କର କି ଭୂତପ୍ରେତଙ୍କର ଗୋଟାଏ ଭୋଗର ଦୌରାତ୍ମ୍ୟର ଅନ୍ତ ନାହିଁ ରୁ ମା !"

"ନାଇଁ, ନାଇଁ, ନାଇଁରେ ବାପ ! ଶୋଇଲୁ ତୁ— ଶୋଇପଡ଼ ଚନ୍ଦ୍ରକାନ୍ତ ।" ଦୋଷକର କ୍ଷମା ମାଗିଲା ଭଳି ସ୍ୱରରେ ଫୁସ୍ ଫୁସ୍ କହେ ତା'ର ମାଆ । ମିନିଟିଏ ଦ'ମିନିଟ୍ ଖଣ୍ଡେ ନୀରବରେ ଆଗକୁ ପଛକୁ ପଛକୁ ଆଗକୁ ହଲେ—ଦୋହଲ ଦୋକଲ ଝୁଲେ ଟିକଏ—ତା ପରେ ପୁଣି ସେ ପ୍ରତିଶୋଧ ନେବା କାମନାରେ ପାଟିକରି ଉଠେ ।

"ଆଉ—ଆଉ ତାଙ୍କର ମଣ୍ଡାଗୁଡ଼ାକ ଯେ—ହାଡ଼ରସ ସବୁ ମ—ଯାଉ ଜମାଟ ହୋଇ ଯାଉ—ବରଫ ହୋଇଯାଉ, ଆଁଙ୍କ ହାଡ ଭିତରେ—ଯାଉ ଶୁଖିଯାଉ ତାଙ୍କର ରକ୍ତ ।"

ଏମିତି ହିଂସା, ଅସୂୟା, ବିଦ୍ୱେଷ ଓ କ୍ରୋଧରେ କେବେ ପ୍ରାର୍ଥନା କରି ନ ଥିବେ । ଏମିତିକି ଅଜା ମଧ୍ୟ ଏଇଭଳି ପରିସ୍ଥିତିରେ, ଅସୂୟା ଓ କ୍ରୋଧରେ କେବେ ପ୍ରାର୍ଥନା କରି ନ ଥିବେ ।

ପ୍ରାର୍ଥନା ସରିଲେ ସେ ହଲେଇ ଉଠେଇ ଦିଏ ମତେ । "ଉଠ୍‌ରେ ! ବହୁତ ହେଲାଣି ଅଳସରେ ଦେହ ଲେଟେଇ ଶୋଇବା—ହାଇ ମାରିବା ତୋର ଏଠି, ଏଇଥିପାଇଁ କଣ ତୋତେ ରଖିଛୁ ଆମେ । ବହେ ବହେ ଖାଇବାକୁ ଦେଇ ପୋଷିଛୁ । ଯା' ଆଣ ଯା—ସକାଡ଼୍ ଯା ଛୋଟ ଚୁଲୀଟା, ଆଣ ଯା କାଠ— ମଲା ନିଆଁ ଲଗା ! ପୁଣି ତୁ ସନ୍ଧ୍ୟାରେ କାଠଗୁଡ଼ାକ ଟିକି ଟିକି କରି କାଟିରଖିଲୁ ନା— ପୁଣି ହାତ ମଠେଇ ହେଲା କରିଚୁ, ଏଁ !"

ଯେତେ ଶୀଘ୍ର ଶୀଘ୍ର ପାରେ କାମ କରିସିବାକୁ ଚେଷ୍ଟାକରେ ମୁଁ— ଯେମିତିକି ବୁଢ଼ୀଟାର ଏ ଝିଙ୍କି ଝିଙ୍କିଆ ଇସିଇସିଆ ଭୁଟୁରୁ ଭୁଟୁରୁଗୁଡ଼ାକ ଶୁଣିବାକୁ ନ ପାଏ—କିନ୍ତୁ ଯେତେ କଲେ, ଯେତେ ଖଟିଲେ ବି ବୁଢ଼ୀକି ସନ୍ତୁଷ୍ଟ କରିହୁଏ କେଉଁଠି—ସେଇଟା ଯେ ଅତି ଅସମ୍ଭବ ତା' ପାଖରେ—ଗୋଟାଏ ତୁଷାର ଝଡ଼ ସବୁ ଓଲେଇ ଉଡ଼େଇ ଧାଉଁଥାଏ, ଅସ୍ତବ୍ୟସ୍ତ କରେ ରୋଷେଇଘରଟାରେ ସୁଉସୁଉ ହୋଇ ବରଫ ଝଡ଼ ପରି ଠିକ୍—

"ଶର-ର୍-ହଇରେ ହେ ପୋଡ଼ାମୁହାଁ ବଦମାସ୍‌ଟା, ତଗଲ ଛନ୍ତରାଟା ! ମ, ମ, ଉଠିପଡ଼ିବ ସେ ଭିକ୍‌ଟର—ନିଦ ଭାଙ୍ଗିଦେବୁ ତାର - ଦେଖୁ ତ ଦେଖି—ଦେଖିନେବ ତୋତେ, ଠିକ୍ କରିଦେବ, ଯା ଦୌଡ଼ ଦୋକାନକୁ—

ସପ୍ତାହକୁଆ ସକାଳ ଜଳଖିଆ ବା ପ୍ରାତରାଶ ପାଇଁ କିଣା ହେଉଥାଏ ଦୁଇ ପାଉଣ୍ଡର ଗହମ ରୁଟି ଆଉ ପାଉଁରୁଟି, ଓ କପେକ୍ ମୂଲ୍ୟର 'ବନ୍' ସାନ ମାଲିକାଣୀ ପାଇଁ, ଦୋକାନରୁ ଖରିଦ୍ କରି ଘରକୁ ଆଣିଲାପରେ ଏହାକୁ ସବୁ ମ୍ୟାଇପେସାକ ବେଢି ଯାଆନ୍ତି ସନ୍ଦେହରେ ପରୀକ୍ଷା କରି ବସନ୍ତି— ପାପୁଲିରେ ତଉଲି ତଉଲି ଦେଖନ୍ତି—କହନ୍ତି ।

"ଓଜନଟାକୁ ଠିକ୍ କରିବା ସକାଶେ ଆଉ ଖଣ୍ଡେ—ଆଉଟ୍‌କୁରାଟାଏ ନ ଥିଲା ? ଥିଲା ତ ? ନାଇଁ ? ହୁଁ, ଦେଖି, ଦେଖୁ ଆ ଆଁ କଲୁ—ଖେଳ୍‌ତ ପାଟିଟା !"

ତା' ପରେ ବଜୟ୍ଯ ଦର୍ପରେ ପାଟିକରି ଉଠନ୍ତି, ଆଲୋ ହ ମ ! ଖାଇ ଯାଇଛୁ ମ ଖଣ୍ଡେ—ସେଇ ଖଣ୍ଡିକ ମ ! ହେଇ ପଷ୍ଟ ଦାନ୍ତରେ ଲଗିଚି ତାର ଗ୍ରେଟ ଗ୍ରେଟ ଟୁକୁରଗୁଡାକ ।

ମନଦେଇ ଇଷ୍ଟର ସହୃତ ଗର୍‌ବ୍ରଜ ନ ହୋଇ ଖଟୁଥାଏ, କାମ କରୁଥାଏ ମୁଁ—ଘରଗୁଡ଼ିକରୁ ଧୂଳି ଝାଡ଼ି ସଫା ସୁତୁରା କରିବା, ଚଟାଣକୁ ସବୁ ଓଲେଇବା, କଂସାବାସନ, କର୍ଣ୍ଣ କଳଶୀ କୁଣ୍ଡୁଆ, ଚୁଲୀ ଉପରେ ଥାଳିଆ, ତାଉଆ ପ୍ରଭୃତିକୁ ମାଜି ଘଷି ଝକ୍‌ଚକ୍ କରିବା—ଏସବୁ କାମ ଖୁସିରେ କରି ଯାଉଥାଏ । ଭଲ ଲାଗୁଥାଏ ମତେ, ମଜାର ଯେତେବେଳେ ସବୁ ଠିକେ ଶାନ୍ତ ଥାଏ—ଶୁଣିଛୁ ମାଇପେ ସବୁ କୁହାକୋହି ହୁଅନ୍ତି, ମତାମତ ଦିଅନ୍ତି—

"ଭଗ୍ଯ ଖାଟେ ସେ ଏକା ।"

"ସଫା ସୁତୁରା ବି,"

"କିନ୍ତୁ ବଡ଼ ଅବାଧ୍ଯ, ମୁହଁଖୋର ।"

"ତାକୁ ବଡ଼େଇ କୁଡ଼େଇ ମଣିଷ କରିବା କଥା—ତମର ମନେ ରଖିବା ଉଚିତ୍ ।"

ଦାଦୁଙ୍କ ଦାଦୋ ପ୍ରାଣପଣେ ଚେଷ୍ଟା କରୁଥାନ୍ତି, ମୁଁ ଯେମିତି ତାଙ୍କୁ ଖାତିର କରେ ସମ୍ମାନ ଦେଖାଏ ! କିନ୍ତୁ ମୁଁ ଧରି ନେଇଥାଏ, ବୁଝୁଥାଏ— ଅଧାଅଧି ପାଗଳା ମୁଣ୍ଡବଗିଡ଼ା ଦାଦୁଙ୍କ ଦାଦୋ । ମୋର କି ଦରକାର ଥାଏ ତାଙ୍କଠି ? ଶୁଣୁ ନ ଥାଏ, ମାନୁ ନ ଥାଏ ସେମାନଙ୍କୁ, ଟ୍ରେକ୍‌ଟୋକ୍ ମନା କରି ଦେଉଥାଏ, ସେମାନେ ଯାହା କହୁଥାନ୍ତି କରିବାକୁ ଆଉ ସବୁବେଳେ ମୁହେଁ ମୁହେଁ ଜବାବ ଦେଉଥାଏ ସେମାନଙ୍କୁ ନିଧଡ଼କରେ । ସାନ ମାଲିକାଣୀଟା ନିଶ୍ଚୟ ଦେଖିପାରିଥିବ ତାର କେତୁଟା କଥାପ୍ରତି କେମିତି ମତିଗତି କେମିତି ପ୍ରତିକ୍ରିୟା ଦେଖାଉଥାଏ, ସେଇଥିପାଇଁ ସେ କହୁ ହେଉଥାଏ—

"କରେ ଟୋକା ! ଭୁଲି ଯାଉଚୁ କରେ—ଗୋଟାଏ ଭିକାରୀ ବଉଶରୁ ତୋତେ ଆଣିଚୁ ବୋଲି । ଦେଖ୍, ଭୁଲିଯିବୁ ନାହିଁଟି । ଥରେ ତୋର ମାଆକୁ ମୁଁ ଉପହାର ଦେଇଥିଲି ସିଲ୍‌କ୍ ଡ଼ିଲ୍ଲି କୁର୍ତ୍ତି ଗୋଟାଏ—କଳା କଳା ମାଳି ସୀଆଁ ହୋଇଥିଲା ଧଡ଼ିରେ ।"

ଦିନେ ତାକୁ ଠୋକିକି କହିଲି :

"ତୁମର ସେଇ ଡିଲ୍ଲି କୁର୍ତ୍ତିଟା ପାଇଁ ମୋର ଦେହରୁ ଚମ ଉତ୍ତାରିବାକୁ ଚାହୁଁଚ, ନା କଣ ?"

"ହେ ଭଗବାନ ! ଏଇଟାତ ଘରେ ନିଆଁ ଲଗେଇଦେବ ଲୋ ମାଆ- ଜାଳିଦେବାକୁ ବଳ ଅଛି ଲୋ ଏ ଟୋକାଟାର !" ଭୟାତୁରଭାବେ ଚିତ୍କାର କଲା ସେ ।

ଆଶ୍ଚର୍ଯ୍ୟ ହୋଇଗଲି, ବିମୂଢ଼ ହୋଇଗଲି ମୁଁ—ଘରେ ନିଆଁ ଲଗେଇବି କିଆଁକି ?

ଦହୁଙ୍କି ଦହେଁ ମୋ ମାଲିକଙ୍କ ଆଗରେ ମୋ ବିରୁଦ୍ଧରେ ପୁଳାଏ ଲେଖା ଅଭିଯୋଗ ବାଢ଼ି ଥାନ୍ତି—ଏବଂ ସେ କଠୋର ସ୍ୱରରେ କହେ :

"ଦେଖ୍, ଜଗିରଖି ପାଦପକା, ବାଟ ସ୍କୁଲରେ ଟୋକା !"

ଥରେ କିନ୍ତୁ ବଡ କ୍ଲାନ୍ତିରେ, ଅବସାଦରେ ନିଜ ସ୍ୱରଯା ଆଉ ମାଆଙ୍କୁ କହିଲି—

"ସ୍ୱସ୍ତ ଚମତ୍କାର ଦହୁଙ୍କି ଦହେଁ ତମେ ! ତମେ ସେ ପିଲଟା ଉପରେ ଚଢ଼ି ଯାଉଛ-ସତେ ଯେପରି ଘୋଡ଼ାଟାଏ ସେ ! ଆଉ କିଏ ହୋଇଥିଲେ ଅନେକ ଦିନୁ ପଳାଇ ଯାଆନ୍ତାଣି ନଇଲେ ଯାଆନ୍ତାଣି ମରିଯାଆନ୍ତାଣି ଅତିଶକ୍ତ ଖଟି ଖଟି ତମର ଏଇଠି ।"

ଏଥିରେ ମାଇପି ଦଟାଙ୍କର ରାଗ ଦେଖେ କିଏ ? ରାଗରେ ସେମାନେ କାନ୍ଦିବା ଉପରେ ହୋଇଯାନ୍ତି ।

" ତା ସାମନାରେ ଏମିତି ସବୁ କହିବାକୁ ସାହସ ତମର ଲମ୍ବାବାଲୁଆ ବୋକା ଭୂ !" ରାଗରେ ଗୋଡ଼ 'ବାଡ଼େଇ ଭୂଇଁରେ ପାଟିକରି ଉଠେ ତାର ସ୍ୱରଜା । " ଏମିତିକା କଥା ଶୁଣି ସେ ଆଉ ମୋ କଥା ମାନିବ କାହିଁକି ? ଦେଖ୍ ! ଭୁଲି ଯା ନା, ଅସଲ ମଣିଷଟାଏ ମୁଁ, ପେଟରେ ଭୁଆ ମୋର ।"

ମାଆ ତାର କରୁଣ ଆର୍ତ୍ତ ସ୍ୱରରେ କେଁ କେଁ ହୁଏ—

"ଠାକୁରେ କ୍ଷମା କରନ୍ତୁ ରେ ତତେ ! ଦୟା କରନ୍ତୁ ! ସ୍ୱପିଲ୍ଲ—ମନେରଖି ମୋ କଥାଟି କିନ୍ତୁ ପିଲଟାକୁ ନଷ୍ଟ କରିଦେବୁ ଏଣିକି ! ନଷ୍ଟ କର ନା ଆଉ ।"

ତାପରେ ଦମ୍ ଦମ୍ ହୋଇ ଭୁସ୍‌କିନା ଚୁଲିଯାନ୍ତି ସେଠୁ ଦୁହିଁଙ୍କି ଦହେଁ ।

"ଦେଖିଲୁ, କି ଦୃଶ୍ୟଟାଏ, କି ଅଭିନୟଟାଏ, କି ଅବସ୍ଥାଟାଏ ସୃଷ୍ଟି କଲୁ ତୁ । ମେଷପଡ଼ ଦୁଷ୍ଟଟା ! ରହ, ତତେ ଫେରାଇ ପଠେଇ ଦେଉଛି ଯେ । ତୋ ଅଜା ପାଖକୁ—ରହ, ଦେଉଛି ଯେ । ଯାଇ ଫେରିଯାଉ ପୁଣି ତୋ ଛିଣ୍ଡାମିଣ୍ଡା କନା କାଗଜ ସାଉଁଟାରେ ଲାଗିବୁ ଯେ ତେଣିକି !" କହି ଉଠିଲେ ରୁକ୍ଷ କଠୋର ସ୍ୱରରେ ।

"ତମ ପାଖରେ ରହିବାଠୁ କନା କାଗଜ ଗୋଟାଳି ହେବା ବରଂ ଭଲ—ଶହେ ଗୁଣରେ ଭଲ !" ଅପମାନଟା ସହି ନ ପାରି ମୁହେଁ ମୁହେଁ ଧଡ଼କିନା ଶୁଣେଇ ଦେଲି ମୁଁ । "ଏଠିକି ମତେ ଆଣିଥିଲ ଶିକ୍ଷାନବିସ କରି, କାମରେ ତାଲିମ୍ କରିବ ବୋଲି, କିନ୍ତୁ କଣ—କଣ ମତେ······ତମେ ? କେମିତି ଅଇଁଠା—ଅସନା ବୋହିବାକୁ ହେବ, ଏଇଆ ?"

ମାଲିକଟା ଧୀରକିନା ଧରି ପକେଇଲା ମୁଠାଏ ବାଳ ମୋର, ମୋ ଆଖିକୁ ଅନେଇ ରହିଲା କହି କହିକା –

"ମହା ବଦ୍‌ମାସ ଗୁଣ୍ଡାଟାଏ ତୁ ! ବକଟେନାକୁ ଦେଲେ କଣ ହେଲା ! ସେ କଥା ପଟିବ ନାହିଁ, ଭାଇ, ନା— । ଆ—ଆଦୌ ନୁହେଁ—ଆ—ଆ-ଦୌ ପଟିବ ନାହିଁ— !"

ନିଶ୍ଚିନ୍ତ ଭାବରେ ମନେକରିଥିଲି ସେ ମତେ ଘରକୁ ପଠେଇଦେବ, ଠିକ୍ । କିନ୍ତୁ ଦି'ଦିନ ପରେ ମୋ ଘରକୁ ପଶି ଆସିଲା ସେ—ହାତରେ ପେନସିଲ୍, ରୁଲର, ଟିସ୍କ୍ୱାର ଆଉ କାଗଜ ପୁଳାଏ ।

"ସ୍କ୍ରୁ କଣ୍ଟାଗୁଡ଼ାକ ପାଲିଶ କରି ସାରିଲା ପରେ ବେଶ୍ ନକଲ କର ଏଗୁଡ଼ାକୁ !"

ସେଇ ଭୂଇଁରେ ଥାଏ—ପ୍ରକାଶ ପାଉଥାଏ—ଦୁଇ ମହଲା କୋଠା ଘରଟ୍ ସାମନା ମୁହାଁ ପଟଟି । ଅସଂଖ୍ୟ ଝରକା ଥାଏ ସେଥିରେ—ଆଉ ପଲସ୍ତରାରେ ଥାଏ କାରୁକାର୍ଯ୍ୟ ଅଲଙ୍କରଣ କେତେକ ।

"ହେଇ ! କମ୍ପାସ ନେଇ, ରେଖାଗୁଡ଼ିକୁ ମାପିବୁ ଠିକ୍‌କରି । କାଗଜରେ ଚିହ୍ନ ଦେବୁ 'ବିନ୍ଦୁ'ରେ— ତା'ପରେ ରୁଲର ଯୋଗେ ଯୋଡ଼ିଦେବୁ ସେଗୁଡ଼ିକୁ ! ପ୍ରଥମେ ଲମ୍ବ ଭାବରେ ତା ହେବ ସମାନ୍ତରାଳ । ତାପରେ ଉପରୁ ତଳକୁ···ଯା ଦେଖ୍ ଯା !"

ଭଲ ଫୁର୍ତ୍ତିରେ କାମ ଦିଆଗଲେ ମତେ, ଏଣିକି ପଢ଼ାପଢ଼ି ଆରମ୍ଭ କରିଦେବି— ଆନନ୍ଦରେ ପୂରି ଉଠିଲା ମନଟା ! କିନ୍ତୁ କେମିତି ଗୋଟାଏ ଆତଙ୍କରେ ଅନେଇ ରହିଲି କାଗଜକୁ—ସନ୍ତପାତଗୁଡ଼ାକୁ—ବିନ୍ଦୁ ବିସର୍ଗ କିଛି ବୁଝି ପାରିଲି ନାହିଁ— ଧରି ପାରିଲି ନାହିଁ ମୂଳରୁ ।

ତଥାପି ସଙ୍ଗେ ସଙ୍ଗେ ହାତ ଧୋଇ ପକାଇ ଲାଗିଗଲି କାମରେ । ସବୁ ଆନୁଭୂମିକ 'ବିନ୍ଦୁ'ରେ ଚିହ୍ନଦେଇ ଯୋଗ କରିଦେଲି ସେଗୁଡ଼ିକ । ବାଃ, ବେଶ୍ ହେଲା ! ଚମତ୍କାର । କିନ୍ତୁ କାହିଁକି କେଜାଣି ବଳି ପଡ଼ିଲା ତିନିଟା ରେଖା ଅଧିକା । ତା'ପରେ ଟାଣିଲି ଲମ୍ବ ରେଖାଗୁଡ଼ିକ । ଆଶ୍ଚର୍ଯ୍ୟ ହୋଇ ଦେଖିଲି, ଆବିଷ୍କାର କଲି—ବରଂ କହିବି—ଅତି ଅଦ୍ଭୁତ ଭାବରେ ବଦଳି ଯାଇଛି ଘରର ରୂପଟା । ଝରକା ସବୁ ଚାଲିଯାଇଛି କାନ୍ଥ ମଝିରେ ଥିବା ଶୂନ୍ୟ ସ୍ଥାନରେ—ଗୋଟିଏ ସେଥିରୁ ଘରଠୁ ଦୂରରେ ଯାଇ ଝୁଲୁଛି ପବନରେ । ମୁଖ୍ୟ ପ୍ରବେଶ ବାଟଟା ଚଢ଼ି ଉଠିଯାଇଛି ଦ୍ୱିତୀୟ ମହଲାକୁ, କାନ୍ଥର 'କାର୍ଣ୍ଣିସ' ରହିଛି ଛାତରୁ ଉଚ୍ଚରେ । ଆଉ ଶୋଇଲା ଘରର ଲମ୍ବା ସରୁ ଝରକାଟା ଯାଇ ଲାଗିଛି ଚିମ୍‌ନି ଉପରେ !

ଲୁହ ଛଳ ଛଳ ଆଖିରେ ଅନେକ ସମୟ ଯାଏ ନିର୍ବେଦ ଭାବରେ ଛିଡ଼ା ହୋଇ ରହିଲି—ଏହି ବିପୁଳ ବିରାଟ ଅସ୍ୱାଭାବିକ ଭାବେ ବିକୃତ ବିକଟ ଆକୃତିର ଆୟତନଟାକୁ ନିରିଖି ନିରିଖି—ବୁଝିବାକୁ ଚେଷ୍ଟାକଲି, ଏଇଟା ଘଟିଲା କେମିତି କୋଉ ହେତୁରୁ । ଶେଷରେ ଠିକ୍ କଲି ମୋ କଳ୍ପନା ଯୋଗେ ସୁଧାରି ଦେବି, ସଂଶୋଧନ କରିନେବି । ସବୁ କାର୍ଣ୍ଣିସ୍ ଉପରେ ଛାତର ଅଳ୍ପ ଅଳ୍ପ

ରକ୍ତ ଧାରରେ ଧାରରେ ଆଙ୍କିଲି ବର୍ଷି ଘରଚଟିଆ, କାଉ ଆଉ ପାରା—ତଳେ ଭୂଇଁ ଉପରେ ଝରକାଗୁଡ଼ିକ ସାମନାରେ ଆଙ୍କିଲି ଧନୁଗୋଡ଼ିଆ ଲୋକଗୁଡ଼ିଏ, ହାତରେ ଛତା ସେମାନଙ୍କର—କିନ୍ତୁ ସେଥିରେ ଠିକ୍ ଲୁଚିଲା ସେମାନଙ୍କର ଶାରୀରିକ ଗଠନ ବକ୍ରତା ! ତାପରେ ସମୁଦାୟ ଚଢ଼େଇଙ୍କୁ ଯୋଡ଼େଇ ପକେଇଲି ତୀର୍ଯ୍ୟକ ରେଖାରେ ସବୁ ; ନେଇଗଲି ମାଲିକ ପାଖକୁ ।

ଭ୍ରୂ ହଲକ ଟେକଦେଲେ ସେ—ମୋଡ଼ି ମୋଡ଼ି ଦେଲେ ବାଳ କେରାଏ । ଫଣଫଣ ହୋଇ ମନ୍ତବ୍ୟ ଦେଲେ, "କଣ କହିବୁ ସ୍ୱାକୁ—କଣ ଏ ?"

"ଏ ? ଏ, ବର୍ଷା ହେଉଛି," ବୁଝେଇ ବସିଲି । "ବର୍ଷା ହେଲା ବେଳେ ଘରଗୁଡ଼ାକ ବଙ୍କା ବଙ୍କା ଦିଶେ—କାହିଁକି ନା—ବର୍ଷାଟା ବି ଅଙ୍କା ବଙ୍କା । ଚଢ଼େଇଗୁଡ଼ାକ ତ ଚଢ଼େଇ—ଆଶ୍ରୟ ନେଇଛନ୍ତି—କାର୍ଣ୍ଣିସରେ । ଏଇଆ ତ କରନ୍ତି ସେମାନେ ସବୁବେଳେ. ବର୍ଷା ହେଲେ । ଆଉ ଏ ଲୋକଗୁଡ଼ାକ ଧାଇଁଛନ୍ତି ଘରକୁ ! ହେଇଟି, ଏଠି ଝିଅଟିଏ ପଡ଼ିଯାଇଛି ତଳେ, ଆଉ ଏ, ଏ ଗୋଟାଏ ଲେମ୍ବୁ ବିକାଳି ।"

"ଓଃ ଧନ୍ୟବାଦ ! କୃତକୃତ୍ୟ ହେଲି ! ଲକ୍ଷ ଲକ୍ଷ କୃତଜ୍ଞ ମୁଁ ତୋଠି !" ମାଲିକ ମୋର କହିଲେ, ହସରେ ଫାଟିପଡ଼ିଲେ, ଟେବୁଲ ଉପରେ ନଇଁ ପଡ଼ି ରହିଲେ, ବାଳଗୁଡ଼ାକ ଲୋଟିଯାଇ ଟେବୁଲ ଉପରୁ କାଗଜକୁ ଲେଗ୍ସ କୋସ୍ କରିଦେବା ପର୍ଯ୍ୟନ୍ତ ହସରେ ଥରିଲେ ସେ ଗୋଟାକଯାକ । "ତତେ—ତତେ ଏ ମନ୍ତ୍ରୀରୁ ଏକାବେଳକେ ପୋଛିଦେବା, ମୂଳପୋଛ କରିଦେବା ମୋର ଉଚିତ ! ଏଇଆ, ଏଇଆ ଠିକ୍, ଗଣ୍ଡକିଲା ଘରଚଟିଆ ମୋର, ବୁଝିଲୁ !"

ସାନ ମାଲକାଣୀ ମାଡ଼ି ଆସିଲା, ଗୋଟାଏ ଗ୍ରେଟ ଡେନ ପିମ୍ପା ଭଳି ଏକରୁ ସେକର ଦୋହଲୁଥାଏ ତାର ପେଟଟା—ଅନେଇଲା ମୋର ଡ୍ରଇଁକୁ ।

"ଭଲକରି ଦେଉନ କାହିଁକି—ଭଲକରି ଛେଚ୍ଟାଏ," କହିଲା ତାର ଗିରସ୍ତକୁ ।

"ଅରେ, ନା, ନା,—ମୁଁ ଯେତେବେଳେ ଖନ୍ତି ଧରିଥିଲି, ସେତେବେଳେ କଣ ସ୍ୱା'ଠୁ ଆଉ ଭଲଟାଏ ଆଙ୍କିଥିଲି, କରିଥିଲି ; ନିକଏ ହେଲେ ବିଚଳିତ ବା ଉତ୍ତେଜିତ ନ ହୋଇ ଉତ୍ତର ଦେଲେ ମାଲିକ ।

ନାଲି ପେନସିଲରେ ମୋ ଅଙ୍କାଅଙ୍କିରେ ଦାଗ ଦେଇ ସେ ଦେଖାଇ ଦେଲେ ଭୁଲଗୁଡ଼ାକ ଆଉ ବଢ଼େଇଦେଲେ ଆଉ ଖଣ୍ଡେ କାଗଜ ।

"ଚେଷ୍ଟା କର, ଆଉଥରେ ଚେଷ୍ଟାକର । ଏମିତି ଅଙ୍କୁଥିବୁ ଠିକ୍ ହେବାଯାଏ ।"

ମୋ ଦ୍ୱିତୀୟ ଥର ଉଦ୍ୟମଟା ଆଗ ତୁଳନାରେ ଭଲ ହେଲା ସତ, ତଥାପି ଝରକାଗୁଡ଼ିକ ଭିତରୁ ଗୋଟାଏ ଖସି ଯାଇ ଝୁଲୁଥାଏ ସାମ୍ନା ପଟ ବାରଣ୍ଡା

କବାଟ ଉପରେ । କିନ୍ତୁ ଘରଟା ଖାଲି ଖାଲି ରହିବ—ସ୍ତା ଦେଖି ମତେ ସୁଖ ଲାଗନ୍ତା କେମିତି ? ତେଣୁ ଯାବତୀୟ କିସମର ଲୋକରେ ଲୋକମୟ କରିଦେଲି ଘରଟିକୁ । ଝରକାରେ ବସି ରହିଲେ ଯୁବତୀଗୁଡ଼ିଏ, ନିଜ ନିଜକୁ ପଙ୍ଖା କରି କରି ; ଟୋକାଗୁଡ଼ିଏ ସିଗାରେଟ୍ ଟାଣିଲେ ଖୁସ୍-ମିଜାଜରେ, ଆଉ ଜଣେ ସିଗାରେଟ୍ ଟାଣୁ ନଥିବା ଲୋକ ଏମିତି ଖାଲି ବସି ରହି ନାକଟାକୁ ବୁଢ଼ା ଆଙ୍ଗୁଠି ଭଳି ଦେଖେଇ ହେଲା ଅନ୍ୟମାନଙ୍କୁ । ଦାଣ୍ଡପଟ ଗାଡ଼ି-ଥୁଆ ବାଟଘରେ ଛିଡ଼ାହୋଇ ରହିଲା ଗାଡ଼ିବାଲାଟିଏ । ତା ଗୋଡ଼ ପାଖରେ ଶୋଇଲା ଗୋଟାଏ କୁକୁର ।

"ପୁଣି ସ୍ତାକୁ ଗାରଆ ଗାରେଇ କରି ଏମିତି କଦର୍ଯ୍ୟ କଲୁ କାହିଁକି ?" ରାଗରେ ପଚାରିଲା ମାଲିକ !

ବୁଝେଇଦେଲି—ଲୋକବାକ ନ ଥିବାରୁ କେମିତି ମାଦା ମାଦା ଖାଲି ଖାଲି ଲାଗିଲା ଚିଜଟା । ସେ କିନ୍ତୁ ଝାଡ଼ିଦେଲା ପରନ୍ତେ ମତେ ଗାଳି ଦେଇ ଦେଇ :

"ହୁସ୍, ଧେତ୍ତେରିକି ! ଶିଖିବାକୁ ଯଦି ଇଚ୍ଛା, ଠିକ୍ ଭାବେ କାମ କରିବାକୁ ହେବ, ଯାହା କହୁଛି ତାହା । ସେଗୁଡ଼ାକ ବାଜେ— ବାଜେ ସେଗୁଡ଼ାକ ।"

ଭାରୀ ଖୁସି ହୋଇଗଲା ମାଲିକ—ଶେଷରେ ଯେତେବେଳେ କୌଣସି ମତେ ମୂଳଚିଜର ସଙ୍ଗେ ସମାନ ଅବିକଳ ଗୋଟାଏ ନକଲ ଆଙ୍କିପାରିଲି ମୁଁ ।

"ଦେଖିଲୁ, ଚେଷ୍ଟା କଲେ କରିପାରୁ ତୁ, ଦେଖିଲୁ ! ଏମିତି ଯଦି ଖଟୁ, କାମ କରିଚାଲୁ, ଖୁବ୍ ଶୀଘ୍ର ଆଗେଇଯିବୁ ତୁ—ଖୁବ୍ ଶୀଘ୍ର ।"

ନୂଆ ଗୋଟାଏ କାମର ଦାୟିତ୍ୱ ଦେଲା ସେ ।

"ଆମର ଏଇ ଘରଟିର ଗୋଟାଏ ଯୋଜନା କର । ସେଥିରେ ଦେଖା ଘରଗୁଡ଼ିକ ରହିଛି କେମିତି କେଉଁଠି, କେମିତି କେଉଁ ବ୍ୟବସ୍ଥାରେ । ଦୁଆର ଝରକା ସବୁ କେଉଁଠି ଅଛି ; ଆଉ ଅନ୍ୟ ଜିନିଷପତ୍ର ରଖାଯାଏ କେଉଁଠି—ନା, ବଡେଇବନି କେମିତି ଆଙ୍କିବାକୁ ହେବ । ନିଜେ ନିଜେ ଭଲେ କରିବାକୁ ହେବ, ସବୁ ନିଜେ ନିଜେ ।"

ଶୋଷଘରକୁ ଗଲି, କେମିତି କେଉଁଠୁ ଆରମ୍ଭ କରିବାକୁ ହେବ ଭାବଚିନ୍ତା ଠିକ୍ କରିବାକୁ ଚେଷ୍ଟାକଲି ।

କିନ୍ତୁ ସେଇଠି, ସେଇ ବନ୍ଧୁରେହିଁ ମୋର ନକ୍ସା ଅଙ୍କନ ଶିକ୍ଷାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ବୁଢ଼ୀ ବଡ଼ ମାଲିକାଣୀ ମୋ ପାଖକୁ ଚାଲିଆସି ଅତି ଜଘନ୍ୟଭାବରେ ରାଗ ଈର୍ଷା ଅହଙ୍କାରରେ କହିଲା :

"ହୁଁ, ତୁ ତେବେ ଚାହୁଁଚୁ ଗୋଟାଏ ଆଙ୍କିଲାବାଲା ଲୋକ (ଡ୍ରାଫ୍ଟମ୍ୟାନ) ହବୁ । ନାଇଁ, ଚାହୁଁଚ, ଏଁ !"

ମୋର ବାଲକେଟାଏ ଧରିପକାଇ ମୁଠାରେ ସେ ଏତେ ଜୋରରେ ପିଟିଦେଲା ମୋ ମୁଣ୍ଡଟାକୁ ନେଇ ଟେବୁଲରେ, ନାକ ଆଉ ଓଠ ମୋର କଟିଗଲା, ରକ୍ତ ଗଲଗଲ ହୋଇ ବାହାରିଲା । ସେ ଫଁ ଫଁ ହୋଇ ଡେଉଁଥାଏ, ଉଠୁଥାଏ ପଡୁଥାଏ—ନାଚଯାଉଥାଏ । ଚିରଗୁଡ଼ ଦେଲା ମୋର ଡ଼ିହିକୁ, ଫୋପାଡ଼ିଦେଲା ଆଣି ଯନ୍ତ୍ରପାତିଗୁଡ଼ିକୁ, ତାପରେ ଅଣ୍ଟାରେ ହାତଦେଇ ଗୋଡ଼ ଫରକଟେଇ ଛିଡ଼ାହୋଇ ରହୁଗୁଡ଼ିଲା ବଜସ୍ୱ ଦର୍ପରେ ।

"ଦେଖି ହାତ ଦେଲୁ ଆଉ ଥରେ, ଚେଷ୍ଟାକଲୁ ଦେଖି ଏଥିରେ । ଦେଖିବୁ କଣ ଘଟିବ, କଣ ପାଇବୁ, ବୁଝିବୁ ! ହୁଁ ସେ ତେବେ ଗୁହୁଁଚ ଆଉ କଏ କାମ କରିବ ତାପାଇଁ, ନାଇଁ ଆଉ ତଡ଼ିଦେବ, ନିକାଲିଦେବ ତାର ଭାଇକୁ । ଏକା ମାଆ ପେଟର ଏକା ରକ୍ତ ମାଂସର ଭାଇକୁ ! ହୁଉ !"

ମାଲିକ ମୋର ଦୌଡ଼ି ଆସିଲା । ଭାରିଯାଚି ତା ପଛେ ପଛେ ପାଦଟିମାନ ପକାଇ ଆସିଲା ଟପ୍ ଟପ୍ । ଆଉ ସୃଷ୍ଟି ହୋଇଗଲା ଗୋଟାଏ ଅସଭ୍ୟ ଉଚ୍ଛୃଙ୍ଖଳତାର ଉନ୍ମତ୍ତ ଦୃଶ୍ୟ ! ଧନହିଙ୍କି ଧନହେଁ ସେମାନେ, କାମୁଡ଼ା କାମୁଡ଼ି ହୋଇ କୁଦପଡ଼ିଲେ ପରସ୍ପର ଉପରେ ଖେଁକ ହୋଇ ଛେପ ପକାପକ ହୋଇ—ତା-ତା-ମାମା ହୋଇ, ଖନେଇ ଖନେଇ ବଲୁଆ କୁକୁରଙ୍କପରି ଚିତ୍କାର କରି ମୁଣ୍ଡି ମାରିଲା, ମାଇପେଗୁଡ଼ାକ ମୁଣ୍ଡକୋଡ଼ି ହୋଇ କାନ୍ଦିବାକୁ ଯିବାରେ ଆଉ ମାଲିକ ମୋର ମତେ କହିବାରେ ।

"ବର୍ତ୍ତମାନ ପାଇଁ ସବୁ ବନ୍ଦବାନ୍ଦ ରଖ ବାବୁ ପାଠ ପଢ଼ାପଢ଼ି : ନିଜେତ ଦେଖିପାରୁଛୁ ଫଳାଫଳଟା !"

ମନଟି ମୋର କେମିତି ହୋଇଗଲା ମାଲିକଟିପାଇଁ । ଭାରି ଦୁଃଖ ହେଲା । ଏତେ ଭାଙ୍ଗିପଡ଼ିଥିଲେ, ଦବି ମାଟିରେ ମିଶି ଯାଉଥିଲେ, ଏମିତି ଅସହାୟ ହୋଇଥିଲେ—ଏହି ମାଇକିନାଗୁଡ଼ାଙ୍କର ପାଟିତୁଣ୍ଡରେ ଦିନରାତି ସବୁବେଳେ କାବୁଅ ମେଣ୍ଢାଏପରି ଦଳିତକଟି ହୋଇ ।

ଏ ଘଟନା ଆଗରୁ ବୁଝିପାରିଥିଲି ମୁଁ—ବୁଢ଼ୀଟା ଗୁହୁଁ ନଥାଏ ମୁଁ ପଢ଼େ । ଏଣୁ ସେଥିରେ ବାଧା ଦେବାଲାଗି ଯାହା ପାରେ ତା କରିବ, ଏବଂ କରୁଥାଏ ବି ଠିକ୍ ସେଇଆ ! ଆଜି ବସିବା ଆଗରୁ ଏଣୁ ସବୁବେଳେ ତାଙ୍କୁ ପଗ୍ଚରି ଦେଉଥାଏ ।

"ଆଉ କଣ କହୁ ଅଛୁ, କରିବାକୁ ଗୁହୁଁଛ, କରିବି ମୁଁ ?"

"କହିବ ତତେ, ଡାକିବ ଦରକାର ପଡ଼ିଲେ ଯେତେବେଳେ ବୁଢ଼ୀ ଉତ୍ତର ଦେଉଥାଏ ପରୀକ୍ଷା କରିବ ଢଙ୍ଗରେ । ସେଇଥିପାଇଁ ଖାଲି ଯୋଗ୍ୟ ତୁ—ହେଇ ସେଠି ଟେବୁଲ ପାଖରେ ବସି ବୋକାଙ୍କପରି ସମୟ କଟାଇବୁ—ଏଇଥିପାଇଁ—"

କେତୋଟି ମିନିଟ୍ ଭିତରେ କିନ୍ତୁ ନିଧାର୍ଯ୍ୟ ସେ ମତେ କିଛି ବୋଲି ବତାଇ ଖବର ଦେଇ ପଠାଇ ଦିଏ ନଇଲେ କହେ—

"ଛିଃ, ବାଟଘାଟ ପାହାଚଗୁଡ଼ାକ ଯେମିତ ଓଲେଇଛୁ, ଛି କଣଗୁଡ଼ାକରେ ଏତକ ମଇଲା, ଏତକ ଧୂଳି— ଘାଲୁ ଘାଲୁ ହେଉଛି । ଯା, ଭାଗ୍, ଓଲା ଯା ଆଉଥରେ, ଓଲା କହୁଛି ।"

ଯାଏଁ ମୁଁ ଦେଖିବାପାଇଁ କାଲେ କେଉଁଠି କିଛି ମଳଧୂଳି ରହିଯାଇଥିବ କିନ୍ତୁ ଦେଖୁଟିଏ ବ ଆଖିରେ ପଡ଼େ ନାହିଁ ।

"ହୁଁ, ମୋ ସାଙ୍ଗରେ ତରକ କରିବୁ ତେବେ, ମୁକୁଥ କରିବୁ, ଏଇଆ ତୋର ମତଲବ ! ନାହିଁ ହଇରେ ଏଁ ଟୋକା !" ପାଟିକରି ଉଠେ ସେ ବୁଢ଼ୀ ମାଲିକାଣୀ ।

ଦିନେ ମୋର ସବୁ ଡ୍ରଇଁ ଉପରେ ସାଇ-ମଦଗୁଡ଼ାଏ ଢାଳି ଦେଇଥିଲି ବୁଢ଼ୀ— ଆଉଦିନେ ଚଉପଟ ତଳେ ବୋତଲଟା ଓଲଟେଇ ଅଜାଡ଼ି ଦେଇଥିଲି ପୁଣି ସେଇ ଡ୍ରଇଁଗୁଡ଼ିକ ଉପରେ । ଏଇ ଦୁଷ୍ଟାମି, ଏଇ ବଦମାସି ଟା ବାଢ଼ୁଥାଏ ଛୁଆଙ୍କ ପରି ; ପିଲାଳିଆ ଗୁଳିଖିରେ, ଚତୁରତାରେ ଆଉ ତାକୁ ଲୁଚେଇ ଘୋଡ଼େଇ ରଖି ପାରୁ ନଥାଏ ପିଲାଳିଆ ଅକ୍ଷମତା ହେତୁରୁ । ତା ପରି ଏତେ ଚଞ୍ଚଳ ଏତେ ସହଜରେ ଚିଡ଼ି ଉଠିବ, କଟକଟ ହେବ କି ଦୁନିଆଯାକର ସମସ୍ତଙ୍କ ବିରୁଦ୍ଧରେ ସବୁ ବିଷୟରେ ଅଭିଯୋଗ କରିବା ଲାଗି ତା ଭଳି ରାଗରୋଷ ଆବେଗ ଥିବ ; ଏମିତ ଆଉ ଗୋଟିଏ ଲୋକ କେବେ ଆଖିରେ ପଡ଼ି ନଥାଏ ମୋର । ଲୋକେ ସାଧାରଣରେ କାହା ବିରୁଦ୍ଧରେ ଗୁଡ଼ାଏ ଗପି ଅଭିଯୋଗ ବାଢ଼ିବା ପାଇଁ ଆପତ୍ତି କରିବା ପାଇଁ ସୁଖ ପାଆନ୍ତି— ଏଇ କାମଟାକୁ ବେଶ୍ ଉପଭୋଗ କରନ୍ତି, କିନ୍ତୁ ସେ ଏହା କରୁଥାଏ ଗାୟକଟିଏ ଗୀତବୋଲି ଯେଉଁ ଆନନ୍ଦ ପାଏ ସେହିଭଳି ଆନନ୍ଦରେ !

ପୁଅ ପାଇଁ ତାର ସ୍ନେହ, ତାର ମମତା, ତାର ବାତ୍ସଲ୍ୟ ଥାଏ ଗୋଟାଏ ପ୍ରକାରର ପାଗଳାମି । ସେଇ ପାଗଳାମିର ବଳ ବହପ ଦେଖି ଯେତିକ ମଜା, ଯେତିକ କୌତୁକିଆ ଲାଗୁଥାଏ, ମତେ ସେତିକ ଭୟ ଆସୁଥାଏ ବ ଶଙ୍କି ଯାଉଥାଏ ମୁଁ । ସେଇ ପାଗଳାମିର ବଳ ବହପକୁ ଦୁରନ୍ତ ଗୋଟାଏ ଉନ୍ମତ୍ତତାର ଶକ୍ତି ବୋଲି ବର୍ଣ୍ଣନା କରାଯାଇପାରେ ! କୁହାଯାଇପାରେ କେବଳ ! ବେଳେବେଳେ ସକାଳ ପ୍ରାର୍ଥନା ପରେ ସେ ଚଢ଼ିଯାଉଥାଏ ଚୁଲୀ ଉପରକୁ— କହୁଣୀରେ ଭରା ଦେଉଥାଏ ପୁଅ ଯେଉଁ ଖଟରେ ଶୋଇଥାଏ, ସେଇ ଖଟର ଧାରରେ— ଅତି ଆକୁଳ ଭାବରେ ଗୁନ ଗୁନ ଫିସ୍ ଫିସ୍ କରି କହୁଥାଏ ।

"ମୋର କୋଟି କଇଲଣର ଧନଟିରେ ! ରକ୍ତର ରକ୍ତ ସେ ମୋର ! ଫୁଲ ଭଳି କଅଁଳ, ସ୍ୱର୍ଗର ଦିଅଁଙ୍କ ଦୂତର ଡେଣା ପରିଭଳି ହାଲୁକା ମୋ ବାପ । ଶୋଇଛ ସେ, ଶୁଅ ଧନ ଶୁଅ—ହୃଦସ୍ପନ୍ଦିକୁ ବଢେଇ ନେଏରେ ଭଲ ସୁଖର ସ୍ୱପନରେ । ଦେଖିରେ ସ୍ୱପନଟିଏ ଦେଖ ନିଜପାଇଁ କନିଆଁ ଟିଏ—ସୁନ୍ଦରୀ ଭିତରେ ସୁନ୍ଦରୀ— ସବୁଠୁଁ ବଳି ସୁନ୍ଦରୀ— ଧନରତନର ଜେମାଟିଏ, ରାଜା

ଝିଅଟିଏ, ନଇଲେ କୋଉ ଶେଠ ବଣିକର ଅଳଅଳୀ ଦୁଲଣୀଟିଏ ! ଯାଆନ୍ତୁ ଲୋ ! ଜନ୍ମିବା ଆଗରୁ ମରସର ଯାଆନ୍ତୁ ମାଆ ପେଟରୁ ତାଙ୍କର, ଭଗାରଗୁଡ଼ାକ ତୋର ! ଆଉ ଶହେ ଶହେ ବରଷ ପରମାୟୁ ହେଉରେ ତୋର ସାଙ୍ଗ ସାଥୀଙ୍କର— ବଞ୍ଚନ୍ତୁରେ ସେମାନେ— ଆଉ ଯେତେ ଯେତେ ଅଭିଆଡ଼ୀ ଝିଅ ଅଛନ୍ତି— ସୁନ୍ଦରୀସବୁ—ଦଳ ଦଳ ହୋଇ ଗୋଡ଼ାନ୍ତୁ— ଗୋଡ଼ାଉଥାନ୍ତୁ ପଛରେ ତୋର— ହଂସ ପଛରେ ପଲକୁ ପଲ ହଂସୀପରି ।’’

ମତେ ଏସବୁ ଅତି ଯନ୍ତ୍ରଣାଦାୟକ ଭାବରେ କୌତୁକପ୍ରଦ ଲାଗୁଥାଏ । ଅତି ସ୍ଥୂଳରୁଚିର ଆଉ ହାଡେ ହାଡ଼େ ଅଳସୁଆ ଭିକ୍‌ଟର—ଅନ୍ୟ କିଛି ଅପେକ୍ଷା ତାର ସାମଞ୍ଜସ୍ୟଟା ଥାଏ କାଠହଣା ଚଢ଼େଇ ସାଂଗରେ । ତାର ଲମ୍ବା ନାକ ଆଉ ଜାକଜମକିଆ ପୋଷାକପତ୍ର, ଏକଜିଦିଆ ସ୍ୱଭାବ ଆଉ କପଟ ନିର୍ବୋଧତା ଯେମିତି ।

କେବେ କେମିତି ତା’ ମାଆର ଫିସ୍ ଫିସ୍ ହସ୍ ହସ୍ କଥାଗୁଡ଼ାକ ତାକୁ ଉଠାଇଦିଏ, ସେ ନିଦ ନିଦ ଅବସ୍ଥାରେ— ତନ୍ଦ୍ରା ଭିତରେ ଗର ଗର ହୁଏ ।

‘‘ମନ ହେଉଛି ଯାଆ ନରକକୁ ଯାଆ ତୁ । ଯାଉନୁ କାହିଁକି ଏଠି ଠିଆ ହୋଇ, କାହିଁକି ଛେପ ପକାଇ ପକାଇ ମତେ ବୁଡ଼େଇ ଲାଗିଛୁ ! ନାଃ ତୋ ପାଖରେ ରହି ଯୋଗାଏ ନା ଆଉ—! କେମିତି ଚଳିବ—କେମିତି ଯେ ମଣିଷ ?’’

ଏତକ ଶୁଣି ସାଧାରଣରେ ବୁଢ଼ୀ ମେଣ୍ଢାଟି ଭଳି ନରମି ଓହ୍ଲେଇ ଆସେ ହସିଦେଇ କହେ—

‘‘ହଇରେ—ଶୁଅ; ତୁ ବର୍ବରଟା ଶୁଅ !’’

ବେଲେବେଳେ କନ୍ତୁ ବୁଢୀର ଗୋଡ଼ ଦି’ଟା ପୁଅର ଝିଙ୍ଗାସରେ ଭାଙ୍ଗି ଭାଙ୍ଗି ପଡେ ତୁଳା ବସ୍ତାଏ କ ପଙ୍କ ମେଞ୍ଚାଏ ଭଳି ଖସି ଆସେ, ଚୂଲାଧାରରେ ନଥ୍‌କିନା ବସିପଡେ—ଆଖିଁ ଟାଏ କରି ଫେଲିହୁଏ, ନିଶ୍ୱାସ ନ ନେଇ ପାରି ସତେ ଯେମିତି ଜିଭଟା ପୋଡ଼ିଯାଇଥାଏ । ତା’ ପରେ ସଅଁ ସଅଁ ହୋଇ ରହି ରହି ଛାଡେ , ନାହୁଡ଼ରେ ଦାଂଶିଲ ଭଳି ଶବ୍ଦଗୁଡ଼ାଏ ।

‘‘କଅ-ଅଣ ! କଅଣ କହିଲୁ, ତୋ’ ମାଆ—ତୋ ମାଆ—ତାକୁଇ ତୁ ନରକକୁ ପଠାଉଛୁ, ନରକକୁ ଠେଲୁଚୁ, କାରଣଟା ଇସ୍ ? ଗୋଟାଏ କଳଙ୍କ—ଗୋଟାଏ ପାପର ଦାଗ, ମୋ ଆତ୍ମା ଉପରେ—ତୁ, ତୁ—କୋଟି କୋଟି ଅପଶାଇ ପରେ ତୋ ଉପରେ ସେଇ ଅପଶାଇପିଆ ଚୂନ କାଠ-ପାଉଆଟାଏ ରେ ତୁ—ମୋ ହୃଦୟରେ ଲଗେଇ ଦେଇଛୁ ତତେ—ଲଗେଇ ଦେଇଚ ନିଆଁ ଲଗା ଯମଟା କଳେ ! ଏଃ—ଜନ୍ମିବା ଆଗରୁ ସଡ଼ି ଯାଇଥାନ୍ତୁ କ ପଚି ଯାଇଥାନ୍ତୁ କ ପେଟରେ··· !’’

ରାସ୍ତାଘାଟରେ ମାତାଲଗୁଡ଼ାକର ଅଡ଼ ଅସନା ଅଡ଼ ଗନ୍ଧଆ କଥାଗୁଡ଼ାକ ଧିଁ ବାହାରେ ତା ପାଟିରୁ—ମନହୁଏ କାନରେ ଠିପି ଦଅନ୍ତି କି—ଶୁଣିଲେ ଶିହରି ଉଠେ ମନଟା ।

ବୁଢ଼ୀଟା ଶୋଉଥାଏ କମ—ଶୋଉଥାଏ ଛନ୍ ଛନିଆ ଭାବରେ—ଗୁଡ଼ିପିଡ଼ି ହୋଇ, ଅସ୍ଥିର ହୋଇ କର ଲେଉଟା ଲେଉଟି କରୁ । ରାତି ମଝିରେ ଅନେକ ଥର ଓହ୍ଲାଇ ଆସେ ଚଟ୍ଟି ଉପରୁ ସିଧାସିଧା ଅମୁହାଁ ମାଡ଼ଯାଏ ମୁଁ ଯେଉଁ ଚୌକିଟାରେ ଶୋଇଥାଏ, ସେଇ ଚୌକିଟା ପାଖକୁ—ମନେହୁଏ ଡେଇଁପଡ଼େ ଯେମିତି ମୋ ପାଖରେ ଆସି, ମତେ ଉଠାଇଦିଏ

"କଣ ? କଥା କଣ ?"

"ଚୁପ୍ ଚୁପ୍ !" ଫୁସ ଫୁସ୍ ହୁଏ—ନଶୁଣିଚନ୍ଦ୍ର ଆଙ୍କି ଆଙ୍କି ଅନ୍ଧାରରେ କାହାକୁ ଗୋଟିଏ ଏକଲୟରେ ଅନେଇ ରହେ—ଗୁନ ଗୁନ କହି ଉଠେ "ହେ ମହାପ୍ରଭୁ—ହେ ଠାକୁରେ···'ହେ' ପଦ୍ମଖମ୍ଭର ଏଲାଇଜା'—ହେ, କଇଲାଶରେ ଭରା ମଙ୍ଗଳମୟୀ ଶମ୍ଭୁଦ୍ ଭରଭରୀ—ରକ୍ଷାକର, ରକ୍ଷାକର ଆମକୁ ଅକାଳ ମରଣରୁ—ହେ ମହାପ୍ରଭୁ !"

ଥର୍ ଥର୍ ହାତରେ ଜଳାଏ ମହମବତୀ । ତାର ଗୋଲଗାଲିଆ ମୁହଁ ଯେଥିରେ ବିରାଟ ଗୋଟିଏ ନାକ ମୁହଁଟା ଫୁଃଉ ଫୁଃ କରି ନିଶ୍ୱାସ ନେଇ ଫୁଲି ଫୁଲି ଉଠେ—ପାଉଁଶିଆ ଆଖିହଳକ ଉଦ୍‌ବେଗରେ ବିସ୍ମୟରେ, ଭୟରେ ମିଟି ମିଟି କରେ—ସେ ଯେତେବେଳେ ଅଧାଆଲୁଅ ଅଧା ଅନ୍ଧାରରେ ବିକୃତ ଜିନିଷଗୁଡ଼ିକୁ ନିରିଖି ନିରିଖି ଦେଖେ । ଯେପେଇ ଘରଟା ବେଶ ବଡ଼ ପ୍ରଶସ୍ତ, ହେଲେ କଣ ହେଲା, ଦହୁଫକ୍ଷ୍ୟାରେ ଟ୍ରଙ୍କ, ଖାଇବା ଆଲମାରି ପ୍ରଭୃତିରେ ଗ୍ରେଟ ଅଣଓସାରିଆ କରି ଦେଇଥାଏ । ଚେଗୁ କହିଲି ଆଲୁଅଟା ସେଠି ରହେ ଟିକିଏ, ବିଶ୍ରାମ ନିଏ ଚୁପ୍ ଚାପ—ଆଉ ଅନବାଣ ଅଗ୍ନିଶିଖାଟା ଧପ୍ ଧପ୍ କରେ ପବିତ୍ର ମୂର୍ତ୍ତିଗୁଡ଼ିକ ଆଗରେ । ଯେଷଘର ଛୁସିସବୁ ଝକ୍ ଝକ କରେ କାନ୍ଥ ପାଖରେ କାନ୍ଥରୁ ଓହଳା ଛତ୍ରିମୂନିଆ ତୁଷାର ଭଳି । ଥାକଗୁଡ଼ାକରୁ ଝୁଲୁଥିବା ବେଣ୍ଟଲଗା କଳା କଳା ଗ୍ରେଟ ଡାଉଆ କରେଇ ସବୁ ଦିଶେ ସମାନ । ବିକଟ ଅତି ବୀଭତ୍ସ ଅନ୍ଧମୁହଁଗୁଡ଼ାକ ଯେମିତି !

ସବୁବେଳେ ବୁଢ଼ୀ ଓହ୍ଲାଏ କଂଥୁ ଖୁବ୍ ସାବଧାନରେ—ସତେ ଯେମିତି ନଈବଂଧର ନଈ ପାଣିକୁ ଝସାଇ ଦିଏ ସେ ନିଜକୁ ! ତା'ପରେ ଝାଲ ପାଦରେ ନସର ପସର ହୋଇଯାଏ ଗୋଟାଏ ଯେଠି ମଇଳାପାଣି ଲୁହା ବାଲ୍ଟି ଉପରେ ଝୁଲୁଥାଏ କଟା ମଣିଷମୁଣ୍ଡ ଭଳି କାନ ଲହକା ଢାଲଟାଏ । ତାରି ପାଖରେ ଆଉ ଗୋଟିଏ କୁଣ୍ଡ—ଭଲ ପାଣିରେ ଭର୍ତ୍ତି ହୋଇ ।

ଘଡ ଘଡ଼ କରି ପିଇସାରିଲା ପରେ ପାଣି ଉଙ୍କିମାରି ଆଖି ଓଟାରି ନିରିଖି ନିରିଖି ଅନାଏ ସେ ଝରକା କାଚ ଉପରେ 'କୁହୁଡ଼' ଯେଉଁ ନେଳି ନେଳି

ସରୁସରୁ ତାରକସି କାମ ରଚନା କରିଥାଏ, ଅନାଏ ସେ ତାହାର ଭିତରେ—

"ଦୟାକର, ମତେ ଦୟାକର ହେ ମହାପ୍ରଭୁ । ଦୟାକର ମୋ ଆତ୍ମାଟିକୁ ଦୟାକର ହେ ମହାପ୍ରଭୁ !" ନିଶ୍ୱାସ ରୋକି ମିନତି କରେ ସେ ।

ବେଳେବେଳେ ପୁଣି ମହମବତୀଟିକୁ ନିଭେଇଦେଇ ଆଣ୍ଠୁମାଡ଼ି ବସି ଅତି ବ୍ୟାକୁଳ ହୃଦୟରେ ଭୁକୁଭୁକୁ ହୁଏ, "ମତେ କେହି ଭଲ ପାଆନ୍ତି ନାହିଁ, କେହି ଦେଖି ପାରନ୍ତି ନାହିଁ ହେ ମହାପ୍ରଭୁ ! ହେ ବଡଠାକୁରେ ! କେହି କେହି ବୁଝେନି ମୋତେ—ହେ···!"

ଥରେ ଚୁଲି ଉପରକୁ ଉଠିଗଲେ ଚମନି ମୁହଁରେ ଆଗ କୃଷ୍ଣଚନ୍ଦ୍ର ଆଙ୍କି ହୁଏ, ତାପରେ ହାତମୁଣ୍ଡାଏ ସେଥିରେ, ଭଲକରି ଦେଖି ନେବାପାଇଁ ଓଦାଳିଆ କରି ଚକ୍ତି ବା ପଟାଟି ଠିକ୍ ତା ଥାନରେ ଅଛି କି ନାହିଁ, ହାତ ତାର କଳରେ ସାଲୁବାଲୁ ହେଇଯାଏ—ଚିଡ଼ିଯାଇ ଢୁଚାକୁ ଗୁଡ଼ାଏ କଟାଫଟା କରେ, ତା'ପରେ ସଙ୍ଗେ ସଙ୍ଗେ ଶୋଇପଡ଼େ, ସତେ ଯେମିତି କିଏ ତାକୁ ସମ୍ମୋହନ କରିଦିଏ । ସେ ଯେତେବେଳେ ମତେ ଅପମାନ ଦିଏ, ଗାଳି ଅଜାଡ଼େ ମୋ ଉପରେ, ସେତେବେଳେ ଭାବେ ମୁଁ କି ଦରଦୀସ୍ତ କଥା ସତେ ; ଅଜା ଯାହା ତାର ହାତଧରି ନାହାନ୍ତି—କେଡ଼େ ମଜାର ହୋଇଥାନ୍ତା, ତାକୁ ବାହା ହୋଇଥିଲେ ସତେ ! ତାଙ୍କୁ ସେ ଠିକ୍ ଥେଇ ଥେଇ କରି ନଚେଇ ଥାନ୍ତା! କେମିତି— ଧକ୍କା ମାରି ମାରି ଫିଙ୍ଗେଇଥାନ୍ତା କେମିତି ! ତେବେ ସେ ନିଜର ସମାନପ୍ରତିଦ୍ୱନ୍ଦୀଟାଏ ପାଇଥାନ୍ତା ନିଶ୍ଚୟ । ଅନବରତ ମୁଁ ଉତ୍ପୀଡ଼ିତ ହେଉଥାଏ ତାର ଅଯଥା କ୍ରୋଧର ପ୍ରକୋପ ହେତୁରୁ । ତେବେ ଏମିତି କେବେ କେବେ ଦିନ ଆସୁଥିଲା ଯେତେବେଳେ ତାର ଫୁଲିଲା ଫୁଲିଲା ଫୁଉ ଫୁଉ, ଢୁଲାଭଲିଆ ମୁହଁଟା କେମିତି ବିପର୍ଯ୍ୟସ୍ତ ହୋଇଯାଉଥିଲା ହଠାତ୍ ଆଖିଯୋଡ଼ିକ ଢଳ ଢଳ ହେଉଥିଲା ଲୁହରେ— ଲୁହର ପରଦା ନଇଁ ଆସୁଥିଲା ଯେମିତି ସେଥିରେ, ସେ କହି ବସୁଥିଲା—

"ତୁ ଭାବୁଚୁ, ଭାରି ସହଜରେ ସୁରୁଖୁରୁରେ ସମୟଟା ଯାଉଚି ମୋର ? ନାଇଁ ମୋ ପିଲାଙ୍କୁତ ଜନ୍ମ ଦେଇଛି ମୁଁ, ବଢ଼େଇକୁଢ଼େଇ ମଣିଷ କରିଛି, ଜୀବନରେ ବାଟରେ ମତେଇ ଦେଇଛି ସେମାନଙ୍କୁ । ଜୀବନଟା ଆରମ୍ଭ କରେଇ ଦେଇଛି ସେମାନଙ୍କର— କିନ୍ତୁ କଣ ପାଇଛି ମୁଁ, କଣ ପାଉଛି ବା ସେଇଥିପାଇଁ ? ଖଟୁଚି ରୋପେଇସ୍ତ୍ରୀଟିଏ ଭଳି ରୋପେଇଶାଳରେ ତାଙ୍କର । ଏଇଟା ସହିବା କଣ ସହଜ କରେ ? ଆଉ ପୁଅ ମୋର, ନେଦିନ ଆସିଚି ସେଇ ମାଇକନାଟାକୁ ଦଖଲ୍ କରିବାପାଇଁ ମୋ ଜାଗାଟା— ଯେ ତାର, ସେଇ ମୋ ପୁଅର ରକ୍ତ-ମାଂସର ଜାଗା ଯେଉଁଟା ! ଠିକ୍ ତ ? କଣ କହୁଚ, ଠିକ୍ ନୁହେଁ ?"

"ନା, ନୁହେଁ ।" ଆନ୍ତରିକତାର ସହିତ କହେ ମୁଁ । "ଓଃ, ଦେଖୁନୁ— ବୁଝୁନୁ ।"

ଏହାପରେ ନିଜର ବୋହ୍ମ ବରୁଙ୍କରେ ଆରମ୍ଭକରି ଦଏ ନିର୍ଲଜ୍ଜ ଭାବରେ କୁତ୍ସିତ, ବିକୃତ ଗାଳିଗୁଳିକ,

"ତା ସାଙ୍ଗରେ ଗାଧୁଆ ଘରକୁ ଯାଇଛୁ ମ, ଦେଖିଛୁ,ଯାହାସବୁ ଦେଖିବାର ଦେଖିଛୁ ! କିଣ ସେ ଟୋକାଟାକୁ ଏମିତ ଲୋଭେଇ ଦେଇଛୁ ତାର ଭଲ ମୁହଁ ମିଠା.........?"

ପୁରୁଷନାରୀଙ୍କର ସମ୍ପର୍କ ଯେଉଁ ସଦାବେଳେ ପ୍ରାୟ ଯେତେଦୂର ସମ୍ଭବ ସବୁଠୁ ବଳି କୁତ୍ସିତ ଭାଷାରେ କଥା କହେ । ପ୍ରଥମେ ପ୍ରଥମେ ସେ ଯାହା କହୁଥିଲା, ସେଥିରେ ଘୃଣାରେ ବ ମୋ ଅନ୍ତରାତ୍ମା ଥରି ଉଠୁଥିଲା— ମନ ବିଦ୍ରୋହ କରୁଥିଲା— କିନ୍ତୁ ଖୁବ୍ ଶୀଘ୍ର ସେଥିକି କାନଗଲା, ମନଧ୍ୟାନ ଦେଇ ବେଶ୍ ଆଗ୍ରହ ସହକାରେ ଶୁଣିବାକୁ ଆରମ୍ଭକଲି— ତା କଥା ଆଢ଼ୁଆଳରେ କେତେଗୁଡ଼ାଏ ଅତି କଟୁ ସତ୍ୟ ବାରିପାରିଲି ।

"ମାଇପି ଜାତିର ବଳ କମ୍ ନୁହେଁରେ, ତା' ହାତରେ ଯୋଉ କ୍ଷମତା ! ଏତିକି ପ୍ରଚଣ୍ଡ ପୁଣି ! ମାଇପିଟାଏତ କୌଣସିମତେ ଠକି ଦେଇଥିଲା ନିଜେ ଯିଏ ଦଇବ, ସେଇ ଠାକୁରଙ୍କୁ ।" ଟେବୁଲଟିକୁ ପାପୁଲିରେ ଗୁପୁଡ଼େଇ ଜୋର ସହିତ ଜିଦ୍‌ଧରି କହେ ସେ—

"ଇଭ୍ ହେଉଛୁ ଏକା, ଗୋଟିଏ ବୁଝିଲୁ, ଯାହା ହେତୁରୁ କିଏ ନ ଯାଏରେ ନରକକୁ— ସେଇ ପରି ମୂଳ କାରଣରେ ଲୋକଙ୍କୁ ନରକକୁ ପଠେଇବାରେ ! ଦେଖ୍ କେବେ ଭୁଲିବୁ ନାହିଁଟି !"

ଇଚ୍ଛାକଲେ, ମନହେଲେ ତାର ନାରୀର ଶକ୍ତି ଯେଉଁ ସେ ଭାଷଣ ଦଏ— ଆଉ ସେଇ ଭାଷଣର ଶେଷ ହୁଏ ନାହିଁ ଆଦୌ ! ମତେ ସବୁବେଳେ ଲାଗେ— ସେମିତ କହେ ସେ କାହାକୁ ଡରେଇବାକୁ ଚେଷ୍ଟାକରେ ଯେମିତ ! ବିଶେଷରେ ସବୁବେଳେ ମନେପଡ଼େ ମୋର, ତାର ସେଇ ଉକ୍ତିଟି— ଇଭହିଁ ଠକିଥିଲା, ଭଣ୍ଡେଇଥିଲା ଭଗବାନଙ୍କୁ !

ଆମ ଅଗଣାରେ ଆଉ ଗୋଟିଏ ଘର ଥାଏ ଆମରି ଘରଭଳି ବଡ । ଏହିସବୁ ଘରର ଆଠୋଟି ବିଭାଗ (apartments), ଗୃହୋଟିରେ । ସେ ରହୁଥାନ୍ତି ସାମରିକ ଲୋକ— ସାମରିକ ଅଫିସର ସବୁ । ଆଉ ଗୋଟିକରେ ଥାଆନ୍ତି ସୈନ୍ୟବାହିନୀର ପାଦ୍ରି । ଅଗଣାଟା ସବୁବେଳେ ଗହ ଗହ କରୁଥାଏ ସାମରିକ କର୍ମଗୃହୀ ସଇସ, ଗୃକର ଦେହରକ୍ଷୀ ବା ସେମାନଙ୍କର ପ୍ରେୟସୀ, ଧୋବଣୀ ଆଉ ବୈଠକଖାନା ପରିବାରି ପ୍ରଭୃତିରେ । ପ୍ରେଷଘରଗୁଡିକ ହୋଇଥାଏ ବହୁ ଦୃଶ୍ୟାଭିନୟର, ବହୁ ନାଟକ ଓ 'ପ୍ରେମାନ୍ସ' ପ୍ରେମାଞ୍ଚକର ଲୀଳାର ରଂଗମଞ୍ଚ— ଯେତେ ଯାହା ଆବଶ୍ୟକୀୟ ସମ୍ପର୍କ ଯେଉଁ, ସେଗୁଡ଼ିକର ସମବାୟରେ ଘରେ ଘରେ

ସୈନ୍ୟମାନେ ଲଢ଼ୁଥାନ୍ତି ପରସ୍ପରର ମଧ୍ୟରେ । ପଣଖା ଖୋଲାଇ ଟୁମିକମାନଙ୍କ ସହିତ ସବୁବେଳେ ପ୍ରାୟ ପ୍ରହାର ବଢ଼ୁଥାଏ ସ୍ତ୍ରୀଲୋକମାନଙ୍କ ଉପରେ । ଆମର ଅଗଣାଟା ଭର୍ ଭରେଇ ଉଠୁଥାଏ, ଯାହାକୁ କହନ୍ତି ବୀଭତ୍ସ ଲମ୍ପଟତା, ବ୍ୟକ୍ତିଗତ ଆତ୍ମକ୍ଷୟକାରୀ ଜଘନ୍ୟ ଦୁଃଷ୍ଟରଜାମୟ ବିଳାସ ବ୍ୟସନରେ ହୃଷ୍ଟପୁଷ୍ଟ ସୁସ୍ଥ ଯୁବକମାନଙ୍କର ଜୋର ପାଶବିକତାମୟ, ସଂଯମହୀନ ବୁଭୁକ୍ଷାର କୁତ୍ସିତ କ୍ରୀଡ଼ାରେ । ମଧ୍ୟାହ୍ନ ଭୋଜନ, ରାତ୍ରି ଭୋଜନ, ସୁରାପାନ ସମୟରେ, ଶୁଣୁଥାଏ ମୁଁ ମୋର ମାଲିକ ଆଉ ମାଲିକାଣୀ ବିଶ୍ୱନନ୍ଦଙ୍କ ଘରେ ଟିକିନିଖି ଆଲୋଚନା କରୁଥାନ୍ତି ଏହି ଜୀବନଟିକୁ । ଏହି ଯେଉଁ ଜୀବନଭଳି ସ୍ଥୂଳ ଅତି ଯୌନ-ଲାଳସା ଓ ଲମ୍ପଟ୍ୟରେ ଅର୍ଥହୀନ ହିଂସ୍ର ପାଶବିକତାରେ, କୁତ୍ସିତ ଅତି ଦୁର୍ଗନ୍ଧମୟ ବିଜୟର ଆତ୍ମ-ବଢ଼ିମାରେ । ବୁଢ଼ୀକି ମାତ୍ର ଅମାଲୁମ୍ ନଥାଏ । ଅଗଣାରେ ଯାହାସବୁ ଘଟୁଥାଏ ପ୍ରତ୍ୟେକ ଘଟଣା ସେଇ । ପୁଣି ତାକୁ ବନେଇଚୁନେଇ ବର୍ଣ୍ଣନା କରୁଥାଏ ଯେ । ରସରସିଆ ଘରେ ଘଣ୍ଟା ଆନନ୍ଦରେ କେମିତି !

ଯୁବତୀ ଭାର୍ଯ୍ୟାଟା ଏହାସବୁ ଶୁଣୁଥାଏ ସୁଡ଼ୋଲ ଓଠରେ ତାର ହସଟିକେ ଲୁଚେଇ ଦେଇ । ହୋ ହୋ ହୋଇ ହସିଉଠେ ଭିକ୍ଟର । ମାଲିକ କିନ୍ତୁ ମୋର ମୁହଁଟିକୁ ବିକୃତ କରି ଦୁଃଖରେ ଯେମିତି କହନ୍ତି—

"ବହୁତ ହେଲା, ଯଥେଷ୍ଟ ହେଲା, ମାଆ !"

"ହେ ଭଗବାନ ! ତୁ ମତେ ପାଟିକି ଟିକେ ଖୋଲିବାକୁ ଦେବୁ ନାହିଁ କି ?" ଆପତ୍ତି କରି ଉଠେ କାହାଣୀ ପେଡ଼ି, ବୁଢ଼ୀଟା ।

"ହଁ ଠିକ୍ ସବୁ, ଠିକ୍ ମା ! କିଏ ଅଛି ଯେ ଏଠି କେଉଁଥିପାଇଁ ବନ୍ଦ କରିବାକୁ ହେବ ତତେ ତୋ ପାଟିକି ! ଏଇତ ଆମ ବଉଁଶଟା ଖାଲି ।" ଉତ୍ସାହ ଯୋଗେଇ ଦେଲା ଭିକ୍ଟର ।

ବଡ଼ପୁଅଟି କୁଞ୍ଚୁକୁଞ୍ଚିଆ ବିବେକର ଦଂଶା ଟିକେ ଅନୁଭବ କଲା ମାଆଟିପାଇଁ ।

ସେ ସବୁବେଳେ ବୁଢ଼ୀ ସାଂଗେ ପଡ଼ିଯିବାକୁ ଏଡେଇଦିଏ, ତାକୁ ଅଣଦେଖି ହୋଇ ରହେ । ଦୈବାତ୍ ଯଦି ଘଟିଯାଏ, ଏଇଟା ହାବୁଡ଼ରେ ପଡ଼ିଯାଏ ସେ, ମାଅ ତାର ଭାରିଯା ଯେନ ଆପତ୍ତି ଅଭିଯୋଗ ଅସରାଏ ବର୍ଷିଦିଏ ତା' ଉପରେ, ଆଉ ଏଇଟା ନିଶ୍ଚିତ ଯେ ସଙ୍ଗେ ସଙ୍ଗେ ତାକୁ ଟଙ୍କା ପଇସା ମାଗିଦିଏ । ତରବରହୋଇ ତା ମାଆ ହାତରେ ପ୍ରାଣବିକଳରେ ଯେମିତି ଗୁଞ୍ଜିଦିଏ ଦି'ଡନଟା ରୁବ୍ଲ ଆଉ ଯାହା ଖଚୁରା ଥାଏ ପାଖରେ ।

ଏଇଟା ଭଲ ନୁହେଁ, କହାଠି କଲୁଛି ଆରିଶ— ଏମିତି ପଇସା ନେବାଟା ତୋର, ମାଆ ! ସ୍ୱା ନୁହେଁ ଯେ ଦେବାକୁ କୁଣ୍ଠିତ—ଦେବ ନାହିଁ ! କି ତୋର— ନେବାଟା ଉଚିତ୍ ନୁହେଁ !"

"ଏଇ ଭିଖାରି ଫିଙ୍ଗାରିପାଇଁ ମ— ଆଉ' କିଛି ପୂଜା ବେଦୀର 'ମହମବତୀ' କିଣିବାକୁମ ମୋପାଇଁ ? ।"

"ଭିଖାରି ! ଭିକ୍ଟରକୁ ନଷ୍ଟ କରିବୁ ତୁ ମା ।" ଭିକ୍ଟରର ନଷ୍ଟରେ ମୂଳ ହେବୁ ତୁ ବୁଝିଲୁ ।

"ଇଲେ ମା ! ଦେଖ୍, ନିଜ ଝିଅକ ଭଲ ପାଉନୁଚି ! ପୋକ ପଡ଼ୁରେ ତୋ ଆତ୍ମାରେ !"

ଅଧୈର୍ଯ୍ୟ ଭାବରେ ହାତ ହଲେଇ ଦେଇ ତରତରରେ ଖସି ପଳାଇଯାଏ ମାଲିକ ।

ଭିକ୍ଟର। ମାଆପ୍ରତି ଯେମିତି ରୁକ୍ଷ ରୂଢ଼ ବ୍ୟବହାର କରୁଥାଏ, ସେମିତି ତାକୁ ତୁଚ୍ଛ ତାଚ୍ଛଲ୍ୟ ଦୃଷ୍ଟିରେ ଦେଖୁଥାଏ । ଗୋଟାଏ ଦୂନଆଗିଲା ସେ । ଯେତେ ଖାଇଲେ ବି ତୃପ୍ତି ନଥାଏ ତାର । ରବିବାରଦିନ ବୁଢ଼ୀ ତାପାଇଁ ଚକୁଳି ଫକୁଳି ଆଣସା ଫାଣସା କରେ । ସେଥିରୁ କିଛି ଅଂଶ ବଳେଇ ରଖି ଦେଇଥାଏ ତା'ପାଇଁ, ଲୁଚେଇଦିଏ ମୁଁ ଯେଉଁ ବେଞ୍ଚ ଉପରେ ଶୋଉଥାଏ ତା ତଳ ଗୋଟିଏ ବଡ଼ କାଚ ବୋତଲରେ, ଗିର୍ଜାରୁ ରବିବାରଆ ପ୍ରାର୍ଥନାରୁ ଫେରି ଭିକ୍ଟର ଅମୁହାଁ । ଖୋଜିପକାଏ ଜାରଟାକୁ ! ଟୁପୁଟୁପୁ ହୁଏ—

"ଏଃ, ଆଉ ଟିକେ ବେଶୀ ରଖି ପାରି ନଥାନ୍ତୁ ନା— ଏଡ଼ିକ ଚମ-ଧୋକଡୀ, ଗୈଠୀଟା ତୁ ।"

ଆଚ୍ଛା ଗିଳିଦେମ, ଟାଉଟାଉକରି ଗିଳିଦେ— କିଏ କାଲେ ଦେଖିଦେବା ଆଗରୁ— ଦେରେ !"

"ଯଦି କିଏ ଦେଖିପକାଏ, ତୁ ମୋ ପାଇଁ ଚୋରି କରିଚୁ, ଲୁଚେଇ କରି ଅଣିଛୁ ପିଠାଗୁଡ଼ାକ—ବୁଝିଲୁ ଲୋ !"

ତନେ ମୁଁ କାଚ ବୋତଲଟାକୁ ବାହାର କରି ଆଣିଲି । ଟପାଟପ୍ ଦଗୁରଟା ପକେଇ ଦେଇ ପାଟିରେ । ଭିକ୍ଟରଠୁ ଏଥିପାଇଁ ନେ ଦି ଗୁର ଚଟକଣା ନ ଖାଇଲି ନୁହେଁ, ସେ ମୋତେ ଦେଖି ପାରୁ ନ ଥାଏ, ମୁଁ ଯେମିତି ଦେଖିପାରୁ ନଥାଏ ମତେ ଚଡ଼ାଉଥାଏ । ମୋ ସାଙ୍ଗରେ ଲଗେ ଆଉ ଦିନକୁ ଚିନଥର କୋତା ସଫା କରାଉଥାଏ ତାର । ତା ଖଟ ଉପରେ ଶୋଇ ଗ୍ରେଟପଟାକୁ ଠେଲିଠେଲି ଛେପ ଲିଣ୍ଡାଏ ପକାଏ ମୋ ମୁଣ୍ଡକୁ ଲକ୍ଷ୍ୟକରି ।

ଝିଅର ଅନୁକରଣରେ ବୋଧହୁଏ, ଝିଅ ଯେମିତି ତାର ସମସ୍ତଙ୍କୁ ଡ଼ାକୁ ଥାଏ, "ଗରଜଲି କୁକୁଡ଼ା ଛୁଆ ।" ସେ ବି ଘୋଷି ହେଉଥାଏ କେଉଁଟା ଧର୍ମବନ୍ଧା ବୋଲି ଅଥଚ ଏଗୁଡ଼ ଥାଏ ଆଶ୍ଚର୍ଯ୍ୟଜନକ ଭାବରେ ଯେମିତି ଅର୍ଥହୀନ, ନୀରସ, ସେମିତି ଅବାନ୍ତର—ବୋକାମିର ବୋଲି ।

"ମାଆ, 'ଆଟେନ୍‌ସନ !' ମୋ ମୋଜାହଲକ କାଇଁ, କେଉଁଠି ?"

ମତେ ସେ ସବୁବେଳେ ପ୍ରାୟ ଉତ୍ପୀଡ଼ିତ କରୁଥାଏ ନିରର୍ଥକ ପ୍ରଶ୍ନମାନଙ୍କ ପଗୃର ଯେମିତକ :

"ଆଲେକସ-ରୁ ହୁଏତ କହିପାରିବୁ—କାହିଁକ ଗୋଟାଏ ଶବ୍ଦ ଲେଖାଯାଏ ଗୋଟାଏ ପ୍ରକାର ଉଚାରଣ କରାଯାଏ ଅନ୍ୟପ୍ରକାର ? ଗୋଟାଏ ପ୍ରକାର ଲେଖାଯାଏ 'ବ୍ଲୁ' ଉଚାରଣ କରାଯାଏ 'ଘ୍ଲୁ' 'କ୍ୟାଟା' ଆଉ ପରବର୍ତ୍ତୀ କ୍ୟାଟକୁମ୍ (Catacomb), ତାଳବ୍ୟ ଆଉ ଧ୍ୱନ ନ କହି ତାଳବ୍ୟ ବା କନ୍ଦା ଓ କଟା ନ ହୋଇ 'କନ୍ଦାକଟା' କାହିଁକ ? ଇଂରାଜୀରେ ସେଇଟା (ଡ଼-ଓ୍ୱପ) ନ ହୋଇ 'decry' ( ଡ଼ି-କ୍ରାଇ )

ସେମାନଙ୍କର କଥା କହିବାର ରୀତପ୍ରତ ମୋର କେମିତ ଗୋଟାଏ ଘୃଣା ଆସୁଥାଏ । ମୋର ଅଜାଆଇଙ୍କର ସୁନ୍ଦର ଆଉ ସରଳ ଭାବବ୍ୟଞ୍ଜନ ଭାଷା ମେଳରେ ବଢି ଥାଏ ମୁଁ—ତେଣୁ ପ୍ରଥମେ ପ୍ରଥମେ ମୁଁ ବୁଝିପାର ନ ଥାଏ— "ଭୟଙ୍କର ମଜ୍ଜା", "ଖାଇବାକୁ ମରଯିବା", " ଭୟଙ୍କର ଉଲ୍ଲାସ·········ଭଳ ଅର୍ଥ ଦଗରୁ ଏକାବେଳକେ ସାଂଗଠନକ ବିନ୍ୟାସ ବା ସଂଯୋଗ ରହିତ ଶବ୍ଦଗୁଡ଼ିକର ସଂଯୋଗ ନଥାଏ ସମାବେଶ । ମତେ ଲାଗୁଥାଏ ଯାହା କୌତୁକିଆ ଯାହା ମଜାର ତାହା କେବେ ଭୟଙ୍କର ହୋଇ ନପାରେ । ଆନନ୍ଦ କେବେ ଭୀଷଣ ହୋଇ ନ ପାରେ ଆଉ ସେ ଲୋକଗୁଡ଼ାଙ୍କର କ୍ଷୁଧାରେ ଏମିତ କିଛୁ ଦେଖି ନ ଥାଏ ଯାହା ସଙ୍କେତ ଦେବ ମୃତ୍ୟୁର ।

"ଏମିତ କଣ କହିବା ଠିକ ?" ମୁଁ ପଗୃରଥିଲି ସେମାନଙ୍କୁ ।

ମୋର ଚତୁର୍ଦ୍ଦିଗରେ ଦେଖୁଥାଏ ଗୋଟିଏ ହୃଦୟହୀନ ନିଷ୍ଠୁର ବଦମାସି କାରବାର । ବୀଭତ୍ସ ଅତ କୁତ୍ସିତ, ନିଲଜ୍ଜତା ତୁଳନାରେ କାହିଁ କେତେ ଅଧିକ ଯାହା ଦେଖିଥାଏ ମୁଁ କୁନାଭିନୋ ସହରର—ରାସ୍ତାରେ, ବସ୍ତିରେ—ସେହି ଯେଉଁ ସହରରେ ଅବାଧରେ ବୁଲୁଥାନ୍ତ ବେଶ୍ୟା ଆଉ ବ୍ରାଟ୍, ଲମ୍ପଟ ଆଉ ଧୂର୍ତ୍ତ, ଦଳକୁ ଦଳ, ସେଠି ସେଇ କୁନାଭିନୋର ଜଘନ୍ୟ ଆବର୍ଜନାର ଯାବତୀୟ ଜାଲ ଜୁଆଚୋରୀ ବଦମାସି ଓ ଅଭଦ୍ରତାର ପଛରେ ଧରା ହେଉଥାଏ ବେଶ୍ ଥାଏ ଏଭଳି କିଛୁ ଯାହା ସ୍ପଷ୍ଟକରି ଦର୍ଶାଇ ଦେଉଥାଏ—ସେହି ଆବର୍ଜନା ସେହି କଦର୍ଯ୍ୟ ବଦମାସି ଅନିବାର୍ଯ୍ୟ ଅବଶ୍ୟମ୍ଭାବୀ ଥାଏ ସେଠି ଅହୋରାତ୍ର ।

ଅତ ଦୁଃଖରେ ଥାଏ ମୁଁ—ଆତୁର ଝରାପ ହୋଇ ଉଠୁଥାଏ ମନଟା – ମୋର ଆଇମା ଯେଉଁଦନ ପହଞ୍ଚିଯାଏ ଆସି ମତେ ଦେଖିବା ପାଇଁ, ସବୁଥର ସେପରେ ପଶୁଥାଏ ପଛ ବାଟ ଗଳ କବାଟ ବାଟରେ । ବୁଅଙ୍କ ପଟଛବ ଆଗରେ ନକ୍ରୁଶ- ଚହ୍ନ ଆଙ୍କିଲା ପରେ ଶୂନ୍ୟରେ, ନିଜର ଶ୍ରେଷ୍ଠ ଭଉଣୀ ଆଗରେ ଓଲଗି ହେଉଥାଏ ଅଣ୍ଠାରୁ ନଇଁ ପଡ଼ି ପୂରାପୂରି । ତାର ଏହି ଦଣ୍ଡବତଟା— ତାର ଏହି ନୁଆଁଣିଆ ଭଙ୍ଗୀର ଓଲଗିଟା ମତେ ଯେମିତ ଦାବି ପେଲିଦେଇ ମାଟିରେ ମିଶାଇ ଦେଉ- ଥାଏ ଗୋଟାଏ ବହୁ ମହଣିଆ ଓଜନର ଜନିଷ ଭଳି ।

"ଓ ! ତୁ ? ତୁ ତେବେ ? ଆକୁଳନା !" ମୋର ମାଲିକାଣୀ କହି ଉଠେ ଏମିତି ଉପରଠାଉଆ ଉଡ଼ାଣିଆ ହେମାଳିଆ ଭଙ୍ଗୀରେ ।

ଆଇମାର ଗତିବିଧିରୁ ସେତେବେଳେ ତାକୁ ଯେମିତି ଚହ୍ନିପାରେ ନାହିଁ ମୁଁ—ଆଇ ମା ମୋର ନ ଥାଏ ମୋ ସାମନାରେ । ଏମିତି ବିନୟରେ, ଏତେ କାକୁସ୍ତ ହୋଇ ଓଠ କାମୁଡ଼ି ଛିଡ଼ାହୁଏ ସେ—ସେଥିରେ ବଦଳିଯାଏ ତାର ମୁହଁର ସମୁଦାୟ ଚେହେରା, ତାର ସମଗ୍ର ସ୍ୱାଭାବିକ ଆକୃତିଟା । ଦୁଆରମୁହଁରେ ମଇଳାପାଣି, ବାଲ୍‌ଟି ପାଖ ବେଞ୍ଚରେ ଥରକାନ ବସିପଡ଼େ ସେ—ତୁନିହୋଇ ବସି ରହେ ସତେ ଯେପରି ଗୁରୁତର ଦୋଷରେ ଅପରାଧିନୀ ସେ । କିଛି ଯଦି ପଚାରେ ତାର ଭଉଣୀ—ମେଣ୍ଢାଛୁଆଟି ଭଳି ଏକାବେଳକେ ରେମେଇ ଯାଇ ଭୟରେ ବିନୟରେ ଯାହା ଉତ୍ତର ଦିଏ ସେ ।

ଏଥିରେ ଦେହ ଜଳିଯାଏ ମୋର, ଏହାର ପ୍ରତିବାଦ କରି ରାଗରେ କହି ଉଠେ ମୁଁ—

"ସେଠି କାହିଁକି ବସିଚୁ ତୁ ?"

"ଆରେ ପାଟିକର ନାରେ, ବାପ ! କହନାରେ କିଛି ! ତୁନି ରହ ! ତୁ ତ ଆଉ ମାଲିକ ନୋହୁ ଏଠି ।" ମନକୁ ଦେଖନାଲି ଭଳି—ପ୍ରଖର ପକା ସ୍ୱରରେ ଉତ୍ତର ଦିଏ ସେ—ଉତ୍ତର ଦିଏ ସେ କ ଗମ୍ଭୀର ବାହ୍ୟାଚର ଟିକେ ଆଖି ମାରିଦେଇ ସତେ !

"ସବୁବେଳେ, ସବୁବେଳେ ଏ ଟୋକାଟା ନାକ ଗଳେଇବ ସବୁଥିରେ ଯେଉଁଠିକି ତାର କିଛି ଅଧିକାର ନାହିଁ, ତମେ ତାକୁ ଯେତେ ଗାଳିଦିଅ, ଯେତେ ଶୋଧ, ଯେତେ ବେତରେ ଛୁଆଇ ଦିଅ ପଛେ !" ଅଭିଯୋଗ ଫର୍ଦ୍ଦଟା ଆରମ୍ଭ କରି ଗାଉଁକନ ହୁଏ ମାଲିକାଣୀ ।

ବେଳେବେଳେ ପୁଣି ନିଜ ବଡ଼ଭଉଣୀ, (ଆଇମା)କୁ ତାର ହିଂସୁକୁଟିଆ ଙ୍କିତରେ, ସ୍ୱର ବଙ୍କେଇ ଛିଛିଆ କରି କହେ—

"ହଁ ଲୋ, ତୁ ତେବେ ଭିଖାରୁଣୀଟା ହେଲୁଣି ନାହିଁ—ଏଃ ।

"ସେମିତି କିଛି ମନ୍ଦ କଥାଟାଏ ନୁହେଁ ତ !"

"ହଁ ତା କାହିଁକି ହେବ—କୋଉଟା ତ ସରବନାଶିଆ ସତିଆନାଶିଆ ନୁହେଁ—ନିଲଜିଆ ହୋଇଥାଉ ପଛେ । ଲଜ ସରମ ନଥାଉ ପଛେ ସେଥିରେ !"

"ସେମାନେ କହନ୍ତି ପରା ଯେ ଯୀଶୁଖ୍ରୀଷ୍ଟ ତ ପୁଣି ଦୁଆର ଦୁଆର ବୁଲି ଭିଖ ମାଗୁଥିଲେ !"

"ମୋଟା ବୁଦ୍ଧିଆ ବୋକା ଧରମନାଶିଆ ଅବଶ୍ୱାସୀ-ଗୁଡ଼ା କହନ୍ତି ଏମିତି—ଆଉ ତୁ ତାକୁ ଶୁଣୁ କାନଦେଇ ଶୁଣ—ବୁଢ଼ୀ ହେଲୁଣି—ବୁଦ୍ଧି ସୁଦ୍ଧି ହେଲା ନାହିଁ ତ !" ଏଡ଼ିକି ଓଲିଟାଏ ତୁ ! ଯୀଶୁ ତ ଭିଖାରୀ ନଥିଲେ ମାଗନ୍ତା କାଙ୍ଗାଳ ନ ଥିଲେ । ସେ ଥିଲେ ମହାପ୍ରଭୁଙ୍କ ପୁଅ—ଆପୁଛନ୍ତି ସେ, ବୁଝିଲୁ—

ଲେଖା ହୋଇଚ ପରା—ଆପୁଛନ୍ତି ସେ ସମସ୍ତଙ୍କୁ ବପ୍ପୁର କରବେ ଲୋ କ ଜଅନ୍ତା କ ମଲା—କ ଧୁରୁଗୁରୁଥା କ ମଠୁଆ ନବୁଁଦ୍ଧିଆ ସମସ୍ତଙ୍କୁ—ମଲାଙ୍କୁ ବ, ବୃଝୁଚୁଟି ! ତାଙ୍କ ଆଗରୁ ପାରଭଭାବ ହୋଇଯିବୁ, ଲୁଚଛପି ରହିଯିବୁ—ଅଲୋ, ନାହିଁ ଲୋ ଏମିତକ ନକେ ପୋଡ଼ଜଳ ପାଉଁଶ ହୋଇଗଲେ ବ ନୁହେଁ । ସେ ଠିକ ତଚେ ଆଉ ଭ୍ୟାସିଲକ—ଠିକ୍ ପାଉଁଶ ଦେବେ ତମର—ଏମିତ ବଚେଇ ଲାଗି ତମର ମଚେ ତଡ଼ ଦେବା ଲାଗି ଏମିତ । ମନା କଣ ଦେବା ଲାଗି ଏମିତ । ମୁଁ ଯେତେବେଳେ ଆପୁଛୁ ସାହାଯ୍ୟଟିକେ ମାଗିବାକୁ—ଇସ୍ ଲୋ, କ ଗୁଲୁରଆ କ ବଢିଆ ଧନୀ ବଡ଼ଲୋକ ବନ୍ଧୁବାନ୍ଧବଗୁଡ଼ାକ ମୋର !”

“ଯାହା ପାଂଶଚ କଣଛୁ, ତୋ ପାଇଁ ସବୁବେଳେ,”—ଟିକଏ ହେଲେ ଚହଲ ନ ଯାଇ, ଅଧୀର ନ ହୋଇ ଉତ୍ତର ଦେଲ ଆଇମା—“କନୁ ଠାକୁରେ ତ କାହିଁକ କେଜାଣି ଆମ ସମସ୍ତଙ୍କୁ କଷ୍ଟ ଦେବାକୁ ଖୋଜୁଛନ୍ତି ଲୋ ।”

“ତୋ ପାଇଁ ହେଉନ ଲୋ ଯଥେଷ୍ଟ—ବହୁତ ହେଉନ !”

“ଆଇମା ଭଉଣୀଟାର ସେଇ ପାଟିଟା - ଯାହା କେବେ ଥକ୍ୟ ପଡ଼େନାହିଁ, ହୁଟିଯାଏ ନାହିଁ ଦକ ବକ, ସେଇଥିରେ ସେ ଆଇମାଙ୍କୁ ଗୁରୁକ୍ ମାଣ ମାଣ ଯେମିତ ଗ୍ୱେପା ଛଡ଼େଇ ଦଏ । ତାର ସେଇ କୁତ୍ସିତ କାଉଁ କାଉଁ ଭୁକାଟା ଶୁଣି ଶୁଣି ଭାବେ, ଅଧୈର୍ଯ୍ୟ ହୋଇ ଭାବେ, ଆଇମା ତାକୁ ସବୁ ସହେ ବରଦାସ୍ତ କରେ କେମିତ । ମୁହୂର୍ତ୍ତିରେ ମୁଁ ତାକୁ ଯେମିତ, ଆଇମାକୁ ଭଲ ପାଇପାରେନାହିଁ, ପସନ୍ଦ କଣପାରୁରେ ନାହିଁ ।

ଏହିଭଳ ଘଟଣାବେଳେ ଥରେ ସାନ ମାଲକାଣୀ ପଶି ଆସିଲ ଘର ଭିତରକୁ ଆଉ ମୁଣ୍ଡ ଟୁଙ୍ଗାଣ ଲଗିଲ ବଡ଼ ଆସନରୁ ଓହ୍ଲାଇ ଆସି ଶ୍ରେଷ୍ଠ ଅତଞ୍ଚଳ ଲୋକକୁ ଦସ୍ତୁ ଦେଖେଇବା ଯେମିତ ।

“ଆସ, ଖାଇବା ଘରକୁ ଆସ ! ହେଲ, ଯାହାହେଲ—ବେଶ୍ ଅସ ମ ସିଧାସିଧା ଆସ !”

“ପାଦ ଦଇଟି ପୋଛୁ ପୋଛୁ ସଫାକଣ ଯା’ଲୋ—ପୋପଗ୍ୱଷିଆ ହାଡ କଙ୍କାଲଟି ମୋର ଧୋବଡୀଟା ଆଲୋ !” ଆଉ ଗୁଲ ଯାଉଁ ଯାଉଁ ପାଟିକଣ ଉଠିଲ ବୁଢ଼ୀ ମାଲକାଣୀଟା ।

ମାଲକ କନୁ ଖୁବ୍ ଫୁର୍ତ୍ତିରେ ନମସ୍କାର କଲେ—ଭେଟିଲେ, ଆଦର କଲେ ଆଇମାକୁ ।

“ଆରେ ରୁଷିପଣ ମୋର ଆକୁଲନା ମାଉସୀ ଯେ ? କେମିତ ଅଛୁ ମ ? ବୁଢା ମଉସା କ୍ୟାଣିରନ୍ ହାତଗୋଡ ଗ୍ରୁଟି ଗୁଲବୁଲ କରୁଚ, ଏ ପର୍ଯ୍ୟନ୍ତ ବଞ୍ଚିଚଟି ?”

ଆଇମା ତାର ସବୁଠୁ ବଲ ହୃଦୟଭରା ହସଟିଏ ହସିଲା ।

“ଏବେ ବ ଖାଲନାଲ ହେଉଚ ? ଫେଟୁଚୁ ଏମିତ ?”

"ହଁ ମ, ଖଟିଯାଉଚ ତ ଖଟୁଚ ! କଏପାଟାଏ ପର !"

ପ୍ରଗାଢ଼ ଆନ୍ତରିକତା ଆଉ ଗଭୀର ବାତ୍ସଲ୍ୟର ସହିତ ତାଙ୍କ ସଙ୍ଗେ କଥାବାର୍ତ୍ତା ହୁଏ । ତାଙ୍କୁ ଦପଦ କହୁ କୁହେ ଆଇମା—କହେ ପୁଣି ମାନ୍ୟଗଣ୍ୟ ବୟସ୍କ ଲୋକଙ୍କ କହିଲାଭଳି । ବେଳେବେଳେ ମାଲିକଙ୍କର ପାଖିଛୁ ବାହାରପଟେ ମୋର ମାଆ ବୟସ୍କ ନା :

"ହୁଁ—ମାଆ ! ଭ୍ୟାରଷଗ୍ର ଭ୍ୟାସିଲୟେଭନା ! କି ମାଇପିଟାଏ, ସାତ୍ଦମତ ଚଣ୍ଡୀ, ରଣରଙ୍ଗୀନିଟାଏ ! ବାପରେ ବାପ !"

"ମନେଅଛୁ ନା—ମୁଁ ଦେଇଥିଲି ସେ ଡିଲି ପୋଷାକଟା—କଳା ସିଲ୍କର । ମାଳମାନ ଗୁନ୍ଥା ହୋଇଥିଲା ସେଥିରେ ।" ମଝିରେ ମୁହଁ ପୂରେଇ କହିଉଠିଲା ତାଙ୍କ ଘରଯା—, ଆଇମା ଆଡ଼କୁ ଆଖି ଢଳେଇ ଟିକଏ—

"ହଁ ଲୋ, ପ୍ରକୃତରେ ତ ! ଦେଇଛୁ ତ !"

"ଭଲଟାଏ, ନୂଆ ଥିଲା, ଅରଖ ନୂଆ ଥିଲା ନା !"

"ହୁଁ, ପୋଷାକ ପତର, କେଉଁକଟର—ଜୀବନଟାଯାକ ଟାହିଟାପରାର ଝାଟ୍ ଖଡର ।" ମନକୁ ମନ କହିହେଲେ ମୋ ମାଲିକ ।

"କଣ କହିଲ—କଣ ?" ସନ୍ଦେହରେ ନାକ ଫୁଲେଇ ପଚାରିଲା ତାଙ୍କ ଘରଯା ।

"ଓ, ନାଇଁ, ନାଇଁ—କିଛୁ ନାହିଁ, କିଛୁ ନୁହେଁ—କିଛୁ ନୁହେଁ—"ଖୁସିବାସିଆ ସୁଖର ଦିନଗୁଡ଼ାକ ଗୁଲିଯାଉଛୁ—ସେମିତ ଗୁଲି ଯାଉଛନ୍ତି ଭଲ ଭଲ ସୁନ୍ଦର ଲୋକଗୁଡ଼ାକ ।"

"ତୁମେ କାହିଁକି—ଦୁନିଆରେ ତୁମେ କାହିଁକି ଏମିତ କହୁଛ ଯେ । କହିବାଟା କଣ ଉଚିତ ?" ଉଦ୍‌ବେଗର ସହ କହିଲା ତାଙ୍କ ଘରଯା !

ପରେ ନୂଆ ଉଦ୍ଧଆଣୀ ଛୁଆଟିକ ଦେଖାଇବା ଲାଗି ସେମାନେ ତାଙ୍କ ନେଇଗଲେ ଆଇମାକୁ—ମୁଁ ରହିଗଲି ଗୁହା କପ୍ ଥାଳିଆ ସଫା କରିବାରେ । ଟେବୁଲ ଉପରୁ ନେଇଯିବାରେ ।

"ଚମତ୍କାର ବୁଢ଼ୀଟିଏ—ସେଇ ଆଇମା ମ ତୋର !"—ମାଲିକ ମୋର କହିଲେ ମତେ ଥରି ଥରି କରି, ନ ଶୁଣିଲାଭଳି କେହି କେମିତ ସ୍ୱପ୍ନାଛନ୍ନ ଭାବରେ ।

ମନଟା ମୋର କୃତଜ୍ଞତାରେ ଭରିଉଠିଲା ତାଙ୍କ ପ୍ରତ—ତାଙ୍କର ଏଇ କଥା କେତେଭୋଟି ଲାଗି । ଆଇମାକୁ ଏକୁଟିଆ ପାଇଲି ଯେତେବେଳେ ବ୍ୟଥିତ ହୃଦୟରେ କହିଲି ତାକୁ—

"ତୁ ! ତୁ କାହିଁକି ଆୟୁ ଏଠିକି ? ଦେଖୁନୁ କ'ଣ ଏ ଲୋକଗୁଡ଼ାକ କେମିତ ?"

"ବାପରେ, ଆଲିଯୋସାରେ ଦେଖୁଚ ମୁଁ, ସବୁ ଦେଖୁଚ, ସବୁ ବୁଝୁଚ, ବାପ !" ଉତ୍ତର ଦେଲା ସେ—ସେ କ ଉପର ସ୍ନେହମୟ ହସଟିକେ ଖେଳ ଝଲସି

ଉଠିଲା ତାର ସେଇ ଚମତ୍କାର ମୁହଁଟିରେ—ଉତ୍ତର ଦେଲା ସେଇ ହସଟିକରେ ଏକଲସ୍ୱରେ ଅନେଇ ରହି ମତେ—ଆଉ ଲାଜରେ ଦୁଃଖରେ ସଢ଼ି ଗଲି ମୁଁ — ସେ ଯେ ଦେଖିପାରୁଥିଲା, ବୁଝି ପାରୁଥିଲା, ସବୁ, ଜାଣିଥିଲା ସବୁ—ଏମିତ କ ଜାଣି ପାରୁଥିଲା କଣ ଘଟୁଥିଲା—କଣ ଘଟୁଥିଲା ମୋ ଭିତରେ—ସେଇ ମୁହୂର୍ତ୍ତିରେ ।

ତରକକର ସାବଧାନରେ ଟିକେ ଚାହିଁଦେଲା ଘରଆଡ଼କୁ—ଦେଖିଲା କିଏ କୋଉଠି ଅଛ କ ନାହିଁ । ତାପରେ ମତେ କୋଳକୁ ଜାକନେଇ, କୁଣ୍ଢେଇ ଗେଲକର ଆବେଗରେ ଭବବହ୍ୱଳ ହୋଇ କହିଗଲା :

"ହଁଅରେ, ମୁଁ କାହିଁକ ଆସନ୍ତି ରେ ଏଠିକ—ଆସନ୍ତାନ କେବେହେଲେ । ଖାଲି ତୋର ପାଇଁକରେ—ଏମାନଙ୍କ ସାଙ୍ଗରେ କଣ ଅଛିରେ ମୋର ? ଆଉ ତା ପରେ ବ କେଣେ ଅଜାବୁଢ଼ା ବାଧକ ପଡ଼ିଛନ୍ତି କେତେଦନ ହେଲା । ଅଜାଙ୍କର ଦେହ ଭଲ ରହୁନାହିଁ, କେତେଦନ ହେଲା ତାଙ୍କର ପିଚ୍ଛରେ ଲାଗିଛି, ତାଙ୍କ ପାଖରେ ନହରପହରରେ ବେଳ ଯାଉଚ ମୋର—କାମ କର ପାରୁନ କଛି । ଏଣେଥିପାଇଁ ପଇସାପଇ ବା ପାଇବ କୋଉଠୁ ଆସିବ କୁଆଡ଼ୁ ? ଆଉ ସେ ପୁଅ ମିଖାଇଲେ' ମ—ବାହାର କରଦେଲ 'ମାଆକୁ'—ଏଣୁ କଣ କରନ୍ତି କହିଲୁ— ଡାକୁତ ମୁଠାଏ ଖାଇବାକୁ ପିଇବାକୁ ଦେବାକୁ ପଡ଼ୁଛି ପୁଣି । ଏମାନେ ତ କଥା ଦେଇଥିଲେ ବର୍ଷକୁ ଛଅଟି ଟଙ୍କା ଦେବେ ବୋଲି ମତେ—ତେଣୁ ଭାବିଲି ମନକୁ ମନ, ହୁଏତ କହିଲେ ବୋଲିଲେ ନକୁହୁଅରେ ଗୋଟାଏ ଝଣ୍ଟେ ଟଙ୍କା ଦେଇ ପାରନ୍ତି, ଅଧ ବରଷ ପ୍ରାୟ ହୋଇଗଲାଣି କାମ କଲୁଣି ଏଠି, ନାଇଁ ? ଟିକିଏ ଟାଳିପଡ଼ି ଆଗକୁ ଗୁନ ଗୁନ କର କହିଲା ମୋ କାନରେ—"କଣ କହିଲେ ଏମାନେ ଜାଣିବୁ ! କହିଲେ—ମୁଁ ତତେ ଗାଳିଦଏ, ଶୋଧେ । କହିଲେ ଖର ଅମନଥା ଭୁ, କୁହାର ବୋଲର ନୋହୁ ! ଆଉ ଟିକିଏ ନାକୁ ଚେଷ୍ଟା କଲେ ଥାକ ଯାଆନ୍ତୁ ଏଠି, ମୋ ପାଗଟି, ମୋ ଶୁଆଟି ପରି—ବର୍ଷେ ଦବର୍ଷ ମୁହଁମାଡ଼ି ସହି ଯାଆନ୍ତୁ ସବୁ—ଗୋଡରେ ବଳହେବା ଯାଏ ତୋର—ଟିକିଏ ଉଡ଼ି ଶିଖିବା ଯାଏ...... ରହିବୁ ତ ଚେଷ୍ଟାକର ?"

କଥା ଦେଲି ରହିବବୋଲି । କିନ୍ତୁ ଭାରି କଠିନ, ଭାରି କଠିନ ଥିଲା ସେଇଟି—ସେଥିନେଇ ଭାଙ୍ଗି ପଡ଼ୁଥାଏ ମୁଁ, ମାଟିରେ ମିଶି ଯାଉଥାଏ ମୁଁ, ପେଷିହୋଇ ଦାବହୋଇ ସେଇ ଅତି କଦର୍ଯ୍ୟ ଦୁଃଖମୟ ଦୁର୍ଦ୍ଦଶାମୟ ବିରକ୍ତିକର ମୋର ସେଠି ରହିବା, ଭୋରରୁ ରାତି ଅଧଯାଏ ପେଟପାଇଁ ଲହୁଲୁହାଣ ହୋଇ ଖଟି ଖଟି ସର ଯାଉଥାଏ ମୁଁ—ସତେ ଯେମିତ ରହିଥାଏ, କାଳ କାଟୁଥାଏ ଗୋଟାଏ ଦୁଃସ୍ୱପ୍ନରେ ! ଯେମିତ ।

ବେଳେବେଳେ ସମ୍ଭାଳି ପାରୁ ନ ଥାଏ, ଆଉ ମନ ହେଉଥାଏ—ଲୋଭ ଆସୁଥାଏ—ପଳେଇବି, ଛୁଟିଯିଟି ହୋଇ ପଳେଇବି କୁଆଡ଼େ । କିନ୍ତୁ ସବନ.ଶିଆ ଜାଡ଼ଦିନଟା ଅଭିଶାପଭଳି ପହଞ୍ଚି ଯାଇଥାଏ ଚରମରେ—

ରାତିରେ ମଞ୍ଜିଥରାଇ ହୁ ହୁହୋଇ ବହୁଥାଏ ହେମାଳିଆ ବରଫ-ପବନଟା ଛାତ ଉପର ଟିଣରେ କଇଁ କଇଁ ସଇଁ ସଇଁ ହୋଇ କାନ୍ଦୁଥାଏ, କାନ୍ଦୁଥାଏ ସେ କରୁଣ ସ୍ୱରରେ ପବନଟା । ହେମାଳର କବଳରେ ଯାପି ହୋଇ, ଚପିହୋଇ କେଁ କେଁ ହେଉଥାଏ ବରଗାଗୁଡ଼ାକ କେମିତି । କେମିତି ବା ପଳାଇ ପାରିଥାନ୍ତି ମୁଁ, କେମିତି ?

ମତେ ଖେଳିବାକୁ ଯିବାପାଇଁ ଛାଡ଼ୁ ନ ଥାନ୍ତି ସେମାନେ, ଅନୁମତି ମିଳୁ ନ ଥାଏ କେବେହେଲେ, ପ୍ରକୃତରେ ମୋର ବା ସମୟ ଥାଏ କୋଉଠି ? ଶୀତଋତୁର ଛୋଟଦିନଗୁଡ଼ିକ, ବିଜୁଳିଭଳି ଆସି ଚାଲିଯାଉଥାଏ ଏଣୁତେଣୁ କେତେ ଛୋଟିଆ ମୋଟିଆ କାମରେ ।

ତେବେ ମୁଁ ବାଧ ହେଉଥାଏ ଗିର୍ଜାକୁ ଯିବାପାଇଁ—ଶନିବାର ଦିନ-ଗୁଡ଼ିକରେ ସଞ୍ଜବେଳର ପ୍ରାର୍ଥନାକୁ । ଆଉ ରବିବାର ଦିନ ଉତ୍ସବିଆ ପୂଜାପୁଜି ଭଜନ କୀର୍ତ୍ତନକୁ ।

ଭଲ ଲାଗୁଥାଏ—ମନକୁ ପାଉଥାଏ ମୋର, ଗିର୍ଜାକୁ ଯିବାଟା ! ଗିର୍ଜାକୁ ଯାଇ ଆଗ ବାଛି ଦେଖିସାରିହିଁ ଠିକ୍ କରି ନେଉଥାଏ ଗୋଟାଏ ଅନ୍ଧାରିଆ, ନିର୍ଜନ କଣ, ସେଠି ତନ୍ମୟ ହୋଇ ଦେଖୁଥାଏ ପାଷାଣ ଫଳକରେ କି ଗିର୍ଜା ଦେହରେ ଥାଏ ଯେଉଁ ପ୍ରତିମାଗୁଡ଼ାକ—ଶ୍ରଦ୍ଧାରେ ନଇଁ ଆସୁଥାଏ ହୃଦୟଟି ମୋର । ସେହି ମୂର୍ତ୍ତିଗୁଡ଼ିକ ଦୂରରୁ ଠିକେ ମନେହେଉଥାଏ ସତେ ଯେପରି ଅହରହ ତରଳିବାରେ ଲାଗିଛି । ପଥର ଚଟାଣ ଉପରେ ସହସ୍ର ସୁନେଲି ଧାରରେ ଖେଳେଇ ହୋଇ ପ୍ରଶସ୍ତ ଆକାରରେ ବୋହିଯାଉଛି ଯେଉଁ ମହମବତୀର ଆଲୋକ ତାହାର ଦୀପ୍ତିରେ, ଲାଗୁଥାଏ ଧୀରେ ଧୀରେ ସୂକ୍ଷ୍ମରେ କେଡେ ସ୍ନିଗ୍ଧ ଭାବରେ ଚଞ୍ଚଳ ହୋଇ ଉଠୁଛି । ସ୍ତମ୍ଭଛାନ୍ତ ମୂର୍ତ୍ତିଗୁଡ଼ିକ କେଜାଣି କେତେ ଦିଅଁ ଦେବତା ଆଉ ରାଜଫାଟକରେ ଯେଉଁ ସୂକ୍ଷ୍ମ କାରୁକାର୍ଯ୍ୟ ସୁନାର, ସେଥିରେ ପ୍ରତିବିମ୍ବିତ ହୋଇ ଉଠୁଛି ସ୍ଫୁଲିଙ୍ଗ ଭଳି ଆନନ୍ଦର ଝିଲିମିଲି ଝିଲିରଗୁଡ଼ିକ । ସତେ ଯେପରି ନୀଳ ବାଷ୍ପର କୁଣ୍ଡଳରେ ସୁନେଲି ଭ୍ରମର ଭଳି ରହି ରହି ଝୁଲୁଚି ମହମବତୀ ସବୁ—ତରୁଣୀ ରମଣୀଗଣର ମସ୍ତକଗୁଡ଼ିକ ଫୁଲର ସ୍ତବକ ସବୁ ସେଥିରେ ।

ବେଳେବେଳେ ମନେହେଉଥାଏ, ଗୀର୍ଜାଟି ବୁଡ଼ି ରହିଥାଏ ଯେମିତି ନିମଜ୍ଜିତ ହୋଇ ରହିଛି ଗୋଟାଏ ହ୍ରଦ ଭିତରେ—ଦୃଷ୍ଟିର ଅନ୍ତରାଳରେ ପୃଥିବୀର—ଯେମିତିକି ଏହାର ଜୀବନ ଧରି ରହିପାରିବ ବିଚ୍ଛିନ୍ନ ଭାବରେ-ଅନ୍ୟାନ୍ୟ ଜୀବନଠାରୁ ସ୍ୱତନ୍ତ୍ର ହୋଇ । ଖୁବ୍ ସମ୍ଭବ ଏ ଧାରଣା ମୋର ଜନ୍ମିଥିଲା—

ଆଉମାର ଗପରୁ, ଧନରତ୍ନ ମଣିମାଣିକ୍ୟରେ ଜଗଣ୍ଣ······କାହାଣୀରୁ । ଅନେକ ସମୟରେ ମୁଁ ଯେତେବେଳେ ଝୁଲୁଥିଲି ତନ୍ଦ୍ରାରେ, ଝୁଲୁଥିଲି ମୋର ପରିବେଶରେ ଭଜନ ଆଉ କୀର୍ତ୍ତନରେ—ଥିରି ଥିରି ଚପା ଚପା ଗଳାର ପ୍ରାର୍ଥନାରେ ; ଆଉ ଭକ୍ତ ପୂଜକମାନଙ୍କର ଦୀର୍ଘଶ୍ୱାସରେ ଉତ୍ଥାନ ପତନର ଶବ୍ଦରେ ଆଚ୍ଛନ୍ନହୋଇ ନିଜ ପାଖରେ ନିଜେ ମୁଁ ବାରମ୍ବାର ଗାଇ ଉଠୁଥିଲି—ସେଇ ବିଷଣ୍ଣ ଆଉ କରୁଣ ସୁରଲୟରେ ଲୀଳାୟିତ ଗାଥାଟି :

ଆସିଲେ ତାତାର କୁଳ ଆସିଲେ ଦଳକୁ ଦଳ ବର୍ବର ସଙ୍କୁଳ,
ଆସିଲେ ଅଶ୍ୱରେ ଚଢ଼ି ଛୁଟାଇ ଅଶ୍ୱ ସଶସ୍ତ୍ର ପ୍ରବଳ
ଘେରିଗଲେ ଆସି ଖରେ ରମଣୀୟ କନ୍ଭେଣ୍ଟ-ଜଗଣ୍ଣ
ପବିତ୍ର ମୁହୂର୍ତ୍ତେ ସେଇ ପ୍ରଶାନ୍ତ ସଙ୍ଗୀ···ପୁଣ୍ୟ ପ୍ରାର୍ଥନାର
ହେ ବିଶ୍ୱଦେବତା, ଖ୍ରିଷ୍ଟ ! ପ୍ରାଣର ପ୍ରାଣ ହେ—
ହେ ଯୀଶୁଜନନୀ ମେରି,
ହେ ଶୁଦ୍ଧଚରିତା ଆଗୋ କୁମାରୀ ସୁବନ୍ଦ୍ୟା !
ଆବିର୍ଭୂତ ହୁଅ ଥରେ ସହାୟ ସକାଶେ ।
ଜଗତପିତାଙ୍କର ଯେତେ ଦାସାନୁଦାସର
ସହାୟ ହୁଅ ହେ ଆସି ବିଭୁଙ୍କ ଚରଣ ମୂଳେ—
ଦାସାନୁଦାସର ସବୁ—
ପାରନ୍ତି ଯେପରି ସବୁ ନିର୍ବିରୋଧେ ଶାନ୍ତିରେ—
ସେମାନେ ତାଙ୍କ ଆରାଧନା
ପିଅନ୍ତୁ ଆକଣ୍ଠ ପୁଣି ତୁମ ପୁଣ୍ୟବାଣୀ ପ୍ରଭୁ !—
ବିନୟ ସଂଭ୍ରମେ ।

ନୋହୁ ଅପବିତ୍ର ନୋହୁ ମନ୍ଦିର ଭୂମିର
ନୋହୁ ବିଦଳିତ ନୋହୁ ଲଙ୍ଘିତ ନୋହୁ କୁମାରୀ ସତୀତ୍ୱ
ନିହତ ନୁହନ୍ତୁ ଯେତେ ସରଳ ଶିଶୁଏ
ସ୍ଥବିର ଅଥବା ଯେତେ ନୁହନ୍ତୁ ଆହତ······
ତାପରେ ସେ ମହା 'ବିଦ୍ରୋହ' ପ୍ରଶ୍ନେ
କଲ୍ୟାଣ ବର୍ଷିଣୀ ସେଇ କୁମାରୀ ନିର୍ମଳ ଚରିତା
ଆଲୋଡ଼ିତ ହୋଇ········
ଭୟାବହ ସୁକରୁଣ ଶୋକାର୍ତ୍ତ ବିଳାପେ
ଉଦ୍ବେଳିତ ହୋଇ ଏହି ଗୀର୍ଜାର ବିଷାଦଭରା ଅତି—

ପ୍ରାର୍ଥନାରେ ଆର୍ତ୍ତି ନିବେଦନେ ।
ଉଷିଲେ ଗଦ୍‌ଗଦେ ତହୁଁ ମହାନ......
ଶ୍ରେଷ୍ଠ ଦେବଦୂତେ ସେଇ ସୁପାବନ ମାଇକେଲ ସମୀପେ
ଯାଅ ଅବତର ଯାଇ ମାନବ ଭୂମିରେ ଯାଅ ମାଇକେଲ
ଅସ୍ରଅ ମୃତ୍ତିକା ତଳୁ କଢେଇ ନଗରୀଟିର
ପ୍ରଳୟ ପ୍ଲାବନେ ବୁଡ଼ି କଢେଇ ନଗରୀ
ତାପରେ ଭଗବତ୍ ସକଳ
ରଚିବେ ପ୍ରାର୍ଥନା ବସି ସନ୍ତୋଷ୍ଟ ହୃଦୟେ
ରଚିବେ ପ୍ରାର୍ଥନା ସବୁ ଅବିରାମ-ରଚିବେ
ପ୍ରାର୍ଥନା ପୁଣି ଅଶ୍ରାନ୍ତ ସତେ
ପ୍ରଭାତୀ କୀର୍ତ୍ତନଠାରୁ ସାନ୍ଧ୍ୟ ଉପାସନା ଯାଏ ସଙ୍ଗୀତୁ ସଙ୍ଗୀତେ
ପୂଜନ ନୈବେଦ୍ୟ ସବୁ—
ବର୍ଷ ପରେ ବର୍ଷ ଧରି—ଯାବତ ଚନ୍ଦ୍ରାର୍କେ.....ବିଶ୍ୱ ବଳର—
ଏ ସମାପ୍ତି ଘଟନ ନାହିଁ ।

ସେହି ସମୟରେ ଆଇମାର ଗାଥା ଭେଦି ଯାଇଥାଏ ମନରେ ମୋର, ଶିରରେ ଶିରରେ – ଲଖି ଯାଇଥାଏ ପାନିଆରେ ମହୁଭଳି । ଏବେ ଲାଗୁଛି— ଏମିତିକି ମୋର ଭାବନାର ଧାରା ମଧ୍ୟ ଧରିଥାଏ ତାରି ଗାଥାର ଧାଞ୍ଚା ।

କେବେହେଲେ ମୁଁ ପ୍ରାର୍ଥନା କରି ନାହିଁ ଗିର୍ଜାରେ— ଅଜାଙ୍କର ସେଇ ସ୍ୱଗରେସ୍ଥ ଅସୂସ୍ଥାର ପ୍ରାର୍ଥନା ଆଉ ସେଇ ନିରାନନ୍ଦ ଶୋକାର୍ତ୍ତ ସ୍ତବସ୍ତୁତିଗୁଡ଼ିକୁ । ଆଇମାର ଠାକୁରଙ୍କ ପାଖରେ ଆହ୍ଡ଼େଇବାକୁ କେମିତି ସଙ୍କୋଚ ଆସୁଥାଏ ମନରେ—କୁଣ୍ଠିତ ହେଉଥାଏ ମୁଁ । ଧାରଣା କରି ନେଇଥାଏ ମନରେ— ଆଇମାର ଠାକୁର ନିଶ୍ଚୟ ସେଗୁଡ଼ିକୁ ଭଲ ଲାଗୁ ନ ଥାଏ ମତେ । ତା'ଛଡ଼ା ସେଗୁଡ଼ିକ ଛପା ହୋଇଥାଏ ବହିରେ । ଯାହାର ଅର୍ଥ-ଭଗବାନ ; ଠାକୁରଙ୍କର ସେଗୁଡ଼ାକ ତ ନିଶ୍ଚୟ ମୁଖସ୍ଥ ଥିବା— ଯେ କୌଣସି ସାକ୍ଷର ପାଠୁଆ ଲୋକପରି ସେ ଜାଣିଥିବେ ସେଗୁଡ଼ିକୁ ।

ଏହି ହେତୁରୁ ହୃଦୟଟି ମୋର ଯେତେବେଳେ 'ସଙ୍କୁଚିତ' ହୋଇ ଆସୁଥାଏ ସ୍ନିଗ୍ଧ ବିଷଣ୍ଣ ଭାରେ, ଆତୁରତାରେ ଅଥବା ପ୍ରାଥମିକ ଶ୍ରେଷ୍ଟବଡ଼ ଘଟନାର ଦଂଶନରେ ଆହତ ହେଉଥାଏ, ମୁଁ ନିଜେ ନିଜେ ରଚନା କରୁଥାଏ ମୋର ପ୍ରାର୍ଥନା ସ୍ତବଗୁଡ଼ିକ । ବିଶେଷ କିଛି କରିବାକୁ ପଡ଼ୁ ନଥାଏ ମତେ । ମୋର ଯେଉଁସବୁ ଯେ କୌଣସି ଲୋକ ପାଖରେ ସବୁ ପ୍ରକାର ଈର୍ଷାର ଅତୀତ ଭାଗ୍ୟଟା—ସେହି ଭାଗ୍ୟଟି ବିଷୟ ଚିନ୍ତା କରିବା ମାତ୍ରେ ହିଁ ଶବ୍ଦଗୁଡ଼ିକ ଆପେ

ଆପେ ମିଳିଯାଉଥାଏ ମତେ, ଆପେ ଆପେ ରୂପବନ୍ତ ହୋଇ ଉଠୁଥାଏ ଯେପରି, ମୋର ବିନା ଚେଷ୍ଟାରେ ବିନା ଆୟାସରେ—

ମହାପ୍ରଭୁ ହେ। ମହାପ୍ରଭୁ ହେ। କେଡ଼େ ଅଭାଗା ମୁଁ, କେତେ ଅସୁଖୀ,
ମନହୁଏ ମୋର ହୋଇଥାନ୍ତି କି ବଡ଼ ମଣିଷଟି ନ ହୋଇ ଦୁଃଖୀ ।
କ୍ଷମାକର ମୋର ଅପରାଧସବୁ ନିଜକୁ ଦେଇମାଣ ଯେପରେ ମୁଁ ନିଜେ
ସହିଲିଣି ବହୁ, ଭୋଗିଲିଣି ବହୁ ସହିବନି ଆହା ଆଉ କେ କିନ
କେହି କିଛି ମତେ ଶିଖାଏ ନି ଏଠି ଶିଖାଇବେ ନାହିଁ—ଜାଣିନି ଜାଣିନୁ
କହେ କହେ ।

ଆଉ ମା ଭଉଣୀ, ଡାହାଣୀଟାଏ ସେ କଳବଳି କାର ଜମଣ ଦଏ
ଶୋଧୁଛି ମତେ, ମୋଡ଼ୁଚି କାନ ମୁଠା—କରେ ନାହିଁ କିଛି
ଜୀବନଟା ସତେ କୁଉ ଜୀବନରୁ ହୀନ କି ଆତୁର···ହେ ପ୍ରଭୁ, ଛି,ଛି, !

ମୋର ପ୍ରାର୍ଥନାଗୁଡ଼ିକ ଭିତରୁ ଅନେକ ମୋର ମନେଅଛି ଆଜିଯାଏଁ, ଶିଶୁମନର କିଯ୍ୱାପ୍ରତକିସ୍ୱାଗୁଡ଼ିକ ଲୋକର 'ପ୍ରାଣରେ' ଆତ୍ମା ଉପରେ ଏଭଳି ଗମ୍ଭୀର ଚହ୍ନ ରଖିଯାଏ ବେଳେବେଳେ—ଦେଖାଯାଏ ତାହା ଯେହ୍ବଭଳି ଅଟଳ ହୋଇ ରହିଯାଏ ତାର ମୃତ୍ୟୁ ପର୍ଯ୍ୟନ୍ତ ।

ହୃଦୟଟି ମୋର ପୂରି ଉଠୁଥାଏ ଆନନ୍ଦରେ—ଗୀର୍ଜାରେ ଯାଇ ବସିଲେ । ଏଡ଼େ ମନୋରମ ଲାଗୁଥାଏ ସତେ ! ସେଠି ଏବେ ବିଶ୍ରାମ ପାଇଗଲି— ନିଃଶ୍ୱାସ ମାରିଲି ଖୁସିରେ ଯେମିତି ଖେଳବୁଲି ବସିଥିଠି ଖୁସିରେ ସମସ୍ତ କିଛି କଟାଇ ଦେଉଥିଲି ବାଲବଣ ପଡ଼ିଆରେ ! ପିଲାଳିଆ ହୃଦୟଟି ମୋର ନେଜାଣି କେତେ ଥର ବା ଆହତ ହୋଇସାରି ନ ଥାଏ, ହେଉ ନ ଥାଏ । ଜୀବନର ସ୍ଥୂଳତଃ ବିଭତ୍ସତାରେ କେତେ ବା କଳଙ୍କିତ ହୋଇସାରି ନ ଥାଏ, ହେଉ ନ ଥାଏ । ସେଇଟି ଏବେ ଆଶ୍ୱସ୍ତି ପାଇଲା—ଶାନ୍ତ ଶୀତଳ ହେଲା ଅସ୍ପଷ୍ଟ କିନ୍ତୁ ଆବେଗରେ ଉତ୍କମ୍ପିତ, ଉତ୍ସାହରେ ଜ୍ୱଳନ୍ତ ସ୍ୱପ୍ନଗୁଡ଼ିକରେ, କଳ୍ପନାରେ ଯେମିତି ।

ମୁଁ ଗୀର୍ଜାକୁ ଯାଏ ଯେତେବେଳେ ପ୍ରବଳ ଅଣ୍ଡାପଡ଼େ, ମସ୍ତ ଥରଉଠେ, ନଇଲେ ଯେତେବେଳେ ବରଫ ଝଡ଼ ଘୁଉ ଘୁଉ ହୋଇ ବହେ ସହରର ଗଳି କନ୍ଦରେ ନୁହେଁ ଖାଲି—ବରଫରେ ଜମାଟ କରିଦେଇ ଆକାଶ କି ଆଚ୍ଛନ୍ନକରି ତୁଷାରର ମେଘପଟଳରେ, ଯେତେବେଳେ ପୁଣି ତୁଷାର ତଳେ ପବନରେ ଭାସମାନ ତୁଷାର ସ୍ତୂପରେ ଜମାଟ ବାନ୍ଧି ଭୂପୃଷ୍ଠରେ ମନେହୁଏ ଆଉ ଥରେ ଜୀବନ୍ତ ହେବାକୁ ଅଧୀର ହୋଇ ଉଠିଲା—କେବେହେଲେ ଆଉ ଜୀବନର ସଙ୍କେତ ।

ଜନସ୍ଥାନ ନିସ୍ତବ୍ଧ ରାସ୍ତାଗୁଡ଼ିକରେ ପସନ୍ଦ କରୁଥାଏ ମୁଁ ସହରରେ ବୁଲିବା ପାଇଁ, ଖାଲି ଗୋଟାଏ ରାସ୍ତାରେ ଯାଇ ଅନ୍ୟ ଗୋଟାଏ ରାସ୍ତାରେ ଆସି ଥରକୁ ଥର-ସବୁଠୁ ବଳି ଦୂରଦୂରାନ୍ତ ଅଜ୍ଞାତ କଣଗୁଡ଼ିକ ଖୋଜି ନେଇ । ବୃନ୍ଦେ

ଧାଏଁ ମୁଁ ତରବରରେ ବେଗି ବେଗି ପାଦ ପକାଇ ଚାଲେ ମୁଁ—ଚାଆ ନାହିଁ, ଧାଏଁ ମୁଁ—ସତେ ଯେମିତି ଉଡ଼େ ମୁଁ ଡ଼େଣା ଝାଡ଼ି ଝାଡ଼ି ଆକାଶରେ, ଜଣକ ଭଳି ଏକୁଟିଆ । ମୋର ଝାଡ଼ଣା ଦଉଡ଼େ ମୋର ଆଖେ ପାଖେ ତୁଷାରର ମେଘ ଉପରୁ ଆଲୁଅର ଷ୍ଟୁଲିଙ୍ଗ ଗୁଡ଼ିକୁ ନଭେଇ ନଭେଇ, କୌତକରେ କେଡ଼େ ଧକ୍କା ଖାଇ—କେଉଁଠି ଝମ୍ପରେ କେଉଁଠି ବାଡ଼ରେ ଡେଇଁ ଡ଼େଇଁ ପୁଣି ସେଗୁଡ଼ିକୁ ଆମୋଦରେ କେଡ଼େ ! ରାସ୍ତା ମଝିରେ ଅସି ହାଜୁଡ଼ିଯାଏ ରାଗର କଟୁଆଳଟା ଦେହରେ, ତାର ବିରାଟ ଗୋଟାଏ ମେଣ୍ଢାଚମର ପୋଷାକ; ହାତରେ ଗୋଟାଏ ଠେଙ୍ଗା—ତାର ପାଖେ ପାଖେ ଥାଏ କୁକୁରଟାଏ । ତାର ବିଶାଳ ବପୁଟା ମୋ ମନରେ ଆଣେ ସତେ ଯେପରି ଅଗଣାରୁ ପଦାକୁ ବାହାରି ଆସିଛି କୁକୁର-ଘରଟିଏ । ଗୋଟାଏ ଅଜଣା ଲକ୍ଷ୍ୟସ୍ଥଳକୁ ଚାଲିଚି ରାସ୍ତା ମଝିରେ—ଆଉ ତାର ଗୋଡ଼କୁ ଅନେଇ ପଛେ ପଛେ ତାର ଚାଲିଛି । କିଛି ବୁଝି ନ ପାରି ଚନ୍ଦ୍ରାରେ ହାଇଟରେ ପଡ଼ କୁକୁରଟା।

ସମୟେ ସମୟେ ଭେଟେ ମୁଁ ହସରେ ହସରେ ଉଚ୍ଛୁଳା ବହୁଳ ତରୁଣୀ-ଗୁଡ଼ିକୁ ତାଙ୍କର ସାଥୀ ଯୁବକଙ୍କୁ ।

ମନେମନେ ସିଦ୍ଧାନ୍ତରେ ପହଞ୍ଚିଯାଏ ମୁଁ । ସେମାନେ ମଧ ଖସି ପଳାଇ ଆସିଛନ୍ତି ସନ୍ଧ୍ୟାର ଉପାସନାରୁ ।

ବେଳେବେଳେ ଅପୂର୍ବ ମହକ କେମିତି ଅଜାଣ୍ତ ହୋଇପଡ଼େ ଆଲୋକିତ ଝରକା ବାଟରେ । ମିଠା ମିଠା ସୁକୁମାରଅ ସାଧାରଣରେ ଅଚଳନ୍ତି ମହକ । ସୂଚେଇ ଦିଏ ଗୋଟାଏ ଅଲଗା ଯେମିତି କିଛି । ମୁଁ ଯାଇ ଛିଡ଼ାହୁଏ ଝରକାଗୁଡ଼ିକ ତଳେ, ଶୁଙ୍ଘ୍ ଶୁଙ୍ଘ୍ ହୁଏ—ଯେତେଦୂର ପାରେ ସମସ୍ତ ଶବ୍ଦ ଝଟେଇ ଅନୁମାନ କରିବାକୁ ଚେଷ୍ଟାକରେ କିଭଳି ଲୋକସବୁ ଥାଆନ୍ତି ସେଠି । କେମିତି ବା ଜୀବନ ସେମାନଙ୍କର । ଯେଉଁ ସମୟରେ ଯେତେ ଯେଉଁଠି ସମ୍ଭ୍ରାନ୍ତ ଲୋକେ ଠୁଳ ହେବେ କଣ ସଂଧ୍ୟା ଉପାସନାରେ ସନ୍ଧ୍ୟା ଅଳନ୍ଧରେ । ସେମାନେ ଯେ ହସରେ ଗପରେ ମସଗୁଲସବୁ । ବଜାଉଛନ୍ତି ସବୁ ବିଶେଷ ଧରଣର ବେହେଲା, ଯେଉଁଥିରୁ ନିଃସୃତ ହୋଇ ଆସୁଛି ପୁଲକିତ ସୁରଲୟରେ କେତେ ରାଗରାଗିଣୀ ଝରକା ବାଟରେ ।

ବିଶେଷ ଗୋଟାଏ ରହସ୍ୟମୟ ଘଟଣାରେ ମୁଁ ବହୁଳ ବିମୁଗ୍ଧ ହୋଇଗଲି ଯେମିତି—ଘଟଣାଟା ପ୍ରଥମେ ଅବୋଧ ରହିଗଲା ମୋ ପାଖରେ । ନୁଆଁଣିଆ ଏକମହଲା ଘରଟିଏ ତଖୋନୋଭସ୍କାୟା ଓ ମାଚ୍ଚିନୋଭସ୍କାୟା ଏ ଦୁଇଟି ଶାନ୍ତ ନୀରବ ଗଳିର ମୋଡ଼ରେ ଗୋଟିଏ କଣରେ । ଦିନେ ଜହ୍ନ ପଡ଼ିଥାଏ ଛନ୍ଦଛନିଆ ହୋଇ ! 'ଗ୍ରୋଭେଣ୍ଟାଇଡ୍' ଉତ୍ସବ ଯେଉଁଥିରେ ପାଉଁଶିଆ—ବୁଧବାର ଦିନ ସମସ୍ତଙ୍କ ମୁଣ୍ଡରେ ପାଉଁଶ ପକାଯାଏ ସେହି ଉତ୍ସବରେ ପୂର୍ବବର୍ତ୍ତୀ ତିନୋଟି ଦିନ ମଧ୍ୟରୁ ଗୋଟିଏ ସେ ଦିନଟି । ଆକସ୍ମାତ୍ କେମିତି କେଜାଣି ମୁଁ

ପହଞ୍ଚିଗଲି ସେଇ ଘରଟିର ପାଖରେ । ଝରକାବାଟେ ଆସୁଥାଏ ସ୍ନିଗ୍ଧ ଗୋଟିଏ ସୁଗନ୍ଧର ସ୍ରୋତ ଯେମିତି । ତା ସହିତ ସଂଗତି ରଖି ଭାସି ଆସୁଥାଏ ଚଉହାଣ୍ଡି ଚମତ୍କାର ଏକସ୍ୱରର ଲହରୀ—କିଏ ଯେପରି ସତେ ଓଠ ଚପି ଗାଉଥାଏ ପ୍ରବଳ ଆବେଗରେ ସୁନ୍ଦର ସୁଲଳିତ କଣ୍ଠରେ—ସୁମଧୁର ଗୀତଟିଏ । ଗୀତଟିର କଥାଗୁଡ଼ିକ ବାରି ହୋଇ ପାରୁ ନ ଥାଏ ସତ, ତଥାପି ମନେହେଉଥାଏ ଅତି ଚମତ୍କାର ଭାବେ ପରିଚିତ, ସୁଗମ ଯେମିତି—ଅଥଚ ସେଇଟି ଯଥାର୍ଥରେ ଶୁଣିପାରୁ ନ ଥାଏ ମୁଁ, ସେଥିରେ ପ୍ରତିବନ୍ଧକ ହେଉଥାଏ କେମିତି ଗୋଟିଏ ତାରଯନ୍ତ୍ରର ଧ୍ୱନି । ଗୀତଟିର ଅବାରିତ ଧାରାକୁ ରହି ରହି ବ୍ୟାହତ କରୁଥାଏ ସେଇଟି—ବିରକ୍ତିକର ଭାବରେ । ଗୋଟାଏ କଣ୍ଟାଗଛର ଗଣ୍ଡି ଉପରେ ବସିଥାଏ ମୁଁ—ସ୍ଥିର କରିନେଲି ଅତି ଆଶ୍ଚର୍ଯ୍ୟଜନକ, ଅଭାବନୀୟ ଶକ୍ତିର ଭାୟୋଲିନ୍‌ରୁ ନିର୍ଗତ ହେଉଛି ସଙ୍ଗୀତଟି, ସେଇ । ଶୁଣିଲାମାତ୍ରେ ଏଭଳି ବେଦନାଭରା ଦେଉଥାଏ ହୃଦୟଟିକୁ ସତେ ବେଳେ ବେଳେ ଏହା ଝଂକୃତ ହେଉଥାଏ ଏଭଳି ଏକ ଅଦ୍ଭୁତ ତେଜରେ ପୁଣି—ମନେ ହେଉଥାଏ, ସମ୍ପୂର୍ଣ୍ଣ ଘରଟି କମ୍ପି ଉଠିଲା ପରି—ଝନ୍ ଝନ୍ ହୋଇ ବାଜିଲା ଝରକାର କାଚପୁଡ଼ାକ ! ତରଳ ତରଳ ଟୋପାକୁ ଟୋପା ଗୁଡ଼ିଉପରୁ ଖସିବାକୁ ଲାଗିଲା ତୁଷାର—ଆଉ ଅଜାଣତରେ ମୋର, ଛୁଇଁ ଛୁଇଁ ମୋର ଗାଲକୁ ଭିଜେଇ ଗଡ଼ିଲା ଧାରକୁଧାର ଲୁହ ।

ଜାଣିପାରି ନ ଥାଏ ମୁଁ କେତେବେଳେ ମୋ ପାଖରେ ଆସି ପହଞ୍ଚିଯାଇଥିଲା ରାତିପହରା ! ଜାଣିପାରିଲି—ଗଛର ଗଣ୍ଡି ଉପରୁ ସେ ଠେଲିଦେଲା ଯେତେବେଳେ ମୋତେ ।

"କାହିଁକି ଏଠି ଏମିତି ଆକାଶକୁ ଚାହିଁ ବସିଚ ତୁରେ ଆକୁଳିଆଙ୍କ ପରି ?" ପଚାରିଲେ ସେ ।

"ଏଇ ସଙ୍ଗୀତଟି…" ବୁଝେଇଦେଲି ତାକୁ

"କଣ ହେଲା ସେଥିରୁ । ଯା ପଳା ଯା !"

ଯେତେ ଶୀଘ୍ର ପାରେ ଛୁଟିଲି ମୁ ସାହିଟାର ଚାରିପଟେ ବୁଲି ଗୋଟାଏ ଫେର ଖାଇ ଫେରି ଆସିଲି ସେଇ ଘରପାଖକୁ ପୁଣି । କିନ୍ତୁ ସେତେବେଳକୁ ଆଉ ବଜାଉନଥାଏ କେହି ବାଜାଟି । ଝରକାବାଟେ ଆକଥାଏ ଖାଲି ଆବେଗର, କୋଳାହଳର ହିଲ୍ଲୋଳ । ସେଉଁ କରୁଣ ବିଷାଦଭରା ସଂଗୀତଟି ଶୁଣିଥାଏ ଆଗରୁ ତା ସହିତ ସାମଞ୍ଜସ୍ୟ ଥାଏ କି ନଥାଏ ଏହି ଆନନ୍ଦର, କୋଳାହଳର—ମନେହେଲା ସେଇ ବିଷଣ୍ଣକରୁଣ ରାଗିଣୀଟି ସ୍ୱପ୍ନରେ ଶୁଣିଥିବି ବା !

ପ୍ରାୟ ପ୍ରତ୍ୟେକ ଶନିବାରରେ ମୁଁ ଯାଇ ପହଞ୍ଚିଯାଇଥାଏ ସେଇ ଘରଟିର ପାଖାପାଖି କେଉଁଠି ହେଲେ କେଉଁଠି । ବସନ୍ତର ସମାଗମରେ ଆଉଥରେ ମାତ୍ର ଖୁବ୍ ହେଲେ ଶୁଣିଥିବି ସେଇ 'ସେଲୋ' ଧ୍ୱନି । ସେଦିନ ଏହା

ବାଜଥିଲ ଅବିରାମ—ପ୍ରାୟ ନିଶୀଥ ପର୍ଯ୍ୟନ୍ତ । ସେଦିନ ଘରକୁ ଫେରି ନିସ୍ତବ୍ଧ ପ୍ରହାର ପାଇଥିଲି ମୁଁ ।

ଶୀତରାତର ତାରାଗୁଡ଼ିକ ତଳେ—ସହରର ଜନହୀନ ଫାଙ୍କା ଫାଙ୍କା ରାସ୍ତାଗୁଡ଼ିକରେ ମୋର ଏହି ନୈଶ ନିରୁଦ୍ଦେଶ୍ୟ ବୁଲାବୁଲି ଭାବରେ ଐଶ୍ୱର୍ଯ୍ୟରେ ଅନୁଭୂତିର ପ୍ରାଚୁର୍ଯ୍ୟରେ ସମୃଦ୍ଧ ହୋଇଉଠିଲି ରାତିଟି ମୋର । ଜାଣିଶୁଣି ମୁଁ ବାଛି ବାଛି ଧରୁଥାଏ ସହର ଉପକଣ୍ଠର ଗଳିକନ୍ଦିଗୁଡ଼ିକୁ, ରାସ୍ତାଗୁଡ଼ିକୁ—ମୁଖ୍ୟ ଗଳିରେ ରାସ୍ତାଗୁଡ଼ିକରେ ଜଳୁଥାଏ ମାଲିକୁ ମାଲ ବତୀ—ଉଜ୍ଜ୍ୱଳକରି ଦେଇଥାଏ ଘରଦ୍ୱାର ବାଟଘାଟକୁ ସବୁ । ଏଗୁଡ଼ିକୁ ଏଡ଼େଇ ଯାଉଥାଏ, କିଏ ଜାଣେ କାଳେ ଯଦି ଦେଖିଦେବେ ମତେ ମୋ ମାଲିକର ବନ୍ଧୁମାନଙ୍କ ଭିତରୁ କେହି— ଜାଣିନେବେ ସେମାନେ ସନ୍ଧ୍ୟା ଉପାସନାରେ ଯୋଗ ନ ଦେଇ ବୁଲୁଚି ମୁଁ । ଆହୁରି ବି ଏହାଛଡ଼ା ମୋ ବୁଲାବୁଲିରେ ବ୍ୟାଘାତ ଆଣିବେ ମାତାଲଗୁଡ଼ାକ, ପୋଲିସବାଲା ଆଉ ଲମ୍ପଟ ବେଶ୍ୟାପ୍ରେମୀ ଓ ବେଶ୍ୟାଗୁଡ଼ାକ । ଦୂରର ଗଳିକନ୍ଦିରେ, ସାହି ରାସ୍ତାରେ ସମ୍ଭବ ବି ପ୍ରଥମ ମହଲାର ଝରକାବାଟେ ଲକ୍ଷ୍ୟ କରିବା, ଯଦି ସେଗୁଡ଼ାକର ଅବଶ୍ୟ ପରଦା ନ ଥାଏ କି ତୁଷାରରେ, କୁହୁଡ଼ିରେ ଆଛନ୍ନ ହୋଇ ନ ଥାଏ ।

ସେହି ଝରକାଗୁଡ଼ିକ ବାଟେ କେଜାଣି କେତେ ଦୃଶ୍ୟ ଯେ ଦେଖିଥିବି, କେତେ ଦୃଶ୍ୟର ତେନାଏଁ ଲେଖାଁ ଝଲକ ପାଇଥିବି । ଦେଖିଛି ସେତେବେଳେ କିଏ ପ୍ରାର୍ଥନା କରୁଛନ୍ତି, ଉପାସନା କରୁଛନ୍ତି, କିଏ କିଏ ବା ଚୁମ୍ବନ ଦିଆଦେଇ ହୋଇ ଖେଳାଖେଳି ହେଉଛନ୍ତି, କାହା କାହା ଭିତରେ ପୁଣି ଭଡ଼ାଓଟରା ଲଢ଼େଇ ଝଗଡ଼ା ଚାଲିଛି । କେଇଜଣ କେଉଁଠି ତାସ ଖେଳରେ ବସିଛନ୍ତି ତ ଆଉ କେଉଁଠି କେତେକ ଚଳାଉଛନ୍ତି ଗମ୍ଭୀରଭାବେ ନିଃଶବ୍ଦ ଆଲୋଚନା, ଗୁରୁତ୍ୱର ସହିତ ! ସେତେବେଳେ ମୋ ଆଖି ଆଗରେ ଭାସିଯାଉଥାଏ ନିର୍ବାକ ଏକ ଦିକ୍‌ଦିଗନ୍ତ ବିସ୍ତାରି ଦୃଶ୍ୟର ସମାରୋହ—ଉଠିଯାଉଥାଏ ଭେଳାକୁ ଭେଳା ବିଚିତ୍ର କେତେ ମଣିଷ୍ୟ, ଲାଗୁଥାଏ କେଉଁ ଏକ ଯନ୍ତ୍ରରେ ପ୍ରତିଫଳିତ ଦୃଶ୍ୟପଟ ।

ଥରେ ଲକ୍ଷ୍ୟ କଲି—ସହରର ଭୂମିରୁ ନିମ୍ନରେ, ଗୋଟିଏ ଘରର ତଳ ମହଲା ଝରକାରେ ଅନେଇ ଘରଟିରେ ସେଇ ଗୋଟିଏ ଟେବୁଲ ପାଖରେ ବସିଥାନ୍ତି ଯୋଡ଼ାଏ ସ୍ତ୍ରୀଲୋକ—କଣେଇଆଟିଏ, ଆଉଟି ସାମାନ୍ୟ ବଡ଼ ହେବ ବୟସରେ ତାଠୁଁ, ତରୁଣୀଟିଏ ବି । ଆଡ଼ବାଗରେ ସେମାନଙ୍କଠୁଁ ଟେବୁଲର ଆର-ପଟରେ ବସିଥାଏ ଲମ୍ବା ଲମ୍ବା ବାଳ ରଖିଥିବା ଗୋଟିଏ ଗ୍ରନ୍ଥ,ସେମାନଙ୍କୁ ପଢି ଶୁଣାଉ ଶୁଣାଉ ବହିଟିଏ କଣ ଅନର୍ଥକ କେତେ ବିଚିତ୍ର ଅଙ୍ଗଭଙ୍ଗୀ କାଢୁଥାଏ ସୀମାଠାରକୁ ଅସଂଯତ ଭାବରେ । କଣେଇଆଟି ପଛକୁ ଆଉଜିଗଲା ଟିକିଏ ଚୌକିରେ ମନମୁଖ ଲଗାଇ ଶୁଣୁଥାଏ ସେ—ତାର ଭୃରୁଯୋଡ଼ିକ ଟାଣିହୋଇ ଏକ ହୋଇ ଯାଇଥାଏ ଟଗୋଟିଏ କଠୋର ରେଖାରେ । ତରୁଣୀଟିର ହିସାବ୍ ଅଧିକ ବୟସ ତନ୍ୱୀ ଖୁବ୍ ।

ମେଞ୍ଚ ମେଞ୍ଚ ଭୁଲାଭଳି ପରଭଳି କେଶଗୁଚ୍ଛ ତାର, ହାଠାତ୍ ଦ'ହାତରେ ଘୋଡ଼େଇ ପକେଇଲା ମୁହଁକୁ—କାନ୍ଦଉଠିଲା ଘୁଁ ଘୁଁ ହୋଇ ! ଗୁଜଟି ଟେବୁଲ ଉପରେ ଗୁଟି ଫିଙ୍ଗିଦେଲା ବହିଟିକୁ, କଣୋଗଟି ଡେଇଁ ପଳାଇଗଲା ଘର ଭିତରକୁ । ଗୃଣଆଡ଼େ ଆଖି ବୁଲେଇ ଦେଇ ଗୁଜଟି ଅଣ୍ଟୁ ମାଡ଼ି ବସିପଡ଼ିଲା ଭୁଲାଭଳି ମେଞ୍ଚ ମେଞ୍ଚ ଫୁରୁ ଫୁରୁ କେଶଗୁଚ୍ଛର ତରୁଣୀଟିର ପାଖରେ ଆତୁର ହୋଇ ଚୁମ୍ବନ କଲା ତାର ହାତଯୋଡ଼ିକୁ ।

ଆଉ ଗୋଟିଏ ଝରକାରେ ଦେଖିଲି—ବସିଛି ଏକ ଶୁଭ୍ରୁଲ ଲୋକ ଆଣ୍ଠୁ ଉପରେ କୋଳରେ ତାର ବସାଇଥାଏ, ଲଲ କାଞ୍ଚଲା ପରିହିତା ସ୍ତ୍ରୀଟିଏ । ଲଲ କାଞ୍ଚଲା ଥାଏ କି ନ ଥାଏ ଗୁଡ ଉପରେ ତାର । ନଚଉଥାଏ ଝୁଲୁଉଥାଏ, ତାକୁ ଶିଶୁଟାଏ ଭଳି ଠିକ୍ । ମନେ ହେଉଥାଏ—ଗାଉଥାଏ, ଗୀତ ଗାଉଥାଏ ସେ ପୁରୁଷଟି—କାରଣ, ଓପାଶଆ ହୋଇ ମେଲିଯାଇଥାଏ ପାଟି ତାର—ଆଖିରେ ଏକଣ ସେକଣ ଗଡ଼ୁଥାଏ ଡୋଳା ଯୋଡ଼ିକ । କୁରୁ କୁରେଇ ହସି ଉଠିଲା ସ୍ତ୍ରୀଟି । ନିଜକୁ ଲେଟେଇ ଦେଲା ବାହୁ ବେଷ୍ଟନରେ ଗୁଡରେ ତାର—ସେଇ ପୁରୁଷଟିର । ଗୋଡ଼ ଦିଓଟି ଗୁଞ୍ଜୁଥାଏ ଶୂନ୍ୟରେ । ତାକୁ ଟାଣିନେଇ, ଜାବୁଡ଼ି ଧରି ଗାଇ ଗୃଲିଲା ଗୀତଟି ସେ ପୁରୁଷଟି ଆଜି ହସୁଥାଏ ମାଇପିଟି । ବହୁତ, ବହୁତ ବେଳଯାଏ ଗୃହିଁ ରହିଲି, ଗୃଲିଗଲି ଯେତେବେଳେ ମନରେ ଗୋଟାଏ ଭାବନା ଖେଳୁଥାଏ, ସେମାନଙ୍କର ଏହି ଆନନ୍ଦଟି, ମଦଗୁଲିଆ ଉଚ୍ଛ୍ୱାସଟି ଲଗିଥିବ, ଲଗି ରହିବ ଚିରଟାଯାକ ନିଶ୍ଚୟ ।

ଏହିଭଳି କେଜାଣି କେତେ ଦୃଶ୍ୟର ଭାବଗ୍ରସ୍ତ ଅଙ୍କିତ ହୋଇ ରହିଛି ମୋର ସ୍ମୃତିପଟରେ ଚିରଦିନ ପାଇଁ । ଏହି ଭାବଗ୍ରସ୍ତାଗୁଡ଼ିକ ଗୋଟେଇବା ଲଗି ଘରକୁ ଫେରୁ ଫେରୁ ବିଳମ୍ବ ହୋଇଯାଉଥାଏ ମୋର ଅନେକ ସମୟରେ । କ୍ରମେ ସନ୍ଦେହ ହେଉଥାଏ ମାଲିକଗୁଡ଼ାଙ୍କ ମନରେ ମୋ ବିଷୟରେ ।

"କେଉଁ ଗୀର୍ଜାକୁ ଯାଇଥିଲୁ ରେ ତୁ ?" ପଗ୍ଭରୁଥାନ୍ତି କେତେବେଳେ । "ଉପାସନା ବା ପୂଜା ପାଠ କରୁଥିଲି କିଏ, କେଉଁ ପାଦ୍ରୀ ସେ ?"

ସହରର ସବୁ ପିଲଙ୍କୁ ଜାଣିଥାନ୍ତି ସେମାନେ । ଆଉ ଲକ୍ଷ୍ୟ ରଖିଥାନ୍ତି ବାଇବ୍ଲର କେଉଁ ପରିଚ୍ଛେଦ ପଢ଼ାଯାଉଛି କୋଉଠି କେତେବେଳେ । ଏଣୁ ମତେ ମିଛୁଆ ବୋଲି ଧରି ପକେଇବା ଖୁବ୍ ସହଜ ଥାଏ ତାଙ୍କ ପକ୍ଷରେ ।

ମଇପି ଦୁହେଁ ମୋ ଅଜା ବୁଢ଼ାଙ୍କର କ୍ରୋଧନଳ ଦେବତାଙ୍କୁ—ସେଇ ଯିଏ ଯେଉଁ ଭଗବାନ ଦାବୀ କରୁଥାନ୍ତି, ସମସ୍ତେ ତାଙ୍କୁ ଭୟ କରନ୍ତୁ । ଭୟରେ ଭକ୍ତି ଦେଖାଇ ପୂଜା କରନ୍ତୁ । ସେଇ ଭଗବାନଙ୍କ ନାଆଁ ଥାଏ ସବୁବେଳେ ସେମାନଙ୍କ ମୁହଁରେ । ଏମିତିକ ସେମାନେ କଳି କଲାବେଳେ ବି ।

"ଆଚ୍ଛା, ରହ ଲୋ ! ପାଇବୁ ଯେ, ଆଗ୍ଭଡେରେ ପାଇବୁ ଭଗବାନଙ୍କୁ । ହେଁ, ଏମିତି ଦଣ୍ଡଦେବ ଯେ ତୋ ହାତ ମିଳେଇଯିବ, ମାଉଁସ ଶୁଖି ସେମେଚି

ଯିବ ଲୋ ନଲଠୀ, କଳ୍‌ଙ୍କ ! ଚ୍ଛଣ୍ଡାଳ !” ସେମାନେ ରୁହାଏ ଲେଖା ଏମିତ ଝାଡ଼ି ହୁଅନ୍ତି ପରସ୍ପର ଉପରେ ।

ଇଷ୍ଟର ପୂର୍ବରୁ ଲେଣ୍ଟ ପର୍ବର ପ୍ରଥମ ରବିବାର ପଡ଼ୁଥାଏ ସେଦିନ, ବୁଢ଼ୀ ବସି ଚକୁଳି ଲେଉଟାଉଥାଏ ତାଉଆରୁ । ଚକୁଳିଟା ଲାଖି ଲାଖି ଯାଉଥାଏ, ଉଠୁ ନଥାଏ ଲେଉଟାଇଲାବେଳେ ।

“ମଲା ମୋର, କିଆଁ ଲଗୀ, ଯମ ଝୋଉନି ଲୋ ତତେ !” ପାଟିକରି ଉଠିଲା ରାଗରେ । ମୁହଁଟି ତାର ରଙ୍ଗା ପଡ଼ୁଯାଇଥାଏ କିଆଁ ଧାସରେ ।

ହଠାତ୍ ତାଉଆଟା ପାଖକୁ ନାକ ନେଇ ଶୁଙ୍ଘିଦେଲା ମାତ୍ରେ ଗୋଟାକଯାକ କେମିତି କଳା ପଡ଼ିଗଲା ମୁହଁଟା ତାର । ତାଉଆଟାକୁ ତଳେ କଚାଡ଼ି ଦେଇ ଜୋରରେ, ଚଟାଣ ଉପରେ କଲବଲିଆ—କାନ୍ଦି କାନ୍ଦିଆ ସ୍ୱରରେ ଚକାର କରି ଉଠିଲା ସେ ।

“ଇଲୋ ମହାପ୍ରଭୁ ଲୋ—ତାହିଆ ହତାଟାରେ ଚର୍ବିଗୁଡ଼ାକ ଲୋ ! ଇଃ, ପବିତ୍ର ସୋମବାର ଦିନ ଖରାପ ଜିନିଷଗୁଡ଼ାକ ପୋଡ଼ି ଜାଳି ଦେବା ପାଇଁ ଭୁଲି ଯାଇଛି ଲୋ ମୁଁ କିଆଁ ଲଗୀଟା, ହେ ମହାପ୍ରଭୁ !”

ଆଣ୍ଠୁମାଡ଼ି ବସିପଡ଼ି ସଙ୍ଗେ ସଙ୍ଗେ, ଲୁହ ଝରେଇ ଆଖିରୁ ଆକୁଳରେ ନିବେଦନ କରି ଡାକ ଛାଡ଼ି ଆରମ୍ଭ କରିଦେଲା—

“ହେ ! ମହାପ୍ରଭୁ, ହେ ଠାକୁରେ, ହେ ବଡଠାକୁରେ, କ୍ଷମାକର ଗୋ ; ଦୟାକର ଗୋ, ପାପିଣୀଟାଏ ମୁଁ, ପାପିଣୀଟାଏ ପ୍ରଭୁ ! କ୍ଷମାକର ! ତୁମର କରୁଣା ପାଇଁ ହେ ମହାପ୍ରଭୁ । ନାଇଁ ନାଇଁ ମୋପରି ବୁଢ଼ୀଟାକୁ, ବୋକୀଟାକୁ ଦଣ୍ଡ ଦିଅ ନା ହେ ଦୟାମୟ, ହେ ମହାପ୍ରଭୁ ।”

ପୋଡ଼ିଗଲା ଚକୁଳିତକ ଫିଙ୍ଗି ଦିଆହେଲା କୁକୁର ମୁହଁରେ ଆଉ ତାଉଆଟାକୁ ପବିତ୍ର କରିଗଲା କିଆଁ ଭିତରେ ପକାଯାଇ । କିନ୍ତୁ ଏହାପରେ ଗ୍ରେଟ ମାଲିକାଣୀଟି ମୋର ସବୁବେଳେ ଏହି ଘଟଣାଟା କଥା ଦେଖେଇ ଶୁଣେଇ ବଡ ମାଲିକାଣୀର ମନେ ପକାଇ ଦେଉଥାଏ ।

“ହଁ ମ, ଦେଖିଚି ମୁଁ !”

“ତମେ ପୂରା ଅଧିଆ ଅପୋଡ଼ା, ଅପବିତ୍ର ତାଉଆଟାରେ

ଚକୁଳିକରି, ପିଠାକରି ଓଷା ପରବଦିନରେ ବି !” ଛୋଟମାଲିକାଣୀ ଉଫେଇ ଦେଉଥାଏ ଯେତେବେଳେ କଳି କରୁଥାନ୍ତି ସେମାନେ ।

ଏମିତି କିଛି ଘଟେଇ କଥା ନଥାଏ ଯେଉଁଥିକି ସେମାନେ ଟିକିଏ ଟାଣିଆଣି ନ ଥାନ୍ତି ଭଗବାନଙ୍କୁ—ସେମାନେ ତାଙ୍କୁ ଭଲ୍ ଆଣୁଥାନ୍ତି ନିଜ ନିଜର

ଅତି ଶ୍ରେଷ୍ଠ, ଅତିଲୁଚ୍ଛ ଜୀବନର ପ୍ରତ୍ୟେକଟି ଅନ୍ଧାରିଆ କଣକୁ ! ସେମାନଙ୍କର ଦୟନୀୟ ଶୋଚନୀୟ ଅସ୍ତିତ୍ୱକୁ ଏକମାତ୍ର ଏହାହିଁ ଯେମିତି ଯୋଗାଇ ଦେଉଥାଏ ଗୋଟାଏ ତାତ୍ପର୍ଯ୍ୟ ଗୋଟାଏ ଗୁରୁତ୍ୱ—ସତେ ଯେମିତି ପ୍ରତ୍ୟେକଟି ମୁହୂର୍ତ୍ତ ସେମାନଙ୍କର ଉତ୍ସର୍ଗ ହୋଇଥାଏ ଗୋଟାଏ କିଛି 'ଉଚ୍ଚତର' ମହତ୍ତର ଶକ୍ତିର ସେବାରେ । ମନରେ ରୋଗଭଳି ମଧ୍ୟ ଫନ୍ଦମି ଫଚର ଯାଇଥାଏ ସେମାନଙ୍କର ସେଇ ପ୍ରତ୍ୟେକ ଶ୍ରେଷ୍ଠକଥା ଭଗବାନଙ୍କୁ ମିଶାଇ ସାମିଲ କରିବାରେ ଖୋଇଟା । ଅଜଣାତରେ ଅନିଚ୍ଛାରେ ବି ଗ୍ରହଁଦଏ କଣଗୁଡ଼ିକୁ, ଚେତନାରେ ଥାଏ ମୋର—ମୋ ଉପରେ ଅଦୃଶ୍ୟ ଆଖି ରହିଛି ଯେପରି କାହାର । ଗୁଡ଼ରେ ମୋତେ ଜାବୁଡ଼ି ଧରୁଥାଏ କଭଳି ଗୋଟାଏ ଶୀତଳ ଆତଙ୍କ । ଗମ ଗମ ହୋଇ ଝାଳ ବୋହିଯାଉଥାଏ ଦେହରୁ ।

ଏହି ଭୟଂ୍କା ସୁର୍‌ସୁର୍ ହୋଇ ପ୍ରସରି ଆସୁଥାଏ ରୋଗଘରର ସେଇ କଣଟିରୁ ଯେଉଁଠି ଧାପଟାଏ ଅହୋରାତ୍ର ଜଳା ହୋଇଥାଏ ଗମ୍ଭୀର ଘୋର ବିଷାଦ ଉଦ୍ରେକକାରୀ ଭୟଙ୍କର ମୂର୍ତ୍ତିଗୁଡ଼ିକ ଆଗରେ ।

ପଟମୂର୍ତ୍ତିଗୁଡ଼ିକ ଥୁଆ ହୋଇଥାଏ ଶ୍ରେଷ୍ଠ ଆଲମାରି ବା ଶେଲ୍‌ଫରେ, ତା ପାଖରେ ଯାଉଁଲି ଝିଡ଼କିର ଝରକାଟା—ଦୁଇଟି ଚଉକାଠ ଭିତରେ—ମଝିରେ ଥାଏ ଠିଆବାଗରେ ଚଉକାଠର ବାହା । ଝରକାଠୁ ଦୂରରେ କାହିଁ କେଉଁଠିକି ପ୍ରସରି ଯାଇଛି ବିପୁଳ ଗୋଟାଏ ନୀଳାଭ ଶୂନ୍ୟତା—ସେଇ ଶୂନ୍ୟତାର ଧାରରେ ଠିକ୍ ମୋ ସମେତ ଝୁଲୁଥାଏ ପ୍ରତ୍ୟେକଟି ଜିନିଷ, ପ୍ରତ୍ୟେକଟି ବସ୍ତୁ । ଟିକିଏନାକୁ ହଲଚଲ, ଟିକିଏନାକୁ ଉଁଚଁ । ଆମକୁ ସବୁ ତୀବ୍ର ବେଗରେ ଘୂରେଇ ଧାଉଁକିନା ଠେଲିଦେବ ଶୀତଳ ଆଉ ଉଦାସ ସେଇ ନୀଳିମାର ଅତଳ ଗହ୍ୱରକୁ—ତାରିଗୁଡ଼ାକ ଟପେଇ ଦେଇ ମରଣୋପମ ଗଭୀର ଏକ ନିସ୍ତବ୍ଧତାକୁ—ପଥରଟିଏ ନିକ୍ଷିପ୍ତ ହେଲାଭଳି ଅଗାଧ ଜଳରେ—! ଘଣ୍ଟା ଘଣ୍ଟା ଧରି କେଜାଣି କେତେ ସମୟ ନିଶ୍ଚଳ ହୋଇ ପଡ଼ିରହେ ମୁଁ ବିଛଣାରେ, ଭୟରେ କାଲୁଥି ମୁଁ ଡରେ ହଲହଲ ହେବାକୁ । ଅପେକ୍ଷା କରେ ବିଶ୍ୱଗ୍ରାସୀ ପ୍ରଳୟ ଗୋଟାଏକୁ—ଭୀଷଣ ବିଭୀଷିକାମୟ ସମାପ୍ତିଟାକୁ ବିଶ୍ୱର ।

ଆଉ ମନେ ନାହିଁ ମୋର, କେମିତି ମୁଁ ଉଦ୍ଧାର ପାଇଥିଲି ଏହି ଭୀଷଣ ବ୍ୟାଧିରୁ । ଉଦ୍ଧାର ପାଇଥିଲି, ଆରୋଗ୍ୟ ହୋଇଥିଲି କିନ୍ତୁ ଶୀଘ୍ର, ଖୁବ୍ ଶୀଘ୍ର ବି ! କାହିଁକି ନା ସ୍ୱାଭାବିକ ଥିଲା ଆଇମାର ମୋର ସ୍ନେହପ୍ରବଣ ଦୟାବନ୍ତ ଭଗବାନ ହିଁ ବାହାରି ଅସିଥିଲେ ମୋତେ ସହାୟ ହେବା ପାଇଁ, ମୋତେ ଲାଗୁଛି ସେତେବେଳେ ମଧ୍ୟ ମୁଁ ସଚେତ ଥିଲି ଗୋଟିଏ ସରଳ ନିଷ୍କପଟ ସତ୍ୟ ସମ୍ପର୍କରେ—କାଇଁ କିଛି ଦୋଷ ତ କରିନ ମୁଁ—କାହାର କରିନ, କିଛି ବିଧି ବିଧାନ ନାହିଁ ଧର୍ମଧାମରେ ଯେଉଁଥିରେ ଦଣ୍ଡିତ ହେବ, ଶାସ୍ତି ପାଇବ ମୁଁ—ଆଉ ମତେଇ କଣ କୈଫିୟତ ଦେବାକୁ ହେବ, ହିସାବ ନିକାଶ କରିବାକୁ ହେବ । ଅନ୍ୟମାନଙ୍କର ପାପାଚରଣ ସକାଶେ ନା, ତା ହୋଇପାରେ ନା କେବେହେଲେ ।

ସକାଳର ଭଜନକୀର୍ତ୍ତନରେ ଯୋଗ ନ ଦେଇ ଖସି ପଳାଇ ଯାଉଥାଏ ମୁଁ , ପଳାଇ ଯାଉଥାଏ—ବିଶେଷତଃ ବସନ୍ତ ସମୟରେ । ସମଗ୍ର ପ୍ରକୃତି ପୁନର୍ଜାଗରଣ । ପୁନର୍ଜୀବନ ଯୌବନାସ୍ପନ ପୁଣି କି ଦୁର୍ବାର କି ଅପ୍ରତିରୋଧ୍ୟ ଶକ୍ତିଟି ତାର – ତାହାହିଁ ମତେ ଦୁରନ୍ତ ବେଗରେ ଝପଟାଇ ଦେଉଥାଏ ଦୂରକୁ, ଗିର୍ଜାରୁ ଦୂରକୁ ! ଯଦି କେବେକେବେ ମତେ ଦିଆଯାଉଥାଏ ଅଧିକା କେତୋଟି ଲେଖାଏଁ ପଇସା ପୂଜାବେଦୀର ଦୀପ ଜଳିବା ପାଇଁ, ପ୍ରମାଦ ଗଣୁଥାଏ ମୁଁ, ବୁଦ୍ଧି ବଣାହୋଇ ଯାଉଥାଏ ମୋର । ତେବେ ସେତକ ଯେବେ କାଢୁଥାଏ ହାତ ଗୋଟାକ, ପାପୁଲିରେ ନଚେଇ ଉପରକୁ ଛାଡ଼ି ହାତ ଓଲଟେଇ ପିଠି ପାପୁଲିରେ ଧରୁଥାଏ ତାକୁ । ଏଇ ଖେଳରେ ମାତି ରହୁଥାଏ ଭଜନକୀର୍ତ୍ତନ ସରିବା ଯାଏ, ସରିଲା ପରେ ବି । ଏଣୁ ଘରକୁ ଫେରିବାଟା ଉଚ୍ଛୁର ହୋଇ ଯାଉଥାଏ ଛାଆଁକୁ ଛାଆଁ । ଦିନେ ମତେ ଦିଆ ଯାଇଥାଏ ଦଶଟି ପଇସା ନୈବେଦ୍ୟ କିଣି ସମର୍ପଣ କରିବା ପାଇଁ ଓ 'ସ୍ୱର୍ଗତ' ମୃତଲୋକଙ୍କ ସକାଶେ ପ୍ରାର୍ଥନା କରିବା ପାଇଁ । ଥିଲି ଥିଲି ମୁଁ ତାକୁ, ସେଇ ଦଶୋଟି ପଇସାକୁ ଝର୍ଚ୍ଚ କରି ଉଡ଼େଇ ଦେଲି, ଆଗରୁ ଉଡ଼ଉଥାଏ ଯେମିତି । ଆଉ ବୁଦ୍ଧିବାଟ ଦିଶିଲା ନାହିଁ ମୋତେ । ପାଦ୍ରୀ ବେଦୀ ଉପରେ ଯେତେବେଳେ ଆଣିଲେ ନୈବେଦ୍ୟର ଭୋଗଗ୍ରାଗର ଡାଲିଟା ସେଥିରୁ ଆଉ କାହାର ଭୋଗତକ ଉଠେଇ ନେଲି ବ୍ଲାଉଜିରେ ।

ଖୋଲାଖୋଲି ପାଇଁ ମୋର ଗୋଟାଏ କେମିତି ପ୍ରବଳ ମମତା ଥାଏ । ଖେଳୁଥାଏ ଏକାବେଳକେ ଭୋକଶୋଷ ଭୁଲି ଅକ୍ଲାନ୍ତଭାବରେ । ଯେମିତି ବଲ୍ ଆ ସେମିତି ପୁତ୍ତଳିକାସ୍ଥ ଥାଏ ମୁଁ । ଆମ ସାହିରେ ଖୁବ୍ ଚଞ୍ଚଳ ନାଆଁ ହୋଇଗଲା ମୋର ବଲ୍ । ହାତ ଗୋଟାକ, ଡାବରପୁଆ, ନଅପିନ୍ କଣ୍ଠାକୁ ଗୁଳି ମାରିବା 'ସ୍କିଟଲ୍' ପ୍ରଭୃତି ସବୁପ୍ରକାର ଖେଳରେ ।

ଯୀଶୁଙ୍କ ଉପବାସର ସ୍ମୃତିରେ ପାଉଁଶିଆ ବୁଧବାରଠାରୁ ଇଷ୍ଟର ପର୍ଯ୍ୟନ୍ତ ଯେଉଁ ଓପ୍ସା ଯେଉଁ ଲେଣ୍ଟବ୍ରତ ପାଳନ କରାଯାଏ, ସେହି ଲେଣ୍ଟ ବା ଓପ୍ସା ସମୟରେ ମତେ ପ୍ରସ୍ତୁତ ହେବାକୁ ପଡ଼ିଲା । ଯୀଶୁଙ୍କ ଶେଷରାତ୍ରି ଭୋଜନ ବେଳର ସ୍ମାରକ ଉତ୍ସବ ବା କାରୁନଅନ୍ ପାଇଁ । ଆମର ପଡ଼ୋଶୀ ପାଦ୍ରି ଦୋଶମେନନ୍ତ ପୋଚୋଭସ୍କିଙ୍କ ପାଖକୁ ଗଲି ମୋର ପାପ ସ୍ୱୀକାର-ପାଇଁ । ମୁଁ ତାଙ୍କୁ ବିଗୁଣଥାଏ ଅତି କଠୋର ପ୍ରକୃତିର ଲୋକ ବୋଲି— ତାଙ୍କ ବିରୁଦ୍ଧରେ ଯେତେ ଯାହା ପାପକର୍ମ କରିଥାଏ, ଜାଣିଥାଏ ବି—ବୋଲୁଅ ଫୋପାଡ଼, ପଥର ପକେଇ ନଷ୍ଟ କରି ଦେଉଥାଏ ତାଙ୍କର ଖରୁଟିଆ ଘର ବା ଝରାଦନ୍ନିଆ ଘରକୁ । ତାଙ୍କ ପିଲାଙ୍କ ସାଙ୍ଗରେ ଲଢ଼ିଥାଏ ଅନେକଥର କଳିକଜିଆ କରି । ଆହୁରି ବି ଏମିତି ଯେତେ ଅପରାଧ କରିଥାଏ, ସେଥିରେ ତାଙ୍କ କୋପ ଅଟିରେ ପଡ଼ିବା କିଛି ବିଚିତ୍ର ନଥାଏ ମୋ ପାଖରେ । ଏହିସବୁ ମୋ ମନରେ ଧାଣ୍ଡି ଚକଟି ହେଉଥାଏ ଯେତେବେଳେ

ମୁଁ ଯାଉ ଛୁଡ଼ାହେଲ ଅନ୍ଧାରଆ ଅଣଓସାରଆ ଗ୍ରେଟ ଗିର୍ଜାଟିରେ ତାଙ୍କର, ମୋ ପାଇଁ ସ୍ୱୀକାର ପାଳି କେତେବେଳେ ପଡ଼ିବ ତାରି ଅପେକ୍ଷାରେ ! ସତ କହୁଛି ଗ୍ରୀଡ ଭିତରଟା ମୋର ଦାଉ ଦାଉ ହେଉଥାଏ ସେତେବେଳେ କେମିତି ଗୋଟାଏ ଅଦ୍ଭୁତ ଅସ୍ୱସ୍ତିରେ ।

ଫାଦର ଦୋରମେନନ୍ କିନ୍ତୁ ମୋ ଆଡ଼କୁ ଚାହିଁଲେ ସ୍ୱାଭାବିକ୍ ମଧୁର ପ୍ରକୃତିରେ, ଅଭିଯୋଗ ବାଚ୍ଛିଲା ଦୃଷ୍ଟିରେ

"ଓ ଆମ ପଡ଼ୋଶୀ !" ଆଶ୍ଚର୍ଯ୍ୟରେ ସେମିତି ଉଚ୍ଚରେ ଟିକେ କହି ଉଠିଲେ, "ବେଶ୍ ବେଶ୍ ! ବସ, ଆଣ୍ଠୁମାଡ଼ି ବସ— କହ କଣସବୁ ପାପ ତମର ?"

ମୁଣ୍ଡଟିକୁ ମୋର ଘୋଡେଇ ଦେଲେ ବହଳଆ ଝଣ୍ଡେ ମଖ୍‌ମଲ କନାରେ । ମହମ ଆଉ ଧୂପର ଗନ୍ଧରେ ନିଃଶ୍ୱାସ ରୁନ୍ଧହୋଇ ଆସିଲା ମୋର ତା ଫଳରେ । ଯେଉଁସବୁ କଥା କହିବାକୁ ଇଚ୍ଛା ନଥାଏ ମୋର, ତାକୁଇ ବଖାଣିବାର ଆତୁର କଠିନ— କାଠିକର ହେଲା ମୋ ପାଇଁ ।

"ବଡ଼ ବଡ଼ଙ୍କ କଥା ମାନୁଛି?"

"ନା !"

"କହ, ପାପ ! ପାପ ମୋର ଆତ୍ମାରେ !"

ନକେଇ ଆଶ୍ଚର୍ଯ୍ୟ ହୋଇଗଲି କେମିତି ହଠାତ୍ ଅଟକି ନଯାଇ ଭୁସ୍‌କିନା କହି ପକାଇଲି—

"ଶେଷ ଭୋଜନର ପୂଜାବେଳେ ଚୋରି କରିଛି ଭୋଗରାଗ ?"

କଣ କହିଲୁ ? କେଉଁଠୁ— କେଉଁଠୁ ଚୋରିକଲୁ ତୁ ? ଉରବର ନହୋଇ ଧୀରେ ସ୍ପଷ୍ଟେ ପଚାରିଲେ ପାଦ୍ରି !

"କିପରି ଗିର୍ଜାରେ, ପୋଟୋର ଗିର୍ଜାରେ— କୋଲସରେ ।" ଆଚ୍ଛା, ଆଚ୍ଛା ଏବେ, କହିବାକୁ ଚାହୁଁଛୁ— ଏମାନେ ସବୁ ଗିର୍ଜାରେ । ନାହିଁ ? ଖରାପ, ଭାରି ଖରାପ କଥା ବାପ । ପାପ ! ମହାପାପ ! ବୁଝୁଛୁ ତ ?"

'ହଁ ।"

"କହ, ପାପ ; ପାପ ମୋର ଆତ୍ମାରେ !" ତଗଲଟା ଏତେ ନବୁଦ୍ଧିଆରେ ତୁ— ଖାଇବା ପାଇଁ ଚୋରି କରିଥିଲୁ ତ ?"

"ବେଳେବେଳେ ଖାଇ ଦେଇଛି, ବେଳେବେଳେ ପୁଣି ସ୍କୁଲ୍ ପିନ୍‌କଣ୍ଡା ଟେଲରେ ପଇସାପତ୍ର ଯାହା ଥାଏ ହରେଇ ଦେଇ, ଭୋଗଡକ ନେବାକୁ ପଡେ ଘରକୁ । ଏଣୁ ଚୋରି କରିଛି ।"

ଫାଦର ଦୋରମେନନ୍ ନିଃଶ୍ୱାସ ଚପି କଣ ଗୁଣୁ ଗୁଣୁ ହେଲେ କିଛି ସମୟ । ପଚାରିଲେ ପୁଣି ଆଉ କେତୋଟା ପ୍ରଶ୍ନ । ତାପରେ ହଠାତ୍ କଠୋର ରୁକ୍ଷ ସ୍ୱରରେ ଦାବୀକରି ଜାଣିବାକୁ ଚାହିଁଲେ—

"ଗୁପ୍ତ ଗୃହପାଖାନା ଗୁଡାକବୁ ବାହାରୁଚ ଯେଉଁ ବହିଗୁଡ଼ାକ— ପଢ଼ିଚୁ ତୁ ଭଲ କେବେ । ପଢ଼ିଚୁ ?"

ପ୍ରଶ୍ନଟା ବୁଝି ପାରିଲି ନାହିଁ ଆଦୌ ।

"କଣ ?" ପଗ୍ଚାରିଲି ଓଲଟି ।

"ଏଇ ବେଆଇନ୍ ବହିସବୁ— ଯାହା ମନା ପଢ଼ିବାପାଇଁ—ପଢ଼ିଚ ଏମିତି କେବେ ଖଣ୍ଡେ ଅଧେ ?"

"ନା , ପଢ଼ିନି ଆଦୌ ।"

"ଠିକ୍ ତେବେ ଠିକ୍ । ଗଲା ପାପତକ ଛାଡ଼ିଗଲା ତୋର । ଉଠ୍ !"

ବସ୍ତୁସ୍ୱରେ ଟିକେ ଅନେଇ ରହିଲି ତାଙ୍କ ମୁହଁକୁ ! ମୁହଁରେ ଭାବ ପ୍ରକାଶର ଭଙ୍ଗୀଟି ଥିଲା ଉଦାର ଆଉ ମଧୁର, ଚନ୍ଦ୍ରାକୁଳ କେମିତି । ଲାଜରେ ଭାଙ୍ଗିପଡ଼ିଲି ଯେମିତି ମୁଁ । ପାପ ସ୍ୱୀକାର କରିବାପାଇଁ ପଠେଇଲାବେଳେ ମୋତେ, ମୋ ମାଲିକାଣୀ ଦିହେଁ ବହୁତ ଭୟ ଉପୁଜା ଗୁଡାଏ କଥା କହିଥାନ୍ତି ମତେ— ଡରେଇବା ପାଇଁ ଖାଲି, ଯେମିତିକି ମୁଁ ଡରିଯାଇ ଯାହା ପାପ କରିଚି କହିଯିବି ସହଜରେ ।

"ତମ ଖରାଦିନିଆ ଘରକୁ ଢେଲା ପକେଇଚି ମୁଁ ।" କହି ପକେଇଲି ମୁଁ ।

ମୁଣ୍ଡଟି ଟେକିଲେ ଟିକେ ପାଦ୍ରି ।

"ହୁଁ, ଖୁବ୍, ଖୁବ୍ ଖରାପ କଥା ତ । ଯା ପଳା ! ଦଉଡ଼ି ପଳା ।"

"ତମ କୁକୁରକୁ ବି ।"

"ଅରେ ଜଣେକେ !" ମୋ ଉପରୁ ଆଖି ଘୁଞ୍ଚେଇ ନେଇ ଅନ୍ୟ ଆଡ଼କୁ ଅନେଇ ଡାକିଲେ ଫାଦର ଡୋରମେନମ୍ବ ।

କେମିତି ଗୋଟାଏ ଆହତ ମନରେ ଫେରିଗଲି ମୁଁ, ଠକେଇରେ ପଡ଼ିଲି ମୁଁ । ଏଇ ପାପ ସ୍ୱୀକାରଟାକୁ ଯେଉଁ ଆଶା ଯେଉଁ ଉତ୍କଣ୍ଠା, ଯେଉ ଉଦ୍‌ବେଗ—ମୋର ଶିରପ୍ରଶିରାକୁ ମୋର ସ୍ନାୟୁକୁ ସବୁ ଥର ଥର କରିଥାଏ— ଦେହରେ ମୋର ଗୋଟାଏ କମ୍ପ ଆଣିଥାଏ ! ଆଉ ଏ ହେଲା କଣ—କିଛି ନୁହଁ ଏମିତିକି ଟିକେ ମନେ ଭଲେଇଲା ଭଲ ବି ନୁହେଁ—ସାମାନ୍ୟରେ ଖାଲି ଯାହା କୌତୂହଳିଆ ଥିଲା ସେହି ରହସ୍ୟମୟ ବହିଗୁଡ଼ାକ ପେଇନ ପ୍ରଶ୍ନଟା । ମନେପଡ଼ିଲା ଗୁଳଟି ସେଦିନ ସେ ଯୁବତୀ ଦୁଇଟିଙ୍କ ଆଗରେ ଯେଉଁ ବହିଟି ପଢ଼ୁଥିଲି ତଳ- ମହଲରେ ମନେପଡ଼ିଲା—"ଚମତ୍କାର ।" ତାର ବି ଆଉ ଅନେକ ମୋଟା କଳା କଳା ମଲାଟର ବହି ଥିଲା—କେତେ ଅବୋଧ୍ୟ ଚନ୍ଦ ଥିଲା ପୁଣି ସେଥିରେ !

ଏ ଘଟଣାର ପରଦିନ ପନ୍ଦରଟି ପଇସା ଦିଆଯାଇ ମୋତେ ପଠାଇ ଦିଆହେଲା ଶେଷ-ଭଜନ ପୂଜାକୁ । ଇଷ୍ଟର ପର୍ବ ଆସିଥାଏ ସେ ବର୍ଷ ଡେରିରେ, ବଡ଼ ଡେରିରେ—କେଉଁ ଦିନରୁ ତରଳି ସାରିଥାଏ ବରଫଗୁଡ଼ାକ । ଶୁଖିଲି ଶୁଖିଲା ଗଳିକନ୍ଦି ରାସ୍ତା ଉପରେ ଘୂରିଆତେ ଠାଆକୁ ଠାଆ ଉଠୁଥାଏ ଗ୍ରୀଷ୍ମ ଗ୍ରୀଷ୍ମ କୁଣ୍ଡଳି ରଚି ଧୂଳାକୁ ଧୂଳା ଧୂଳି । ପାଗଟା ଥାଏ ବେଶ ଝରିଆ— ହସଖୁସିଆ ଖେଳର—ମନମତାଣିଆ ଫୁର୍ତ୍ତିର ବେଶ୍ ।

ଶିକ୍ଷାର ପାଚଣ୍ଡ ପାଖରେ ଗୋଟାଏ ଖୁବ ଚଟକଦାର ପିନ୍-କଣ୍ଟା 'ଖେଳରେ' ମାତି ଯାଇଥାନ୍ତି ଶ୍ରମିକ କେତେଜଣ । ଗରମା ଗରମ ହୋଇ ଉଠିଥାଏ, ଜମି ଯାଇଥାଏ ଖେଳଟା । ଭାବିଲି, ଶେଷ ଭୋଜନ ପାଇଁ ଭୋଗରାଗ ନେବା ସମୟ ଅଛି—ନେବ, ପରେ ନେବ ।

"ମତେ ଟିକେ ଖେଳେଇବନି ?" ପଚାରିଲି ମୁଁ ।

"ବାଜିକ ପାଇଁ ପଇସା ଚାହିଁ," ଗ୍ରୀବା ଫୁଲେଇ ଗର୍ବରେ ଘୋଷଣା କଲା ଲାଲମୁଣ୍ଡିଆ, ବସନ୍ତମୁହାଁ ଲୋକଟିଏ ।

ତାର ଭଳି ସେମିତି ଗ୍ରୀବା ଫୁଲେଇ ଗର୍ବରେ ଉତ୍ତର ଦେଲି ସାଙ୍ଗେ ସାଙ୍ଗେ—

"ବାଆଁ ପଟରୁ ଦ୍ୱିତୀୟ ପିନ୍‌ଟିଲରେ ପଣ ରଖିବି ମୁଁ । ରଖିବି, ଜିତିବି, ଛନ ଛନ ପଇସା ।"

"ଦେଖି କଣ ଅଛି, କେତେ ଅଛି ? ପଇସା ଅଛି ପାଖରେ !" ଧୁମ୍ ଧାମରେ ଚାଲିଲା ଖେଳଟା !

ଭଙ୍ଗେଇଲି ମୋର ପନ୍ଦର ପଇସିଟିକୁ । ଖେଳରେ ବାଜି ରଖିଲି ଛନପଇସା । ଯିଏ ସେ ପିନକଣ୍ଟାଗୁଡ଼ିକୁ ଲକ୍ଷକରି—ଓଲଟେଇ ପକେଇ ଦେବ ତଳେ, ସେହି ପାଇବ ସେତକ—ସେଇ ଛନ ପଇସା । କପାଳିଆ ମୁଁ—ଦୁଇଜଣ ଲକ୍ଷ କଲେ ମୋର ପିନକଣ୍ଟା ଧାଡ଼ିକୁ । ଦାହିଁଙ୍କି ବାହେଁ ହଟିଗଲେ । ଓଲଟେଇ ପାରିଲେ ନାହିଁ ପିନ୍‌କଣ୍ଟାକୁ ମୋର, ଅର୍ଥ ଜିତିଗଲି ମୁଁ, ପାଇଲି ଛଅ ପଇସା—ଜିତିଗଲି ବେଶ୍—ବସ୍ତୁସ୍ଥ ଲୋକ-ଗୁଡ଼ାଙ୍କୁ ! ଏଥିରେ କି ମୋ ତେଜ ମୋ ବହପ ବଢ଼ି ନ ଯାଆନ୍ତା ! ବଢ଼ିଗଲା ତେଜଟା ମୋର ।

"ଅରେ ହୋ ତାକୁ ଅନେଇଥରେ । ଆଖି ରଖିଥା ତା' ଉପରେ—ନଇଲେ ସବୁ ଜିଣି ନେବ ବାବୁ ଦେବଟି ଟୋକାଟା ।" ଖେଳାଳିଙ୍କ ଭିତରୁ କିଏ ସତର୍କ କରେଇ କହି ଉଠିଲା ।

ଅପମାନିଆ, ଭାରି ଅପମାନିଆ ଲାଗିଲା ମତେ ।

"ଦାଆଁ ପଟରୁ ଶେଷ ପିନ୍‌କଣ୍ଟା ଧାଡ଼ିରେ ନଅପଇସା—" ଛନ୍‌ଛନ ଚମ କାଟିଲି ସ୍ୱରରେ ତୀକ୍ଷ୍ଣ ଭାବରେ କହି ଉଠିଲି ମୁଁ ।

ମୋର ବଡେଇ, ମୋର ଆଟୋପଟା ଟିକିଏ ଦେଖିଲେ ତାହିଁକ କିଛି ପ୍ରଭାବ ପକାଇଥାନ୍ତା ଖେଳାଳିଗୁଡ଼ାଙ୍କ ଉପରେ । କିନ୍ତୁ ମୋର ବୟସର ଆଉ ଗୋଟାଏ ଟୋକା ସାବଧାନ କରିଦେଲା—ପାଟିକରି ଉଠି—

"ଆଖି ରଖରେ ତା' ଉପରେ ! କପାଳିଆ ସଇତାନଟିଏ ସେ ! ଜାଣେ ମୁଁ ତାଙ୍କୁ !"

"କଣ କହିଲୁ, ସଇତାନ୍‌ଟାଏ ? ......... ଦେଖିବା ତେବେ ।" ଫୁଙ୍କି ଦେଲେ ଉଡ଼ିଯିବ- ଧଡ଼ଧଡ଼ିଆ ଶ୍ରମିକଟାଏ ଜବାବ୍‌ଦେଲା । ଦେହଟା ତାର

ଗନ୍ଧଉଥାଏ ଗୋଟାଏ ଚମଡ଼ା କଙ୍କାଳ ପରି ।

ପଛରୁ ସନ୍ଦିଗ୍ଧ ସାବଧାନରେ ଲକ୍ଷ୍ୟ କରି ଓଲଟେଇଦେଲା ସେ ମୋ ପିନ୍‌କଣ୍ଟା ଧାଡ଼ିକୁ !

"କେମିତରେ ହେଲା — ପାଇଲ ତ, ମନକୁ ପାଇଲା ତ ଏବେ ?" ମୋ ଉପରେ ନଇଁ ପଡ଼ି କହିଲା ସେ ମତେ —

"ଡାହାଣପଟରୁ ଶେଷ ପିନ୍‌କଣ୍ଟା ଧାଡ଼ିରେ ଆଉ ଛନ !" ଠୋ କନ— ଶୁଣେଇଦେଲି ମୁଁ ?

"ତାକୁ ବି ଶୁଆଇଦେବ — ବେଶ୍ ।" ଆଖିରେ ଖସି ବଢ଼େଇ କରି କହିଲା ଚମଡ଼ାକଙ୍କାଳ—କିନ୍ତୁ ପଣ୍ଡ ହୋଇଗଲା ଲଖଟା ତାର !

ନିୟମ ହେଉଛି-ଲଗ୍ ଲଗ୍ ଛନଥରରୁ ବେଶୀ କେହି ଗୋଟାଏ ପିନ୍‌କଣ୍ଟା ଧାଡ଼ି ଉପରେ ବାଜି ରଖିପାରିବ ନାହିଁ । ଏମିତି ରଖିବା ମନା ! ଅନ୍ୟମାନଙ୍କ ପଇସାରେ ! ଆରମ୍ଭ କରିଦେଲି ଖେଳିବାକୁ ଆହୁରି, ଜିଣିଲି ୪ପଇସା ! କିନ୍ତୁ ପୁଣି ଯେତେବେଳେ ପାଳି ପଡ଼ିଲା ମୋର ପଇସା ଲଗେଇବାକୁ—ହରେଇଲି ବାଜି ଲଗେଇ ସବୁତକ ଯାହା ଥିଲା ମୋ ପାଖରେ । ଏଇଟି ଘଟିଲା ବେଳକୁ ସରି ସରି ଆସିଥାଏ ସଂକର ଭଜନ କୀର୍ତ୍ତନ—ଗିର୍ଜାରେ ଆରମ୍ଭ ହୋଇଗଲା ଘଣ୍ଟା ବାଜିବା ଆଉ ଲୋକେ ସବୁ ବାହାରିଲେ ଗୋଟି ଗୋଟି ହୋଇ ଗୀର୍ଜାରୁ !

"ହରେ, ସାରିଲୁଟିରେ ସବୁ ପୋଡ଼ଜାଳି ଦେଲୁ ହାତକୁ ତୋର । ଉଡ଼େଇଦେଲୁ ସବୁ"—ଡ଼ାଳରୁ ମୁଠାଏ ଧରି ପକାଇ ମତେ ପଗ୍ଭରିଦେଲା ଚମଡ଼ା-କଙ୍କାଳ, ମୁଁ କିନ୍ତୁ ଭୁଲପଡ଼ି—ବଙ୍କେଇ ଯାଇ ଖସିଗଲି, ମାରିଲି—ଦେ ଦଉଡ଼ ଦଉଡ଼ଯାଇ ପଛରୁ ପହଞ୍ଚିଲି ଗୋଟାଏ 'ଟୋକା ବାବୁ' ପାଖରେ । ରବିବାରିଆ ପୋଷାକ ପିନ୍ଧିଥାଏ ସେ—ଭଦ୍ରଭାବରେ ସୌଜନ୍ୟ ଦେଖାଇ କହିଲି ତାକୁ—

ଶେଷଭୋଜନ ପୂଜାବେଳେ ଥିଲେ ତ ଆପଣ ?"

"କଣ ହେଲା ସେଥିରୁ—ଥିଲି କି ନ ଥିଲି," ଫିସିସ୍ୱରେ କଣେଇ କଟେଇ ଅନେଇ ଉତ୍ତରଦେଲେ ସେ ।

ଅନୁରୋଧକରି ପଗ୍ଭରିଲି ତାଙ୍କୁ—କହନ୍ତୁ ଟିକେ ମତେ 'ଶେଷ ଭୋଜନ' ପୂଜାଟା ହୁଏ କେମିତି ?—ପାଦ୍ରୀ କଣ କହିଲେ ଆଉ ଯେଉଁମାନେ ଯୋଗଦେଲେ, ସେ ପୂଜାରେ, କଣ କରିବାକୁ ପଡ଼ିଲା ସେମାନଙ୍କୁ ।

ଯୁବକ ଜଣକ ମୁଣ୍ଡଟି ତଳକୁ କରି ନୁଆଁଇଦେଇ ମୋ ଉପରେ ଗର୍ଜିଉଠିଲେ ଗୋଟାଏ ଷଣ୍ଢପରି ।

"ତୁ ତେବେ ପଳାଇ ଆସିଛୁ, ଶେଷଭୋଜନ ପୂଜାଜାଗାରୁ, ଆସିନୁ ତୁ, ହଇରେ ହେ, ଅଧର୍ମୀ, ଅବିଶ୍ୱାସୀ, ନା, ପଦେହେଲେ କିଛି କହିବ ନାହିଁ, ବାପା ତୋର ଦେଉ ଆଚ୍ଛାକରି ଛେଚ୍ଚୁଟାଏ ଦେଉ ଏଇଥିପାଇଁ ?"

ଧାଇଁଲି ଘରମୁହାଁ ହୋଇ କଳ୍ପିତ ରୂପେଧରିନେଇ ଥାଏ ମୁଁ—ସେମାନେ ଗୁଡ଼େଇ ଗୁଡ଼େଇ ପଚାରିବେ ମତେ,—ଆଉ ଜାଣି ପାରିବେ ଠିକ୍ "ଶେଷ ଭୋଜନ" ପ୍ରକାରେ ଯୋଗଦେଇନି ମୁଁ ।

କିନ୍ତୁ କାହିଁକି କେଜାଣି 'ଅଭିନନ୍ଦନ' କଲେ ମତେ—ବୁଢ଼ୀ ପଚାରି ବସିଲା ଗୋଟିଏ ମାତ୍ର ପ୍ରଶ୍ନ—

"କେତେ ଦେଲୁରେ ଷ୍ଲେଟ ପାଦ୍ରିଙ୍କି ?"

"ପାଞ୍ଚ ପଇସା" ନିର୍ଦ୍ଦିଷ୍ଟ ଖାପଛଡ଼ା ଭାବରେ କହିଲି ମୁଁ !

"ଧନଟାର ବହୁତରୁ ବେଶୀ ହୋଇଯାଇଥାନ୍ତା' ରେ ! ଆଉ ସାତଟି ମାତ୍ର ବଂଚଲା ତୋ ପାଇଁ—କାଠମୁଣ୍ଡିଆ, ବୋକାଟା !"

ବସନ୍ତ ଆସିଲା, ପ୍ରତ୍ୟେକଟି ଦିନ ସେ କି ପରିପାଟୀରେ ନୂତନରୁ ନୂତନ ବେଶ ପୋଷାକରେ ସଜ୍ଜିତ ହୋଇଉଠିଲା, ପୂର୍ବର ଦିନଟି ଅପେକ୍ଷା ଅଧିକ ଉଜ୍ଜ୍ୱଳ ଅଧିକ ମନୋଜ୍ଞ ହୋଇଉଠିଲା ପରବର୍ତ୍ତୀ ଦିନଟି । ଚୂର୍ଣ୍ଣ ଶସ୍ୟତୃଣରୁ ବାର୍କ ତରୁର ହରେକ ଶ୍ୟାମଳିମାରୁ ବହିବାକୁ ଲାଗିଲା ମଧୁର, ଏକ ମାଦକତାମୟ ସୌରଭ ! ପ୍ରମତ୍ତକରି ହୃଦୟକୁ—ଚଞ୍ଚଳ ହେଲା ମନଟା ମୋର ଅସହନୀୟ ଅକୁଳତାରେ—ଅଧୀର କାମନାରେ—ଯାଆନ୍ତି ଉନ୍ମୁକ୍ତ ପ୍ରାନ୍ତରଗୁଡ଼ିକୁ—ଶୋଇ ରହନ୍ତି ତ ଉଷ୍ମ ସେହି ଧରଣୀର ବକ୍ଷରେ ଶୁଣନ୍ତି କି ଭରତଆର ନିଃସ୍ୱନ—କିନ୍ତୁ ପରକ୍ଷଣରେ ଜାଗିଉଠିଲା—ମନରେ ଏକଣ ହେଲା ମୋର—କିନ୍ତୁ ଏଠି ଯେ ମୁଁ ବ୍ରଶ ମାରିକରି ରଖୁଛି ଶୀତକାଳୀନ ପୋଷାକ ସବୁ—ଟ୍ରଙ୍କରେ ସଜା ହେବାରେ ସାହାଯ୍ୟ କରୁଛି ମୁଁ—

ମକଡ଼ ଚୂନାକରି ରଖୁଛି ଧୂଆଁପତ୍ର ସବୁ—ଝାଡ଼ୁଛି ମଇଳାଧୂଳି ହୋଇଥିବା ତୁଳାର ଗଦିଗୁଡ଼ିକର ଖୋଳି ବେଷ୍ଟ—ବ୍ୟସ୍ତ ମୁଁ ସକାଳୁ ସନ୍ଧ୍ୟାଯାଏ । ଏଠିକି କରିବାରେ ପୁଣି ଏତେ ଅନାବଶ୍ୟକ, ସେଗୁଡ଼ିକ କି ବିରକ୍ତିକର, ଘୃଣା......!

ଅବସର ସମୟରେ କଣ ବା ଥାଏ ମୋର କରିବାକୁ, ଆମର ସେଇ ମଳିନ ଗଳିଟାରେ କଣ ବା ଥାଏ ମୁଗ୍ଧ କରିଲାଭଳି ସୌନ୍ଦର୍ଯ୍ୟ !—ଆଉ ମତେ ବା କେଉଁଠି ମିଳୁଥାଏ ସେହି ଗଳି ଛାଡ଼ି ଦୂରକୁ ଯିବାପାଇଁ କେବେହେଲେ ? ଆମର ଅଗଣାଟା ଫାଟି ପଡ଼ୁଥାଏ ହାଡ଼ଭଙ୍ଗା ଖଟଣିରେ ଭର୍ତ୍ତିପଡ଼ି ଥାନ୍ତି ଥକିଲା ଦୋହଲିଆ ଦେହ—ଚଡ଼ଚଡ଼ା ଖଟିଖିଆ ନାଲି ଖୋଲାଳାରେ—ମୁକୁଳା ବାଳର ବେପଥ୍ୟାଣୀ, ଧୋବଣୀରେ—ପ୍ରତି ସନ୍ଧ୍ୟାରେ, ପ୍ରତିଦିନ ରାତିରେ ଏଭଳି ବ୍ୟଭିଚାରର ଫୁଟି ଉଠୁଥାଏ—ଏମିତି ଜଘନ୍ୟ ଅସଭ୍ୟତାରେ ସହବାସ ଘଟୁଥାଏ ସେମାନଙ୍କ ମଧ୍ୟରେ—ଏତେ ଜଘନ୍ୟ ଏତେ ବୀଭତ୍ସ, ଏତେ ଘୃଣ୍ୟ ଲାଗୁଥାଏ ମତେ ଆଖି ପଡ଼ିଲା ମାତ୍ରେ ଉଦ୍‌ଭ୍ରାନ୍ତ ହୋଇ ଉଠୁଥାଏ ମୁଁ—ମନ ହେଉଥାଏ ଭାବୁଥାଏ—ଆଖି ଫୁଟି ଯାଆନ୍ତା କି ଅନ୍ଧ ହୋଇ ଯାଆନ୍ତି କି ମୁଁ ।

ପରେ କତୁରୀଟାଏ ଆଉ କିଛି ରଙ୍ଗୀନ କାଗଜ ନେଇ ମୋ ଖୁଣ୍ଟିଆ ଆଟୁ ଉପରକୁ ଉଠିଲି—ସେଠି ବସି ବିଭିନ୍ନ ଢାଞ୍ଚାର ଶିକୁଳି, ଫୁଲ, ପତ୍ର କାଟିଲି। ସେଥିରେ ବରଗାଗୁଡ଼ିକ ସଜେଇ ଦେଲି। ଅନ୍ତତଃ ପକ୍ଷେ ମୋର 'ଏକସରିଆ' ବିରକ୍ତିକର ବିସର୍ଣ୍ଣ ଜୀବନକୁ କେତେକ ଅଂଶରେ ସହ୍ୟ କରିଦେଲା। ଗୋଟାଏ ଭୀଷଣ ଅଭିଳାଷ ଜାଗି ଉଠିଲା ମନରେ ମୋର—ସେ ଛ ଭୂତଭଳି ଆଚ୍ଛନ୍ନ କରି ରଖିଲା ମନକୁ—ଯାଆନ୍ତି କି ବାହାରି କେମିତି, କେଉଁଠିକି—ଯାଆନ୍ତି କି ବାହାରି ସେଇଠିକି, ଯେଉଁଠି ଲୋକେ ଶୁଅନ୍ତି କଣ—କଳ କରନ୍ତି କଣ, ଏତେ ଜିଗର ବାରମ୍ବାର ଅଜାଡ଼ନ୍ତି ନାହିଁ ସେମାନଙ୍କ ଆପତ୍ତି ଅଭିଯୋଗଗୁଡ଼ା ଭଗବାନଙ୍କ ପାଖରେ, କିମ୍ବା ନିଜର ଅତି ନିଷ୍ଠୁର ମନ୍ତବ୍ୟ ଅଯଥା ଅପମାନ ଦିଅନ୍ତି ନାହିଁ ଲୋକଙ୍କୁ ସବୁ ଅନେକ ସମୟରେ।

ଇଷ୍ଟର ପର୍ବର ଆଗ ଶନିବାର ଦିନ ସେମାନେ ଅଲୌକିକକାର୍ଯ୍ୟ ଦେଖାଉଥିବା ଖ୍ରୀଷ୍ଟଧର୍ମର ମ୍ୟାଡୋନା ଭର୍ଜିନ୍‌ଙ୍କର ପଟମୂର୍ତ୍ତିଟି ଆଣିଲେ ଆମ ସହରକୁ ଓଗ୍ରନସ୍କି ମନାଷ୍ଟେରୀ ବା ଗିର୍ଜାରୁ। ସ୍ଥିର ହୋଇଥାଏ—ଏଇ 'ଭର୍ଜିନ' ସହରରେ ଆମର ଅତିଥିଣୀ ହୋଇ ଅବସ୍ଥାନ କରିବେ ଜୁନ୍ ମଝାମଝି ଯାଏ—ସେଇ ସମୟ ମଧ୍ୟରେ ସେ ଯାଜକ—ପଲ୍ଲୀଅଞ୍ଚଳର ଯିବେ ପ୍ରତ୍ୟେକ ଲୋକର ଘରକୁ।

ମୋ ମାଲିକମାନଙ୍କ ଘରକୁ ତାଙ୍କୁ ଅଣାଗଲା ପରେ ରବିବାର ଛଡ଼ା ସପ୍ତାହର ଗୋଟିଏ ଦିନରେ—ମୁଁ ଥାଏ ରୋଷାଇଘରେ, ଘଷିମାଜି ସଜଉଥାଏ କଂସାବାସନ ଗୁଡ଼ିକ,—ଶୁଣିଲି ସାନ ମାଲିକାଣୀ ଆରପାଖ ଘରଟିରୁ ପାଟିକରି ଉଠିଲା ଛାନିଆରେ, ଭୟାତୁରିଆ ସ୍ୱରରେ—

"ଯାଆରେ, ଆରେ ଯାଆରେ, ଖୋଲିଦେଏରେ ଦାଣ୍ଡ ଦୁଆରଟା ଆଗ! ଆସୁଛନ୍ତି ସେମାନେ—ଆଣିଲେଣି ହେଇ ଓର୍‌ନ୍‌ସ୍କାୟା କୁମାରୀ ମେରୀଙ୍କୁ।"

ଅସନା 'ମସନା ହୋଇଥାଏ ମୁଁ, ହାତ ଦୁଇଟା ମୋର ଯାଲୁବାଲୁ ହୋଇଥାଏ 'ଗ୍ରିଜ୍' ଆଉ ମାଟି ଓ ଇଟାଚୂନାରେ—ସେମିତି ଦୌଡ଼ିଗଲି ମୁଁ ତଳମହଲାକୁ—ଖୋଲିଦେଲି ଦାଣ୍ଡଦୁଆରଟିକୁ, ଦୁଆରମୁହଁ ଏରୁଣ୍ଡିରେ ଛିଡ଼ା ହୋଇଥାଏ ଟୋକା ପାଦ୍ରି ଗୋଟାଏ ଗୋଟାଏ ହାତରେ ଲଣ୍ଠନ— ଅରହାତରେ ଧୂପଦାନୀ ।

"ଆସିବାକୁ ଏତେ ସମୟ ଏଁ।" ଗାଉଁଗାଉଁ ହେଲା ବାବାଜୀ।

"ଆଆ, ଧର—ସାହାଯ୍ୟ କର ମତେ।"

ସହରର ବାସିନ୍ଦା ଦି'ଜଣ ଓଜନିଆ ଚଉକାଠିଆ ବଂଧେଇ ମେଟରେ ପଟ ମୂର୍ତ୍ତିଟିକୁ ବୋହି ବୋହି ଟେକି ଆଣିଲେ ଅଣଓସାରିଆ ପାହାଚଗୁଡ଼ିକ ଉପରେ। ସେମାନଙ୍କୁ ସାହାଯ୍ୟ କଲି ମୁଁ—ଗୋଟାଏ କଣରେ ମୂର୍ତ୍ତିଟା ତଳେ

କାଛଟା ଲଗେଇ ଦେଲ, ଧରିଲ ଅପନା ହାତରେ । ଆମ ପଛେ ପଛେ ଖଟି ଖଟି ପାଦରେ ଦମ୍ ଦମ ହୋଇ ଆସୁଥାନ୍ତି ଥାକୁଲ-ଆକୁଲ ବାବାଜି କେତୁଟା ବାଧ—ହୋଇ ଅନିଚ୍ଛାରେ ଘାଗଡାଗଳାରେ ଉଚ୍ଚାରଣ କରୁଥାନ୍ତି ମନ୍ତ୍ରପରି—"ହେ ମଙ୍ଗଳ ମୟି, ପୂର୍ଣ୍ଣମୟି, କୁମାରୀ ମେରି ଭର୍ଜିନ ! ମିନତି କଣ୍ଠରୁ ଯୋଡହସ୍ତରେ ନିବେଦନ କରୁଛୁ—ଶାନ୍ତିପାଇଁ ତୁମର ମଧ୍ୟସ୍ଥତା, ତୁମର ହସ୍ତକ୍ଷେପ ।"

"ଆରେ ମୋ ହାତ ଦୁଇଟାକୁ ଶୁଖେଇ ଝଡେଇ ଦେବେ ନାହିଁତ, ଶେଷ କରିଦେବେ ନାହିଁ ତ ସେ—ଏମିତି ଅସହ୍ୟ ହାତରେ ଧରୁଛି ତାଙ୍କୁ, ବୋହୁଛି ତାଙ୍କୁ", ବଡଦୁଃଖରେ ଦୁର୍ଦ୍ଦଶାରେ ବୁଡିଯାଇ ଭାବ ହେଉଥାଏ ମୁଁ ।

ଘରକଣରେ ନେଇ ସେମାନେ ମୂର୍ତ୍ତିଟିକୁ ରଖିଲେ ସଫା-ସୁନ୍ଦର-ପକା ଯୋଡିଏ ଚୌକି ଉପରେ, ଦି' ପାଖରେ ତାକୁ ଧରି ଛିଡା ହେଲେ ଯୋଡିଏ ଖୁବ୍ ସୁନ୍ଦର ଆକୃତିର ଯୁବକ ଟୋକା ବାବାଜି, ସେମାନଙ୍କର ଉଜ୍ଜ୍ୱଳ ତେଜୋମୟ ଆଖିଗୁଡ଼ିକ,—ତୁଳାପରି ଫରୁଫୁରୁ ମେଞ୍ଚ ମେଞ୍ଚ ବାଳ, ଆଉ ପ୍ରସନ୍ନ ମୁହଁ ଦୁଇଟିକୁ ଚାହିଁଲେ ମନେହେଉଥାଏ—ନିଷ୍ପାପ ନିଷ୍କଳଙ୍କ ହୃଷ୍ଟପୁଷ୍ଟ ଶିଶୁ ଦିଓଟି ଯେମିତି ସେମାନେ । ଆରମ୍ଭ ହେଲ ପୂଜା, ଆରମ୍ଭ ହୋଇଗଲ ପ୍ରାର୍ଥନା !—

"କରୁଣାମୟି ! ହେ ଭଗବାନଙ୍କ ଜନନୀ !...ହେ ଦେବ ଜନନୀ !..." ଉଚ୍ଚାରଣ କଲ ଅତିକାୟ ପାଦ୍ରିଟିଏ ତତ୍କ୍ଷଣ କେଇଁ କେଇଁଆ କଣ୍ଠରେ ବା ମନ୍ତ୍ର ପଢିଲପରି ଗଦ୍‌ଗଦିଆ ଗୋଛାଏ ବାଳ ଭିତରୁ ନିଜର ଫୁଲ୍‌କା ଫୁଲ୍‌କା ଗାଲ ଭଳି କାନକୁ ଆଙ୍ଗୁଠିରେ ଛୁଇଁ ଛୁଇ ଓଟାରି ଓଟାରି !

"ହେ ପବିତ୍ରାତ୍ମା ! କୁମାରୀ ହେ ମେରୀ ! ତୁମର କରୁଣା, ତୁମର ଦୟାର ଭିଖାରୀ ଆମେ—କରୁଣା କର । ଦୟାକର—କ୍ଲାନ୍ତ ଭାବରେ ଗାଇବାକୁ ଲଗିଲେ ବାବାଜିଯାକ, ସମସ୍ତେ !

କୁମାରୀ ମେରୀଙ୍କ ପ୍ରତି ଶ୍ରଦ୍ଧା ଆସିଥାଏ ମୋର—ଆଈମାର କଥା ଅନୁସାରେ ସେଇ ।

ଆନନ୍ଦମୟ କରନ୍ତି ଧରିତ୍ରୀକୁ, ଯାହା ଶୁଭ୍ର ଓ ସୁନ୍ଦର, ପବିତ୍ର ଓ ନିର୍ମଳ ସେହିଥିରେ ହିଁ ପୂର୍ଣ୍ଣ କରନ୍ତି ବସୁଧାକୁ—ଦରିଦ୍ର ଦୁଃସ୍ଥ ଜନର ସାନ୍ତ୍ୱନା ରୂପରେ, ଆଶ୍ୱାସନା ରୂପରେ, ଯେତେବେଳେ ମୁହୂର୍ତ୍ତିଟି ଆସିଲ ତାଙ୍କୁ 'ଚୁମ୍ବନ' କରିବାକୁ ହେବ—ବୟସ୍କମାନେ କେମିତି ଚୁମ୍ବନ କରୁଥିଲେ ଲକ୍ଷ୍ୟ ନକରି ଥରି ଥରି ମୋର ଓଠ ମୁଁ ଲଗାଇ ଦେଲି ତାଙ୍କର ଅଧରରେ !!

କାହାର ସବଳ ଶକ୍ତ ହାତଟା ମୋତେ ଟାଣିନେଇ ଠେଲିଦେଲ ଦୁଆର-ମୁହଁ କଣକୁ । ମନେ ନାହିଁ —ବାବାଜିମାନେ ଫଟମୂର୍ତ୍ତିକି କେମିତି ବୋହି ନେଇ ଗଲେ ପୁଣି,—ମନେଅଛି, ସ୍ପଷ୍ଟ, ବେଶ୍ ମନେପଡୁଛି କିନ୍ତୁ ମୋର ମାଲିକ ଆଉ ମାଲିକାଣୀମାନେ ମତେ ଘେରି ଛିଡା ହୋଇଥାନ୍ତି ମୋ ପାଖରେ, ତଳେ ବସି

ଥାଏ ମୁଁ ପାଣ୍ଡିଆ ପକେଇ,—ବଡ ଭୟ ଆଉ ଉଦ୍‌ବେଗରେ ଆଲୋଚନା କରୁ-ଥାନ୍ତି ସେମାନେ— । କଣ ହେବଟି—କଣ ଘଟିବଟି ସ୍ୱାର !

"ନା, ଆମର ପାଦ୍ରିଙ୍କ ସଙ୍ଗେ କଥାବାର୍ତ୍ତା ହେବା ଉଚିତ—ଭଲଭାବରେ ଆମଠୁ ଏଭଳି ଘଟଣାମାନ ସେ ବୁଝିପାରନ୍ତି । ହଇରେ ହେ ବୋକା !" "ଅଲିକିଆ ନରମଗାଳରେ ମତାମତ ଶୁଣାଇ କହିଲେ ମୋର ମାଲିକ, ହଇରେ, ଆଜିଯାଏ କଣ ଜାଣିନୁ ତୁ, କୁମାରୀ ମେରୀଙ୍କୁ ଚୁମ୍ବନ କରନ୍ତି ନାହିଁ, ତାଙ୍କ ଓଠରେ, ଏତ ସ୍କୁଲରେ ପାଠପଢ଼ା, ବହୁତ ଭଲକଥା ଶିଖେଇଛୁ ତ !"

ଅନେକ ଦିନ ଯାଏ ଦୁକ୍‌ଦୁକ୍ ମନରେ ଅପେକ୍ଷା କରି ରହିଲି ନିନ୍ଦିତ ଦଣ୍ଡିତ ନରକରେ ନିକ୍ଷିପ୍ତ ଅଭିଶପ୍ତଟି ପରି !

ପ୍ରଥମ ଅପରାଧ ମୋର ଅବଶ୍ୟ ମଇଲା ହାତରେ ଧରିଥିଲି କୁମାରୀ ମେରୀଙ୍କୁ, ତା ପରେ ଦ୍ୱିତୀୟରେ ଚୁମ୍ବନ କରିଥିଲି ତାଙ୍କୁ ଭୁଲ୍‌ଭାବରେ, ପ୍ରମାଦ-ଜନକ ରୀତିରେ ! ଓଃ— ଏଇଥିପାଇଁ. ଏଇଥିପାଇଁ କୈଫିୟତ ତଲବ ହେବ ବହୁତ ହେବ ମୋର ! ଓଃ, ନିଶ୍ଚେ ନିଶ୍ଚେ କୈଫିୟତ ଦେବାକୁ ହେବ ମତେ । ମନ ହେଲି କିନ୍ତୁ ! ଖୁବ୍ ସମ୍ଭବ ଦେବୀ କୁମାରୀ ମେରୀ କ୍ଷମାଦେଲେ ମତେ, କ୍ଷମାକଲେ ମୋର ଅନିଚ୍ଛାକୃତ ପାପାଚରଣକୁ । କିମ୍ବା ବୋଧହୁଏ—ତାଙ୍କର ଶାସ୍ତିଟା ଏତେ ସରଳ ଉଶ୍ୱାସିଆ ଥିଲି ଏଇ—ଭଲଲୋକଗୁଡ଼ିକ ମୋ ଉପରେ ଘନଘନ, ଅହରହ ଯେଉଁ 'ଶାସନ'-ଗତ ଉତ୍‌ପୀଡ଼ନ ଚଲାଇଥିଲେ—ମତେ ଯେଉଁ 'ଶାସ୍ତି' ଦେଉଥିଲେ । ତାହାର ଗହଳରେ ସେ 'ଦଣ୍ଡ' ମୋର ଅଦୃଶ୍ୟରେ କୁଆଡ଼େ ଆସି କୁଆଡ଼େ ନିଭେଇଗଲା !

କେବେ କେମିତି ବୁଢ଼ୀକୁ ଚିଡ଼େଇବା ମତଲବରେ ମୁଁ ଅତି ବିନୟରେ କିଛି ନ ଜାଣିଲାପରି କହୁଥାଏ—"ଲାଗୁଛି, ଦେବୀ କୁମାରୀ-ମେରୀ ଭୁଲିଗଲେ ମତେ ଦଣ୍ଡ ଦେବାକୁ !"

"ରହ—ଅସୁରଧର ! ପାଇବୁ ଯେ !" ବୁଢ଼ୀ ଉତ୍ତର ଦିଏ ଯଦି—

"ଏମିତି କିଛି ଡେରି ହୋଇଯାଇନି ଯେ !"

······ଖଡ଼ିଆ ଆଣ୍ଠିରେ, ଛାତ ଉପରେ ବରଗଛଗୁଡ଼ିକ ନାଲି ଗୋଲାପି ଗୁହାପୁଡ଼ିଆ କାଗଜ, ଟିଣପତର ଆଉସବୁ ଖୁଣ୍ଟିନାଣ୍ଟି ଫୁଲ ଫଳ କେତେ କଣରେ ସଜାଇଥାଏ—ସେତେବେଳେ ପଦଯାତ୍ରଥାଏ—ମୁଣ୍ଡକୁ ଯାହା ଆସୁଥାଏ ତା' ବିଷୟରେ ଅଉ ଗୀର୍ଜା ଭଜନଗୀତ ରାଗିଣୀରେ ମନ୍ତ୍ରୋଚ୍ଚାରଣ ଭଳି ଗୁଣୁ ଗୁଣୁ ହୋଇ ଗାଉଥାଏ. । ଘୋଡାରେ ଝପଟେଇ ଚଢିଗଲାବେଳେ କାଲମୁକମାନେ ଗାଆନ୍ତି ଯେମିତି ।

ଏଠି ବସେ ଆସି ଆହୁରି ଥରେ
ଖଡ଼ିଆ ଆଣ୍ଠୁରେ ଏ ଛାତ ପରେ !
କାଟେ ଟିକିଟିକି କାଗଜମାନ
ତରଳାଏ ସବୁ ବଙ୍ଗରେ ଜାଣ,

ହୋଇଥାନ୍ତ ହେଲେ କୁଳରେ ମୁହିଁ,
ପଳାଇ ପାରନ୍ତ ଛାଡ଼ି ଏ ଭୂଇଁ
ଏମାନେ ତ ଏଠି କହନ୍ତ ରଜା
ମୁହଁ ଗୋଲ ନା ତୁ ବୋକାରେ ଗଧା !
ଖାଲି କଥା ମାନ୍, ନୋଇଁଆ ମୁଣ୍ଡ
ଶିଖ୍ତ ଏଇଆ ନ ଖୋଲ ତୁଣ୍ଡ

ବୁଢ଼ୀ ଆଖିରେ ପଡ଼ିଲା ଘର ସଜାସଜିଟା,—ଗଲାଖଙ୍କାର—ଗୁଁ ଗୁଁ ହୋଲ-ମୁଣ୍ଡ ହଲେଇଲା ବୁଢ଼ୀ—

"ଆରେ ଝୋପେଇ ଘରଟା ସଜଡ଼ିଲୁ କାହିଁକରେ ଏମିତ—" କହିଲା ସେ—

ଧନେ ମାଲିକ ମୋର ପଶି ଆସିଲେ ମୋ ଖଞ୍ଜିଆ ଆଡ଼୍କୁ ବଖୁରିକୁ—ନିରଖି ନିରଖି ଦେଖିଲେ ମୋର ହାତର କାରୁକାମକୁ—କହିଲେ ନିଃଶ୍ୱାସଟିଏ ପକେଇ—

"ଏଟା—ଧୁରନ୍ଧରିକ ! ଗୋଟାଏ କୌତୁକିଆ ନବଳିଆ ତୁ,……! କିଣ ସେ ହେବୁ ଶେଷରେ—ହେବୁ ଯାଦୁକରଟାଏ ? ଏଟା—କିଛୁ ନ କର—"

ଜାର୍ ନିକୋଲାସ ପ୍ରଥମଙ୍କ ଅମଳର ପାଞ୍ଚ ପଇସିଟିଏ ବଢ଼େଇ ଦେଲେ ମତେ, ମୋ ହାତକୁ ।

ସବୁ ତାରଟିଏ ନେଇ ଗଳେଇ ଦେଲି ସେଥିରେ ପାଞ୍ଚ ପଇସିଟିକୁ,—ଝୁଲେଇ ଦେଲି ପଦକଟାଏ ପରି ମୋର ହରରଙ୍ଗୀ ସାଜସଜ୍ଜା ଆଉ ଖେଳଣାଗୁଡ଼ିକ ଭିତରେ ସବୁଠୁ ବଳି ବଢ଼ିଆ, ଦେଖାଣିଆ ଖୋଲିଲିଭଳି ସ୍ଥାନରେ !

ତହିଁଆର ଦିନ ଦେଖିଲି—ମୋ ସରୁତାରର ହାର ସମେତ ମୁଦ୍ରାଟି ଏକାବେଳକେ ଅଦୃଶ୍ୟ । ନିଶ୍ଚିତରୂପେ ଜାଣିଲି—ତାକୁ 'ହରଣଚାଲ' କରିଛି—ବଡ଼ ମାଲିକାଣୀ ! ବୁଢ଼ୀ ।"

## ପଞ୍ଚମ

ବସନ୍ତ କାଳରେ ହିଁ ପଳେଇଗଲି ଶେଷରେ । ଧନେ ପାଉଁରୁଟି କିଣୁଥାଏ ସକାଳ ଜଳଖିଆ ପାଇଁ । ରୁଟି ସେକାଳିର କଳି ଲାଗିଲା ତା' ଖଣ୍ଡରପା ସାଙ୍ଗରେ । ଗୋଟାଏ ଓଜନିଆ ବଟକରାରେ ସେ କଷିକରି ପାହାରେ ଦେଲା ଖଣ୍ଡରପା କପାଳରେ । ଖଣ୍ଡରପାଟା ତାର ଦୌଡ଼ିଗଲା ରାସ୍ତା ଉପରକୁ—ସେଇଠି ସେ ଟଳିପଡ଼ିଲା, କଣ୍ଡୁଡ଼ିହୋଇ ପଡ଼ିଲା ଅଚେତ ହୋଇ, କେଉଁଠି ଥିଲେ ଲୋକଗୁଡ଼ାକ

ଘେରଗଲେ ଆସି । ମାଇଁ୍ଟିକୁ ଗାଡ଼ିରେ ପକେଇ ନେଇଗଲେ ଡାକ୍ତର-ଖାନାକୁ । ଗାଡ଼ିଟିର ପଛେ ପଛେ ଧାଉଁଥାଏ ମୁଁ—ତା ପରେ କେମିତି କେଜାଣି, ମୋ ଅଜାଣତରେ, ଦେଖିଲି ମୁଁ ପହଞ୍ଚିଛି ଯାଇ ଛୁଡ଼ା ହୋଇଛି ଭଲ୍‌ଗା କୂଳରେ—ହାତରେ ମୋର କୋଡ଼ିଏଟି ପଇସା ।

ବସନ୍ତର ଦିନଟି ହସିଲି କେତେ ମେଦୁରେ କି ସ୍ନିଗ୍ଧଭାବରେ ସତେ । ଦୁଇକୂଳ ଖ ଇ ଅନେକ ଦୂରଯାଏ ବଢ଼ି ଯାଇ ଧୋରରେ ଉଚ୍ଛୁଳୁଥାଏ ଭଲଗା । କି ବିପୁଳା କି କମ୍ପନମୟୀ ଲାଗୁଥାଏ ପୃଥ୍ୱୀଟି ସତେ ! ଆଉ ମୁଁ ? ସେଇଦିନଟି, ସେଇ ମୂହୂର୍ତ୍ତଟି ପର୍ଯ୍ୟନ୍ତ ମୁଁ, ମୁଁ ହିଁ ଥିଲି ମନୁଷ୍ୟଟିଏପରି ଗହ୍ୱରରେ, ଗର୍ତ୍ତରେ କେଉଁଠି । ଠିକ୍ କରିନେଲି, ଆଉ, ଆଉ ମୁଁ ଫେରିବି ନାହିଁ ମାଲିକ ଘରକୁ । ନା ଯିବି ନାହିଁ ବି ଲୁନାଙ୍କିନୋ, ଆଇମା ପାଖକୁ—ରଷିପାରିନି, କଥା ଦେଇଥିଲି ରଖିପାରିନି । କୋଉ ସାହସରେ, କୋଉ ସବାଗରେ ଆଉ ମୁହଁ ଦେଖାଇବି ତାକୁ ? ମୋ ଲଜ ହିଁ ମତେ ଖାଉଥାଏ । ଏହାଛଡ଼ା ଫେରିଗଲେ ମୁଁ କେମିତି ହକୁଟି କାଢ଼ି ଆନନ୍ଦରେ ମତେ ଖାଲି ଅନେଇ ରହିବେ ଅଜା ।

ଦି ତିନି ଦିନ ଏମିତି ନିରୁଦ୍ଦେଶ୍ୟ ଭାବରେ ବୁଲିଲି ଖାଲି ନଈ କୂଳେ କୂଳେ—ମୁଠିଏ ମୁଠିଏ ଖାଇବାକୁ ଦେଉଥାନ୍ତି ମତେ ଆଦରରେ ବେଶ୍ ଜାହାଜୀ ଖଲାସୀ ସବୁ । ତାଙ୍କ ପାଖରେ ରାତିରେ ଶୋଉଥାଏ ମୁଁ ଘାଟଘରେ—ଡଙ୍ଗା ଉପରେ କେଟିରେ । ଶେଷରେ ଦିନେ ଜଣେ କହିଲା ମତେ ତାଙ୍କ ଭିତରୁ—

"ପୁଅରେ, ଏଠି ଏମିତି ପଡ଼ିରହି ଏଣେତେଣେ ବୁଲିଲେ କିଛି ଭଲ ହେବନାହିଁରେ ତୋର । 'ଦୋବ୍ରୀ' ଜାହାଜରେ ଯାଉନୁ କୁଆଡ଼େ ? ବାସନ ଧୁଆଳିଟିଏ ଲୋଡ଼ୁଛନ୍ତି ସେମାନେ ସେଠି ।"

ଗଲି ମୁଁ । ଜାହାଜଟିର କେବର୍ତ୍ତା ପାଖକୁ—ଡେଙ୍ଗା, ଦାଢ଼ିଆ ଲୋକଟିଏ । କଳା ସିଲକ୍‌ର ଟୋପି ତାର ମୁଣ୍ଡରେ । ଗୃହିଁଲା ମତେ କେମିତି 'ମେଘୁଆ' ମେଘୁଆ ଚଷମାଦିଆ ଆଖିରେ ।

"ଦି ରୁବ୍ଲ (ଟଙ୍କା) ମାସକୁ କହିଲା ଥିରକିନ । "ପାସପୋର୍ଟ ? ଗ୍ଭଡ଼ପତ୍ର ?"

ମୋର ପୁଣି ପାସପୋର୍ଟଟାଏ ଥାଏ ବା ସେଉଁଠି ? ମୁହୂର୍ତ୍ତେ ଖଣ୍ଡେ କଣ ଭାବିହେଲା ଜାହାଜୀ କେବର୍ତ୍ତା, କହିଲା ତା' ପରେ—

"ଯା, ମାଆକୁ ଡାକିଆଣ ଯା !"

ଧାଇଁଲି ମୁଁ ଆଇମା ପାଖକୁ । ବେଶ୍ ପସନ୍ଦକଲା ଘୋଉ ପଦକ୍ଷେପ ନେବାକୁ ଯାଉଥାଏ ମୁଁ । ସେଥିରେ ମଞ୍ଜୁର ଦେଲା ତାର—ଅଜାଙ୍କ ସାଙ୍ଗେ ଲଗେଇ ତାଙ୍କୁ କୁହାବୋଲାକରି ପଠେଇଲା ତାଙ୍କୁ ସରକାରୀ ବାଣିଜ୍ୟ ବିଭାଗର ଦପ୍ତରକୁ ପାସପୋର୍ଟ ଆଣିବା ପାଇଁ । ନିଜେ ସେ ଗ୍ଭଲିଲା ମୋ ସାଙ୍ଗରେ—ଜାହାଜକୁ ।

"ବେଶ୍ ଭଲ !" ଥରେ ଅନେଇ ଦେଇ ଆମ ଆଡ଼କୁ କହିଲା ସେ—ଆସ ମୋ ସାଥିରେ ।"

ମତେ ଆଗେ ଆଗେ ବାଟ କଢ଼େଇ ନେଇଗଲେ ସେ ଜାହାଜର ମଙ୍ଗକୁ । ବିଶାଳକାୟ ରେସ୍ତୋରାଁ ଗୋଟିଏ, ଧଳା ଜାମା ଧଳା ଟୋପି ପିନ୍ଧି ବସିଥାଏ ଟେବୁଲ ପାଖରେ । ଟିକିଏ ଟିକିଏକର ପିଉଥାଏ ଧୂଆଁ ଉଡୁଥିବା ଚାହା, ଆଉ ଟାଣୁଥାଏ ସାଙ୍ଗେ ସାଙ୍ଗେ ପୁଣି ମୋଟା ସିଗାରେଟ୍‌ଟାଏ । ବେବର୍ତ୍ତା ମତେ ଠେଲିଦେଲା ଟିକେ ତା'ଆଡ଼କୁ ।

"ବାପନ-ଧୂଆଁଳା !"

ସାଙ୍ଗେ ସାଙ୍ଗେ ବୁଲିଗଲା ସେଠୁଁ । ନାକରେ ଘୁଙ୍ଗ୍ରିକିନା କଲା ଦେଷେଯ୍ୱା, ଚାକ୍ଷୁର ଉଠିଲା କଣ ହଲକ ତାର—ପାଟିକର ଉଠିଲା ପଛେ ପଛେ ତାର—

"କିଜେ ସମକୁ ବି ପଇସା ଦେଇ ଖଟେଇବୁ, ଭଡ଼ା ରଖିବୁ ତୁ—ଖଟେଇବୁ ବହୁତ ଧନ, ନାଇଁ, ଶଳା ନା ?"

ରାଗରେ ପଛପଟକୁ ଗ୍ରୁଟିଦେଲା ତାର ବିରାଟ ମୁଣ୍ଡଟାକୁ ଉଣ୍ଡାହୋଇ ଟିକି ଟିକି କଣ୍ଟୁରି ବାଳରେ ଭର୍ତ୍ତି ଯେଉଁଟି—ଦପ୍ ଦପ୍ ଜଳନ୍ତା ଗୁହାଣୀଟା ହାଣିଲା ମତେ ଅନ୍ଧାରିଆ ଆଖି ଭିତରୁ ତାର । ଗାଲ ଦୁଇଟାକୁ ଫୁଲେଇ ଦେଇ ପବନ ବାହାରକର ସେଥିରୁ ଫୁ କରିଦେଲେ ଉଡ଼ିଟାଏ ଗ୍ରୁଆଁଳା ଯେମିତି ।

"କିଏ ରେ ତୁ ?"

ଲୋକଟା ଭଲ ଲାଗିଲା ନାହିଁ ମତେ , ଧଳା ପୋଷାକ ପିନ୍ଧିଥାଏ ସତ, ଦିଶୁଥାଏ କେମିତି ମଇଳା, ଅପନା । ଆଙ୍ଗୁଠି ଉପରେ ବି ତାର ମାଡ଼ିଯାଇଥାଏ ବାଳଗୁଡ଼ାକ, ବୁଦୁବୁଦିଆ । ବଡ଼ ବଡ଼ କାନ ଦୁଇଟାରୁ ଓହଳି ପଡ଼ିଥାଏ ଲମ୍ବା ଲମ୍ବା ମେଞ୍ଚି ମେଞ୍ଚି ବାଳ ବି ।

"ଖରା ଖେଳ କରୁଚ ମତେ !" କହିଲି ମୁଁ । ମିଟିମିଟି କଲା, ଉଠେଇଲା ପକେଇଲା ପତା ଦୁଇଟିକୁ ତାର । ତା ପରେ କଣ ହେଲା କେଜାଣି ହଠାତ୍ ବଦଳିଗଲା ତାର ଭୟଙ୍କର ମୁହଁଟା । ସେ କି ଉଦାର ହସଟିକିଏ ସତେ ! ଓସାରିହୋଇ ତେଉରେ ତେଉରେ ପଛକୁ ଘୁଞ୍ଚେଇ ଘୁଞ୍ଚେଇ ନେଲା ଲାଲ ଲାଲ ଗାଲ ଦୁଇଟିକୁ ତାର କାନମୂଳକୁ ଠିକ୍ । ପଡ଼ିଲା, ପଦାରେ ଫୁଟି ପଡ଼ିଲା ବଡ଼ ବଡ଼ ଘୋଡ଼ା ଦାନ୍ତଗୁଡ଼ିକ । ଥିରକିନା କେତେ ମୃଦୁଭାବରେ ସତେ, ଦ'କରରେ ଝୁଲି ପଡ଼ିଲା କଣହଲକ—ଦେଖିଦେଲା ଛବି ମନହେଲା ମୋହିଯୋଚି ମଧୁର ପ୍ରକୃତିର ଘରଣୀଟିଏ ଯେମିତି ।

ହଲେଇ ହଲେଇ ଫିଙ୍ଗିଦେଲା ତାର ଅଧାପିଆ ଚା'ର କାଣ୍ଡିଟିକକ । ଢାଳିଲା ଢଆଁର ଥିବା ଚା' ଆଉ ଏକ ଗ୍ଲାସରେ । ଠେଲିଦେଲା ମୋ ଆଡ଼କୁ, ଠେଲିଦେଲା ଟିପ-ନ-ଲଗା ରୁଟିଟାଏ ପୂରା, ଆଉ ବଡ଼ ବେଶ୍ ମାଉଁସ-ପୂରା ମଣ୍ଡା ଗୋଟିଏ ।

"ଲେ ! ବାପ ମାଆ ଅଛନ୍ତି ? ଜାଗା, ସ୍କୁଲକର ଜାଣୁ ? ଚଳନ୍ତା କ'ଣ—ସମସ୍ତେ, ସମସ୍ତେ ଶ୍ରେର, ଏଠି ଶିଖେଇ ଦେବେ—ଶୀଘ୍ର, ଖୁବ୍ ଶୀଘ୍ର ବୁଝୁଁ ବୁଝୁଁ ।"

କୁକୁରଭଳି ଭୁକି ପକେଇଲା କଥାଗୁଡ଼ାକ । ପ୍ରକାଣ୍ଡ ପ୍ରକାଣ୍ଡ ଗାଲ ବିଟା, ଝିଅର ହୋଇ ହୋଇ ନେଲାଆସିଆ, ଆଉ ନାକ ପାଖରେ ଥାଏ ଯାହା ମାଉଁସ ବୋଲ—ଗ୍ରାଇହୋଇ ଯାଇଥାଏ ଶିରାଗୁଡ଼ାକର ସଧୁଆ ଜାଲରେ । ଲାଲ ଆଉ ଫୁଲିଲା ଫୁଲିଲା ସେଇ ନାକଟା ବି ଜବରଦସ୍ତ କେମିତି ମଣ୍ଡି ବସିଥାଏ ମଣ ଉପରେ ଘଷି ହେଉଥାଏ ଥରକୁ ଥର, ବହଳିଆ ତଳଓଠଟା ଓହଳି ପଡ଼ିଥାଏ ତୁନିଅଟାଯାକୁ ଘୃଣାକର ଯେମିତି ବେଙ୍ଖାତିରରେ, ଅଉ ସିଗାରେଟ୍‌ଟାଏ ଧନ୍ ଧନ୍ ହୋଇ ଜଳୁଥାଏ ପାଟିର ଗୋଟାଏ କଣରେ । ଧର ହେଉଥାଏ ପ୍ରାୟ ସେଇ ମାଙ୍କ ସେ ଯେମିତି ଅସ୍ତିଥାଏ ଗାଧୁଆ ଘରୁ । କାରଣ ଦେହରୁ ତାର ବାହାରୁଥାଏ ବାଇଁ ଗଛ ଛେଲର ଆଉ ମଞ୍ଚ ମଦର ବାସନା । ବେକରୁ ଅଉ ଅଧାକପାଳ ଦୁଇଟାରେ ଥାଏ ଥୋପାକୁ ଥୋପା ଝାଳ, ଗୋଟିକି ଗୋଟି ଟିକି ଟିକି ମାଳିଟିମାନ ଭଳି ।

ଖାଇ ସାରିଲା ପରେ ମୁଁ, ମୋ ହାତରେ ଗଳେଇ ଦେଲା ରୁବଲ୍‌ଟିଏ ।

"ଯା, କିଣିବୁ ଯା—ଦ'ଟା ଆପ୍ରନ୍ । ସେଥିରେ ଲଖିଥିବ ମୁହଁ ପୋଛିଅଃ ମୁହଁ ପୋଛୁ କନା ଯେମିତି, ନା, ର଼ଃ, ଯାଏଁ ନଜେ ମୁଁ କିଣିଅଣେ ଦଇଟା ।"

ଟୋପିଟାକୁ ସଜାଡ଼ି ନେଲା—ବାହାରେ ପଡ଼ିଲା ଦୋହଲି ଦୋହଲି ଏକରକୁ ସେକର । ପାଦ ଦୁଇଟାକୁ ଛନ୍ଦୁରି ମନ୍ଦୁରି ଘୋଷାରି ଘୋଷାରି ଖାଲୁପରି, ଗ୍ଳାଲିଲା ସେ ଡେକ୍ ଉପରୁ ।

...ରାତି, ଚକ୍ ଚକ୍ ହୁଙ୍କଲା ଜହ୍ନଟା, ଜାହାଜଠୁ ଦୂରରୁ ଦୂରକୁ ଛୁଟି ପଳାଉଛି—ଗ୍ରାଟିପିଟି ହୋଇ ତରବରରେ । ପଳାଉଛି ବାଆଁ କରରେ ଘାସ ବଣକୁ । ପୁରୁଣା ମରହଟିଆ ଧୂସରିଆ ଜାହାଜଟା ଆମର, 'ଧୂଆଁ ନଳରେ ଧଳା ଧଳା ଗୋଳେଇ ଦାଗ—ମୁଦଆଟିମାନ ଅଳସେଇ ଅଳସେଇ ଗ୍ଳାଲିଚ ଗ୍ୱିବୁଲୁ ଗ୍ୱିବୁଲୁ ଆହୁଲରେ ବୁଡ଼େଇ ପାଣି ଭିତରେ ଗ୍ଳାଲିଚ ସେ । ଧୀରେ ଧୀରେ କଳା କଳା ଅନ୍ଧାରିଆ ଅନ୍ଧାରିଆ ନଇକୂଳସବୁ ଠାଆକୁଠାଆ ଉଠି ଉଠି ଆସୁଛି ଜାହାଜଟାକୁ ଭେଟିବା ପାଇଁ । କାହିଁ କେତେ ଘର ଝରକାବ୍ ଅଲୁଅର ଟିକି ଟିକି ଚକବକକ ପ୍ରତିଫଳନଟିମାନ ଯେମିତି ଗ୍ରାଇଗୁଡ଼ାଏ ଘୁଞ୍ଚିଏ ନଚେଇ ନଚେଇ ଉଠି ଆସୁଛି ଧୀରେ ଧୀରେ ସନ୍ତର୍ପଣରେ ଯଦେତ ବା । ପଲ୍ଲୀଗୁଡ଼ିକରୁ ଭାସି ଆସୁଥାଏ ଗୀତର ଲହରୀ ପରେ ଲହରୀ କଣେଶାୟା ତରୁଣୀଗୁଡ଼ିକ ମଧୁରକଣ୍ଠ ସ୍ୱର ବହାରରେ, ତାଙ୍କର କଳକଣ୍ଠର "ଅଇ-ଲୁଲି" "ଆଇ ଲୁଲି" ଦୁଆଟା ଶୁଭୁଚ "ହାଲେଲୁଜାହ ।" ଅହେ ପ୍ରଭୁ, ଆହେ ପ୍ରଭୁ, ଧନ୍ୟ ପ୍ରଭୁ-ଧନ୍ୟ ପ୍ରଭୁ ସ୍ତୁତିମାନ ଭଳି ।

ଆମର ଷ୍ଟିମର ଟାଣିଟାଣି ଗ୍ଳାଲିଛି ଲମ୍ବା ଶିକୁଳିରେ ବନ୍ଧା ଗୋଟାଏ ବଡ଼ ବୋଝେଇ ପଟଭନ । ପଟଭନଟିର ରଙ୍ଗ ବି ଧୂସର । ତା' ଉପରେ ଖଞ୍ଜା ହୋଇଛି, ଥୁଆ ହୋଇ ଯେମିତି ଲୁହାର ମସ୍ତବଡ଼ ପଞ୍ଜୁରୀ । ଭରପୂର ସେଇଟି ନିର୍ବାସନ ଆଜ୍ଞା କଠିନ-ଶ୍ରମ ଦଣ୍ଡରେ ଦଣ୍ଡିତ କଏଦୀ ସବୁ । ପଟଭନଟିର ଆଗ ମଂଚରେ

ଗଭୀରର ପ୍ରହଗ୍ର ସଙ୍ଗୀନଟା ଜଳୁଛୁ, ଝଲସୁଛୁ ମହମବତୀପଶ—ଆଉ କାହିଁ କେତେ ଦୂରରେ ଅତଳ ଶୂନ୍ୟରେ କେଉଁଠି ପ୍ରକାଣ୍ଡ ନୀଳିମାର ଗର୍ଭରେ ତାରା-ଗୁଡ଼ିକ ଝଲମଲ କରୁଛନ୍ତି, ଝଲସୁଛନ୍ତି, ଶ୍ରେଷ୍ଠ ଶ୍ରେଷ୍ଠ ଅଂସଖ୍ୟ ମହମବତୀର ଯେମିତି। ପୁଷ୍କରନ ଉପରେ ନିଶ୍ଚଳ, କାନ୍ତବନ୍ଧ, ଶାନ୍ତସବୁ—ଧୌତ,ପ୍ଲାବିତ ସବୁଝାଲ !

ଚନ୍ଦ୍ରାଲୋକରେ, ଜହ୍ନର ଆଲୁଅରେ ! ଦିଶୁଛି ଗୋଲ ଗୋଲ ପାଂଶୁଳ ଗୁମ୍ଫା ଗୁଡ଼ାଏ—ଲୁହା ପଞ୍ଜୁରୀର ଲୁହା ବାଡ଼ର ଆଢୁଆଳରେ । ଘଛପଟରେ—କି କଏଦୀ, ବନ୍ଦୀ—ସେଗୁଡ଼ିକ ବସିରହିଛନ୍ତି, ଅନେଇଛନ୍ତି, ନିର୍ନିମେଷ ଆଖିରେ ଅନେଇଛନ୍ତି ଉଲ୍‌ଗାକୁ—ପୃଥୁଳା ଉଲ୍‌ଗାକୁ ! ଗଳି ଗଳି ହୋଇ ଗୁଲିଛି, ବୁଦବୁଦ ପରେ ବୁଦବୁଦ ସୃଷ୍ଟି କରି କୋଟିକି କୋଟି ଅଜସ୍ର ଚ୍ଛଳିଛି—ଛଳ ଛଳ ଗଳ ଗଳ ହୋଇ ଗୁଲିଛି, ଜଳର ବିପୁଳ ପ୍ରବାହ ଉଲ୍‌ଗାର—ହସଏତ ଗୁଲିଚ ବଳସି ବଳସି, ହୁଏତ ଖୁରୁଖୁରୁ ହସରେ—କେମିତି ଗୋଟାଏ ଗର୍ଜାଳିଆ—ଭଜ ଗନ୍ଧ ସବୁଥିରେ । ଏମିତିକ କାହାକର ତେଲରେ ବି ଧୂପର ଝୁଣାଗୁଗୁଳର ବାସନାର ଆସ୍ୱଚଟି—!

ପଟତଳଟିକୁ ଅନେଇ ମନେ ପଡ଼ିଯାଉଛି ମୋର—ପହିଲି ପିଲାଦିନର କଥାଗୁଡ଼ିକ—ଆସ୍ୱାଖାନରୁ ବିଝିନକୁ ଯାଇ, ଗୋଟାଏ ଛଦ୍ମ ମୁଖାପିନ୍ଧା ମୁହିଁଟିଭଳି ମାଆର ମୋର ସେହି ମୁହଁଟି, ମୋର ଆଇମା, ଯିଏ ମୋତେ ବାଟ ଦେଖେଇ ଦେଖେଇ ଘେନ ଆସିଛି ଏହି କଠିନ କଲ୍ପ ହୃଦୟଗ୍ରାହୀ ଚମକପ୍ରଦ ଜୀବନକୁ । ଯେତେବେଳେ ମୁଁ ଭାବି ଦେଉଛି ମୋ ଆଇ ମା'ର କଥା—ଯେତେବେଳେ ମୋ ଆଖି ଆଗରେ ଭାସିଉଠୁଚି ମୋ ଆଇମା'ଟି,—ଭୁଲି ଯାଉଚି ମୁଁ—ଜୀବନର, ଘୃଣା ଜନ୍ମାଏ ଦୁର୍ଗନ୍ଧମୟ, ଦୁଃଖ ଆଉ ବିଷାଦରେ ଭରା ସେଇ ପ୍ରକୃତ ବାସ୍ତବ-ଗୁଡ଼ିକ, ଜୀବନର ସେଇ ବିଭବ, ସେଇ ରୂପ ଗୁଣଗୁଡ଼ିକ ଘୃଣା ଅଉ କ୍ରୋଧ ଉଦ୍ରେକ କରେ ଯାହା ଦୁର୍ଗନ୍ଧମୟ, ଘୋର ଲଜ୍ଜାଜନକ ଶୁଣି । କଣ ବା ନ ବଦଳୁଛି, ନ ବଦଳେ—ଅଧିକରୁ ଅଧିକ ହୃଦୟଗ୍ରାହୀ ହୋଇ, ଆନନ୍ଦଦାୟକ ହୋଇ ? ଲୋକେ ବି ଲାଗୁଛନ୍ତି, ମନେ ହେଉଛି ମୋର - ଭଲରୁ ଭଲ—ମହତ୍‌ରୁ ମହତ୍ କେତେ କେତେ ମନୋଜ୍ଞ, ସ୍ନେହରେ ପ୍ରୀତିରେ ଅଧିକରୁ ଅଧିକ ଆଦରଣୀୟ ଆକର୍ଷଣୀୟ !

ରାତିର ସୌନ୍ଦର୍ଯ୍ୟଟିକ ମତେ ମୁଗ୍ଧ କରିଦେଉଛି, ଉଦ୍‌ବେଳିତ କରି ଚଞ୍ଚଳକରି ହୃଦୟଟିକୁ ମୋର—ଅଶ୍ରୁସଜଳ କରୁଛି ଅକ୍ଷିଯୋଡ଼ିକୁ !

ମୁଗ୍ଧ ବିମୋହିତ ଆତ୍ମହରା ହୋଇଯାଉଚି ମୁଁ ଏଇ ବୋଝେଇ ବଜରାଟିକୁ ଅନେଇ ଅନେଇ - ସତେ ଯେମିତି ଶବାଧାର ଗୋଟିଏ, କଫିନ୍ ଗୋଟିଏ ! ଆସ୍ଥାନରେ ଅଛି ଏଇଟି—ଏଇ ସ୍ଥାନର ସହିତ ସଙ୍ଗତ କାହିଁ ସ୍ୱାର ତ—ନୁହେଁ ଏଇ ଏ ସ୍ରୋତସ୍ୱିନୀ ପ୍ରବହମାନ ନଈଟିର । ଉଦାର ଅଉ ପ୍ରଶସ୍ତ ବକ୍ଷଟିରେ—ଏଇ

ଏ ଧ୍ୟାନମଗ୍ନୀ ନୀରବ ନୀରବତା ମଧ୍ୟରେ ଏଇ ଏ ରୁକ୍ଷ ଘାଟିରେ କୁଟିଳ ରେଖାବଳୀର ଭୀଷଣ ବୈଚିତ୍ର୍ୟ ଯେତେ ତଟଦେଶରେ—ଅସମ ତଟଭୂମିର କୁଟିଳ ଆଉ ବଙ୍କା ପଥେ—ଏଇ ମାତ୍ର ଭାସିଉଠୁଛି, ନିକଟକୁ ନିକଟତର, ଅପସର ଯାଉଛି, ଦୂରଯାଉଛି ଏଇ ଦେଖାଦେଉଛି, ଏଇ ଲୁଚିଯାଉଛି ଉଠୁଛି ଆଉ ପଡୁଛି—ଉଭେଇଯାଉଛି ପୁଣି ଚଞ୍ଚଳ, କରିଦେଉଛି ହୃଦୟଟିକୁ ମୋର—ଆଣି ଦେଉଛି ଏ କି ଆଶା ଓ ବାସନା ପଥେ—ହେବି ପ୍ରଚାରକ ହେବି ମୁଁ, ସଂପାଦକ ହେବି—ରେ, କରିବି ଆତ୍ମନିୟୋଗ କରିବି, ସକଳ ମନୁଷ୍ୟଜାତିର ସେବାରେ

କଣ କହୁ ଅଭାବନୀୟ, ଅନୁପମ ଦୃଶ୍ୟଟି ଯେମିତି ଆମର ଯାତ୍ରୀଙ୍କଠି ! ମନେହେଉଛି ମୋର—ସମସ୍ତେ ଏମାନେ ବୃଦ୍ଧ ଓ ତରୁଣ, କି ପୁରୁଷ କି ସ୍ତ୍ରୀ—ପୁରୁଷ ଓ ସ୍ତ୍ରୀ ସମାନ ସମାନ ସମସ୍ତେ ! ସମାନ ଗୁଣର, ସମାନ ରୂପର—ଧୀରେ ଧୀରେ ଭାସି ଚାଲିଛନ୍ତି ମିଶରି ଅମର ନଦୀର କାମରେ ଯାହାଙ୍କର ଯାଆନ୍ତି ସେମାନେ ! ଯା ଆସ କରୁଛନ୍ତି ତାଙ୍କ ଯାତ୍ରାକରେ । ଆମ ପାଇଁ ଗ୍ରହ ଯାଉଛନ୍ତି ଯେମିତି ଧୀରସ୍ଥିର ଶାନ୍ତ ଯାତ୍ରୀଗୁଡ଼ିକ୍କ ଜାହାଙ୍କର କଛୁ ନାହିଁ କରିବାକୁ ସକାଳୁ ସନ୍ଧ୍ୟାଯାଏ ଝିଅାପିଆରେ ମାତିଆନ୍ତି ସେମାନେ । ଅସନା କରୁଛନ୍ତି କେଜାଣି କେତେ ବାସନ କୁସନ, ଥାଳି, ଡାଟିଆ, କଣ୍ଟା, ଚାମୁଚ, ଛୁରୀ !

ମୋର କାମ—ଧୋଇବି ପୋଛିବି ଏ ଗୁଡ଼ାକ ମାଜିଘଷି ପାଲିଶ୍ କରିବି କଣ୍ଟା ଓ ଛୁରୀ—ଏଇଥିରେ ବ୍ୟସ୍ତ ମୁଁ ଭୋର ଛଅଟାରୁ ରାତି ଅଧଯାଏଁ । ଓପର ବେଳା ଦୁଇରୁ ଛଅ । ରାତିରେ ଦଶରୁ ବାର, ଯାହା ଅଳ୍ପ କାମ କରିବାକୁ—କାରଣ ଖାଇ ସାରିଲା ପରେ ଯାତ୍ରୀମାନେ ଖାଲି ଯାହା ପିଉଛନ୍ତି ସୁରା, ବିୟର ଓ ଭୋଦକା ।

ଏହି ସମୟରେ କାମରୁ ମୁକ୍ତି ପାଉଛନ୍ତି ଆଉ ସବୁ ପରସ୍ତୁଣିଆ—ଏମାନଙ୍କର ସାଧାରଣ ଅଭ୍ୟାସ ହେଉଛି—ଏତେବେଳେ ଚିମ୍ନୀରୁ ଧୂଆଁ ନଳୀ ପାଖରେ ଟେବୁଲଟିଏ ପାଖରେ ଜମା ହେବେ, ଗପ୍ପ ମାରିବେ । ଏମାନଙ୍କ ଭିତରେ ଅଛନ୍ତି ରୋଷେୟା, ହରି, ତାର ସହାୟକ ରୋଷେଇର ବାସନ ଧୂଆଳି ମ୍ୟାକ୍ସମ୍ ଆଉ ସର୍ଗେଇ, ଡେକ ଉପରେ ଏ ଯାତ୍ରୀମାନଙ୍କୁ ଖାଇବା ଜିନିଷ ପରଷେ, କୁଜା-ପିଠିଆ, ଓସାରିଆ ବସନ୍ତ ମୁହାଁଟାଏ । କେମିତି ତେଲିଆ ତେଲିଆ ଆଖି ତାର । ସ୍ୱାଭାବିକ ଅଭ୍ୟସ୍ତ—ସମସ୍ତଙ୍କୁ ଯାବତୀୟ ଅଶ୍ଳୀଳ ଗପ ଶୁଣାଏ କହି କହିଆ କାନ୍ଦ କାନ୍ଦ ହସରେ, ଛତିଆଦଳ ଚିମିମିଥି ଦାନ୍ତ ଦ ପାଟି ଦେଖେଇ ଗଣିହୁଏ—ତାର ବେଙ୍ଗ ପାଟିକୁ ଏମିତି ଦାନ୍ତନିକୁଟା ହସରେ—ମେଲେଇ ଦିଏ ଯେ ପାଟି ଯାକର ଯାଇ ଦୁକାନରେ ମୂଳକୁ ଛୁଏଁ ଯେମିତି ? ଗଉଁଆ ଗାରୁଗାରୁଆ ମ୍ୟାକସ୍‌ମମ ଗୋଟାଏ 'ଅନିଶ୍ଚିତ' ଅଧରା ରଙ୍ଗର ଶକ୍ତ ଆଖିରେ ସମସ୍ତଙ୍କୁ ଲକ୍ଷ୍ୟ କରି କରି ଶୁଣେ ସବୁ, ତୁନି ହୋଇ ଶୁଣେ ।

"ମଣିଷପଣିଆ ଗୁଡ଼ାକ ! ଅସୁର ସବୁ ମୋ ଦୋ'ଭିଆର ଲୋକ ସବୁ ପୃଥକ୍ ।"

ବଡ଼ ରେଷେଖି ତାର ଗଉଁ ଗଉଁଆ ସ୍ୱରରେ ବେଳେବେଳେ ଅସଙ୍ଗତ ଭାବରେ ବାଧାଦେଇ କହି ଉଠେ ମଝିରେ ମଝିରେ !

କେହି ମତେ ଭଲ ଲାଗନ୍ତି, ମନକୁ ପାଆନ୍ତି କାହିଁ, ଏମାନଙ୍କ ଭିତରୁ ! ମୋଟା ଥାକୁଲା, ଚାନ୍ଦମୁଣ୍ଡିଆ ସ୍ୱାକୋଭ ଆଇଭାନୋଭିଚ ଗପେ ଖାଲି ମାଇପଙ୍କ ବିଷୟରେ—ଆଉ ସବୁବେଳେ ଗପେ ଅତି ଅଭଦ୍ର ଅସଭ୍ୟ ଭାବରେ । ମୁହଁରେ ତାର ଝିକଏ ହେଲେ କଣ୍ଟା ଭାବଭଙ୍ଗୀ ପ୍ରକାଶ ପାଉଥାନ୍ତା ! ଗୋଟାକଯାକ ଭର୍ତ୍ତି ହୋଇ ଯୋଡ଼େଇ ହୋଇ ରହିଛି ନେଳିଆ ନେଳିଆ ମନ୍ଦା ମନ୍ଦା ଦାଗରେ ।

ଗୋଟାଏ ଗାଲରେ ଅତି ବଡ଼ ଗୋଟାଳିଆ କଳାଜାଇଟାଏ ସେଥିରେ ଗଜୁରି ଉଠି ମେଞ୍ଚାଏ ଲାଲବାଲ ସେ ତାକୁ ମୋଡ଼ି ମୋଡ଼ି ମୁନିଆ ମରୁଆ କରେ । କେବେ ସବୁ ଚେଲାପୀ, ଆଉ ସହଜରେ ନିକଟକୁ ଯାଇ ହେବ, ପାଖରେ ପାଇ ହେବ, ସହଜରେ—ସୁଲଭ ମାଇପିଟିଏ ଦେଖାଦିଏ ଜାହାକ ଉପରେ, ସେ ତା' ପଛେ ପଛେ ମେଞ୍ଜିନି ଭଳି ବନସ୍ତରେ ଘୂରେ ଭିଖାରୀଟାଏ ଯେମିତି । ସେ ଆଉ ସେ ମାଇପିଟା ପାଖରେ ଗପ ଜମାଏ । କଥାବାର୍ତ୍ତା ଚଳାଏ ଚନ ବୋଲା ରସରସିଆ, ମିଠା ମିଠା ବେଦନାବହ କରୁଣ ସ୍ୱରରେ ଖୁବ୍—ଓଠରେ ତାର ଦେଖାଦିଏ ଥୋପାକୁ ଥୋପା ଫେଣ । ସେ ତା କୁତ୍ସିତ ଦୁର୍ଗନ୍ଧ ମୟ ଜିଭଟାକୁ ଚଞ୍ଚଳ ଚଞ୍ଚଳ ଘଲେଇ ଗୃଟିବାରେ ଲାଗେ ସେଇ ଫେଣକୁ ସବୁ । କେଜାଣେ କାରଣରୁ, ମତେ ଲାଗୁଛି—ସାଧାରଣ ଫାଶି ଦେଉଥିବା ଘାତକ ସବୁ ଏହାଣ ମୋଟାମୋଟି ଆଉ ତେଲଚକଣିଆ ବା ତେଲିଆ ହେବା ଉଚିତ ।

ଜାଣି ରଖିବା ଉଚିତ କେମିତି ତତେଇ ଦେବ ମାଇକିନିଆଟାକୁ ! ଥରେ ସେ ଜଣେଇ ବସିଲା ସର୍ଗେଇ ଆଉ ମ୍ୟାକସିମମକୁ, ସେମାନେ ମନ-ଧ୍ୟାନ ଦେଇ କାନତେର ଶୁଣୁଥାନ୍ତି ଫୁଲି ଫୁଲି ଉଠୁଥାନ୍ତି, ଆଉ ଲାଲପଡ଼ି ଯାଉଥାନ୍ତି ।

"ମଣିଷଖିଆ ଅସୁର ଗୁଡ଼ାକ" ସ୍ୱରରେ ଗର୍ଜି ଉଠିଲା ଗମ୍ଭୀରଭଲାରେ ସ୍ୱର, ଧୀରେ ଧୀରେ ଉଠି ଛିଡ଼ା ହେଲା ସେ ପାଦରେ ଭରଦେଇ । ଡ଼ାକିଲା ମତେ, "ଖୋସ୍‌କାଭ ! ଆ ଆ ମୋ ସାଥିରେ । ଆ ଆ ବାହାର—

ଆମେ ତ ତା' ଷ୍ଟ୍ରୋଟ କାଠଘର ବଖୁରୀ କ୍ୟାବିନରେ ପଶିଲୁ ପରେ, ସେ ମତେ ବଢ଼େଇଦେଲା ଖଣ୍ଡେ ଷ୍ଟ୍ରୋଟ-ବନ୍ଧେଇ ବହି । ନିଜକୁ ଲମ୍ବେଇଦେଲା ତାର ଶୋଇବା ଜାଗା ଭାଡ଼ିଆ ପଟା ଉପରେ—ସେଇଟି ଲାଗିଥାଏ 'ଶୀତଳ ଭଣ୍ଡାର' ବଖୁରୀଟିର କାନ୍ଥକୁ ।

"ପଢ଼ ! ଶୁଣା ମତେ ।"

"ମ୍ୟାକାଗ୍ରେନ" ଗହ୍ୱର ଅଟାରେ ଢଆଣ ଲମ୍ବା ଆକୃତର ଝାଇବା କନପ ଛାବଲ ଉପରେ ବସିପଡ଼ିଲ, କଥାମାନ ତାର ପଢ଼ିବାକୁ ଆରମ୍ଭ କରିଦେଲ ।

"ନକ୍ଷତ୍ରରାଜ ସହିତ ବିକାଶିତ ବିଷ୍ଣୁରତ ଗ୍ରୀଷ୍ମା—ଛନ୍ଦର ମର୍ମ ହେଉଛି ସର୍ଗର ସହିତ ସୁବିଧାଜନକ ସଂଯୋଗ—ବନ୍ଦୁର ସଂସ୍ଥିତ ଯାହାକୁ ସେମାନେ ମୁକ୍ତ କରିଛନ୍ତି ନିଜେ, ନିର୍ବୋଧ ଅଜ୍ଞ ଆଉ ଗୁରୁପ୍ରବୃତ୍ତିକ ଉଦ୍ଧସ୍ୱାଦବ୍ୟକ୍ତିମାନଙ୍କଠାରୁ ।"

"ଓଃ ଗୁଡ଼ାକ ! କିଏ ଯେ ଲେଖିଛନ୍ତି କି କଥାଗୁଡ଼ାକ !" ପୁଣି ଧୂଆଁର ମେଘପଟଳ ସୃଷ୍ଟି କରିଦେଇ ସିଗାରେଟକୁ ଗୁଞ୍ଜନ ହେଲ

"ଉତ୍ତମ କୁ ବାଆଁ ବକ୍ଷର ଅଥ ନିର୍ଦ୍ଦେଶ ହୃତପିଣ୍ଡ !"

"କାହାର ବାଆଁ ବକ୍ଷ ?"

"କିଛି କହୁନ ତ !"

"ତା' ହେଲେ ତା' ମାନେ ମାଇପିଟିର ଏଃ ! ବେଶ୍ୟାଗୁଡ଼ାକ !"

ଆଖି ଦେଓଟି ବୁଜି ଦେଲ ମୁଣ୍ଡତଳେ ବାଜୁ ରଖି ଶୋଇ ରହିଲ ଚିତ୍ ହୋଇ ! ପାଟି କଣରେ ଲଗିଯାଇଥିଲ ଜଳନ୍ତା ସିଗାରେଟ୍‌ଟା ଝପେଇ ଦେଲ ଟିକିଏ, ଆଉ ଟାଣିଲ ଏମିତି ଜୋରରେ ଏମିତି ଗଭୀର ଭାବରେ କଣ ଗୋଟାଏ ସିଠି ଘୂସିରମାର ଉଠିଲ ତା' ଗ୍ରୀବ ଭିତରେ ଆଉ ମୁହୂର୍ତ୍ତି ତାର ଲୁଚିଗଲ ଧୂଆଁର ଆବରଣୀରେ, ଶୋଇ ପଡ଼ିଛି ସେ ! ଏଣୁ ପଡ଼ା ବନ୍ଦ କରିଦେଇ, ବସି ରହେ ମୁଁ ଜଳ ଜଳ କରି ଅନେଇଥାଏ 'ଅଭିଶାପିଆ' ବହିଟାକୁ !

"ପଢ଼", ସେ କହୁ ଭୁକ ଉଠେ ଠିକ୍ !

"ଭଗବାନ ଦେଲେ ପରମ ପୂଜନୀୟ ଦେଖ, ମୋର ହେ ସତ୍ ପ୍ରେରେ ସୁଭେଶଦ୍ୱାନ "

"ସୁଭେଶସ୍ୱାନ୍ !"

"ଲେଖା ହୋଇଚ, ସୁଭେଶସ୍ୱାନ୍ ।"

"ଧୂର୍ତ୍ତଭେଶଙ୍କ, ନରକକୁ ଯାଉ ସବୁ ! ତଳେ କିଛି କବିତା ଫବିତା ଅଛି — ବଜା ସେଥିରୁ ଦୋଳାରେ ଧାଉଁକାନ ସତ୍ୟ ।"

ହେ, ଅଜ୍ଞ, ଜୀବଗୁଡ଼ିକ ଆମର ସମସ୍ୟାକୁ ସବୁ ଛନ୍ନ ଭିନ୍ନ କରି ସମାଧାନ କରିବାର ଦାୟିତ୍ୱବାଦକୁ ନେଇ ତୁମର ଦୁର୍ବଳ ଦରିଦ୍ର ମସ୍ତିଷ୍କ କେବେହେଲେ ନାହିଁ ।

ସେ ସବୁର ସୀମା ଧର୍ମ କରିବ ନାହିଁ, ଏମିତିକ ଫକୀରଗୁଡ଼ିଙ୍କର ମନ୍ଦ ଗୀତ ବି ରହିବ ତୁମର ଜୀବନର ପରିସରରୁ ବାହାରେ "ବନ୍ଦକର !" ପାଟିକରି ଉଠିଲ ପୁଣି, ସ୍ୱାକୁଳ ତୁମେ କହିବ କବିତା ?

ଦେ, ମତେ ବହିଟା ଦେ !

ରାଗରେ ସେ ଓଲଟେଇ ଗଲ ମୋଟା ନେଳିଆ ଗ୍ରନ୍ଥଟାକୁ, ହଲେଇ ହଲେଇ ଫିଙ୍ଗିଦେଲ ଖଟ୍ଟତଳକୁ,

"ଧର, ଆଉ ଗୋଟାଏ ଧର, ଦେଖ !"

ଓଃ, ମୋର ଦୁଃଖକୁ ଦୁର୍ଭାଗ୍ୟକୁ, ବହୁତ, ବହୁତ କହୁଥିଲ, ଥିଲ ତାର ଲୁହା ଫଣ୍ଟା କବଜା ଲଗା କଳା ଟ୍ରଙ୍କରେ ।

ସେଗୁଡ଼ାକ ଭିତରେ ଥିଲ "ଓମରର ନୀତିବାକ୍ୟ", କମାଣ ବାହ୍ୱନୀର ସ୍ମୃତି, ଲର୍ଡ ସେଟ୍ରେଙ୍ଗାଲର ପତ୍ରାବଳୀ, ସ୍ତ୍ରୀରପେ.କ ସମ୍ବନ୍ଧରେ ଗୋଟାଏ ବହିକୁ କାଟ; କେମିତ ନିର୍ମୂଳ କରିବାକୁ ହେବ ଏହାକୁ, ଆଉ କେମିତ ଲଢ଼ିବାକୁ ହେବ ଏହାର ଧ୍ୱଂସ-ନୀତି ବିରୁଦ୍ଧରେ ।" ଆଉ କେତୋଟି ଥାଏ ଯାହାର ପୃଷ୍ଠା ପୃଷ୍ଠା ନଥାଏ, ଆଗରେ କି ଶେଷରେ, ବେଳେବେଳେ ରୋଷେୟା ମତେ କହୁଥାଏ ଶିରୋନାମା ବା ନାମ ସମେତ ସେଗୁଡ଼ିକ ପଢ଼ିବା ପାଇଁ, ମୁଁ ପଢ଼ିବାକୁ ଆରମ୍ଭ କଲେ ରାଗରେ ଭଡ଼ ଭଡ଼ ହେଉଥାଏ

"କଣ ସେ ଲେଖିଛନ୍ତି, ପାଜି ବଦମାସଗୁଡ଼ାକ !" କାରଣ ଫାରଣ ନ ବୁଝି ନାହିଁ, ତମ ଗାଲରେ ଦ'ଘୁଷି ଘୁସୁଡ଼ା ମାରିଲ ଭଳି । "ଗର୍ ଭ୍ୟାସି !" କଣ ମିଳିବ ମତେ ଗରଭାସିରୁ, ସ୍ୱର୍ଗ ନା ପାତାଳ ? ପ୍ରଚ୍ଛାୟା-ଛନ୍ଦ ।

"ନା ମାୟା—ଛନ୍ଦ ! ଏଃ !"

ଅଦ୍ଭୁତ ଅଦ୍ଭୁତ ଶବ୍ଦଗୁଡ଼ାକ, ଅଚହ୍ନା ନାଆଁଗୁଡ଼ାକ ସ୍ମୃତିପଟରେ ମୋର ଆଙ୍କି ହୋଇଯାଉଥାଏ, ଲିଖିଯାଉଥାଏ ଅଠାରେ ଯେମିତି ଅଧା ଚଡ଼ଚଡ଼ା ଚଡ଼ାଚଡ଼ୀ ସ୍ୱରରେ । କିଭଳିରେ ମୋର ଗଲୁ ଆସୁଥାଏ—ସେଗୁଡ଼ାକୁ ବାରମ୍ବାର ଯୋଡ଼ ଦୋହରେଇବା ପାଇଁ ।—

ସତେ ଯେମିତି ପାଠିକର ଗୁଣି ହେଲେ ଧ୍ୱନିରୁ ସବୁ ଫୁଟି ପଡ଼ିବ ଅର୍ଥ ! ଝରକାଟିରୁ ଦୂରରେ ନଈଟି ମେଲି ଦିଶୁଥାଏ, ତେଣେ ଛଳ ଛଳ ଲହରୀଟି ତାର ଛନ୍ଦ୍‌କେଇ ଦେଇ ସୁରସୁର ସୁରଗୁଡ଼ିକୁ—ଗାଉଥାଏ ନଈଟି ଠିକଏ ହେଲେ ନଥମି । ମନଟା ଆକୁଳ ହେଉଥାଏ ମୋର—ଯାଆନ୍ତି କି ଜାହାଜ ଉପରକୁ, ଡେକ୍‌କୁ—ବସିଥାନ୍ତେ ଯେଉଁଠି ମାଝି ଖଲାସୀ ସବୁ, ଜାଲେଣିଆ—ଜାଲ ଯୋଗାଣିଆ ସବୁ—ଜିନିଷପତ୍ର ଭର୍ତ୍ତି ମୁଦା ମୁଦା ଜବଲ ଉପରେ, ଗାଉଥାନ୍ତି କି ଅଗଡ଼ଂ ବଗଡ଼ଂ ଗପୁଥାନ୍ତି ବନେଇ ଚୂନେଇ ମିଛ କଥାଗୁଡ଼ାକ—ନାଉରିଆ ଗପ ସବୁ, ନଇଲେ ବା ତାର ମେଳିଯାତ୍ରୀଙ୍କ ପାଖରେ ଛପଟିଆ ମାରି କାଢ଼ି ନେଉଥାନ୍ତି ସେମାନଙ୍କର ପଇସାପତ୍ର ସବୁ । ଭାବୁଥାଏ ମୁଁ—କେତେ ମଜାର ହେବ, କେତେ ଭଲ ଲାଗିବ ସତେ—ମୁଁ ଯାଇ ବସେ ମଧ୍ୟ ସେମାନଙ୍କ ପାଖରେ, ଶୁଣେ ବସି ସେମାନଙ୍କର ସରଳିଆ, ସରଳିଆ, ସହଜିଆ ଶବ୍ଦଗୁଡ଼ିକୁ କଥାଗୁଡ଼ିକୁ—ବସି ବସି ଶୁଣେ ସେସବୁ 'କାମା' ନଈର କୂଳଦି'ଟିକୁ ଅନେଇ ଅନେଇ, ତମ୍ବାତାର ଭଳି କଷା ହୋଇ ଆସିଛୁ । ହୋଇ ସଲଖ ଯୁଦ୍ଧର ଆକାଶ-

ଛୁଆଁ ଛୁଡ଼ା ଛୁଡ଼ା ପାଉନଗଛଗୁଡ଼ାକୁ ଆଉ ସେଇ ଦାସବଣ, ବେଣା ବଣକୁ ସବୁ—ଦେଖି ଦେଖି—ସେଇ ଯେଉଁଠି ପଛକୁ ନଇଁ ଢେଙ୍କା ଘୁଞ୍ଚି ଯାଉ ଯାଉ ପାଣି ସୁଅ ସବୁ—ରଚନା କରି ଗୁଡ଼ି ଯାଇଥାଏ ଛୋଟ ଛୋଟ ହ୍ରଦଟମାନ, ଭଙ୍ଗା ଆରଶିର 'ଟୁକୁରା' ଭଳି ନେଳା ଆକାଶଟା— ପ୍ରତିଫଳିତ, ଚକ୍ ଚକ୍ କରୁଥାଏ ଯେଉଁ ଚଳ ଚଳ ପାଣିରେ—

ଅମର ଜାହାଜଟା ସ୍ଥଳଭାଗଠୁଁ ଦୂରରେ ଦୂରରେ 'ଅଲଗା' ରହି ଚାଲିଥାଏ ସବୁବେଳେ । ଏହାହେଲେ ବି ସୂର୍ଯ୍ୟ 'ବୁଡ଼ିଯାଏ, ଗମ୍ଭୀର ସେ କି ଶାନ୍ତିର ପଙ୍କ୍ତି ମଧୁର ନୀରବତାରେ ନଇଁ ଆସେ ଯେତେବେଳେ, କୂଳକୁ ଭାସିଆସେ ରହି ରହି ଧୀରେ ଧୀରେ ମୃଦୁଳ—ସମୀରଣରେ—ଅଦୃଶ୍ୟ କେତେ ଗିର୍ଜାର ଘଣ୍ଟାର ରୋଳ—ଧ୍ୱନି—ବହି ଆଣେ କେତେ କେଉଁ ଜନପଦର, ନଗରୀର ଅଜ୍ଞ ଲୋକଙ୍କର ସ୍ମୃତି ଭାବନା !—ମାଛଧରାଳିର ଡଙ୍ଗାଟିଏ କେଉଁଠି ଢେଉପଡ଼େ ଦୋହଲୁଥାଏ ପାଉଁଶିଟିର ଟୁକୁରାଭଳି ଅକଳନ୍ତ ସୁଅରେ—ଝଲସି ଉଠେ, ଭାସି ଉଠେ ପକ୍ଷୀଟିଏ ହଠାତ୍ ଆଖି ଆଗରେ କେଉଁଠି ବା ଲଙ୍ଗଳା ପିଲାଗୁଡ଼ାଏ ଚବଚବ କରୁଥାନ୍ତି ପାଣି—ଆଉ କେଉଁଠି ପୁଣି ଲାଲ କୁର୍ତ୍ତି ଦେହରେ ଶ୍ରମିକଟିଏ—ଚାଲିଛି ହଳଦିଆ ଫିତା ପରିଆ ଭଳି ମୋଡ଼ାଏ ବୋଲି ବାଲିରେ । ଦୂରରୁ କଣ ବା ଦିଶେ ନାହିଁ ସୁନ୍ଦର—କଣ ବା ଆକର୍ଷଣ କରେ ନାହିଁ ମନକୁ ! ବଡ଼ ବଡ଼ ଜନ-ଅଞ୍ଚଳଗୁଡ଼ିକ—ଗଛବୃକ୍ଷ, ଘର ଗିର୍ଜା ସବୁ କେମିତି ଝଲସି ଯାଏ ଛୋଟ ହୋଇ ଖେଳଣା ଭଳି.ଆକୃତିରେ ଅପ୍ରକୃତରେ – କୌତୁକିଆ ଟିକି ଟିକି ଜନପଦମାନ—ବିଚିତ୍ର ପୁଣି ବର୍ଣ୍ଣରେ । ଅନେକ ସମୟରେ ଲୋଭହୁଏ ମନରେ—ଡାକନ୍ତି କି ବଡ଼ ପାଟି କରି ଡାକନ୍ତି କି—କହନ୍ତି କି କହନ୍ତି କିଛି—କେଜାଣି ବା କେତେ କଣ—ସ୍ନେହଭରା । ଆଦରରେ ଆବେଗରେ କହନ୍ତି କିଛି—ନଇ କୂଳକୁ - ଶୁଅନ୍ତି କି କିଛି—ପ୍ରାଣଟିକୁ ମୋର ନଇ କୂଳକୁ, ଅଉ ଦେଇ ସେଇ ପଟ୍ଟଣଟିକୁ—ପଛରେ ଅମର—

ଜାହାଜ କେଜାଣି ମତେ ବିହ୍ୱଳ କରି ଦେଇଥାଏ ଧୂସର .ପଟ୍ଟଣଟି !—ଘଣ୍ଟାକୁ ଘଣ୍ଟା ଏକ ସମୟରେ, ଆଃ, ମନ୍ତ୍ରମୁଗ୍ଧ ପରି—ଦେଖୁଥାନ୍ତି କି ଉଦ୍‌ବେଳିତ ଗୋଳିଆ ପାଣିରେ ଦଳୁଡ଼ା ନାକ ବୁଡ଼େଇ ଠେଲି ଠେଲି ଅସୁଛି କେମିତି, ପ୍ରକୃତରେ ଆମ ଷ୍ଟିମରଟା ତାକୁ ଟାଣି ଟାଣି ନେଉଥାଏ ଦରିଆରେ ବନ୍ଧା ଘୁସୁରୀଟାଏ ପରି । ଶିକୁଳିଟା ଝୁଲିପଡ଼ୁଥାଏ ଯେତେବେଳେ ଶିଥିଳ ହୋଇ ପାଣିରେ ବାଜୁଥାଏ ଝ୍ଲାପ ଝ୍ଲାପ କରି—ତା'ପରେ ପୁଣି ଓଟାରି ଓଟାରି ଠିକ କରିନେଲେ—ସିଧା କରିଦେଲେ ତାକୁ ପଟ୍ଟଣର ନାକରେ ଘାଟି ହୋଇ ବାଜି ଝରି ଝରେଇ ଦେଉଥାଏ ପାଣିଗୁଡ଼ାକ ! ଦେହରୁ ତାର ଯେମିତି ! ଭାରି ଇଚ୍ଛା ହେଉଥାଏ ମୋର—ସେହି ଲମ୍ବା ପଟ୍ଟୁଆରେ ପଶୁଙ୍କ ପରି ବସିଥାନ୍ତି ଯେଉଁମାନେ, ଦେଖନ୍ତି କି କେମିତି ତାଙ୍କର ମୁହଁଗୁଡ଼ିକୁ ! ଥରେ 'ପମ୍' ଠାରେ ସେମାନଙ୍କୁ

ନିଆଗଲା କୂଳକୁ, ବନ୍ଧ ଉପରକୁ—ମୁଁ ଚଢ଼ିଗଲି ଜାହାଜ କୂଳକୁ ଲଗା ପଟାବାଟ ଉପରେ—ଦଳକୁ ଦଳ ପାଉଁଶିଆ ପାଉଁଶିଆ ମଣିଷଗୁଡ଼ାଏ, ହାତରେ ପାଦରେ ଲୁହାବେଡ଼ି ସେମାନଙ୍କର – ଝନ୍‌ଝନ୍ ହୋଇ ବାଜୁଥାଏ, ଖସଖସ ସେଗୁଡ଼ାକରେ ଛନ୍ଦି ହୋଇ ପାଦଟିମାନ ଘୋଷାରି ଘୋଷାରି ମୋତେ ଟପି ଯାଉଥାନ୍ତି ଯେତେ-ବେଳେ—ନଇଁପଡ଼ୁଥାନ୍ତି ଅଣ୍ଟା ପାଖକୁ ସବୁ—ନିଜ ନିଜର ପେଣ୍ଟ୍ରିଟିମାନ ପିଠିରେ ବନ୍ଧା ବନ୍ଧା, ତାର ଓଜନରେ ! ସେମାନଙ୍କ ଭିତରେ ଥାଆନ୍ତି ପୁରୁଷ ଅଉ ଆଉ ସ୍ତ୍ରୀ, ଟୋକା ଆଉ ବୁଢ଼ା, କୁତ୍ସିତ ଓ ସୁନ୍ଦର—ସେମାନଙ୍କ ଛଡ଼ା ଆଉ ଲଣ୍ଡା ହେବାକୁ ବାଧ ହୋଇ ସବୁ ଦିଶୁଥାନ୍ତି ଯାହା ବିକୃତ ଅସ୍ୱାଭାବିକ ସେମାନେ ! ଠିକ୍ ଜାଣି ପାରୁଥାଏ ମୁଁ ସେମାନେ ଆଇନଦ୍ରୋହୀ, ବନ୍ଦୀଘାର କରାଯାଉଥାଏ ସେମାନଙ୍କୁ—କିନ୍ତୁ ଆତ୍ମା ମୋର କେତେ ଭଲକଥା, କେତେ ପ୍ରଶଂସାର ଗୌରବର କଥା ଶୁଣାଇଥାଏ ଯେ ଆଇନ ବିରୋଧୀ, ବହିଷ୍କୃତ ସମ୍ପର୍କରେ ।

ସ୍ୱର ଦିଶୁଥାଏ ସେମାନଙ୍କଠୁ ବଳି ବହୁ ଗୁଣରେ 'ହତାଶ' ଗୋଟାଏ ଆଇନ ବିରୋଧୀ ବିତାଡ଼ିତ ପରି ।

"ଭଗବାନ ରକ୍ଷା କରନ୍ତୁ ମତେ ଏଭଳି ଭାଗ୍ୟରୁ—" ବିଜର୍ ଆଡ଼କୁ ଚାହିଁ ବେଳେବେଳେ ଟୁପ୍ ଟୁପ୍ ହୋଇ କହି ପକାଉଥାଏ ସେ, ସ୍ୱର !

ହେଲେ ତାକୁ ଘଟଣା କମେ କେମିତି କେଜାଣି ପଚାରିଦେଲି—"ଏ କେମିତି କଥା, ତୁମେ ରୋଷେୟା ହୋଇ ରହିଚ—ଆଉ ଯେତେ ସିଏ ଚୋର ତସ୍କର, ଖୁନୀ ଘାତକ ହେଲେ କେମିତି ?"

"ମୁଁ ରୋଷେୟା ନୁହେଁ । ବଡ଼ ସୁଆର ମୁଁ—ବଡ଼, ପ୍ରଧାନ ବବର୍ଚ୍ଚି ! ମାଇପେ ସବୁ ରୋଷେଇ କରନ୍ତି, ରୋଷେୟାଣୀ ।" ଦୁଃକ୍ରୁଦ୍ଧ ହୋଇ କହିଲା ସେ, ସ୍ୱର— ମୁହୂର୍ତ୍ତେ ଖଣ୍ଡେ ବିଚାରି ସବୁ କଣ ବୁଝେଇଲା ମତେ—

"ଲୋକ ଲୋକ ଭିତରେ ତଫାତ୍ ମୁଣ୍ଡରେ, ମସ୍ତିଷ୍କରେ । କେତେକ ଚତୁର, ଚାଲାଖ ; କେତେକ ମୂର୍ଖ, ମାଲା, ଆଉ କେତେକ ପୁଣି ବୋକା, ନିପଟ ବୋକା ! ତୁମେ ଚତୁର ହୋଇ ଉଠ, ବୁଦ୍ଧିଆ ହୋଇ ଉଠ—ଠିକ୍ ବହି ପଢ଼ିଲେ—ଏଇ ଯେମିତି ପୁଣିଗାରେଡ଼ି, ଯାଦୁକରୀ କି ସେମିତି ପ୍ରକାର ଆଉ ବହି ସବୁ ! ସବୁ, ସବୁ ପ୍ରକାର ବହି ପଢ଼ିବାକୁ ହେବ ତୁମକୁ—ଠିକ୍ ବହି ଜାଣିବାର ବାଛିବାର ଏହାହିଁ ଉଚିତ ପନ୍ଥା ।"

ଏମିତି, ସବୁବେଳେ ସେ କହୁଥାଏ ମତେ—"ପଢ଼, ବାବୁ ଯେତେ ପାର ପଢ଼ ! ଥର ଅଧିକରେ ବହିଟିଏ ବୁଝି ପାରିଲୁ ନାହିଁ ଯଦି, ପଢ଼ ତାକୁ ସାତ ସାତ-ଥର ପଢ଼ । ଯଦି ସାତରେ ନ ହୁଏ—ପଢ଼ବାର ବାର ଥର ପଢ଼ !"

ଜାହାଜରେ ସମସ୍ତଙ୍କ ସାଙ୍ଗରେ ଠକ୍‌କାଜ ଛୁଟେଇ ପଦେ ଅଧେ କଥା ହୁଏ କି ନାହିଁ ସ୍ୱର—ଏତିକି କଥା କହିବାକୁ ଅରାଜି –ସରଧରିଆ ହେବନ୍ତି ସାଙ୍ଗରେ ! ଆଉ ଯେତେବେଳେ କାହାକୁ କିଛି କହିବାକୁ ପଡ଼େ ତାକୁ—ସେ

ଘଣ୍ଟାରେ ନାକଟେକି ନେମିତ—ଲମ୍ବେଇଦିଏ ତଳ ଓଠଟାକୁ—ବାହାର କରି ପକାଏ ଆଗକୁ—ନଶହୁଲକ, ମୋଚିଦିଏ - ଥୁ ଥୁ କରି ପାଟିରୁ ବାହାର କଲାଭଳି ବାଲିଗୋଣ୍ଡ, ବାଲିଗରଡ଼ା ଝଙ୍କାରରେ—ଫିଙ୍ଗିଦିଏ କଥା କେଇଟା, ଶବ୍ଦ କେଇଟି—ମୋ ସାଙ୍ଗରେ କିନ୍ତୁ କେତେ ଧୀର, କେତେ ନ୍ରମ, କେତେ ମଧୁର ସେ ସବୁ, ଆଉ କି ମନୋଯୋଗୀ ସେ ମୋ କଥା ପ୍ରତି—ଯଦିଓ ତାର 'ମନୋଯୋଗ' ଗତିରେ ଏମିତି କିଛି ଥାଏ, ଡରରେ ଚମକେଇ ଦେଉଥାଏ ଛାତି ଥରେଇ ଦେଉଥାଏ ମୋର । ଅନେକ ସମୟରେ ଭାବୁଥାଏ, ଲାଗୁଥାଏ ମତେ ଆଇମାର ଭଉଣୀ ଭଳି ଏ ବୋମେଇଟି ସାଧାରଣିଆ ପ୍ରସ୍ତାବକ ନଥାଏ ଯେମିତି !

“ବନ୍ଦ କର ପାଠ !” ଥରେ ଥରେ କହି ଉଠେ ହଠାତ୍—ତା’ପରେ ଅନେକ ସମୟ ଯାଏ ପଡ଼ି ରହେ, ଶୋଇରହେ, ଆଖିଦ’ଟା ମୁଦି ଦେଇ ଘଡ଼୍ ଘଡ଼୍ ନିଶ୍ୱାସ ନେଇ ନାକରେ, ଘଡ଼୍ ଘଡ଼୍ ଗଳାରେ - ଉଠେ ପଡେ—ବିରାଟ ପେଟଟା ତାର, ହାତ ଦୁଇଟା ଛନ୍ଦି କାଟେ ମୁରଦାର ଭଳି ଛାତିରେ ତାର, ବାଳବାଳୁଆ ଆଙ୍ଗୁଠିଗୁଡ଼ିକ, ପୋଡା ଘାଆର ଦାଗ ସବୁ ସେଥିରେ = ଜାକିହୁଏ ମେଲିହୁଏ, ମତେ ମୋଡ଼ି ହୁଏ ପୁଣି, ମତେ ଯେମିତି ଅଦୃଶ୍ୟ ଗ୍ରନ୍ଥରେ କେତୋଟି ମୋଜା ବୁଣେ ରହି ରହି—ତା’ପରେ ଥାଏ ଥାଏ ଆରମ୍ଭ କରିଦିଏ ଭଟ୍ଭଟ୍—

“ମସ୍ତିଷ୍କ ସବୁ—ଦେଶ କଥାକୁ ଦେଖ ! ଜଅ, ଦେଖ । କିଛି କରି ପାରିବ ତମେ ସେଥିରେ ! ମସ୍ତିଷ୍କ ସବୁ ଛୋଆ ହୋଇଥାଏ ଅସମାନ ଭାବରେ ପ୍ରତ୍ୟେକର ଯଦି ସମାନ ପରିମାଣର ଥାଆନ୍ତା ମଗଜଟା, କିନ୍ତୁ ମୁହଁ, କାହାର ନାହିଁ ସେମିତି । ଏ ଲୋକଟି ଯଦି ବୁଝିପାରିଲା, ଆରଟା ପାରୁନି, ଆଉ ଗୋଟାକର ଇଚ୍ଛା ନାହିଁ । ମନ ହେଉ ନାହିଁ ଆଦୌ ବୁଝିବାକୁ !”

ଅଟକି ଅଟକି ଶବ୍ଦଗୁଡ଼ିକ ଉପରେ ଝୁଣ୍ଟି ଝୁଣ୍ଟି ପଡ଼ି ସେ ତାର ସୈନିକ ଜୀବନର କାହାଣୀ କେତେକ ଶୁଣାଏ, ମୁଁ କିନ୍ତୁ ଖଣ୍ଡିଆଣ୍ଡି ପାଏ ନା, ମୂଳଦନ୍ଦ୍ୱ ଧରି ପାରେ ନା ସେ କାହାଣୀଗୁଡ଼ାକର । ସବୁବେଳେ ମତେ ଲାଗୁଥାଏ, ସେଗୁଡ଼ାକ ଜଟିଳ, ଜାଠୁଆ ଛିଣ୍ଡିଛିଣ୍ଡା—ଏଥି ମନ ରୋଚକ ନୁହେଁ ଆଦୌ—ବିଶେଷରେ ସେ କେବେ କୌଣସି କଥା କି ଘଟଣା ବର୍ଣ୍ଣନା କରୁ ନ ଥାଏ ଆଦୌରୁ, କହୁଥାଏ ମଝିରୁ, ସେଇଠୁ ତାର ଖିଆଲ ହାକ୍ତୁଥାଏ, ହୁକୁମ ଦେଉଥାଏ, ସେଇଠୁ ।

“ତେଣୁ, ବୁଝିଲୁ, ଫୌଜ ଅଧ୍ୟକ୍ଷ ଡ଼ାକି ପଠାଏ ସେ ସୈନ୍ୟକୁ, କହେ— ସେ ସହକାରୀ ସେନାପତି ସେ ଲେଫ୍ଟେନାଣ୍ଟ କଣ କହୁଥିଲା ତତେ ? ଆଉ ସେ ସୈନ୍ୟଟା ଉତ୍ତରରେ କହିଯାଏ ସବୁ - ଯେମିତି ଯାହା, କାରଣ ସତ କହିବାକୁ ତା ବାଧ୍ୟ, ସେତେବେଳେ ସୈନିକଟାଏ ! ଲେଫ୍ଟେନାଣ୍ଟ ତାକୁ ଅନେଇଲା, ପଥର ଡାହୁଟା, ମୁହଁ ବୁଟଲିଆ ଦେଇ ଆଖି ତଳକୁ କରି କହିଲା—ହୁଁମ୍ !

କ୍ରୋଧରେ ନିଃଶ୍ୱାସ ବନ୍ଦେ ଟାଣି ନେଇ, ଏକାଥରକେ, ଦାନ୍ତଚିପି ଭୁଟ୍କୁ ଭୁଟ୍କୁ ହେଲା ସ୍ୱର —

"ଓରେ, ମୁଁ ଯେମିତି ଜାଣିଥିଲି ଲୋକର କଣ ସବୁ କରିବାର କଥା କଣ ନୁହେଁ ! ଲେଫ୍ଟନାଣ୍ଟଙ୍କୁ ସେମାନେ ଭର୍ତ୍ତି କରିଦେଲେ ଜେଲରେ ନେଇ ଆଉ ତା ମାଆଟା............ହେ, ଭଗବାନ ! ମତେ ବା କିଏ କାହିଁକି କରି ନଚେଇଥାନ୍ତା ।"

ଗରମ ଗରମ ! ଦୋହଲୁଥାଏ ଦୋହଲୁଥାଏ – ସବୁ, ଧୀରେ ଧୀରେ ଗୁଣୁ ଗୁଣୁ ହେଉଥାଏ କିଏ କେଉଁଠି—ଗୁଣୁଗୁଣୁ ହେଉଥାନ୍ତି ସମସ୍ତେ । ଜାହାଜର ଧାତୁରେ ଗଢ଼ା କାନ୍ଥ ଆରପଟେ, ଦୂରରେ ଟିକେ ଆଗ୍ନଲର ଚକଟା ଢଗ୍ ଢଗ୍ କରୁଥାଏ, ଭସ୍ ଭସ୍ ହେଉଥାଏ ଛଳ ଛଳ ହେଉଥାଏ ପାଣି ଜାହାଜତଳେ—ଆଲୁଅ ପବନର ଯାଁ ଆଁ ଆସର ଗୀତ ବା ଝରକା ପାଖେ ପାଖେ । ସେଗୁଡ଼ିକ ଅଥଚ ମନ୍ଥର ଖରତର ବେଗରେ ବୋହିଯାଉଥାଏ, ଦୂରରେ ଦେଖାଗଲା ଯାଉ ବଣରୁ ସେ ଗାଏ, ଅଖିରେ ପଡ଼ିଲେ ବଡ଼ ବଡ଼ ଗଛ ସବୁ—ମୋ କାନ ଅଭ୍ୟସ୍ତ ହୋଇ ଯାଉଥାଏ ସବୁ ପ୍ରକାରର ଶବ୍ଦରେ, ତେଣୁ ମୁଁ ସଚେତନ ଥିଲି ଖାଲି ନୀରବତା ଯେନ, ପର୍ଯ୍ୟନ୍ତ ଜାହାଜର ଆଗରେ ନାଉରିଟାଏ ଏକଠ ରୁଅ ଡ଼ାକ ଦେଉଥାଏ ଥରକୁ ଥର ହେଉଥାଏ ଡ଼ାକ ଡାକକା ।

"ଯା-ଆଡ୍ ! ଯାତ-ତ !"

ଇଚ୍ଛା ହେଉଥାଏ, ମନ ହେଉଥାଏ ମୋର ରୁହନ୍ତିକି, ବସନ୍ତି ଙ୍କ ଅଲଗା ହୋଇ ବିଚ୍ଛିନ୍ନ ହୋଇ ସେଥିରୁ ଶୁଣନ୍ତି ନାହିଁ କାହାକୁ, କହନ୍ତି ନାହିଁ କିଛି, ଖଟନ୍ତି ନାହିଁ କମାକୁ, ବସନ୍ତି ଯାଇ ଖାଲି କେଉଁଠି ଟିକେ ଛାଇରେ—ଗରମର ସୀମାରୁ ଦୂରରେ,— ରୋଷେଇଘର ଚକଚକଟା ଗନ୍ଧରୁ ଯାଏଁ କାହିଁ କେଉଁଠୁ ଦୂରରେ ତ ବସନ୍ତି ଆଉ ସ୍ୱପ୍ନାଚ୍ଛନ୍ନ ଆଖିରେ, ତନ୍ଦ୍ରାଳୁତାରେ ନିରେଖୁଥାନ୍ତି ଏହି ଧୀର, ଏହି ସୁସ୍ଥସୁନ୍ଦର ପରିଶ୍ରାନ୍ତ ଜୀବନଟା ଭସିଭସି ଯାଉଛି ନଈରବୁକୁରେ ।

ଏତିକବେଳେ—"ପଢ଼ !"

ଆଦେଶ ଦେଇ ଡାକ ଗ୍ରୁଡ଼ାଲ ରୋଷେୟା ପରୀକ୍ଷା କଲାପରି ! ପ୍ରଥମ ଶ୍ରେଣୀର ପରଷୁଣିଆମାନେ, ବି ଡରୁଥାନ୍ତି ତାକୁ, ଲଗୁଥାଏ । ମହନମୁହଁ । ନେବଡ଼ି । ମନରେ ବି ଡରିଥାଏ ସ୍ୱର ପ୍ରତି !

"ହେ, ଏ ଘୁଷୁରି, ହେ !" ସ୍ୱର ପାଟିକରେ ମଧ୍ୟ-ପରେଷଣିଆ ଉପରେ !" "ଏଠିକି ଆ ! ଏଠିକି ଆ ବେ ଶୁଅରଟା !" ମଣିଷମାନେ ସଙ୍ଖିଆ-ଗୁଡ଼ାକ— । ଗ୍ରୁପ୍ସା—ଛଇଗୁଡ଼ାକ !"

ମାଝି ଆଉ ଜଲଯୋଗାଣିଆ, ଜାଲୁଣିଆମାନେ ତାକୁ ଖାତିର କରୁଥାନ୍ତି, ଏମିତିକି ତା' ଅନୁଗ୍ରହ ପାଇବା ପାଇଁ ତୋଷାମଦ କରୁଥାନ୍ତି ଖୁବ୍ !

ବେଳେବେଳେ ସଂଜରେ ଯାଇ ବସେ ସିଏ ଘଣ୍ଟା ଘଣ୍ଟା କାଳ ତ୍ରେନ୍ ଉପରେ—ବିଶାଳ ଗୋଟାଏ ଗୋରିଲାକଳଙ୍କ କୁହାଯାଇପରେ ସଫେଦ୍ ରୂପର ଗମ୍ଭୀର ସ୍ୱରରେ ଏକଲୟରେ ବୃଦ୍ଧି ରହେ, ଅପସରି ଯାଉଥିବା ଦୂରକୁ ଦୂରକୁ ।"

ଅଧିକାଂଶ ଆମ ଭିତରୁ ତାକୁ ଦେଖି ସିନ୍ଦୁର ଉନ୍ମେ ଭୟରେ, ସେତକ ମୂହୂର୍ତ୍ତରେ ମୋର କିନ୍ତୁ ଦୟାଭାବ ଆସୁଥାଏ ତା ପାଇଁ—

ସେ ଭଳ ମୁହୂର୍ତ୍ତରେ ଦେଖିଛୁ ସ୍ୱାକଭ ଆଇସକୋଲ୍ଡ ଥୁଏନ ବାହାର ଆସିବ ଗେସ ଘର ଭିତରୁ, ଲାଲ ପଡୁଥାଏ ମୁହଁଟା କୁନ୍ଦୁରୁଜ ହୋଇଥିବ ଝାଳରେ କିନ୍ତୁ ତାକୁ ସ୍ୱାଦେଶ ଚଆମୁଣ୍ଡଟିକୁ ନାକର କୁଣ୍ଢେଇ ଦେବ ଟିକିଏ ତା' ପରେ କ୍ଲାନ୍ତ ସ୍ୱରରେ ହାତଟିକୁ ହଲେଇ ଦେଇ ଡକେଇଯିବ, ପୁଣି ପଶିଯିବ ଗେଷଘର ଭିତରକୁ କିମ୍ବା ଖୁବ୍ ହେଲେ, ଦରକାର ଥିଲେ କହିବ ।

"ମାଛଟା ପଚେଇଲାଣି ।"

"ଚଟଣି କରି ଦେ ସେଥିରେ !"

"କିନ୍ତୁ କିଏ ଯଦି ଝୁହେଁ ମାଗିବରେ ମାଛ ଝୋଳ ବା ମାଛ ଭଜାଟିକେ ।

"ତିଆରି କର, ସେଗୁଡ଼ା' ଖାଇବେ ସେମାନେ !" ଯାହାଦେଲେ ଖାଇବେ ସେମାନେ !"

ବେଳେବେଳେ ଯାହାସ ବାନ୍ଧି ତା ପାଖକୁ ଯାଏ ମୁଁ

"କଣ ଦରକାର ?" କଷ୍ଟେମଷ୍ଟେ ମୋ ଆଡ଼କୁ ମୁହଁ ବୁଲେଇ ପଚାରେ ସେ !

"ନା କିଛି ନାହିଁ !"

"ଆଚ୍ଛା"

ଥରେ ଏମିତ କଣ କହୁଁ କହୁଁ କହିଲି ତାକୁ :

"ସମସ୍ତେ ଏତେ ଡ଼ରନ୍ତି କାହିଁକି ତମକୁ ! ଏତେ ଭଲ ତମେ " ଆନ୍ତରିକ ହୋଇଗଲି ମୁଁ ! ମୋ ପ୍ରଶ୍ନଟା ଲୁଚେଇଦେଲେ ନାହିଁ ଆଦୌ—

"ଖାଲି ତୋର ପାଖରେ ଭଲ ମୁଁ !" ଉତ୍ତର ଦେଲା ସେ ସଙ୍ଗେ ସଙ୍ଗେ ଚମତ୍କାର ମଧୁର ପ୍ରକୃତର ସ୍ୱରରେ ଯୋଗକଲା ପୁଣି—'ହୁଏତ ବା ଭଲ ମୁଁ ସବୁରି ପାଖରେ ! ଏମିତ, ଜଣେଇଦଏ ନା ମୁଁ, ଦେଖାଇ ହୁଏନ ! ଲୋକଙ୍କୁ ଭେଟେବେହେଲେ ଜଣେଇଦେବ ନାହିଁ. ଭଲ ବୋଲି ତମେ,—ନଇଲେ ଶେଷ କରିଦେବ ତମକୁ ! ଭଲ ମଣିଷଟିଏ ଦେଖିଲେ ସମସ୍ତେ ଚଢ଼ି ଯାଆନ୍ତି ତା'ଉପରେ —ଗୋଟାଏ ପାଣି ପାଟ ବା ପାଣି ପନ୍ଦରି କୁଇଁରେ ଶୁଖିଲା ମାଟି କୁଦଟାଏ ଯେମିତ ସେ – ତା' ପରେ ଦଳିଦିଅନ୍ତି, ମକ୍ଚି ଦିଅନ୍ତି—ତାକୁ । ଯା', ମୋ ପାଇଁ ବିସ୍କୁଟ କିଛି ଆଣିବୁ ଯା !" .

ବସ୍ତୁରତକ ପିଇସାରିଲା ପରେ ଗିଲାସକୁ ଗିଲାସ ନଶାହ୍ଲାଳକ ଉପରେ ଜିଭ ବୁଲେଇ ଚାଟିଦେଇ ଓଠକୁ— କହିଲା ପୁଣି :

"ସାନ ଚଢ଼େଇଠୁ ଆଜି ଟିକେ ବଡ଼ ହୋଇଥାନ୍ତୁକ ତୁ— ଅନେକ ଅନେକ କଥା ଅଛି, କହିଥାନ୍ତି, ଶିଖେଇ ବତେଇ ଦେଇଥାନ୍ତି ତତେ ! ଶୁଣିବା ପାଇଁ ଯୋଗ୍ୟ, ଏମିତି ଦ ଗୁଡ଼ାଏ କଥା ଜାଣେ ମୁଁ— ବୋକା ନୁହେଁ ମୁଁ ! ତେବେ, ତୋର ପଢ଼ିବା ଉଚିତ, ବହିପତ୍ର ପଢ଼ିବା ଉଚିତ— ବହିଗୁଡ଼ିକ ହିଁ ସବୁ କହିବେ । ସବୁ ବତେଇଦେବେ, ଯାହା ଜାଣିବା ଉଚିତ, ଗୋଟାଏ ଅମୂଲ୍ୟ ପଦାର୍ଥ ହେଉଛି ବହି ! କଣରେ, ବୁଝୁଚୁ ଟିକେ ?—"

"ନା, ମତେ ଭଲ ଲାଗେନା !"

"ହୁଉମ, ମଦ ପିଇବା ଆରମ୍ଭ କରିବୁ ନାହିଁଟି କେବେ, ମନ ବଳେଇବୁ ନାହିଁ ! 'ମଦ' ପିଇବାଟା ଗୋଟାଏ ଦୁଃଖ । ମସ୍ତବଡ଼ ଦୁଃଖ ! ଭୋଦକା ହେଉଛି ସଇତାନ୍‌ର, ଯମର ସୃଷ୍ଟି ! ମୋର ଯଦି ଟଙ୍କା ପଇସା ଥାଆନ୍ତା, ଧନୀ ହୋଇଥାନ୍ତି ମୁଁ, ତତେ ପଠେଇ ଦିଅନ୍ତି ସ୍କୁଲକୁ ପଢେଇ ପାରନ୍ତିଣି ! ଅପାଠୁଆ, ଅଶିକ୍ଷିତ ଲୋକ, ବୁଝିଲୁ ଗୋଟାଏ ବଳଦ ଛଡ଼ା ଆଉ କିଛି ନୁହେଁ ! ତାକୁ ନେଇ ଜୁଆଳରେ ଯୋଚିଦିଅ— ନଇଲେ ତାକୁ ମାଉଁସ କର— ସେ ଯେତିକି ଯାହା କର, ଖାଲି ଲାଙ୍ଗୁଡ଼ ହଲେଇବ— ଲାଙ୍ଗୁଡ଼ଟାକୁ ଏକର ସେକର କରିବ ନା ଆଉ କଣ ?—

କ୍ୟାପ୍‌ଟେନ୍‌ର ସ୍ତ୍ରୀ ତାକୁ ଦେଇଥାଏ 'ଗୋଗୋଲ' ରଚନାବଳୀ ! "ଭୀଷଣ ପ୍ରତିଶୋଧ"ଟି ପଢ଼ି ଶୁଣେଇଲି ତାକୁ— ମତେ ସତରେ ଭଲ ଲାଗିଲା, ମୁଗ୍ଧ ହୋଇ ଯାଇଥାଏ ମୁଁ !— ସ୍ମୁରି କିନ୍ତୁ ପାଟିକରି ଉଠିଲା ରାଗରେ—

"ବାଜେ, ବାଜେ— ଗୁଲ୍ଲା-ବାଛନ ! ନକଲି—, ଗପ, ପଞ୍ଚଗପ ! ପଞ୍ଚ କାହାଣୀ । ଠିକ୍ ଜାଣେ । ଆଉ ଅନ୍ୟ ଧରଣର ବହି ସବୁ ଅଛି ।"

ସେ ବହିଟିକୁ ନେଇଗଲା, ମୁଁ ମୋ ପାଖକୁ ଆଉ ଖଣ୍ଡିଏ ବହି ଆଣିଲି କ୍ୟାପ୍‌ଟେନ୍ ସ୍ତ୍ରୀଠୁଁ ।

"ହେଇ ନେ ପଢ଼ ଏ "ତାରସ"— ତାର ଅନ୍ୟ ନାଆଁ କଣଟି ?" କେମିତି କେଉଁ ଭାବନାରେ ବୁଡ଼ିଯାଇ ଆଦେଶ ଦେଲା ମତେ— "ବାହାରକଟ— ଦେଖ ଗପଟା ! କ୍ୟାପ୍‌ଟେନ୍ ସ୍ତ୍ରୀ କହୁଥିଲା— ଭଲ ଗପଟା ! କିନ୍ତୁ ଭଲ କାହାପାଇଁ ?— ହୁଏତ ଭଲ ତାପାଇଁ, ଆଉ, ଖରାପ ମୋପାଇଁ । ଦେଖିଛନା, କେମିତି କାନ କଟେଇଚି ସେ— ?

କାନଦି'ଟା ତାର କାଟି ପକାଇଲା ନାହିଁ, କାହିଁକି ଯେ ?"

ସେହି ବହିଟିର କଥା ବସ୍ତୁ ଭିତରେ, ଘଟଣାବଳୀ ଭିତରେ, ଆମେ ଯେତେବେଳେ ପହଞ୍ଚିଗଲୁ ଯେଉଁଠି 'ତାରାସ' ଯୁଦ୍ଧପାଇଁ ଲଢ଼ିବା ପାଇଁ ଆହ୍ୱାନ କଲା 'ଓଷ୍ଟାପ୍‌କୁ'— ରୋଷେୟାଟି ହସିଉଠିଲା ହୋ ହୋ ହୋଇ କର୍କଶ ସ୍ୱରରେ—

"କେମିତି ଲଗିଲା ରେ—?" କହିଲା ସେ— "ଜଣକର .ମୁଣ୍ଡ ଅଛି, ମଗଜ ଅଛି— ଆଉଟାରେ ବଳ ଅଛି 'ବାହା' ଅଛି, ଆଉ ଜଣକର ବାହୁ ଅଛି, ବାହୁର ମାଂସପେଶୀ ଅଛି, ଏଟା କି କଥା— କି କାନସ ଲେଖିଲୁ ସେ ସବୁ— ଓଃଟଗୁଡ଼ାକ !"

ମନଧ୍ୟାନ ଦେଇ ଶୁଣୁଥାଏ ସେ—ଅନେକ ସମୟରେ କିଛୁ ଗୁଝି ଗୁଝି ହେଉଥାଏ—

"ହୁଁ ବୋକାମି ମୂର୍ଖାମି ! ତମେ କଣ ଫାନ୍ଦ ଦେଇ ପାରିବ— ଭଲ ଲୋକଟାକୁ କେଉଁଠି—ଏକା ଗ୍ଲେଟକେ—ଏକା ପାହରକେ କାନ୍ଧରୁ ଅଣ୍ଟାଯାଏ ? ନା, ହୋଇପାରେନା । ଆଉ ସବୁଆ ଡେଙ୍ଗାରେ, ତମେ କେବେହେଲେ ଟେକି-ପାରିବ ଗୋଟାଟା, ସ୍ୱର୍ଗିଛିବ ନହେଁ । ଆରେ, ମୁଁ କ'ଣ ସୈନ୍ୟଟାଏ ନୁହେଁ, ନଜେ ?"

ଏକାବେଳେକେ ସ୍ତବ୍ଧ ସ୍ତବ୍ଧ ହୋଇଗଲା ସେ···ବିଶ୍ୱାସଘାତକତାରେ ।

"ମେଲେଚ୍ଛାଟା—ନର୍ଦ୍ଦମାର ଫେଣଟା—ଏଃ ? ମାଇକିନିଆଟାଏ ପାଇଁ— ଏତେ ? ଛୁଁଃ !"

କିନ୍ତୁ 'ତାନ୍ମମ୍' ଯେତେବେଳେ ଗୁଳି କଲା ତାର ପୁଅକୁ,— ସ୍ୱେସେସ୍ନା-ଟିର ଗୋଡ଼ ଦୁଇଟା ଝସିଗଲା ଖଣ୍ଡି ଉପ ।— ହାତରେ ଧରି ପକାଇଲା ଜାବୁଡ଼ି-କରି .ପଟାର ଧାରକୁ, ତା'ପରେ କାନ୍ଦିଲା ସେ, କାନ୍ଦିଲା ଯେ ଏମିତି ପୁଣି ଧୀରେ ଧୀରେ ଗଡ଼ି ପଡ଼ିଲା ଠୋପାକୁ ଠୋପା ଲୁହ, ଖାଲ ଉପରୁ ପଡ଼ିଲା ଠପ୍ ଠପ୍ ତଳେ, ଚଟାଣ ଉପରେ" 'ନାକପୋଛୁ ସୁଉଁ ସୁଉଁ କରି ରୁନରୁନ କହିହେଲା ସେ—

"ହେ ଭଗବାନ୍, ହେ ଭଗବାନ୍ !"

ଥିଲା ଥିଲା ଚିତ୍କାର କରି ଉଠିଲା ମୋ ଉପରେ—'ଯା' "ଯାଆ ପଢ଼ି ଯାଆ ପଢ଼ିଯାଅ, ମରଡାନର ଛୁଆ, ଯମର ଜମ !"

କାନ୍ଦିଲା ସେ, ଜୋର୍‌ରୁ ଜୋରରେ ଆହୁରି କରୁଣରୁ କରୁଣ ସ୍ୱରରେ ଏମିତି ଆକୁଳରେ ସତେ ଦଣ୍ଡିତ 'ଓସ୍ତାଦ' ଯେତେବେଳେ ଡାକ ଛାଡ଼ିଲା ବାପକୁ ତାର "ବାପା, ବାପା ! ଶୁଣ ମତେ ! ଶୁଣି ପାରୁଛ ମତେ !"

ସରିଗଲା ସରିଗଲା ସବୁ, କାଇଁ କାଇଁ ହୋଇ କହିଲା ସ୍ୱର, "ସ୍ୱରିଗଲା, ଏଁ ଏଇ ତେବେ ଶେଷ ଏଇ ! ନାଇଁ ? ଏଃ କି କଦର୍ଯ୍ୟ କି ଅପଶାଇପିଆ ଘଟଣାଏ ପ୍ରକୃତରେ ମଣିଷ ଥିଲେ ସେଗୁଡ଼ା ସେତେବେଳେ, ସେଇ ସମୟରେ ! ସେଇ ଭାଗ୍ୟସ୍ ମ ଏଃ ? ପ୍ରକୃତ ଭଗବାନ ଦ୍ୱାହି ଏଃ !"

ମୋ ହାତରୁ ବହିଟିକୁ ନେଇ ପଢ଼ିଲା ସେ ମନଦେଇ ପୃଷ୍ଠାଗୁଡ଼ିକୁ ଧନ୍ୟେଇ ଡନ୍ୟେଇ ଲୁହରେ ତାର !

"ଭଲ ବହୁଟାଏ ବୃଝିଲୁ, ସାଠ ମୃତାବକ ଛୁଟି ଗୋଟାଏ, ଛୁଟିଦନ ଗୋଟାଏ i"

ତା ପରେ ପଢ଼ିଲୁ ଆମେ "ଆଇଭାନ୍" ସ୍ତ୍ରୀ ଭଲ ଲଗଲା ଶସ୍କର୍ ସ୍ଲାଣ୍ଟାଜେନେଟ୍ ଚରଣଟି ।

"ଏଇ ଯେ ରାଜା ଭଳି ରାଜା ତମ ପାଇଁ ।" ବେଣ୍ ଗମ୍ଭୀରଭାବେ ଦାର୍ଶନିକ ପକା ଭଙ୍ଗୀରେ ମତ ଦେଲା ସେ ମତେ କିନ୍ତୁ ବହୁଟା ଲାଗିଲା ନହାଁ ବରନ୍ତ୍ରଆ ।

ମୋଟ ଉପରେ ଫରନ୍ ଥିଲା ଆମ ଛୁଟରେ । ମତେ ବମୋହିତ କରିଥିଲା ଟମ୍ ଜୋନ୍ସ୍‌ର ଇତିହାସ ।"

ଏହି ବହିଟିର ପୁରୁଣା ଅନୁବାଦ ।

"ଏଟା ବାଜେ !" ଟପ୍ ଟପୁ ହେଲା ସ୍ତ୍ରୀ "ଯାଏ !" ମୋର ବଣ ବା ଯେ 'ଟମାସ୍ଟା' ? ମୋର କଣ ଯାଏ ଆସେ ! ତା ପାଇଁ, ତା' ଯେନ । ଆଉ ବହି ତ ଥିବ, ନିଶ୍ଚୟ !

ଦନେ ତାକୁ କହଲ ମୁଁ । ଜାଣିଛି ମୁଁ ଆହୁର ଅନେକ ଅନେକ ବହି ଅଛି, ବେଆଇନ୍ ନିଷିଦ୍ଧ ବହି ଗୁପ୍ତ ବହି ସବୁ ସେଗୁଡ଼ିକ ପଢ଼ାଯାଏ ଖାଲି ରାତିରେ. ମାଟିତଳେ ଗହ୍ୱରରେ ।

ତାର ଆଖିଦୁଇଟା ମେଲି ମେଲି ଗଲା ଓସେରେଇ ହୋଇଆସିଲା ନଶହଳକ ହୁଣ ଉଠିଲା କଣ୍ଠା କଣ୍ଠା ଦଶିଲା ।

'କଣରେ ! କଣ ସବୁ ମିଛଗୁଡାଏ ତାହାମିଛଗୁଡ଼ାଏ କହୁଚୁ ଗପୁଚୁ ?"

'ନା ମିଛ କହୁନ । ସାତ୍ରି ଅରେ ମତେ ପଚାରୁଥିଲେ ଦୋଷ ସ୍ୱୀକାର ବେଳେ ଆଉ ତା' ଆଗରୁ ଦେଖିଥିଲି ମୁଁ କେତେ ପଢୁଥାନ୍ତି ସେମିତ ବହି, ଆଉ କାନ୍ଦୁଥାନ୍ତି ପଢ଼ୁ ପଢ଼ୁ ।"

କାଉଁଦଆ ଭାବରେ ମତେ ଅନେଇ ରହିଲା ସ୍ତ୍ରୀ, ଖେଖେଯ୍ୱାଟି

"କିଏ କହୁଥିଲା ସେ ?"

"ଉନ୍ତ୍ର ମହିଳାଟିଏ ଶୁଣୁଥିଲା ସିଏ । ଅଉ ଜଣେ ପୁଣି ଗ୍ରୁଟିଏଟିହୋଇ ପଳେଇଲା ସେଠୁ ଡ଼ରରେ ।"

"ଯାଃ-ଯାଃ-ଉଠ ଜଦଗଙ୍କ ସ୍ୱପ୍ନ ଦେଖୁଚୁ ତୁ !" ଧୀରେ ଧୀରେ ସଙ୍କୁଚତ କର ଆଖିଯୋଡ଼ିକୁ ଚାଆଁଲା ଯେମିତ ସ୍ତ୍ରୀ । ମୂହୂର୍ତ୍ତେକପରେ ରହି ନଜ କଥାରେ ଯୋଗକଲା ପୁଣି—

"ନଷ୍ଟେ—ନ ହୋଇଥିବ କାହିଁକି ! କୋଉଠି କଣ ଗୁପ୍ତ କଥା ଥିବ, ନଷ୍ଟେ । ନ ହୋଇତ ପାରନ୍ତି ନାହିଁ···କିନ୍ତୁ କେତେ, କେତେ ବୁଢ଼ା ହୋଇଗଲିଣି ମୁଁ······!

ଆଉ ସେ କଏମରନ୍ତୁହେଁ ।······ତଥାପି, ତମେ ଯେତେବେଳେ ଭାବେ ସବୁ ଏ କଥା···।"

ଅନର୍ଗଳ ଏମିତି ସେ କହିଯାଏ—ଅରବେ ଘଣ୍ଟା ଘଣ୍ଟା କାଳ—ବାଧ୍ୟ ପଟୁତାରେ ନଜର—

ପୂରାପୂରି ଅଜାଣତରେ ଯେମିତି ମୋର—ପଢ଼ିବା ଟା, ଅଭ୍ୟାସରେ ପଡ଼ିଗଲା । ପଢୁଥାଏଁ ଆନନ୍ଦରେ ଖୁବ୍ ! ଯାହା କହୁଥାଏ କିନ୍ତୁ ବହିଗୁଡ଼ିକ, ବଡ ମଜାରେ ତାର ସମ୍ପର୍କ ନ ଥାଏ, "ଜୀବନ ସହିତ କୌଣସି ସାମଞ୍ଜସ୍ୟ ନ ଥାଏ ତାର—ଆଉ ଏହାହିଁ ଅଗ ଅପେକ୍ଷା ଜୀବନଟାକୁ ଅଧିକ ଦୁର୍ବହ କରିଦେଲା ।

ବହିପ୍ରତି ସ୍ମୁରିର ଆଗ୍ରହ ମଧ ବଢ଼ିବାକୁ ଲାଗିଲା—ଅନେକ ସମୟରେ ସେ ମତେ ମୋ କାମରୁ ଉଠାଇ ଡାକି ନେଇଯାଏ—

"ପେଶକଭ୍ ! ଆ ଆ ପଢ଼, ଆ ଆ ।"

"ଗଦାଏ ବାସନକୁସନ ଥୁଆ ହୋଇଛି, ଧୁଆ ହେବା ପାଇଁ ।"

"ମାକ୍‌ସିମ୍ ଧୋଇବ ସେଗୁଡ଼ାକ । ଆ ଆ ତୁ !"

ଅତି ରୁକ୍ଷ ଭାବରେ ସେ 'ବଡ଼' ବାସନ-ଧୁଆଳିକୁ ଜୋରକରି ଠେଲିପେଲି ଲଗାଇ ଦେଉଥାଏ ମୋ କାମରେ—ଆଉ ସେ—'ବଡ଼' ବାସନ ଧୁଆଳି ପ୍ରତିଶୋଧଟା ନେଉଥାଏ ଗିଲାସଗୁଡ଼ିକୁ ଭାଂଗି—ଗୁଣ୍ଡ୍ ଗୁଣ୍ଡା କରି ।

"ଜାହାଜରୁ ବାହାର କରିଦେବି-ନତେ ?"—ଶାନ୍ତ ସ୍ୱରରେ ମନେ ସତର୍କ କରିଦେଲା ଷ୍ଟିଓ୍ୟାର୍ଡ଼ ।

ଦିନେ ମ୍ୟାକ୍‌ସିମ୍ ଜାଣିଶୁଣି କେତେଗୁଡ଼ାଏ ଗିଲାସ ଛାଡ଼ିଦେଇ ଅଛିଲା ମଇଲା ପାଣି କୁଣ୍ଡରେ—ଏଣୁ ଯେମିତି ମୁଁ ବେସିନଟାକୁ ଓଲଟେଇ ଦେଲି, ଖାଲି କରିବା ପାଇଁ । ମଇଲା ପାଣିତକ ବାହାର କରିଦେବା ପାଇଁ, ଟଳନ୍ଟଳ ହୋଇ ପଡ଼ିଲା ଗିଲାସଗୁଡ଼ିକ ! ଚୂନ ଚୂନ—ହୋଇଗଲା ଗିଲାସଗୁଡ଼ାକ—

"ମୋର ଦୋଷ ଏ"—ସ୍ମୁରି ଜଣେଇଲା ଷ୍ଟେବର୍ଡ଼କୁ—"ଦାମଟେ ମୋ ଉପରେ ଲିଖି-ମୋଠୁଁ ନିଅ ।"

ପରୁଷୁରିଆମାନେ କଣେଇ କଣେଇ—ତେରଛେଇ ତେରଛେଇ ଅନାହୁ-ଥାନ୍ତି ମତେ !

"ହଇରେ ହେ ବହିପୋକ, ହୋ—କଣ ଭାବିଚୁରେ କେଜାଣି ପାଇଁ ତତେ ଏତେ ଦଆହେଉଛି ଦରମାପଣ ?" କହୁହେଲେ ସେମାନେ ।

ଲାଗିଲେ ସେମାନେ, କାମ ଆଣି ଗଦାକରି ଲାଗିଲେ । କୁନ୍ଦେଇଲେ ମୋ

ଉପରେ । ବାରିପାରିଲି ଠିକ୍—ଏହାର ଶେଷ ଫଳଟା ଭଲ ହେବନାହିଁ । ନାଁ ଏଥିରେ ଏମିତି ଭାବବାରେ ଭୁଲକରି ନ ଥିଲି ମୁଁ ।

ଦିନେ ସଜ ସଜ ନାଲିମୁହାଁ ମାଇପିଟିଏ ଚଢ଼ିଲା ଷ୍ଟିମରରେ - ସାଥିରେ ତାର ଥାଏ ଯୁବତୀଟିଏ, ମୁଣ୍ଡରେ ହଳଦିଆ ରୁମାଲ । ଦେହରେ ନୂଆ ଫିକା ନାଲି ବ୍ଲାଉଜ୍ ...... ଦିହିଁଙ୍କି ଦିହେଁ ପିଇଥାନ୍ତି ବେଶ୍ ଦି, ଚାରି ଢୋକ-ମଦ । ମାଇପିଟା ହସୁଥାଏ, ହସି ଲାଗିଥାଏ—ନଇଁ ନଇଁ ନମସ୍କାର କରୁଥାଏ ସମସ୍ତଙ୍କୁ ଆଉ ପାଟ୍ରିଭଳି ଖଣ୍ଡ ଖଣ୍ଡ ବାକ୍ୟଗୁଡ଼ାରେ ଗାଉଥାଏ ଗୀତ ମନ୍ଦଭଳି—

"ମାଫ୍‌କର, ଆଗୋ ମୋର ଆପଣାର ସେଇଟିକେ ତାଲୁ, ବକଟେନାଙ୍କୁ— —ଢୋକେ ଦି ଢୋକ ପିଇଚି ମୁଁ ।"

ମତେ, ମତେ କଟଣକ ନେଇଥିଲେ ମ ସେମାନେ—ଗ୍ଲୁତିଦେଲେ, ଝାଲପ କରିଦେଲେ । ଆଉ, ମୁଁ ଭଗ୍ନ କଡ଼ା ମାଲ ଟିକିଏ ଟିକିଏ କରି—ବେଶୀ ମାତ୍ରାରେ—ଶୋଷିଛି ଏଇ ଏମିତି ମଉଜରେ ! ମଉଜରେ !"

ଗୁଲୁଗୁଲୁ ହୋଇ ହସୁଥାଏ ଓଠ ଚିପିଚିପି ଯୁବତୀଟା—ଆଉ କୁହୁଡ଼ିଆ କୁହୁଡ଼ିଆ ଚାହାଣୀ ନାଚୁଥାଏ ସମସ୍ତଙ୍କ ଆଡ଼କୁ—ଆଉ ଆଙ୍ଗୁଠି ଦେଖେଇ ଲାଗିଥାଏ ମାଇପିଟାର ଗ୍ଲାସରେ···ରେ !

"ଚ୍ଲଲେ—ଆଗେଇ ଚ୍ଲଲ ଲ୍ଲେ, ମଲ୍ଲ ଅଳଜ୍ଜାଟା ଚ୍ଲଲମ—!"

ବସିପଡ଼ିଲେ ଯାଇ ଦ୍ୱିତୀୟ ଶ୍ରେଣୀ ପାଖରେ, ସ୍ୟାକୋଭ ଆଇଭାନୋଭିଚ ଓ ସର୍ଗେଇ ଶୋଉଥାନ୍ତି ଯେଉଁ କ୍ୟାବିନରେ, ତାରି ସାମନାରେ । ଝୁହୁଁ ଝୁହୁଁ କୁଆଡ଼େ ହେଇଗଲା ମାଇକିନାଟା - ସର୍ଗେଇ ଯାଇ ଆସ୍ଥାନ ଜମେଇଲା ଯୁବତୀଟା ପାଖରେ—ତାର ବେଙ୍ଗପାଟିଟା ଲମ୍ବିଗଲା—ମେଲା ହୋଇଗଲା କେମିତିକା ଅସଂଯତ ଶିଥିଳିଆ ଦାନ୍ତ ଝକୁଟାରେ ।

ସେଇଦିନ ରାତିରେ କାମଦାମ ସାରି ଚଢ଼ି ଉଠିଯାଇଥାଏ ମୁଁ ଟେବୁଲ ଉପରକୁ, ଶୋଉଥାଏ ଯୋଉଠି—ସର୍ଗେଇ ମାଡ଼ିଆସିଲା ମୋ ପାଖକୁ - ହାତଟାକୁ ମୋର ଯାପିଧରିଲା ଜବରକରି ।

"ଆ ଆ—ଆ ଆ ବେ । ଯାଉଚୁ—ତତେ ଯୋତା ଖୁଆଇବି ଆ ଆ ! ଚେତା ନ ଥାଏ, ପୂରାପୂରି ମାତାଲ ସେ ସେତେବେଳେ ! ହାତଟାକୁ ମୋଡ଼ି ଟାଣି ଆଣିବାକୁ ଚେଷ୍ଟାକଲି ତା ମୁଠାରୁ—କିନ୍ତୁ କପିକରି ପାହାରେ ବସେଇଦେଲା—ଚାପୁଡ଼ାଏ ବସାଇ ଦେଲା ମୋ ଗାଲରେ—

"ଆ ଆ—ଆଆ କହୁଚ !—"

ଧାଇଁ ଆସିଲା ମ୍ୟାକ୍ସିମ—ତାର ବି ଚେତା ନ ଥାଏ, ଟଳୁଥାଏ ସେ । ଦିହେଁ ମିଶି ମତେ ଟାଣି ଟାଣି ଭିଡ଼ି ନେଇଗଲେ ଡେକ୍-ବାଟେ ।

ଶୋଇଲି ଯାତ୍ରୀଗୁଡ଼ାଙ୍କୁ ଡେଇଁ ଡେଇଁ ଭିଡ଼ି ନେଇଗଲେ ତାଙ୍କ କେବିନକୁ ! କିନ୍ତୁ ସେଠି ଦୁଆରମୁହଁ ପାଖରେ ଛିଡ଼ା ହୋଇଥାଏ ସ୍ମୁରି—ଆଉ

ଠିକ୍ ଦୁଆରମୁହଁଟାରେ ଛୁଡ଼ା ହୋଇଥାଏ ସ୍କାକୋଭ ଆଇସ୍ପନେଭିଚ ଟୋକାଟା ସାମନାରେ—ଆଉ ସେ ସ୍କାକୋଭ ପିଠିରେ ବିଧାପରେ ବିଧାମାନ ବସାଉଥାଏ—ସେ ଟୋକାଟା ।

"ଛାଡ଼ ମତେ—ଯିବାକୁ ଦେ ମତେ !" ମଦୁଆ ସ୍ୱରରେ କାନ୍ଦ କାନ୍ଦ କହୁ ଦେଉଥାଏ ସେ !

ସ୍ତ୍ରୁଶ ଭିଡ଼ ଛଡ଼େଇ ନେଲ ମତେ ସର୍ଗେଇ ଓ ମ୍ୟାକ୍‌ସିମ ହାତରୁ —ଦ'ହାତରେ ଚୂଟି ଧରି ଦହିଙ୍କର ଡ଼ିଙ୍ଗା ଲଡେଇଲ ସେମାନଙ୍କ ମୁଣ୍ଡକୁ—ତା' ପରେ ଝୁଁକ ନେଇ ଫିଙ୍ଗିଦେଲ ଏମିତ ଆଣ୍ଡେଇ, ମୁହଁମାଡ଼ କଚ୍ଚଡ଼ ହୋଇ ପଡ଼ିଲେ ସେମାନେ ।

"ମଣିଷଖିଆଗୁଡାକ—ରାକ୍ଷସଗୁଡ଼ାକ !" କହିଲ ସେ ସ୍କାକୋଭକୁ, ମୁହଁରେ ବନ୍ଦକରି ଦେଉ ଦେଉ କବାଟଟା—ମତେ ଟିକେ ଠେଲିଦେଇ ଗର୍ଜି ଉଠିଲ—

"ବାହାର ଏଠୁ,—ବାହାର୍ !"

ଦୌଡ଼ି ପଳେଇଗଲି ମଂଗ ଉପରକୁ । ରାତିଟା ମେଘୁଆ ଥାଏ ନଈଟା ଦଣୁଥାଏ କଳାଘୁମ୍ରେ ! ଜାହାଜଟାର ପଛେ ପଛେ ପଡ଼ିଥାଏ ଦୁଇଟା ପାଉଁଶିଆ ପାଉଁଶିଆ ଖାଟ—ଅଲଗା ଅଲଗା ଢଗରେ ଅଦୃଶ୍ୟ କୂଳ ଆଡ଼କୁ ସରୁ— ସେଇ ବାଟ ଦୁଇଟାର ମଝିରେ ଗ୍ଲୁଲୁଥାଏ ବଜରାଟା ହେଇ, ଏବେ ବାଆଁରେ, ହେଇ ଏବେ ଡାହାଣରେ, ଝକଜକ ଦେଖାଯାଉଥାଏ, ଲାଲ ଲାଲ ଆଲୁଅ— କେଉଁଠି କିଛି କାହାକୁ ଉଜ୍ଜଳାଇ ନ ଦେଇ,

ଶୀଘ୍ର ଶୀଘ୍ର ଉଭେଇଯାଇ ନଈର ବାଙ୍କଗୁଡ଼ିକରେ ! ସେଗୁଡ଼ିକ ନଭିଯିବା ପରେ, ଉଭେଇ ଯିବାପରେ ମାଡ଼ ପଡ଼ିଲା ରାତିଟା, ଗାଢ଼ରୁ ଗାଢ଼ କଳା ହୋଇ ଅନ୍ଧାର, ଅଧିକରୁ ଅଧିକ ଛଟପଟ କରେଇ ଉତ୍ପୀଡ଼ିକ ହୋଇ—ଗଭୀରରୁ ଗଭୀର ହୋଇଉଠିଲା ଯେମିତ ।

ଗ୍ରେଷେସ୍କାଟି ଆସିଲ—ସିଗାରେଟଟିଏ ଲଗାଉ ଲଗାଉ ଗଭୀର ଖେଦରେ ଗ୍ଲାଡଥିବା ନିଃଶ୍ୱାସଟିଏ ମାରି ବସିଲ ମୋ ପାଖରେ ।

"ସେମାନେ ତତେ ଟାଣୁଥିଲେ ନା ସେ ଖାନକୀଟା ପାଖକୁ ? ଘୁସୁରି- ଘୁ-ଖିଆ ଗୁଡ଼ାକ ! ତୋ' ପାଖକୁ ଦୌଡଦବାର ଶୁଣିପାରିଲି ମୁଁ ।"

"ସେ ମାଇକିନଆଟାକୁ ! କଣ ଉଦ୍ଧାର କଲ ତାଙ୍କ ହାତରୁ ?"

"କାହାକୁ ? ମାଇକିନଆଟାକୁ ?" କହେ ବିକ ଦେଇଗଲ ଟୋକାଟାକୁ— ଅନୁପସ୍ଥିତରେ ତାର—ନିନ୍ଦା କରିଗଲ ତାର ଆଚରଣକୁ—ଦୁଃଖରେ ବଡ ବ୍ୟଥିତ ସ୍ୱରରେ କହି ଗ୍ଲୁଲିଲ । "ଏଠି, ଘୁସୁରି—ଘୁସୁରି ସମସ୍ତେ ! ଗାଆଁ ଭିତରେ ସବୁଠୁ ଖରାପ ଖରାପ ଜାଗା ହେଉଛି ଏଇ ବୋଟ୍—ଏକ ଷ୍ଟିମରଟା ! କେବେ ଭଲ ରହିଚୁ ତୁ ଗାଆଁରେ କେଉଁଠି ?"

"ନା,"—

"ଗାଆଁଟା ପଚିମଢ଼ି ଯାଇଚି ଗଳିଯାଏ ! ବିଶେଷରେ ଶୀତ ଦିନଟାରେ—ଉସ୍ !"

ସିଗାରେଟ୍‌ର 'ମୁଣ୍ଡଟାକୁ' ଫିଙ୍ଗିଦେଲା ପାଣିକି, କହିଲାଗିଲା :

"ହଜିଯିବୁ, ବୁଡ଼ିଯିବୁ, ବାଟ ବୁଡ଼ିଯିବୁରେ ତୁ ଏଇ ପୃଥିବିଗୁଡ଼ାଙ୍କ ଭିତରେ ଟିକମ୍ପାଣିରେ, ମୃଷାକୁ ଆଡିରେ ମୋର ! କଣ କରିବି ମନଟା ଗୋଲେଇ ଘାଣ୍ଟି ହେଉଛି ତୋ ପାଇଁ କଷ୍ଟ ହେଉଛି ତୋ' ପାଇଁ, କାହା ପାଇଁ ଦୁଃଖ ହେଉନ ମୋର ଯାହା କରିବ ନାହିଁ ମୁଁ ଏଠି ଅଣ୍ଟୁମାଡ଼ି ବସି ସେମାନଙ୍କ ଆଗରେ କହିବି ସେମାନଙ୍କୁ କଣ କରୁଛରେ, କଣ କରୁଛ ବୋଧ ଆଗୁଡାକ ତମର କଣ ଆଖି ଫୁଟି ଯାଇଚି ? ଅନ୍ଧ ନା କଣ ତମେ' ଓଟ ଗୁଡ଼ାକ ଏଃ !"

ବହୁତ ବେଳଯାଏ ଲମ୍ବା ଲମ୍ବା ପିଚି ମାରିଲା ଷ୍ଟିମରଟା—ବୋବାଳି ଛାଡ଼ିଲା ଯେମିତି ଶିଙ୍କୁଳିଟା ପାଣିରେ ପିଟି ହେଉଥାଏ ସ୍ଳାପ୍ ସ୍ଳାପ୍ ଲଣ୍ଠନର ଆଲୁଅଟା, ଝୁଲୁଯାଉଥାଏ ଅନ୍ଧାର ଜିଟିମିଟିଆ ଅନ୍ଧାର ଭିତରେ, ଘାଟର ମଞ୍ଚଟାକୁ ଠେଲିରେଇ ଠେଲିରେଇ ଠାବ କରେଇ—ଗ୍ଲେଟ ଗ୍ଲେଟ ଆଲୁଅ ଗୁଡ଼ିଏ ତେଣେ କୋଉଠି ଜୁଳୁଜୁଳୁ ହୋଇ ଫୁଟି ପଡ଼ୁଥାଏ ସେଇ ଅନ୍ଧାରରୁ ପୁଣି ।

"ମାତାଲ ବଣ", ଦାନ୍ତଚିପି ଫୁଟୁଫୁ ହେଲା ସୋଷେପ୍ୟା—"ଆଉ ହେଇ ନଈଟା ଗୋଟାଏ "ମାତାଲ ନଈ !" ଅନେକଦିନ ତଳେ' କେବେ ଗୋଟିଏ 'ପତ୍ର' ବଣ୍ଟା ଅଫିସର ଥିଲା "ଡ୍ରୁଙ୍କର" ଆଉ କିସ୍ନନୀ ଗୋଟାଏ ମାତାଲ ମଥା ! ଯାଉଛି ଯିବ ମୁଁ କୂଳକୁ—କୂଳ ଉପରକୁ ।"

ଯୁସୁସବଳ ଶକ୍ତ ମାଇପେ ସବୁ, 'କମ୍ପା' ଅଞ୍ଚଳର । ଲମ୍ବା ବଡ଼ ହାତଟଣା ଗାଡ଼ିରେ ବୋଝେଇକରି ନେଉଥାଆନ୍ତି ଗଦାକୁ ଗଦା କାଠ ।

ଗ୍ଲେଟ ଗ୍ଲେଟ ପାଦରେ ନେଇଁ ନେଇଁ ଗୁଳୁଥାନ୍ତି ସେମାନେ—ସ୍ପ୍ରିଙ୍ଗଦିଆ ପାଦ ଯେମିତି ସେମାନଙ୍କର ଡେଇଁ ଡେଇଁ ଗୁଳୁଥାନ୍ତି ବୋଟରେ ଡାଉରେ ନଇଁ ନଇଁକା—ଯୋଡ଼ ଯୋଡ଼ ହୋଇ ଆସୁଥାନ୍ତି ସେମାନେ ଜାଲ ଯୋଗାଣିଆ ମାନଙ୍କର ଜାଲରକ୍ଷା ଜାଗାର ଅଙ୍ଗାର—କଳା ଜାଲଯୋଗାଣ 'କଣା' ମୁହଁକୁ ସେଇ କଣାବାଟେ ସେଇ କଣା ବାଟେ ଠେଲି ଗଳେଇ ଦେଉଥାଆନ୍ତି ସେମାନେ ସ୍ବୁରଫୁଟିଆ କାଠଗରଟିମାନ ସବୁ, ସେମାନଙ୍କ ସ୍ୱରଟି ବାଜି ଉଠୁଥାଏ—ଝୁନ୍ ଝୁନ୍ ହୋଇ—

"ହାଇ—ଇ-ଇ, ହାଇ—ଆଇ ଆଇ !"

ବୋଝେ କାଠଗାଡ଼ିକୁ ଟାଣିଆଣିଲାବେଳେ ନାଉରୀ ମାଝି ସବୁ ଧରି

ପକାଉଥାନ୍ତି ସେମାନଙ୍କ ଗୋଡ଼ରୁ ଆଉ ଗୁଣ୍ଡରୁ—ଚାଂଲ୍ଚାଂ କେଁ କାଁ ହୋଇ ସେମାନେ ଛେପ ଲମ୍ବାଏ ଲମ୍ବାଏ ଗୁଣ୍ଡ ଦେଉଥାଆନ୍ତି ସେଇ ମାଝିଙ୍କ ଉପରେ । ଫେରପଡ଼ିଲା ବେଳେ ଚମୁଟାରୁ ଚଟକଣିରୁ ଆତ୍ମରକ୍ଷା କରୁଥାନ୍ତି ମାଇପେ ସବୁ ହାତଟଣା ଗାଡ଼ିର ହତା ବା ବେଣ୍ଟର ମାଡ ଚଢ଼େଇ ଅନେକଥର - ଅନେକଥର ଲକ୍ଷ୍ୟ କରିଥାଏ ଏଇ ଗଢବଧି, ଏଇ କାରବାର—ପ୍ରତ୍ୟେକ ଘାଟରେ କାହାରି ଛଡ଼ାରେ ।

ଏଇଆ ଘଟୁଥାଏ, ଯେତେଥର ଆମେ କୂଳକୁ ଆସୁଥାଉ କାଠ ନେଉଥାଏ କାଲେଣି ପାଇଁ ।

ମନେହେଉଥାଏ ମୋର, ମୁଁ ଯେମିତି ବୁଝାଟିଏ, ଅନେକ ବର୍ଷ ହେଲା ରହି ଆସିଛି ସେଇ ଷ୍ଟିମରରେ । ପ୍ରତ୍ୟେକ କଥା ଜାଣିଥାଏ ମୁଁ—ଆସନ୍ତାକାଲି, ଆଉ ପର ସପ୍ତାହରେ, ଆସନ୍ତା ଶରତକାଳରେ ଘଟିବ ସବୁ କଣ !

ସିନ୍ଦୂର ଫାଟିଲା ! ଜାଗୁଂଲୁ କାଗୁଂଲୁ ଅନ୍ଧାରରେ ଦୃଶ୍ୟ ହେଲା ବରାଟ ପାଇନ୍ ବଣ—ଝିଇଝିଇଆ ହୋଇ ଘାଟ ମଞ୍ଚ ଉପର କୂଳରେ ପାଣିଭିତରକୁ ପଶି ଆସିଥାଏ ଯେଉଁ ଗୋଡ଼ିଆ ବାଲିଝଣ୍ଡ—ବାଲିକୁଦ । ବାଲିଆ ପାହାଡ଼ଟିମାନ ସେଇଥିରେ ହୋଇ । ମାଇପେ ସବୁ ଚଢ଼ୁଛନ୍ତି ପାହାଡ଼ ଉପରେ—ବାହାଶଲେ ବର୍ଣ୍ଣକୁ—ଚଢ଼ୁଛନ୍ତି ହସି ହସି ଗୀତ ଗାଇ, ଗାଳ କଚରମିଚରହୋଇ କଲରବ କରି । ଲମ୍ବା ଲମ୍ବା ହାତଟଣା କାଠଗାଡ଼ିଟିର ରମାନ କାନ୍ଧରେ—ଦଣ୍ଡୁଛନ୍ତି ସବାସ୍ୱ-ସୈନିକ ସବୁ ଯେମିତି ।

ମନହେଲା—କାନ୍ଦନ୍ତି କି—ଗ୍ରୁଡ ଭିତରେ କି ଆଉନିହୋଇ ଯାଉଥାଏ କାହିଁ—ଟଲମଳ ହେଉଥାଏ ଲିହୁଗୁଡ଼ାକ—ଧକ୍କା ଦେଉଥାଏ ହୃଦୟ-ଟାକୁ—ଆଉ କଷ୍ଟ ହେଉଥାଏ, କାହିଁ କଷ୍ଟ ହେଉଥାଏ କେମିତି—କି ଆଘାତରେ !

କନ୍ତୁ ଲାଜ ଲଗିଲା—କାନ୍ଦିବ କେମିତି ମୁଁ ? ବାହାରିଲି ଚେଷ୍ଟା ମାଝିର 'ବୋଉନ୍'କୁ ଡେକ୍ ପୋଛିବା, ଡେକ୍ ଓଲାଇବାରେ ସାହାଯ୍ୟ କରିବା ପାଇଁ ।

କାହାର ଆଖିରେ ନ ପଡ଼ିବା ଲୋକଟିଏ—ବୋଉନ୍ ! ବଡ଼ଙ୍କଆ ବର୍ଷର୍ଣ୍ଣ ଉଦାସ ଆଉ ବର୍ଣ୍ଣହୀନ ସେ—ଟୋକ ଖୋଜ ବସେ ସେ ଯାଇ ନଗ୍ରଟିଆ କଜନ କଣରେ—ମିଟିମିଟି କରେ ଟ୍ରେଟ ଟ୍ରେଟ ଆଖିଯୋଡ଼ିକୁ ବସି ବସି । ଥରେ ସେ କହୁଥାଏ ମତେ :

"ପ୍ରକୃତରେ, ଭଲ ପଣରେ—ସତ୍ୟୋଟ ଗିଣରେ ସତ କହିଲେ ମୋର ଡାକନାଁ 'ବୋଉନ' ନୁହେଁ ହୋଉନ—ମାଆ ମୋର କେମିତି 'ବେଧେଇ' ଥିଲା—ତାକୁ ଦେଖି ଦେଖି ତା'ଠାରୁ ଏ ନାଁ ମୋର—ଭଉଣୀଟାଏ ବ ଅଛି । ସେ ବ ସେଇଆ ! ଲଗୁଛି ଏଇଟା କପାଳ ତାଙ୍କର—ଦାଦାଙ୍କର !

ଖଣ୍ଡେଟା ଭୁଲିଲୁ ଖାଇ, ପଥରଟାଏ ଝୁଲୁଚ, ସଦାବେଳେ ଝୁଲୁଚ ତମ ବେକରେ ।ତୁମେ ଉଠିବାକୁ ଚାହିଁବ ? ଯେଉଁଠି ଥିଲ ସେଇଠି ରହ :

ଡେକ୍‌ଟାକୁ ଓଡ଼ିଆଲଗା ଗ୍ରୀଷ୍ମରାତ୍ରିରେ ପୋଛୁ ପୋଛୁ କହିଲ ସେ ଧୁନ ଧୁନ । ଧୀର ଶାନ୍ତ ସ୍ୱରରେ—

"ଦେଖୁଚ ତ କେମିତ ସେମାନେ ଲଗିଛନ୍ତି—ଟୋକାଗୁଡ଼ାଙ୍କ ସାଥିରେ 'ଗୋଟେଇବା, ମଡଲପରେ ! ଖବ ଦେଖି ଟାଣରେ ଲଗେପଡ଼ିଲେ ଓଦା କାଠ ଗଦାକୁ ବି ଜଳେଇ ପାରନ୍ଧ । ସେଥିରେ ଦିଅାଁ ଲଗେଇ ମତେ ଭଲ ଲାଗେନାହିଁ, ଖାଇ ସହିପାରେ ନା, ହଜମ କରି ପାରେନା—ଏସବୁ ! ହୋଇଥିଲେ କେଉଁଠି କେଉଁ ଅନ୍ଧାରିଆ ଗାଡ଼ିଆରେ ବୁଡେଇ ମାରନ୍ତିଣି ନିଜକୁ, ତେଣିକି ଭଗବାନ ଭରସା । ଆଉ ସେଥିରେ ଏମାନେ ଚହଲେଇ ଦେଉଛନ୍ତି—ଡାଆଁ ଦେଉଛନ୍ତି ଏମିତ—ତମର ମଡଗଡକୁ ହୃଦୟର ଖବକୁ ! କହୁଛ ମୁଁ ତମକୁ "ସ୍ନୋପଡ଼ସି" ଗୁଡ଼ାକ ବୋକା ନୁହଁନ୍ତି,—ସ୍ନୋପଡ଼ସି, କଏ କଣ କ୍ଷୁଣ୍ଣକୁ ଭଲ କେବେ ? ନପୁଂସକ ! ନପୁଂସକ ! ବେଶ୍ ଚାଲାଖ ଚତୁର ଛଇଗ୍ରାଣ୍ଡ ଲୋକଗୁଡ଼ାଏ— ବଂଚବାର ଠିକ୍ ପନ୍ଥାଟା ବାଛିଛନ୍ତି ସେମାନେ— ଗୁଡ଼— ଗୁଡ଼ାଦଅ—ଜୀବନର ଯେତେ ଯାହା ଅତି ଶ୍ରେଷ୍ଠ ଅସନା କଥା ଅସନା କାରବାରକୁ ସବୁ—ଯାଅ, ଘୁଂଚଯାଅ ଦୂରକୁ—ଆଉ ଡାକ, ସେବାକର, ପୂଜାକର ଭଗବାନଙ୍କୁ ପବିତ୍ରଭାବରେ—"ନିର୍ମଳ ମନରେ" ।

ଆମ ପାଖଦେଇ ଚାଲିଗଲା, ଆମକୁ ଅତିକ୍ରମକରି କ୍ୟାପ୍‌ଟେନର ଭାର୍ଯ୍ୟା— ଘାଗ୍ରାଟିକୁ ଟେକ ଧରିଥାଏ ଚଲ ଚଲ ମଳା ମଳା ପାଣିଭିତରେ ବାଟ ଦେଖି ଦେଖି ଯାଉଥାଏ ବୋଲି ସେ ! ସବୁଦିନ ଉଠୁଥାଏ ସେ—ନଦରୁ ଉଠିଆଏ – ଭୋରରୁ, ବଡ଼ି ଭୋରରୁ । ବେଶ······ଅଉ ଦୀର୍ଘଦେହା—ଗମ୍ଭୀର, ଗରିମାମୟୀ, ରାଜକୀୟ ଭଂଗୀଟି ତାର, ଏତେ ସରଳ ନିଷ୍କପଟ ତାର ମୁହଁଟା, ମୋର ଇଚ୍ଛା ଥିବ ଧାଇଁବ ତା'ପଛରେ— ସମୁଦାୟ ହୃଦୟ ଭରି, ଖୋଲି କହିବ ତାକୁ—

"କହ ମତେ କଛ, କହ— କହ ଭଲ !"

ଧୀରେ ଧୀରେ ଘାଟ ମଂଚରୁ ଫିଟି— ଧୀରେଧୀରେ ଘୂରିଲା— କୂଳରୁ ଟାଣିହୋଇ ଚାଲିଲା ଷ୍ଟିମରଟି

"ଚାଲିଲୁ ଅମେ ଦୂରକୁ"—ଛକକାଟି ସ୍ୱତରେ କହିଲ ସେ— ବୋରନ୍

# ଷଷ୍ଠ

'ସାର୍ପ୍ଲସ'ଠାରେ ମ୍ୟାକ୍ସିମ୍ ଜାହାଜ ଛାଡ଼ି ଚାଲିଗଲା— ଚାଲିଗଲା ଚୁପ୍‌ଚାପ୍ । କାହାକୁ କିଛି ନକହି, କାହାଠୁ ବିଦାୟ ନ ନେଇ, ଶାନ୍ତ ଗମ୍ଭୀର ଭାବରେ । ତା ପଛେ ପଛେ ଗଲା ହସଖୁସିଆ ମାଇପିଟି— ସେତେବେଳଯାଏ ବି ହସୁଥାଏ ସେ— ଆଉ ସେଇ ମକଚମକଚ ଲେମ୍ବୁକୋଷ୍ଠ ଟୋକାଟି—ଆଖିଯୋଡ଼ିକ ଫୁଲିଥାଏ ତାର । ଅନେକ ବେଳଯାଏ ସର୍ଜେଇ ଆଣ୍ଠୁମାଡ଼ିବସି ରହିଲା କ୍ୟାପ୍‌ଟେନ କ୍ୟାବିନ ସାମନାରେ—କବାଟର ପାନିଆରକୁ ଚୁମା ଦେଉଥାଏ ଆଉ 'କପାଳଟାକୁ' ବାଡ଼େଇ ଦେଉଥାଏ ସେଥିରେ ।

"ମାଫ୍‌କର, ମତେ ମାଫ୍‌କର— ମୋର ଦୋଷ ନୁହେଁ ଏ," କାନ୍ଦକାଟି କହୁ ହେଉଥାଏ, "ସେଇ ମ୍ୟାକ୍ସିମ ତାର, ତାର ଏ 'କାଣ୍ଡ ।"

ନାଉର ମାଝିମାନେ, ମଦପରଷୁଣ୍ଣି ଆଡକ, ଏମିତକି କେତେକ ଯାତ୍ରୀ ବି ଜାଣିଥାନ୍ତି ମିଛ କହୁଥାଏ ସେ, ତଥାପି ତାକୁ ଟିହାଇ ଉତ୍ସାହ ଦେଉଥାନ୍ତି ସେ ।

"ଆରେ, ଚଲ୍. ଚଲ ! ଲଗିଥା ସେମିତ ! ନିଶ୍ଚେ ସେ ମାଫ୍ ଦେବେ, କ୍ଷମା କରିବେ ନିଶ୍ଚେ— !"

ପ୍ରକୃତରେ ତାକୁ କ୍ଷମାଦେଲା କ୍ୟାପ୍‌ଟେନ— ଯଦିଓ ଏମିତ ଗୋଇଠାଟାଏ ମାରିଲା । ସେ ଗଡ଼ ଗଡ଼ ମୁହଁମାଡ଼ି ପଡ଼ିଲା ଯାଇ ଦୂରରେ-ଟିକେ । କିନ୍ତୁ ମିନିଟ୍‌କ ପରେ ଦେଖାଗଲା— ସର୍ଜେଇ ଦୌଡ଼ୁଚି, ଛୁଟିଛି, ପ୍ରାତରାଶ ଥାଳିଗୁଡ଼ାକ ଧରି ଡେକ୍ ଉପରେ— ଲୋକଙ୍କ କେମିତ କାକୁସ୍ଥିଆ ଖୁସାମୋଦିଆ ଆଖିରେ ଚାହୁଁଛି— ଚାବୁକ ମାଡ଼ଖିଆ କୁକୁରଟିଏ ଭଳି !

ମ୍ୟାକ୍ସିମ୍ ଜାଗାରେ ସେମାନେ ନେଲେ ଭୂତପୂର୍ବ ସୈନିକଟିଏ, ଭିୟାତକରୁ ଆସିଥାଏ ସେ । ଛୋଟ ରୋଡ଼ା ଲୋକଟିଏ, ସାନ ମୁଣ୍ଡଟି ତାର । ଆଖିହଲକ ଲାଲ, ଧୂସର—ଦ୍ୱିତୀୟ ବୋଷ୍ଟ୍ୱେନ୍‌ଟି ସଂଗେ ସଂଗେ ତାକୁ ପଠେଇ-ଦେଲା, ଲଗେଇଦେଲା କାମରେ—ଛୁଆକୁକୁଡ଼ା କେଉଁଟା ଜବେଇ କରିବାରେ । ସୈନିକଟି ମାରିଲା ଯୋଡ଼ିଏ, ବାକିତକ ଖସିଯାଇ ଦଉଡ଼ିବାରେ ଲାଗିଲେ ଡେକ୍ ଉପରେ । ଯାତ୍ରୀମାନେ ଚେଷ୍ଟାକଲେ ଧରିବାପାଇଁ. ଧରାପଡ଼ିଲେ କେଉଁଟା— ଆଉତକ ଉଡ଼ି ଡେଇଁ ଗଲାପଡ଼ିଲେ ପାଣିରେ ହତାଶିଆ ହୋଇ ସୈନ୍ୟଟା ବସି-ପଡ଼ିଲା ରୋଷେଇଘର ପାଖ କାଠଗଦାରେ— କାନ୍ଦିବାକୁ ଆରମ୍ଭ କରିଦେଲା ଉତ୍କଟ ଭାବରେ ।

"କଣରେ ଘଟଣା କଣ, ବୋକା !" ଆଶ୍ଚର୍ଯ୍ୟହୋଇ ପଚାରିଲା ସ୍ତ୍ରୀ ! "କି ଏଁ, କଏ କେବେ ଶୁଣିଚ ଭଲା— ସୈନ୍ୟଟାଏ କାନ୍ଦୁଚି ?"

"ମୁଁ, ଲଢ଼ୁଆ ସୈନ୍ୟ ନଥିଲି ମୁଁ"— ଆପ୍ରେକନ ନରମେଇ ଟିକେ କହିଲା 'ସୈନ୍ୟଟା' ।

ଆଉ ତାହାହିଁ ହେଲା ତାର କାଳ, ତାର ଅଧୋଗତିର କାରଣ ।

ଅଧଘଣ୍ଟାକ ଭିତରେ ଯିଏ ଯେଉଁଠି ଥିଲେ ଡେକ୍ ଉପରେ ଥଣ୍ଡା ବତ୍ରୁପ୍ର ଆରମ୍ଭ କରିଦେଲେ ଖୁସିରେ । ଅରକେ ଜଣେ ଲେଖାଏଁ ଆସୁଥାନ୍ତି ତା'ପାଖକୁ, 'ଜଲଜଲ'କରି ଚାହୁଁଥାନ୍ତି ତାକୁ 'ଜାଣିଶୁଣି' । କହୁଥାନ୍ତି ପଚାରିଲାଭଳି— "ସ୍ୱାଙ୍କୁଇ" ? ଏଇ ?" ତା' ପରେ ହୋହୋ ହୋଇ ଫାଟି ପଡୁଥାନ୍ତି କେମିତି ଗୋଟାଏ ଅତି ଅସଭ୍ୟ, ଅପମାନଜନକ ହସରେ ।

ପ୍ରଥମେ ପ୍ରଥମେ ସୌମ୍ୟହିର ଦୃଷ୍ଟି ପଡ଼ୁଥାଏ ସେମାନଙ୍କ ଉପରେ କି ସେମାନଙ୍କ ହସ ଉପରେ ! ସେ ସେମିତି ଖାଲି ବସିଥାଏ ପୁରୁଣା ସୂତା ଜାମିକର ଅସ୍ତିନ୍‌ରେ ବି ପୋଛି ଦେଉଥାଏ ଝର୍ ଝର୍ ଲୁହଗୁଡ଼ାକ— ସତେ ସେମିତି ଅସ୍ତିନ୍‌ତଳେ ଲୁଚେଇ ଲାଗିଥାଏ 'ଛକପକ' ହୋଇ । ଶୀଘ୍ର କିନ୍ତୁ ତାର ଲାଲ ଧୂସର ଆଖିଯୋଡ଼ାକ ଜଳିଉଠିଲା ରାଗରେ—ଚଢ଼େଇ ବୋବେଇଲାଭଳି ଲୋକଙ୍କ ଢଙ୍ଗରେ କଟରକଟର ହେଲା ।

"ତମର ଲଙ୍କାମରିଚଗୁଡ଼ାକ ମୋଠି ଖାଉଛ ମୋଠି ଲଗାଉଛ କାହିଁକ ? ଯାଅ, ସବୁ ଯମମୁହଁକୁ ଯାଅ—ରହିଥା, ଯାଅବେ ସେଠି କାଉକାଉ ଯାଅ ।"

ଏଇଟି ଲୋକଙ୍କ ଆହୁରି ବେଶୀ ସଲସଲେଇ ଦେଲା କୁତକୁତ କଲା କେମିତି ! ତା' ଗୁଡ଼ ପଞ୍ଜରାରେ ଆଙ୍ଗୁଠି ଗେଞ୍ଜିବାକୁ ଲାଗିଲେ ସମସ୍ତେ, ଟାଣିଲେ ସବୁ ତାର କାମିଜଟାକୁ, ଉପର ଆବରଣୀ ଟାକୁ, ଏମିତି ଚଢ଼େଇଲେ ତାକୁ ନିର୍ଦ୍ଦୟ ଭାବରେ ମଧ୍ୟାହ୍ନଭୋଜନ ଯାଏ ଓ. ପରିହାସ ଭୋଜନଯାଏ ! ମଲ୍ଲମାନେ ଧରିଣି କଏ ଜଣେ ଲେମ୍ବୁ 'ରେପାଟାଏ ଲଗେଇ କାଠ ଝଙ୍କିରେ ଭୂଜକରି ବାନ୍ଧଦେଲା ସେଇ ଦଉଡ଼ିରେ ତା' ଆପ୍ରନ୍‌ରେ ! ସୌମ୍ୟଟା ଯା ଆସ କଲାବେଳେ ଝଙ୍କିଟା ଝୁଲୁଥାଏ ଆଗକୁ ପଛକୁ, ପଛକୁ ଆଗକୁ—ସମସ୍ତେ ହସି ଉଠୁଥାନ୍ତି ମଉଜରେ, ସେ କିନ୍ତୁ କିଛି ଧରି ନପାରି ତାଙ୍କର ଏ କଉତୁକିଆ ହସର ମର୍ମଟା—ଛଟପଟ ହେଉଥାଏ ଚଢ଼ିମିଡ଼ି ହେଉଥାଏ ଯନ୍ତ୍ରଣାରେ ମର୍ମାନ୍ତିକ !

ସୁ.ରି ତାକୁ ଲକ୍ଷ୍ୟ କରୁଥାଏ, ଗମ୍ଭୀର ଭାବରେ, ଉଚିତ୍ କିଛି କହୁନଥାଏ ପାଟି ଫିଟେଇ । ମୁହଁଟି ତ ର ଧୀରେ ଧୀରେ ନରମି କୋମଳ ହୋଇ ଆସୁଥାଏ ମାଇପି ମୁହଁପରି ।

ମତେ ବ ଦୁଃଖ ଲାଗୁଥାଏ ଭାରି, ସୌମ୍ୟଟା ପାଇଁ !

"ଝଙ୍କିଟା କଥା କହିଦେବ କ, କହିପାରେ କ ତାକୁ ?"—ପଚାରିଲି ସୁ.ରିକୁ ।

ମୁଣ୍ଡ ଟୁଙ୍ଗାରିଲା ସୁ.ରି ।

ଶେଷବେଳେ ଯାଇ କହିଦେଲି ସୌମ୍ୟଟାକୁ—କାହିଁକି ସବୁ ହସୁଛନ୍ତି

ତାକୁ ଦେଖି, ସେ ଧର ପକାଇ ଭଡ଼ୁଓଟାର ଆଣିଲା ତଙ୍କିଟାକୁ—ଜୋରରେ ଫୋପାଡ଼ ଦେଇ ଦୁମକିନା ଦାବଦେଲା ପାଦରେ—ଦ ହାତରେ ଏଣେ କଷିକର ମୁଠେଇ ଧର ପକାଇଲା ମୋ ବାଲ କେଉଁଏ । ଆମ ଭିତରେ ଯାହା ହେବାର କଥା—ଲଗିଗଲା ଭଡ଼ାଓଟର ଲଢ଼େଇଟାଏ, କ ଶୁ ଦେଖଣାହାରୀଙ୍କର— ସମସ୍ତେ ଭଡ଼ ଆସିଲେ ମାଡ଼ ପଡ଼ଲେ ଆମ ଉପରେ ।

ସ୍ତୁର ଛନ୍ଦଛଦକର ସେମାନଙ୍କୁ ଟାଣି ଅଲଗା କରଦେଲା ଆମ ଦହିଙ୍କୁ— ଆଗ ମୋ କାନଟା ମଳଦେଇ ଟିକଏ ପରେ ଟାଣରେ ଧର ପକେଇଲା ସୈନ୍ୟର କାନଟାକୁ । ଗ୍ରେଟ ଗେଡ଼ୁମଣିପଟି, ମୁକୁଳବା ପାଇଁ ଟାଣିଓଟାର ମୋଡ଼ହୋଇ ଖୁଡ଼ୁରୁ ଖୁଡ଼ୁରୁ ଧେଇକ ଧେଇ ନାଚୁଛି ଦେଖି ସମସ୍ତେ ହୋ ହୋ ହସି ଉଠିଲେ—ସିଟି ମାରଲେ—ଗୋଡ଼ବାଡ଼େଇ ଦୁମ୍ ଦୁମ୍ ହେଲେ—ହସି ହସି ବଙ୍କେଇଗଲେ ଧନୁଭଳ ଦୋହରେଇ ହୋଇଗଲେ ଅଣ୍ଟାରୁ ଓର୍ଜି ପନ୍ତ୍ର ।

"ହୁର ରଙ୍ଗରେ—ଦୁର୍ଗରକ୍ଷୀ-ପାଇକ ଖର !...ସେ ! ମାରରେ ପକା ମୁଣ୍ଡିଆ—ରେପେସ୍ୱାର ପେଟକୁ—ଛେଲପର ଠିକ୍—ହୁଁ !"

ଏଇ ମଣିଷପଲର ଉନ୍ମତ୍ତ ଆନନ୍ଦଟା ଦେଖି ମନ ହେଲା—କାଠଗଡ଼ଟାଏ ଉଠେଇ ଛଟୁକର ଦଅନ୍ତି କ ସମସ୍ତଙ୍କ ମୁଣ୍ଡକୁ ।

ସ୍ତୁର ଗୁଡ଼ଦେଲା, ଝସେଇ ଦେଲା ସୈନ୍ୟଟାକୁ- ବଗୁଆ ଶୂକରଭଳ ପଛରେ ପିଠିପଟେ ହାତଦୁଇଟା । ଦାନ୍ତ ଦେଖାଇ ଦ' ପାଟିଯାକ—ନଣ ଟାଙ୍କୁରେଇ ବୁଲପଡ଼ଲା, ଖେଦଦେଲା ଲୋକଗୁଡ଼ାକୁ !

"ଯିଏ ଯାହାର ଜାଗାକୁ ଚଲେ : ଗ୍ରାସଗୁଡ଼ାକ ! ମଣିଷଖିଆଗୁଡ଼ାକ !"

ପୁଣିଥରେ ଓଲଟି ମୋ ଉପରକୁ ମାଡ଼ଆସିଲା—ଚଢ଼ି ଆସିଲା ସୈନ୍ୟଟା; ସ୍ତୁର କନ୍ତୁ ତାକୁ ଉଠେଇ ଟେକନେଲା ଗୋଟାଏ ହାତରେ—ବୋହନେଲା ପାଣିପମ୍ପ ପାଖକୁ । ପାଣି ମୁହଁରେ ମୁଣ୍ଡଟାକୁ ମାଡ଼ ନୁଆଁଇ ଦେଇ ଖୋଲ୍‌ଦେଲା ପାଇପକୁ ଆଚ୍ଛାକର ଧୂଆଁଟାଏ ଦେଲା—ତାର ସେଇ ଗେଡ଼ୁ ଦେହଟାକୁ ବୁଲେଇ ବଙ୍କେଇ ମୋଡ଼ମକଚ, ସତେ ଯେମିତ, କନାକମ୍ବେଇଟାଏ ସିଏ ।

ନାଉର ମାଝି କେଇଜଣ, ମାଝି ସରଦାର । ଆଉ ଷ୍ଟିମରର ପହିଲା ନମ୍ବର କର୍ମଚାରୀ କ୍ୟାପ୍‌ଟେନ ତଳକୁ—ପ୍ରଥମ ବୋଟ୍—ଧାଇଁ ଆସିଲେ ସବୁ —ପୁଣି ଥରେ ରୁଣ୍ଡ ହୋଇଗଲେ ଲୋକେ । ସମସ୍ତଙ୍କ ମୁଣ୍ଡକୁ ତଳକୁ ଗୁମ୍ଫି ଉପରକୁ ଉଠିଥାଏ ବେବର୍ତ୍ତା ବା ଓ୍ୱାର୍ଡ଼ର ମସ୍ତକଟା—ସେ କନ୍ତୁ ଥିଲା ସେମିତ- ନମ୍ର, ସେମିତ ନବାବ !

ସୈନ୍ୟଟା ଉଠିବସି ପଡ଼ଲା ଯାଇ କାଠଗଦା ଉପରେ । ଥର ଥର ହାତରେ ଗୋଡ଼ରୁ ଓଟାର କାଢ଼ି ଲଗିଲା ବୁଟ ହଲକ । ପାଦରେ ଗୁଡ଼ାଆ ଛିଣ୍ଡାକନା ପଟିକୁ ଚିପୁଡ଼ବାକୁ ବସିଲା କନ୍ତୁ ପାଣି ଟୋପାଏ ନ ଥାଏ ସେଥିରେ । ଶୁଖିଲାଥାଏ ପୂରାପୂର । ତାର ଅଡ଼ୁଆ ତଡ଼ୁଆ ଓହଳାଲା ଓଦା ବାଲରୁ ଟପ୍‌ଟପ

ହୋଇ ପଡ଼ୁଥାଏ ପାଣି—ଏଇଥିରେ ପୁଣି ହୋ ହୋ ହସି ଉଠିଲେ ସମସ୍ତେ—ଲୋକଗୁଡ଼ାକ । "ରଃ, ସବୁର୍ କର ଦେଖିବ ସବୁ, ରଃ"—ପାତଳା କନ୍ଥ ଚଢ଼ା ସ୍ୱରରେ କହିଲା ସୈନିକଟି—"ମୁଁ ଜୀବନରେ ମାଉ ନ ଦେଇଚ ଟୋକାଟାକୁ !"

ସୁ୍ରଶ ମୋଟେ କାହରୁ ଧରି କଣ ସବୁ କହିଲା ପ୍ରଥମ ଅଫିସରଟାକୁ ! ମଇଁସବୁ ଭଙ୍ଗେଇ ଦେଲେ—ଛନଛନ କରଦେଲେ ଲୋକଙ୍କୁ ।

"କ'ଣ କରବୁ ତୋତେ ନେଇ—ଏଁ" ସମସ୍ତେ ଗଲାପରେ ସୈନ୍ୟକୁ କହିଲା ସୁ୍ରଶ ।

କିଛି କହିଲାନି ସୈନ୍ୟଟା—ଖାଲି ପାଗଲଙ୍କଭଳି ଲାଲ ଲାଲ ଦିଶିଲା ଆଖିରେ ଚାହୁଁଥାଏ ମତେ—ତେଣେ ଅଦ୍‌ଭୁତ ଭାବରେ ଚତ୍‌କାର ଉଠୁଥାଏ ସମୁଦାୟ ଦେହଟା ।

"ଏ କାହଁ ଦୁଗ୍ ଖବରଦାର ସାବଧାନ !"

" ସାବଧାନ ନା ଲେମ୍ବୁଟା —ଛଭୁଟା ନୁହେଁ ଏଇଟା ।" ଜବାବ ଦେଲା ସୈନ୍ୟ !

ଦେଖିପାରିଲା ଏଡକରେ, ଆଉ ସତର୍କତା ଧରି ସମ୍ଭାଳି ହୋଇ ରହିପାରିଲା ନାହିଁ ସୁ୍ରଶ ! ଓହରଗଲା, ଫୁଲ୍‌କା ଗାଲ ଦ'ଟା ପଶିଗଲା ଭିତରକୁ ପବନ ବାହାରଗଲା, ସଙ୍କୁଚିତ ହୋଇଗଲା ଅନଉ ଅନଉ—ଛେପ ପକାଇ ସ୍ତବ୍‌ଧହୋଇ ପଛକୁ ଫେରି ଫେରି ଅନଉଥାଏ ସୈନ୍ୟଟାକୁ ଥରହର । ସୁ୍ରଶ କନ୍ଥ ଓଠଚପି ଟୁପ୍‌ଟାପ୍ ହେଲା

"ହଲଠା ବେହିଆଟାଏ ଏଃ, ଆ ଆରେ ଆମର ଏବେ । ସର୍ଗେଇ ପଛରୁ ଆମ ପାଖକୁ ଉଠିଆସି କାନ ପାଖରେ ଫୁସ୍ ଫୁସ୍ ହେଲା

"କହୁଚ ସେ ଚାହୁଁଚ ଜବେଇ "କଣହେଲା ?" ପାଟିକରି ଉଠିଲା । ଫେରି ପଡ଼ିଲା ଧାଇଁଲା ସୁ୍ରଶ !

ସୈନ୍ୟଟା ଛିଡ଼ା ହୋଇଥାଏ, ମଦ ପରଷୁଣିଆ କ୍ୟାବିନ୍‌ର ଦୁଆରମୁହଁରେ । ଧରିଥାଏ କୁକୁଡ଼ାଛୁଆକଟା ଜାଲେଣି କାଠହଣା ଲମ୍ବା ବଡ଼ ଛୁରିଟା । ଦହିଡ଼ା ଧାର । ଅବୁଡ଼ାଖାବୁଡ଼ା କଟାକଟା ଦାନ୍ତ ବାହାରିଥାଏ କରତପରି ! ଦଳେ ଜମା ହୋଇ ସଇଥାନ୍ତି କ୍ୟାବିନ୍ ମୁହଁରେ—ପାଣି ନର୍ଗଧ ଗଡ଼ୁଥାଏ, ଓଦା ସରସର ବାଲି ଏଇ କୌତୁକିଆ 'ଟିକି ମଣିଏଟିର ନାଟ ଦେଖିବା ପାଇଁ । ତାର ଚେଷ୍ଟା ଓଲଟା ନାକ । ମୁହଁଟା ଥରୁଥାଏ 'ରାବଣ ଗ୍ରୁଡ' ମାଛଭଳି' ପାଟିଟା ଆଡ଼େଇ ଘଉଡ଼େଇ ଦେଖି ସାରିଲାପରେ ଲୋକଗୁଡ଼ାଙ୍କୁ ଆଗେଇ ଗଲା ସେ ସୈନ୍ୟଟା ପାଖକୁ ହାତ ବଢେଇ କହିଲା ଗମ୍ଭୀରରେ

"ଦେ ମତେ, ସେ ଛୁରୀଟା, ଦେ !

"ଏକେଇକଥା !" ଛୁରିଟା ବଢ଼େଇ ଦେଉଁ ଦେଉଁ ଭୁଟ୍‌ଭୁଟ୍ ହେଲା ସୈନ୍ୟଟା । ଖେପେଖ୍ପା ମୋ ହାତରେ ଦେଇ ଛୁରିଟା ସୈନ୍ୟଟିକୁ ଠେଲି ଠେଲି ନେଲା କ୍ୟାବିନ୍ ଭିତରକୁ ।

"ଲମ୍ବ ହୋଇଯା – ଶୋଇପଡ଼ ଟିକେ ! କଣ ତୋର ବିଗିଡ଼ୁଚି କେଉଁଠି, କଣ ?"

ଶବ୍ଦଟିଏ ନକରି ଖଡ଼ିଆ ପଟାଉପରେ ବସିପଡ଼ିଲା ସୈନ୍ୟଟା "ଆଣିଦେବ ସେ ତତେ ଖାଇବାପାଇଁ କିଛି, ଆଉ ଭୋଦକା ବି ଟିକେ ପିଉଚ, ଭୋଦକା ପିଉ ?"

"ଅଳ୍ପ ଟିକେ ।"

"ଦେଖ୍ ତା ଦେହରେ ହାତ ଦେବୁ ନାହିଁ କଲ୍ଲୁ ! ସେ ତୋ' ଘରେ ଥଟ୍ଟା ଖେଳୁନଥିଲା, ହସୁ ନଥିଲା ତୋତେ ଦେଖି, ଶୁଣୁଛୁ ? କହୁଛୁ ମୁଁ, ସେ ନୁହେଁ !"

"କାହିଁକି, କାହିଁକି ମତେ ଏମିତି ଯେ କୌଣସି ଯନ୍ତ୍ରଣା ଦେଉଥିଲେ ସେମାନେ, କାହିଁକି, କେଉଁଥିପାଇଁ ? ଆଗ୍ରହରେ ପଚାରିଲା ସୈନ୍ୟଟି ।

ମିନିଟିଏକାଳ କିଛି କହିଲା ନାହିଁ, ଚୁପ୍ ରହିଲା ସ୍ଥିର, "ଖବରଟା ମୁଁ ଜାଣେ ?" ଉତ୍ତର ଦେଲା ଶେଷରେ !

ସେ ଆଉ ମୁଁ ଗଲୁ ଷ୍ଟୋର ଘରଭିତରକୁ !

ହୁଁଃ ବାଛୁ ବାଛୁ ଗୋଟେଇ ଆଣିଛନ୍ତି ବଗୁଗ, ମଣିଷ ଭିତରେ ନମୁନାଟିଏ ଏଃ" କହିଦେଲା ଚୁଟୁଚୁଟୁ ହୋଇ—"ଦେଖିଲୁତ ଲୋକେ ତମକୁ ପାଗଳ କରିଦେବେ, ଭାଇ ପାଗଳ ! ପାରନ୍ତି ସବୁ ପାରନ୍ତି ସେମାନେ ! ଲାଗିଯିବେ ଛାରପୋକଭଳି ତୁମଠି ଆଉ ଦେଖ ତେଣିକି ତମକୁ ! କୋଉଠି ତୁମେ ! କଣ କହୁଛ ଥରକ—ଛାରପୋକ ? ଅରେ ହଜାରେ ଗୁଣ ଖରାପ, ହଜାର ଗୁଣ ଛାରପୋକଠୁଁ, ଯେ କୌଣସି ଛାରପୋକଠୁ !"

ସୈନ୍ୟଟା ପାଖେ ରୁଟି, ମାଉଁସ, ଭୋଦକା ଆଣି ପହଞ୍ଚିଲା ବେଳକୁ ସେ ଖଡ଼ିଆ ପଟା ଉପରେ ବସି ଆଗକୁ ପଛକୁ ହୋଇ ଝୁଲୁଥାଏ ଝୁନ ଝୁନ ହୋଇ । ମୁଁ ମୁଁ ହୋଇ କାନ୍ଦୁଥାଏ ମାଇପିଟା ପରି । ଟେବୁଲ ଉପରେ ଥୋଇଲି ଥାଳିଆଟା

"ଖାଅ !" କହିଲି ମୁଁ ।

"ଦୁଆରଟା ବନ୍ଦ କରିଦିଅ ଆଗ !"

"ଅନ୍ଧାର ହୋଇଯିବ ଯେ ।"

"ବନ୍ଦ କରିଦିଅ ନହେଲେ ମାଡ଼ି ଆସିବେ ସେମାନେ !"

ବାହାରିଗଲି ସେଠୁଁ । ମତେ ଭଲ ଲାଗୁନଥାଏ ସୈନ୍ୟଟା । ମୋ ମନରେ ଉଦ୍ରେକ କରୁ ନଥାଏ ଦୟା କି ସହାନୁଭୂତି—ଏଇଥିପାଇଁ କେମିତି ଅଡୁଆ ଅଡୁଆ ବୋଧ କରୁଥାଏ, ଅସ୍ୱସ୍ତି ଲାଗୁଥାଏ, । ଆଇମା ମତେ ସବୁବେଳେ କହୁଥିଲା :

"ଲୋକଙ୍କୁ ଦୟା କରିବୁରେ—ଲୋକ ଗୃହାନ୍ତରେ ଦୟା ଥିଲେ, ମମତା ନଥିଲେ—ଗରିବ ଅଭାଗାଗୁଡ଼ିକ ଲଡ଼ି ଲଡ଼ି ଚାଲିଛନ୍ତି ସବୁ !"

"ଦେଖିଲୁ ତାକୁ ?" ଶ୍ରେଷ୍ଠାଟି ପଚାରିଲା—ଫେରିଯିବା ପରେ ମୁଁ, "ବେଶ୍ କଣ କହୁଚ ସେ, କେମିତି ଲାଗୁଚ ତାକୁ ?"

"କାନ୍ଦୁଚି !"

"ହୁଁଃ—ଛିଣ୍ଡାକନାଟା, ତାକୁ କହିବ ସୈନ୍ୟ !"

"ମୋ ମନରେ ଟିକିଏ ହେଲେ ଦୁଃଖ ହେଉନି ଇଁ, ତା ପାଇଁ !"

"ସେଇଟା କଣ ପୁଣି ?"

"ଲୋକଙ୍କୁ ତ ଦୟା କରିବା ଉଚିତ !"

ସ୍ୱାମୀ ମୋ ହାତଟି ଧରି ପକାଇ ଟାଣି ନେଲା ପାଖକୁ ତାର । ତୁମେ ତ ଅଭ୍ ବାଧ ହୋଇ ମନରେ ଦୁଃଖ କରି ପାରିବ ନାହିଁ କାହା ପାଇଁ—ଆଉ ମିଛ କହି ଲାଭ ବା କଣ ! ଶୁଣୁଚୁ ତ ? ଜାଣ—ତୋ' ମନଟିକୁ, ତୋ ହୃଦୟଟିକୁ ଜାଣ !" ମତେ ଟିକିଏ ପେଲି ଘୁଞ୍ଚେଇ ଦେଇ ଯୋଗକଲା ଗମ୍ଭୀର ବକ୍ତୃତାରେ ।

"ଏଠି ରହି ଯୋଗାଏ ନାହିଁ ସେ ତତେ—ଏ ଜାଗା ନୁହେଁ, ତୋ' ପାଇଁ ! ହେଇ, ନେ—ଟିଣ ଦମେ ସିଗାରେଟ୍ !"

ଯାତ୍ରୀଗୁଡାଙ୍କର ଖାଣ୍ଡି ପ୍ରକୃତ ଆଚାର ବ୍ୟବହାରରେ ମୋର 'ହୃଦୟଟା' ମନୋଭାବଟା କେମିତି ଅତି ଗମ୍ଭୀର ଭାବରେ ଆଲୋଡ଼ିତ ହୋଇ ଉଠିଥାଏ । ସେମାନେ ଯେମିତି ଭାବରେ, ତୁଚ୍ଛଟାରେ ଚଢ଼େଇଥାନ୍ତି ସୈନ୍ୟଟାକୁ । ଧରି ତାର କାନ ଧରିଲାବେଳେ ଯେମିତି ହସିଥାନ୍ତି ଆମୋଦରେ । ସେଥିରୁ ବାରି ପାରିଥାଏ ମୁଁ କଣ କେମିତି ଯାହା ପ୍ରକାଶ କରି ହେବ ନାହିଁ । ଘୋର ଲଜ୍ଜାଜନକ କିଛି ଥାଏ ସେଥିରେ, ସେଭଳି ସେଇ ଆଚରଣରେ ସେମାନଙ୍କର । ତା' ନ ହେଲେ ସେମିତି ଘୃଣାଜନକ ଆଉ ଦୟନୀୟ ଯାହା, ତାକୁ ଉପଭୋଗ କରି ପାରିଥାନ୍ତେ କେମିତି ? ହୋ ହୋ ହୋଇ ହସି ଗଡ଼ିଯିବା ଲାଗି କଣ ବା ସେମିତି ଏତେ କୌତୁକମୟ ଅଛି ପରିହାସର କଥା ଦେଖି ପାରିଲେ ସେଥିରେ ?

ସେଇମାନେ ହିଁ ପୁଣି ବସିଥାନ୍ତି, ଶୋଇଥାନ୍ତି ଯାଇ ଡେକ୍ ଉପରେ । କିଛି ଖାଉଥାନ୍ତି ପାଟିରେ ପକେଇ । ମଦ ପିଉଥାନ୍ତି ଗିଲାସକୁ ଗିଲାସ । ତାସ ଖେଳୁଥାନ୍ତି ବି ! ଧୀର ଶାନ୍ତ ଭାବରେ ଗପ କରୁଥାନ୍ତି ସଂଯମର ସହିତ, ନାକଟିକୁ ମୁଗ୍ଧ ଆଖିରେ ଅନେଇ ରହୁଥାନ୍ତି ବେଳେବେଳେ, ନଈଟିକୁ—ସତେ ଯେମିତି ସେମାନେ ସେଇ ଲୋକ ହୋଇ ନ ଥାନ୍ତି, ମାତ୍ର ଘଣ୍ଟାକ ଆଗରୁ ଯିଏ ହେଏଁ ହେଏଁ ହେଉଥିଲେ, ସିଟି ମାରୁଥିଲେ, ପାଟିତୁଣ୍ଡ କରୁଥିଲେ ବିଚିତ୍ର ଭଙ୍ଗୀରେ ! ସେଇମାନେ ପୁଣି ତୁନ୍ ତାନ ପଡ଼ି ଯାଇଥାନ୍ତି, ଉଦାସ ଅଉ ଅଳସ ସବୁବେଳେ ଯେମିତି ! ସକାଳୁ ରାତି ଅଧଯାଏ ଷ୍ଟିମରଟାରେ ଧୀରେ ଘୂରେ ବୁଲୁଥାନ୍ତି ପଣି

ପର—ଘୁଣ୍ଡି ଘୁଣ୍ଡି ହେଉଥାନ୍ତି ତାଉଁଶ ଯେମିତ ! କଇଲେ ବା ଝୁଲୁଥାନ୍ତି ଧୂଳି-କଣାଗୁଡ଼ାଏ ମେଞ୍ଚାକୁ ମେଞ୍ଚା ଯୋଗୁଁଏ ଲେଖାଁ ସୂର୍ଯ୍ୟକରଣରେ ! ଦଳକୁ ଦଳ ପୁଣି ଏବେ ଗୁଣ୍ଡ ହୋଇଯାଉଥାନ୍ତି କୂଳକୁ ଲଗା ପଟାବାଟ ଉପରେ—ମୁଣ୍ଡରେ, ଷ୍ଟିମରରେ—ଘାଟ ମଙ୍ଗକୁ ଓହେରେଇବା ଆଗରୁ ଝକୁଣଚନ୍ଦ୍ର ଆଙ୍କି ଦେଲେ ସବୁ ନୂନ୍ୟରେ ଗ୍ରାଉ ଉପରେ ନଜ ନଜର !—ଆଉ ତାଙ୍କର ଭଳି ଦଳକୁ ଦଳ—ସମାନ ଏକ ଧରଣର ପୋଷାକପଟ ଦେହରେ—ବସ୍ତା, ବୁଜୁଳି—ଅନ୍ଦି କୋଥଲର ଭାରରେ ନଇଁପଡ଼ି ଉଠୁଥାନ୍ତି ଷ୍ଟିମର ଉପରକୁ ।”

ଘାଟକୁ ଘାଟ, ଠାଆକୁ ଠାଆ । ଅନବରତ ଏଇ ଲୋକ ଅଦଳବଦଳ, ଲୋକ ଯାଆଆସ—ଅଥଚ କୌଣସି ପରିବର୍ତ୍ତନ ଆସୁ ନ ଥାଏ ଷ୍ଟିମର ଉପର ଜୀବନରେ—ନୂଆ ଯାତ୍ରୀମାନେ ଆଲୋଚନା କରୁଥାନ୍ତି, ସେଇ ଘଟନା, ସେଇ ବିଷୟ ସବୁ, ଯାହା ପୁରୁଖାମାନେ ଆଲୋଚନା କରି ସାରିଥାନ୍ତି ଆଗରୁ—ଏଇ ଯେମିତ ଜମିବାଡ଼ି, କାମଦାମ, ଠାକୁର ଫାକୁର କ ପୁଅମାଇପଙ୍କ କଥା । ଏମିତକ ସେମାନେ ବ୍ୟବହାର କରୁଥାନ୍ତି—ସମାନ ସେଇ ଏକ ଶବ୍ଦଗୁଡ଼ାକ—

“ହଁ, ହେ ଭଗବାନଙ୍କ ବରାଦ । ଭଗବାନଙ୍କ ଇଚ୍ଛା ସହିବା ପାଇଁ ଜନ୍ମ ପାଇଛୁ । ସହିଯିବୁ, କଣ ଆଉ କରିବା କହ, କିଛୁ କରିହେବ ପାରିବ ନାହିଁ—ଆମର ଭାଗ୍ୟତ ସେଇଆ !”

ବଡ଼ ଉଦାସିଆ ନଜୀବ, ବିରକ୍ତକର ଲାଗୁଥାଏ, ସେମାନେ ଯେତେବେଳେ କହ ହେଉଥାନ୍ତି ଏମିତ—ସେମାନଙ୍କର ଏଇ କଥାଗୁଡାକ ଶୁଣିଲେ—ଏସନା ମସନା ଦେଖିଲେ ଶୁଣିଲେ, ଦେହ ଶୀତେଇ ଉଠୁଥାଏ ମୋର. ସହ ପାରୁ ନଥାଏ ମୁଁ ଆଉ ନର୍ଦ୍ଦୟ ଭାବରେ, ଅନ୍ୟାୟ ଭାବରେ କିଏ ମୋ ସଙ୍ଗେ ବ୍ୟବହାର କରିବ ? କିଏ ନର୍ଦ୍ଦୟ ଆଉ ଅନ୍ୟାୟ ବ୍ୟବହାର କରିବ—କାହାଠୁ ଏହି ସ୍ୱରୂପ ବ୍ୟବହାର ପାଇବ, ମୁଁ ସହଯିବ, ଏମିତ ଇଚ୍ଛା କ ଧାରଣା ନଥାଏ ମୋର । କାହାର ନର୍ଦ୍ଦୟ ଅନ୍ୟାୟ ବ୍ୟବହାରଟା ବରଦାସ୍ତ କରିଯିବା ଥାଏ ମୋର ପ୍ରକୃତର ମୋର ଇଚ୍ଛାର ବାହାରେ । ନଶ୍ଚିତ ରୂପେ ଜାଣିଥାଏ । ଏକ୍ରଲ କିଛୁ କେବେ କରି ନ ଥାଏ ଯେଉଁଥିଲାଗି ମୋର ପ୍ରାପ୍ୟ ନଥାଏ । ଏହା ନଶ୍ଚୟ । ବଞ୍ଚିବ, ଏଇଟା ତ ସେ ସ୍ୱୀକୃତ ନଥାଏ କେବେହେଲେ ।

ସେମାନେ ଗମ୍ଭୀର, ସ୍ନେହାର୍ଦ୍ର ହୃଦୟ, ଉଦାର ମ୍ୟାକ୍‌ସିମକୁ ନକାଳ ଦେଲେ ଷ୍ଟିମରରୁ—ରଖିଲେ ଅଥଚ ଘୃଣ୍ୟ କଦର୍ଯ୍ୟ ପ୍ରକୃତର ସର୍ଗେଇକୁ । କାହିଁକ, କାହିଁକ ଏଇ ଯେଉଁମାନେ ଉନ୍ମତ୍ତ ହୋଇ ଯନ୍ତ୍ରଣା ଦେଉଥିଲେ ଗୋଟିଏ ଲୋକକୁ—ଯନ୍ତ୍ରଣା ଦେଇ ତାକୁ ଏକାବେଳକେ ପାଗଳ କରିବାକୁ ପାରିନାର ଥିଲେ ଖୁବ୍ । ସେଇମାନେ ପୁଣି ମେଷ୍ଟା ସଦୃଶ ଭଳି ଗୁଣ୍ଡ ନ ନଫିଟାଇ ମୁଣ୍ଡ ନୁଆଁଇ ‘ଷ୍ଟିମରର’ ଅଫିସର, ମାଝି, ନାଉରିଙ୍କର ରୁଢ଼ କଠୋର—ଆଦେଶକୁ ମାନୁଥିଲେ କାହିଁକ—କାହିଁକ ବା ଟିକିଏ ହେଲେ ଅପମାନ ବୋଧ

ନକର, ଅତ ସ୍ଥାନମାନଅ ଅସଭ୍ୟ ଧରଣର ଗାଳିଗୁଲଜ ସହ୍ୟ କରୁଥିଲେ କାହିଁକ ?

"ଯୁଆଯା, ଯୁଆଯା—ଗୃଲଯା 'ରେଲିଙ୍ଗ' ପାଖରୁ ! ସବୁ—ଗୃଲଯା !" ଦୃଷ୍ଟାମିଭରୀ ସୁନ୍ଦର ଚତୁର ଆଖି ଦୁଇଟାକୁ କୁଞ୍ଚେଇ ଜାକ ଜାକ ଦେଇ ଡ଼ାକ ଗୃଡ଼ଲ ମାଝି—ସର୍ଦ୍ଦାର । "ଦଶୁନାହିଁ କରେ ଦେଖିପାରୁନ, ମୋଡ଼ ବୁଲୁଛି ଷ୍ଟିମରଟା ! ଗୃଡ଼ ଚଞ୍ଚଳ—ହାତ ଗୃଡ଼ରେ ବଦମାସ—ସଇତାନଗୁଡ଼ାକ !"

ବଗୁଲିଆ ବଦମାସଗୁଡ଼ାକ ଲଙ୍ଗୁ ଡ଼ ଜାକ କଥା ମାନ ଧାଇଁଲେ ସବୁ ଡ଼େକର ଆରକରକୁ—ସେଠୁ ସେମାନେ ତଡ଼ା ଖାଇଲେ ଘଉଡ଼ା ହୋଇ ଆସିଲେ । ମେଣ୍ଢା ପଲ ପର ଠିକ୍ ।

"ଇସ୍ !—ମୂର୍ଖାଗୁଡ଼ାକ !"

ଗରମ ଘଡଘଡ଼ିକରେ—ଧାତୁଘଅର ସାମିୟାନ ତଳଟା—ଗୃତତଳଟା ସେଗୁଡ଼ାକ ତାତ ପଡ଼ି ରହୁଥାଏ ଦନରେ । ଅସରପା ଭଳ ବସି ଉଠି ଗୃରୁଣ୍ଡି କଲବଲ ହେଉଥାନ୍ତି ଯାତ୍ରୀସବୁ, ଶୋଇପଡ଼ୁଥାନ୍ତି ଯେଉଁଠିଇଚ୍ଛା ସେଠି ! ପ୍ରତ୍ୟେକ ଥର ପ୍ରତ ଘାଟରେ ମାଝି, ଦାଉରସବୁ ଗୋଇଠାମାର ବିଧାମାର କେଞ୍ଚିକାଞ୍ଚ କର ଉଠେଇ ଦଅନ୍ତି ସେମାନଙ୍କୁ ।

"ହେଇକ୍ ହେ"—! "ବାଟ ସଫାକର, ବାଟ ଗୃଡ଼ବେ । ଯାଅ ନେ, ନଜନଜ ଜାଗାକୁ ଯାଆ......"

ଯାତ୍ରୀଗୁଡ଼ିକ ଉଠି ବସନ୍ତି, ନଦ ମଳ ମଳ ହୋଇ ଯେ କୌଣସି ଦଗକୁ ଏଣେ ମାଡ଼ି ଯାଆନ୍ତି ।

କେବଳ ପୋଷାକପତ୍ରରେ ଯାହା ଫରକ ଥାଏ ମାଝିଗୁଡ଼ାଙ୍କର ଯାତ୍ରୀମାନଙ୍କଠୁ—କନ୍ତୁ ପୋଲିସବାଲାଙ୍କ ଭଳ ସେମାନେ ହୁକୁମ ଦଅନ୍ତି ବ୍ୟବହାର କରୁଥାନ୍ତି ଯାତ୍ରୀଙ୍କ ସାଙ୍ଗରେ ।

ଲୋକଗୁଡ଼ିକ ସମ୍ପର୍କରେ ସବୁଠୁ ଚମକପ୍ରଦ ବିଷୟ—ସେମାନଙ୍କର ଖାରୁ ଖାରୁ ସଲଜଭାବ—କେମିତ ଗୋଟାଏ କରୁଣ ଆତ୍ମସମର୍ପଣ ପ୍ରତ୍ୟେକ କଥାରେ, ପ୍ରତ୍ୟେକଠି !—ଆଉ ଅତ ଅଦଭୁତ, ଅତ ଭୟଙ୍କର ହୋଇ ଉଠୁଥାଏ ଏହ ଆତ୍ମ-ସମର୍ପଣ – ଏହ ସକଳ ତ୍ୟାଗ ମନୋଭାବଟାର ଉପର ଆବରଣଟା କୋଉଠି କେତେବେଳେ ଚଡଚଡ଼ ହୋଇ ଫାଟି ଯାଉଥାଏ, ଭାଙ୍ଗି ଯାଉଥାଏ—ଜଘନ୍ୟ ସେଇ ଅତ ପାଶବକ ହୋହଲ୍ଲାମୟ ଆନନ୍ଦ—ହସ କୌତୂହଳର ମୂର୍ତ୍ତିରେ । ଅନୁଭବ କରୁଥାଏ ଲୋକଗୁଡ଼ିକ ଠିକ୍ ଜାଣି ନ ଥାନ୍ତି, କୁଆଡ଼କ ନଆ ହେଉଛନ୍ତି ସେମାନେ—ଯୋଉଠି ଇଚ୍ଛା ସେଠି ଷ୍ଟିମର ଓହ୍ଲେଇ ନକାଳଦେଉ ପଛେ—କିଛି ଯାଏ ଆସେ ନ ଥାଏ ସେମାନଙ୍କର । ଭାଗ୍ୟର କିଛି ହେରଫେର ଆସୁ ନ ଥାଏ ସେଇଟି—ଯେଉଁଠି ଉତୁରନ୍ତୁ ପଛେ, କୂଳରେ ସେମାନେ ରହୁଥାନ୍ତି ଖୁବ୍ ଅଳ୍ପସମୟ—ଏଇଟିରେ କମ୍ବା ଏମିତ ଆଉ କୌଣସି ଷ୍ଟିମରରେ ଚଢ଼ିବା ପର୍ଯ୍ୟନ୍ତ—ଏଇ ଷ୍ଟିମର କୋଉଠିକ ତ

ପୁଣି ବନ୍ଧନେବ ସେମାନଙ୍କୁ—ଝଣ୍ଟେଦ୍ରର ନଷ୍ଟସ୍ୱ । ସମସ୍ତେ, ସମସ୍ତେ ସେମାନେ ବୃହବ ବାରବୁଲ, କାହାର ବା ଚନ୍ଦ୍ରୀଗ୍ରଲ ନ ଥାଏ—ସେମାନଙ୍କ ଭିତରୁ କଏ ବା ବାରବୁଲ ବାରକୁଆସି ନ ଥାଏ—ସବୁ ଦେଶ ବଦେଶ ତାଂକ ପାଇଁ—ଅଥଚ ସମସ୍ତେ ସେମାନେ ଭୀରୁ, ଡ଼ରୁଆ, ହାଡ଼େ ହାଡ଼େ ଡରୁଆ !

ଥରେ ଅଧରାତ୍ର ଗଡ଼ିଯାଇଥାଏ, ପାହାନ୍ତା ପହର ପ୍ରାୟ, ହଠାତ ଗୋଟାଏ କଲ ଭାଙ୍ଗିଗଲା ପ୍ରଚଣ୍ଡ ଶବ୍ଦ ହେଲା—ପ୍ରଚଣ୍ଡ ଗୋଟିଏ ବଷ୍ଫୋରଣ ହେଉଥିଲା ।

ସଂଗେ ସଂଗେ ସମୁଦାୟ ଡେକ୍‌ଟା ଆଚ୍ଛନ୍ନ ହୋଇଗଲା ଧଳାପାଉଁଶିଆ ଧୂଆଁରେ ବାଷ୍ପରେ—ଯେତେ ଯେଉଁଠି କଣା ଥିଲା, ଫାଟ ଥିଲା, ସେ ସବୁ ବାଟରେ ବହୁଳ ଘୂଅ ଆକାରରେ କୁଣ୍ଡଳ ରଚ ବାହାର ଆସୁଥାଏ ସେଇ ବାଷ୍ପ-ଇଞ୍ଜିନ-ଘର ଭିତରୁ । କଏ ଜଣେ କାନଫଟା ସ୍ୱରରେ ପାଟି କରି ଉଠିଲା

"ଗ୍ୟାଭ୍ରୋ ! ପଣମ ଖଣ୍ଡେ ଅଭ ଲାଲ ସୀସା କଚ୍ଛ—ଗ୍ୟାଭ୍ରେ !"

ଶୋଉଥାଏ ମୁଁ ଇଞ୍ଜିନ ଘର ପାଖରେ ଟେବୁଲ ଉପରେ, ଯେଉଁଠି ଧଆଧୋଉ କରୁଥାଏ ବାସନ କୁସନ ! ବଷ୍ଫୋରଣ ଶୁଣି ଚମକରେ ଉଠି ପଡ଼ିଲା ବେଳକୁ ମୁଁ, ସବୁ ତୁନଚାନ୍ ହୋଇଯାଇଥାଏ ଡେକ୍ ଉପରେ—ମେଶିନ୍‌ଟା ସୁଉ ସୁଉ କରୁଥାଏ ବାଷ୍ପ ଗ୍ରଡ଼—ଆଉ ହାତୁଡ଼ିଗୁଡ଼ାକ ଘନ ଘନ ପିଟି ହେଉଥାଏ—ମୁହୂର୍ତ୍ତେ ଯାଇଥିବ କ ନାହିଁ, ଡେକର ଯାତ୍ରୀଗୁଡ଼ାକ ହାଉହାଉ ହୋଇ ଚିତ୍କାର କରି ଉଠିଲେ—ପ୍ରାଣ ବକଳରେ, ଭୟରେ, ସେ ଚିତ୍କାରରେ ଷ୍ଟିମରଟା ଥରି ଉଠିଲା ଯେମିତ ।

ଧୂଆଁର ଧଳା କୁହୁଡ଼ିଟା ଗୃହୁଁ ଗୃହୁଁ ଉଭେଇ ଯାଉଥାଏ, ଲୁଗାପଟା ଅସମ୍ଭାଳ— ମାଇପି ବା ମରଦ ଅଧାଅଧି ଲଙ୍ଗଳାମୁକୁଳା—ବାଳସବୁ ଅଳଗ୍—ଆଖିଗୁଡ଼ାକ ମାଛ ଆଖିଭଳି, ପଲକ ପଡ଼ୁନ ଥାଏ ସେଥିରେ । ଦେଖିକ ଧାଇଁଲେ, ସବୁ ଛୁଟିଲେ—କାହାକୁ କଏ ଧକ୍କା ଦେଇ, ଠେଲିଦେଇ କେଉଁଠି କଏ କାହା ଉପରେ ଚଢି, କାହାକୁ ଡେଇଁ ପଡ଼ି—ସମସ୍ତେ ସେମାନେ ଏକାବେଳକେ ଭିଡ଼ୁଥାନ୍ତି—ଟାଣୁଥାନ୍ତି କଏ କାହା ମୁଣ୍ଡତଳ, କାହା ଗୋଡ଼ ପାଖରୁ, କରୁଚ୍ଚ ବା—ଝୁଙ୍କିଥାନ୍ତି ଥଳକୋଥଳି, ଗଣ୍ଠିରପଳ, ବାକ୍ସ ଘୁଟକେଶ୍ ସବୁ ନଜନଜର ।

କଏ କାହାକୁ ଝୁଣ୍ଟି କଗ୍ଭନ୍ତି ଦୋଇପଡ଼ି, କଏ କାହା ଦେହରେ ବାଡ଼େଇ ହୋଇଯାଇ—ଠେଲାପେଲାରେ କାଉଲୁ ବାଉଲୁହୋଇ ଧାଆଁ ଦଉଡ଼ କଲାବେଳେ ଖାଲି ଡ଼କା ପକାଉଥାନ୍ତି—ହେ ଭଗବାନ—ହେ ମହାପ୍ରଭୁ ! ହେ ସନ୍ଥ ନକୋଲସ ! ଦୃଶ୍ୟଟା ଯେମିତ ଭୀଷଣ, ଭୟାବହ ସେମିତ ଦେଶ୍ 'ମଭ୍ୟ ଆ'

ହୃଦସ୍ପନ୍ଦନ ବ ଲଗୁଥାଏ । ମୁଁ ବ ସେମାନଙ୍କ ପଛରେ ଦଉଡ଼ା ଦଉଡ଼ି କରି ଖାଲି ଦେଖିବା ପାଇଁ ମଉଜରେ, ସେମାନେ ସବୁ କରିବେ କଣ ?

ଏଇ ଥିଲି ମୋର ପ୍ରଥମ ଅଭିଜ୍ଞତା ରାତିର ସତର୍କ ଘଣ୍ଟି ସମ୍ପର୍କରେ — କେତେକ କାରଣରୁ ଠିକ ଧାରଣା କରିନେଲି ସେଥର ସତର୍କ କରି ଘଣ୍ଟିଟା ବାଜିଥିଲା ଭୁଲରେ—ସ୍ୱାଭାବିକ ଗତିରେ ଚାଲିଥାଏ ଷ୍ଟିମରଟା—ଡାହାଣ ହାତ ବନ୍ଧ ପାଖେ ପାଖେ ନଈ କୂଳେ କୂଳେ ପ୍ରାୟ କୁଟା-ଗୋଗ୍ଗଳ ସବୁ ଜଳେଇ ଦେଇଥାନ୍ତି ଠାଆକୁ ଠାଆ, ଗୋଗ୍ଗକୁ ଗୋଗ୍ଗ. ଗ୍ରେଟ ଗ୍ରେଟ ପାଲଗଦାଟିମାନ— ଖୁସିରେ ମଉଜ କରୁଥାନ୍ତି ସେମାନେ । ସଳିତା ଉଜ୍ଜ୍ୱଳ ଉଠୁଥାଏ । ଚକ୍ ଚକ୍ କରୁଥାଏ ପୂର୍ଣ୍ଣିମାର ଜହ୍ନ-ଆଲୁଅରେ ।

ଲୋକେ କାହିଁ ଦଉଡ଼ା ଦଉଡ଼ି କଲେ ଅନ୍ଧାର ବେଶୀ ପାଗଲଙ୍କ ପରି, କ୍ୟାବିନ୍‌ର ଯାତ୍ରୀମାନେ ବାହାରି ଆସିଲେ ପଡ଼ାକୁ—ଡେକ୍ ଉପରକୁ ! କିଏ ଜଣେ ଡେଇଁ ପଡ଼ିଲା ଜାହାଜ ଉପରୁ—କେତେକ ପିଗ୍ଗ ଧରିଲେ 'ତାର'। ବା' ଜଣେ ମ୍ୟୁଜିକ, ଯେମ୍ନେଲିଆ ଗୃପୀ ଆଉ ପାତ୍ରୀ ଜଣେ—ବନ୍ଧୁ ଆଣିଲେ ଗ୍ରେଟ ଗ୍ରେଟ ମଳିକାଠ, ସେଇଥିରେ କେଣ୍ଟି ବାଡ଼େଇ ଡେକ୍‌ରେ କଣ୍ଠାରେ, ଅଣ୍ଡା ହୋଇଥିବା ବେଞ୍ଚ ଭିତରୁ ଗୋଟାକୁ ଉପାଡ଼ିଦେଲେ ସେମାନେ । ମଙ୍ଗ ଢ଼ଆଁରେ ଫୋପାଡ଼ି ଦିଆଗଲା ଗୋଟାଏ ବହୁତ କୁକୁଡ଼ାଛୁଆ ଭର୍ତ୍ତି ଝୋପର । ଡେକ୍‌ର ମଝିରେ—କ୍ୟାପ୍‌ଟେନ ଘରକୁ ପଡ଼ିଥିବା ପଟା ପାଖ ପାହାଚରେ ଆଣ୍ଠୁମାଡ଼ି ବସି ପଡ଼ିଥାଏ ଆଉ ଗୋଟାଏ ମ୍ୟୁଜିକ୍—ଯେଉଁମାନେ ତାକୁ ଟପି ଡେଇଁ ଯାଉଥାନ୍ତି, ସେମାନଙ୍କୁ ଖାଲି ମୁଣ୍ଡ ନୁଆଁଇ ଓଳଗି ହେଉଥାଏ ସେ ଥରକୁ ଥର ଆଉ ବୋବାଳି ଛାଡ଼ୁଥାଏ, ଗୋଟାଏ ହେଟାପର –

"ହୋ, ଭଗତ ସବୁ, ହେ ଧାର୍ମିକ ହେ, ଈଶ୍ୱରବିଶ୍ୱାସୀ ସବୁ – ପାପୀଟାଏ ମୁଁ !"

"ଏଃ, ଗୋଟାଏ ଷ୍ଟିମର ଏଇଟା – ଷ୍ଟିମର ! ପାଜି ବଦମାସ ସଇତାନ-ଗୁଡ଼ାକ !"—ମୋଟା ପାଟି କରୁଥାନ୍ତି—ହାତ ମୁଠାକରି ଗ୍ରୁଡକୁ ବାଡ଼େଇ ବାଡ଼େଇ—ଦେହରେ ପ୍ୟାଣ୍ଟ ଛଡା କିଛି ନ ଥାଏ ଆଉ ।

ଜାହାଜର ସହାୟକ କର୍ମଚାରୀମାନେ, ନାଉରି ମାଝି ସବୁ ଦଉଡ଼ୁଥାନ୍ତି ଏଣେ ତେଣେ—କାହାକୁ ଧରି ପକାଉଥାନ୍ତି, ବେକମୁଣ୍ଡାକୁ ଭିଡ଼ି ନେଉଥାନ୍ତି, ଅଟକାଉଥାନ୍ତି, କାହାକୁ ନେଡ଼ାଏ ଲେଖା ମାରୁଥାନ୍ତି ମୁଣ୍ଡରେ—କାହାକୁ କଷି ଦେଉଥାନ୍ତି ବିଧାଏ, ଦ'ବିଧା ଠେଲି ଦେଉଥାନ୍ତି ଗୋଟାଏ କରକୁ ସମସ୍ତଙ୍କୁ ! ଦମ୍ ଦମ୍ ହୋଇ ଲମ୍ବା ଲମ୍ବା ପାଦ ପକାଇ ମାଡ଼ି ଆସିଲା ସ୍ମିଥ—ରାତ-ଶୋଇବା ବେଳେ ପାଇଜାମା ଦେହରେ, କାନ୍ଧରେ ପଡ଼ିଥାଏ କୋଟ୍‌ଟା !

"ଲାଜ ଥାଆନ୍ତା ଭଲା ଟିକିଏ ? ହଇରେ, ଲାଜ ନାହିଁ ତ ମୁହଁରେ—!" ଜାହାଜକୁ କମ୍ପେଇ ଦେଇ ଗୁରୁ ଗମ୍ଭୀର ଗର୍ଜନରେ ସମସ୍ତଙ୍କୁ ସମଝେଇ କହୁଥାଏ—

ଅନୁରୋଧ କରୁଥାଏ ସ୍ୱର । "ମୁଣ୍ଡ ଫୁଣ୍ଡ ସବୁ ବିଲକୁଲ ବିଗିଡ଼ି ଗଲାଣି କରେ ଡମର—ପାଗଳ ହୋଇଗଲାଣି ! ଜାହାଜଟା ପୁରାପୁରି ନିଖୁଣ ଏକଦମ ଟାଣ ବୁଡ଼ିଯାଉଚ କୋଉଠି ? ଦେଖୁଚ ?—ତାକେ ବାଟ ହେବ ନାହିଁ—ବୋଲୁଥିଟାଏ ଫିଙ୍ଗିଲେ ପଡ଼ିବ ଯାଇଁ ସେଇଠି । ହେଇ, ସେଠି କୂଳଟା ! ଅନା, ଯୋଉ ନିର୍ଘୁମ ବୋକାଗୁଡ଼ାକ ଡେଇଁ ପଡ଼ୁଥିଲେ ପାଣିକି, କେମିତି ଛଣା ହେଉଚନ୍ତି ସବୁ ?— 'କୁଟା ଗୋଞ୍ଜଳ, ସବୁ ଜାଲରେ ଧରୁଛନ୍ତି ସେମାନଙ୍କୁ—ହେଇ ସେଠି ଦଶୁଚ—ଦ, ନାହା ଭଳି ହୋଇ ।'"

ବାଧା ଉପରେ ବାଧା ଏମିତି ଜୋରରେ ବସାଇବାକୁ ଲାଗିଲା ତୃତୀୟ ଶ୍ରେଣୀ ଯାତ୍ରୀଙ୍କ ଉପରେ । ସେମାନେ ବସ୍ତାପତ୍ର ସବୁ ଜାକିଜୁକି ହୋଇ ପଡ଼ିରହିଲେ, ଘଡ଼ିରହିଲେ ଡେକ୍‌ରେ କାକୁସ୍ଥ ହୋଇ ଏଠି, ସେଠି !

ଉତ୍ତେଜନାଟା ଶାନ୍ତ ପଡ଼ି ନଥାଏ, ଚମତ୍କାର ସୁନ୍ଦରୀ ମହିଳାଟିଏ, ବୋଟ୍ ଦେହରେ, ଗୋଟାଏ 'ଟେବୁଲ ଥିନ' ମାଡବା ମଜଲପରେ ଦେଖେଇ ବୁଲେଇ ବୁଲେଇ ସ୍ୱରକୁ ଲକ୍ଷ୍ୟ କରି ଧାଇଁଲା ତା' ପାଖକୁ ପାଟିକରି ଚିଠୁଥାଏ ।

"ଏତ୍ତେ ସାହାସ ତୋର, ହଇରେ ଏଡ଼େ ସାହାସ !" ଖାଲି ଗମ୍‌ଗମ୍ ବୋହି ପଡ଼ୁଯାଉଥାଏ—ଭଦ୍ରଲୋକଟି ବଗୁଡ଼ି ରୋକିଦେଲେ, ଧରି ରଖିଲେ ତାକୁ—ମହିଳାଟିକୁ ।

"ଗ୍ଲାସ୍ ଦେ, ସେଇଟାକୁ ଗ୍ଲାସ୍ ଦେ ମୁଣ୍ଡରେ ଗୋବର ଅଛି ତା'ର ବୋକାଟା !" ନିଶହଲକୁ ଘୁଟି ଶୋଷି ନେଇ କହିଲା—ଚାଉଁଚାଉଁ ହେଉଥାଏ ସେ ଭଦ୍ରଲୋକଟା !

ସ୍ୱର କାନ୍ଧ ଦ'ଟିକୁ ଟେକ କୁଞ୍ଚ କୁଞ୍ଚେଇ ଦେଇ ଟିକଏ ଜାଳବଳ କରି ଘୁଞ୍ଚି ରହିଲା ବଷ୍ଟ୍ରରେ ପଡ଼ି, କାରଣଟା କିଛି ବୁଝି, ନ ପାରି ତା'ପରେ ମୋ ଆଡ଼କୁ ଚାହିଁ ପଡ଼ିଲା ।

"କଣ ଲାଗୁଚିରେ ତତେ ଏ କେମିତି ?" କହିଲା ସେ ।

"ସେ ମାଇପିଟା କଣ କରିବ ବୋଲି ଭାବେ ଯେ ମତେ ସତେ ! କଣ କରି ପକେଇବ ମୋର ! କାହିଁ କେବେ ତ ନୋହୁଁଠି ଦେଖିନି ତାକୁ ଜୀବନରେ ।"

ଗେଡ଼ା ମ୍ୟାକ୍‌କଟି ନାକରୁ ରକ୍ତ ବାହାରୁଥାଏ, ଯୁମ୍ମିକରି ଶୋଷି ନେଇ ଭିତରକୁ ନିଶ୍ୱାସରେ—ପାଟିକଲା,

"କି ଲୋକଗୁଡ଼ାଏ, କି ଖଣ୍ଡରେ, କି ଡ଼କାଏତରେ !"

ସେଇ ଗ୍ରୀଷ୍ମକାଳରେ ଏଇଭଳି 'ଆତଙ୍କ' ଦେଖିବାକୁ ପାଇଥିଲି ଷ୍ଟିମ୍ ବୋଟ୍‌ରେ ! ଯ ଥର ! ଆଉ କେଉଁଟି ବି ପ୍ରକୃତ ବିପଦ ହେତୁ ଉପୁଜି ନ ଥିଲା ଉପୁଜିଥିଲା ବିପଦର ଆଶଙ୍କାରୁ, ଭୟରୁ ! ତୃତୀୟ ଥର ଯାତ୍ରୀମାନେ ଧରିପକେଇ-

ଥିଲେ ଯୋଡ଼ିଏ ଗୋରାଙ୍କ—ସେଥିରୁ ଜଣେ ଥାଏ ଛଦ୍ମଧର୍ମଯାଜୀ ବେଶରେ ! ସେମାନେ ଦୁହିଙ୍କୁ ନେଇଗଲେ ଷ୍ଟିମରର କର୍ମଚାରୀ ମାଝି ପ୍ରଭୃତିଙ୍କ ଆଖିଆଢ଼ୁ-ଆଳକୁ, ଘଣ୍ଟାଏ କାଳ ପିଟିଲେ ତାଙ୍କୁ ଲଗାଲଗା କରି—ଶେଷରେ ଷ୍ଟିମରର କର୍ମଚାରୀମାନେ ଦୁଇଟିକୁ ଉଦ୍ଧାର କଲାବେଳେ ଲୋକେ କୁଦି ପଡ଼ିଲେ, ଆକ୍ରମଣ କଲେ ସେମାନଙ୍କୁ, ସେହି କର୍ମଚାରୀଙ୍କୁ !

"ଗୋରାଯାକ ଗୋରାଙ୍କୁ ଲୁଚେଇବେନି, ଲୁଚେଇବେ କାହାକୁ- ଜାଣୁ ହେ, ଆମେ ଜାଣୁ ତମକୁ ସବୁ ଭଲକରି ଜାଣୁ !" ପାଟି କରି ଶୋଧିଲାଗିଲେ ସେମାନେ ।

"ନକେ ଖଣ୍ଡ, ତସ୍କରଗୁଡ଼ାକ, ସେଇଥିପାଇଁ ସେ ଦୁଇଟାଙ୍କୁ ରକ୍ଷା କରିବାକୁ ଚାହୁଁଛ, ନାହିଁ ?"

ପ୍ରହାରରେ ମୂର୍ଚ୍ଛିତ ହୋଇ ପଡ଼ିଥାନ୍ତି ଗୋରା ଦୁଇଟି—ଆଉ ଘାଟରେ ପୋଲିସ ହାତକୁ ସେମାନଙ୍କୁ ଦିଆଗଲା ବେଳେ ବି ଛୁଟା ହେବାର ବଳ ନଥାଏ ସେମାନଙ୍କର ।

ଏଇଭଳି କେଜାଣି କେତେ ଘଟଣା ଘଟିଥିବ—ଏତେ ନିଦାରୁଣ, ଦୁଃଖମୟ, ବେଦନାଦାୟକ ସତେ ! ଆଶ୍ଚର୍ଯ୍ୟ ଲାଗୁଥାଏ ମତେ ଲୋକେ ସ୍ୱାଭାବିକ ଭାବରେ ଭଲନା ମନ୍ଦ, ନମ୍ର ନା ହିଂସ୍ର—କେଉଁଟି ସହଜାତ ଗୁଣ ଏମାନଙ୍କର ? କାହିଁକି ଏଭଳି ନିଷ୍ଠୁର, ନିର୍ମମ ଏଭଳି, ପୈଶାଚିକ ଭାବରେ ହିଂସ୍ର, ଅସତ, ଦୁର୍ବୃତ୍ତ ଅମତ ସବୁ—କାହିଁକି ପୁଣି ଏମିତି ନିର୍ଲଜ, ଏମିତି ହୀନକାଙ୍କର ପ୍ରକୃତିର—ଆଜ୍ଞାବହ 'ଗୋଲମ' ବି ?

ଏ ସମ୍ପର୍କରେ ରେଷ୍ଟପ୍ରାଣ୍ଟିକୁ ପଚାରିଲେ ସିଗାରେଟ ଧୂଆଁର କୁଣ୍ଡଳୀ ଭିତରେ ବୋଡ଼େଇ ନେଉଥାଏ ମୁହଁଟିକୁ ନାଗର—ଟିକିଏ କହୁଥାଏ ବିରକ୍ତିରେ—

"ଏଥିରେ ଚୋର ସାଏ ଆସେ କଣ ରେ ? ଲୋକେ ଗୋଟାଏ କିଏ ଚତୁର ତ ଆଉ ଗୋଟାଏ କିଏ ବୋକା ! ବହି ପଢ଼ା । ଏଥିରେ ମଥା ଘୂରାଇ ଲାଭ କଣ ? ବନ୍ଦକର ଏ ମୁଣ୍ଡଘୂରା—ବହିରୁ, ସବୁ ଉତ୍ତର ପାଇବୁ ବହିରୁ- ସେଗୁଡ଼ାକ ସତ୍ୟ ଅବଶ୍ୟ ଠିକ୍ ହୋଇଥାଏ ।"

ଧର୍ମ କର୍ମ ବହିପତ୍ରରୁ ସେ ଅନଭିଜ୍ଞ ନଥାଏ ଆଦୌ, ତାର ଦରକାର ନଥାଏ ସେଗୁଡ଼ାକ—କି ସାଧୁସନ୍ଥଙ୍କ ଜୀବନ ।

"ସେଗୁଡ଼ା ପାଦ୍ରୀଙ୍କ ପାଇଁ—ନଇଲେ ବା ତାଙ୍କ ପୁଅଙ୍କ ପାଇଁ" । ମନ୍ତବ୍ୟ ଦେଉଥାଏ ସହଜରେ ।

ମନ ହେଉଥାଏ, ତା' ପାଇଁ କିଛି ଗୋଟାଏ କରି 'ଭଲକାମ କରିବି'—ପସନ୍ଦିଆ କି ସୁନ୍ଦରିଆ କିଛି ଦେବି—ଭାବି ଭାବି ସ୍ଥିର କଲି, ବହି ଖଣ୍ଡେ ଉପହାର ଦେଲେ ମନ୍ଦ ହେବ ନାହିଁ । ବାଜାର୍‌ରେ 'ଘାଟ-ମଞ୍ଚ ଉପର ଦୋକାନରେ ପାଞ୍ଚ ପଇସାରେ କିଣିଲି ଖଣ୍ଡେ ବହି—ମହାନ୍ ପିଟର, ଗୋଟିଏ ସୈନିକ କେମିତି ଉଦ୍ଧାର ପାଇଥିଲେ, କମ୍ୟୁତନ୍ତ୍ରୀମୂଳକ କାହାଣୀ, କିନ୍ତୁ ସେତେବେଳେ

ସେକ୍ସପିୟରଙ୍କର 'ସୋର' ନଥାଏ, ମଦ ପିଇ ପିଇ ପୂରାପୂରି ମାତାଲ ଆଉ କେମିତି ଅତି ଭୟଙ୍କର ହୋଇ ଉଠିଥାଏ—ତେଣୁ ଠିକ୍ କଲି ବହିଟିକୁ ତାକୁ ଦେବା ଆଗରୁ ପଢ଼ିଦେବି । ପ୍ରବଳ ଭାବରେ ଭଲ ଲାଗିଲା ବହିଟା । ଏତେ ସରଳ, ସ୍ପଷ୍ଟ, ସଂକ୍ଷିପ୍ତ ଆଉ ମନୋଜ୍ଞ ଥିଲା ପ୍ରତ୍ୟେକଟି କଥା ସେଥିରେ । ନିଶ୍ଚିନ୍ତ ହୋଇଗଲି—ବହିଟା ତାକୁ ବେଶ୍ ଆମୋଦ ଦେବ । ତା' ପାଇଁ ପ୍ରୀତିକର ହେବ ।

କିନ୍ତୁ ଯେତେବେଳେ ତା'ହାତକୁ ବଢ଼େଇ ଦେଲି ବହିଟା—ସେ ପଢ଼େ ହେଲେ କିଛି ନକହି ଅଗ ସେଇଟିକୁ ମୋଡ଼ି ମାଡ଼ି ମକଚି ପିଣ୍ଡୁଳାଟିଏ ଫିଙ୍ଗି-ଦେଲା ପାଣିକୁ ।

"ହେଇ, ସେଠି ରହିଲା ତୋ ବହି, ବୋକା, ନିର୍ଧୂମ ବୋକାଟା ।" ଗାଁଏ ଗାଁଏ ହେଲା ସେ—ସ୍ୱର । "ଏଠି ମୁଁ ଦିନରାତି ସବୁବେଳେ ତତେ ତାଲିମ କରି ଲାଗିଛି ଶୀକାରି କୁକୁରଟାଏ ଯେମିତି—ତଥାପି ତୁ ଚତେଇକିଅଖୋଇ ଘୁଞ୍ଚିଲୁ !

ପାଦଟାକୁ ତଳେ ବାଡେଇ ଦେଇ ଚିତ୍କାର କରି ଉଠିଲା ମୋ ଉପରେ— "ଏଃ—ବହିଟାଏ ? କି ବହିଟାଏ ? ମୋତେ ବହିଟାଏ ବଢ଼ଉଛୁ ତୁ ? ଏସବୁ ବାଜେ କଥା ଲେଖିଛି, ପଢ଼ିଛି ମୁଁ । ଭାବିଚୁ କଣ ସତ ଲେଖା ହୋଇଚି ସେଥିରେ ? ହୁଁ-କର-କଣ, ଭାବିଚୁ—କହ ଏବେ ।"

"ମୁଁ କଣ ଜାଣେ ?"

'ବେଶ୍, ଜାଣେ, ମୁଁ ଜାଣେ କିନ୍ତୁ ! ସେମାନେ ଯେତେବେଳେ ଦ' ଗଡ଼କରି କାଟି ଦେବେ, ପ୍ରଥମ ଲୋକଟାର ମୁଣ୍ଡକୁ—ସେ ତ ଖସି ପଡ଼ିଥିବ ନିଶ୍ଚୟ ନଖୁଲାଟାରୁ—ଅନ୍ୟମାନେ କେବେହେଲେ ଚଢ଼ି ନ ଥିବେ ପାଲଗଦା ଉପରେ । ସୈନ୍ୟଗୁଡ଼ାକ ବୋକା ନୁହନ୍ତି—ତାଙ୍କର ବୁଦ୍ଧିବୃତ୍ତି ଅଛି, ସେମାନେ ପାଳ ଗଦାରେ ତ ନିଆଁ ଲଗାଇ ଦେଇଥାନ୍ତେ, କରେ କଥା ମରିଥାନ୍ତା ! କଣ ଶୁଣୁଛୁଟିକି ?"

"ହଁ"

"ଦେଖ୍ ତେବେ, ବୁଝ ଏଥର ! ସେ କାଠ ପିଟରଟା ବିଷୟ ମତେ ମାଲୁମ୍ । ଏମିତି କେବେ କିଛି ଘଟି ନ ଥିଲା ତାର ! ଯା-ପଳା-ଯା-ହାକ !"

ବୁଝିଲି ଠିକ୍, ହୃଦବୋଧ ହେଲା କଥାଟାରେ—ସୋଫେଷ୍ଟା ଯା କହିଲା ଠିକ୍—ତଥାପି ମନ ଖୁଣ୍ଡୁ ନଥାଏ ବହିଟିରୁ—ଆଉ ଖଣ୍ଡେ କିଣିଲି, ମୋର 'କମ୍ପଦନ୍ତୀ' ପଢ଼ିଲି ଦ୍ୱିତୀୟଥର ପାଇଁ—କିନ୍ତୁ ଆବିଷ୍କାର କଲି—ଆଶ୍ଚର୍ଯ୍ୟ ହୋଇ-ଗଲି, ପ୍ରକୃତରେ ବହିଟା ଥିଲା ନିତାନ୍ତ ବାଜେ, କୌଣସି କାମକୁ ନୁହେଁ । ଏଥିରେ ଭାରି ଲଜ୍ଜିତ ହୋଇଗଲି—ଆହୁରି ଅଧିକ ସମ୍ମାନ ଶ୍ରଦ୍ଧା ଓ ଆସ୍ଥାର ଚକ୍ଷୁରେ ଦେଖିଲି ସୋଫେସ୍କାଟିକୁ—କାହିଁକି କେଜାଣି ସେ ଜାଣିଥିବ— ସେ ଖାଲି ସଦାବେଳେ କହିହେଲା—

"ଏଃ, ତୋର ପଡ଼ାପଢ଼ି କରିବା ଉଚିତ । ଏଜାଗାଟା ତୋ' ପାଇଁ ନୁହେଁ—"

ମୁଁ ବି ଅନୁଭବ କଲି ସେଇଟା ମୋ ପାଇଁ ଉପଯୁକ୍ତ ଜାଗା ନଥାଏ—ସର୍ବୋଚ୍ଚ ଅତି କଦର୍ଯ୍ୟ ଭାବରେ ବ୍ୟବହାର କରୁଥାଏ ମୋ ସାଙ୍ଗରେ—ଷ୍ଟିଓ୍ୱାର୍ଡ ବା ବେବର୍ତ୍ତୀର ଯେତେବେଳେ ଦୃଷ୍ଟି ନଥାଏ, ସେତେବେଳେ ସେ ମୋ ଟେବୁଲ ଉପରୁ ଖାଦ୍ୟ ସରଞ୍ଜାମ ନେଇଯାଇ ବିକ୍ରି କରୁଥାଏ ଯାତ୍ରୀମାନଙ୍କୁ ! ଅନେକଥର ମୋ ହାତୁଡ଼ରେ ପଡ଼ିଲି, ଧରିଲି ତାକୁ । ଜାଣିଥାଏ ମୁଁ, ତାର ଏହିଭଳି କାମକୁ ବୁଝାଯାଏ ଖ୍ୱେଶ !

"ସାବଧାନ ! ଦେଖ, ପରଷୁଣିଆଙ୍କୁ ସବୁ ତୋ' ଟେବୁଲ ଉପରୁ କଣ୍ଟା ଛୁରୀ ଆଦି ନେବାକୁ ଦେବୁ ନାହିଁଟି ।" ପୁଣି ମଧ୍ୟ ଏକାଧିକ ଥର ସତର୍କ କରି ଦେଇଥାଏ ମତେ ।

ଏମିତି ଆହୁରି କେତେ କଥା ଥାଏ, କେତେ ଘଟଣା ଘଟିଲା ବି, ଯାହା ମୋ ପାଇଁ ବହୁ ଆଣିଲା ଅଶୁଭର ସଙ୍କେତ, ଝଗ୍ରେପଣକୁନ—ପ୍ରାୟ ସବୁବେଳେ ଅଥୟ ହେଉଥାଏ ମନଟା, ଯାଉଛି ଗ୍ରୁଡ ଗ୍ରୁଲିଯିବ ଜାହାଜଟାକୁ, ଏଇ ଆର ଘାଟରେ, ପଳେଇବ, ଦୌଡ଼ି ପଳେଇବ ଜଙ୍ଗଲକୁ । ସେଥିରୁ କିନ୍ତୁ ମତେ ନିବର୍ତ୍ତାଇ ଦେଉଥାଏ ପୁଣି—ଦିନକୁ ଦିନ କେମିତି ଅଧିକରୁ ଅଧିକ ସ୍ନେହ ପ୍ରବଣ ହୋଇ ଉଠୁଥାଏ, ଆସକ୍ତ ହେଉଥାଏ ମୋ ପ୍ରତି - ଆଉ ବାନ୍ଧି ରଖୁଥାଏ ଜାହାଜ ପ୍ରତି ମୋହଟା ମୋର—ଜାହାଜର ଅବିରାମ ଗତିଟା ଏତେ ଚମତ୍କୃତ ମୁଗ୍ଧ କରିଥାଏ ମତେ ! ଘାଟ-ମଞ୍ଚଗୁଡ଼ିକ ପାଖରେ ଜାହାଜ ଭିଡ଼ା ହେଉଥାଏ ଯେତେବେଳେ, ଅସ୍ଥିର ହେଉଥାଏ ମୁଁ, ଭଲ ଲାଗୁ ନଥାଏ ଆଦୌ ! ମୁଁ ଖାଲି ଅନେଇ ରହିଥାଏ, ଭାବୁଥାଏ କେମିତି କଣ କିଛି ଘଟନ୍ତା କି ! ଯାହା ଯୋଗେ ବୁଲନ୍ତି ଅଗେ କାମ ନଦୀରୁ ଦୂରକୁ ବେଷଦ୍ୱାକୁ—ଆହୁରି ଦୂରକୁ ଭ୍ୟାତ୍କା ବା ଭଲ୍‌ଗା ଭିତରକୁ—ସେଠିକୁ ପହଁଚି ଯାଇ ଦେଖନ୍ତି ମୁଁ ନୂଆ ନୂଆ ତଟଦେଶ-ଗୁଡ଼ିକ, ନୂଆ ନୂଆ ସହର—ଜନବସତି ଆଉ ଲୋକ !

କିନ୍ତୁ କାହିଁ କିଛି ଘଟୁ ନଥାଏ କୋଉଠି । ତେବେ ମୋ ଜାହାଜୀ-ଜୀବନଟୀର ସମାପ୍ତି ଘଟିଲା ଅତି ଅପ୍ରୀତିକର ଭାବରେ—ଧାଉଁକିନା, ଆଉ ଲଜ୍ଜାଜନକ ଭାବରେ ବି । ଦିନେ ସନ୍ଧ୍ୟା ବୁଡ଼ି ଆସୁଥାଏ, ଆମେ ଆଗେଇ ଯାଉ ଯାଉ କାଜାନକୁ ନିଝୁମ ନୁହଁ। ହୋଇ—ବେବର୍ତ୍ତୀ ଡାକି ପଠେଇଲା ମତେ ! ମୁଁ ଯାଇ ସାମନାରେ ତାର ହାଜର ହେଲି ମାତ୍ରେ ସେ ବନ୍ଦ କରିଦେଲା ତା'ଘରର ଦ୍ୱାରଟା । ପୁଣି ସେଠି ବସିଥାଏ ଗାଲିଙ୍ଗ୍ ବସ୍ତ୍ର ଟୁଲଟିରେ ଗମ୍ଭୀର ହୋଇ । ବିଷାଦରେ ଭାଙ୍ଗିପଡ଼ି ଯେମିତି ! କହିଲା ମତେ ବେବର୍ତ୍ତୀ ।

"ହେଇ, ସେ !"

"ତୁ ସର୍ଗେଇକୁ ଗୃମୁଚ୍ ଫାମୁଛ, କି ସେମିତ କହୁ ଦେଉ ?" ରୁକ୍ଷ ଭାବରେ ପଗ୍ଡରିଲ ସଙ୍ଗେ ସଙ୍ଗେ ।

"ଯେତେବେଳେ ମୋ ଆଖି ନଥାଏ—ଅନାଇଥାଏ କୁଆଡ଼କୁ, ସେ ନେଇଯାଏ ସେସବୁ !"

"ତୁ ତାକୁ ଦେଖୁନାହୁଁ, ଜାଣ୍ଣ ସବୁ ! ନାହିଁ ?" ଧୀର ଭାବରେ କହିଲ ଦେବତ୍ରୀ ।

ନଜର ଆଣ୍ଠୁ ଉପରେ ବଧାଟାଏ ପକାଇ କୃଷ୍ଣେଇ ହେଲ ସ୍ୱର ।

"ଉଃ,ଟିକେ ! ଏମିତ ତରବଗଆ କହୁ ନୁହେଁ ।" କହିଲ ସେ—ଭାବ ହେଲ କଣ !

ଅନେଇଥାଏ ମୁଁ ଦେବତ୍ରୀକୁ, ସେ ବ ଅନେଇଥାଏ ମତେ—କନ୍ତୁ ତା ଜାଣୁଥାଏ ମୁଁ, ଅନୁଭବ କରୁଥାଏ—ଚଷମାକାଚର ଆଉପଟରେ ଅଖି ଫାଙ୍କି କହୁ ନଥାଏ ମୋଟରୁ !

ଚପ୍ଗୁପ ଚଲ ପ୍ରତେଲ ହେଉଥାଏ ରେ ! ଧୀରସ୍ଥିର ଜୀବନଟି ତାର—ଯା' ଆସ କଲବେଳେ ଶବ୍ଦଟିଏ ହେଉ ନ ଥାଏ—କହିଲ ବେଳେ କହୁଥାଏ ଥର ଥର ନୁଆଁଣିଆ ସ୍ୱରରେ—ତାର ସେହି ନରଙ୍ଗୀ ଦାଢ଼ି ଆଉ ଖାଲ ଖାଲ, ଫାଙ୍କା ଆଖି ହଲକ ବେଲେବେଳେ କୋଉଠି କୋଉ କଣରେ ଚକ୍ ଚକ୍ କଣ ଉଠେ । ସଙ୍ଗେ ସଙ୍ଗେ ଉଭେଇଯିବା ପାଇଁ, କୁଆଡ଼େ । ଶୋଇ-ବାକୁ ଯିବା ପୂର୍ବରୁ ଦଅଁ ଦେବତାଙ୍କ ପଟ ମୂର୍ତ୍ତି ଆଗରେ ଆଣ୍ଠୁମାଡ଼ି ବସି ରହେ ଅନେକ ସମୟ ଅଖଣ୍ଡ ଦୀପ ଜଳୁଥାଏ ସେଠି—ମୂର୍ତ୍ତି ପାଖରେ । କବାଟର ଫାଙ୍କ ଆକୃତର ଜଲକବାଟିରେ ବହୁତ ବହୁତ ବେଲଯାଏ ଏକ ଲୟରେ ଅନେଇ ଦେଖିଛୁ—ଗୃହିଁ ରହିଛୁ ତାକୁ ! କନ୍ତୁ କେବେ ସେ ଉପାସନା ବା ପ୍ରାର୍ଥନା କରିଥିବା ଧର ଜାଣି ପାର ନାହିଁ—ଦେଖି ପାରନାହିଁ—ସେ ଖାଲ ଆଣ୍ଠୁମାଡ଼ି ବସେ, ଏକ ଆଖିରେ ଅନେଇ ରହେ ପଟମୂର୍ତ୍ତି ଆଉଦୀପଟାକୁ" ଦାଢ଼ିକୁ ଆଉଁସି ଆଉଁସି ଦୀର୍ଘ ନିଃଶ୍ୱାସଟିମାନ ପକାଉଥାଏ ଯାହା !

"ସର୍ଗେଇ ତତେ କିଛୁ ପଇସାପଇ ଦେଇଛୁ ?" ଟିକିଏନାକୁ ରହି ପଚ୍ଚରିଲ ହୁର ।

"ନା"

"କେବେ ନୁହେଁ ?"

"ନା, କେବେହେଲେ ନୁହେଁ ।"

"ସେ ମିଛ କହୁବ ନାଇଁ—" ଦେବତ୍ରୀକୁ କହିଲ ହୁର, କନ୍ତୁ ଦେବତ୍ରୀ ଉତ୍ତର ଦେଲ ଧୀରେ, କୋମଳ ଭାବରେ—

"ଯାଏ ଆସେ କଣ ? କଥାଟା ତ କହୁ ଫରକ୍ ହୋଇଯାଉନ ସେଥିରେ । ହୁଁ, ବୁଝିଲ, ବୁଝୁଚ ନା !"

"ଆ ଆ, ଚାଲ !" ମୋ ଟେବୁଲ ପାଖକୁ ଚାଲିଆସି ମୁଣ୍ଡଟି ମୋର ଟୁକେଇ ଭରସା ଦେଇ ପାଟିକରି କହିଲା ରୋପେସ୍କା ! "ବୋକାଟାଏ ! ବୋକାଟାଏ ତୁ ! ଅଥଚ ମୁଁ, ମୁଁ ବି ବୋକାଟାଏ ନହୋଇ । ମୋର ଉଚିତ ଥିଲା, ଆଖି ରଖିବା ତୋ ଉପରେ ।"

ଲାଇନଟି ବେକଟିଆ ତ୍ରିପାବପତ୍ର ଘୁଷେଇ ଦେଲା ମୋ ହାତରେ । ପାଇଲି ମୁଁ ଆଠ ରୁବ୍‌ଲ ଖଣ୍ଡେ—ଜୀବନରେ ଯେପର୍ଯ୍ୟନ୍ତ ଯେତେ ରୋଜଗାର କରିଥିଲି, ତା' ଭିତରେ ହାତକୁ ଲାଗିଲାଭଳି, ଆଖିକି ଦିଶିଲାଭଳି ପଇସାପତ୍ର କିଛି ।

ମୋଠୁ ବିଦାୟ ନେଲାବେଳେ, ଦୁଃଖରେ ବିଷାଦରେ ଭାଙ୍ଗି ପଡ଼ୁଥାଏ ସ୍ବର,—କହିଲା ।

"ହୁଁ ! ଭବିଷ୍ୟତରେ ଆଖି-କାନ ମେଲାରଖି—ବାଟ ଚାଲିବୁ, ଶୁଣୁଛୁତ ? ଦେଖ୍ । ପ୍ରଜାପତି ଧରିବାକୁ ଯିବା ଠିକ୍ ନୁହେଁ ତୋର ।

ମୋ ହାତରେ ଥରକାନ ଗୁଞ୍ଜିଦେଲା ସେ ଝକ୍ ଝକ୍ କାଚମାଳରେ ଛଆଣ ସିଗାରେଟ୍ ତମାଖୁ ରଖା ବଟୁଆଟିଏ ।

"ହେଇ ନେ ଧର ! ବଢ଼ିଆ କମକୃଷ୍ଟ କାମ ହୋଇଛି—ବଢ଼ିଆ—ମୋ ଧର୍ମପୁଅ କରିଥିଲା ମୋ ପାଇଁ ! ହୁଁ, ଏ ଯା ବିଦାୟ ! ଦେଖ୍ ପଢ଼ୁଥିବୁ, ବହି ପଢ଼ୁଥିବୁ—ପଢ଼ିବୁ ଯେମିତି, ସେଇଟି ହେଉଚି ସବୁଠୁ ବଳି ଭଲକାମ—ତା କରିବା କଥା ତୋର, ତୋ ପାଇଁ ଭଲକାମ ?"

ଜାଖେଇ କୁଣ୍ଡେଇ ପକେଇଲା ମତେ, ଗେଲ କରିବା ପାଇଁ ଟେକିଦେଲା ଶୂନ୍ୟକୁ—ତା'ପରେ ଶକ୍ତକରି, ଦୃଢ଼କରି ଛିଡ଼ା କରେଇଦେଲା ଘାଟମଞ୍ଚ ଉପରେ-ମନଟା ବିକଳ ହେଉଥାଏ ତା' ପାଇଁ—ମୋ ପାଇଁ ବି ! ପ୍ରକୃତରେ ମ-ସମ୍ଭାଳ ପାରିଲି ନ କାନ୍ଦ ଅଟକେଇ ପାରିଲି ନ—ଧାର ଧାର ଲୁହକୁ ଆଖିରେ ମୋର, ଅନେଇ ରହିଥାଏ ସେଇ ପ୍ରକାଣ୍ଡ, କାଠଗର ଭଳି ଖସ ଓଜନିଆ ଅଡ଼ୁଆ ଅଖାଡ଼ୁଆ ଅଥଚ କି ଏକେଟିଆ କି ନିଃରଙ୍ଗ ଲୋକଟିକୁ ! ଖଲାସୀମାନଙ୍କ ଭିତରେ ପଶି ଠେଲାପେଲା ସେମାନଙ୍କ ବାଟ କରେ ଏକମୁହାଁ । ହୋଇ ଫେରି ଯାଉଥାଏ, ଜାହାଜଟାକୁ ।

"ଏମିତି, ଠିକ୍ ଏମିତି, ସ୍ବାଗଭଳି କେତେ, କେତେ ଲୋକ ସତେ ! ଏମିତି ଉଦାର, ସ୍ନେହମୟ ଦସ୍ତାକୁ ଏମିତି ନିଃରଂଗ ଏକୁଟିଆ—ଜୀବନରୁ ବଞ୍ଚିତ, କେଜାଣି କେତେ ଲୋକଙ୍କ ବା ଭେଟି ନ ଥିବ ଜୀବନରେ !"

# ସପ୍ତମ

ଅଜା ଆଇମା ପୁଣି ଯାଇ ଏଥିଭିତରେ ଛତା ପକେଇଥାନ୍ତି ସହରରେ—ଘୃ ଘୃଷିମାଷି ଫେରଗଲି ସେମାନଙ୍କ ପାଖକୁ, ଏକାବେଳକେ 'ଯୁଦ୍ଧଂ ଦେହି' ମଠଗଡରେ—ଦୁଃଖରେ କ୍ଷୋଭରେ ଫାଟି ପଡୁଥାଏ ହୃଦପିଣ୍ଡ ? କାହିଁକି, କାହିଁକି ସେମାନେ ଗ୍ଟେର ବୋଲି ଦାଗୀ କଲେ ମତେ ?

କାହିଁକି ?

ଆଇମା ଦେଖି ଦେଲା କ୍ଷଣି ଧାଇଁ ଆସିଲା, ପୋଟ୍ଗ୍ରେଟି ନେଲା—କୁଣ୍ଢେଇପକେଇଲା ସ୍ନେହରେ । ଆଦରରେ ଗେଲ କଲ କଲକା ! ଦଉଡ଼ିଯାଇ ଆଗ ଲଗେଇ ବସିଲା ଉଠାଚୁଲୀଟା । ଅଜା ଯେମିତ କହନ୍ତି—ଛିଗୁଲେଇ ଝୁଙ୍କସିକଣ ସେମିତ କହଲେ ସେ—

"ଏଃ, କେତେ ସୁନା ସଅିଛୁରେ । ଯାଇଥିଲୁରେ ।"

"ଯାହା, ବକେଇଚ ଯାହା ରଖିଚ ମୋର ସବୁ"—ଝିରକା କଡରେ ବସି ପଡ଼ୁ ପଡ଼ୁ ଉତ୍ତରଦେଲି ଅଜାଙ୍କୁ । ଗବରେ ଛାତ ଫୁଲେଇ, ପକେଟରୁ ବାହାରକଲି ସିଗାରେଟ୍ ପୁଡ଼ିଆଏ—ଲଗେଇଲି ଗୋଟାଏ ।

"ଓହୋ-ହୋ !" ମୋର ସବୁ ଗଡବଧିକୁ ଲକ୍ଷ୍ୟ କରି କଣ ମନ୍ତବ୍ୟ ଦେଲେ ଅଜା । "ଏଁ ! କଣ କହୁଚୁରେ ! ତୁ ତେବେ ଛୁଆ ଧରିଲୁଣି ନା—ଠିକ୍ ଠିକ୍—ଧରିଲୁଣି ନା ସଇତାନର ବଗୁଆ ଘାସପୁଳାକ – ନାଇଁ ? ବେଶୀ ଟିକଏ ସଅଳ ହୋଇଗଲା—କେମିତ ?"

"ହୁଁ । ପାଉ୍ଚ ବ ଅଛୁ !" ଆହୁରି ଦମ୍ଭରେ ଛାତ ଫୁଲେଇଦେଲି ମୁଁ ।

"ଏଁ, ପାଉ୍ଚୁ ।" ଚଇଁଚଇଁଆ ସ୍ୱରରେ ବୁଢ଼ା ଗୁଣ୍ଡିଚପର କହିଲେ ଅଜା – "କଣରେ ମତଲପଟା କଣ—କାଢ଼ ଦେଖଉଚୁ ମତେ—ଚଢ଼େଇବାକୁ ଚେଷ୍ଟା କରୁଚୁ-ମତେ !"

ଧାଇଁ ଆସିଲେ ମୋ ଆଉଡ଼କ—ସରୁ ସରୁ ଶକ୍ତ ହାତ ଯୋଡ଼ାକୁ ମେଲେଇ ଦେଇ ଆଗକୁ – ଧାଇଁ ଆସିଲେ ମୋ ପାଖକୁ ଶାଗୁଆ ଶାଗୁଆ ଆଖିହ'ଟା ଚମକୁ ଉଠୁଥାଏ ବଜୁଲି ଭଳି ! କ୍ରୁଦ୍ଧ-ଡେଇଁ ଛିଡ଼ାହୋଇ ପଡଲି ମୁଣ୍ଡିଆଟାଏ ମାରିଲି ତଳପେଟକୁ ତାଙ୍କର ! ବୁଢା ନଇଁଗଲେ—ଲୁଅିକନ ବସିପଡଲେ ତଲେ, ଚଟାଣ ଉପରେ,—କେତେଟା ଅତ ସାଘାତକ ସଙ୍କଟପୂର୍ଣ୍ଣ ଉତ୍ତେଜନାମୟ ମୁହୂର୍ତ୍ତ ବସି ରହିଲେ ତୋଳା ଖପେଇ ଆଖି ମିଟି ମିଟି କରି ଆଶ୍ଚର୍ଯ୍ୟରେ ଅନେଇ ରହିଲେ ମତେ ଆଁ କରି କାଳିଆ ପାଟିଟା ଝୁଲି ପଡ଼ିଲା ଆଗକୁ ।

"ମତେ, ମତେ ତେବେ ମାରି, ଧକାମାରି ଗଡ଼େଇ ଦେଲୁ ତୁ ନଲେ-ମତେ-ଅଜାକୁ ତୋର !" ଶେଷରେ କହିଲେ ସେ କଷ୍ଟରେ ବଡ଼ ।—ଭଙ୍ଗି ଭଙ୍ଗି ପଡୁଥିବା ଓଟଗ୍ ସ୍ୱରରେ— "ତୋ ମାଆର ବାପକୁ......?"

"ବହୁତ, ବହୁତ ମାଡ଼ ଖାଇଛ ମୁଁ ତମଠୁ"—ମମମ ହୋଇ କହିଦେଲି ମୁଁ—ସେତେବେଳକୁ ବୁଦ୍ଧି ସାରିଥାଏ, କରିଦେଲିଣି ଅତି ଜଘନ୍ୟ ଘୃଣ୍ୟ କାମ କରି ସାରିଲିଣି ।—

ହାଲୁକା ଦେହଟା, ପବନଭଳି ବେଗରେ ଉଠିପଡ଼ିଲେ ଅଜା—ବସିଲେ ଆସି ମୋ ପାଖରେ । ମୋ ହାତରୁ ସିଗାରେଟ୍‌ଟାକୁ ଟାଣି ନେଇ ଫିଙ୍ଗିଦେଲେ ବାହାରକୁ ଝରକା ବାଟେ ।

"ବୋକା ! ମୁଣ୍ଡରେ ଗୋବର, ନାଇଁ !—ଜାଣିଚୁ ନା-ଭଗବାନ୍ କେବେହେଲେ ଭୁଲିବେ ନ, କ୍ଷମା କରିବେ ନ ତତେ—ଏମିତିକିଆ କାମ ପାଇଁ ସେତେଦିନ ବଞ୍ଚିଥିବୁ ତୁ !" ଭୟାତୁରିଆ ସ୍ୱରରେ କହି ଉଠିଲେ ସେ । ତା'ପରେ ଆଈମା ଆଡ଼କୁ ମୁହଁ ବୁଲେଇଲେ - "ଦେଖ, ଭଲ ଦେଖ ମାଆ ! ଏ—ସେ ପୁଣି-ମାରିଲା ମତେ ! ସେ……ମାରିଲା—ମତେ, ମତେ !—ପଚାରି, ସତ କି ମିଛ ? ମାରିନ ?"

ମତେ ପଚାରିବା ପାଇଁ ମୁଣ୍ଡ ନ ଘୂରେଇ ଆଈମା ମାଡ଼ି ଆସିଲା ମୋ ଆଡ଼କୁ । ବାଳ କେରାଏ ଧରିପକାଇ ମୋର, ହଲେଇ ଦେଲା ଜୋରରେ –

'ହେଇ ପାଉ, ପାଉ, ସେ-ପାଉ ଏହା ପାଉ !—ପାଅ-ପାଆ-ଛତରା । ପାଆ—ହେଇଟି-ଏମିତି…" କହୁଥାଏ ଦୋହଲେଇ ଦୋହଲେଇ ମତେ ।

ମୋ ଦେହରେ କେଉଁଠି ଟିକିଏ ଆଞ୍ଚ ଆଣିଲାନାହିଁ—ଆଘାତ ଦେଲାନି କୋଉଠି—ମୋର ମନଟା ଆହତ ହେଲା, କ୍ଷତବିକ୍ଷତ ହୋଇଗଲା । ଗୁରୁତରଭାବରେ ବିଶେଷରେ ଅଜାଙ୍କର ବଦ୍ରୁପିଆ ଝିଙ୍ଗାସିଆ ହସରେ । ସେ ଚୌକି ଉପରୁ ତଳକୁ ତଳୁ ଉପରକୁ ଡେଇଁଲେ ଖାଲି ଜଂଘ ଜଂଘ ବାଡ଼େଇ, ଆଣ୍ଠୁ ବାଡ଼େଇ ବାଡ଼େଇ—ଆଉ ବେଙ୍ଗଭଳି ରଡ଼ି କରି କରି—

ରେଶ୍ମଭଳିଆ ମୋଡ଼ମାଡ଼ ହୋଇ ଆଈମା ମୁଠା ଭିତରୁ ମୁକୁଳିଗଲି, ଧଳେଇଲି ଦୁଆରମୁହଁ ବାଟଘରକୁ ନିଜକୁ ଫିଙ୍ଗି ଫୋପାଡ଼ି ଦେଲି ଯେମିତି ନେଇ ଗୋଟାଏ କଣରେ—ସେଇଠି ରହିଲି, ପଡ଼ିରହିଲି—ଏକାବେଳକେ ମାଟିରେ ମିଶିଯାଇ ଲଜ୍ଜାରେ, ଦୁଃଖରେ, ହତାଶାରେ—ଏତେ ଖରାପ ଅବସ୍ଥାରେ ସତେ-କାନ ପାରିଲି ଉଠାଚୁଲୀର ସେଏଁ—ସେଏଁକୁ ଖାଲି ।

ଆଈମା ଆସି ମୋ ଉପରେ ନଇଁ ପଡ଼ିଲା-ଶୁଣାଯିବ କି-ଯଦି-ନାହିଁ ସ୍ୱରରେ ଫୁସୁଫୁସୁକରି କହିଲା ଲଗି ମତେ—

"ଆରେ ରାଗିଲୁ କଣେ ମୋ ଉପରେ—କାଟିଲାଭଳି ମାରିଲି କରେ—କାଟିଲି ?—ଏମିତ ମ, ଦେଖେଇବା ପାଇଁ ମାରିଲି ମ ! କଣ ଆଉ କରିଥାନ୍ତି ଯେ—କହିଲୁ । ଯା'ହେଲେ-ଅଜା ତ ବୁଢ଼ା ହେଲେଣି । ବୁଢ଼ା ମାଇପିଟିଏ—ତାଙ୍କୁ କଣ ମାନିଥ ହେବା ତୋର ଉଚିତ ନୁହେଁ ! ତାଙ୍କର ତ ହାତଗୋଡ଼

ଚୂନା ହୋଇଯାଉଛିରେ—ଆଉ କଣ ଜ, ଅଛୁ ତାଙ୍କର—ମନ ପୋଡ଼ି ଯାଉଛୁ—ହୃଦପିଣ୍ଡା ଫାଟି ପଡୁଚି ଦୁଃଖରେ । ତାଙ୍କୁ କଷ୍ଟଦେବା, ଆଘାତଦେବା ଠିକ୍ ନୁହେଁ ତୋର ! ତୁ ତ ଆଉ କୁନି ପିଲଟିଏ ହୋଇନାହୁଁ, ବୁଝିପାରୁଛୁ—ବୁଝି ପାରିଲୁଣି ସବୁ ; ଏଣିକି ବୁଝିବା ଉଚିତ ବ ତୋର । ଆଲୋ ମା,—ସେତ ବଡ଼ ପିଲଟିଏ, ବୁଢ଼ା ଯିଏ ପିଲା ସିଏ – ଟିକିଏ ଜଣା ବେଶୀ ନୁହଁନ୍ତି ମ ସେଥିରୁ ।”

ଆଇମାର କଥାଗୁଡ଼ିକ ଆଶ୍ୱାସନା ଦେଇ ବୋହିଯାଉଥାଏ ମୋ ଉପରେ – ଜମ୍ଜମ୍ ପାଣିପରି ! ତାର ସେଇ ସ୍ନେହ ମମତାଗୋଳା କଥାର ଘୁର୍ ଘୁର୍ ଆବାଜଟିକ ପୋଛି ପୋଛି ନେଲା ମୋର ବ୍ୟଥାକୁ ସବୁ—ଅନୁଭବ କଲି, ଲାଜରୀ ମତେ କରିଦେଲା କେମିତି । କୁଣ୍ଢେଇ ପକେଇଲି ତାକୁ ଭିଡ଼ି ଧରିଲି ଅଣ୍ଟେ ଗେଲ ଦିଆ ଦେଇରେ ହଜିଗଲୁ ଯେମିତି ଆମ ଦର୍ଦ୍ଦିକି ଦହେଁ ।

“ଯା ତାଙ୍କ ପାଖକୁ ଯାଆ—ଯାଆମ, ଶଂକି ଶଂକି ହେଉଚ କଣ ? ସବୁ ଠିକ୍, ଆଚ୍ଛା ହୋଇଯିବ । ଖାଲି ମନେରଖିଥା—ହଠାତ୍ କେବେ ମୁଁଆଁ ଖାଇବୁ ନ ତାଙ୍କ ଆଗରେ—ଏଇ ଜାଣିଲୁ ଯେମିତି, ତାଙ୍କୁ ଟିକେ ସମସ୍ତ ଦେ—ଅଭ୍ୟାସରେ ପଡ଼ିଯାନ୍ତୁ ତାଙ୍କର ।”

ଘର ଭିତରକୁ ପଶିଯାଇ ଅଜାଙ୍କୁ ଅନେଇ ଦେଇ ଯାଏଁ କୁଆଡ଼େ ? ଯେତେ କଲେବି ହସ ରୋକି ପାରୁଚ, ସମାଳି ହୋଇ ପାରୁଚ କୋଉଠି ? ସତରେ ସେ କି ଖୁସିରେ ଉବୁଟୁବୁ ହେଉଥାନ୍ତି, ପିଲଟିଏପରି ! ହସରେ ଝକ୍ ଝକ୍ କରୁଥାଏ ମୁହଁଟି । ତଳେ ବାଡ଼େଇ ଲାଗିଥାନ୍ତି ନାଲିଆ ନାଲିଆ ପରପରି ବାଳ ସାଲୁ ସାଲୁ—ସେଇଥିରେ ଧାଉଁ ଧାଉଁ ଝିପୁଡ଼ାଉଥାନ୍ତି ।

“ହୁଁ, ଆଚ୍ଛା, ହଇରେ ହେ ଲୁଆ ଖାସିଟା ! ପୁଣି କଣ ଆଉ ଦ’ଝୁରଟା ମୁଣ୍ଡିଆ ପକେଇବୁ ବୋଲି ଏଃ ? ହଇରେ ହେ ବଜଟେନାକୁ ଡକାଏତ-ବଦମାସ ତୁ !-ଠିକ୍ ବାପ ପରି ତୋର ! ଆସିଲେ ଆଗ, ଘରକୁ ସେମିତ ପଶି ଆସିଲେ ଆଗ ଟିକିଏ ଝରୁଣି ଚାହିଁ ଅଙ୍ଗା ନାହିଁ, କାହାକୁ ଭୟଭ୍ରାନ୍ତ ନାହିଁ, ଦଣ୍ଡବତ ଫଣ୍ଡବତ ନାହିଁ—ପଶି ଆସିଲେ ଆଉ ଧରିଲେ କଣ ନା ଝରିଲେ ଆଗ ଧୂଆଁ ପନ୍ଥ ପୁଲାଏ । ବଳବେ, ପିକା ବଳବେ ଏଃ ଦ’ ପଇସିଆ ବୋନାପର୍ଟ ଆମର୍ ଏଁ ।”

କିଛି ଉତ୍ତର ଦେଲିନ ମୁଁ—ଆଉ କହୁ ପାରିଲେ ନାହିଁ, ଧଁସ ହୋଇ ଥକାରେ ଧୂନି ହୋଇ ପଡ଼ିଗଲେ ଗ୍ଲାଏଁ, କିନ୍ତୁ କ୍ୱାହା ଖାଇବାବେଳେ ପୁଣି ଖୁବ୍ହାଏ ବକ୍ତୃତା ଝାଡ଼ିଲେ ମୋତେ ଶୁଣେଇ !

“ଘୋଡ଼ାକୁ ଲଗାମ୍ ଯେମିତି, ଲୋକକୁ ଭଗବାନ୍ ଭୟଟା ସେମିତ— ଖୁବ୍ ଦରକାର । କିଏ ଆମର ସାଥୀ, କିଏ ଆମର ବଂଧୁରେ ଭଗବାନଙ୍କ ବିନା ? ସେଇ ବନ୍ଧୁ ହୃଅନ୍ତରେ ଆମର… ମଣିଷ ତ ମଣିଷର ସବୁଠୁ ବଳି ଶତ୍ରୁ, ପରମ ଶତ୍ରୁ !”

କଥାଟାରେ ତାଙ୍କର, ଚମକି ପଡ଼ିଲି—ସ୍ତମ୍ଭିତ ହୋଇଗଲି ମୁଁ—ମଣିଷ ମଣିଷର ଶତ୍ରୁ ! ମଣିଷଗୁଡ଼ାକ ଶତ୍ରୁ ! ତା'ପରେ ଆଉ ଯାହା କହିଲେ ସେ କିଛି ସେଥିରୁ କାନରେ ପଶିଲା ନାହିଁ, ମନକୁ ଛୁଇଁଲା ନ ମୋର ।

"ଦେଖ୍ ତୋର ଏବେ ଫେରିଯିବା ଉଚିତ କାମ କରିବା ପାଇଁ—ବୁଝିଲୁ ମାଉସୀ ମାତୃସ୍ନେହୀନା ଘରକୁ, ଆଉ ବସନ୍ତ ପଡ଼ିଲେ ମନ ହୁଏ ଯଦି ଫେରିପାରୁ ଷ୍ଟିମରକୁ, ଆଗକୁ କୋଉଠି । କିନ୍ତୁ ଶୀତଦିନଟା କଟା ଯା ସେଠି, ଆଉ ତାଙ୍କୁ କେବେ କହିବୁ ନାହିଁଟି, ବସନ୍ତରେ ଚାଲି ଆସିବୁ ବୋଲି ।"

"ମ, ଲୋକଙ୍କୁ ଭଣ୍ଡେଇବ କାହିଁକି ମ ?" କଥା ମଝିରେ କହିଉଠିଲା ଆଇମା । କହିଲା ସିଏ ନକେ ଯିଏ ଅଜାଙ୍କୁ ଭଣ୍ଡେଇଥାଏ ଟିକିଏ ମାତ୍ର ଆଗରୁ ମତେ ଗୋଟାଏ ତୁଚ୍ଛ ଛଳନାରେ ମିଛରେ ଦି' ଥରଥର ଦୋହଲେଇ ଦେଇ !

"ଲୋକଙ୍କୁ ନ ଭଣ୍ଡେଇ ରହିପାରିବ ନାହିଁ, ବଞ୍ଚି ପାରିବନାହିଁ ତମେ !" ଜୋରକରି କହିଲେ ଅଜା । "କେହି ପାରିନ !"

ସେ ଦିନ ସଞ୍ଜରେ ଅଜା ଯେତେବେଳେ ବସିଲେ ସ୍ତୋତ୍ର ପଢ଼ି, ଆଇମା ଆଉ ମୁଁ ଧିରି ଧିରି ଫାଟକ ବାଟେ ବାହାରିଗଲୁ ପଦାକୁ ପଡ଼ିଆକୁ ! ସେଇଟି ଦ'ଘରକିଆ ଗ୍ଲେଟ କୁଡ଼ିଆଟି, ଯେଉଁଥିରେ ଆସି ରହିଥାନ୍ତି ଏବେ ଅଜା—ସେଇଟି ଥାଏ ସହରର ମୁଣ୍ଡରେ ଧାରରେ ଠିକ୍– କାମତାନାୟା ଗଳିର ଶେଷରେ—ସେଇ ଯେଉଁଠି ପୁଣି ନଜର୍ ହୋଇଥିଲା ଘରଟିଏ—ସୁନ୍ଦର ଘରଟିଏ ତାଙ୍କର ।

"ଦେଖରେ, କୋଉଠି ଆସି ରହୁଚୁ ଆମେ ଏବେ !" ହସିଲା ଆଇମା "ଅଜା ତୋର ଥାନ ପାଉନାହାନ୍ତି ଆତ୍ମାର ଶାନ୍ତିପାଇଁ—ଖଲ୍ଲିସି ପାଇଁ କେଉଁଠି ଗୋଟିଏ ଥାନ ପାଉନାହାନ୍ତି ; ଦେଖୁ ଖାଲି ଏଠୁ ସେଠିକି ଯିବାରେ ଲାଗିଛନ୍ତି ଦେଖୁନୁ ! ଆଉ ଏଇଟା ବି ଆଉ ତାଙ୍କ ମନକୁ ପାଉନ, ମତେ କିନ୍ତୁ ଠିକ୍ ହୋଇଛି, ମୋ ମନକୁ ପାଉଛି ।"

ଆମ ସାମନାରେ ପଡ଼ିଥାଏ ତିନି ଚାରି ମାଇଲ ଲମ୍ବର ପଡ଼ିଆଟାଏ, ଅଳ୍ପ ଅଳ୍ପ ଚେକା ଚେକା ଘାସ, ଠାଏ ଠାଏ ପାଣିସିଆର—ନା, ମ, ଗୋଲ୍ଡେସ୍ତି ଆଡ଼ବାଗରେ,—ପଡ଼ିଆଟିର ଶେଷରେ, ଧାଡ଼ିଏ ବାର୍ଚ ଗଛ । ସେଇଟି ଚହ୍ଲେଇ ଦେଉଥାଏ କାଜାନ୍ ରାସ୍ତାକୁ ! ପାଣି ପୋଖରି ବା ନାଲୀଗୁଡ଼ିକ ଉପରେ ଝୁଲି ପଡ଼ିଥାଏ ପତ୍ରହୀନ ସରୁ ସରୁ ଡାଳଗୁଡ଼ିକ, ସୂର୍ଯ୍ୟାସ୍ତର ହେମାଳ ଦୀପ୍ତିରେ ରକ୍ତାକ୍ତ ଚାବୁକ ଭଳି ! ଘାସସବୁ ହଲୁଥାଏ ଧିରି ଧିରି ସଞ୍ଜର କେମିତି ଗୋଟାଏ ହାଲୁକାଳିଆ ପବନରେ ଆଉ ଦୋହଲିବା ଗତିବଧି ଘଟି ଯାଉଥାଏ ଥରକୁ ଥର— ଆମର ସବୁଠୁ ନିକଟ ପାଣି ପୋଖରୀଠୁ ଦୂରରେ ଟିକେ ସହରରୁ ଆଗତ ଯୁଗଳ ମୂର୍ତ୍ତିଗୁଡ଼ିକର ଡାହାଣପଟରେ ଦୂରରେ ପୁଣି ଅଣ-ପ୍ରୋଟେଷ୍ଟାଣ୍ଟ ଖିରଷ୍ଟାନମାନଙ୍କର କବର ସ୍ଥାନ 'ବୁଗ୍ରୋଭସ୍କି ଆଶ୍ରମ''ର ଲାଲ ପାଚିଲିଟା— ବାଆଁରେ ଏଣ୍ଟେତେଖ୍ୟ ଗଛଲଟା ! ମେଞ୍ଚହୋଇ ଜଣେଇ ଦେଉଥାଏ ଇହୁଦୀମାନଙ୍କ

କବରସ୍ଥାନ ବା ମଶାଣିକୁ ! ଗୁରଆଡ଼ ନିକାଞ୍ଚନିଆ ନିଚ୍ଛାଟିଆ—ଗାଆଁ ଗାଆଁ ସବୁ ଯେମିତ ନୀରବରେ କାକୁତି ଧରଥାଏ, ଲାଗି ରହିଥାଏ କ୍ଷତବିକ୍ଷତ ଧରଣୀଟାକୁ । ସହରର ଉପକଣ୍ଠରେ ସେଠି ଗ୍ରେଟ ଗ୍ରେଟ ଘରଗୁଡ଼ିକର ଝରକାସବୁ ସତେ ଯେମିତ ଆଖିମିଟିକା ମାରୁଥାଏ ଉର ଉର ଧୂଳି ଧୂସରିତ ସଡ଼କଟାକୁ—ଯାହାର କରେ କରେ ଏଣେତେଣେ ବୁଲୁଥାନ୍ତି ଆହାର ନ ପାଇ ଅପୁଷ୍ଟିଆ, ଗ୍ରେଟ ଗ୍ରେଟ ଅବଣ୍ଡିଲା ଆକୃତିର କୁକୁଡ଼ା । 'ଡେଭିଡ କନଭେଣ୍ଟ' ପାଖରେ ଗୁଲାଗଲେ ଆସି ହମ୍ବାରଡ଼ି ଦେଇ ଗାଈଗୋରୁ ଗୋଠେ—। ନିକଟର ଗ୍ରୁଜଣିରୁ ଆସୁଥାଏ ସାମରିକ ଗୀତର ଧ୍ୱନି, ତୁରୀଗୁଡ଼ାକ ଗର୍ଜି ଉଠୁଥାଏ ରହିରହିକା, ଶିଙ୍ଗାସବୁ ଦୁମଦୁମକା···ଆକାଶକୁ ।

ମଦୁଆଟାଏ ଟଳଟଳ ହୋଇ ବେଳେବେଳେ ଝୁଣ୍ଟି ଆଣ୍ଠେଇ, ପୁଣି ଉଠି ଗୋଟାଏ ଆକର୍ଡ଼ିଅନକୁ ନିଦ୍ଦିସ୍ୱଭାବରେ ଟାଣି ଟାଣି ଆଣି ଆଗେଇ ଆସିଲା— ବଡ଼ର ବଡ଼ର ହେଉଥାଏ ମନକୁ ମନ—

"ଧରବ ତତେ, ପହଞ୍ଚିଯିବ ତୋ ପାଖେ ତଥାପି ନିଷ୍ଟେ ନିଷ୍ଟେ !"

"କାହା ପାଖେ ପହଞ୍ଚିବୁରେ, ନିବୁଦ୍ଧିଆଟା ?" ଲାଲ ଧୂର୍ଯ୍ୟ ଆଲୁଅରେ ଟେରେଇ ଗୁହିଁ କହିଲା ଆଈମା—"ତୁ ତ ପଡ଼ିଯିବୁରେ ଏଇକ୍ଷଣି—ଶୋଇପଡ଼ିବୁ ଆଉ ଶୋଇଥିବୁ ଯେତେବେଳେ ତତେ ଲଙ୍ଗଳା ମୁକୁଳାକରି ସବୁ ନେଇଯିବେରେ ଚୋର, ଏମିତକି ତୋର ଆକର୍ଡ଼ି-ଅନଟିକୁ—ତୋ ଆଦରର ଆନନ୍ଦର, ହୃଦୟର ଧନଟିକୁ ! ନେଇଯିବେରେ !"

ମୋ' ଜାହାଜ-ଜୀବନ କଥା ଆଈମାକୁ ଶୁଣାଉଥାଏ ଯାଉ ଯାଉଁ, ଅନଉଥାଏ, ଗୃରଆଡ଼କୁ ଯାହା ଦେଖିଲି, ମୋର ସେତକିବେଳର ସେଠାର ପରବେଶରେ ମନଟା ଦବି ଦବି ଗଲା କେମିତ । ହତାଶିଆ ଉଦାସିଆ ଅତ ଖରାପ ଲାଗିଲା କେମିତ । ଆଈମା ଶୁଣୁଥାଏ, ମନଧ୍ୟାନ ଦେଇ ଏକାବେଳକେ ମୁଗ୍ଧ ହୋଇ ଆବିଷ୍ଟ ହୋଇ ଆଗ୍ରହରେ ମୁଁ ଯେମିତ ଶୁଣେ ସବୁବେଳେ ସେ ଯାହା କୁହେ, ଯେମିତ - ସ୍ମୃତ ବିସ୍ମୃତି ବର୍ଣ୍ଣନ କଲି ଯେତେବେଳେ, ଆବେଗରେ ଦଶଚାହିଁ ଆଙ୍କିଦେଲା ସେ କହିଲା :—

"ଆଲୋ ମୋର, କେଡ଼େ ଭଲ ମଣିଷଟି ଲୋ ! ଫୁଲ ଚନ୍ଦନ ପଡ଼ୁ ଲୋ କୁଆଁରୀ ମେରୀଙ୍କର ତାଙ୍କ ଉପରେ, ସହାସ୍ୟ ହୁଅନ୍ତୁ ଲୋକଙ୍କୁ, ଦେଖ୍ କେବେ ପାସୋରିବୁ ନାହିଁଟି ତାଙ୍କୁ । ଯେତେଯେତେ ଭଲ କଥା ଅଛି ସବୁ, ସେ ସମସ୍ତଙ୍କୁ ଶକ୍ତକରି ଧରି ରଖିବୁ,—ସାଇତ ରଖିବୁ ମନରେ—ଆଉ ଖରାପ କଥାଗୁଡ଼ାକ— ଏମିତ ଠେଲିଦେବୁ ଫିଙ୍ଗିଦେବୁ ମ, ବୁଝିଲୁ ! ଠେଲି ଦେ ଫିଙ୍ଗିଦେ ସବୁ ।"

ଭାରି କଠିନ ଥାଏ ମୋ ପାଖରେ କେମିତ ତା ଆଗରେ ଦୋଷ ସ୍ୱୀକାର କଲାଭଳି କହିବ, ଜାହାଜ ଗୃକିରିରୁ ମତେ ବରଖାସ୍ତ କରାଗଲା କାହିଁକି — ତେବେ ଦାନ୍ତଚପି, ଦାନ୍ତରେ ଦାନ୍ତ ରଗଡ଼ି, ଯେକୌଣସି ମତେ କହିଲି ସବୁ

ଆଇମାକୁ । ସେ କଥାଗୁଡ଼ା କାହିଁକି ଭଲ ଟିକିଏ ଅସ୍ୱସ୍ତି ପକାଉଥାନ୍ତି ତା' ଉପରେ ।

"ବକଟେନାକୁ ଛୁଆ ତୁ, ଏବେ ବି ! ଶିଖିନୁ, ଚଳିବାକୁ ହୁଏ କେମିତି" ଉଦାସୀନ ଭାବରେ ମତ ଦେଲା ଆଇମା ।

"ଲୋକେ କୁହାକୋହି ହୁଅନ୍ତି, କହନ୍ତି ପରସ୍ପରକୁ ସବୁ କେମିତି ଚଳିବାକୁ ଜାଇଁବାକୁ ହେବ ଶିଖିନାହାନ୍ତି ସେମାନେ—ଏଇ ଯେମିତି କୁହାକୋହି ହୁଅନ୍ତି; ମ୍ୟାଟ୍ରିକ୍ ମାଝି ଖଲାସୀ ସବୁ ଯେତେକ, ମାଲୁମୀ ମାଲ୍ଟୁସ୍ତୋନା ବି ସଦାବେଳେ କୋହାନ୍ତି କହେ ତା ପୁଅକୁ ! କିନ୍ତୁ ଶିଖିବାର ଅଣ ଅଛି ଯେ ?"

ଆଇମା ଟିପିଦେଲା ଓଠ ଦାନ୍ତକୁ—ହଲେଇଲା ମୁଣ୍ଡଟିକୁ ଟିକିଏ । "ତା' ତା' ଜାଣେ ନା ଉତ୍ତର ଦେଲା ଆଇ ମା ।

"ଆଉ, ସବୁବେଳେ ତୁ କହୁଥିବୁ ଯେ ! –"

"ମୁଁ, କହୁଥିବି କାହିଁକି ମୁଁ ?" ଅନ୍ୟମନସ୍କ ଭାବରେ ଉତ୍ତରଦେଲା ଆଇମା ! "କିନ୍ତୁ ଦେଖ୍ ତତେ ବାଧୁନି ନାହିଁ ତ ? ଏବେ ବି ଏତେ ଦିନେ, ବକଟେନାକୁ ତୁ ! କେବେ କେବେ ଭାବିନି ତୁ ଜାଣିଥିବୁ, ଜାଣିଯାଇଥିବୁ ଚଳିବାକୁ ହେବ କେମିତି । କିନ୍ତୁ ଜାଣେ ବା କିଏ ? ଜାଣନ୍ତି ଜ୍ୟୋତିଷଗୁଡ଼ାକ, ନକ୍ଷତ୍ରଗୁଡ଼ାକ ! ଏଇ ଧର ତୋର ଅଜା, ବେଶ୍ ଗୃହସ୍ଥ ଚତୁର—ଫନ୍ଦି ଖିବ୍ !—ବହୁପଢ଼ା ପାଠୁଆ ଲୋକ, କିନ୍ତୁ କଣ ହେବ— ଏସବୁ କିଛି ଭଲ ସାହାଯ୍ୟରେ ଆସିଲା, ଦରକାରରେ ଲାଗିଲା ତାଙ୍କର ?"

"ତମେ ଜୀବନଟି କେମିତି କଟିଚ, ଆଇ ଭଲରେ ତ ?"

"ମୋର ? ମୋ ଜୀବନଟା ! ଆଲୋ ଉଁ, ହଁ—ଭଲ । ଭଲରେ କଟିଚି, ଆଉ ଖରାପ ! ଖରାପ ବି— ସବୁବେଳେ ବଦଳୁଛି, ବଦଳେ ।"

ଝୁଲି ଝୁଲି ଯୋଡ଼ଯୋଡ଼ କି ଦଳକୁ ଦଳ ଲୋକେ ଅନ୍ଧକାରର ଯାଉଥାନ୍ତି ଆମକୁ ଲମ୍ବା ଲମ୍ବା ଛାଇଟିମାନ କରି ତାଙ୍କର ପଛେ ପଛେ ଘୋଷାରି ଘୋଷାରି ଟାଣି ଟାଣି ନେଇ ନିଜ ନିଜର । ଆଉ ତାଙ୍କ ପାଦତଳରୁ ଉଠୁଥାଏ ଧୂଆଁ ଭଳି କୁଣ୍ଡଳି ଆକାରରେ ଧୂଳି—ସେଇ ଛାଇଟିମାନଙ୍କୁ କବର ଦେବାକୁ ଯେମିତି । ସନ୍ଧ୍ୟାର କରୁଣତା ବଢ଼ି ବଢ଼ି ଆସିଲା—ଝରକାବାଟେ ଶୁଭିଲା ଅଜାଙ୍କର ଗୁଣି ଗୁଣି ଆପତ୍ତିକାରୀ ଅସନ୍ତୁଷ୍ଟ ପ୍ରାଣର ସ୍ୱରଟା—

"ତୁମ କ୍ରୋଧର ପରିପୂର୍ଣ୍ଣତାରୁ ରକ୍ଷାକର ମତେ, ପ୍ରଭୁ ! ହେ ଭଗବାନ ମୋର ବଳକୁ ବୃଦ୍ଧି ଦଣ୍ଡ ଦିଅ ମତେ !"

ମୁରକେଇ ହସିଦେଲା ଆଇମା ।

"ଭଗବାନ ନଷ୍ଟେ ଚଢ଼ିଚଢ଼ି ଥକାବେଣି ଏଇ ଲୋକଟାକୁ ଯେନ !" କହୁଥିଲା ସେ ହସିହସିକା—

"ପ୍ରତିଦିନ ସନ୍ଧ୍ୟାବେଳଟାରେ ଏମିତି କାକୁର କାନ୍ଦଣା କାନ୍ଦୁଛନ୍ତି ସେ—କହନ୍ତୁ କାହିଁକି ?—କେଉଁଥି ପାଇଁ ମ ?—ବୁଢ଼ାଟିଏ ତ ହେଲଣି—ଆଉ କଣ ଲୋଡ଼ା ଯେ ! ସବୁ ଆଶା ସବୁ କାମନାର ଦୂରରେ ତ ଏବେ—ମଲା ମର । ଏମିତି ଗାଉଁ ଗାଉଁ ହୋନା, ଠାକୁରଙ୍କ ପାଖେ ଓଜର ଆପତ୍ତି ଅଭିଯୋଗ ଜଣେଇବା ମାନେ କଣ ମ ! ଠାକୁରେ ନିଶ୍ଚେ ତୁହାଏ ଲେଖାଁ ହସୁଥିବେ—ପେଟଫଟେଇ ଶୁଣୁଥିବେ ଯେତେବେଳେ ପ୍ରତି ସଞ୍ଜରେ ଏଇ ଲୋକଟାର ସ୍ୱରଟାକୁ—ଏଃ ପୁଣି ସେଇ ଭ୍ୟାଁସିଲ କାଣାଶନଟା ସେମିତି ।"—ହୁମ୍, ଆ' ବିଛଣାରେ ଗଡ଼ପଡ଼ିବା ଏଥର ଭଲ ।"

ସ୍ଥିରକଲି ବାଛି ବାଛି ଭଲ ଗୀତ ଗାଇଲା ଚଢ଼େଇଗୁଡ଼ିକୁ ଧରିବି ଏଥର । ମତେ ଲାଗିଲା ଶ୍ରାବଣ-ଅଶ୍ୱିନ ପାଇଁ ଭଲ ଉପଯୁକ୍ତ ଏଇଟା—ମୁଁ ଧରିବି ଚଢ଼େଇ, ଆଉ ତାକୁ ସବୁନେଇ ବନ୍ଦି କରିବ ଆଇମା । ତେଣୁ କିଣିଲି ଆଗ ଜାଲ, ଫାଶ, ମୁଦିଆ, ଉଆଁଶ କଳ କେତୋଟି ଶ୍ରେଷ୍ଠ ବଡ଼ ପଞ୍ଜୁରି । ତା'ପରେ ମତେ ପାଏ କିଏ ?—ହେଇ ମୁଁ ଭୋରରୁ ଭୋରରୁ ଏଠି ପାଣିନାଳୀ କୂଳରେ ଲୁଚି ବସିଛି ବୁଦାଗୁଡ଼ିକ ଭିତରେ । ଆଇମା ନିକଟରେ ବୁଲୁଛି ବଣଟାଯାକ—ଅଖା ଆଉ ଟୋକେଇଟାଏ ଧରି ଖୋଜୁଛି ସରି ସରି ଆସୁଥିବା ଛତୁଗୁଡ଼ିକ, କେତେ ପ୍ରକାର କୋଳି ଆଉ ବାଦାମ ।

ସେପ୍ଟେମ୍ବରର କ୍ଳାନ୍ତ ସୂର୍ଯ୍ୟଟା ଉଠିଲା ହେଇ ଉପରକୁ—ମଳିନ ରଶ୍ମି ସବୁ, ହେଇ ଏବେ ମରି ହଜିଯାଇଛି ମେଘପଟଳ ଭିତରେ । ଅନଉ ଅନନ୍ତ ପୁଣି ମେଲି ମେଲି ଦେଉଛି ରୂପେଲି ଡେଣାଗୁଡ଼ିକ ନୁଆଁଇ ଖସାଇ ଦେଇ ମୋର ଏହି ନିର୍ଭୁଲ ଆଶ୍ରୟ ଥଳଟିରେ ! ପାଣି ନାଳୀର ଗଳିରେ ଏତେବେଳଯାଏ ଉଛୁର ଉଛୁରକରି ରହୁଛି, ଯାଇ ବି ଯାଉନାହିଁ—କୁଇଗୁଡ଼ିକ ଆଉ ଧୀରେ ଧୀରେ ଉପରକୁ ଉଠୁଚି 'ଧଳା' କୁହୁଡ଼ିଟାଏ ! ଗୋଟାଏ ଫାଙ୍କହୋଇ ଉଞ୍ଚା ଅନ୍ଧାରିଆ କୂଳ, ଗଛ ବୁରୁଛ ବିରଳ, ଘାସବୁଦାଟିଏ ନାହିଁ କୋଉଠି—ଆର କୂଳଟି ଧୀରେ ଧୀରେ ଗଡ଼ିଯାଉଛି ତଳକୁ—ଘାସରେ ଘଞ୍ଚଳିଆ ବୁଦାରେ ଭର୍ତ୍ତି, ବୁଦା-ଗୁଡ଼ିକ ଝଟକୁଚି ଲାଲ, ହଳଦିଆ, ବାଦାମୀ ପତ୍ରରେ—ସେଇ ପତ୍ରଗୁଡ଼ିକ ଥାଇ ଥାଇ ପବନ ଖେଳେଇ ଛୁଟେଇ ଉଡ଼େଇ ଏଣେତେଣେ ବିଛୁଡ଼ି ଦେଉଛି ନାଳୀ ଭିତରେ ।

ତଳେ ନାଳୀ ଗଳିରେ ପ୍ରାୟ, ଭଙ୍ଗଚକୋଳି ବୁଦରେ ସବୁ, କଳରବରେ ମାତି ଯାଉଛନ୍ତି ସୁନେଲି ପରର ଶ୍ରେଷ୍ଠ ଶ୍ରେଷ୍ଠ ଚଢ଼େଇଗୁଡ଼ିକ !—ଟ୍ରେମ୍ପଥ୍ରେଲ୍ ବଢ଼େଇଦେଲା ମୂଳରେ ଯେମିତି—କଣ୍ଠାରେ ଗୋଟାଏ ତା'ପରେ ଗୋଟିଏ ରହିଲା ଜଗୁଆଳପଣ ପାଖରେ—ମୋଡ଼ାମୋଡ଼ି ଏଣିକି ତେଣିକି ବଙ୍କେଇ ବୁଲେଇ ଥରଥର ଚଳେଇଲା ପାଉଁଶିଆ ମୁଣ୍ଡଟିକୁ ନିଜର ! ଚୁପଚାପ ନୀରବରେ କେତେ ଉଡ଼ି ଆସିଲା ପାଇନ୍ ଫିନଶ ପାଇନ ଗଛର ଆକୃତିର ଶ୍ରେଷ୍ଠ ଚଢ଼େଇଟି—ଏଃ, ଯାହା

ବୃନ୍ତୁ ଥିଲି ମନଟା ମୋର, ଗୋଟାଏ ଧଉପାରନ୍ତି କି ଯେମିତି ମୁଁ । ବଡ଼ ଆକାରର 'ଭୁଲଫେନଣ' ଆଉ ଗୋଟିଏ ତଡେଇ ଲାଲ ଟକ୍‌ଟକ୍ ଉଦ୍ଧତ ଆଉ ଧୃଷ୍ଟ ସେନାପତି ଟାଏ ପର ଦଳରୁ ବାହାର ଆସି ଏକୁଟିଆ ଅଲଗା ହୋଇ ବିଶ୍ରାମ ନେଲା 'ଅଲଚର' ଗଛବୁଦାରେ—ହେଇ ସେଇଠି ସେ ମେଲଦେଲଣି 'ମନଗ୍ରେଟଳ' ଚମତ୍କାର କୁଜନଟି ତାର—କଳା ଅଣ୍ଟିଟିକୁ ଉପରତଳ୍କୁ ନଚେଇ ନଚେଇ ହଲେଇ ହଲେଇ ।—

ଯେତିକି ଯେତିକି ଉପରକୁ ଉଠୁଛି ସୂର୍ଯ୍ୟ, ସେତିକି ସେତିକି ଆସି ଠୁଳ ହେଉଛନ୍ତି ଚଢ଼େଇଗୁଡ଼ିକ ଆଉ ସେତିକି ସେତିକି ଉଲ୍ଲାସରେ, କଳ କୂଜନରେ ମଜ୍ଜି ଯାଉଛନ୍ତି ସେମାନେ—ଉଲ୍ଲାସରେ, ଉଚ୍ଛୁଳି ପଡ଼ୁଛି ସେମାନଙ୍କର କଳମୂଳ-ଚୁଡ଼ିକ ! ସମୁଦାୟ ଗୋହଗ୍ଧ 'ଉପତ୍ୟକାଟି' ପୂରି ଉଠୁଛି ଭୂହାକୁ ଭୂହା କୁଳୁକୁନର ଲହରୀରେ, ସମୀରଣରେ ପତ୍ରର ସରସର ଶବ୍ଦଟିକ ମିଶିଯାଇ ସେଥିରେ ସୃଷ୍ଟି କରୁଛି ବାଦ୍ୟଯନ୍ତ୍ରର ଅନୁଷଙ୍ଗ ଯେମିତି ! କଳକୂଜନଗୁଡ଼ିକ ଯେତେ ଜଦଖୋଣରେ ମୁହୂର୍ମୁହୁ ଉଠୁପଛେ କାହିଁ କେଉଁଠି ବୁଡ଼େଇ ଦେଇ ପାରୁନି—କାରୁଣ୍ୟରେ ମଧୁର ସ୍ନିଗ୍ଧ କୋମଳ ବିପର୍ଦ୍ଧରେ ପୁର ପୁର ଧ୍ୱନିକୁ । ଶୁଣିଚ—ବନ୍ଦାସ୍ୱର ରାଗିଣୀଟି ଯେମିତି ଏଥିରୁ ଗ୍ରୀଷ୍ମର କାନେ କାନେ ପଡ଼ିଯାଉଛି ଯେମିତି ଥର ଥର କାର୍ଯ୍ୟକାଙ୍କ୍ଷପୂର୍ଣ୍ଣ ଶବ୍ଦଗୁଡ଼ିଏ, ବର୍ଣ୍ଣନାର ଶବ୍ଦସବୁ—ଯାହା ଯୋଡ଼ିହୋଇ ଧାଡ଼ି ଧାଡ଼ି ସଜେଇ ହୋଇଯାଉଛି, ରଚନାକରି ଦେଉଛି 'ଛନ୍ଦ'ଟିଏ ସ୍ମୃତିରେ ମୋଉ ସଙ୍ଗେ ସଙ୍ଗେ ଏହାର ଅନିଚ୍ଛା ଅଜାଣତରେ ମୋର ସ୍ୱତଃ ଫୁଟି ଉଠୁଛି—ଅଜ୍ଞାତରେ ଦୃଶ୍ୟଗୁଡ଼ିକ—।

ଉପରୁ, ଉଞ୍ଚ ଜାଗାରୁ କୋଉଠୁ, ଡ଼ାକ ପକେଇଲା ଆଉ ।

"କେଉଁଠିରେ ତୁ ? କୋଉଠି, ବାପ ?"

ବସିଚ ସେ ନାଳୀଟିର ଧାରରେ—ପାଖରେ ମେଲି ଦେଇଚ ରୁମାଲଟିକୁ, ରୁମାଲଟି ଉପରେ ଥୋଇ ସାଉଲଣି—ରୁଟି, ଆଉ ଅଙ୍ଗୁର, ଗାଜର ଆଉ ଅପେଲ ଏହିସବୁ ଦାଉଁଦେବତାଙ୍କ ଆଶିଷ ଭିତରେ ଝକ ଝକ୍ କରୁଛି ଚକ୍‌ଚକ୍ ଉଜ୍ଜ୍ୱଳ, କାଚର ପୁଷ୍ଟର ପାତ୍ର ପିକାଣ୍ଟରଟି ନେପୋଲିଅନର ମୁଣ୍ଡଭଳି, ସେଇ ଅକୃତିର ଠିକ୍—ତା' ଉପରେ ସ୍ପଷ୍ଟିକପରି 'ଘୋଡ଼ଣି' ଡ଼ାକଚର ଠିକ୍ ! ସେଇ କିକାଣ୍ଟରେ ଅଛି କିଛି ଭେଦ୍‌କା—

'ସେଣ୍ଟଜନ୍' ଚେରମୂଳ ସୁଗନ୍ଧମୟ, ବାସୁଚ ମିଠାଲାଥା—

"ହେ ମହାପ୍ରଭୁ, ବଡ଼ଠାକୁରେ—କେତେ ଶୁଭର କେତେ ମଂଗଳର ସବୁ ମ ତୋର"—ନିଃଶ୍ୱାସରେ ନଜର ବନ୍ଧ ହେଉଛି ଅଇମା କୃତଜ୍ଞତାରେ !

"ଗୋଟିଏ ଗୀତ ରଚନା କରିଚ ମୁଁ—"

"ସତେ ନା, କରିଚୁ ?"

ଶୁଣିଲି କେତୋଟି ଧାଡ଼ି ସେଥିରୁ—

ଆସେ ଶୀତକାଳ, ଝରି ଝରି ପଡ଼େ ପରି ପରି ଆସେ ଫୁଲ !
ବୁଦାସ୍ତୁ ନଦୀର—ତାପମୟୀ ତୋର ତପନ ସୂର୍ଯ୍ୟଭୁଲେ ।
ଘୁରିଘୁରି ମତେ ନ ଶୁଣି—ମୋ ପଦ୍ୟଟାକୁ କାନ ନ ଦେଇ କିଛି କହିଲ
ଆଇମା—

"ଏମିତିକା ଆଉ ଗୋଟିଏ ଗୀତ ଅଛି ମ—ଏଥିପାଇଁ ଟିକେ ଭଲ—"
ଆବୃତ୍ତି କଲ ସେ ଝିନ୍ ଝିନ—ଏକଘୁରିଆ ସ୍ୱରରେ :
ଗ୍ରୀଷ୍ମକାଳର ସୂର୍ଯ୍ୟ ଯାଉଛି ବୁଡ଼ି
'ନାଇଟିଙ୍ଗେଲ୍' ପକ୍ଷୀ ଗଲଣି ବାହୁଡ଼ି
ସାଥୀହରା ମୁଁ ଏକାକନୀ ତରୁଣୀଟିଏ
ଗ୍ରୀଷ୍ମ ଅମୋଦୁଁ ବଞ୍ଚିତ ମୁଁ ଅନ୍ତରତେ

ପ୍ରତ୍ୟୁଷେ ଯେବେ ବୁଲିଯାଏ, ଯାଏଁ ଏକା
ମନେପଡ଼େ 'ମଇ' ମାସ ସୁଖ ସ୍ମୃତି
ହାତଧରି ମତେ ନେଉଥିଲ ଯେବେ ଅମୃତମୟ ଆହା
ଆଜି ସେ ହେମାଳ ଧୂସର ସେଇ କଢ଼ିଭୂଇଁଆ—

ଉଦାର ହୃଦୟା ସଜନୀ ସ୍ନେହର ଭଉଣୀ ସବୁ—
ଶୀତର ଝଂଝା ବହୁଥିବ ଯେବେ ଆସି—
ହୃଦୟଟି ମୋର ନଅ-ଗୋ ଦଗ୍‌ଧ ଦୁଃଖେ—
ପୋତିଦିଅ ତାକୁ କବର ଦିଅ ଗୋ ତୁଷାର—

କବି ବୋଲି ଯେଉଁ ଗର୍ବଟା ମୋର, କାହିଁ ଟିକିଏ ହେବେ ଆହତ ହେଲନାହୁଁ ଏଥିରେ । କେତେ ଚମତ୍କାର ଲାଗିଛି ତାର ଗୀତଟି—ଝିଅଟି ପାଇଁ ଦୁଃଖ ହେଉଛି ମନରେ ।

"ଦୁଃଖର କଥା, ଏମିତି ଗାଇବାକୁ ହୁଏରେ ।" କହିଲ ଆଇମା !—

"ଝିଅଟି ଗାଉଥିଲ ଏଇଟିକ । ବୁଲୁଥିଲ ସେ ଖସ୍ରିଦାନରେ ଚୋକାଟିର ମାଥିରେ ତାର, ଜାଡ଼ ମାଡ଼ି ପଡ଼ିଲ, ଶୀତ ଆସିଲ—ଚୋକାଟା କଣ କଲ ଜ ଭ୍ରାନ୍ତ ବୁଲିଗଲ ତାକୁ ହୁଏତ ଆଉ ଗୋଟାକ ପାଖକୁ ଯିବା ପାଇଁ । ଆଉ ଝିଅଟି କାନ୍ଦିଲ—କାନ୍ଦିଲ ଖାଲି ଦୁଃଖରେ । ସେ କ ଦୁଃଖରେ ମ । ଯାହା ନିଜେ ଅନୁଭବରେ ଆଣିନୁ, ତାକୁ ଗାଇ ପାରିବୁନରେ କେବେହେଲେ । ଦେଖ କାଲୁ—ଚୋକାଟା କେମିତି ଫାନ୍ଦିଦେଲ—କେଡ଼େ ଚମତ୍କାର ସ୍ୱରରେ ଗୀତଟି ।

ଆଇମା ଅଖି ଖୋସି ହୋଇଗଲ ଯେତେବେଳେ ପ୍ରଥମେ ଦେସ ତଟେଇ କେତୋଟି ବ୍ଲକ୍ କରିଦେଲ ଗୃହିଣୀ ପଇସାରେ ।

"ଆଲେ ଦେଖ ମ କଲ୍‌ପନାକର ମ ! ଭାବୁଥିଲି କଣ ହେବ କାହିଁ କାଳ ମିଳିବନ ଏଥିରୁ - ଖାଲି ପିଲାଟାର ଖିଆଲ । କଲୁ ଅନା ମ ! କେତେ ଲାଭର ହେଲ ମ—ଦୁଇ ପଇସା ଉଆଇଦେଲ ଏଥିରୁ !"

"ରୁ ତ ସେଦିକରେ ଶସ୍ତାରେ ନେଇ ବନ୍ଦ ଦେଲ୍ !"

"ମୁ କଣ ଜାଣିଥିଲି କି ରେ । "

ହାଟଦିନ ସେ ଉଆଇଲା ଗୋଟାଏ ଚୁଦ୍ଧ କ ଭାଦ୍ରୁ ବେଣୀ'—ଆହ୍ ସେ କଥାଟା ମନରୁ ପୋଛି ପାରିଲିନାହିଁ ଆଦୌ ! ଚୁଗ୍ଧ ' ଜନ୍ତଗୁଡ଼ାକରୁ କେତେ ଟଂକା କମାଯାଇପାରେ ମ ଯେ !

"କାହିଁକରେ ମାଇପିଟା ଏ ତ ଧନମାନ ଲାଗି ଲାଗାପଟା କାଟୁନ୍, ନଇଲେ ଦ୍ୱାର ଘରକାନ୍ତ୍ର ଅଗଣା ସଫା କରୁଚ ପାଉଚ ପଡଶଣି ଯଇଯା ମ. କଣ ଯ୍ୟାର ମୂଲ ମ ! କଣ ତାର ଅର୍ଥ । ଏଇଟା, ଏଇଭଳିଆ କଥାଟା, କହ୍ନାଢ ଭୁଲ୍ ! ଅଉ ଚଢ଼େଇଗୁଡ଼ାଙ୍କୁ ପଞ୍ଜୁରିରେ ରଖିବା ଏଇଟା କଣ ଠିକ୍ ? ଏ ବି ତ ଭୁଲ ! ଏକାମ ଛାଡ଼ି ଦେ, ତୁ ଆଲ୍ଓଣା ।"

କିନ୍ତୁ ମତେ ଏକାବେଳକେ ମୁଗ୍ଧ କରିଥାଏ—ମୋହ କରିଥାଏ ଚଢ଼େଇଧରା ! ଭଲ ଲାଗୁଥାଏ ମତେ, ଉପଭୋଗ କରୁଥାଏ—ଆଉ ସଙ୍ଗେ ସଙ୍ଗେ ମୋର ସ୍ୱାଧୀନତାଟିକି ରଖିଥାଏ ପୂର୍ବ୍ୟୁଣ, କେବଳ ଚଢେଇଗୁଡ଼ିକ ଛଡା କାହାର ତ କିଛି ଡଳେହେଲେ ରୁଚି ଆଗ୍ରୁ ନଥାଏ, ଅସୁବିଧା କରୁ ନ ଥାଏ । ଭଲ ଭଲ ସାକସଂଗ୍ରାମ ମ ହାତ ହତଆରରେ ସଜ ହୋଇଗଲି ଓସ୍ତାଦ୍ ଓସ୍ତାଦ୍ ଚଢେଇଧରାଳାଙ୍କ ସଙ୍ଗେ ଗପ କରି ଶିଖିଯାଇଥାଏ ଅନେକ କୌଶଳ । ଏଣିକି ଆରମ୍ଭ କରିଦେଲି ଦୂରକୁ ଏମିତି କି ୩୦।୪୦ ମାଇଲ ଯାଏଁ—କଷଡ଼ୋଭିକ୍ସି ଜଙ୍ଗଲକୁ ବା ଭଲ୍ଗା କୂଳକୁ—ଯିବା ପାଇଁ, ମିଳିବାର ସମ୍ଭାବନା ଥାଏ, ସେଠି ଶୁଆ କି ଚଢ଼େଇ-ପ୍ରେମୀ ପାଖରେ ପ୍ରଶଂସା ମୂଲ୍ୟବାନ—ଲମ୍ବା ଲାଞ୍ଜର ଧଳା ରଙ୍ଗ ବିଶେଷ ଧରଣର 'ଚନ୍ନମାଉସ' ଜାତୀୟ ଚଢ଼େଇ··· ··· ··· ସୌନ୍ଦର୍ଯ୍ୟର ।

ବେଳେବେଳେ ସଂଜସଂଜ ବାହାରି ପଡୁଥାଏ । ରାତସାରା କଜାନ୍ ସଡ଼କରେ ବୁଲେ —ଧୂଳିମାଟିରେ ସରସର୍ ହୋଇ—ଅନେକ ସମୟରେ ଶରତ କାଳ ବର୍ଷାରେ, ଆଣୁଏ ପଙ୍କ କାଦୁଅରେ ଦହଲିରେ—ଦଲପଣୀ—ପିଠିରେ ମୋର ଥାଏ ରବର ବା ତେଲିଆ ଚକ୍ଣ କପଡାର ଆ—ଗଣ୍ଠି ଶ, ସେଥିରେ ଥାଏ ଫାଶ ପଞ୍ଜୁରି । ଚଢ଼େଇଙ୍କ ପାଇଁ ଆଧାର—ଆଉ ହାତରେ ଧରିଥାଏ ବାଦାମ କାଠ ଦାଣ୍ଡ ଖଣ୍ଡେ । ଶରତକାଳ ରାତିରେ ଅନ୍ଧାରଟାରେ ମଂଜ ଧରି ଉଠୁଥାଏ ଯେମିତି ଶୀତରେ, ସେମିତି ମଧ୍ୟ ଭୟରେ, ଏତେ ଭୟାବହ ଲାଗୁଥାଏ ସେଇ ରାତିଗୁଡ଼ାକ । ରାସ୍ତା କଡ଼ରେ ଜୀର୍ଣ୍ଣଶୀର୍ଣ୍ଣ ଚଉକମରା ବାଚଗଛଗୁଡାକ—ଓଦା ଓଦା ଡ଼ାହ-ଗୁଡାକ ସବୁଆଡୁ ମେଲି ହୋଇ ଆସି ସତେ ଯେମିତି ଏକାଠି ହୋଇଯାଉଥାଏ ମୋର ମୁଣ୍ଡ ଉପରେ ! ବାଆଁ କଡରେ ମୋର ପାହାଡ଼ ପର୍ବତର ସାନୁଦେଶରେ ଭଲ୍ଗାକୂଳ ଆଡ଼କୁ କେତେବେଳେ କେମିତି ଆଲୁଅ ଭାସି ଉଠୁଥାଏ ଉଚ୍ଛୁରରେ ଯାଉଥିବା ଷ୍ଟିମର, ପଟ୍ଟନ, ନାହାଗୁଡ଼ିକର ମାସ୍ତୁଲରେ—ମନେ ହେଉଥାଏ ସେହି ଆଲୁଅଗୁଡ଼ାକ ପଛକୁ ଘୁଞ୍ଚି ଘୁଞ୍ଚି ଯାଉଛି କୁଆଡ଼େ ଅତଳ ଅନ୍ଧାରର ଅତଳ ଗହ୍ୱରକୁ ! କାନରେ ଆସି ବାଜି ଯାଉଥାଏ ସେହି ଷ୍ଟିମର ନାହାଗୁଡ଼ିକର ହୁଇସ୍—

ଫେସ୍କଳିଆ ଶବ୍ଦଟା କେମିତି । ଆଉ ପାଣିରେ ଆହୁଲାର ସପ୍ ସପ୍ ସପ୍ ସପ୍ ଟା ବି !

ଢ଼ଳେଇ ଜହ୍ନା ମୂର୍ତ୍ତିକାରେ ଉଠି ଉଠି ଆସୁଥାଏ କୁଡ଼ିଆ ଘରଗୁଡ଼ିକ, ଯେତେବେଳେ ଗାଆଁ ସବୁ ଅତିକ୍ରମ କରି ଚାଲିଥାଏ ମୁଁ ଗୋଟିକି ଗୋଟି । ଭୋକରେ ଆଣ୍ଟୁପ୍ରାଣ୍ଟୁ ବିରକ୍ତ ରାଗୀ ବଦମାସ କୁକୁରଗୁଡ଼ାକ ଖେଦି ଆସୁଥାନ୍ତି ଘେରି ଯାଉଥାଆନ୍ତି ପ୍ରାୟ ଗୋଡ଼କୁ—ପ୍ରାୟ ରାତିର ପହରା ଜଗୁଆଳି ସବୁ ତାଙ୍କର ଯାଉଁଳିକାଠ ଦୁଇଟାକୁ ଠକ୍ ଠକ୍ କରି ପାଟି କରି ଉଠୁଥାଆନ୍ତି ଭୟାର୍ତ୍ତ ସ୍ୱରରେ ।

“କିଏ ? କିଏ ରେ ସେଠି ? କିଏ ଯାଉଛୁରେ—ଏତେ ରାତିରେ କାହାକୁ ନେଇ ଆସିଛୁରେ କାହାକୁ ପଠାଇଚରେ ଦୁରାତ୍ମାଟା—ସଇତାନଟା—ରାତି ଅଧରେ ଯାହାର ନାଆଁ ଧରନ୍ତି ନାହିଁ—ଧରିବା କଥା ନୁହେଁ ସେହି ସଇତାନ୍ ଟା ?”

ସବୁବେଳେ ମୋର ଆଶଙ୍କା ହେଉଥାଏ—ମୋ ଫାଶତକ ନେଇଯିବେ ସେମାନେ, ସେହି ଚୌକିଦାର ସବୁ, ଏଣୁ ପାଞ୍ଚପଇସିଟିମାନ ରଖିଥାଏ ପାଖରେ ଲାଞ୍ଚଦେବା ପାଇଁ ସେମାନଙ୍କୁ । ଫେକନା ଗାଁର ରାତି-ପ୍ରହରୀ ଚୌକିଦାରଟା ସାଙ୍ଗରେ ବନ୍ଧୁତାଟା ଜମେଇ ଦେଲି ଖୁବ୍—ମୋର ଦୁଃସାହସିକ କାମରେ—ଏକାବେଳକେ ଭାଟକା ହୋଇଯାଉଥାଏ ସେ ।

“ପୁଣି ତୁ ?” କହୁଥାଏ ସେ ଅନେକ ସମୟରେ “କି ନିର୍ଭୟ—କି ଅସ୍ଥିର ରାତି ଅଧର ଅନ୍ଧାର ତଡ଼େଇଟାରେ—ଏଁ !”

ତାର ନାଆଁ ‘ନଫନ୍ତ’ ବାଙ୍ଗରା ଧୂସରିଆ ମଣିଷଟିଏ—ଦିଶୁଥାଏ ଗୋଟାଏ ସାଧୁସନ୍ଥ ଯେମିତି । ଅନେକ ସମୟରେ ସେ ପକେଟରୁ ବାହାର କରେ ଗାଜର କି ସେଓଟାଏ, ନଇଲେ ମୁଠାଏ ମଟର ମଂଜି—ମୋ ହାତରେ ଗୁଞ୍ଜି ଦେଉଦେଉ ଜବରଦସ୍ତି, କହେ—

“ନେଏ, ଏତକ ସାଙ୍ଗୀ—ଏତିକି ମାତ୍ର ବଳେଇ ସାଇତି ପାରିଚି—ତୋ ଚଛା ପାଇଁ । ଆଶା, ନଷ୍ଟେ କାମରେ ଲାଗିବ ତୋର, ମନକୁ ପାଇବ ଖୁସି ହେବୁ ।”

ଆଉ ସେ ବଳେଇ ଦେଇ ଆସେ ଗାଁ ମୁଣ୍ଡଯାଏ ଯାଇ ମୋ ସାଙ୍ଗରେ । “ବିଦାୟରେ ! ଭଗବାନ୍ ମଙ୍ଗଳ କରନ୍ତୁ, ପାଖେ ପାଖେ ଥାଆନ୍ତୁରେ ତୋର !”

ରାତି ନ ପାହୁଣୁ—ବଡ଼ିଭୋରରୁ ପହଞ୍ଚିଯାଏ ଜଙ୍ଗଲରେ—ଫାଶ ବସାଏ, ଟାଙ୍ଗି ଦିଏ ଅଧାରତକ—ଜଙ୍ଗଲର ଧାରରେ କେଉଁଠି ଶୋଇରହେ—ଅପେକ୍ଷା କରେ ଦିନଟିସାକ ଚୁପ୍‌ଚାପ୍ ! ଗଭୀର ନୀରବତା ଚାରିଆଡ଼େ—ଶରତକାଳର ନିଘୋଡ଼ ନିଦରେ—ନିମଗ୍ନ ଜଗତଟା ! ଶରତକାଳର ନିଦ୍ରାର ନିବିଡ

ଆଲିଙ୍ଗନରେ ଜଗତଟା ! ନୀଳଚିଆ ଅନ୍ଧାରରେ ଧୂଆଁ ଲିଆ ପାହାଡଗୁଡ଼ିକର ପାଦଦେଶରେ, ଅସ୍ପଷ୍ଟଭାବେ ଝଲସି ଉଠେ ଆଖିଆଗରେ ବିସ୍ତୃତ ତୃଣମୟ ପ୍ରାନ୍ତରଗୁଡ଼ିକ—ତାକୁ କାଟିକାଟି ଖଣ୍ଡି ଖଣ୍ଡି କରି ଭାଗାବିଶେଷକରି ବୋହିଯାଉଥାଏ ଭଲ୍‌ଗା—ଦୂର ଖଣ୍ଡିକ ହଜିଯାଇଥାଏ କୁହୁଡ଼ିରେ , ଦୂରରେ ବହୁ ଦୂରରେ ଜଙ୍ଗଲ ଘେରପାଖରେ ପ୍ରାନ୍ତର ବେଷ୍ଟନୀଟିକୁ ଟପି ଧୀରେ ଧୀରେ ଉଇଁଆସେ, ଉପରକୁ ଉଠେ ସୂର୍ଯ୍ୟ—ଅଦଭୂତ ଏକ ଅଶୁଭଳି ଜଙ୍ଗଲର କଳା କଳା 'କେଶର' ଗୁଡ଼ିକରେ ନିଆଁ ଲଗାଇ ଦେଇ ଯେମିତି । ତା' ପରେ ଆରମ୍ଭ ହୋଇଯାଏ ଅଦଭୁତ ଏକ ହୃଦୟୋନ୍ମାଦୀ ଶୃଙ୍ଖଳ୍ୟ—ଯେତିକି ଯେତିକି କ୍ଷିପ୍ରରୁ କ୍ଷିପ୍ରତର ବେଗରେ ଅଦୃଶ୍ୟ ହୁଏ ଉଠିବାକୁ ଲାଗେ କୁହେଳିକା, ସୂର୍ଯ୍ୟାଲୋକରେ ଝଲମଲ କରି ଶୁଭ୍ର ରଜତର ଆବରଣୀ ଭଳି ନିମ୍ନରେ ସେତିକି ସେତିକି ବୈପରୀତ୍ୟରେ ଯେମିତି ଧୀରେ ଧୀରେ ଧରଣୀର କୋଳରୁ ଶିର ଉତ୍ତୋଳି ଅଜାଏ ଗୁଳ୍ମ ଲତାଗୁଡ଼ିକ, ମହା ମହା ମହୀରୁହ ଆଉ 'ଦୃଷ୍ଟସ୍ତୂପ' ଗୁଡ଼ିକ ସତେ ଯେପରି ସୂର୍ଯ୍ୟର ପ୍ରାଣର ଉତ୍ତାପରେ ତରଳିଯାଇ ପ୍ରାନ୍ତରଗୁଡ଼ିକ ଚତୁର୍ଦ୍ଦିଗରେ ଖେଳି ଖେଳିଯାଏ ଯାଏ ଅଜାଡ଼ିଦିଏ ଅଗଣିତ ସବୁ ଶତ ଶତ ସ୍ୱର୍ଣ୍ଣିମ-ଧୂସର ପ୍ରବାହରେ । ଘୁଞ୍ଚୁଁ ଘୁଞ୍ଚୁଁ ମନେ ହୁଏ ସମଗ୍ର ନଦୀଟି ବନ୍ଧିଆସେ ସେହି ସ୍ଥଳୀଟିକୁ ଯେଉଁଠି ସୁନାର ଆଂଗୁଳି ତାର ବୁଡ଼ାଇଥାଏ ସେ ! ପୁଣି ଯେତିକି ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉଠେ ସେ, ସେତିକି ସେତିକି ସେ କି ପୁଲକରେ ଦୁର୍ବାର ଆନନ୍ଦର ଉଜ୍ଜ୍ୱଳ ଆଶିଷଧାରା ଝରାଇ ଦିଏ ସତେ ! ଉଷ୍ଣତା ଆଣି ଆବେଗ ହିମ ଶୀତଳ କମ୍ପିତ ଦେହରେ ଧରଣୀର—ଗଭୀର କୃତଜ୍ଞତାରେ ସିଏ ନିଃଶ୍ୱାସ ଯୋଗେ ତାର ଖେଳେଇଦିଏ ମାଦକମୟ ମଧୁର ସୁଗନ୍ଧି ! ସ୍ୱଚ୍ଛ ସମୀରଣ ଭେଦକରି ଦିଶେ କେଡ଼େ ବିପୁଳା ଆମର ଏଇ ଧରଣୀ—ପ୍ରତ୍ୟେକ ଦେଖାରେ ବୃହତ୍ତରୁ ବୃହତ୍, ବିଶାଳରୁ ବିଶାଳ—ଶେଷ ନାହିଁ ବିଶାଳତାର ସମୃଦ୍ଧିର ତାର ! ଚତୁର୍ଦ୍ଦିଗରେ ପ୍ରତ୍ୟେକଟି ବସ୍ତୁ, ସମସ୍ତ ଆକୁଳ ଆଜି, ବ୍ୟଗ୍ର ଦୂରତ୍ୱପାଇଁ—ଦୂରର ଆକାଂକ୍ଷାରେ ଲୋକକୁ ଲୋଭାତୁର କରି ଛୁଟିଯିବା ପାଇଁ ପୃଥିବୀର ସୁନୀଳ ସୀମାନ୍ତଯାଏଁ ! କେଜାଣି କେତେଥର ଯେ ଦେଖିଥିବି ସୂର୍ଯ୍ୟୋଦୟ ମୁଁ ସେଇ ସ୍ଥାନଟିରେ—ପ୍ରତ୍ୟେକଥର କିନ୍ତୁ ଅନୁଭବ କରୁଥାଏ ମୁଁ ନୂତନ ବିମୂର୍ତ୍ତି ଯେପରି ଜନ୍ମ ପାଉଛି ମୋ ସମ୍ମୁଖରେ—ବିଶୃତି ହେଇ ସୁନ୍ଦର, ଅନୁପମ, ଅତୁଳନୀୟ ଭାବରେ ସୁନ୍ଦର ।

କାହିଁକି କେଜାଣି, ମୋର ବିଶେଷ ଅନୁରାଗ ସୂର୍ଯ୍ୟଙ୍କ ପ୍ରତି ! ଏମିତିକି 'ସୂର୍ଯ୍ୟ' ନାମଟି—ଏଇ ସୁମଧୁର ଗମ୍ଭୀର ଶବ୍ଦଟିକୁ—ଏହାର ଧ୍ୱନିର ଐଶ୍ୱର୍ଯ୍ୟକୁ ଭଲପାଏ ମୁଁ । ପ୍ରୀତିକର, ଗଭୀର ଭାବରେ ପ୍ରୀତିକର ମୋ ପାଖରେ ଏହା—ଭଲପାଏ ମୁଁ ଆଖିଦିଓଟି ବୁଜିଦେଇ ମୋର, ଉଷ୍ଣ ରଶ୍ମି ପ୍ରସ୍ରବଣ ଆଡ଼କୁ ବୁଲାଇନେବାକୁ ମୁହଁଟିକୁ ମୋର—ଅଥବା ଯେତେବେଳେ ସୂର୍ଯ୍ୟରଶ୍ମି ତୀକ୍ଷ୍ଣ ଖଡ୍‌ଗଭଳି

ପକ୍ଷି ଆସେ 'ବାଉର' ସନ୍ଧରେ, ଜଣାରେ କି ଡାଳପତ୍ରର ଗହଳ ଭେଦକରି କେଉଁଠି, ଭଲପାଏ ମୁଁ ଧରିବାକୁ, ଧରି-ଧରି ରଖିବାକୁ ପାପୁଲିରେ, ମୁଠାରେ, ମୋର ! ଅଜାଙ୍କର ମୋର ଖୁବ ସମ୍ମାନ ଥିଲା 'ସୂର୍ଯ୍ୟଙ୍କ' ଆଗରେ ଅବନତ ହେବାକୁ ଅସ୍ୱୀକାର କରି ବସିଲେ ଯିଏ, ସେଇ ପ୍ରିନ୍ସ ମିଖାଏଲ ଚର୍ଣ୍ଣିଗୋଭସ୍କି ଓ ବୋୟାରନ୍ ଫିଓଡରଙ୍କ'' ପ୍ରତି । କିନ୍ତୁ ଠିକ୍ କଳ୍ପନାରେ ଦେଖିଥିଲି ମୁଁ—ନିଷ୍ଠୁର, ପୈଶାଚିକ ଦୁରାତ୍ମକ ସେମାନେ,—ହତାଶାରେ ଚିର 'ତାମସ' ଖବରେ କଳଙ୍କିତ କାପ୍ସି ସେମାନେ,—ଘାଘଡ଼ରେ ପୂର୍ଣ୍ଣ ।......... ଦୃଷ୍ଟି ସବୁ ତାଙ୍କର, ମୋରଦୋଭସ୍କାର କୃଷକମାନଙ୍କ ଭଳି । ଏଣୁ ସୂର୍ଯ୍ୟ ଯେତେବେଳେ ଉଇଁ ଆସୁଥିଲା ବନ ପ୍ରାନ୍ତରରେ ମେଲେଇ ଦେଇ ରଶ୍ମି, ତାର ଅଜାଣତରେ ମନଟି ମୋର ପୂରି ଉଠୁଥିଲା ଅପୂର୍ବ ପୁଲକରେ ହସଟିଏ ଉକୁଟି ଉଠୁଥିଲା ଓଠରେ ମୋର ।

ମୁଣ୍ଡ ଉପରେ ମୋର ଘୁର୍ ଘୁର୍ କରୁଥିଲା ଚିରହରିତ୍ ଗଛଗୁଡ଼ିକ,—ରଦ୍ଧ ରଦ୍ଧ ଶାଖାକୁ ସବୁ ଝଟରେଇଦେଇ ଶିଶିରର କଣିକାମାନ । ତଳେ ତଳେ ଅଗଡ଼ାଳ ଆଉ କୁଆଁପତ୍ରଗୁଡ଼ିକର ନିବିଡ଼ ଛନ୍ଦାଛନ୍ଦ—ସେଇ ଜାଲି ଉପରେ କାକରର ରୂପେଲି କମକୁଟମୟ ପୁଷ୍ପହୀନ 'ଲେସ' କାମଗୁଡ଼ିକ କ୍ଷଣେକ୍ଷଣକେ ନିଭିଯାଇ ଝଳି ଉଠି ଝଲସି ଯାଉଥିଲା ବିମୁଗ୍ଧ ଆଖି ଆଗରେ ମୋର । ବର୍ଷା ମାସରେ ନାଲିଅସିଆ ଧୂସରିଆ ବୁଦାକୁ ବୁଦା ଘାସ ନିଶ୍ଚଳହୋଇ ଲେଟିଥାଏ ତଳେ ! ସୂର୍ଯ୍ୟ କୁଇଁ ଦେଲାମାତ୍ରେ ବେଶ୍ ଧରି ହେଉଥାଏ, ଚେଇଁ ଚେତା ପାଇ ଟିକେ ହଲି ଉଠୁଥାଏ ଯେମିତି—ବଞ୍ଚିବା ପାଇଁ ଶେଷଚେଷ୍ଟା କରୁଥାଏ ବୋଧହୁଏ !

ଚେଇଁଲେ, ଉଠିପଡ଼ିଲେ ଚଢ଼େଇଗୁଡ଼ିକ ! କଅଁଳ ପରର ପେଣ୍ଡୁ ଗୁଡ଼ିଏ—ଡେଇଁଲା ଗଡ଼ ଗଡ଼ ବାଡ଼େଇ ହେଲା ଖାଲି—ଗ୍ରେଟ ଗ୍ରେଟ ମାଉଁସିଆ ମାଉଁସିଆ 'ଥାକୁଲ ଥାକୁଲ' ଗୋଲଗାଲ ଚଢ଼େଇ ସବୁ—ଜୋଧୀ କାଠହଣା କାଟସ୍ତ ଚଢ଼େଇ ପୁଣି ପାଇନ୍ ଗଛର ଶିଖରେ ଡେନକୋଣିଆ ଫଳଗୁଡ଼ିକୁ ଖୁମ୍ପିଲାଗିଲେ ଜୋର୍ ଜୋର୍—କେଉଁଠି ଡାଳଆଗରେ ବସି ବାଦାମ ଛଡ଼େଇ, ଚଟେଇଟା ଦେଖ! ଝାଡ଼ି ପରକୁ ନିଜର ଖୁମ୍ପି ଖୁମ୍ପି ଘଣସ୍ୱାକୁଳ ଆଡ଼ଗୃହାଣୀ ହାଣିଲା ଡୋଳା କାଢ଼ି କାଢ଼ି, ମୋ ଜାଲ ଉପରେ ! ହଠାତ୍ ଉପଲବ୍ଧିରେ ଆସିଲା ମୋର—ସମୁଦାୟ ଜଙ୍ଗଲଟା—ବନସ୍ଥଳୀଟା—ମୁଖର ହୋଇ ଉଠିଲା 'ଶତସହସ୍ର' ପକ୍ଷୀର କଳରବରେ । ପୂର୍ଣ୍ଣହୋଇ ଉଠିଲା—ସବୁଠାରୁ ବଳି ନିର୍ମଳ ନିର୍ଦ୍ଦୋଷ ଆଉ ପବିତ୍ର, ବାସ୍ତବତାରେ ତତ୍ପର-ତାରରେ—ସେଇ ଜୀବଗୁଡ଼ିକର, ଯେଉଁମାନଙ୍କର ପ୍ରତିରୂପରେ ହିଁ ସମସ୍ତ ପାର୍ଥିବ ସୌନ୍ଦର୍ଯ୍ୟର ସ୍ରଷ୍ଟା ମନୋଜ୍ଞ 'ପୁଷ୍ପମାଳ' ଜନକ ମନୁଷ୍ୟ, ନିଜର ଆନନ୍ଦ

ପାଇଁ ସୃଷ୍ଟି କରିଛ ପକ୍ଷୀ, କେତେ ଅପ୍‌ସରୀ, କେତେ ଭୂତ, ଦୈତ୍ୟ, କେତେ ଦେବଦୂତ—ଆଉ କେଜାଣି କେତେ ସ୍ୱର୍ଗର ଜୀବ, ଧର୍ମ ଦେବତା ବି !

ଚଢ଼େଇ ଧରିବାଟା, ଏଣୁ କେତେ କରୁଣ କେତେ ଦୁଃଖଦ ନ ଥିଲା—ପଞ୍ଜୁରୀରେ ବନ୍ଦୀକରି ରଖିବାଟା ସେହି ସୁନ୍ଦର ଅସହାୟ ଜୀବଗୁଡ଼ିକୁ କେତେ ଲଜ୍ଜାକର ବା ନ ଥିଲା ! ସେମାନଙ୍କୁ ଦେଖି ଦେଖି ହିଁ ଖାଲି ନ ଅସୀମ ଆନନ୍ଦରେ ଭରି ଉଠୁଥିଲା ଛାତିଟି ମୋର !—ପ୍ରକୃତରେ ବିହ୍ୱଳହୋଇ ଯାଉଥିଲି ମୁଁ । କିନ୍ତୁ ଶିକାରୀର ଉତ୍ସାହ ଆଉ ଅର୍ଥ ଉପାର୍ଜ୍ଜନର ଲିପ୍‌ସା, ଆଖିରେ ପାସଙ୍ଗରେ ପଡ଼ୁଥିଲା ବା କେଉଁଠି ହୃଦୟର 'କରୁଣା' ।

ଚଢ଼େଇଗୁଡ଼ିକର ଚତୁରତା ବେଶ କୌତୂହଳ ଲାଗୁଥାଏ ମତେ । କେଳ ଚଢ଼େଇଟିଏ—ପାଡଶୁଆଟିଏ ? ଯନ୍ତ୍ରାଟିକୁ ନିରେଖି ନିରେଖି ଦେଖୁଥାଏ ଦୂରରୁ - ଖୁବ୍ ମନଧ୍ୟାନ ଦେଇ ଯେମିତି ! ସେଥିରେ ବିପଦ ଆପଦ କିଛି ଥିବ ନିଶ୍ଚୟ ଏଇ କଥାଟି ଅନୁମାନ କରି ତା' ପାଖକୁ ଯାଉଥାଏ ସନ୍ତର୍ପଣରେ ସାବଧାନରେ ଗୋଟାଏ କଡ଼ରୁ—ଫାଶର କାଠି ଦୁଇଟି ଭିତରୁ ଅଧାର 'ମଞ୍ଜିଟିକୁ' ଖାଇ କୁଶଳୀ କାରିଗର ଭଳି ଏହି ଚଢେଇ ପାଡଶୁଆଗୁଡ଼ିକ ଗୁଲାଖି ସବୁ—ହେଲେ ଅତି ବେଶୀ, ସବୁ ଜାଣିବାକୁ ଗରଗର । କୌତୂହଳୀ—ଆଉ ତାଙ୍କର ଏହି ଗୁଣ ହିଁ ତାଙ୍କର ଧଂସର କାରଣ—ଏହି କୌତୂହଳ ହିଁ ଧଂସ ଆଣେ ତାଙ୍କର, ଧୀରଷ୍ଟିର 'ମାଲଫିନଶ୍' ଗୁଡ଼ାକ ବୋକା, ଦଳକୁ ଦଳ ସୁଅଭଳି ମାଡ଼ି ଆସନ୍ତି ମୋ ଜାଲ ଭିତରକୁ—ଠିକ୍ ଖାଇସିଇ ମୋଟମାଟ ସୃଷ୍ଟି 'କଡଲେକ' ସବୁ ଗିର୍ଜାକୁ ଗଲାଭଳି । ମୁଁ ଯେତେବେଳେ ଘୋଡ଼ଣିଟା ମଡେଇ ଦେଉଥାଏ ତାଙ୍କ ଉପରେ—ତାଟକା ହୋଇ ଯାଉଥାନ୍ତି ସେମାନେ ଡୋଳାଗୁଡ଼ାକ ଗଡେଇ ଗଡେଇ ଆଖିରେ—ମୋଟା ମୋଟା ଥଣ୍ଟରେ ମୋ ଆଙ୍ଗୁଠିଗୁଡ଼ାକୁ ଖୁମ୍ପି ଖୁମ୍ପି । କିନ୍ତୁ ଶାନ୍ତଭାବରେ ଗମ୍ଭୀର 'ରାଜକୀୟ' ଭଙ୍ଗୀରେ ଗୁଲି ଗୁଲି ଆସି ଜାଲରେ ପଶି ଯାଉଥାଏ ବଗବଲ । ଫାଶ ସାମନାରେ ଉଞ୍ଚରେ ଅନେକ ସମୟ ଯାଏ ବସିରହେ କଜଲପାତି ଜାତୀୟ, ଚମତ୍କାର ଚଢେଇଟି,—ସେଇଟିର ସରିସମ ନଥାଏ କୋଉଠି !—ଓହାରିଆ ଈଷତ ଲମ୍ବା ଲଞ୍ଜ—ଉପରେ ଭରି ଦେଇ ଚଳ ଚଳ ଲମ୍ବା ଚଞ୍ଚୁଟିକୁ ଏକରୁ ସେକର ଧୀରେ ଧୀରେ ଅନାଇ ରହୁଥାଏ ଏକ ଆଖିରେ ! ଏହାର ଖାଦ୍ୟ ହେଉଛି - କାଠହଣା ଭଳି । ଏ ଗଛର ଡାଳୁ ଉପର ଉପରୁ ତଳ ହୁଏ—ଆଉ ସବୁବେଳେ ଦୌଡ଼ୁଥାଏ ଅଥୟ ହୋଇ 'ପାଡଶୁଆ' ପଛେ ପଛେ ପ୍ରାୟ—ଏହି ପାଉଁଶିଆ ଗ୍ରେଟ ପକ୍ଷୀଟିଏ କଣ ଗୋଟାଏ କିଛି ଆତଙ୍କପ୍ରଦ, ବିରକ୍ତିକର ଥାଏ କେମିତି—ଏତେ ଏକୁଟିଆ ନିଃସଙ୍ଗ ଏଇଟି ସମସ୍ତଙ୍କ ସ୍ନେହରୁ ଆଦରରୁ ବଞ୍ଚିତ ଆଉ କିଏ ସେ ଭଲ ପାଉ ନ ଥାଏ କାହାକୁ ବି । କୁଣ୍ଡାଖାଇ ପରି ଏ ବି ସ୍ୱୈର କରି ନିଏ—ଗ୍ରେଟ ଗ୍ରେଟ ଚକ୍ ଚକ୍ ପଦାର୍ଥଗୁଡ଼ିକୁ ଲୁଚେଇ ଦିଏ, କିହାତ 'ସ୍ୱୈରଣୀ' ଚଢ଼େଇ ଏ !

ଦିନ ଦିପହର ବେଳକୁ ମୋ କାମ ସରି ଆସେ—ବଣିବାଟ, ପଡିଆ ପଦର ଭିତରେ ମୁହାଁଏ ମୁଁ ଘରକୁ । ଗାଆଁ ବାଟେ ବଡ଼ ସନ୍ତକରେ ଧରିଥାନ୍ତି ଯଦି ଆଉ ସବୁ ପିଲାଏ ନଇଲେ ଗାଆଁର ହତାଶ ଉଦ୍ଦଣ୍ଡିଆ ବାଳୁଙ୍ଗା—କେତେକ ମୋତେ ଛଡ଼େଇ ନେଉଥାନ୍ତି 'ଫାଶକାଠି' ଯନ୍ତ୍ରାକୁ ମରି ! ତିକ୍ତ ଅଭିଜ୍ଞତାରୁ ଜାଣି ପାରିଥାଏ ଏତିକ—ସେମାନଙ୍କର ଏଇ ଖାଣ୍ଟି ପ୍ରକୃତି !

ଘରେ ପହଞ୍ଚିଲା ବେଳକୁ ମୁହଁ ସଞ୍ଜ—ଝୋଲି ମାରି ଯାଉଥାଏ—ମନେ ଥକ୍କା ଲାଗୁଥାଏ କିନ୍ତୁ ମନଟା ପୂରି ଉଠୁଥାଏ କିଛି ହେଲେ ପାଇଛି, ଲାଭ କରିଛି ରୋଜଗାର କରିଛି ମୁଁ, ଜ୍ଞାନ ଆଉ ବଳରେ ବଢ଼ି ଉଠିଲିଣି ମୁଁ—ଏଇ ଭାବନାଟା ଏଇ ନୂଆ ଶକ୍ତି ବଳରେ ସମର୍ଥ ହେଉଥାଏ ମୁଁ—ନୀରବରେ ଶୁଣିଯିବି ଅଜାଙ୍କର ଅଣ୍ଟା ପରିହାସଗୁଡ଼ାକ ! ମୋର ଏ ଶାନ୍ତଭାବ ଦେଖି ଗମ୍ଭୀର ଭାବରେ ଉପଦେଶାତ୍ମକ ଆଲୋଚନା ଆରମ୍ଭ କରି ଦିଅନ୍ତି ଅଜା—

"ବହୁତ ହେଲା, ଏଇ ବୋକାଙ୍କ କାରବାର—ତୁଚ୍ଛା ଅଳଶା କାମ, ବହୁତ ହେଲା, କହି ରଖୁଛି ! ଚଢ଼େଇ ଧରି କେହି କେବେ ସଂସାରରେ ବାଟ କରିନି, ମଣିଷ ହୋଇନି ! ନିଜ ପାଇଁ ଗୋଟାଏ ଜାଗା ଦେଖି ନେ—ସେଠି ବଢ଼ି କରି ମଣିଷ ହେବା ପାଇଁ ବୁଦ୍ଧି ଖଟା, ଶ୍ରେଷ୍ଠ ବାଟେ କାମରେ ମାତିବା ପାଇଁ—ମଣିଷ ଜନ୍ମଟା ନୁହେଁ । ଭଗବାନଙ୍କର ବିହନ ହେଉଛି ମଣିଷ— ଭଲ ଫଳ ଦେବ, ଭଲ ଶସ୍ୟ ହେବ, ଏଇ ହେଉଛି ସେ—ତାକୁ ଭଲ ବ୍ୟବହାରରେ, ଭଲ କାରବାରରେ ଲଗାଅ ତିନିଗୁଣ ବଢ଼ିଯିବ ତାର ଗୁଣଟା ! ତୁ—କିଣ ଭାବିଛୁ କିଣ ବଞ୍ଚିବାଟା, ଜୀବନଟା ଧରି ରହିବାଟା ସହଜ ? ଶକ୍ତ, ଖୁବ୍ ଶକ୍ତ । ଖୁବ୍ କଠିନ ବଞ୍ଚିବାଟା ! ଜଗତଟା ଅନ୍ଧାର—ଘୋର ଅନ୍ଧାର ! ଗୋଟି ଭଲ ଠିକ୍—ପ୍ରତ୍ୟେକ ଲୋକକୁ ଆଲୁଅ ଦେଇ ଉଜଳ କରିବାକୁ ହେବ ! ନିଜ ପାଇଁ ଆଗ !—ସମସ୍ତେ ଆସେ ଜନ୍ମ ହୋଇଛେ ଦିଶ ଦିଶଟା ଆଙ୍ଗୁଠି ନେଇ—କିନ୍ତୁ କିଏ ନ ବୁଝେଁ ତାର ହାତ ଲମ୍ବି ଯାଉ, ଛୁଇଁଯାଉ ସବୁଠୁ ବଳି—କିଏ ନ ଗୃହେଁରେ ସବୁଠୁ ବଳି ସମସ୍ତଙ୍କଠୁ ବଳି ବେଣୀ ଫୁଲାଏ ଉଠେଇବ—କବଳିତ କରିବ ନିଜପାଇଁ । ବଳି କମାଇବାକୁ ହେବ, ବଳୁଆ ଟାଣୁଆ ହେବାକୁ ହେବ—ଯଦି ବଳୁଆ ନୋହୁଁ—ଚତୁର ହେବାକୁ ହେବ । ଦୁର୍ବଳିଆ ଯିଏ, ଧକ୍କିଆ, ପାତଳା ଯିଏ ବିଫଳ ହେବଇ ହେବ । ଲୋକଙ୍କ ସାଙ୍ଗରେ ଚଳିବାକୁ ହେବ ଚଳ, ବନ୍ଧୁଭାବରେ, କିନ୍ତୁ ଦେଖ୍, ମନେରଖ ଏକୁଟିଆ ତୁ, ସାଙ୍ଗସାଥୀ କେହି ନାହାନ୍ତି, କିଏ ନୁହନ୍ତି ତୋର । ଶୁଣ, କାନ ଡେରି ଶୁଣ ସମସ୍ତଙ୍କୁ—ଶୁଣ, ଯିଏ ଯାହା କହୁଛନ୍ତି, କିନ୍ତୁ ବିଶ୍ୱାସ କର ନା କାହାକୁ । ଯଦି ବିଶ୍ୱାସ କରୁ ନିଜ ଆଖିକି ତୋର—ମାପଟା ତ ଦେଢିଆ ଅଢେଇଆ ଧରିବ, ବଙ୍କାଡ଼ଙ୍କା ହେବ । ଆଉ ଦେଖ୍ 'ମୁହଁ ବନ୍ଦ' ଲୋକ ହେବୁ କଥା କହିବୁ, ପାଟି ଫିଟେଇବୁ ଅତି ଅଳ୍ପ, କୃପଣ ଭାବରେ, ବୁଝିଲୁ—କଥା ସବୁ ସହର ନଗର ଗଢ଼ିନି, ଗଢ଼ିଛି ଟଙ୍କା ଆଉ ହାତୁଡ଼ି । ତୁ ବାଣିକସ୍ମାର ପିଲା

ନୋହୁଁ କି କାଲି ମୂକ ଜାତିର ନୋହୁଁ—ସେମାନଙ୍କର ଏକମାତ୍ର ଧନ ହେଉଛି ଉତ୍‌କୁଣ୍ଠୀ ଆଉ ମେଣ୍ଢା—"

ଗୋଟାକ ଯାକ ସନ୍ଧ୍ୟା ସେ ଏମିତି କହି ଯାଉଥାନ୍ତି—ତାଙ୍କ କଥାଗୁଡ଼ିକ ମୋର ମନେ ରହି ଯାଇଥାଏ—ସେ ସବୁର ଧ୍ୱନିଟା ଭଲ ଲାଗୁଥାଏ କିନ୍ତୁ ଅର୍ଥ ଯେନି କେମିତି ସଂଶୟ ଆସୁଥାଏ । ସେ ଯାହା କହୁଥାନ୍ତି, ସେଥିରୁ ଧାରଣା କରି ନେଇଥାଏ—ଜୀବନଟାକୁ କଷ୍ଟକର କରି ଦେଇଛି ଯୋଡ଼ିଏ ଶକ୍ତି—ଭଗବାନ ଆଉ ଜନସାଧାରଣ ।

ଆଇମା ଝରକା ପାଖରେ ବସି ବୁଣାବୁଣି ପାଇଁ ସୂତା କାଟୁଥାଏ ତାକୁଡିରେ—ତାର ସୁଦକ୍ଷ ଆଙ୍ଗୁଳିଗୁଡ଼ିକରେ ସାଇଁ ସାଇଁ ଗୀତ ଗାଇ ଘୂରୁଥାଏ ତାକୁଡ଼ିଟି । କିଛି ସମୟ କାନ ପାରିଲା ପରେ ଅଜାଙ୍କ ବକ୍ତୃତାକୁ ମତାମତ ଦିଏ ସେ ।

"ସବୁ ହେବ, ସବୁ ହୁଏ ମ—ଠାକୁରଙ୍କ ମାଆ, ମାଆ ଯେମିତି ଚାହିଁବେ, ଯେମିତି ଚାହାନ୍ତି ?"

"କଣ କହିଲୁ ?" ପାଟି କରି ଉଠନ୍ତି ଅଜା ! "ଭଗବାନ ? ଠାକୁରେ ? ମୁଁ କଣ ଭୁଲି ଯାଇଛି ଭଗବାନଙ୍କୁ ? ମୁଁ କି ଜାଣେ—ଠିକ୍ ଜାଣେ ଭଗବାନଙ୍କୁ । କଣ ଭାବିଚୁ ଭଗବାନ କଣ ଖାଲି ବୋକା ଲୋକଗୁଡ଼ାକରେ ଭର୍ତ୍ତି କରି ଦେଇଛନ୍ତି ପୃଥିବୀଟାକୁ—ନକେ ଗୋଟାଏ ମସ୍ତ ବୋକୀ ବୋଲି ତୁ !"

—ମତେ ଲାଗୁଥାଏ ସୈନିକ ଆଉ କଷାକଙ୍କ ଭଳି କେହି କେବେ ଜୀବନ କଟାଇ ନ ଥାଏ ଭଲରେ, ସ୍ୱଚ୍ଛନ୍ଦ ଭାବରେ ! ସେମାନଙ୍କର ଜୀବନ ଥାଏ ଆନନ୍ଦରେ ଭରପୂର—ସରଳ ସୁନ୍ଦର ସୁନିର୍ମଳ । ସକାଳଗୁଡ଼ିକରେ ସେମାନେ ଦେଖାଦିଅନ୍ତି ଆମ ଘର ସାମନାଗୋହିରୀର ଆର ପାଖରେ—ଦୂରରେ !—ବିକ୍ଷିପ୍ତ ହୋଇଯାନ୍ତି ପ୍ରାନ୍ତରଟିରେ—ତା'ପରେ ଆରମ୍ଭ କରନ୍ତି ଉତ୍ତେଜନାମୂଳକ ଜଟିଳ ଖେଳାଖେଳି ସବୁ କଣ—ବେଶ୍ ଚମକ ଆଉ ଉତ୍ତେଜନା ଆସୁଥାଏ ଏହି ଦ୍ରୁତଗାମୀ ଲୋକଗୁଡ଼ିକଙ୍କ ଦେହରେ ଧଳା କାମିଜ—ଆନନ୍ଦରେ କେମିତି ଧାଆନ୍ତି ସବୁ ରାଇଫଲ ହାତରେ ପଡ଼ିଆଟିରେ ଅଦୃଶ୍ୟ ହୋଇଯାନ୍ତି ସବୁ ଉପତ୍ୟକା ଭିତରେ—ତା'ପରେ ହଠାତ୍ ତୁରୀଟା ବାଜି ଉଠିବା ମାତ୍ରେ, ପଡ଼ିଆ ଉପରକୁ ଛୁଟି ଆସନ୍ତି—ପୁଣି ହୁର୍‌ରେ ବୋଲି ଉଚ୍ଚ ପାଟିରେ ଡାକଛାଡ଼ନ୍ତି । ସଙ୍ଗେ ସଙ୍ଗେ ଢ଼୍ରମଯାକରୁ ବାଜି ଉଠେ, ସେ କି ହୃତ୍‌କମ୍ପକାରୀ ଭୟଙ୍କର ତାଳରେ, ଛୁଟନ୍ତି ସେମାନେ ସିଧାସଳଖ, ଆମର ଗଳି ଆଡ଼କୁ—ସଙ୍ଗୀନଗୁଡ଼ାକ ଚକ୍ ଚକ କରୁଥାଏ ଖରାରେ—ସତେ ଯେପରି ସେମାନେ ଧାଇଁ ଆସନ୍ତି ପାଲ ଗଦାଟି ଭଳି ଓଲଟେଇ ଦେବେ ଆମ ଘରକୁ, ଏଇ ଲକ୍ଷ୍ୟରେ !

ମୁଁ ବି 'ହୁର୍‌ରେ' ପାଟିକରି ଉଠେ, ଦୌଡେ ତାଙ୍କ ପଛେ ପଛେ ଠିକ୍—ସେଇ ଭୟଙ୍କର ଗୁରୁଗୁରୁ ଧ୍ୱନିଟା, ଢ଼୍ରମଗୁଡାକର ମନରେ ଜଗେଇ

ଧଏ, ଅଦୃଶ୍ୟ ଆକାଂକ୍ଷା ଗୋଟାଏ—କଣ କିଛୁ କାହାକୁ ଧ୍ୱଂସ କରିଦେବାକୁ—ଘାଙ୍ଗି ଚୂରମାର କରିଦେବାକୁ ବଡ଼ଟାଏ ଡ ନଇଲେ ବା ନିମ୍ମଳ ପ୍ରହାର ଦେବାକୁ କାହାକୁ ହେଲେ !

ଛୁଟି ବା ବିରତି ସମୟରେ ସୈନିକମାନେ ମତେ ଚର୍ଚ୍ଚା କରନ୍ତି "ମାଗୋରକା" ଧୂଆଁପତ୍ର ପିକା ଟାଣିବାକୁ ଦେଇ ଆଉ ଦେଖାନ୍ତି ସେମାନଙ୍କର ରାଇଫଲ୍‌କୁ ସବୁ, ସେମାନଙ୍କ ଭିତରୁ ଜଣେ ଦ'ଜଣ କଏ ସଙ୍ଗୀନଟାକୁ ଛୁଆଁଇଦଅନ୍ତି ମୋ ପେଟରେ—ଖିପ୍ରଗତାରେ ପାଟିକରି ଉଠନ୍ତି ।

"ଭୂଷିଦଅ—ଅସରପାଟିକୁ !"

ଖସ୍‌ରେ ଝକ୍‌ ଝକ୍‌ କରି ଉଠେ ସଙ୍ଗୀନଟା, ମୋଡ଼ି ମୋଡ଼ି ହୁଏ ଦଂଶନ କରିବାକୁ ଉଦ୍ୟତ ସାପଟାଏପରି । ଗ୍ରୁଡଟା ଥରିଯାଏ ମୋର, ଭୟରେ କିନ୍ତୁ କେମିତି ସୁଖକର ହୁଏ ଅନୁଭୂତିଟା —

'ମୋର୍ଦ୍ଦୋଭିଆ'ର ଡ୍ରମବଜାଳି ପିଲ୍‌ଟିଏ ମତେ ଶିଖାଇଦେଲା—ଗ୍ରେପକାଠି ଦୁଇଟିକୁ ଚଳାଇବାକୁ ହେବ କେମିତି ! ଆଗ ସେ ଧରିପକାଇ ନିଜ ମୁଠା ଭିତରେ ରଖିଲା ମୋର ହାତକୁ, ତାକୁ ଚପୁଡ଼ିଲା ଭଳି ଚିପିଲା ଏମିତି ଯେ ଆଙ୍ଗୁଳିଗୁଡ଼ାକ କଟକଟ ହୋଇ ଉଠିଲା—କଷ୍ଟ ହେଲା ଖୁବ୍—ତା'ପରେ ଗ୍ରେପକାଠି ଆଣି ଭର୍ତ୍ତି କରିଦେଲା ମୋର ଆଙ୍ଗୁଳିଗୁଡ଼ାକ ସନ୍ଧିରେ ।

"ବଜା-ବଜା ସ୍ୱାକୁ ଏଇଥରେ ! ଏଁ-ପୁଣି-ଥରେ-ପୁଣି ତା'-ତା'—ତା' ତାଆ ଆ ଆ ଆ ! ବାଁ ପଟଟା ସୋଜା—ସରଳଆ ହାଲୁକା—ଡ଼ାହାଣଟା ଶକ୍ତକରି—ଟାଣ କରି—ହଁ ବଜା—! ତା-ତା-ତା-ଥା-ଆ-ଆ ଶୁଖିଲା ଖାପୁଖାପୁଆ ସ୍ୱରରେ ଡାକୁଥାଏ—ଚଢେଇ ଅଖିରେ ତାର ମତେ ଏକ ଲୟରେ ଅନେଇ ଅନେଇ ଡାକୁଥାଏ ଆକାଶଛୁଆଁ ପାଟିରେ ।

ସୈନିକମାନଙ୍କ ଡ୍ରିଲ ଶେଷ ହେବାଯାଏ ମୁଁ ଦୌଡ଼ୁଥାଏ, ଧାଉଁଥାଏ ସେମାନଙ୍କ ସଙ୍ଗରେ ସେତେବେଳେ ସେମାନଙ୍କ ସଙ୍ଗରେହିଁ 'ମାର୍ଚ୍ଚ' କରି ବୁଲୁଥାଏ ସମସ୍ତ ସହରଟା ପ୍ରାୟ ସେମାନେ ଛାଉଣିକୁ ଫେରିବା ପର୍ଯ୍ୟନ୍ତ—ସେମାନଙ୍କର ଉଚ୍ଚରୋଳରେ ପ୍ରାଣୋନ୍ମାଦୀ ପ୍ରବଳ ଗୀତବୋଲରେ ମୁଗ୍ଧ ହୋଇ ତାକୁ ହିଁ ଶୁଣି ଶୁଣି ସେମାନଙ୍କର ନିଷ୍କପଟ ଉଦାର ସରଳ ମୁହଁଗୁଡ଼ିକୁ ନିଷ୍ପଲକ ଆଖିରେ ଦେଖି ଦେଖି ବୁଲୁଥାଏ ମୁଁ, ଲକ୍ଷ୍ୟ କରୁଥାଏ ଠିକ୍- କେତେ ସତେଜ କେତେ ନୂତନ ଆଉ ଉଜ୍ଜ୍ୱଳ ଚକ୍ ଚକ୍ ଦିଶୁଥାନ୍ତି ସେମାନେ—ସଦ୍ୟନିର୍ଗତ ପାଞ୍ଚପଇସିଟିମାନ ପରି !

ଏହି ସାନ୍ଧ୍ୟରବରେ ସୁନିବଦ୍ଧ ଲୋକସମୂହ, ରୂପରେ ସମାନ ସମସ୍ତେ—ରାସ୍ତାରେ ବହି ଯାଉଥାନ୍ତି ଆନନ୍ଦରେ—ମଧୁର ମାଦକତାରେ—ପୁଲକାଇ ଦେଇ ହୃଦୟକୁ ଦର୍ଶକର—ପ୍ରାଣରେ, ଜଗାଇଦେଇ, ଜନ୍ମାଇଦେଇ ଅଦମ୍ୟ ପିପାସା ! ଲମ୍ପି ଦେବାକୁ ସେହି ଜଳସ୍ରୋତରେ ! ସେହି ଲୋକଗୁଡ଼ିଙ୍କର ବୋଲ କିଛି ଭୟ ନ ଥାଏ କାହାର ପ୍ରତି !

କେଡ଼େ ନିର୍ଭୀକ ସେମାନେ, ସେ କି ସାହସର ସହିତ ସାମନା କରୁଥାନ୍ତି ପ୍ରତ୍ୟେକ ଲୋକଙ୍କୁ—ଯେ କୌଣସି ରାଜ୍ୟ କରି ପାରିଥାନ୍ତେ ସେମାନେ ଜୟ, ଯେକୌଣସିଠି ବିଜୟୀ ହୋଇ ପାରିଥାନ୍ତେ ଅକ୍ଳେଶରେ, ହାସଲକରି ପାରିଥାନ୍ତେ ଯାହା ଆକାଂକ୍ଷିତ ସେମାନଙ୍କର। ଆଉ ସବୁଠୁ ବଳି ବିଶିଷ୍ଟତା ସେମାନଙ୍କର କେଡ଼େ ସରଳ ନିଷ୍କପଟ, ଉଦାର ଦାୟିତ୍ୱ ସେମାନେ—

ହେନେ କିନ୍ତୁ ବିରତି ସମୟରେ ଗୋଟିଏ ଯୁବକ 'ନନକମିଶନଡ୍' ସାମରିକ ଅଫିସର ମତେ ବଢ଼େଇଦେଲେ ଗୋଟିଏ ସିଗାରେଟ୍।

"ନେ, ଟାଣ୍! ଧୂଆଁ ଟାଣ୍! ଗୋଟାଏ ବିଶେଷ ଧରଣର ସିଗାରେଟ୍ ଏଇଟା ତୋତେ ବୋଲି ଦେଉଛୁ। ଆଉ କାହାକୁ ଦିଅନ୍ତି ନାହିଁ କେବେହେଲେ—ଏଡ଼େ ବଢ଼ିଆ ଟୋକାଟାଏ ତୁ!"

ଜଳେଇଲି ସେ ସିଗାରେଟ୍‌ଟାକୁ। ପଛକୁ ଘୁଞ୍ଚିଗଲା ଯୁବକ ଅଫିସରଟା ଆଉ ହଠାତ୍ ଗୋଟାଏ ଲାଲ ଶିଖାଉଠି ମତେ ଅନ୍ଧାର କରିଦେଲା ଯେମିତି—ଆଉ ତତେଇ ସିଝେଇ ଦେଲା ମୋର ଅଙ୍ଗୁଳିଗୁଡ଼ାକୁ, ନାକ ଆଉ ଭୂରୁ ହଲକୁ ପାଉଁଶିଆ ଉତ୍କଟ ଗନ୍ଧର ଧୂଆଁଟା! ଛିଙ୍କିଲି, ଛିଙ୍କିଲି ମୁଁ—କାଶିଲି, କାଶିଲି ମୁଁ ଖାଲି। ଅନ୍ଧ ହୋଇ ଜଡ଼ହୋଇ ଗୋଟାଏ ଜାଗାରେ ଗୋଡ ବାଡେଇ ଡେଇଁଲି ଖାଲି—ମୋ ଦୃଶ୍ୟପଟେ ସେତେବେଳେ ଘେରିଗଲେ ଆସି ଗୋଟାଏ ହିବଡ଼ ଲୋକ-ବଳୟ ସୃଷ୍ଟିକରି ସୈନ୍ୟଗୁଡ଼ାଏ, ହସିଲେ ସବୁ ଅମୋଦରେ ହୋହୋ ହୋଇ। ଘରକୁ ମୁହାଁଇଲି ମୁଁ, ପଛରୁ ଶୁଣୁଥାଏ କାନରେ ବାଜୁଥାଏ, ସେମାନଙ୍କର ହସ ଆଉ ହୁସିର ଶବ୍ଦ ଆଉ ମେଷପାଳକ ଗୁଲୁକର ସାଇଁ ସାଇଁ ଯେମିତି। ଆଙ୍ଗୁଠି-ଜଳୁଥାଏ, ପୋଡୁଥାଏ ମୁହଁଟା—ସର ସର ହୋଇ ଲୁହ ଝରି ପଡୁଥାଏ ଆଖିରୁ କିନ୍ତୁ ମତେ ବେଶୀ କଷ୍ଟ ଦେଉଥାଏ କେମିତି ଗୋଟାଏ ଦୁର୍ବୋଧ୍ୟ ବେଦନାମୟ ବିସ୍ମୟ। କାହିଁକି, କାହିଁକି ସେମାନେ ଏଭଳି କାର୍ଯ୍ୟ କଲେ ମୋ ପ୍ରତି? ଏତେ ଭଲଲୋକଗୁଡାଏ, କାହିଁକି ବା ଏମିତି କାମ ଏଡ଼େ ମଜା ଲାଗିଲା ସେମାନଙ୍କୁ? କି ଅମୋଦ ପାଇଲେ ସେଥିରୁ? ଘରେ ପହଞ୍ଚି ଉଠିଗଲି ଗ୍ରୁଭ ଉପର ଟୁଙ୍ଗି ଘରଟିକୁ—ସେଠି ବସି ଅନେକ ସମୟଯାଏ ମନେ ପକାଇ ଭାବିଲି ଖାଲି ମୋର କ୍ଷୁଦ୍ର ଜୀବନକାଳ ମଧ୍ୟରେ ଯେତେ ଯାହା ଯେଉଁଠି ଅବୋଧ, ନିର୍ଦ୍ଦୟତା ଦେଖିଥାଏଁ। ସେଠି ବସି ରହିଲି ଅନେକ ସମୟ ଯାଏ। ଗୋଟିକି ଗୋଟି ମନେ ପଡୁଥାଏ ମୋର କ୍ଷୁଦ୍ର ଜୀବନରେ ଯେତେ ଯାହା ନିର୍ଦ୍ଦୟତା ନିର୍ମମତା ଦେଖିଥାଏ, ଅକାରଣ ଅବୋଧ ସବୁ ବିଶେଷରେ ମୋ ସ୍ମୃତିପଟରେ ଅତି ବିଶଦଭାବରେ ଫୁଟି ଉଠିଥିଲା—ସାରାପୁଲର ସେଇ 'ଗେଡ଼ା' କ୍ଷୁଦ୍ର ସୈନିକଟି। ଜୀବନଭଳି ସତ ହୋଇ ଉଭାହେଲା ଆସି ମୋ ସାମ୍ନାରେ।

"କରେ ବୁଝି ପାରୁଚୁ!" ପଚାରିଲା ସେ।

କିନ୍ତୁ ଏହି ଘଟଣାଟି ପରେ ଖୁବ୍ ଶୀଘ୍ର ମତେ ହିଁ ପୁଣି ଦେଖିବାକୁ

ହେଲା ଆହୁରି ବେଶୀ ନିର୍ମମ, ଆହୁରି ବେଶୀ ପୈଶାଚିକ, ଜଘନ୍ୟ ଚୈତନ୍ୟ-ଲୋପକାରୀ କିଛି ।

କସାକ୍‌ମାନେ ରହୁଥାନ୍ତି ବାରାକ୍‌ରେ ସେପେସେରସ୍କାୟାସ୍ଲୋବୋଦା ପାଖରେ । ସେଠିକି ପ୍ରାୟ ଘନ ଘନ ଯାଆସ ଆରମ୍ଭ କରିଦେଲି । ସାଧାରଣ ସୈନିକଙ୍କଠୁ କସାକମାନେ ଥିଲେ ଅଲଗା ଧରଣର । ଆଉ ବିଶେଷରେ ଦକ୍ଷ ଅଶ୍ୱାରୋହୀ ଥିଲେ ବି ଜାକ ଜମକରେ ; ପୋଷାକ ପରିଚ୍ଛଦ ପିନ୍ଧୁଥିଲେ ବୋଲି, ସେତେ ନୁହେଁ ; ଅଲଗା ଥିଲେ ସେମାନେ କାରଣ କଥା କହୁଥିଲେ ସ୍ୱତନ୍ତ୍ର ଭଙ୍ଗୀରେ, ଗାଉଥିଲେ ଭିନ୍ନ ରୀତରେ ପ୍ରକୃତର ଗୀତସବୁ ଆଉ ଥିଲେ ବୋଲି ଚମତ୍କାର ନର୍ତ୍ତକ । ବେଳେବେଳେ ସଞ୍ଜ ଲାଗି ଆସିଲେ ଘୋଡ଼ାଗୁଡ଼ିକୁ ଖୁଆଇ ପିଆଇ ଠୁଳ ହେଉଥିଲେ ସବୁ ଅସ୍ତାବଳ ପାଖରେ । ଗ୍ଲେଟ ମେଣ୍ଢାଳିଆ ଲାଲ ମୁଣ୍ଡିଆ କସକଟି ଡେଉ ଢେଉକା କେଶଗୁଚ୍ଛକୁ ତାର ନଚେଇ ଗ୍ରୁଟିଦେଇ ପଛକୁ ଆରମ୍ଭ କରି ଦେଉଥିଲା ଗୀତ ବୋଲିବା—ଉଚ୍ଚ ସ୍ୱରରେ କ୍ଲାରିନେଟ୍ ଭଳି ଶବ୍ଦରେ । ଛୁଡ଼ା ହୋଇ ସଲଖ ଭାବରେ ଗଭୀର ଉତ୍ତେଜନାରେ ହଲଚଲ ନହୋଇ ଆଦୌ—ବୋଲି ଦେଉଥିଲା କୋମଳରେ, କରୁଣ ରାଗିଣୀରେ ଗୀତଟିଏ ଧ୍ୟାନମଗ୍ନ ଶାନ୍ତ ଡ଼ନ୍ ବା ନୀଳ ଡ୍ୟାନୁବ୍‌ଟି ଯେପରି । ବୁଜି ନେଉଥିଲା ଆଖି ଯୋଡ଼ିକୁ ତାର, ଉପାର ସେହି ବିହଙ୍ଗମଟି ଭଳି ଠିକ । ଅନେକ ସମୟରେ ଗାଏ, ପିଏ ଗାଏ ଆଉ ଖାଏ—ମୂର୍ଚ୍ଛା ଯାଇ ବା ପ୍ରାଣ ହରାଇ ଲୋଟି ନପିବା ଯାଏ ଧରାର ଧୂଳି ଉପରେ । ଗଳା ପାଖରେ କୁଣ୍ଡିଟି ଦର ଦର ଖୋଲା ତାର ଗଳା ହାଡ଼ ବ୍ରଞ୍ଜାର ସାଞ୍ଜ ସରଞ୍ଜାମ ପରି ସାମନାକୁ ବାହାରି ପଡ଼ୁଥିଲା ସେଇ ହାଡ ଦିଖଣ୍ଡି । ପ୍ରକୃତରେ ଲାଗୁଥିଲା ଗୋଟିକିଯାକ ଯେମିତି ସେ—ସମଗ୍ର ରୂପଟିକୁ ଯେପରି ତାର ଢଳା ହୋଇଛି ବ୍ରଞ୍ଜରେ, ଶକ୍ତି ନାହିଁ ଦେଖିବାକୁ କିଛି ବୋଲି କିଛି । ଦୃଷ୍ଟିଶକ୍ତିରୁ ବିରହିତ ସେ । ହାତ ଯୋଡ଼ିକୁ ଲହରାଇ ଶୂନ୍ୟରେ ସେ ସବୁ ଗୋଡରେ ତାର ଝୁଲୁଚି, ଦୋହଲୁଚି ଖାଲି—ସତେ ଯେମିତି ପାଦ ତଳରେ ତାର କିଶ୍ୱାସ ମାରି ଉଠୁଚି ପଡ଼ୁଚି ଥରୁଚି ଧରିତ୍ରୀଟା । ମନେ ହେଉଥିଲା ସେତେବେଳେ, ନାହିଁ, ସେ ଆଉ ନାହିଁ ; ମନୁଷ୍ୟ ହୋଇ ନାହିଁ ଆଉ । କାହାଲିଆର କାହାଲୀ, ଶିଂଘାବଜାଳୀର ଶିଂଘା, ମେଷ ପାଳକର ମୁରଲୀ ହୋଇ ଯାଇଛି ସେ । ବେଳେବେଳେ କଳ୍ପନାରେ ଭାବି ନେଉଥିଲି ମୁଁ ଏମିତି ଅବସ୍ଥାରେ ତାର—ପଡ଼ିଯିବ ଚିତ୍‌ହୋଇ । ପିଠି ମାଡ଼ି ପଡ଼ିଯିବ ସେ ତଳେ ଆଉ ଉଡ଼ିଯିବ ପ୍ରାଣବାୟୁ ; ପ୍ରାଣପକ୍ଷୀ ଉଡିଯିବ ତାର । ପ୍ରଣୟୀର ପକ୍ଷୀଟିଏ ଭଳି ଠିକ୍, ସେ ଯେ ଢାଳି ଦେଉଛି ସମୁଦାୟ ଆତ୍ମାଟିକୁ ତାର—ଉଜାଡ଼ିକରି ପ୍ରାଣକୁ ଅଜାଡ଼ି ଦେଉଛି ସମସ୍ତ ଶକ୍ତି, ସମସ୍ତ ବଳ ଗୀତଟିରେ—ଏଇ ଗୀତଟିରେ ।

ତାକୁ ଘେରି ତାର ସାଥୀମାନେ ଛିଡ଼ା ହୋଇଥାନ୍ତି । କେତେକ ପକେଟରେ ସବୁ କେତେକ ବା ଓସାରିଆ ପିଠିଗୁଡ଼ିକରେ ହାତରଖି ଛିଡ଼ା

ହୋଇଥାନ୍ତି କେମିତି ଗୋଟାଏ କଠୋରଭାବରେ ଏକଲୟରେ ଅନାଇ ରହି ତାର ବ୍ରଞ୍ଜ ମୁହଁଟିକୁ, ତାର ଡେଉ ଡେଉକା ହାତ ଦୁଇଟିକୁ । ନିଜେ ନିଜେହିଁ ଗାଉଥାନ୍ତି ସେମାନେ ସ୍ଥିର ଶାନ୍ତଭାବରେ, ପ୍ରଭାବପକା ସ୍ୱରରେ, ଗିର୍ଜାରେ ସମବେତଭାବରେ ସଙ୍କୀର୍ତ୍ତନ କଲାଭଳି । ଏମିତିକା ମୁହୂର୍ତ୍ତରେ କି ଶୃଙ୍ଖଳିତ ଅନାଡ଼ମ୍ବର ସମସ୍ତେ ଦିଶୁଥାନ୍ତି ସେମାନେ ପଟମୂର୍ତ୍ତିଗୁଡ଼ିଏ ପରି ସମାନ ସେମିତି ଭୟଙ୍କର ଆଉ ଶୀତଟା ଲମ୍ବିଯାଇଥାଏ ରାଜପଥଟିଏ ଭଳି—ପ୍ରଶସ୍ତ ଆଉ ସମତଳୀୟ କେତେ କେତେ ଯୁଗର ବଙ୍କତାରେ ଭରପୂର ହୋଇ ଶୁଣିଲାବେଳେ ତନ୍ମୟ ହୋଇ ଦିନଗତ ଭୁଲିଯାଉଥାଏ ମୁଁ ; ଜ୍ଞାନ ରହୁ ନ ଥାଏ ମୋର— ପିଲାଟିଏ କି ବୁଢ଼ାଟିଏପରି ସବୁ ପାସୋରହୋଇ ଯାଉଥାଏ କେମିତି । ଗାୟକ-ମାନଙ୍କର ସ୍ୱରଗୁଡ଼ିକ ଲୀନହୋଇ ଯାଉ ନ ଥାଏ ପ୍ରାନ୍ତରଟିରେ ଶରତ ରାତିଟିର ସୁରୁ ସୁରୁ ସପସପ ସୁରୁ ସୁରୁ ଆଗମନଟିକର ଅବିରାମ ଗତିଟି କାନରେ ନ ପଡ଼ିବା ପର୍ଯ୍ୟନ୍ତ ଆମର । ଷ୍ଟେପିର ଅବାରିତ ମୁକ୍ତିର ସ୍ୱପ୍ନ ଦେଖି ଦେଖି ରହି ରହି ନିଃଶ୍ୱାସ ପତନ ଯେତେ ଅଶ୍ୱଗୁଡ଼ିକର ! ହୃଦୟଟି ମୋର ଫୁଲି ଉଠୁଥାଏ— ଫାଟି ପଡ଼ିବ ଯେମିତି ; ଅଦ୍ଭୁତ ଏହି ଅସାଧାରଣ ଅନୁଭୂତିର ପରିପୂର୍ତ୍ତିତାରେ । କଳନା ନାହିଁ ବିପୁଳ ଏକ ବିଶାଳ ନିର୍ବାକ୍ ମମତାରେ ପ୍ରୀତିରେ ଦେଶପାଇଁ ମୋର ।

ଲାଗୁଥାଏ ମତେ, ଶ୍ରେଷ୍ଠ ବ୍ରଞ୍ଜ ମୂର୍ତ୍ତିର କଷାକୃତି ଅଧିକ କିଛି ଯେମିତି ମନୁଷ୍ୟଠୁ ତାତ୍ପର୍ଯ୍ୟମୟ, ଚମକପ୍ରଦ । ଲୋକକଥାର କେଉଁ ଉପାଦାନର ପ୍ରାଣୀ ଯେମିତି ବହୁ ଦୂରରେ, ବହୁ ଊର୍ଦ୍ଧ୍ୱରେ ମରଦେହୀ ପ୍ରାଣୀଗୁଡ଼ିକ ଠାରୁ ମର୍ତ୍ତ୍ୟର । ତାକୁ କଥା କହିବାକୁ କିଛି ଶକ୍ତି ନ ଥାଏ ମୋର । ସେ ଯଦି କିଛି ପଚାରୁଥାନ୍ତା ମତେ କି ଖୁସି କି ଆନନ୍ଦରେ କି ସୁଖରେ ବିଭୋର ହୋଇ ହସିଥାଆନ୍ତି ଟିକିଏ, ହଡ଼ବଡ଼େଇ ଯାଇ ଚୁପ୍ ରହିଥାନ୍ତି ମୁଁ । ପ୍ରକୃତରେ ପୋଷା କୁକୁରଟିଏ ଭଳି ପ୍ରସ୍ତୁତ ହୋଇଥାଏ ସଦାବେଳେ ଯେମିତି ପଛେ ପଛେ ଗୋଡ଼ାଇବା ପାଇଁ ତାର— ଆହୁରି ଅଧିକ ଥର । ଅଧିକାଂଶ ସମୟରେ ଖାଲି ଯଦି ହାବୁଡ଼ୁଥାନ୍ତି ବି ତାକୁ— ଶୁଣୁଥାନ୍ତି କି ଗୀତ ତାର—ଗାଇଲାବେଳେ ସେ ।

ଦେଖିଲି ଦିନେ ଘୋଡ଼ାଶାଳର ଗୋଟାଏ କଣରେ ଛିଡ଼ାହୋଇ ମନ-ଲଗେଇ ନିରେଖିକରି ଦେଖି ହେଉଥାଏ ସେ ତା ଆଙ୍ଗୁଠିର ଗୋଟିଏ ସାଧାସିଧା ରୁପା ମୁଦିକୁ ! କେଡ଼େ ସୁନ୍ଦର ଚମତ୍କାର ଅଧରଟି ତାର ହଲି ଚହଲି ଯାଉଥାଏ, ଆଉ ଲାଲି ଲାଲି ନିଶ ହାଲକ କୁଞ୍ଚି କୁଞ୍ଚି ହୋଇ ଟାଣି ଟାଣିହୋଇ ଯାଉଥାଏ । ମୁହଁଟିରେ ତାର ନେସି ହୋଇରହିଥାଏ କରୁଣ ଆଉ ବିସ୍ମୟ-ଆହତ ଅଭିବ୍ୟକ୍ତିଟିଏ ।

ଆଉ ଥରେ ଘମାଘୋଟିଆ ଅନ୍ଧାରିଆ ସଞ୍ଜରେ ମୁଁ ମୋର ପଞ୍ଜୁରୀଗୁଡ଼ିକୁ ନେଇ ଯାଇଥାଏ ସ୍ତାରାୟା ସେନ୍ନୋୟା ଷ୍ଟୈକକୁ—ମୁଗାଲସ୍କ ପସାଇଁକୁ । ସେଇ

ସରାଇର ମାଲିକଟା ଏକାବେଳକେ ପାଗଳଙ୍କପରି ଭଲ ପାଉଥାଏ ରାଉଣି ଚଢେଇଙ୍କୁ । ଖେଳହୋଇ ଯାଉଥାଏ ପାଇଲେ ଆଉ ଅନେକ ସମୟରେ ସେ ସେଗୁଡିକୁ କିଣୁଥାଏ ମୋଠୁ ।

ସେଇ ଝଟି ପାଖରେ ଗୋଟାଏ କଣରେ ସେଦିନ ବସିଥାଏ କଷାକ୍‌ଟି— ଚୂନି ଆଜ୍ଞା କାନ୍ଥ ମଝିରେ । ଆଉ ତାକୁ ଲଗି ବସିଥାଏ ତା ପାଖରେ ମୋଟ କୋଡେଇ ମାଇପିଟିଏ । ଆକାରରେ ଲମ୍ବା ଚଉଡ଼ାରେ ଦ'ଗୁଣ ହେବ କଷାକଟିର । ଗୋଲ 'O' ଭଳି ମୁହଁ ଟି ତାର ଝକ ଝକ୍ କରୁଥାଏ ମରକୋ ଚମଡା ଭଳି । ସେ କଷାକ୍‌ଟିକୁ ଚାହିଁ ରହୁଥାଏ ମମତାମୟୀ ଦୃଷ୍ଟିରେ ! କେତେକାଂଶରେ ମା'ର ଉଦ୍‌ବେଗମୟୀ ଦୃଷ୍ଟିରେ ! ପୂରାପୂରି ମାତାଲ ଅବସ୍ଥାରେ ଥାଏ କଷାକ୍‌ଟି । ତଳେ ଚଟାଣ ଉପରେ ପାଦ ଦୁଇଟିକୁ ଉଠାଉଥାଏ ପକାଉଥାଏ । କଷ୍ଟସ୍ୱ ଗୋଇଠାଟାଏ ପକେଇଥିବ ମାଇପିଟିକୁ ନଇଲେ ସେ କାହିଁକି ଚମକି ଚହିଁକି ଉଠିଆନ୍ତା, ମୁହଁ ଫଣ ଫଣ କରି ତଥାପି ବି ଥିରକିନ ନରମରେ କହୁଆନ୍ତା !

"ଗୁଡ଼ ମ ! ଇଏ କ ତୁଚ୍ଛା ଅଲଣା କାରବାର ଏ !"

ପ୍ରାଣପ୍ରଣେ ଚେଷ୍ଟାକରି କୌଣସି ମତେ ଭୁରୁଯୋଡ଼ିକୁ ଟେକିଲା ଟିକିଏ କଷାକ—ସଙ୍ଗେ ସଙ୍ଗେ ପକେଇଦେଲା କିନ୍ତୁ । ଗରମ ହୋଇ ଉଠିଥାଏ ସେ । ଓଟାରି ଫିଟେଇ ପକେଇଲା କୋଟ୍ ଆଉ ଶାର୍ଟ ବେକ ପାଖରୁ—ଖୋଲି କରିଦେଲା ଗଳାପାଖକୁ । ମାଇପିଟା ମୁଣ୍ଡରୁ ନଜର ରୁମାଲଟାକୁ ଝିଙ୍କି ଖସେଇ ଦେଲା । କାନ୍ଧ ଉପରକୁ । ଧଳା ଧଳା ସବଳ ହାତ ଦୁଇଟା ରଖିଲା ଟେବୁଲ ଉପରେ ବାହୁମୂଳକୁ ହାତ ଦୁଇଟା ଖିଙ୍କି ଛନ୍ଦିନେଲା ଜୋରରେ ଶପି ନେଇ । ତାର ଶେତା ଦିଶିଲା ଆଙ୍ଗୁଳିର ଗଣ୍ଠିଗୁଡ଼ାକ । ଯେତେ ଦେଖି ଲାଗିଲି ସେମାନଙ୍କୁ, ସେତେ ମନେହେଲା ମୋର କଷ୍‌କଟା ଅମାନିଆ ପୁଅଟିଏ ଯେମିତି ସ୍ନେହମୟୀ କେଡ଼େ ସ୍ନେହରେ ବାତ୍ସଲ୍ୟରେ ମାଇପିଟି ତାକୁ ଗାଳି ଦେଲା—ମେଷ୍ଟ୍ରାକ୍ସୁଅଟି ପରି । ବନସ୍ୱରେ ଭୂକହୋଇ ବସିଥାଏ, କିଛି କହି ପାରୁ ନଥାଏ ସେ ମାଇପିଟିକୁ । କିଣ ବା ଏମିତି ଥିଲା କହି ପାରିଥାନ୍ତା ; ଏଇ ଏମିତି ଫିକ୍ ଭାବରେ ଉପର-ଠାଉରିଆ ପ୍ରତିବାଦ ।

ହଠାତ୍ ଉଠି ପଡ଼ିଲା କଷକଟା—ସତେ ଯେମିତି କିଏ କୋଉଠି ନାହୁଡ଼ ମାରିଲା ତା କୁ ! କପାଳ ଉପରକୁ ଝିଙ୍କି ନୁଆଁଇ ଆଣିଲା ଟୋପିଟାକୁ ଗୁପୁଡେଇ ଗୁପୁଡ଼େଇ । ଦୂଆରମୁହଁ ଆଡ଼କୁ ଗୋଡ଼ କାଢ଼ିଲା କୋଟର୍ ବୋତାମଗୁଡ଼ାକ ନ ଲଗେଇ ଉଠିପଡ଼ିଲା ମାଇପିଟା କ !

"ଏଇ ମିନଟ୍‌କ ଭିତରେ ଫେରି ଆସୁଚୁ ଆମେ କୁଟ୍‌ମିଖ୍ !" କହିଲା ସେ ସରେଇର ମାଲିକଟାକୁ ।

ସେମାନଙ୍କ ଯିବା ସଙ୍ଗେ ସଙ୍ଗେ ସୁରୁଲା ହୋ ହୋ ହସର କୋଲାହଳ ; ଆଉ ଟାହି ଟାପର । ସରେଇର ପୃଷ୍ଠପୋଷକମାନଙ୍କର, ଖରିଦ୍‌ଦାର ସମଜଦାରମାନଙ୍କର ।

"ପାଇଲଟ ଫେଚୁକ ଦେବ ଯେ ପାନେ ମାଇକନାଟାକୁ—ଆଚ୍ଛାକରି ଦେବ ।" ସେମାନଙ୍କ ଭିତରୁ ଜଣେ କିଏ କହିଉଠିଲା ଗମ୍ଭୀର ଭାବରେ ।

ଚାଲିଲି ମୁଁ ସେ ଦୁହିଙ୍କ ପଛେ ପଛେ ବାହାରକୁ । ଅନ୍ଧାରରେ ଚାଲିଲେ ସେମାନେ ମୋ ଆଗେ ଆଗେ ଦଶ କୋଡ଼ିଏ ହାତ ତଫାତ୍‌ରେ । ଟପିଗଲେ ଦହଲ, କାଦୁଆ ଛକଟାକୁ । ସିଧା ସରପଟ ମୁହାଁଇଲେ ଉଚ୍ଚା ବନ୍ଧଟା ଆଡ଼କୁ ଭିଗାର ! ଦେଖିପାରୁଥାଏ ମୁଁ ମାଇପିଟା କଷାକକୁ ଭିଡ଼ିଦେଇ ନେବାବେଳେ ଝୁଙ୍କି ପଡୁଥାଏ ସାମନାକୁ—ଟଳି ଯାଉଥାଏ କରକୁ । ଶୁଣି ପାରୁଥାଏ ମୁଁ ସେମାନଙ୍କ ପାଦତଳେ ଫଶରଫଶର ହେଉଥାଏ କାଦୁଅ ।

"କୁଆଡ଼େ ଯାଉଛ ? କୁଆଡ଼େ ଯାଉଛ ?" ଥିର ଥିର ନରମ ଭାବରେ ଅନବରତ ପଚ୍ଚାରି ହେଉଥାଏ ମାଇପିଟା ।

ସେଇ କାଦୁଅରେ ଆଗେଇଲି ମୁଁ ସେମାନଙ୍କ ପଛରେ ଯଦିଓ ମୋ ରାସ୍ତାଟା ଥାଏ ଆଉ ଗୋଟିଏ ଦିଗରେ । ନଈ ବନ୍ଧର ଧାରରେ ପହଞ୍ଚିଲା ମାତ୍ରେ ସେମାନେ, ଅକ୍‌କନ ରହିଗଲା କଷାକଟି । ପାଦେ ଘୁଞ୍ଚି ଆସିଲା ପଛକୁ—ହଠାତ୍, କଷିକରି କୋରରେ ଚାପୁଡ଼ାଏ ପକାଇଲା ମାଇପିଟାର ମୁହଁରେ । ଭୟରେ ବହୁସ୍ୱରେ ଚକ୍ରାରକରି ଉଠିଲା ସେ ମାଇପିଟା ।

"ଓ, ଓଃ ! କାହିଁକିରେ—କାହିଁକି ମାରୁଛୁ ରୁ ?"

ମୁଁ ବି ଡରିଗଲି, ଧାଇଁଗଲି, ସେମାନଙ୍କ ପାଖକୁ । କଷାକଟି କନ୍ଧୁ ଧରି ପକାଇଲା ମାଇପିଟାକୁ ଅଣ୍ଟାରୁ । ବନ୍ଧକର ତଳର ରେଲିଂଗ୍ ଡ଼ିଆଁଇ ଠେଲି ଦେଲା ତାକୁ—କୁଦି ପଡ଼ିଲା ତା ଉପରେ, ଆଉ ଦୁହିଙ୍କି ଦୁହେଁ ଗଡ଼ିଗଲେ ବନ୍ଧ କଡ଼ର ଘାସ ଉପରେ ମସ୍ତବଡ଼ ଗୋଟାଏ ବଟକଟିଆ କଳା ପିଣ୍ଡୁଲାଟାଏ ପରି । ସ୍ତବ୍ଧ ହୋଇ ଛିଡ଼ାହୋଇ ରହିଲି ନିଶ୍ଚଳ ନିଷ୍କମ୍ପିତ ଭାବରେ—ଶୁଣିଲି, କାନରେ ବାଜିଲା ଆସି ଖାଲି ଭିଡ଼ା ଓଟରି, ଲୁଗାପଟା ପୋଷାକପତ୍ର ଫଡ଼ାଫଡ଼ି, ଫିଟାଫିଟି ଖାସୁଖାସୁଆ, ଧଇଁସଇଁଆ କଷାକର—ତଳେ ସେଠି ବନ୍ଧ ତଳରେ, ଅତି ନୀଚା ନୁଆଁଣିଆ ସ୍ୱରରେ ମାଇପିଟା ଟୁପୁଟୁପୁ ହେଉଥାଏ—

"ପାଟି କରିବ, ପାଟି କରି ବି ମୁଁ ।"

ତା ପରେ ବଡ଼ଟ ଗୋଟାଏ ପାଟିରେ ଗଅଁ ଗଅଁ କରି ଉଠିଲା ଯନ୍ତ୍ରଣାରେ ଆକାଶଫଟା ଯନ୍ତ୍ରଣାମୟ ଗଅଁ ଗଅଁ ସ୍ୱର ଶୁଭିଲା ତାର—। ସବୁ ସ୍ତବ୍ଧ ହୋଇଗଲା ମୁହୂର୍ତ୍ତିକରେ । ଅଣ୍ଡାଳି ହେଲି ପଥର ଖଣ୍ଡେ । ହାତବଢ଼ାଇ ଦରାଣ୍ଡି ଆଣିଲି ପଥର ଟେକାଟାଏ— ଫିଙ୍ଗିଲି ବନ୍ଧ ଉପରକୁ ବନ୍ଧ ଡିଆଁଇବି । ନାଃ କେହୁ ନାହିଁ । ଲମ୍ବା ଲମ୍ବା ପାଣିକୂଳିଆ ଘାସଗୁଡ଼ାକର ସର ସର ଖାଲି ! ସରେଇ କାଟକବାଟଟା ବାଡେଇ ହେଲା ଝନ୍ କରି—କିଏ ଜଣେ ଗୁଡ଼ିକୁନ ହେଲା ସତେ ଯେମିତି କମ୍ବୃଢ଼ ହୋଇ ପଡ଼ିଲା ତଳେ କେଉଁଠି ! ନୀରବତା ପୁଣି ନୀରବତା— ଅନ୍ତର୍ନିହିତ ଭୟଙ୍କାରିଆ କଛିରେ ପରିପୂର୍ଣ୍ଣ ହୋଇ ।

ତଳୁ ବନ୍ଧ ଉପରକୁ ଅଧାଅଧି ଉଚ୍ଚରେ ପେଟକୁ ଲାଗି ଦନ୍ଦରେ ଜଣ ଗୋଟାଏ ଦେଖାଦେଲା ବେଶ୍ ବଡ଼ ଆକୃତର, ଧଳା ରଙ୍ଗର ! ଧୀରେ ଧୀରେ ଅସ୍ଥିର ପାଦରେ ଟଳି ଟଳି ଚଲୁଥିଲା ସେଇଟି ସୁଉଁ ସୁଉଁ ହୋଇ କାନ୍ଦ କାନ୍ଦ । ଠଉରେଇଲି ଠିକ୍ ମାଇପିଟିଏ ସେଇ । ହାତଗୋଡ଼ ଲଗେଇ ଭରାଦେଇ ଦେଇ ଚଢୁଥାଏ ସେ ମେଣ୍ଢାଟିଏ ଭଳି—ଦେଖି ପାରିଲି ଲଙ୍ଗଳାମୁକୁଳା, ଅଣ୍ଟାଯାଏ କିଛୁ ନ ଥାଏ ଦେହରେ । ତାର ଗୋଲ ଗୋଲ ବଡ଼ ବଡ ସ୍ତନ ଦୁଇଟି ଝୁଲିପି ଉଠୁଥାଏ ଶୁଭ୍ରତାରେ ଏମିତ—ଜଣାଯାଉଥାଏ ଚନ୍ଦ୍ର ନୋଟି ମୁହଁ ଥାଏ ଯେମିତ ମାଇପିଟିର । ଶେଷରେ କଷ୍ଟେମଷ୍ଟେ ଆସି ପହଞ୍ଚିଲା ରେଲିଂ କଡରେ—ବସିପଡ଼ିଲା ମୋ ପାଖରେ । ନିଃଶ୍ୱାସ ଗ୍ରୁଡ଼ୁଥାଏ ଧଇଁସଇଁ ହୋଇ—ଦମ ନେଉଥାଏ ଘୋଡ଼ା ଯେମିତ । ଚେଷ୍ଟାକଲି ଆଲୁବାଲଗୁଡ଼ାକ ସାଉଁଳିବା ପାଇଁ । ଗୋରା ତକ ତକ ଦେହରେ ତାର ପଙ୍କାଦୁଅ ଧୂଳିବାଲିର କଳା କଳା ଦାଗଗୁଡାକ । କାନ୍ଦୁଥାଏ କଇଁ କଇଁ ହୋଇ ଆଉ ପୋଛିବାରେ ଲାଗିଥାଏ ଲୁହସବୁ—କହେଇ ଓଦା ଓଦା ମୁହଁକୁ ପୋଛିହେଲାଭଳି—ସେମିତ ଭଙ୍ଗୀରେ ।

"ହେ ଭଗବାନ ! ଏ ମା କଏରେ ତୁ ? ଯା ! ଭାଗ ! ପଳା ଏଠୁ । ନାଲିକିଆ ବେହିଆ ଟୋକାଟା !" ମୋ ଉପରେ ଆଖି ପଡ଼ିଲାକ୍ଷଣି ତାର ଥରକମ୍ପ ପାଟିକରି ଉଠିଲା ।

ମୁଁ ବା ଯାଇ ପାରିଥାନ୍ତି କେମିତ ; ଯାଇ ପାରିଲି ନାହିଁ । ଏକାବେଳକେ ଅଚଳ ହୋଇ ଯାଇଥାଏ ମୁଁ ପକ୍ଷାଘାତ ରୋଗୀ ଭଳି ଯେମିତ । ବସ୍ତୁସ୍ୱରେ ତୀବ୍ର ଗୋଟାଏ ଉତ୍କଟ ଯନ୍ତ୍ରଣାମୟ ଦୁଃଖରେ । ମନେପଡ଼ିଲା ମୋର ଆଈମା ଭଉଣୀର କଥା ପଦକ ।

"ମାଇପିଟାର ବଳବହପ କମ୍ ନୁହେଁ । କଳନା ନ କଲେ ନ ହୁଏ । କଲିବାକୁ ହେବ, ଇଭ୍ କଣ ଠକେଇ ନ ଥିଲା—ଭଣ୍ଡେଇଦେଇ ନ ଥିଲା ନିଜେ ଭଗବାନଙ୍କୁ ।"

ଉଠିପଡ଼ିଲା ମାଇପିଟା, ପୋଷାକପତ୍ର, ଲୁଗାପଟା ବୋଲି ଯାହା ଥିଲା ଦକ୍ଷ ଦେହରେ ଯୋଡେଇଦେଲା ସେଥିରେ ସ୍ତନ ଦୁଇଟିକୁ ଆଉ ଇଆ ଫଳରେ ଖୋଲି ଫୁଙ୍ଗୁଳା କରିଦେଲା ଗୋଡ ଦୁଇଟାଠୁଁ ତଳକୁ । ତରବରରେ ବାହାରିଗଲା ସେଠୁଁ ବନ୍ଧ ଉପରକୁ ତେଣେ ଉଠୁଥାଏ କଷାକଟା—ଉଠୁଥାଏ ଧଳା ପୋଷାକପତ୍ର କେରୁଟା କଣ ପବନରେ ନଚେଇ ନଚେଇ ହଲେଇ ହଲେଇ । ଥରକମ୍ପ ମାଗୁ ସ୍ୱରରେ ସୁସିର ମାରିଲା ପାଟିରେ—କାନ ଡେରିଲି ଟିକିଏ, ତା ପରେ କହିଲା କେତେ ହସ ଖୁସିରେ ନାଚିଲା ନାଚିଲା ସ୍ୱରରେ –

'ଦାରିସ୍ଥା ! କଲେ କହୁ ନ ଥିଲି ନା ତତେ—କଷାକଟା ସବୁବେଳେ ଯାଇଯାଏ ରହୁଥାଏ ଯାହା । ତୁ ଭାବିଥିଲୁ ମାତାଲ ହୋଇ ଯାଇଥିଲି, ମଦପିଇ ପିଇ ବେହୋସ ହୋଇ ଯାଇଥିଲି ମୁଁ, ନାଇଁ ? ଭାବିଥିଲୁଟି, ଆଲୋ ନାଲୋ ନା, ତୋତେ ବୋକା କରିବା ପାଇଁ ମ ଏମିତ, ବୁଝିଲୁ ଏବେ ଦାରିସ୍ଥା !"

ଦୃଢ଼ଭାବରେ ଛୁଡ଼ା ହୋଇଥାଏ ସେ ଦମ୍ଭରେ । ସ୍ୱରଟି ତାର ଯେମିତି ଧୀର ସେମିତି ସଂଯତ, ବର୍ଗୃରଣୀଳ ପୁଣି ରହସ୍ୟିଆ । ନଇଁପଡ଼ ତଳକୁ ସେ ଗୁଟ୍ ହଲକରୁ କାଢ଼ୁଅ ପୋଛୁ ପୋଛୁ ମାଇପିଟିରେ ଲୁଗାପଟାରେ କହିଲାଗିଲା—

"ହେଇ ? ନେଏ, ତୋର ବ୍ଲାଉଜ ନେଏ ! ଆ ଆ ଏଠି ଦାଣ୍ଡସ୍ଥା । ଛୁ ସେମିତି ମୁହଁଲଜା ଘୁମାଣାପଣ କଣ ଲୋ ।" ଗୋଟାଏ ଅଶ୍ଳୀଳ ନାଆଁରେ ବଡ଼ ପାଟିରେ ଡାକିଲା ତାକୁ—ସେ ମାଇପିଟିକୁ !

ବସି ରହିଥାଏ ମୁଁ ଗୋଛାଏ ଘାସ ଉପରେ କଣ୍ଟାବୁଦା ପାଖରେ । ଶୁଣୁଥାଏ ସ୍ୱରଟାକୁ ରାତିର ଗମ୍ଭୀର ନୀରବତା ଭିତରେ ଏତେ ନିଃସଂଗ, ଏତେ ଏକାକୀ ସ୍ୱରଟକୁ ସେହି ଦଳଦେଲାଭଳି ଏତେ ଉଦ୍ଧତ ଆଦେଶାତ୍ମକ ।

ଆଖି ଆଗରେ ମୋର ନାଚିବାକୁ ଲାଗିଲା ଚୌକି ଉପର ଲଣ୍ଠନଗୁଡ଼ାକର ଆଲୋକ । ତାହାଣପଟେ ମୋର ନିଘଞ୍ଚୁଆ ପଛ ଗହଳରୁ—ଝାଟିଭିତରୁ ଉଠି ଆସିଲା ସାମନ୍ତ ସମ୍ଭ୍ରାନ୍ତ କୁଳର ଝିଅଗୁଡ଼ାଙ୍କ ସକାଶେ ଶୁଭ୍ର ନିର୍ମଳ ବିଦ୍ୟାଳୟଟା । ଅତି ଅସନାମସନା ଅଶ୍ଳୀଳ କଥାଗୁଡ଼ାକୁ କହି ଉଚ୍ଚାରଣ କରି କରି ଅଳସଭାବରେ, ଧଫେଦ୍ ପୋଷାକପରି ଲୁଗାପଟାଗୁଡ଼ାକୁ ହଲେଇ ହଲେଇ ପବନରେ କଷାକ୍‌ଟା ବାହାରି ଗଲା ଚୌକିଟା ଉପରେ—ଆଗେଇଗଲା ଚୌକିଟା ଉପରେ—ହଜିଗଲା ଦୁଃସ୍ୱପ୍ନ ପରି ଗୋଟାଏ ।

ତଳେ ଜଳମଞ୍ଚରୁ ବାଷ୍ପର ଶବ୍ଦଟା ଆସୁଥାଏ ସୁଉ ସୁଉ ହୋଇ ଗୋଟାଏ ନିର୍ଗମ-ନଳୀ ବାଟରେ । ନଈ ଗଡ଼ାଣିରେ କେଁ କେଁ ଖଟ୍ ଖଟ୍ ହୋଇ ଯୋଡ଼ାଗାଡ଼ି ଗୋଟାଏ, ଜନପ୍ରାଣୀର ଚିହ୍ନବର୍ଣ୍ଣ ନ ଥାଏ କେଉଁଠି । ଦୁଃଖରେ-ବେଦନାରେ ଆହତ ହୋଇ—ଅଭିଭୂତ ହୋଇ ଗୁଲିଲି ମୁଁ ନଦୀର ଧାରେ ଧାରେ ଠିକ୍ ହିତ ମୁଠାରେ ମୋର ଜୋରରେ ଜାବୁଡ଼ି ଧରିଥାଏ ନିର୍ମମ ପଥର ମୁଣ୍ଡାଟାଏ । ଆଗରୁ ଗୃହୁଁଥିଲି ଛୁଡ଼ିବି ବୋଲି କଷାକ୍ ଉପରକୁ । ସେଣ୍ଟଜନ ଦି କଙ୍ଗଇର ଗିର୍ଜାର ପାଖରେ ମୋତେ ଅଟକାଇଦେଲା ରାତିର ଚୌକିଦାର—ପହରାବାଲା ଜଣେ । ରାଗରେ ପଗ୍ଡରିଲା ମତେ କଏ ମୁଁ, କଣ ବହି ନେଉଥିଲି ମୁଁ ପିଠିରେ, ବସ୍ତା ଭିତରେ ।

ମୁଁ ଯେତେବେଳେ ଗାଇଗଲି ତା ଆଗରେ କଷାକ୍ ବୃତ୍ତାନ୍ତ—ସେ ହସି ହସି ଗଡ଼ିଗଲା—ଫାଟିପଡ଼ିଲା ହୋ ହୋ ହସରେ ।

"ତୋ ପାଇଁ, ତୋ ଜାଣିବା ପାଇଁ ଏକା କିଛି ନାହିଁ ?" କହିଲା କାଶି-କାଶିକା । କଷାକ୍ ଗୁଡାକର ଆଗ୍ଭର ବର୍ଗୃର, ସିଦ୍ଧିବିଧି କିଛି ନାହିଁରେ ଭାଇ ! ସେମାନେ କଣ ଆମ ସମାନ ଆମ ତୁଲ ନା କଣ ? ଆଉ ମାରପିଟ୍ଟା କୁଭିଟାଏ—ଖାନିକ କୁତ୍ରିଟିଏ ଠିକ୍ ।"

ପୁଣି ହସି ଉଠିଲା ହୋ ହୋ ହୋଇ—ପେଟରୁ ବାକୁଲି ବାହାରି ପଡ଼ିଲା ତାର ହସରେ । ମୁଁ ମୋର ବାଟ ଧରିଲି, ଆଶ୍ଚର୍ଯ୍ୟରେ ଭାବି ଭାବିକା ଖାଲି—

ହସିବା ପାଇଁ କଣ ଥିଲା ସେଥିରେ ସେ ଘଟନାଟାରେ କଣ ଦେଖିଲା ଯେ ପହରାଟି !

ଭୟ ପଶିଗଲା ମୋ ମନରେ—ଭାବିହେଲା ଖାଲି—ଏଁ ସେ ମାଇପିଟା ଯଦି ହୋଇଥାନ୍ତା ମୋ ମାଆ କି ତୋ ଅ'ଈ ମା ତେବେ !

## ଅଷ୍ଟମ

ପହିଲି ତୁଷାର ପଡ଼ୁନ ପଡ଼ୁଣୁ ଅଜା ପୁଣି ଥରେ ମତେ ସାଙ୍ଗରେ ଧରି ଚାଲିଲେ ଆଇମାର ଭଉଣୀ ପାଖକୁ !

"ନାଇଁରେ କିଛି ହେବ ନାହିଁ, କିଛି ଖରାପ କରିବ ନାଇଁ ତୋର କହିଲେ ସେ, ଢଆଣ ଢଆଣ କହି ଲଗିଲେ ଖାଲି !

ଅନୁଭବ କରୁଥାଏ ମୁଁ ସେଇ ଗ୍ରୀଷ୍ମକାଳଟା ବିତିଥାଏ ମୋର ବିପୁଳ ଅଭିଜ୍ଞତା ଭିତରେ—ସେଇ ଅଭିଜ୍ଞତା ସବୁ ବଢ଼େଇ ନେଇଥାଏ ମୋର ବୟସକୁ । ଚାଲାକ ଚତୁର । ବିଜ୍ଞ କରିଦେଇଥାଏ ମତେ ! କିନ୍ତୁ ମାଲିକଗୁଡ଼ାଙ୍କ ପାଖେ ଜୀବନଟା ମୋର କଟିଲା ଏଣିକି ଆହୁରି କେଜେଡ଼େ କାଉଁଦିଆ ମାନ୍ଦା ଭାବରେ—ସମାନ ସେଇ ପୁରୁଣା ଚିରାଚରିତ ଢ଼ଙ୍ଗରେ । ଏଇ ଲୋକ (ମାଲିକ) ଗୁଡ଼ାକ ବଢ଼େ ବଢ଼େ ଗିଳି ଅଧିକ ଅଧିକ ବିଷ ଜର୍ଜରିତ କରୁଥାନ୍ତି ନିଜକୁ ସବୁ । ସମାନ ସେମିତି ଏକଘୁରିଆ ଟିକିନଖି ବ୍ୟାନରେ ଗାଇ ହେଉଥାନ୍ତି ସେମାନଙ୍କର ରୋଗ ବଇରାଗଗୁଡ଼ାକ କଥା । ସମାନ ସେଇ ଭୟାବହ ପ୍ରତିଶୋଧ କାମନା ଘେନି ଭଗବାନଙ୍କୁ ଡାକ ଛାଡ଼ୁଥାଏ ପ୍ରାର୍ଥନା କରୁଥାଏ ବୁଢ଼ୀଟି । ସାନ ମାଲିକାଣିଟା କେମିତି ପାତଳୀ ହୋଇ ଯାଉଥାଏ ଆଉ ଗୋଟିଏ ପିଲା ଜନ୍ମକଲା ପରେ—କିନ୍ତୁ ଏଥର ଆଗ ତୁଳନାରେ ଅଳ୍ପ ଜାଗା ମାଡ଼ି ବସୁଥିଲେ ସୁଦ୍ଧା ସିମିତି ସ୍ଥିର ନିର୍ବିକାର ଗୁରୁଗୌରବରେ—ଚାଲିବୁଲି କରୁଥାଏ—କରୁଥିଲା ଯେମିତି ଗର୍ଭବତୀ ଥିଲା ଯେତେବେଳେ । ପିଲାଙ୍କ ପାଇଁ ଜାମାପଟା ସିଲେଇ କରୁ କରୁ ଚୁପଚାପ ଶାନ୍ତ ଭାବରେ ଖାଉଥାଏ ସମାନ ସେଇ ଗୋଟିଏ ବୋଲି ଗୀତ :—

ଭିନସ୍କା ଭିନସ୍କା କେତେ ସୋହାଗର
ଭିଛରେ ଭିନସ୍କା ଆକାମକ ଭେନସ୍କା ମୋର
ବରଫ ଉପରେ ପଟା ଗାଡ଼ି ପରେ ବସିବ ମୋର
ଆଣ୍ଡେଇ ଟିକେ ପଛରେ ସେଇ

ନଇଁ ପଡ଼ି ପଛେ ବାଟ କଢ଼େଇ ଦେଲା
ଚଳାଇବୁ ତାକୁ—ଖୁସିରେ ତୋର

କେବେ ଯବ କେତେବେଳେ ପଶି ଆସୁଥାଏ ଘର ଭିତରକୁ ସଙ୍ଗେ ସଙ୍ଗେ ଗୀତ ବୋଲା ବନ୍ଦ କରଦେଇ ସ୍ୱରରେ କହି ଉଠୁଥାଏ ସେ—

"କଣ ଗୁହୁଁ—କଣ ଲେଡ଼ା ?"

ନିଶ୍ଚିତ ରୂପେ ଜାଣିଥାଏ ମୁଁ—ଏଇ ଗୋଟିଏ ବୋଲ ଗୀତ ମାଲୁମ ଥାଏ ତାକୁ !

ସଞ୍ଜ ହେଲାମାତେ ମାଲକାଣୀମାନେ ମୋତେ ଡାକନ୍ତି ଖାଇବା କୋଠରୀକୁ କହୁଥାନ୍ତି—

"କହରେ, କହ ଆମକୁ—ବାଷ୍ପୀୟବୋଟ୍ ବା ଜାହାଜରେ ତୋ ଦିନଗୁଡ଼ାକର କଥା କହମ !" "ତୋ ଜାହାଜୀ ଜୀବନ କଥା କହ !"

ଗାଧୁଆ ଘର ଦ୍ୱାରମୁହଁ ପାଖରେ ଗୋଟିଏ ଚୌକିରେ ବସି ମୁଁ ତାଙ୍କୁ ଶୁଣାଉଥାଏ ସବୁ ! ଏଇ ଜୀବନ ମଝିରେ—ଯାହା ଭିତରେ ଠେଲପେଲ ପୂରେଇ ଦିଆଯାଉଥାଏ ମତେ ମୋ ଇଚ୍ଛା ବିରୁଦ୍ଧରେ—ଏଇ ସେଇ ଜୀବନ ମଝିରେ ଅନ୍ୟ ଜୀବନର ସ୍ମୃତିଗୁଡ଼ିକୁ ମନେ ପକାଇବାଟା ବେଶ୍ ଉପଭୋଗ୍ୟ ହେଉଥାଏ କେମିତି । ମୋ କାହାଣୀରେ ବୁଡ଼ିବା ମାତେ ଭୁଲି ଯାଉଥାଏ ମୁଁ ମୋର ଶ୍ରୋତାମାନଙ୍କ ବିଷୟ—ଭୁଲି ଯ ଉଥାଏ ଅବଶ୍ୟ ବେଶୀ ସମୟ ପାଇଁ ନୁହେଁ । କେବେହେଲେ ଷ୍ଟିମରରେ ଚଢ଼ି ନ ଥାନ୍ତି ବସି ନ ଥାନ୍ତି—ମାଇପେ କେତେଟ! କେବେ ପଗ୍ଭରି ଦେଉଥାନ୍ତି –

"ଏଁ, ତୁ ଡରି ଯାଉଚୁ କି,
କ୍ରୁହିଁ ପାରୁ ନ ଥାଏ, କ'ଣ ବା ଥାଏ ସେଥିରେ ଡ଼ରିଯିବାର ଅଛି !

"ନାଆରେ ଗୋଟାଏ ଗଣ୍ଡରେ ଗହୀରଆ ଜାଗାରେ ବୋଟଟା ଯଦି ଓଲଟି ପଡ଼ୁଥାନ୍ତା', ବୁଡ଼ି ଯାଇଥାନ୍ତା ?"

ହସି ପକାଉଥାନ୍ତି ମାଲିକ ମୋର – ଯଦିଓ ଜାଣିଥାଏ ମୁଁ ବୋଟଗୁଡାକ ଓଲଟି ପଡ଼େ ନାହିଁ, ବୁଡ଼ି ଯାଏ ନାହିଁ ଗହୀରଆ ଜାଗାରେ, ତଥାପି ଏ ବିଷୟରେ ଟିକେ ହେଲେ ବିଶ୍ୱାସ ଜନ୍ମେଇ ପାରୁ ନ ଥାଏ ମାଇପିଗୁଡ଼ାଙ୍କ ମନରେ ! ବଡ଼ ମାଲକାଣୀ ଜଣକ ନିଶ୍ଚିତ ରୂପେ ଧରି ନେଇଥାଏ, ଷ୍ଟିମର ସବୁ ଭସେ ନାହିଁ ପାଣିରେ । ସେଗୁଡ଼ିକର ଆଗୁଳା ଚକ ସବୁ ଗଡ଼ୁଥାଏ ଗ୍ଭଲୁଥାଏ ପାଣି ତଳେ— ରାସ୍ତାରେ ବଳଦଗାଡ଼ି ଘୋଡ଼ାଗାଡ଼ିର ଚକ ଗଡ଼ିଲା ଭଳି !—

"ନା, କେମିତି ଭାସିପାରେ ନା ଏଇଟା, ଲୁହାର ଯେତେବେଳେ ତିଆରି କରାଯାଇଛି ଟା ଭସେନା—ନାଁ ଭସେ ?

ମାଟିଖୋଳା, ବାଲ୍ଟିଟା ଭସେ କିନ୍ତୁ !"

"ହୁଁ, କି ତୁଳନା ମ ! ବାଲଟିଟା ତ ଛୋଟ, ଆଉ ଫାଙ୍କା !"

ସୂର ଆଉ ତା’ ବନ୍ଧୁ ବିପ୍ଲବୀ କହୁଥାଏ ଯେତେବେଳେ ସେମାନେ ମତେ ଚାହୁଁଥାନ୍ତି କଣେଇ କଣେଇ ସନ୍ଦେହରେ—ବୁଢ଼ୀଟା ଜବରଦସ୍ତ ଦାବୀ କରୁଥାଏ—ବନ୍ଧୁ ଲେଖକ୍ରି ଯେତେକ, ବୋକା ଅଉ ଧର୍ମଦ୍ରୋହୀ ଅବିଶ୍ୱାସୀ !

"ସାଲ୍‌ଟାର’—ବାଇବେଲର ପ୍ରାର୍ଥନା ଗୀତଗୁଡ଼ିକ କଣ ? ଆଉ ରାଜା ଡେଭିଡ୍‌ ବି ?"

"ସାଲ୍‌ଟାର’ ତ ପବିତ୍ର ଧର୍ମଗ୍ରନ୍ଥ—ତା ହେଲେ ବି ରାଜା ଡେଭିଡ଼ ତ ପୁଣି ଭଗବାନଙ୍କୁ କ୍ଷମା ମାଗିଥିଲି ସ୍ତବ ଗୁଡ଼ାକ ପାଇଁ ।"

"କେଉଁଠି ଲେଖାଅଛି ସେ ?"

"ଏଇ ମୋ ହାତରେ ! କୋଉଠିରେ ଶିଖାଇବା ପାଇଁ, ଦେଖାଇଦେବା ପାଇଁ ? ଦଉଚ ରଃ, ଚଢ଼େଇ ଯୋପିଟାଏ ବଡ଼ିଆ ବେକମୁଣ୍ଡାରେ—"

କଣ ନ ଜାଣିଥାଏ ସେ, ସବୁ ଜାଣନ୍ତି—ମନ୍ତବ୍ୟମାନ ଦେଉଥାଏ—ସବୁବେଳେ ଅଦ୍‌ଭୁତ ସେଗୁଡ଼ାକ—ଦେଉଥାଏ ଚରମ ଆତ୍ମପ୍ରତ୍ୟୟରେ, ଦୃଢତାରେ !

"ପେଗ୍ରେର୍କା ଗଳର ସେଇ ‘ଡାକ୍ତାର’ଟା ମରିଯାଇଚ—ତ୍ୟାର ଆତ୍ମାଟା ଗଳ ଗଳ ହୋଇ ବାହାରି ପଡ଼ିଲା ମ ଗଳାବାଟେ ତାର, କଳା ଆଲକାତରି ପରି କଳା !"

"ଆତ୍ମା ତ ପ୍ରେତ ଗୋଟାଏ" କହିଲି ମୁଁ ଦୂର ବୋକା ! "ମୁଁ ଡାକ୍ତାର କଥା କହୁଚ ରେ, ବୋକାଟା !"—ସାଙ୍ଗେ ସାଙ୍ଗେ ଓଲଟା ଜବାବ ଦେଲି ‘ଗ୍ରେପାଛଡ଼ା’ ରକ୍ତ ଶୁଖେଇଦେବା ଗୀତରେ !

ମୋ ସାନ ମାଲିକାଣୀଟାର ବା କୋଉ କମ ଡର ଥାଏ ବହିଗୁଡ଼ାକୁ !

"ଭାରି ଖରାପ, ବହିପଢ଼ାଟା—ବିଶେଷରେ ଅଳ୍ପ ବୟସରେ, ଟୋକା-ଟାକଳିଆ ବେଳେ ।" କହୁଥାଏ ସେ—"ଅମର ସେଇ ଗଳି—ପ୍ରେବେଶୋକ ଷ୍ଟ୍ରୀଟ୍‌—ଝିଅଟିଏ ଥିଲା ସେଠି—ଭଲ ଘରର, ଭଲ ପରିବାରର—ଆରମ୍ଭ କରିଦେଲା ପଢ଼ାପଢ଼ି—ପଢ଼ିଲା, ପଢ଼ିଲା ଖାଲି ପଢ଼ିଲା ସେ ପଡ଼ିଲା ଯାଇ ପ୍ରେମରେ ବଡ଼ ପାଦ୍ରିଟାର ! ପାଦ୍ରିର ଘରଯାଟା—ଗଲା ନା ଚଢ଼ି ବସିଲା ନା ତା’ ଉପରେ—ସିଧା ସଳଖ ବିଚଦାଣ୍ଡରେ—ସମସ୍ତଙ୍କ ଆଗରେ ପଡ଼େ—ଇସ୍‌, କ ମରଣର କଥାଟା ମ !

ବେଳେବେଳେ ମୁଁ ବ୍ୟବହାର କରୁଥାଏ ସୂର ବହିଗୁଡ଼ାକର ଶବ୍ଦ୍‌ ସବୁ · ସେଥିରୁ ଗୋଟିକରେ ପଢିଥାଏ—ଠିକ ବାଧ୍ୟମତେ କହିଲେ, କେହି କେବେ ଗୋଲାବାରୁଦ ଆବିଷ୍କାର କରି ନାହିଁ—ଏହା ଆବିର୍ଭୂତ ହୋଇଛି କ୍ଷୁଦ୍ର କ୍ଷୁଦ୍ର ବହୁ ଜିଜ୍ଞାସଣ ଓ ଆଷ୍କାରର ସୁଦୀର୍ଘ ପ୍ରକ୍ରିୟାର ଫଳରେ ।"

କାହିଁକି କେଜାଣି, କି ଅବୋଧ କାରଣରୁ ଏହି ଶବ୍ଦଗୁଡ଼ାକ ଅଠାରେ ଯେମିତି ଲାଖି ରହି ଯାଇଥାଏ ମନରେ ମୋର ! ବିଶେଷରେ ଭଲ ଲାଗୁଥାଏ

ମତେ । "ଠିକ୍ ବାଧ୍ୟମତେ କହିଲେ—" "ଏହି ଖଣ୍ଡବାକ୍ୟ କଥଟିର । ମତେ ଲାଗୁଥାଏ ଭାରି ଟାଣୁଆ ଜୋରଦାର ଏଇଟି ! କିନ୍ତୁ ଏହାର ପ୍ରୟୋଗ ହେତୁ ବହୁତ ଭୋଗିବାକୁ ପଡ଼ିଲା—ବହୁତ ଦୁଃଖକଷ୍ଟ, ଅନାବଶ୍ୟକ ଯନ୍ତ୍ରଣାଗୁଡ଼ାଏ । ଅତି ସାଧାରଣିଆ ପ୍ରକୃତିର ଅବଶ୍ୟ ଦୁଃଖଗୁଡ଼ାକ ।

ସଂକରେ ଦିନେ ମାଲିକ ବଉଁଶଟାଯାକ ମତେ ଘେରି ବସି ପଚାରିଲେ ଷ୍ଟିମରରେ ମୋର ଅଭିଜ୍ଞତା, ଅନୁଭୂତିଗୁଡ଼ିକୁ କହିବା ପାଇଁ ସେମାନଙ୍କୁ-ଉତ୍ତର ଦେଲି ମୁଁ—

"ଠିକ ବାଧ୍ୟମତେ କହିଲେ—ଏମିତି କିଛି କହିବାକୁ ନାହିଁ !" ଏକା-ବେଳକେ ଅଦ୍ଭୁତ ବମ୍ଚ ହୋଇଗଲେ—ଯେମିତି ସେମାନେ ବେଙ୍ଗଭଳି ରଡି ଛାଡ଼ିଲେ ସବୁ—

"କଣ ? କଣ କହିଲୁ ତୁ - କ'ଣ ?"

ସ୍ବରହେଁ ଯାକ ହସି ଉଠିଲେ ହୋ ହୋ ହୋଇ !

ଠିକ ବାଧ୍ୟମତେ କହିଲେ, ହେ ଭଗବାନ ! ଦୋହରେଇ ଲାଗିଲେ ଏ କଥା ପଦକୁ !

ଏମିତିକି ମୋ ମାଲିକ ବି ସ୍ଵଚେଇଲେ ମତେ—"ପିଲାଳିଆ ନିର୍ବୁଦ୍ଧିଆ କଥାଟା ।"

ତା'ପରେ ଅନେକ ଦିନ ଯାଏ ସେମାନେ ଡାକ ହେଲେ ମତେ—"ଠିକ ବାଧ୍ୟମତେ କହିଲେ ।"

"ହଇରେ ହେ ଠିକ୍ ବାଧ୍ୟମତେ କହିଲେ ! ଏଠିକି ଆସି ଘରଟା ଠିକ୍ ପୋଛି ସଫା କରିବାଟା ଛୁଆଟାର ଏଃ—ଠିକ୍ ବାଧ୍ୟମତେ କହିଲେ ପରେ—ଏଁ !"

ଏହି ନିର୍ବୋଧ ଚିହ୍ନାଟେହି ମତେ ଅପମାନିଆ ଲାଗିବ କଣ ଆଶ୍ଚର୍ଯ୍ୟ ଲାଗୁଥାଏ ବେଶ !

ଗୋଟାଏ କେମିତି ଚେତାଚୈତନ୍ୟକୁ ଫାରଧା କରିଦେବା ଭଳି ଦୁଃଖର କୁହୁଡ଼ି ଭିତରେ ଗତି କରୁଥାଏ ମୁଁ—ସେଥିରୁ ମୁକୁଳି ନିଃଶ୍ୱାସ ମାରିବା ପାଇଁ ହାଲୁକା କରିଦେବା ପାଇଁ ପ୍ରାଣପଣେ ଚେଷ୍ଟା କଲି, ଯେତେଦୂର ପାରେ କଠିନ ପରିଶ୍ରମ କରି । କାମ ଥାଏ, ବହୁତ କାମ—ଯୋଡ଼ିଏ କଅଁଳା ଛୁଆ ଘରେ—ମୋର ଚଡଚଡ଼ା ଖଟ୍ ଖଟେଇ ମାଲିକାଣୀ-ଗୁଡାକ ସଦାବେଳେ ଗୋଟାକ ପରେ ଗୋଟାଏ ଧାଇ ରଖି ନିକାଲି ଦେଉଥାନ୍ତି ଯେତେବେଳେ, ଯେହେତୁରୁ ଛୁଆଗୁଡ଼ାକର ଦେଖାରଖା ଭାର ଅଧିକାଂଶ ପଡୁଥାଏ ମୋରି ଉପରେ । ପ୍ରତିଦିନ ଧୋଉଥାଏ ସେମାନଙ୍କ କନାକବଟା ଭେଲିଆଗୁଡ଼ାକ, ସପ୍ତାହକେ ଥରେ ଯିବାକୁ ହେଉଥାଏ କେଣ୍ଡ୍ରଆର୍ମି ଝରଣାକୁ ଲୁଗାପଟାଗୁଡ଼ାକ ହକାଳିବା ପାଇଁ । ଧୋବଣୀଗୁଡ଼ିକ ସେଠି ମତେ ଦେଖି କରି କରି ହୋଇ ହସୁଥାନ୍ତି, ଥଟ୍ଟା କରୁଥାନ୍ତି ସବୁ—

"କୋଉଥିପାଇଁ ଏ ମାଇପି କାମ କରୁଚୁ—ହଇରେ, କୋଉଥିପାଇଁ ବା ?" କହୁଥାନ୍ତି ସେମାନେ !

ବେଲେବେଳେ ସେମାନଙ୍କ ଟାହ୍ଯଟାପରରେ ବଗିଡ଼ଯାଇ ପିଟୁଥାଏ ମୁଁ ସେମାନଙ୍କୁ ଓଦା କପଡ଼ାଗୁଡ଼ାକରେ—ସେମାନେ ଓଲଟି ଶୁଝେଇ ଦେଉଥାନ୍ତି ସେଇ ମାଡ଼କୁ—ଆଉ ମତେ ଭାରି ଖୁସି ଲାଗୁଥାଏ—ମଜାର ମନମୋହନଆ ବ, ସେମାନଙ୍କ ସାଙ୍ଗଟା ।

ଜେଣ୍ଟଆମି ଝରଟା ବହୁଯାଉଥାଏ ଗଙ୍ଗାରିଆ ଗୋଟାଏ 'ଉପତ୍ୟକାର' କାନ୍ଧି କେଇଁ ତଳେ ତଳେ—ଓକା ନଈକୁ ! ଉପତ୍ୟକାଟା ସହରଟାକୁ ବିଚ୍ଛିନ୍ନ କରି ରଖିଥାଏ ସ୍ଲାଭଜାତିର ପ୍ରାଚୀନ ଦେବତା ସ୍ୱାରଲୋ ନାମରେ ଜଣା-ଶୁଣା ଗୋଟାଏ ପ୍ରାନ୍ତରଠୁ ! ଏଠିକି ଆସୁଥାନ୍ତି ସହରର ଲୋକେ ସବୁ ସେମିକ୍‌ରେ ବାହାର କରିବା ପାଇଁ । ଆଈମା କହୁଥାଏ ମତେ ଆଗରୁ—ତା' ବୟସବେଳେ ଲୋକଙ୍କର ଅଗାଧ ବିଶ୍ୱାସ ଥାଏ 'ସ୍ୱାରଲୋ'ଠି—ତାକୁ ଯାଇ ପୂଜାର୍ଚ୍ଚନା କରୁଥାନ୍ତି, ଯାଇଁ ଗୋଟାଏ ଚକ୍‌ରେ ବୋଳୁଥାନ୍ତି ଅଲକତରା, ନିଆଁ ଲଗାଇ ଗଡ଼େଇ ଦେଉଥାନ୍ତି ପାହାଡ଼ ଉପରୁ—କୁହାଟରେ, ଗୀତ ବୋଲରେ, କୋଳାହଳ ସାଥିରେ ଗଡ଼ି ଯାଇ ପହଞ୍ଚି ଯାଉଥାଏ ଓକାନଈରେ ତେବେ ମନେ କରାଯାଉଥାଏ—ସ୍ୱାରଲୋ ଗ୍ରହଣ କଲେ ତାଙ୍କର ଅର୍ଚ୍ଚନା—ଶୀଘ୍ର ଦିନଟା ଚମତ୍କାର ହେବ, ସୂର୍ଯ୍ୟରେ କଟିବ ଦୁଃସ୍ଥ—ସୁଖ ଆଣିବ ସମସ୍ତଙ୍କ ପାଇଁ ।

ରଜକନୀଗୁଡ଼ିକ ଭିତରୁ ଅଧିକାଂଶ ରହୁଥାନ୍ତି ସେଇ 'ସ୍ୱାରଲୋ' ପଡ଼ିଆରେ—ସେ ସମସ୍ତଙ୍କର କାମ କରିବାକୁ ଖଟିବାକୁ କି ତେଜ କି ବଳ ସତେ ! ଆଉ କେଡ଼େ କଟୁଭାଷଣୀ ମୁଖର ପୁଣି ସବୁ—ସହରର ଜୀବନ ସମ୍ପର୍କରେ ଠିକନଖି ଜ୍ଞାନ ଥାଏ ସେମାନଙ୍କର ? ତାଙ୍କ ମୁହଁରେ ବଣିକ ବେପାରୀ,କିରାନି, ହାକିମ; ସେଇ ଯେଉଁମାନଙ୍କ ପାଇଁ ଖଟୁଥାନ୍ତି ସେମାନେ—ସେଇମାନଙ୍କର ବର୍ଣ୍ଣନା ଶୁଣିବାକୁ ଭାରି ମନୋରମ ଲାଗୁଥାଏ । କେଡ଼େ ମନୋହାରୀ ଥାଏ ସତେ ! ଶୀତଦିନରେ ଝରଣାର ବରଫ ହେମାଳ ପାଣିରେ ଲୁଗାପଟା କାଚିବା ହକାଳିବା କି ନିଷ୍ଠୁର ନିର୍ମମ ମ ? ମାଇପିଲୋକଗୁଡ଼ିକଙ୍କ ହାତ ବରଫ ପାଲଟି ଯାଉଥାଏ—ଚମଡ଼ା ଚଡ଼ ଚଡ଼ ଫାଟି ଯିବାଯାଏ—ଅଣ୍ଟା ବଙ୍କେଇ କରି ରହୁଥାନ୍ତି ସେମାନେ ଦିନଟି ଯାକ—ଗଡ଼ାଣିଆ ଖାଲୁଆ ବିରାଟ କାଠକୁଣ୍ଡ ଉପରେ । ତା' ଭିତରେ ଅନବରତ ଆସି ପଡ଼ୁଥାଏ ପାଣି ଝରଣାରୁ-ପୁରୁଣା ଖୋପର ଭଙ୍ଗା କାଠ ପଟାର ଛାତତଳେ—ପାଣି ପବନରୁ ତୁଷାର ଝଡ଼ରୁ, ସେମାନେ ରକ୍ଷା ପାଉନଥାନ୍ତି ଅଧୌ କହିଲେ ଚଳେ । ମୁହଁଗୁଡ଼ାକ ଦିଶୁଥାଏ ଲାଲ ଟହ ଟହ—ଆଉ ହେମାଳରେ, ତୁଷାର ମାଡ଼ରେ ଖାଇ ଖାଇ ଯାଇଥାଏ ଯେମିତି ଅଙ୍ଗୁଳି-ଗୁଡ଼ିକରେ ଲାଗି ରହିଥାଏ ଯନ୍ତ୍ରଣା ଖାଲି—ପରସ୍ପ ଅଙ୍ଗୁଳିଗୁଡ଼ାକ ବଙ୍କେଇବା

ପାଇଁ ନାରାଜ ହେଉଥାନ୍ତି ସଦାବେଳେ ଆଖିରୁ ଅବାରିତ ଧାରରେ ବନ୍ଧ ଯାଉଥାଏ ଟୋପାକୁ ଟୋପାକୁ ଲୁହ । ତଥାପି ଝିଅଏ ହେଲେ ନ ଅଟକି ବକର ବକର ହେଉଥାନ୍ତି ସେମାନେ— ଏକାବେଳେକେ ସଦ୍ୟ ଘଟଣାଗୁଡ଼ାକୁ ପରସ୍ପରକୁ ଜଣେଇ ଜଣେଇ ଅଉ ଅସାମାନ୍ୟ ସାହସରେ ଦମ୍ଭରେ କେମିତି ସତେ ସବୁ କଥା ସବୁ ଘଟଣା ସବୁ ପଦାର୍ଥ ଆଉ ସବୁ ଲୋକଙ୍କୁ ଯେମିତ ସେମିତ ଗ୍ରହଣ କରି, ସ୍ୱୀକାର କରି ନେଇ !

ସେମାନଙ୍କ ଭିତରେ ସବୁଠୁ ଭଲ କହିପାରୁଥାଏ ସିଏ କୁହାମୁଣ୍ଡୀ— ନାତାଲୟୁ, କୋଳକୋଲେଉସ୍ୱାସ୍ୱା – ଉଣିଶରୁ ଟିକେ ଅଳ୍ପ କିଛି ଅଧିକ ବୟସର ମାଇପିଟିଏ—ସତେଜ ଆଉ ସବଳ, କଟାକ୍ଷମୟୀ ଛୁଗୁଲେଇ ଛୁଗୁଲେଇ ଟାହି-ଟାପରରେ ବଡ୍ରୁପ ଆଖି ଯୋଡ଼ିକ– ଆଉ ବିଶେଷକରି ଧାରୁଆ ସାଣୁଆ ଯେମିତି ପାଟିଟା, ସେମିତି ସ୍ୱଚ୍ଛଳ ଅବାଧରେ ଦୁନିଆ ଖେଦି ଅସିବାକୁ ତେଜ ପ୍ରଖର ପାଟିଟା ତାର । ଆଉ ମାଇପେ ସବୁ ଶୁଣୁଥାନ୍ତି ମନଧ୍ୟାନ ଦେଇ ଯେତେବେଳେ ସେ କହୁଥାଏ—ଲୋଡ଼ୁଥାନ୍ତି ତାର ପରାମର୍ଶଟା, ଆଉ ମାନଥାନ ଦେଖାଉଥାନ୍ତି, ସମ୍ମାନ କରୁଥାନ୍ତି ତାକୁ କାମରେ ତାର ଦକ୍ଷତା ଯୋଗୁଁ ରୁଚିସମ୍ମତ ସହଜ ବେଶଭୂଷା ପରିପାଟୀ ପାଇଁ—ଆଉ ସିଏ ଯେ ତାର ଝିଅଟିକୁ ଉଚ୍ଚବିଦ୍ୟାଳୟକୁ ପଠେଇଥାଏ ପଢିବା ସକାଶେ । ସେଥିପାଇଁ ବି ସେ ଯେତେବେଳେ ଯାଉଥାଏ ଝରଣା ଗଡ଼ାଣିଆରେ—ଦ ଗଣ୍ଡିଏ ଓଦା ଲୁଗାପଟା ବୋଝରେ ନଇଁପଡ଼ି, ତଳେ ମିଶିଯାଇ ସେମିତି—ଖୁସିରେ ଆନନ୍ଦରେ ସମସ୍ତେ ତାକୁ ଆଗ କୁଶଳ ପଚାରୁଥାନ୍ତି ।

"କେମିତି ଅଛୁ ଲୋ—ସେଇ ଝିଅଟି ମ ତୋର ?" ଜାଣିବାକୁ ଚାହୁଁଥାନ୍ତି ସମସ୍ତେ ।

"ଭଲ ଅଛୁ ଲୋ । ଠାକୁରଙ୍କ ବଡ଼ତି ହେଉ, ପଢ଼ୁଚି !"

"ତୁ ଜାଣି ନଥିବୁ ଲୋ, ତୋ ଜାଣିବା ଆଗରୁ ଭଦ୍ରଘରର ମାଇପିଟିଏ ହୋଇଯାଇଥିବ ଲୋ ସିଏ !

"ସେଇଥିପାଇଁ ତ ପଠେଇଚ ତାକୁ ସ୍କୁଲକୁ, ସୁନ୍ଦରୀ ଭଦରଘର ଝିଅର ସୁନେଲ ବାଳ ହେଲା କେଉଁଠୁ ମ ? ଆମରିଠୁ, ଆମରିଠୁ, ପାଇଚୁ ସେ—ଆମେ ସିଏ ମାଟିରେ ମାଟିତଳିହା ଜୀବନଗୁଡ଼ାକ ମ—ଆମରିଠୁ—ନଇଲେ ଆଉ କୋଉଠୁ ମ ? ଯେତେ ଯେତେ ଜାଣିବ, ସେତେ ସେତେ ସୁନ୍ଦରିଆ ହୋଇ ଉଠିବ ଲୋ, ଠାକୁରେ ତ ଆମକୁ ପଠେଇଥିଲେ ମର୍ତ୍ତ୍ୟକୁ···ପିଲଟିଏ ମାନ, ବୋକାଟିଏ ମାନ କରି—କିନ୍ତୁ ସେ ଚାହାନ୍ତି ଆମେ ଯେତେବେଳେ ଛାଡ଼ିସିବୁ ମର୍ତ୍ତ୍ୟକୁ ଛାଡ଼ିସିବୁ ବୁଢ଼ୀ ହୋଇ, ବୁଦ୍ଧିଆ ହୋଇ, ବଙ୍କ ହୋଇ—ଏଣୁ ଆମର କାମ, ଆମ ଦାୟିତ୍ୱ ପଢ଼ିବ ଆଉ ଶିଖିବା, ଜାଣିବା ସବୁ !

ସମସ୍ତେ ଚୁପ ହୋଇଯାଆନ୍ତି, ସେ ଯେତେବେଳେ କିଛି କହେ। ମନଯୋଗଦେଇ ଏକ ଲୟରେ ଶୁଣନ୍ତି ସବୁ ତାର ଧୀର ଅବିଚଳିତ ନିଷ୍ଠାତ୍ମକ ପ୍ରବହମାନ ବକ୍ତୃତାଟିକୁ। ସେମାନେ ତାକୁ ପ୍ରଶଂସା କରୁଥାନ୍ତି ସାମନାରେ ତାର, ପଛରେ ବି ପ୍ରଶଂସା କରୁଥାନ୍ତି ଆଶ୍ଚର୍ଯ୍ୟ ହୋଇ ତାର ଶକ୍ତିରେ, ତେଜରେ ସହିଷ୍ଣୁତାରେ, ଚତୁରତାରେ। ବୁଟ୍‌ଜୋତାର ଉପର ଚମଡାରେ ଢିଆରି କରିଥାଏ ସେ ଦସ୍ତାନା କହୁଣୀ ଯାଏ ବାହୁ ହାତଟାକୁ ରକ୍ଷା କରିବା ପାଇଁ ପାଣି-ପବନରୁ ଆଉ ଆସ୍ତିନ ହାତଟାକୁ ଓଦା ହେବାକୁ ବି ନଦେବା ପାଇଁ—ସମସ୍ତେ କହୁଥାନ୍ତି ଖାସି ବୁଦ୍ଧିଆ କାମଟାଏ କରିଥାଏ ସେ—କିନ୍ତୁ ଆଉ କେହି କରୁ ନ ଥାନ୍ତି ସେମିତି—ପିନ୍ଧୁ ନ ଥାନ୍ତି କହୁଣୀଯାଏ ଚମଡ଼ା ଦସ୍ତାନା—ଏଣୁ ମୁଁ ଯେତେବେଳେ ଦିନେ ପହଞ୍ଚିଗଲି, ଦେଖାଦେଲି ସେମିତି ହଲେ ଦସ୍ତାନା ପିନ୍ଧି—ମାଇପେଗୁଡ଼ାକ ଲେଟିଗଲେ ହସି ହସିକା ଅଟାଟାପରି ଲଗାଇ ମୋ ସଙ୍ଗରେ।

"ଆଲେ ହେ ଏଁ, ହେବ, ମାଇପଙ୍କଠୁ ଶିଖା – ଦେଖାଶିଖା ମ !" ଚିଡ଼େଇଲେ ମତେ !

ଆଉ ସେମାନେ କିନ୍ତୁ କହୁଥାନ୍ତି ତା ଝିଅ ସମ୍ପର୍କରେ—"ମଲି କି ଗରବର ଟୋକୀଟା ମ—ଆଲେ, ଆଉ ଗୋଟାଏ 'ବାବୁଆଣୀ' ଅଧିକା ହେବ, ଆଉ କଣ ? ହୁଏତ ସେ ପଢ଼ା ଶେଷ କରି ପାରିବ ନାହିଁ—ହୁଏତ ଆଗରୁ ମରିଯିବ ସେ !"

' ଆଲେ, ପାଠପଢ଼ୁଆ ପଣ୍ଡିତଗୁଡ଼ାକ ପାଇଁ ଜୀବନଟା କୋଉ ସହଜିଆ ଯେ ! ଏଇ ଦେଖ ମ ବ୍ୟାଗଲେଭିଙ୍କ ଝିଅଟା କଥା—ଦେଖ କେତେ ଦିନ ପଢିଲା ଶେଷରେ କଣ ହେଲା ଯେ ତାର ! ହେଲା ଇସ୍କୁଲ ମାଷ୍ଟ୍ରାଣୀ—ଆଉ ଥରେ ମାଷ୍ଟ୍ରାଣୀ, ସ୍ବାମାନେ ତ ଆଇବୁଢ଼ୀ—ଅଭିଆଡ଼—କୁଆଁରୀ !''

''ହଁ ଲେ ଠିକ ମ ! ଧରିପକେଇବ ନାହିଁ, ଟାଣି ନେବ ନାହିଁ ତମକୁ ବହିଫହି ପଢ଼ା—ନ ଥାଉ ପଛେ ଯଦି ଲମ୍ବାଳିଆ ସୁନ୍ଦରିଆ କିଛି ଥିବା ତମର ଯେତେଦିନ ଯାଏ ମୁଟେଇବା ପାଇଁ ମ !

''ମାଇପିଟାର ବୁଦ୍ଧିଶୁଦ୍ଧି କ'ଣ ମୁଣ୍ଡରେ ଥାଏ କି ଲୋ ?"

ଅଦ୍ଭୁତ ଲାଗୁଥାଏ, ମନଟାକୁ ବିଚଳିତ କରିଦେଉଥାଏ—ଶୁଣିଲି ମାନକେ ସେମାନେ ଯେମିତି ନିଜ ନିଜ ବିଷୟରେ କଥା ହେଉଥାନ୍ତି, ଏତେ ନିର୍ଲଜ୍ଜ ଭାବରେ। ଜାଣିଥାଏ ମୁଁ ସୈନ୍ୟଗୁଡ଼ାକ ନାବିକଗୁଡ଼ାକ ଆଉ ଗାଡ ଖୋଳାଳି ସବୁ ଯେମିତି କଥାବାର୍ତ୍ତା ହୁଅନ୍ତି, ଯାହା କହନ୍ତି ସ୍ତ୍ରୀଲୋକଙ୍କ ସଂପର୍କରେ—ଶୁଣିଥାଏ ମୁଁ ଲୋକେ କେମିତି ବଡ଼େଇ କରନ୍ତି, ଦେଖେଇ ହୁଅନ୍ତି ପରସ୍ପର ଆଗରେ, ନିଜ ନିଜର ଫୁଲୁଫସିଆ ଯୌନ ଆଉ କେତେ 'ମାଇକିନିଆ'ଙ୍କୁ କେମିତି ବୋକା ବନେଇଥାନ୍ତି ଆଖିରେ ଧୂଳି ପକେଇ ସେଇ ବିଷୟରେ - ବାରିପାରୁଥାଏ ଶାନ୍ତୀ-ଭାଉଜ ପ୍ରତି ସେମାନଙ୍କର ଶତ୍ରୁପଣିଆ କିନ୍ତୁ ଶୁଣୁଥାଏ ଯେତେବେଳେ

କେହି ଜଣେ କହିହେଉଥାଏ ତାର 'ଲଡାପଟ' 'ମାଇକିନିଆ' ଜସ୍ବ କଥା ତାର ସେଇ ବାହାପିଆ ଅଟ୍ଟୋଟଗୁଡ଼ାକରେ ଏମିତ କଛୁ ଥାଏ, ବୁଝି ପାରୁଥାଏ ସେଥିରୁ ତା' କଥାଗୁଡ଼ାକରେ ଯେତେ ଅତରଞ୍ଜିତ ସେତେ ସତ ନୁହେଁ —

ରଜକନୀଗୁଡ଼ିକ ପରସ୍ପର ଆଗରେ କେବେହେଲେ ଫିଟଉ ନ ଥାନ୍ତି ସେମାନଙ୍କ ନିଜ ନିଜର ପ୍ରେମର କାରବାର ଯାହା, କିନ୍ତୁ ମରଦଙ୍କ ବିଷୟରେ କହୁଥାନ୍ତି—କୁହାକୋହି ହେଉଥାନ୍ତି ଯେତେବେଳେ କହୁଥାନ୍ତି ଏମିତ ମାଉଁସଚ୍ଛଡ଼ା ବନ୍ଦୁ ପରେ, ଏମିତ ପ୍ରତଶୋଧ ନେଲଭଳି ସ୍ୱଗତୋକ୍ତିପରେ ସେ ପ୍ରକୃତରେ ସେତେ-ବେଳେ ସେମାନେ ସମର୍ଥନ କରୁଥାନ୍ତି ସେଇ ଉକ୍ତିଟାକୁ—ମାଇକିନିଆଗୁଡ଼ିକ ଗୋଟାଏ ଶକ୍ତି— କଳନା କଲାଭଳି ହିସାବକୁ ନେଇ ସାମନା କଲାଭଳି ଏକା !

"ମଲ ଯେତେ ତମେ ଆଡ଼େଇ ଯାଅ ମ— ଯେତେ ଗୃହଁ ଏଡ଼େଇ ଦେବ ବୋଲି ମାଇକିନିଅଙ୍କ ପାଖକୁ ଲେଉଟି ନ ଆସି ଯିବ କୁଆଡ଼େରେ ବାବୁ ?" ନିଜେ ମତାମତଟା ଜଣେଇହେଲ ନାଡ଼ାଲସ୍ୱା !

"ସତ ମ, ଗୋଟିକିଯାକ ନିରୋଳା ଖାଣ୍ଟି ସତ ମ," ବୁଢ଼ୀ ଧୋବଣୀଟାଏ କର୍କିମିଆ ସ୍ୱରରେ ପାଟିକରି ଶୁଣେଇଲା ସାଂଗେ ସାଂଗେ—"ଅଲୋ କୋଉ ମୁନିରୁଷି ବାବାଜି ମହନ୍ତ ବା ଦିଅଁଦେବତାଙ୍କୁ ଛୁଡ଼େ ନାହିଁ ; ଭୁଲେ ନାହିଁ ଆମ ପାଖକୁ ଆସିବା ପାଇଁ—"

ସାବୁନ ଫେଣର ସେଁ ସେଁ ଆଉ ଭିଜାପାଣି ସରସର ଓଦା ଲୁଗାପଟା— ପୋଷାକପତ୍ରର କଚକାଚ ସେ ସବୁ ସାଥିରେ ଏଇ କଥାବାର୍ତ୍ତା, ଏଇ ଗପ, ଏଇଠି—ଏଇ ଉପତ୍ୟକାର ଗୋହିରୀର ଗର୍ତ୍ତିରେ ତଳେ କେଉଁଠି ଅସନା ଗାତଟାରେ—ସେଇ ଯେଉଁଠି 'ସଫାସୁତୁରାକାଶ୍ୱ', ସେଇ ଯେଉଁଠି ଏମିତ କ ସଫାସୁତୁରାକାଶ୍ୱ ତୁଷାର ବ ରହିପାରେ ନାହିଁ କିଛିଦିନ, ବେଶୀ ସମୟ—ସେଇଠି ଏଇ ମୋର 'ଲଜ୍ଜାଜନକ' କୁହ୍ସିତ ଆଲୋଚନା ଗୋଟାଏ ସବୁଠୁ ବଲ ମହାନ ରହସ୍ୟ ଯେନ—ଯେଉଁ ମୂଳଉତ୍ସରୁ ନିର୍ଗତ ହୁଏ ସମସ୍ତ ଜନସାଧାରଣ, ସମସ୍ତ ଜାତ ? ସମସ୍ତ ଲୋକ ଉତ୍ସାହିତ ହୁଅନ୍ତି ସମସ୍ତ ଜାତ ସମସ୍ତ ଲୋକେ ସେଇ ମୂଳ ଉତ୍ସ ଯେନ—ମୋ ମନରେ ମୋ ଅନୁଭୂତରେ ଜଗେଇଦେଲା କ ଗୋଟିଏ କେମିତ ଖିରୁ ଖିରୁ—ଗୋଟାଏ କେମିତ ଅଭୁତ ଆକସ୍ମିକ ପରିବର୍ତ୍ତନ— ବିରକ୍ତ ! ମୋର ସକଳ ଚନ୍ତା ଓ ଭାବନାକୁ, ସୂକ୍ଷ୍ମ ସକଳ ସଂବେଦନାକୁ ସେଇ ଯେଉଁ "ପ୍ରେମ କାରବାର" ବିଷୟ ଏତେ ଜବରଦସ୍ତ ଭାବରେ ଲଦି ହୋଇ ପଡ଼ୁଥିଲା ମୋ ଉପରେ, ଘୃପି ଦେଉଥିଲା ମତେ, ସେଇଥିରୁ ସେଇ 'ପ୍ରେମ କାରବାର'ରୁ ଚମକେଇ ଭୟରେ ବିରକ୍ତିରେ ଓଲଟି ଘୁଞ୍ଚେଇ ଦେଉଥିଲା ପଛକୁ—ବହୁତ, ବହୁତ ଦିନଯାଏ, 'ପ୍ରେମ' ସଂକ୍ରାନ୍ତ ଧାରଣାଟା ମୋର ମନରେ ଘନିଷ୍ଠଭାବରେ, ସଂଯୁକ୍ତ ହୋଇ ରହିଥିଲା ଏଇ ସବୁ ଅତ କଳୁଷିତମୟ କୁତ୍ସିତ ଅଶ୍ଳୀଳ କ୍ରିୟାକଳାପରେ ।

ତଥାପି ଉପତ୍ୟକାଟିରେ ଯେଉଁ ସେଇ ଯୋବଣୀମାନଙ୍କ ସଂଗରେ ଖେଳେଇଶାଳରେ, ସେଇ ସାମନ୍ତ ହାକମଙ୍କୁଙ୍କ ନୌକରଙ୍କ ସାଥିରେ, ନଇଲେ ବା ଅନ୍ଧାରିଆ ଗନ୍ଧୁଆ କୁଡ଼ିଆରେ ଶ୍ରମିକମାନଙ୍କ ଗହଣରେ ଜୀବନଟା ଅନୁଭବ କରୁଥିଲି ଅତୁଳନୀୟ ଭାବରେ—ଅଧିକ ମନୋରମ, ଅଧିକ ଆକର୍ଷଣୀୟ ସେଇ ଜୀବନଠ, ଘରେ ଯେଉଁଠି ଥିଲେ ମୁଁ, ଯେଉଁଠି ବରଫରେ ଜମାଟବନ୍ଧା ତାଙ୍କର କଥାବାର୍ତ୍ତା କଳ୍ପନାଜଳ୍ପନା ଧାରଣା ଅବଧାରଣା ଆଉ ଘଟଣାଗୁଡ଼ାକ ମନରେ ମୋର ଜନ୍ମେଇ ଦେଉଥିଲା ଗୋଟାଏ ନିଷ୍ପ୍ରାଣ ଝୁଞ୍ଜ ଜଡ଼ତା, ଗୋଟାଏ ବିରକ୍ତି । ମୋ ମାଲିକଗୁଡ଼ାଙ୍କର ଜୀବନ ଗଢ଼ କରୁଥିଲା ଖାଇବା, ଶୋଇବା, ଖେଳରେ ପଡ଼ିବା, ପୁଣି ଫୁଲପଣରେ, ଜାକଜକମରେ, ଫାଙ୍କା ଆଡ଼ମ୍ବରରେ ଗଇବା ଓ ଶୋଇବା ପାଇଁ ପ୍ରସ୍ତୁତ ହେବା ଏଇ ପାପଚକ୍ରରେ ! ଅବିଶ୍ରାମ ଗପୁଥିଲେ ସେମାନେ ପାପ ଆଉ ମୃତ୍ୟୁ ବିଷୟରେ— ସେଇ ଭଳିଗୁଡ଼ାକ ଘୂଣପଟେ ପୁଞ୍ଜା ବାନ୍ଧ ଚକର ମାରିଲା ଖୁର୍ଣ୍ଣି ଯେଉଁ 'ଶସ୍ୟ-ଦାନା' ଭଳି ସେମିତ ପେଷି ହୋଇଯିବାର ଘୋର ଆତଙ୍କପ୍ରଦ ଉଦ୍‌ବେଗରେ ।

କାମ ବରଦ ସମୟରେ ବାହାରକୁ ଖସି ଯାଉଥାଏ ମୁଁ ଷ୍ଟଳଆ ଭିତରକୁ— ଜାଲେଣି କାଠକୁ ସବୁ ଟୁକୁର ଟୁକୁର କରୁଥାଏ—ଏକୁଟିଆ ଟିକେ ରହି ପାରିବ ଯେମିତ, ଉକାହକାରୁ ଛାଡ଼ି ପାଇଁ ! କିନ୍ତୁ ସେଠି ବି କ୍ୱଚିତ ନିର୍ଜନତା ଜୁଟୁଥାଏ ମୋ ଭାଗ୍ୟରେ—ସାମରିକ ହାକମଙ୍କ ନୌକର ଅର୍ଦ୍ଦଲି ସବୁ ପହଞ୍ଚି ଯାଉଥାନ୍ତି ଆସି ଆଉ ଆମ ଅଗଣାରେ ଲୋକମାନଙ୍କ ସମ୍ପର୍କରେ ଆରମ୍ଭ କରି ଦେଉଥାନ୍ତି ଗପ ।

ଅନେକ ସମୟରେ ମୋ ପାଖରେ ଆସି ମିଶୁଥାନ୍ତି ଯେର୍ମୋଚୀନ ନଇଲେ ସିଦୋରଭ ପ୍ରଥମ ଜଣକ ଡେଙ୍ଗା, ନୁଆଁଣିଆ ଓହଲଲା କାନ୍ଧର ଲୋକ । ଗ୍ଲେଟ ମୁଣ୍ଡଟିଏ ତାର । ଆଖି ଦିଓଟି ଢ଼ଳ ଢଳ ଛଳ ଛଳ ସବୁବେଳେ ଦିଶୁଥାଏ ଯେମିତ ମୋଟା ମୋଟା ଟାଣୁଆ ସ୍ନାୟୁରେ, ପେଶୀ ତନ୍ତୁରେ ! ଯେମିତ ଅଳଚୁଅଁ ଯେମିତ ଦିହଟିଡ଼େଇଲି ଯୌଯି ଫେସେଇଦେଲା ଭଳି ବୋକା ବିଗୁର୍ଦ୍ଧିଆ । ତାର ଚ୍ଛଲ-ଚଲଣ ଯେମିତ ମନ୍ଥର ସେମିତ ଅଡ଼ୁଡ଼ଙ୍କିଆ ବେଆଡ଼ା—ମାଇଚିଟାଏ ଉପରେ ଆଖି ପଡ଼ିଲା ମାତ୍ରକେ ତାର ମଁ ମଁ......ହୋଇ ନେଧେଡ଼ି ପଡୁଥାଏ ଆଗକୁ କାଦୁଅ ମେଞ୍ଚାଟାଏ ପରି ସତେ ଯେମିତ ଲେଟିଯିବ ସେଇ ମାଇଚିଟା ପାଦରେ ! ଆମର ସେଇ ଅଗଣାଟାରେ ଯେତେ ଯେଉଁଠି ମରଦଲୋକ ଥାଆନ୍ତି, କେହି କେବେ ବୁଝିପାରୁ ନଥାନ୍ତି କେମିତ ସେ ଏତେ ବେଗରେ ଜାଣି ନେଉଥାଏ ଖେଳେଇଣୀ ଆଉ ପୋଇଲି ପରିବାରିଗୁଡ଼ାକୁ—ସମସ୍ତେ ହିଂସା କରୁଥାନ୍ତି ତାକୁ କିନ୍ତୁ ତାର ଖଲଭଲ ବଳକୁ ଦେଖି ଡ଼ରି ପାଖେଇ ରହୁଥାନ୍ତି ଦୂରରେ ।

ପାତଳା ହାଲୁଆ ଲୋକଟିଏ ସିନ୍ଦୋରେଲ । 'ଗୁଲା'ର ସେ ! ସବୁବେଳେ ମୁହଁରେ ଭାବଭଙ୍ଗୀରେ ବଏଣ୍ଟା—କଥା କହୁଥାଏ ଥରଥର ନରମ ଭାବରେ—କାଶୁଥାଏ ଡ଼ର ଡ଼ର, ଆଖି ଯୋଡ଼ିକ ଜଳୁଥାଏ ତାର ରହି ରହିକା ଦପ୍ ଦପ୍ ଡ଼ରକୁଳା ଜ୍ୟୋତିରେ ଆଉ ସବୁବେଳେ ସେ ଗୁହୁଁଥାଏ ଖାଲି ଅନ୍ଧାରଆ କଣ-ଗୁଡ଼ାକୁ, ଗଲା ଚପି ଚପି ଥର ଥର ସ୍ୱରରେ କହିଲା ବେଳେ କଛି କ ଚୁପ୍ ହୋଇ ବସି ରହିଲା ବେଳେ, ତାର ଆଖିଯୋଡ଼ିକୁ ସେ ଯେମିତି ଅଠାରେ ଲଗେଇ ଦେଉଥାଏ ଅନ୍ଧାରଆ କଣରେ—

"କାହାକୁ ଅନେଇଚୁରେ ?"

"ସୃତାଟାଏ ବାହାର ପଡ଼ିବ—ଦୌଡ଼ି ଆସିବ ବୋଧହୁଏ !"

"ଭଲ ଲାଗେନ, ମତେ ମୂଷାଗୁଡାକ—କେତେ ଭୁରଭୁରଆ ! କେମିତି ଚୁପ୍‌ଚାପ ଶାନ୍ତ ପ୍ରକୃତର ଶ୍ରେଷ୍ଠ ଶ୍ରେଷ୍ଠ ଜୀବଟିମାନ ସେମାନେ !"

ସେଇ ଅଫିସର—ଅର୍ଦ୍ଦଲିଙ୍କ ପାଇଁ ଗୁକରଙ୍କ ପାଇଁ ଚିଠିପତ୍ର ଲେଖି ଦେଉଥାଏ ମୁଁ—ଲେଖୁଥାଏ ସେମାନଙ୍କ ପ୍ରିୟତମାମାନଙ୍କ ପାଖକୁ ନଇଲେ ବା ଗାଆଁର ସେମାନଙ୍କର ପରିବାର କାହାକୁ ! ବେଶ୍ କରୁଥାଏ, ଭଲ ଲାଗୁଥାଏ ମତେ ଏ କାମଟା—ବିଶେଷରେ ସିନ୍ଦୋରଭ ପାଇଁ ! ପ୍ରତି ଶନିବାରରେ ଚିଠି ଲେଖିଥାଏ । ଗୁଲାକୁ ତାର ଭଉଣୀ ପାଖକୁ—!

ସେ ମତେ ନିମନ୍ତ୍ରଣ କରୁଥାଏ, ଡାକନେଉଥାଏ କେତେବେଳେ କେମିତି ତାର ବ୍ୱେଷଘରକୁ—ଟେବୁଲରେ ମୋ ପାଖରେ ବସୁଥାଏ—ଲଣ୍ଡା ଖିଅର ମୁଣ୍ଡଟାକୁ ଘଷି ଘଷି ଜୋରରେ—ଆଉ ମୋ କାନ ପାଖରେ ଫିସ ଫିସ୍ କରି ଭୁନ ଭୁନ କହୁଥାଏ ।

"ବେଶ, ଆରମ୍ଭ କରାଯାଉ—ପ୍ରଥମେ ଯେମିତି ପ୍ରସ୍ତାବନା ତମର—ମହାମାନ୍ୟାସ୍ମା ଭଗିନୀ ; ଅନନ୍ତକାଳ ଯାଏ ଦେହ କୁଶଳ ରହୁ ତମର !—ଆଉ ଏମିତି ବାକ୍ୟ ସବୁ ଯାହା ସରଳ ? ଭଲ, ଲେଖ ଏବେ "ତମ ରୁବଲ୍ଟି ପାଇଛି, କିନ୍ତୁ ଏମିତି କରିବା ଉଚିତ ନୁହେଁ ତମର, ବହୁତ ଧନ୍ୟବାଦ ତମକୁ । ମୋର କଛି ଲୋଡ଼ା ନାହିଁ । ଏଠି ସୁନ୍ଦର ଦିନ କଟୁଚି, ନା' ସୁନ୍ଦର ଭାବେ ଦିନ କଟୁଚି, ଚମତ୍କାର ଚଳୁଚି ! ଆମେ ଏଠି ରହିଛୁ କୁକୁର ପଲପରି କିନ୍ତୁ ତମକୁ ତ ଆଉ ଏକଥା କହିବାକୁ ହେବ ନାହିଁ । ତାକୁ, ଭଉଣୀକୁ ଲେଖ—"ଚମତ୍କାର ଚଳୁଛି ।" ଏବେ, ଏତେଟିକେ ଜୁନିଟିଏ ସେ—ମୋଟେ ଚଉଦବର୍ଷ ତାକୁ ! ତାର କିଛି ସବୁ ଜାଣିବା ଉଚିତ । ଏବେ ଲେଖ, ଲେଖି ଯାଅ—ଯେମିତି ଶିଖିଛ, ଶିଖେଇଛନ୍ତି ସବୁ ତମକୁ—।"

ମୋ କାନ୍ଧ ଉପରେ ଝୁଙ୍କି ଓହଳି ପଡ଼ୁଥାଏ ସେ—ଚାଲିଲା ଚୋଡାନ୍ତ ସୁଗନ୍ଧ ନିଶ୍ୱାସ ଛାଡୁଥାଏ ମୋ ମୁହଁ ଉପରେ—ଗୋଟାଏ ଜଗରରେ ଫୁସ ଫୁସ କରି କହୁଥାଏ ମୋ କାନରେ—

"କହ, ଲେଖ ତାକୁ—ଟୋକାଗୁଡ଼ାଙ୍କୁ ଯେମିତ ତାଙ୍କ ଗ୍ରତରେ ନାକ ଗେଲ କରିବାକୁ ଦେବ ନାହିଁ—ପ୍ରନଦୁଇଟି ଛୁଆଁଇ ଦେବ ନାହିଁ କ ଏମିତ ଆଉ କଛୁ କରିବାକୁ !" ଲେଖ—"ଯଦ କଏ ମଧୁର ସ୍ୱରରେ ମିଠା କଥା କହେ ତୋ ସାଙ୍ଗରେ, କେବେ ବିଶ୍ୱାସ କରିବୁ ନାହିଁ ତାକୁ, ସେ ଖାଲ ସ୍ପର୍ଶ କରି ତମକୁ ରୋଗୀ ବନେଇବ—ନଷ୍ଟ କରିଦେବ ।"

ସାଧାରଣତଃ ଚେଷ୍ଟାକଲ କାଶି ପକେଇବ ନାହିଁ ଯେମିତ । ନଳ ପଣ୍ଡଚଲ ଧୂସର ମୁହଁଟା । ଡେଉଡେଉକା ହୋଇ ଫୁଲଫୁଲ ଉଠିଲ ଗାଲ ଦୁଇଟା, ଆଖିରେ ଢଳଢଳ ହୋଇ ଆସିଲ ଲୁହ—ମେ ଦେହରେ ବାଡ଼େଇ ହୋଇଯାଇ ନଇଁଗଲା, ଦୋହରେଇଦେଇ ଦେହଟାକୁ ଅଣ୍ଟାପାଖରୁ ।

"ମୋ ବାହାଟାକୁ ଠେଲ ନେଉଛ ଯେ !"

"ଆଚ୍ଛା, ଅଚ୍ଛା—ଠିକ୍ ! ଅଗେଇ, ଆ ଲେଖ—"ସମସ୍ତଙ୍କଠୁ ବେଶୀ ବଢ଼ିଆ ବଢ଼ିଆ ଭଦ୍ରଲୋକଙ୍କ ପ୍ରତି ସତର୍କ ରହିବୁ !" ଦେଖିଲ ମାନେହିଁ ପହିଲୁଟାକୁ ସେମାନେ ଯେକୌଣସି କଥା ଶିଖିପାରନ୍ତି, ଥରେ ଯଦ ବିଶ୍ୱାସ କର ସେମାନଙ୍କୁ, ତା'ପରେ ଆଉ କଛୁ ତମପାଇଁ ନାହିଁ—ବେଶ୍ୟାଳୟ ଛଡ଼ା । ଯଦ କୌଣସି ମତେ ବଂଚଉ, ସଂଚ ରୁବଲଟିଏ ଦେଇଦେବୁ ପଛେ ପାଦ୍ରୀଙ୍କୁ । ମଣିଷଟିଏ ହୋଇଥିଲେ ସେ ସେଇଟିକ ରଖିବେ, ସାଇତ ରଖିବେ ତୋ ପାଇଁ । ତେବେ ସ୍ବାଠୁ ଆହୁର ଭଲ କୋଉଠି ଯଦ ପୋତିରଖୁ, ମାଟିତଳେ—କୋଉଠି—କନୁ ଦେଖିବାକୁ ଠିକ୍ କର କେହି ଯେମିତ ନ ଦେଖେ ତତେ ସେତେବେଳେ, ଆଉ ତୁ ଯେମିତ ମନେରଖୁ କୋଉଠି ପୋତଲୁ ତାକୁ—"

ଭାରି କଷ୍ଟକର ହେଉଥାଏ ତାର ଫୁସ୍‌ଫୁସ କଥାଗୁଡ଼ାକୁ କାନପାତ ଶୁଣିବାଟା– ମୁଣ୍ଡ ଉପର ଷ୍ଟୋଭ ଝରକା କବଜାର କେଁକେଁଆ ସ୍ୱରରେ– ବୁଡ଼ିଯାଉଥାଏ ସେ ସବୁ ! ଆଖି ବୁଲେଇ ଆଣିଲି କଳା କଟ କଟ ଚୁଲ୍ଲିଟି ଉପରେ ଆଉ, ମାଛ ବସା ଡସ୍ ଭର୍ତ୍ତି ଖାଦ୍ୟ ଆଲମାରି ଉପରେ,–ସେତେବେଳ ଘରଟା ଏତେ ମଇଳା ହୋଇଥାଏ, ଛି, କଥାରେ ବର୍ଣ୍ଣନା କରିହେବ ନାହିଁ ଏମିତ !—ଗ୍ରତପୋକରେ ସାଲୁସାଲୁ, ନାକ ଫାଟି ପଡ଼ୁଥାଏ କଡ଼େଇନ ଧୂଆଁ ଆଉ ପୋଡ଼ା ଚର୍ବିର ଗନ୍ଧରେ ! ଅସରପା'ଗୁଡ଼ାକ ଫଡ଼୍ ଫଡ଼୍ ସର୍ ସର୍ ହେଉଥାନ୍ତି ଚୁଲ୍ଲି ଉପରେ, ସେମିତକା ଆଉ ସବୁ ଜନଖ ଉପରେ ! ହୃଦୟଟା ମୋର, କେତେ ଦୁଃଖଙ୍କ ଦୁଃଖିଆ ସେତେବେଳେ—ସତ କହିଲେ ଝରଝର୍ କାନ୍ଦ ପକେଇଥାନ୍ତି ମୁଁ ସେହି ଅସହାୟ ସୈନକଟି ଓ ତାର ଭଉଣୀଟି ପାଇଁ ! ଏମିତ ବଞ୍ଚିରହିବା, ଜୀବନ ଧରି ରହିବା ସତେ ସମ୍ଭବ ଥିଲ କେମିତ ?

ସିଦୋରୋଭର ଭୂନ ଭୂନ ଫୁସ୍‌ଫୁସ୍‌କୁ ବେଖାତର କରି ଅଡେଇଦେଇ ଲେଖିଗୁଲଲି—ଜୀବନଟା କେତେ ଅଚଳ କେତେ କାଉଁଦଆ, ଅସାତମୟ ଥିଲ କେମିତ ! ସେ ଖାଲି ସାର୍ଜ୍ଜେଣ୍ଟପଟିମାନ ପଳାଉଥାଏ—କହିଲ :

"ବହୁତ ବହୁତ ଲେଖିଲୁଣି । ଧନ୍ୟବାଦ । ଏବେ କଣ ସେ ଜାଣିଥିବ— ସେଇ ମ, ମୋ ଭଉଣୀଟି—କାହାକୁ କେମିତି ଡରିବାକୁ ହେବ ।"

"କୋଉଥିକୁ ଭୟ କରିବା ଉଚିତ ନୁହେଁ ତମର ।"

ରାଗରେ ଓଲଟି ଜବାବ୍ ଦେଲି ଠୋକନ,—କାଳେ ପଛେ ତେଣେ ଗୁଡ଼ିଏ ଡର ପୋଷି ଥାଏ ମନରେ—କେତେ ଜିନିଷକୁ କେତେ କଥାକୁ ଡର ।

ହସିଲି ସୈନିକଟି, ଝଙ୍କାର ସଫାକରି ନେଲି ଗଳାଟିକୁ—

"ଦୂର ବୋକା ! ନ ଡ଼ର ରହିପାରିବୁରେ କେମିତି ? ଏଇ ବଡ଼ବଡ଼ିଆ ଚକମକିଆ ଭଦ୍ରଲୋକଗୁଡ଼ାକଙ୍କୁ—ଭଗବାନଙ୍କୁ ? ଆଉ ଏମିତି ଅନେକ ଅନେକ କଥାକୁ ?"

ଭଉଣୀଠୁଁ ଚିଠିଟିଏ ପାଇଲେ ଧାଇଁ ଅସେ ମୋ ପାଖକୁ ଉତ୍କଣ୍ଠାରେ ଆଗ୍ରହରେ କହେ :

"ହେଇରେ, ଦେଇଚ ଦେଇଚ ଚିଠି—ଦେଏରେ ପଢ଼ ଟିକେ— ଶୁଣା ମତେ !"

ଆଦୌ ପଢ଼ିହେଉ ନ ଥିବ, ବାରିହେଉ ନ ଥିବ ପଛେ ଅକ୍ଷରଗୁଡ଼ାକ ଠିକ୍ କରି, ଭଲ ଚିଠିଟିର ।—ଏମିତି ହଡ଼ାଣିଆ ଭାଷାରେ ସଂକ୍ଷିପ୍ତ, ଏମିତି ଜଷ୍ଟାଣ, ହୋଇଥିବ ପଛେ ସେଇଟି,—ବାଧ୍ୟ କରେଇବ ମତେ ପଢ଼ିବାପାଇଁ— ତିନି ତିନିଥର !

ବଡ଼ ଦସ୍ତାବ୍ର ! ଉଦାର କୋମଳପ୍ରାଣ ମଣିଷଟିଏ ସେ—ହେଲେ କଣ ହେବ, 'ମାଇପ'ଙ୍କ ପ୍ରତି ତାର ମନୋଭାବ ଥାଏ ଆଉ ଦଶୁଟାଙ୍କ ପରି—ସେମିତି 'ମୋଟା' ସେମିତି ବର୍ବର, ସେମିତି ଆଦମ ! ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ, ଯେତେ ମୁଁ ଦେଖିବାକୁ ପାଉଥାଏ,—ପ୍ରେମପ୍ରୀତିର କାରବାରଗୁଡ଼ାକ ପ୍ରଚୁର ବେଗରେ ବଢ଼ିଚାଲିଚ ମୋ ସାମନାରେ,– ସେତେ ଲକ୍ଷ୍ୟ କରୁଥାଏ ସିଦୋରୋଭ ମାଇପିଲୋକଙ୍କ ମନରେ ଦସ୍ତା ଭାବ ଜନ୍ମାଇ ଦେଉଛୁ ତାର କଠିଣ ସୈନିକ ଜୀବନ ସଂପର୍କରେ ଅଭିଯୋଗଗୁଡ଼ିକ ବାଢ଼ି, ବର୍ଣ୍ଣନା କରି,—କୃତ୍ରିମ ଛଳନାମୟ 'ପ୍ରେମ'ର ବାହାନାକରି ମୁଣ୍ଡ ବିଗାଡ଼ ଦେଉଚ ସେମାନଙ୍କର, ଆଉ ପରେ ଯେତେବେଳେ କହୁ ବସୁଚ, ନିଜର ଜିତାପଟ 'ମାଇପି ମନ ଜିଣା' କାରବାର ବିଷୟରେ— ସେତେବେଳେ ଅ ଥୁ ଥୁ ହୋଇ ମୁହଁ ବଙ୍କେଇ ବିକୃତ କରୁଚ କେମିତି—ସତେ ସେଇ ମୁହୂର୍ତ୍ତିରେ ଯେମିତି କଟୁ ଉତ୍କଟ ପିତା ଔଷଧପାନେ ଗିଳି ଦେଲି ବା ! ଏଇଥିରେ—ଏଇ କାରବାରରେ ତାର—ଭାରି ଆଘାତ ଲଗୁଥାଏ ହୃଦୟରେ ମୋର—ହୃଦୟଟା ଆହତ ହୋଇଥାଏ ମୋର—ପଗ୍ଚାରିଲି ମୁଁ ତାକୁ, ସେଇ ସୈନିକଟିକୁ—ସେମାନେ ସମସ୍ତେ ମିଛସତ କହୁ ସେମିତି ଭଣ୍ଡଉଥାନ୍ତି, ଆଉ ତୁଚ୍ଛତାଚ୍ଛଲ୍ୟ କରି ଖେଲଣା ବୋଲି ନଚାଉଥାନ୍ତି କାହିଁକି

ମାଇଁସିଗୁଡ଼ାଙ୍କୁ—ଜଣକ ହାତରୁ ଆଉ ଜଣକ ପାଖକୁ ଏମିତ 'ଡଆଁଇ ହାତକୁ ହାତ ସମସ୍ତେ—ଏମିତକ ଅନେକ ସମୟରେ ସେମାନଙ୍କୁ ମାଡ଼ମାର, ବକଲା-କର—କାହିଁକ ?

ଥରକନ ହସିଲା ସେ, କହିଲା : "ସେମିତକା କଥାଗୁଡ଼ାକୁ ଦୃଷ୍ଟି ଦେଏ ନା, ମନଧ୍ୟାନ ଦେଏ ନା । ଝଗଡ଼—ଅଡଖଗ୍ରପ,—ଏମିତ ପାପୀ ଦୁଷ୍କୃତ ସବୁ ! ଖୁବ୍ ଅଳ୍ପ ବୟସ ତୋର, ବୟସରେ କଞ୍ଚା, ଅତ କଞ୍ଚା ତୁ—ସମସ୍ତ ହୋଇନ, ଏସବୁ ଜାଣିବା ପାଇଁ—ତୋର !"

ଏଦନେ କନ୍ତୁ ସବୁ ସଫଳ ହୋଇଗଲା, ଅଧିକ ସିଧା ସଳଖ ନିର୍ଦ୍ଦିଷ୍ଟ ଉତ୍ତରଟାଏ ପାଇବାରେ—ଏମିତକା ଉତ୍ତରଟାଏ, ଯାହାକୁ ଆଜି ବ ଭୁଲ ପାରନ ମୁଁ —

"ତୁ କଣ ଭାବଚୁ, ମାଇଁସିଟା ଜାଣେ ନାହିଁ, ବୁଝେ ନାହିଁ—ମୁଁ ବୋକା ବନଉଚ ବୋଲି ତାକୁ—" ଅ.ଖିମିଟିକା ମାର କହିଲା ସେ ଝଣ୍ଟିକାଣଟାଏ ପରେ ।

"ଜାଣେ, ଠିକ୍ ଜାଣେ ସେ ! ସେ ବୁହେଁ, ମୁଁ ବୋକା ବନାଏ ତାକୁ । ଏଭଳ କଥା ଯେନ କଏ ବା ମିଛ କହେ ନାହିଁ, କହନ୍ତ, ସମସ୍ତେ କହନ୍ତ—! କାହାକୁ ବା ଲଜ ମାଡ଼େ ନାହିଁ—ଲଜ ଅପମାନରେ ସଡ଼ନ୍ତ ସମସ୍ତେ—କାରଣ ଜଣେ ତ ଆରଜଣକୁ ଆଉ ଭଲ ପାଏନାହିଁ ' ପ୍ରକୃତରେ ?—ଏସବୁ କରନ୍ତ ସେମାନେ, ମଉଜ ପାଇଁ, ଖୁସିପାଇଁ ! ବଡ଼ ଲଜ୍ଜାର ବଡ଼ ଅପମାନର କଥା ଏ ! ରଃ, ଅପେକ୍ଷା କର ଟିକଏ,—ନଜେ ତୁ ନଜେଇ ଶିଖିଯିବୁ ସବୁ,—ରାତରେ ତତେ କରିବାକୁ ହେବ ଏସବୁ—ଆଉ ଯଦ ଦନରେ କରୁ, କରିବାକୁ ହେବ—ଭଙ୍ଗାରୁଜା ଆଲଆମାଲଆ ଜନସ ଭର୍ତ୍ତି—ସଢ଼ଘର ଭଳ କୋଉ ଅନ୍ଧାରଆ ଘରକଣରେ ଲୁଚିଲୁଚିକା—ଅରେ, ଏଇଥିପାଇଁ ଭଗବାନ ସ୍ୱର୍ଗରୁ ତଡ଼ିଦେଇ ଥିଲେ, ନିକାଲି ଦେଇଥିଲେ ଅଦାମ ଆଉ ଇଭଙ୍କୁ—ଆଉ ଏଇଥିପାଇଁ ତ ଲୋକେ,—ସବୁ ଲୋକେରେ ସବୁକାଳରେ—ଅସୁଖୀ !"

ଏତକ କହିଗଲା ସେ, ଏମିତ ମନମାର ଦେଇ ବ୍ୟସ୍ତ ଭାବରେ—ଏତେ ଦୁଃଖ ଅନୁଶୋଚନାର ସହତ ଯେ ମନେହେଲା—ଏହାହିଁ ନେମିତ ପୂରଣକଲା ତାର "ପ୍ରେମ ପ୍ରଣୟ" କାରବାରଜନତ ଷଡ଼ଯନ୍ତ୍ରଗୁଡ଼ାକ ? ତା ସଙ୍ଗେ ମୋର ସଦ୍ଭାବ, ବନ୍ଧୁତା ଥାଏ ବେଶୀ—ସ୍ୱେରମୋଚୀନଠଁ୍ ବଳ ! ସ୍ୱେରମୋଚୀନକୁ କାହିଁକ କେଜାଣି ଘୃଣା କରୁଥାଏ ମୁଁ—ନାକ ଟେକୁଥାଏ ତାକୁ ଦେଖିଲେ ଆଉ ସବୁବେଳେ ଲାଗିଥାଏ, ଚେଷ୍ଟା କରୁଥାଏ ମୁଁ ତାକୁ ଝଗଡ଼େଇ ଚିଡ଼ୁଲେଇ ହୋଇ ଥଟ୍ଟା ଉପହାସ କରି କେନ୍ଦ୍ରଚ୍ୟୁତ ଚଡ଼େଇ ଅସ୍ତବ୍ୟସ୍ତ କରିବା ପାଇଁ । ମୋ ଚେଷ୍ଟା-ଗୁଡ଼ାକ ଯେ ସଫଳ ହେଉ ନଥାଏ, ନୁହେଁ ; ଅନେକ ସମୟରେ ସେ ଗୋଡ଼ଉ-ଥାଏ ମତେ ଅଗଣାଟାଯାକ—ଧରିବା ପାଇଁ, କେମିତ ଗୋଟାଏ ହଂସ ମଣ୍ଡଳ-ବରେ—କନ୍ତୁ ସାଧାରଣତଃ ବ୍ୟର୍ଥ ବା ପଣ୍ଡ ହୋଇଯାଉଥାଏ ତାର ମତେ ଗୋଡ଼ାଇବାଟା ।

"ଏଇଟା ମନା—" କହିଲି ସିଦୋଷେଭ ।

ଜାଣିଥାଏ ମୁଁ ମନା, କିନ୍ତୁ ବିଶ୍ୱାସ କରି ପାରୁ ନ ଥା'ଏ ଯେ ମନୁଷ୍ୟର ଅସୁଖୀ ହେବାର କାରଣ ସେଇଟା ! କାରଣ, ଅନେକ ସମୟରେ ଲକ୍ଷ୍ୟ କରିଥାଏ ମୁଁ—ପ୍ରେମରେ ପଡ଼ିଥିବା ଲୋକ ଆଖିରେ ଅଦଭୁତ ଗୋଟାଏ ଅସାଧାରଣ ଭାବ—ଭାବର ଗ୍ଲାସ୍ଥା, ସୂକ୍ଷ୍ମାନୁଭବରେ ବାରି ପାରୁଥାଏ ମୁଁ ପ୍ରଣୟୀ ପ୍ରଣୟିନୀ ଗୁଡ଼ାଙ୍କର ଅପୂର୍ବ ଏକ ଉଦାର ସଦାଶୟତା ! ପ୍ରେମରୁ ପ୍ରଣୟରୁ ଜନ୍ମ ପ୍ରାଣର ଆବେଗମୟ ନିର୍ଭୀକ ଫୂର୍ତ୍ତି—ସତେ ଯେପରି ହୃଦୟଟା ଲୁଚି ନାଏ ସେତେବେଳେ ସଂସାରର ସବୁଥିରୁ—ସେଇ ଫୂର୍ତ୍ତିକୁ, ତାର ଆଭାସ ଟିକେ ପାଇବା କେତେ ଆନନ୍ଦର, କେତେ ଉଲ୍ଲାସର କଥା ନ ଥାଏ ବା !

କିନ୍ତୁ ଯାହା ମନେପଡ଼ୁଚି ମୋର—ଜୀବନଟା ଲାଗୁଥାଏ ସେଇ ସମୟରେ ଦିନକୁ ଦିନ ଆଗ ଅପେକ୍ଷା ଅଧିକରୁ ଅଧିକ ମାତ୍ରାରେ କ୍ରୂର, କଠୋର ଓ ନିର୍ଦ୍ଦୟ ଉଠୁଚି ଯେମିତି—ଦିନ ପରେ ଦିନ ଯେଉଁ ଆଦର୍ଶର ପ୍ରକାର ଗୁଡ଼ିକ, ରୂପ ଓ ଆଧାର ସବୁ, ସମ୍ପର୍କଗୁଡ଼ିକ ଆଖିରେ ପଡ଼ୁଥାଏ ମୋର, ସେଇ ସବୁଥିରେ ଏକାବେଳକେ ଜମାଟ ବାନ୍ଧି ଯାଉଥାଏ ଯେମିତି ବରଫପରି – ମୁହୂର୍ତ୍ତିକ ପାଇଁ ଯୁଝିବା ବର୍ଣ୍ଣିବ ପାରୁ ନଥାଏ, ଭାବ ପାରୁ ନଥାଏ, ସେତେବେଳେ ଯାହା ସବୁଥାଏ—ଯାହାସବୁ ଦିନ ପରେ ଦିନ ସମ୍ମୁଖରେ ରହୁଥାଏ ମୋର, ଅପରିବର୍ତ୍ତନୀୟ ତାହାଠୁ ଟିକିଏ ଭଲ—ଅତି ଉତ୍କୃଷ୍ଟ ନ ହେଲି ବା, କିଛି କଣର ସମ୍ଭାବନା ଅଛି ବୋଲି ।

ଥରେ କିନ୍ତୁ ସୈନିକଗୁଡ଼ିକ ଏମିତି କିଛି କହିଲେ ମତେ—ଯାହା ମନକୁ ମୋର ଆନ୍ଦୋଳିତ କରିଦେଲି ଗଭୀର ଭାବରେ ।

'ଫ୍ଲାଟ୍' ଘରଗୁଡ଼ିକ ଭିତରୁ ଗୋଟିକରେ ସେତେବେଳେ ରହୁଥାଏ ପୋଷାକପତ୍ର କଟାଳି ଦରଜିଟିଏ—ସହରରେ ସବୁଠୁ ବଳି 'ଶ୍ରେଷ୍ଠ' ଦରଜି ଦୋକାନରେ । ଅତି ଧୀର ଶାନ୍ତ ପ୍ରକୃତିର ଲୋକଟି, ନମ୍ର ଆଉ ବିନୟୀ; କୃଶୀୟ ନୁହେଁ କିନ୍ତୁ ! ଭାରିଯାଟି ତାର ବେଶୀ ଉଞ୍ଚ ଆଣ୍ଠୁଆ ନୁହେଁ,—ଗ୍ରେଟିଆ ମଣିଷଟିଏ, ପିଲାଟିଏ ନ ଥାଏ ତାର, ମାଆ ହୋଇ ନ ଥାଏ ସେ – ଦିନଯାକ ବସିଥାଏ, ବହି ଧରି ବସିଥାଏ, ପଢ଼ୁଥାଏ ଖାଲି । ଆମ ଅଗଣାର ସେଇ ହୋ ହୋ, ସେଇ ଗୋଳମାଳ ଭିତରେ—ଦୁନଆସାକର ମଦୁଆଙ୍କ ପାଟିତୁଣ୍ଡ କଲଗୋଲ ତା ଭିତରେ ଏଇ ଦୁଇଟି ପ୍ରାଣୀ ! ତାଙ୍କର ସ୍ଥାଇ ଦେଖି ନଥା'ଏ କେହି—ସ୍ୱର ଶୁଭୁ ନଥାଏ କେଉଁଠି କେତେବେଳେ ହେଲେ—ଏମିତି 'ଅଦେଖା' ଅଶୁଣା ହୋଇ ଚଳୁଥାନ୍ତି ସେମାନେ । କାହାକୁ କେବେ ଘରକୁ ଡାକ ଚର୍ଚ୍ଚା କ ଆମୋଦରେ ଅପ୍ୟାୟନ କରୁନଥାନ୍ତି ସେମାନେ କ ନିଜେ ଯାଉ ନ ଥାନ୍ତି କାହା ଘରକୁ କ ଅଉ କେଉଁଠିକି—ଛୁଟିଦିନ ବେଳେବେଳେ ଥିଏଟରକୁ ଯିବା ଛଡା !

ବଡ଼ଭୋରରୁ ଗିରସ୍ତଟି ଗ୍ଲାଲିଯାଉଥାଏ କାମକୁ—ଫେରୁଥାଏ ରାତି ଅଧରେ ପ୍ରାୟ । ଭାରିଯାଟି ତାର—ଦିଶୁଥାଏ ଯିଏ ଦଶବାର ବର୍ଷର ଝିଅଟିଏ ପରି

ସପ୍ତାହକେ ଦି ଥର ଉପରବେଳାଟାରେ ଯାଉଥାଏ ଲାଇବ୍ରେରୀକୁ ! ଅନେକ ସମୟରେ ଆଖିରେ ପଡ଼ୁଥାଏ ମୋର—ସେ ଯେତେବେଳେ ଯାଉଥାଏ ଗଳିଟିରେ, ଯାଏ ଟ୍ରେଟ ଟ୍ରେଟ ଟିକି ଟିକି ପାଦଟିମାନ ପକେଇ, କଣେଇ ହୋଇ ଟିକିଏ, ସାମାନ୍ୟ ଟିକିଏ ଟ୍ରେଟେଇ, ଥିରଥିରକା -

ସାନ ସାନ ହାତ ଦୁଇଟି ସୁଦ୍ଧା ହୋଇ ଥାଏ ଦସ୍ତାନା ଭିତରେ—ନଚେଇ ନଚେଇ ଝୁଲେଇ ଝୁଲେଇ ଦଉଡ଼ିରେ ଫିତାରେ—ଯେ କୌଣସି ପୁତୁଲଗୁଡ଼ିକ ଭଳି,—ଚଢ଼େଇଟି ଭଳି ମୁହଁଟି ତାର—ଚଞ୍ଚଳ ବଡ଼ କୌତୁକିଆ କୁନି କୁନି ଆଖି ଦୁଇଟି—ଏତିକି ସୁନ୍ଦର ! ଚୀନାମାଟିର କଣ୍ଢେଇଟିଏ ସତେ ବା ! କେଉଁଠି କେଉଁ ଘରର ଥାକରେ କି କାଚଗୁଡ଼ିକରେ କାହାର, ସୈନ୍ୟମାନେ କୁହାକୁହି ହୁଅନ୍ତି— ତାର କୁଆଡ଼େ ଡ଼ାହାଣପଟ ପଞ୍ଜରାଟା ଉଡ଼ି ଯାଇଥାଏ, କୁଆଡ଼େ ! ସେଇଥିପାଇଁ ଟ୍ରେଟଉଥାଏ ସେ, କିନ୍ତୁ ମତେ ଖାସ ଭଲ ଲାଗୁଥାଏ ତାର ସେଇ ଛଳି ଛଳି ଅଣେଇ ଅଣେଇ ଚାଲିଟା,—ଦେଖିଦେଲେଇ ସାଙ୍ଗେ ସାଙ୍ଗେ ତାକୁ ଅଲଗା କରି ଚିହ୍ନେଇ ଦେଉଥାଏ ଅଗଣାର ସବୁ ସାମରିକ ଅଫିସରଙ୍କ ଘରଯାଙ୍କଠୁ ! ସେମାନଙ୍କର ସବୁ ସେଇ ପୁଷ୍ଟିନିଆ କର୍କଶିଆ ସ୍ୱର ଜାକ-ଜମକିଆ, ଆଖି-ଜଳକା ରଙ୍ଗରଙ୍ଗିଆ ପୋଷାକ—ଆଉ ସବୁବେଳେ ବଡବଡ଼ିଆ ଶିରରେ ଅକାରଣ ଯାଆ, ଆସ—ବ୍ୟସ୍ତତାଣିଆ, ଏସବୁ ସତ୍ତ୍ୱେ ଦିଶୁଥାନ୍ତି ସେମାନେ ବୁଢ଼ୀ, ଦରବୁଢ଼ୀ ଯେମିତି ଘସରା—ସତେ ଯେମିତି ଅନେକଦିନରୁ କେଉଁଠି ଅନ୍ଧାରିଆ ସିନ୍ଦୁକରେ ପଡ଼ିଥିଲେ କେତେ କଣ ଅଳିଆ ମଇଳିଆ—ଫିଙ୍ଗାଫୋପଡ଼ା ଜିନିଷଗୁଡ଼ାକ ଭିତରେ—ଅପଚରା ହୋଇ—

ଟ୍ରେଟ ଘରଯାଟିକୁ କୁଣ୍ଡୀକଟାଳି ଦରକଟିର, ପଡୋଶୀ ପଡୋଶୁଣୀ କେହିହେଲେ ବସ୍ତୁରୁ ନ ଥାନ୍ତି ସ୍ୱାଭାବିକ ବୋଲି, କହୁଥାନ୍ତି ସେମାନେ—ପାଠ ଏମିତି······ନେଇଥାଏ ମୁଣ୍ଡକୁ ତାର—ଘରଦ୍ୱାର ଦେଖାରଖା କରିବାକୁ, ସମ୍ଭାଳି-ବାକୁ ତାର ଟିକିଏ ହେଲେ ଶକ୍ତି ନ ଥାଏ। ବଜାରରୁ ସଉଦାପତ୍ର କରୁଥାଏ ଗିରସ୍ତିଟି, ଯାହା ସବୁ ବରାଦ ଦେବା କଥା, ବୋଷେଇବାସ ଯେବି, ଦେଉଥାଏ ବୋଷେୟାଣୀକି ନିଜେ—ମସ୍ତବଡ଼ ଆକୃତିର ଫଣ ଫଣ ମୁହାଁ ମାଇପିଟାଏ ସେ— ଗୋଟାଏ ଆଖି ଫୁଲି ରହିଥାଏ ସବୁବେଳେ, ନେତ୍ରଜଳ ବହୁଥାଏ ସେଥିରୁ—ଆଉ ଆଖିଟି ଜାଗାରେ ଥାଏ ଟ୍ରେଟ ଗାରକିଆ ଦ'ଫାଳିଆ କଣାଟିଏ। ହଲଦିଆ ନାଲିଆସିଆ କେମିତି। କହୁଥାନ୍ତି ଶୁଣି ସେମାନେ ମାଉଁସ ଚକଣ ମାଲୁମ୍ ନ ଥାଏ ତାକୁ—ବାରି ପାରୁ ନ ଥାଏ ସେ—ଦିନେ କୁଆଡ଼େ ମୂଳା କିଣିବାକୁ ଯାଇ ଧନିଆପତ୍ର······ କିଣି ଅପମାନିତ ହୋଇଥିଲି ସେ—

ଇସ୍, କି ଲାଜର କଥା ମ ! ଖବଲି ଦେଖି ! ସେ ଘରଟାକୁ ଯୋଗଉ ନ ଥିଲେ ଉନୋଟିଯାକ ପ୍ରାଣୀ ଯେମିତି—ଖାପ ଖାଉ ନ ଥିଲେ ଆଦୌ— ଲାଗୁଥିଲେ, ସତେ ଯେମିତି ଅକସ୍ମାତ କୋଉଠୁ ଚଢ଼େଇଟି ପରି ଆସି ଖସି ପଡ଼ିଛନ୍ତି !

ଶୀତଦିନର କାଲୁଆ ପବନର ମାଡ଼ରୁ ରକ୍ଷା ପାଇବା ପାଇଁ ଅଶ୍ରୟ ଖୋଜି ଉଡ଼ି ପଶି ଆସିଛନ୍ତି କହାତ ଗୋଟାଏ ବାଶ୍ଚୋସ-ଗୁଚ୍ଛ ? ଅଥଚ ଅସନା ବସ୍ତି ଭିତରେ ଝରକାବାଟରେ ।

ତା'ପରେ ସ୍ତକରମାନେ ମତେ କହିଲେ—ଝିଅ ଭାରଯାତି ସାଙ୍ଗରେ ଅତି କୁତ୍ସିତ ଅଭଦ୍ର ଅଟା ଟାପରା ଚଳେଇଥାନ୍ତି ସାମରିକ ଅଫିସରଗୁଡ଼ାକ । ପ୍ରାୟ ପ୍ରତ୍ୟେକ ଦିନ ସେମାନଙ୍କ ଭିତରୁ କେହିହେଲେ ଜଣେ ଚିଠି ପଠଉଥାଏ ତା' ପାଖକୁ—ସେଥିରେ ବର୍ଣ୍ଣନା କରୁଥାଏ—ନିଜର ପ୍ରେମ । 'ହୃଦୟର ବେଦନା' ଅଉ ସ୍ତୁତି ଗାଇଥାଏ, ପ୍ରଶଂସା କରିଥାଏ ଝିଅଭାରଯାତିର ସୌନ୍ଦର୍ଯ୍ୟର ! ସେ ସବୁ ଚିଠିର ଉତ୍ତର ଦେଉଥାଏ ଝିଅ ଭାରଯାତି—ମତେ ଶାନ୍ତିରେ ଟିକେ ରହିବାକୁ ଦିଅ ଭଲା··· ! ସେ ଯେ ସେମାନଙ୍କ ହୃଦୟରେ ଏତେ ଯନ୍ତ୍ରଣାର କାରଣ, ସେଥିପାଇଁ ଦୁଃଖ ପ୍ରକାଶ କରୁଥାଏ—ଜଣେଇ ଦେଉଥାଏ ସେ ! ଭଗବାନଙ୍କୁ ଡାକୁଚ "ଆପଣରୁ ମୁକ୍ତ କରନ୍ତୁ ତୁମକୁ !" ଏଇ ଉତ୍ତର ପାଇଲାକ୍ଷଣି ଏକାଠି ଜୁଣ୍ଡ ହୋଇ ପଢ଼ୁଥାନ୍ତି ଅଫିସରମାନେ—ହୋ ହୋ ହୋଇ ହସୁଥାନ୍ତି ମଉଜରେ, ତା'ପରେ ଏକାଠି ଲେଖି ବସନ୍ତି ଅଉ ଝଣ୍ଡେ ଚିଠି—ସେଥିରେ ସ୍ୱାକ୍ଷର କରେ ସେମାନଙ୍କ ଭିତରୁ ଜଣେ ।

ଏକଥା କହିଲାବେଳେ ମତେ ସ୍ତକରଗୁଡ଼ାକ ବି ହସନ୍ତି ତୁହ ଏ ଲେଖା ଅଉ ଝିଙ୍ଗାସିକର କହନ୍ତି ନିନ୍ଦା କରନ୍ତି ମାଇପିଟିକୁ !

"କିଛୁ ଭଲ ବୁଝି ପାରୁଥାନ୍ତା ସ୍ତ୍ରେଟୀ ବୋକୀଟା"—ଗମ୍ଭୀରଆ ଖାବ୍ ଗଳାରେ କହେ ସ୍ତେରମୋଚୀନ୍ ।

"କୋଉ ମାଇପିଟା ଗୁହେଁ ନାହିଁ ମ ବୋକା ବନିବା ପାଇଁ ଟିକଏ !" ଝୁନ୍‌ଝୁନିଆ ସ୍ୱରରେ ଏକମତ ହୁଏ ସିଦୋରୋଭ—"କନ୍ତୁ ବୁଝନ୍ତି, ସବୁ ବୁଝନ୍ତି ଠିକ୍ !"

କୁତ୍ରୀକଟାଳ ଦରଜିର ଭାରଯାତି ପ୍ରକୃତରେ ବୁଝି ପାରୁଥାଏ, ସେମାନେ ଅଟା ପରିହାସରେ ନଚଉଛନ୍ତି ତାକୁ, କଉତୁକ ଲଗେଇଛନ୍ତି ତା ସାଥିରେ । ଅଦୌ ବିଶ୍ୱାସ କରୁ ନଥାଏ ମୁଁ । ମନେମନେ ଠିକ୍ କରିନେଲି ଏଣ୍ଣ—ସବୁ ଜଣେଇ ଦେବି, କହି ଦେବି ତାକୁ ! ଯେମିତି ହେଉ । ଦେଖିଲି ଦିନେ ରୋଷେୟାଣୀଟି ଗଲା ଗମ୍ଭୀର ଘର ଭିତରକୁ । ପଛପଟ ସିଡ଼ିରେ ଚଢ଼ି ଦଉଡ଼ିଲି ଝିଅ ମାଇପିଟିର ଘରକୁ—ଆଗ ରୋଷେଇ ଘରେ ପହଞ୍ଚି ଦେଖିଲି କେହି ନାହିଁ, ଫାଙ୍କା—ଆଗେଇଲି ଖାଇବା ଘରକୁ—ଦରଜି ଭାରଯାତି ବସିଥାଏ ସେଠି ଟେବୁଲ ପାଖରେ—ଗୋଟାଏ ହାତରେ ଓଜନିଆ ସୁନାକପ୍ ଟିଏ ଅର ହାତରେ ଝଣ୍ଡେବହି । ଚମକି ପଡ଼ି ଡରରେ ଘୃଡରେ ଜାକି ଦେଲା ବହିଟାକୁ ହଠାତ୍—ଥରକିନି ପାଟିକରି ଉଠିଲା—

"କିଏ ? ଇଲେ ମା ଅଗଷ୍ଟା ।··· କିଏ ରେ ତୁ ?"

ଅନାଡ଼ ପକେଇଲି, ଗୋଲଆ ମିଶା ଏଣ୍ଣୁ ତେଣୁ କଥାଗୁଡ଼ାଏ, ବେଢ଼ ଗୁଡ଼ାଏ—ଭାବୁଥାଏ ବହିଟାକୁ ନଦେଲେ କପ୍ଟାକୁ କଣ୍ଟେ ଫିଙ୍ଗିବ ସେ ମୋ ଉପରକୁ । ବସିଥାଏ ସେ ମେରୁନ୍ ରଙ୍ଗର ଆର୍ମଚେଆର୍‌ରେ, ପିନ୍ଧିଥାଏ ନୀଳ ଗାଉନଟିଏ—ସୁନ୍ଦର କମକୃତ ଅଞ୍ଚଳ ଥାଏ ଦେଶରେ ଗଳା ପାଖରେ, ଆଉ କଟିରେ ଥାଏ ଲେସ୍ !—ଡେଉଁଡେଉଁକା ବାଦାମୀ କେଶଗୁଡ଼ାକ ତାର କାନ୍ଧରେ ଲେଟି ପଡ଼ୁଥାଏ ସ୍ୱର୍ଣ୍ଣର ଧାର ପରି । ଗିଳାରେ 'କଙ୍ଗସ୍ ପୋଷ୍ଟାଲ୍' ଯେଉଁ 'ଦେବ ଦୂତକା' ଥାଏ, ସେ ଦଶୁଥାଏ ତାଲା ଭଳି ଠିକ୍—ଚେୟାରରେ ଅଉଜାଇ ଟିକଏ ପଛଆଡ଼କୁ, ଗୋଲ ଗୋଲ ଆଖି ଦୁଇଟିକୁ ଟେକରେ ଆଗ 'ନବଦ' କରିନେଲା ମୋ ଉପରେ—କଲୁ ବୃଷ୍ଟି ବୃଷ୍ଟି କେମିତ ଦେଖେଇଲା ତା'ର ମୁହଁର ଭାବଟିକ, ନରମ ସ୍ନିଗ୍ଧ ହୋଇ ଅସିଲା ଗୋଟାଏ ବଡ଼ମୃଦୁଳ ହାସ ସ୍ମିତରେ ।

ସବୁକଥା କହି ସାରିଲା ପରେ ତାକୁ ବାହାର ଅସିବା ପାଇଁ ନେଇ ତା ପାଖକୁ ଚାଲିପଡ଼ିଲି ମୁଁ—

"ରହ !" କହି ଉଠିଲା ସେ ।

ଟେବୁଲ ଉପରେ ଥୋଇଲା କପ୍‌ଟିକୁ, ଟେବୁଲ ଉପରକୁ ଅବହେଳାରେ ଫିଙ୍ଗି ଦେଲା ବହିଟିକୁ—ଗୁଡ଼ ଉପରେ ଛାଡ଼ଦେଲା ହାତ ଦୁଇଟି, ବଢ଼ିଲା ବଦନ ତାର, ଭରିଲା ଭରିଲା ସ୍ୱରରେ କହିଲା ସେ—

"କି ଅଦ୍ଭୁତ ପିଲାଟିଏ ରେ ତୁ ? ଆ ଆ ଏଠିକି ଆ ?"

ଗୁଙ୍କି ଗୁଙ୍କି ହୋଇ ସଙ୍କୋଚରେ ପାଖେଇଗଲି—ମୋ ହାତଟିକୁ ଧରି ନେଇ ଆଉଁସିଲା ସେ ଥରି ଥରି ତାର ହିମ-କୋମଳ ଅଙ୍ଗୁଳି କେଇଟିରେ ।

"କେହି ତତେ ପଢ଼େଇ ନାହିଁ ଏସବୁ କହିବାକୁ ମତେ ? ପଢ଼େଇଛନ୍ତି କିଏ ? ପଗ୍ଭରିଲା ସେ, ' ବେଶ୍ ବେଶ୍—ବିଶ୍ୱାସ କରୁଚି ତତେ ନିଜେ ନିଜେ ଭାବିଚୁ ତୁ—ଠିକ କରିଚୁ ।"—

ହାତଟିକୁ ଛାଡ଼ିଦେଇ ମୋର, ନିଜ ଅଖିପତାକୁ ବୋଜି ଦେଇ ପକେଇଲା, କହିଲା ସ୍ନିଗ୍ଧ ଭାବରେ ଯନ୍ତ୍ରଣା-କାତର, ବା ଆହତ ସ୍ୱରରେ—

"ଇସ୍, ଏଇଆ ତେବେ କହନ୍ତି ମୋ ସମ୍ପର୍କରେ ସେଇ ଅସନା ଲୋକ—ଅସନା ସୈନ୍ୟଗୁଡ଼ାକ !"

"ଏଠୁ ବରଂ ଗ୍ଭଲିଯିବା ଭଲ ତମର"—ଦେବିକ ଗାମ୍ଭୀର୍ଯ୍ୟରେ ପରାମର୍ଶ ଦେଲି ମୁଁ ।

"କାହିଁକି ?"

"ତମର ନଷ୍ଟର କାରଣ ହେବେ ସେଗୁଡ଼ାକ !"

ଆମୋଦମସ୍ତ କମନୀୟତାରେ ହସିଲା ସେ କେମିତ !" "କେବେ କଥା ପଢ଼ିଚୁ ? ପଗ୍ଭରିଲା ସେ—"ବହି ପଢ଼ିବାକୁ ଭଲପାଉ ?"

"ପଢ଼ିବାକୁ ବେଳ କାହିଁ, ଫୁରୁସତ୍ କାହିଁ ମୋର ?"

ପଢ଼ିବାକୁ ଇଚ୍ଛା କଲେ, ସମୟ ପାଇବୁ—ଠିକ୍—ଆଚ୍ଛା, ଧନ୍ୟବାଦ, ଖୁବ୍ ଖୁବ୍ ଧନ୍ୟବାଦ !"

ଟିକ ହାଉଛି ତାର, ବୁଢ଼ା ଆଙ୍ଗୁଠି ଆଉ ବଣି ଆଙ୍ଗୁଠି ଟିପ ଦୁଇଟିରେ ଧରି ରୁପାର ମୁଦ୍ରାଟିଏ ବଢ଼ାଇ ଦେଲା ମୋ ଆଡ଼କୁ । ଏଇ ଅଜଣା ବକ୍‌ସିସ୍—ଏଇ ହୃଦୟସ୍ପର୍ଶୀ ଦାନ ନେବାକୁ ଅପମାନିଆ ଲାଜରେ ସଙ୍କପଡ଼ୁଥାଏ ମନଟା । କିନ୍ତୁ ସାହସ ହେଲା ନାହିଁ ମନା କରିଦେବାକୁ । ପାହାଚ ଖୁଣ୍ଟି ଉପରେ ଥୋଇ ଆସିଲି, ଚାଲିଆସିଲିବେଳେ ।

ଚାଲି ଆସିଲି କେମିତି ଗୋଟାଏ ଗମ୍ଭୀରିଆ ଗମ୍ଭୀରିଆ ଆଉ ଏକାବେଳେକେ ନୂଆ ଭାବ ଗ୍ରସ୍ତ ଘେନି ମନରେ । ସତେ ଯେମିତି ଗୋଟାଏ ନୂଆ ସକାଳ ଆରମ୍ଭ ହୋଇଗଲା ମୋ ପାଇଁ—ତା ପରେ କେଜାଣି କେତେ ଦିନ ମନରେ ମୋର ଲାଖି ରହିଲା ସେହି ଓସାରିଆ ଖୋଲା ବଖୁରିଟି ଆଉ ଅପ୍‌ସରୀଟିଏ ଭଳି ନେଳି ପୋଷାକରେ ଗୁଲ ଗୁଲ ସେହି କୁନି ଭରିଯାଚି କପଡ଼ା-କଣ୍ଟାଲ ଦରଜାର । ପ୍ରତ୍ୟେକଟି ଜିନିଷ ସେଠି, ମୋ ପାଇଁ ଓ ଆଗରୁ ଅଜଣା, ଅଦେଖା, ଏତିକ ସୁନ୍ଦର ଲାଗୁଥାଏ ସତେ ! ତା' ପାଦତଳରେ ଲେଟି ପଡ଼ିଥାଏ ସୁନେଲି ରଙ୍ଗର ବହଳିଆ କମ୍ବଳ । ବରଫରେ ରୁପେଲି ଝରକାବାଟେ ଥୁରୁ ଥୁରୁ ହେମାଳିଆ ଦିନଟି ଉଙ୍କିମାରି ଚାହିଁ ଚାହିଁ ଦେଉଥାଏ । ତା' ପାଖକୁ ଆସି—ନିଜକୁ କେମିତି ଟିକେ ଉଷୁମ କରି ନେଉଥାନ୍ତା କି !

ମନ ହେଲା, ଆଉ ଥରେ, ଆଉ ଥରେ, ତା' ଉପରେ ଆଖି ପକାଇ ନିଅନ୍ତି ! ଏମିତିକା କଣ ଗୋଟାଏ ଘଟିଯିବ ଯଦି ମୁଁ ଯାଏ, ବନ୍ଧୁ ଝଣ୍ଟିଏ ମାଗି ବସେ ତାକୁ—?

ଗଲି ମୁଁ, ଦେଖିଲି ତାକୁ ସେମିତି ଠିକ, ଠିକ ସେଇ ଜାଗାରେ ; ହାତରେ ତାର, ସେମିତି ଥାଏ ବନ୍ଧୁଝଣ୍ଟିଏ । କିନ୍ତୁ ଏ କଣ, ଏଥର ମୁହଁଟି ତାର ଗୁଡ଼ିଆ ହୋଇଛି ଗୋଟିଏ ବାଦାମୀ ରଙ୍ଗର ରୁମାଲରେ, ଆଉ ଫୁଲିଲା ଫୁଲିଲା ଦିଶୁଛି ଗୋଟିଏ ଆଖି ! କଳା ଚମଡ଼ା ବନ୍ଧେଇ ବହିଟିଏ ବଢ଼େଇଦେଲା ସେ ମତେ । କଣ ସବୁ କହିଲା ଟୁପୁ ଟୁପୁ ହୋଇ, ଏତେ ଅସ୍ପଷ୍ଟରେ ଯେ କିଛି ବୁଝି ହେଲା ନାହିଁ, ବାରିହେଲା ନାହିଁ ସେଥିରୁ । ବିଷଣ୍ଣିଆ ମନରେ ବହିଟି ନେଲି ତା ହାତରୁ । ବାସୁଥାଏ ତେଲିଆ ତେଲିଆ ଆଲକାତିଆ ପୁଣି ମଧୁର ମଧୁରିଆ ! ଘରେ ପହଞ୍ଚି ଭଲକରି ଗୁଡେଇ ତାକୁ କାଗଜରେ ଆଉ ସଫା କୁଣ୍ଡାଟିରେ ଲୁଚେଇ ରଖିଲି ସେଇ ମହଲର ଆଲୁକୁଚମାଲୁକୁଚ ବଖୁରିରେ—କାଳେ ତା ମୋ ଖାଉନ୍ଦଗୁଡ଼ାକ ଦେଖି ପକାଇବେ, ନଷ୍ଟ କରିଦେବେ ।

ସେମାନେ "ନିର୍ଭ" ବୋଲି ପତ୍ରିକାଟିଏ ମଗାଉଥାନ୍ତି—ନାନାପ୍ରକାର କାଟଗ୍ଲୁଣ୍ଟ ତା ପ୍ୟାଟର୍ଣ୍ଣ ସବୁ ଦେଖିବା ପାଇଁ । ଆଉ ତା' ସାଥିରେ

ଯେଉଁ 'ପୁଭେନାର' ବା ସବୁ ଅପୁଥାଏ ସେଟୁଡ଼କ ପାଇବା ପାଇଁ । କାହିଁକି ଭଲ ପତ୍ରପତ୍ରିକା ସେମାନେ ସେହି ପତ୍ରିକାରୁ ଯାଉଁଏ କ ପୃଷ୍ଠାଏ—ଖାଲି ଛବି ଉପରେ ଥରେ ଅଧେ ଆଖି ପକେଇ ଦେଇ ରଖି ଦେଉଥାନ୍ତି – ଶୋଇବା ଘର ପୋଷାକ ଆଲମାରି ଉପରେ । ବର୍ଷକ ପରେ ମେଞ୍ଚକୁ ବଛେଇ ଆଣି ବରଣ୍ଡା ତଳେ ଲୁଚେଇ ରଖୁଥାନ୍ତି 'ପିକ୍‌ଚର ଶକ୍ସ' ବୋଲି ଆଉ ଗୋଟିଏ ପତ୍ରିକାର ଉଦେ୍ନାକି ଫାଙ୍କା ସାଙ୍ଗରେ । ବୋଇତା ଘର ବଟାଳିକୁ ଯେତେବେଳେ ସେଉଁଦିନ ଧୋଉଥାଏ ମୁଁ, ମଇଳା ପାଣି ଛୁଟିକରେ ନେଇ ବନ୍ଧ ସବୁ ଭିଜି ଯାଉଥାଏ ପୃଷ୍ଠାପୃଷ୍ଠା ପ୍ରାୟ ! ମୋ ମାଲିକ ବି ପଢ଼ାଉଥାଏ 'ଦ ରସିଆନ କୋଶଅ।ନ' ଖବରକାଗଜଟି ।

"ଭଗବାନ କେବଳ ଜାଣେ, ଏମିତିକା ଅବୁଝା ଜ ବୁଝୁ କଥାଗୁଡ଼ାଏ ସେମାନେ ଲେଖିଛନ୍ତି କାହିଁକି କେଜାଣି"—ସନ୍ଧ୍ୟାବେଳେ ଝଡରକ ଗଜଟା ଓଲଟାଇ ଓଲଟାଇ କହି ପକାଏ ମାଲିକଟା—"କ ବରକ୍ତନର ସେ !"

ଶନିବାର ଦିନ—ଉପର ମହଲ ଅନ୍ଧାରିଆ ଟ୍ରଙ୍କିରେ ପୋଷାକପତ୍ର ଟାଙ୍ଗୁ ଟାଙ୍ଗୁ ବହୁତି କଥା ମନେପଡ଼ିଲା ମୋର, ଲୁଚେଇଥିବା କାଗଜରୁ ବାହାର କରି ଆଣିଲି । ଗୁଡ଼ାଏ ସେଇତକ ଫିଟେଇ ପଢ଼ିଲି ପ୍ରଥମ ଧାଡ଼ିଟି ।

"ଘରଗୁଡ଼ାକ ଲୋକଙ୍କ ପରି, ଗୋଟିଏ ଘରର ଚେହେରା ସଙ୍ଗେ ଆଉ ଗୋଟିଏ ଘର ଚେହେରାର ମେଳ ନାହିଁ—ପ୍ରତ୍ୟେକ ଘରର ଅକୃତି ପ୍ରକୃତି ଅଲଗା !"

ଏତେ ସତ, ଏ କଥା ଟା ମନକୁ ପାଇଲେ—ପଢ଼ି ବସିଲି ସେ ପଢ଼ି ବସିଲି ତାଟିଖାଟିର ଝରକାଟା ପାଖରେ । ଏକ ଲମ୍ବେ ହେମନ୍ତରେ ସେଠୁ ଛୁଟିପିଟି ହୋଇ ପଳେଇ ନ ଆସିବା ଯାଏଁ । ସେହିଦିନ ସନ୍ଧ୍ୟାରେ ମୋ ଡାଉଁନ ମାଲିକ ଯାକ ସନ୍ଧ୍ୟାବେଳର ପୂଜା ପ୍ରାର୍ଥନା ପାଇଁ ବାହାରିଗଲେ ଗର୍ଜାକୁ ; ମୁଁ ବହିଟି ଧରି ଗୁଳିଲି ରୋଷେଇଘରକୁ, ଏନାବେଳେକେ ହଜେଇ ଦେଲି ନିଜକୁ ଶୀତ ହେମନ୍ତର ହଲଦିଆ ହଲଦିଆ ପାଚିଲା ପଡ଼ିଲା ପୋପଲା ପୋପଲା ଦରଦରଚୁଣ୍ଡା ପୃଷ୍ଠାଗୁଡ଼ିକରେ । ସେସବୁ ମୋତେ ବୋହି ନେଇଗଲେ, ଟେକି ନେଇଗଲେ ଆଉ ଗୋଟାଏ ଦୁନିଆକୁ—ଯେଉଁଠି ନାଆଁ ଗାଆଁ ଅଲଗା ସଂପର୍କ ଅଲଗା, ଯେଉଁଠି ଭେଟିଲି ମୋ ଜୀବନର ବାହା ଭଲ ବନ୍ଧୁ, କେତେ ଉଦାର କେତେ ଅକୃତ୍ରିମ ଚରିତ୍ରଗୁଡ଼ାଏ ଆଉ କ ଜାତ ପ୍ରକୃତିର ଖଳ-ନାୟକ ସବୁ ! ସେଇଟି ଗୋଟିଏ ଉପନ୍ୟାସ । ଯେଉଁଥିରେ ବର୍ଣ୍ଣନା କରା-ଯାଇଥାଏ ଅଦ୍ଭୁତ ଗୋଟାଏ 'କ୍ରିୟାଶୀଳ' ଜୀବନ, ଲେଖକ ସେ ଯାହା ଘଟଣାଗୁଡ଼ାକରେ ଖୁନ୍ଦା ଖୁନ୍ଦି ! ଆଉ ଅଙ୍ଗୁଳି ଭାବରେ ପ୍ରାଞ୍ଜଳ ହୋଇ ଫୁଟି ଉଠିଥାଏ ପ୍ରତ୍ୟେକଟି ଘଟଣା, ପ୍ରତ୍ୟେକଟି କଥା, ସତେ ଯେମିତି ଧାଡ଼ିଗୁଡ଼ିକ ମଝିରେ ଛପି ରହି ସୁନ୍ଦର ଆଲୁଅଟାଏ ଉଜଳାଇ ଦେଖାଇ ଦେଉଥାଏ ଯେଉଁଟି

ଭଲ ଲେଖିଁଛି ଝଟପଟ, ପାଠକଙ୍କୁ ସାହାଯ୍ୟ ଦେଇ କରେଇ ଦେଉଥାଏ କାହାକୁ ଭଲ ପାଇବ, କାହାକୁ ଘୃଣା କରିବ, ଅଥଚ ସେଇ ଲେଖକମାନେ ସେଇ ଚରିତ୍ରଗୁଡ଼ାକ ଯେଉଁ ଜଟିଳ ଘଟଣା ପାଖରେ ପଡ଼ିଥାନ୍ତି, ପାଠକଙ୍କୁ ଆଗରୁ ଆଗରୁ ବାଟ କଢ଼େଇ ନେଉଥାଏ ସେଇ ଘଟଣା ଜାଲ ଭିତରେ ଗୋଟାଏ ଜବରଦସ୍ତ ଇଚ୍ଛା ଜନ୍ମିଯାଉଥାଏ ସେଇଟିକୁ ସାହାଯ୍ୟ କରନ୍ତି ସେଇଟିକୁ ବାଧା ଦିଅନ୍ତି କି ? ପାଠକ ପୂର୍ବପୂର ଭୁଲ ପଚେରି ପକାଉଥାଏ ଏଇ ଜୀବନ, ଏମିତି ଅନୁଭୂତ ଭାବରେ ଫୁଟି ପଡ଼ୁଛି, ସ୍ଥିର ସ୍ଥିତ ଖାଲି କାଗଜରେ ! ପ୍ରକୃତରେ ସଂଘର୍ଷର ଦୋହଲ ପଞ୍ଝାରେ, ସବୁ ଭୁଲ ହୋଇ ଯାଉଥାଏ—ଏଇ ମୁହୂର୍ତ୍ତରେ ଆନନ୍ଦ, ପର ମୁହୂର୍ତ୍ତରେ ବିପଦ, ଏଥିରେ ଫାଟି ପଡ଼ୁଥାଏ ପାଠକର ହୃଦୟ !

ପଢ଼ିରେ ଏତେ ବିଭୋର ହୋଇଯାଇଥିଲି ଯେ ଦୁଆରଘଣ୍ଟି ଟେଁ ଟେଁ ହେଲା ସେତେବେଳେ, ଧରି ପାରିଲି ନାହିଁ ପ୍ରଥମେ, କିଏ ଘଣ୍ଟି ବଜାଉଛି, କାହିଁକି ବଜାଉଛି ବା !

ମହମବତ୍ତିଟି ଜଳି ଜଳି ଶେଷ ହୋଇ ଆସିଥାଏ, ସକାଳେ ମହମବତ୍ତି ଦାନିଟିକୁ ମଜି ଚକ୍ ଚକ୍ କରିଥିଲି, ତା ଉପରେ ମହମବୋଳା ବସି ସାରିଥାଏ । ପୂଜାବତ୍ତିଟିକୁ ତେଜ ଜଳାଇ ରଖିବା ଥାଏ ମୋର କାମ । ସେଇଟି ଝସି ପଡ଼ିଥାଏ ବୃକ୍ଷା ଉପରୁ—ଲିଭିଯାଇଥାଏ କେତେବେଳୁ । ଗ୍ଲାନିଆ ହୋଇ ରୋଷେଇଘରେ ଅଗ ଏପଟ ସେପଟ ଦଉଡ଼ିଲି, ମୋ ଅପରାଧର ଚିହ୍ନଟିକ ଲୁଚେଇ ଦେବାପାଇଁ, ବତିଟିକୁ ଭର୍ତ୍ତି କରିଦେଲି ଚୁଲୀ ଭିତରେ, ତେଜ ଲଗିଲି ବତ୍ତିଟିକୁ !

'କାଲି ନା କଣ ସେ ତୁ ? ଘଣ୍ଟି ଶୁଭୁନି କାନକୁ ?'' ଶୋଇବାଘରୁ ଦୌଡ଼ିଆସି ପାଟିକରି ଉଠିଲା ଧାଇଟି ।

ତରବରରେ ଧାଇଁଲି ମୁଁ ଦୁଆରମୁହଁକୁ ।

''ଘୁମେଇଥିଲୁ ? ନାଇଁ ?'' କଠୋର ସ୍ୱରରେ ପଚାରିଲେ ମାଲିକ, ହଠାତ୍ ତାର ଅଭିଯୋଗ ବାଢ଼ିଲା—ସ୍ୱା'ର ସକାଳେ ଅଣ୍ଡା ଧରି ପକାଇଲା ମତେ, ଆଉ ମାଲିକ ମାଆ ଅନ୍ତେ କରିଦେଲେ, ଅକାଡ଼ି ପକାଇଲେ ତୂହାଏ 'ବକ୍ତୃତା' ମୋ ଉପରେ ।

ରୋଷେଇ ଘରେ ପଶୁ ନ ପଶୁଣୁ ତା' ଦୃଷ୍ଟି ପଡ଼ିଗଲା ପୋଡ଼ାବତ୍ତିଟା ଉପରେ । ହୁଙ୍କାରିଲା, କଣ କରୁଥିଲୁ ମୁଁ କଣ ?

ବନ୍ଧି ଦେଖିପକାଇଲୁ ନାଇଁ ତ ? ଭଦ୍ରରେ କାଠ ପାଲଟିଗଲି ମୁଁ ! ତତ୍ୱଧା ହୋଇଗଲି, ହେଲେ ଯେମିତ ଝିପିପଡ଼ିଲି ଗୋଟାଏ ଦୃଷ୍ଟି ଜଗିଥିବୁ ! ପାଟିରୁ କଥା ଫୁଟିଲେନି କୁଆଡ଼େ । ସେ ବୁଢ଼ୀ କାନ୍ଥ ଉଡ଼ାଏ ଦଳ—ହେମାନେ ଯଦି ସବୁ ନ ଦୁଅନ୍ତି, ଅଖି ନ ଦେଖନ୍ତି, ଦିନେ ହେଲେ ଦିନେ

ଘରେ ନିଆଁ ଲଗେଇଦେବ, ମାଲିକ ମାଲିକାଣୀ ଖାଇବା ପାଇଁ ଆସିଲେ ଯେତେବେଳେ ପୁଣି ଘୋରଡେଇ ହେଲା ବୁଢ଼ୀ ।

"ଦେଖ, ଏଇ ଦେଖ ! ଗୋଟାକଯାକ ବତି ପେଟ୍ରୋ ସାରିଛ ବାକି ରହିଚି ଘରଟା, ପୋଡ଼ିବା ପାଇଁ ଏଇ !"

ରାତିଭୋଜନରେ ବସିଲେ ସମସ୍ତେ, ସ୍ବଶବ୍ଦେଁ ସ୍ବନହେଁ । ଆଉ ତୁହାଏ ଲେଖାଏଁ ଉଠିଲା ଲାଗିଲେ ମତେ ଗୋଟିକି ଗୋଟି ଗାଳି ହେଉଥାନ୍ତି, ମୁଁ ଇଚ୍ଛାରେ ଅନିଚ୍ଛାରେ, ଜଣାନ୍ତରେ କି ଅଜାଣନ୍ତରେ ଯେଉଁ ଅପରାଧଗୁଡ଼ାକ କରିଥାଏ, ଆଉ ଥରକୁ ଥର ସାବଧାନ କରେଇ ଲାଗିଲେ, ଦେଖ ଫଳ ହେବ ନାହିଁ, କପାଳଟା ଭଲ ନୁହେଁ ତୋର ! ମୁଁ କିନ୍ତୁ ଜାଣିଥାଏ, ସେମାନେ ଯେଉଁ କଥାଗୁଡ଼ାକ କହୁଥାନ୍ତି, ସେଗୁଡ଼ାକ ଦ୍ୱେଷ କି ଦୟା ବା ଉଦାରତା କେଉଁଥିରୁ ବାହାରି ନ ଥାଏ, ଖାଣ୍ଟି ହୋଇ ବାହାରିଥାଏ ରୁକ୍ଷ ବିରକ୍ତିଆ ମନଗଡ଼ରୁ ! ସତେ କେତେ ଅଭଦ୍ର କି ମୂର୍ଖାମିଆ ନଉକୁରିଆ ଦିଶୁଥାନ୍ତି ସେମାନେ ବାହାରର ଲୋକଗୁଡ଼ିଙ୍କ ଆଗରେ ତାଙ୍କ ସହିତ ତୁଳନାରେ ।

ଖାଇସାରିଲେ ଯେତେବେଳେ ସେମାନେ ଦେହଟିମାନ ଅଚଳ ହୋଇଗଲା ସେମାନଙ୍କର, 'ଖାଦ୍ୟ'ଭାରରେ, କ୍ଳାନ୍ତିରେ ଟଳଟଳ ହୋଇ ଚାଲିଲେ ଶୋଇବାକୁ । ବୁଢ଼ୀଟା ଗୁଡ଼ାଏ କଟାସମ୍ପି ଅଭିଯୋଗ ଅଜାଡ଼ି ଦେଇ 'ଭଗବାନଙ୍କ ଆଗରେ ହାମୁଡ଼େଇ ହାମୁଡ଼େଇ ଉଠିଲା ଚାଳି ଉପରକୁ. ତୁନି ପଡ଼ିଗଲା ଗୁଆଁକୁ ଗୁଆଁ । ଲକ୍ଷ୍ୟ କରୁଥାଏ ମୁଁ, ଚାଳିତଳୁ ବତିଟି କାଢ଼ି ଆଣି ବସିଲି ଯାଇ ଝରକା କଡରେ ପ୍ରନେଇଁର ଜହ୍ନରେ ଜଳୁଥାଏ, ଉଜଳ ଉଠିଥାଏ ରାତିଟି, କିନ୍ତୁ ଅକ୍ଷର ଗୁଡ଼ାକ ଏତିକି ସାନ ସାନ ବାରିହେଉ ନ ଥାଏ ସେଇ ଆଲୁଅରେ— ପଢ଼ିବା ପାଇଁ ବାଇଁପାଇଁ ହେଉଥାଏ ମନଟା ତମ୍ବାର ଡାଉଆଟାଏ ମେଲଫରୁ ଆଣି ଜହ୍ନ ସାମନାରେ ଦେଖେଇ ଆଲୁଅ ଆଣି ପକେଇଲି ବହି ଉପରେ, କିନ୍ତୁ ଏ କଣ ଦୁରବସ୍ଥା ଯେ ଆହୁରି ବଳି ପଡ଼ିଲା ! ତା' ପରେ ଘରକଣେ ଛୁଡ଼ା ହେଲି ଯାଇ ବେଞ୍ଚ ଉପରେ ଫଟମୂର୍ତ୍ତି ପାଖ ପ୍ରଜାଦୀପ ଅଲୁଅରେ ଅରମ୍ଭିକଲି ପଢ଼ା, କ୍ଳାନ୍ତିରେ ଲାଜ ଲାଜ ପଡ଼ୁଥାଏ ଦେହଟା, ଜେତେବେଳେ ଥରକାନେ ଟଳି ପଡ଼ିଥିବି ବେଞ୍ଚ ଉପରେ, ଶୋଇ ପଡ଼ିଲି ନିଦଘୋଡ଼ ନିଦରେ । ଉଠିଲି ବୁଢ଼ୀର ପାଟିରେ, ବିଧାବିଧୂଡ଼ା ବୃଷ୍ଟିରେ । ଦେଖିଲି ଗାଲ-ପାଦରେ ରାତିବଧାଳା ଖଣ୍ଡିକ ଦେହରେ ରାଗରେ ମୁଣ୍ଡକୁ ହଲେଇ ହଲେଇ ଠିଆ ହୋଇଛି ବୁଢ଼ୀ ସାମନାରେ, ପାଚିଲା ଲାଲ ପନ୍ତସାଇଟ ମୁହଁଟ, ହାତରେ ଧରିଛି ବହିଟିକୁ ମୋର, ଆଉ ସେଥିରେ ଗୋଟି ଲାଗିଛି ମୋଟେ ମୋ କାନ୍ଧ ଉପରେ—

"ଏ, ଆଇ, ଏ ମା ! ପାଞ୍ଚ ଟିକେ ବନାନର ଭଲ !" ଭାଉଆ ପଛ ଉପରୁ କଇଁକଇଁଆ କାନ୍ଦଣା ସ୍ୱରରେ କହି ଉଠିଲା, ଭକ୍ତର, "ନା, ଚଳି ହେବ ନି ତୋ ସାଥିରେ, ବର୍ଦ୍ଧ ହେବ ନି !"

"ସଇଲ ସଇଲ ବହିଟା ଶରତ୍ଚନ୍ଦ୍ରଙ୍କ ପଲ୍ଲୀସମାଜ ବୃତ୍ତାନ୍ତ।" କହିଦେଲେ ମନକୁମନ ।

ବଡ଼ ପାଦ୍ରି ନ ପାଦ୍ରୀଙ୍କ 'ଜଳଛିଆ' ବେଳେ ତାଙ୍କର ପନ୍ଥାଳ ମତେ, ଉଠବ ହେଲା ଲୈଫିକ୍ସନ ।

"କେଉଁଠୁ ପାଇଲୁ ବହିଟା ?" ସେ କି ରୁକ୍ଷ ସ୍ୱରରେ, କଠୋର ସ୍ୱରରେ ଡାକିଲେ ମାଲିକ ।

ମୋ ଉପରେ ପାଠିକାର ଝୁଙ୍କୋର ଦେଖାଇ ସମ୍ବେଦନଶୀଳତା ଲାଗିଥିଲା ମାଇପିଗୁଡ଼ାଙ୍କ ଭିତରେ, ତେଣେ ଉତ୍କଟର ଶୁଙ୍ଘି ଶୁଙ୍ଘି ଲାଗିଲା ବହିଟିକୁ ଗୋଟେଇନେଇ ତଳୁ ।

"ଏଁ, ଅଡର ବାସନା, ଅଡର, ହଁ ମ ସବୁ ଡଅଙ୍କ ସ୍ୱର ।" କହିଦେଲେ ସେ —

ଯେତେବେଳେ କହିଲି ସେମାନଙ୍କୁ ବହିଟି ପାଦ୍ରି ସାହେବଙ୍କର, ଆଶ୍ଚର୍ଯ୍ୟ ହୋଇ ପରଖି ନିରେଖି ଦେଖିବାକୁ ଲାଗିଲେ ତାକୁ, ରାଗରେ ଜଳିଲେ—ଏଁ ପାଦ୍ରି ବି ଉପନ୍ୟାସ ପଢ଼ନ୍ତି । ତେବେ ଏଥିରେ ଟିକେ ଅଣ୍ଡା ପଡ଼ିଲେ—ମାଲିକ କିନ୍ତୁ ତାଙ୍କର ଅର୍ଥ । ସତର୍କ କରି ଦେଉଥାଏ ମତେ, ଖରାପ, ଭାରି ଖରାପ, ଷଡ଼ଯନ୍ତ୍ରକାରକ ବିପଜ୍ଜନକ ବହି ପଢ଼ିବା ।

"ଏଇ ସେମାନେ ସେଇ ବହିପଢ଼ୁଆ ଲୋକେ ଉଡ଼େଇ ଦେଉଛନ୍ତି ବୋମମାଡ଼, ଉଡ଼େଇ ଦେଉଛନ୍ତି ରେଳରାସ୍ତା ମାଡ଼ପକାଇବା ମତଲବରେ ବାହାର" ।

"ତମ ମୁଣ୍ଡପୁଣ୍ଡ ଖରାପ ହେଲାଣି ନା କଣ ?" ପାଗଳ ହୋଇଗଲଣି ? ଭୟରେ ବାଧାଦେଲା ତାଙ୍କ ଘରଣୀ, 'ଏ କଣ ? 'ଏ କି ଧାରଣାସବୁ ଭର୍ତ୍ତି' କରୁଛ ତା' ମୁଣ୍ଡରେ !"

ତ ମଣିଷଟି ବହିଟି ନେଇ ଗଲିଲି ସେଇ ଜଣଙ୍କ ପାଖକୁ—କହିଲି ତାଙ୍କୁ ଯାହାସବୁ ଘଟିଯାଇଥାଏ । ପଦେଟିଏ ବି ନ କହି ସିଦୋରଭ ବହିଟି ନେଲେ ମୋ ହାତରୁ, ଖୋଲିଲେ ଶ୍ରେଷ୍ଠ କାଠ ପେଡ଼ିଟିଏ, ସଫା ତଉଲିଆଟିଏ ବାହାର କରି ବହିଟିକୁ ଘୁଡ଼େଇଲେ ସେଥିରେ, ଲୁଚେଇ ରଖିଲେ ସେଇ ପେଡ଼ି ଭିତରେ ।

"ସେମାନଙ୍କ କଥା କାହିଁକି ମନରେ ଆଣୁଚ ଯେ ତୁ ! ତୁ ତୋର ଆଣୁଥିବୁ, ପଢ଼ୁଥିବୁ । ମୁଁ କ'ଣ କାହାକୁ କିଛି କହୁଚି ନା କହିବି ?"— କହିଲେ ସେ—"ଆଜି ଯଦି ଆସୁ ମୁଁ ଘରେ ନ ଥିଲାବେଳେ,—ଦେଖିବୁ, ଲୁହାକାଠି ଥିବ ପଟିଆ ତଳେ । ତୁ ତୋର ସିନ୍ଦୁକ ଖୋଲିବୁ, ମନ ପଡ଼େଇ ଯେତେ ଇଚ୍ଛା ପଢ଼ିବୁ ବସିବସିକା ବୁଝିଲୁ ।"

ବହିଦେଲେ ମୋ ମାଲିକମାନଙ୍କ ମହାଶୟଙ୍କୁ 'ଧନ୍ୟବାଦ', ସେଇଥିପାଇଁ ଦିନା ତାକୁ ମନ୍ତ୍ରବଡ଼ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଭୟ ଉପୁଜା କଥା ଘଟି ଗୃହରେ

ଆବରଣ ଧରିରଖିଲ ମନ ଭିତରେ ! କେଉଁଠି କେଉଁ "ପାଠକ କେତେ ତାହାଙ୍କୁ ସବୁ ଜୀବନରେ ମାରି ପାଶ ପକାଇବା ପାଇଁ ଉଦ୍ୟମ କରି ଉତ୍ତେଜିଦେଇଥାନ୍ତି ରେଲଗ୍ରନ୍ଥା, ଏ କଥା ପ୍ରଥ ଟିକିଏ ଭଲ ନାହିଁ କ ଅଗ୍ରହ ଥାଆନ୍ତା ମୋର, ପ୍ରକୃତରେ ଯଦିଓ ଭୁଲି ଯାଇ ନ ଥାଏ ମୁଁ, "ପାପଷ୍ଠ ଲନ" ବେଳେ ପାଦ୍ର ପୁରୋହିତ ସାମାନରେ ତାଙ୍କ ପ୍ରଶ୍ନଗୁଡ଼ାକ, ମାଟିତଳ ମହଲରେ ଗୁପ୍ତଚରିର ପାଠପଡ଼ା, ସ୍ୱଶପର "ସତ ବନ୍ଧ" ସମ୍ବନ୍ଧରେ ଉଲ୍ଲେଖ, କ ଅନା ଯେଉଁ "ସ୍ୱେଚ୍ଛ ମଣ୍ଡଳମଙ୍ଗଳମିଆ ଷ୍ଟଳ ଦଳ"ଙ୍କ କଥା କହୁଥାନ୍ତି, ସେଇ ଯେଉଁମାନେ ପଢ଼ୁଥାଆନ୍ତି କୁହୁକବିଦ୍ୟା ଯେଉଁ ବନ୍ଧ, ମାତଅନ୍ତି ଗୁଣିଗାରେଡ଼ି କାମରେ, ସେଇମାନଙ୍କ କାହାଣୀ ।

"ମଙ୍ଗଳମୟ ଜାର ଆଲେକଜାଣ୍ଡର ପାଭଲୋଭିଚଙ୍କର ରାଜତ୍ୱକାଳରେ ମହା ସମ୍ଭ୍ରାନ୍ତ ରାଜାରାଜଡ଼ାମାନେ ଚେଷ୍ଟା କରିଥିଲେ 'ସ୍ୱେଚ୍ଛାମଣ୍ଡଳମଙ୍ଗଳସ-କାରୀ ଷ୍ଟଳଦଳ"ଙ୍କ ସାଥୀରେ ମିଶି ରୁଷର ଜନସାଧାରଣଙ୍କୁ ସମର୍ପି ଦେବା ପାଇଁ ଜେସୁଇଟ୍ ପନ୍ଥୀ ପୋପଙ୍କ ହାତରେ । ହଠାତ୍ ଏତିକି ବେଳେ ଅନୁସନ୍ଧାନ କରିଥିଲେ ସେନାପତି ଆରକଚେଏଭ, ଗୋଟି ଗୋଟି ଧରିଥିଲେ, ଗିରଫ କରିଥିଲେ ସେମାନଙ୍କୁ, ଆଉ ଖାତିର ନ କରି ସେମାନଙ୍କର ପଦପଦବୀ ମାନମର୍ଯ୍ୟାଦାକୁ ପଠାଇ ଦେଇଥିଲେ ସେମାନଙ୍କୁ ସମସ୍ତଙ୍କୁ ଦୁର୍ଗମ ସାଇବେରିଆକୁ । ସାଧାରଣ କଏଦୀ ଭଳି ସେଠାରେ ଖଟିଥିଲେ ସେମାନେ ଯେ କୌଣସି ଆବର୍ଜନା ଭରି ସଢ଼ି ପଚି ଖତମ ହୋଇଯିବା ପର୍ଯ୍ୟନ୍ତ ।"

ଆହୁରି ମଧ୍ୟ ମନେଥିଲା ମୋର "ତାରକା-ଖଚିତ ଗୁମ୍ଫା-ଛାଡ଼ ଗର୍ଭଗୃହ" ଆଉ ସୁଗନ୍ଧୀର ବନ୍ତ୍ରୃପାତ୍ରକ ଶବ୍ଦଗୁଡ଼ିକ, "ସ୍ୱେ ଅନ୍ଧ ଜୀବଗୁଡ଼ିକର, ଆମର ସମସ୍ୟାରେ ଆମ ବନ୍ଧୁପୁରେ ହସ୍ତ ପ୍ରସାରି ତାକୁ ସବୁ ଚିକନାଶି ସନ୍ଧାନ କରିବାକୁ କଲ୍ପନାକାରୀ ସବୁ ! ତୁମର ନବୋଽ ମସ୍ତିଷ୍କ ସବୁ କେବେହେଲେ ସମର୍ଥ ହେବ ନାହିଁ ସେଗୁଡ଼ିକର ସୀମା ସ୍ପର୍ଶ କରିବା ପାଇଁ ।"

ମନେ ଲାଗୁଥାଏ ମହାନ୍ ଗୋଟାଏ ରହସ୍ୟର ଦ୍ୱାରଦେଶରେ— ଦେହଲି ପାଖରେ ମୁଁ ପହଞ୍ଚିଛି ଯେପରି ମୁଁ ମୋର ଭାବନାରେ ଆଚ୍ଛନ୍ନ ହୋଇ ଆବଦ୍ଧ ହୋଇ ଚଳପ୍ରଚଳ ହେଉଥାଏ ଯାହା ! ଆକୁଳ ହେଉଥାଏ ବହିଟିକୁ ପଢ଼ି ଶେଷ କରିଦେବା ପାଇଁ ଚଞ୍ଚଳ । ଆଶଙ୍କା ଆସୁଥାଏ କାଳେ ସେନାପତି ସ୍କୁଲରିଟିର ସେଷଘରୋ ହଜିଯିବ କି ନଷ୍ଟ ହୋଇଯିବ ସେଇଟି । ଏ କଥା ସେ ବୁଝେଇ କହୁ ପାରୁଥାଏ କେତେବେଳେ 'ଦରଜି'ର' ସ୍ତ୍ରୀଟିକୁ ?

ମୁଁ ଯେମିତି ଆଉ ସେନ୍ୟଟି ପାଖକୁ ଯା'ଆସ୍ ନ କରେ—ବୁଢ଼ୀ ଅଖି ରଖିଥାଏ, କର୍ତ୍ତା ଆଖି ରଖିଥାଏ ମୋ ଉପରେ—ଆଉ ସବୁବେଳେ ଯୋଗ ପଣ ଲାଗିଥାଏ ମୋତି—ଯୋଉଟେଇ ହୋଇ କହୁ ହେଉଥାଏ—

"ପୋଲୁଥାଏ, ପୋଥି ପୋକଥାଏ ତୁ ! ବହିଗୁଡ଼ାକ କ'ଣ ସବୁ ଜାଣୁ ?

ଶିଖାଏ କେମିତି ଖରାପ ହେବ—ଖରାପ ଚରିତ୍ର ହେବ । ଠିକ ନୟମ ଭିତରେ ଲୁହେଁ, ପୁଙ୍ଗଲା ପୁଙ୍ଗଲା ଜୀବନ ବଞ୍ଚେଇବ । ଏଇ ସେ ମାଇପିଟାକୁ ଦେଖିଛୁ କି ? ତାର ସମସ୍ତଯାକ ଯାଉଚ ବଢ଼ିବେ ! ଖାଲି ବଢ଼ିପଢ଼ାରେ—ଆଉ କଣ ସେ ଥରେ ଭଲ ଯାଇପାରୁଚ ବଜାର କଣ । ଅଉ ସବୁବେଳେ ଲଟର ପଟର କଲ ମୋର ସେଇ ସୈନ୍ୟ ଅଫିସର ସେନାପତିଗଣଙ୍କ ସାଙ୍ଗରେ, ଇସ୍ ଛି, ମୁଁ କଣ ଜାଣେ ନାହିଁ ମେ କେମିତି ଦିନବେଳେ ତାଙ୍କୁ ଡ଼ାକ ଅଣେ ତାଙ୍କୁ ବାଟ ଗୁଡ଼ିଦିଏ ତା ନିଜ ପାଖକୁ ! ”

ମନ ହେଲି ପାଟି କରି ଉଠିବି ଗର୍ଜି ଉଠିବି—

"ମିଛ ! ମିଛ ତାହା ମିଛ ନା, ନା ତା'ର କୌଣସି ଖରାପ ସଂପର୍କ ନାହିଁ —ସେମାନଙ୍କ ସଙ୍ଗରେ ନା ନା ସେମାନଙ୍କ ଦେହ ଛୁଏଁ ନାହିଁ, ଗୁଇ ମାତ୍ରେ ନାହିଁ ସେ ।"

କିନ୍ତୁ ସାହସ ହେଲନି ମୋର—ପଦେ ହେଲେ କିଛି କହିବା ପାଇଁ ସେଇ ଦଳେ ଖିଣଯାଚି ପକ୍ଷରେ, କାଲେ ବୁଢ଼ୀ ଠଉରେଇ ନେବ ବହିଟି ତାର, ସେଇ ବରଜା ଖିଣଯାଚ ।

କେଜାଣି କେତେଚି ଦିନ ମନେ ନାହିଁ, ମୋ ଦୁଃଖ ଯେମିତି ଚରମକୁ ଛୁଇଁଲା । ସେ କି ଯନ୍ତ୍ରଣାରେ ପାଶ ହେଲି ସତେ ! ଏକାବେଳେକେ ଅନ୍ୟମନସ୍କ ହୋଇ ରହିଲି, ନିଦର୍ଶିତ କୁଆଡ଼େ ହିଜେଇ ଗଲା ଆଖିରୁ. 'ଡ଼ ମଣ୍ଟେପିନ'ର ଭାଗ୍ୟ ଯେନି ଏତେ ଉଦ୍‌ବେଗରେ ଭରିଯାଇଥିଲା ମନଟା କେମିତି ! ଦିନେ ଦରଜି ଘର ଗୃହିଣୀ ଅଗଣାରେ ମତେ ଅଟକେଇ କହିଲି ।

'ବହି କାହିଁରେ . ଫେରାଇ ଦେ ବହି ।”

ହ' ପନ୍ଦରଆ ଛିଆପିଆ ସରିଗଲା, ମାଲିକମାନେ ଶେଯରେ ଗଡ଼ପଡ଼ ହୋଇ ବ'ଗ୍ରୁଟା ପୁଙ୍ଗୁଡ଼ମାରିବାକୁ ଗ୍ଭଲିଲେ, ବେଳ ହୁଣ୍ଡୁଥାଏ, ଏଇ ମୁହୂର୍ତ୍ତଟି ପାଇବି ଦରଜି ଖିଣଯା ଆଗରେ ପହଞ୍ଚିବା ପାଇଁ ଦୁଃଖରେ ବିଷାଦରେ ଲଜାପଡ଼ି କ'ଣ କହିବ, କଣ ନ କହିବ, ଏଇ କଥା ଭାବି ଭାବି ହିନିବଡ଼େଇ ଯାଇ ।

ଦେଖିଲି ତାଙ୍କୁ ପହିଲେ ଯେମିତି ଅବସ୍ଥାରେ ଦେଖିଥିଲି ଠିକ୍ ସେମିତି, ଖାଲି ଯାହା ତାର ବେଶପରିପାଟୀ ଥିଲା ଟିକିଏ ଅଲଗା । ଧୂସରଆ ସ୍କର୍ଟ ଆଉ କଳା ମଖମଲର କ ଅଲି ପିନ୍ଧିଥ ଏ ସେ, କାଞ୍ଚଲଟି ଉପରେ ଝୁଲୁଥାଏ ଠିକ୍ ଗଳା ପାଖରେ ନୀଳକାନ୍ତମଣିର କୁଣ୍ଡଟାଏ । ତାଙ୍କୁ ଦେଖିଲି ମାତ୍ରେ ମନେ ହେଲା, ଧୂସରଆ ବାରମାସୀ କି ଘରଚଟିଆ ଧରଣର ଟିକି ଚଢ଼େଇଟିଏ ଦେଖୁନ୍ତି ତ ଅଉ !

ତାଙ୍କୁ ଯେତେବେଳେ କହିଲି ବହି ପଢ଼ି ଶେଷ କରିବାକୁ ସମୟ ପାଉନି, ଅଉ ମତେ ମନା କରାଯାଇଥାଏ ପଢ଼ିବା ପାଇଁ, ଯାହା କହିଲି ଏହାର ମର୍ମାନ୍ତିକର ଆଘାତ ଆଉ ପୁଣି ଥରେ ତା' ସାଙ୍ଗରେ ଭେଟାଭେଟିର ଆନନ୍ଦ ଠିକ ଛଳଛଳ କରିଦେଲି ମୋ ଆଖିଯୋଡ଼ିକୁ ।

"କି ମୂର୍ଖ, ନିର୍ବୋଧ ଲୋକଗୁଡ଼ାକ ।" ସଞ୍ଜୁ ଷରୁ ସୁନ୍ଦର ଭ୍ରୂଲତା ହଲକୁ ଉପରକୁ ଈଷତ୍ ଟେକିଦେଇ କହିଲା ସେ, "ଆଜି ମୁଁ ଭାବିଥିଲି କଣ ନା ତୋ ମାଲିକର ମୁହଁଟି ବେଶ ଅନୁରାଗିଆ ପଡ଼ିଲା ଭଲି ହୋଇଥିବ । ନା ନା ଏଥିରେ ବିରକ୍ତ ହେବାର କିଛି ନାହିଁ—ଉପଯୁକ୍ତଟାଏ ବାଛଟାଏ ବାହାର କରିବି, ରହ, ଲେଖିବି ତାଙ୍କୁ ଲେଖିବି ।"

ଡରିଗଲି ଏଥିରେ ମୁଁ ! କହିଲି ମାଲିକଙ୍କୁ ମିଛ କହୁଚ, କହୁଚି ବହୁତି ହେଉଚି ପାଦ୍ରିଙ୍କର !

"ନା, ନା, ଲେଖ ନାହିଁ, କିଛି ଲେଖ ନାହିଁ," ଅନୁନୟ କଲି । "ହସିବେ ସେମାନେ, ଥଟ୍ଟା କରିବେ, ବିଦ୍ରୂପ କରିବେ, ଗାଳିଦେବେ ତୁମକୁ । ଆମ ଘରଟାରେ କେହି, କେହି ଭଲ ଆଖିରେ ଦେଖନ୍ତି ନାହିଁ ତୁମକୁ । ସେମାନେ ଟାହିଟାପରି କରିବେ ତମକୁ ଦେଖି—କହିବେ 'ବୋକା' ନିସ୍ତକ ବୋକାଟାଏ ତୁମେ, ଝଣ୍ଡେ ପଞ୍ଜରି ହାଡ଼ ନାହିଁ ତମର, ହଜିଚ ।"

ମୋ କଥାଗୁଡ଼ାକ ଭୁସ୍ ଭୁସ୍ ଅକାଡ଼ି ହୋଇ ପଡ଼ିଲା ଯେମିତି, କିନ୍ତୁ ଯ ଶଥ ଏ କି ନାହିଁ ଖିଆଲ ହେଲା ସେଗୁଡ଼ାକ ବାଧିଲା ଯେମିତି ତାକୁ, କଷ୍ଟ ଦେଲା ତା' ମନରେ । ଓଠ କାମୁଡ଼ି କଣରେ ଘୁପୁଡ଼ା ମାରି ହେଲା ଦ' ଘରିଅର ସଙ୍ଗେ ଯେମିତି ଘୋଡ଼ା ଉପରେ ଚଢ଼ିଥିଲା ସେ ! ଗ୍ରୁଏଁ ଗ୍ରୁଏଁ ନଇଁପଡ଼ିଲା ମୁଣ୍ଡ ମୋର, ଲଜ୍ଜା ହେଲା ଧରଣୀ ଫାଟିଯାଆନ୍ତା କି ଗ୍ରାସ କରନ୍ତା କି ମତେ ! କିନ୍ତୁ ଗୃହୁଁ ଗୃହୁଁ ସେ ଲଦେଇ ଯାଇ ବସିପଡ଼ିଲା ହଜିଗଲା ବାଡୌଙ୍କି କୋଳରେ ଆଉ ହସି ଉଠିଲା ଠୋ ଠୋ ହୋଇ !

"ଇଃ, କି ମୂର୍ଖାମି, କି ମୂର୍ଖାମି, କିନ୍ତୁ କଣ, କଣ କରିପାରେ ବା ମୁଁ ଏଥିରେ ।" ନିଷ୍ପଲକ ଆଖିରେ ଅନେଇରହି ମତେ, ନିଜକୁ ନିଜେ ପଚାରି ହେଲା ସେ । "ନିଃଶ୍ୱାସଟିଏ ପକାଇ ଯୋଗକଲା ନିଜ କଥାରେ, "ଅଦ୍ଭୁତ ଅଦ୍ଭୁତ ପିଲାଟିଏ ତୁ—ଅଦ୍ଭୁତ !"

ଅନେଇଦେଲି ତା' ପାଖରେ ଥିବା, ଦର୍ପଣଟିକୁ, ଦେଖିଲି ତିମାଡ଼ିଆ ଉଞ୍ଚା ଉଞ୍ଚା ହନୁ ଓସାରିଆ ନାକର ଗୋଲଗାଲିଆ ମୁହଁ—କପାଳରେ ଦାଗଟାଏ ମସ୍ତବଡ଼ ଦାଗ, ଅସଜଡ଼ା ଆଲୁରୁ ଆଲୁରୁ ଠିଆ ଠିଆ ବାଳ କେଶ କେଶ ବିଛୁଡ଼ି ହୋଇ ରହିଛି ଏଣେତେଣେ ! ଏଇ କଣ, ଏଇ କଣ ସେ ଯାହାକୁ କହିଲା, "ଅଦ୍ଭୁତ, ବଡ଼ ଅଦ୍ଭୁତ ପିଲା !" ଏ ନିଷ୍ଠୁର, ଏ ଠିକ୍ । ଏଭଳି ଅଦ୍ଭୁତ ପିଲା ଆଉ ଏଇ "ରୂପନା କଣ୍ଢେଇ" ଭିତରେ ମେଳ ନ ଥିଲା କେଉଁଠି ମେଳ ନ ଥିଲା ଜାଣିଗଲାଏ ହେଲେ !

"ତମେ ଦେଲ ନାହିଁ, ଟଲେ ଥର ଯେଉଁ ଅଭିଷ ଦେଇଥିଲି ଦେଲ ନାହିଁ । ଦେଲ ନାହିଁ କାହିଁକି ସେ !"

"ଦରକାର ନ ଥିଲା !"

ନାଃଶ୍ୱାସଟିଏ ବାହାରି ଆସିଲା ଗ୍ରନ୍ଥରୁ ତାର ।

"ହୁଁ ଅନ୍ନ କଣ କରନ୍ତୁ, କଣ କରିବ ବା ! ସେମାନେ ଯଦ ପଢ଼ିବାକୁ ଅନୁମତ ଦଅନ୍ତି ତୁମକୁ, ଆସିବ ଆସିବ ତେବେ, ଦେବ ବହୁପଇ ଧେବ !"

ଚୂଲର୍ଟଙ୍କା ପାଖ ଭକ୍ତିଥାକରେ ଥୁଆ ହୋଇଥିଲା ଦନୋଟି ବହି, ସେଥିରୁ ଯେଉଁଟି ଫେରେଇଥିଲ ମୁଁ ସେଇଟି ଥିଲା ମୋଟା । କରୁଣ ଭାବରେ ଅନେଇ-ଥାଏ ତାଂକୁ । ଦରଜା ଭାଉଯାନି ଗ୍ରେଟ ହଲଦ ନାଲ ଆସିଆ ହାତଟିକୁ ବଢ଼ାଇ ଦେଇ କହିଲା ।

"ହଉ, ନମସ୍କାର !"

ଥରକନ ସାବଧାନରେ ଛୁଇଁଲ କ ଛୁଇଁଲ ନାହିଁ ତାର ସେଇ ହାତଟିକୁ ବାହାରଗଲ ଝଟ୍‌କନ, ତରତରରେ ।

ହୁଏତ ସେମାନେ ଯାହା କହୁଥିଲେ ତା ସଂପର୍କରେ, ସତ ସତ ସବୁ, ଏଇ ଯେମିତ କହୁ ବୁଝିପାରୁ ନ ଥିଲ ସେ, ଜାଣିପାରୁ ନ ଥିଲ ସେ ! ଗ୍ଲେଟ ପିଲାଟିଏ ଭଳ କୋଡ଼ିଏଟି କପେକ୍‌କୁ କହି ନ ଥିଲ । ଗୁଡ଼ାଏ ମୁଦ୍ରା ବୋଲି ।

କନ୍ତୁ, ମୁଁ ?—

ମତେ କନ୍ତୁ ଏଇ କଥାଟି ତାର, ଏଇ କଥାଟି ଭଲ ଲଗିଥିଲ, ଭଲ ଲଗିଥିଲ ଖୁବ୍ ।

## ନବମ

ମନେ ପକାଇବାକୁ ଯେତକ କରୁଣ ସେତକ କୌତୁକଆ ଲଗୁଛୁ—ପଢ଼ିବା ପାଇଁ ମୋର ହଠାତ୍ ଆବେଗଟା କେତେ ଅପମାନରେ ପକାଇଥିଲା ମତେ, କେତେ ଆଘାତ ଦେଇଥିଲା ଆଉ ସେ କ ଚନ୍ତାରେ କ ବଳବଳରେ ଘାରିଥିଲ ମତେ !

ଲଗୁଥିଲ ଦରଜିଆଣୀଟିର ବହିଗୁଡ଼ାକର ଦାମ ଥିଲା ଚଢ଼ା, ସାଙ୍ଘାତକ ଚଢ଼ା । ମୋ ପୁରୁଣା ମାଲିକ କଲେ ପେ ଡଦେବ ସେଗୁଡ଼ାକୁ, ଏଇ ଉପରେ ସେଇ କଥାଟି କଣ ମୁଣ୍ଡରେ ପଶିଗଲା ଆଦୌ, ଯେଉଁ ଦୋକାନରୁ କଣୁଥିଲ ପ୍ରାତଃରାଶ ପାଇଁ ପାଉଁରୁଟି, ସେଇ ଦୋକାନରୁ ଅଣିବାକୁ ଲଗିଲ ଗ୍ଲେଟ ଗ୍ଲେଟ ଚକମକଆ ରଙ୍ଗର ବହିଗୁଡ଼ିଏ !

ସେଇ ଦୋକାନୀଟା, କେମିତି ଅତି ଅମୁଣିଆ ମଇଳାଟାଏ ଥିଲା, ସେଇ ଦୋକାନୀଟାର ବଦ୍ଖଲିଆ ବଦ୍ଖଲିଆ ଓଠ ଝାଙ୍କୁଆ ଝାଙ୍କୁଆ ଦେହ, ଫୁଲିଲା ଫୁଲିଲା ମାଉଁସିଆ ଅଠାଳିଆ ମୁହଁ—ସେଥିରେ ପୁଣି ଚିପିଚିପି ଦାଗଗୁଡ଼ାକ ଗଣ୍ଡମାଳ ରୋଗର ଲେଖାଳିଆ ଆଖି, ଠେଙ୍ଗା ଠେଙ୍ଗା ହାତରେ ଗେଡ଼ା ଗେଡ଼ା ମୁଣ୍ଡ ଆଙ୍ଗୁଠିଗୁଡ଼ାକ ।

ସଞ୍ଜ ହେଲେ ସେଇ ଦୋକାନଟା ତାର, ଗୋଟାଏ ଅନ୍ଧକାରର ନିଭୃତରେ ମିଳନ 'କୁଞ୍ଜ' ହୋଇଉଠେ—ଅନେକ ଲୋକର ଯେତେ ଲଗାମଛିଣ୍ଡା ଚରିତ୍ରର ଟୋକାଟୋକୀଙ୍କର । ମୋ ମାଲିକର ଝିଅଟା ଯାଏ, ପ୍ରାୟ ପ୍ରତି ସଞ୍ଜରେ ବସ୍ତିର ଯିଏ ଅଛି ତାସ ପିଟେ । ବର୍ଷି ବର୍ଷି ଅନେକ ସମୟରେ ମତେ ପଠା ହୁଏ ତାକୁ ଡାକିଦେବା ପାଇଁ ରାତି ଭୋଜନ ସକାଶେ, ଅଛି କେତେ-ଥର ମୋ ଆଖିରେ ପଡ଼େ ଅନ୍ଧକାରରେ ମଗ୍ନ ହୋଇ ଫୁଲରେ ସାଜି ହୋଇଛି ଫାଜିଲ ଫୁଟିଲି ବୋକି ଝିଅଯାଟା ଦୋକାନୀଟାର ବସିଥାଏ ଭିତରର ଏ ଆଉ କେଉଁ ଟୋକାର କୋଳରେ ବସିଥାଏ, ଦୋକାନସଜ୍ଜାଯାଏ ଲୋକ ଗହଳି ବଢ଼ୁଣ୍ଟିରେ, "ଦେଖିଦେଲେ ହିଁ ସ୍ପଷ୍ଟ ଜଣାପଡ଼ୁଥାଏ ଦୋକାନୀଟାକୁ ଖରାପ କି ଅପମାନିଆ ଲାଗୁ ନ ଥାଏ ଜମାରୁ—କି ସେ କିଛି ମନେ କରୁ ନ ଥାଏ—ତା ଭଉଣୀଟି ସେଇ ଯିଏ ତାକୁ ସାହାଯ୍ୟ କରୁଥାଏ, ନେଇଙ୍କୁ ସବୁ ଜିନିଷପତ୍ର ଯୋଗାଇ ସେ ଭଉଣୀଟିକୁ ଯେତେବେଳେ ଗ୍ରାହକରେ ଭିଡ଼ ଜାକିଜୁକି ଚୁମା ଦେଇ ଆଦର କରୁଥାନ୍ତି ସେମାନେ ସବୁ, ଗାହକି ସବୁ ଆଉ ଯିଏ ଯେତେବେଳେ ବୁଲୁଁଥାଏ, ସିଏ ବି । ଦୋକାନଟାରେ ବନ୍ଦୀବନ୍ଧା ପାଇଁ ଜିନିଷପତ୍ର କିଛି ନ ଥାଏ କହିଲେ ଚଳେ । ଦୋକାନର ମାଲିକ, କାରଣ ଦେଖାଇଥାଏ ସେ ନୂଆକରି ବେପାର ମେଳିଛି କି ନା ଠିକ ମତେ ସବୁ ଯୋଗାଡ଼ଯନ୍ତ୍ର କରିବାକୁ ବେଳ ପାଇନି—ପ୍ରକୃତରେ ଯଦିଓ ସେ ଦୋକାନ ଖୋଲିଥାଏ ଶରତକାଳରୁ ଅଗଣ କାର୍ତ୍ତିକରୁ । ଗରାଖଗୁଡ଼ାଙ୍କୁ ସେ ଦେଖାଉଥାଏ ଅତି କଦର୍ଯ୍ୟ ଅଶ୍ଳୀଳ ଛବି । ଆଉ ଯିଏ ବୁଲୁଁଥାଏ ତାକୁ ଉତ୍ତେଜିତ କରିବା ପାଇଁ ବଢ଼ାଇ ଦେଉଥାଏ ସେମିତିକା ଅଶ୍ଳୀଳ ଗୀତଗୁଡ଼ାକ ।

ପଢ଼ୁଥାଏ ମୁଁ 'ମିଷ୍ଟ୍ରା ସ୍ମୈଭଣ୍ଟିରନସ୍ଟେଭର' ଲେଖା ନାଉରିଆ କଦର୍ଯ୍ୟ ବହି ଖଣ୍ଡେ ଖଣ୍ଡେ ନେଇ, ଆଉ ସେତିକି ସୁବିଧା ପାଇଲା ଭଳି ପ୍ରତି ଖଣ୍ଡିକୁ ଦେଉଥାଏ ଚୋଟିଏ ଲେଖାଁ କପେକ୍, ଏଠିକି ଘୁଞ୍ଚେଇବା ବି ମୋ ପକ୍ଷରେ କଷ୍ଟକର ହେଉଥାଏ । ମତେ ସଭ୍ୟ ହେବାକୁ ପଡ଼ୁଥାଏ । ସେସବୁ ବହିଗୁଡ଼ାକ ଭଲ ଲାଗୁ ନ ଥାଏ, ସୁଖକର ହେଉ ନଥାଏ । 'ଜୁଅଳି' ବା 'ଅନୁନ୍ତ ମୁଁ ଥୁର', 'ଭେନେସର ଫ୍ରାନସିଲ କାବାରଭିନଥାନଙ୍କ ହସ୍ତ ବୃଦ୍ଧ ବୁଣୀହିଙ୍କର ବା ସେଇ ମୁସଲମାନ ରୂପସୀ ଯାହାର ପ୍ରାଣବାୟୁ ଉଡ଼ିଗଲା ତା' ସ୍ୱାମୀର ଶବଧ ଉପରେ । ସେମିତିକା ବହିଗୁଡ଼ାକ, ଲେଖାଗୁଡାକ ମତେ ଖୁସି କରେଇନ,

ସନ୍ତୋଷ ଦେବ କଣ, ପ୍ରାୟ ସବୁବେଳେ ମୋ ମନରେ ଆଣି ଦେଉଥାଏ ବଡ଼ କଷ୍ଟ ଆଉ ରାଗ । ସତେ ଯେମିତି ସେଇ ବହି ସବୁ ମତେ ବୋକା ବନେଇବାକୁ ବସିଥାଏ, ଚେଷ୍ଟା କରୁଥାଏ ଅଡ଼ଢଙ୍ଗିଆ, ଅଡ଼ୁଆ ମଡ଼ୁଆ ଭାଷାରେ ଏମିତିକା ଗୁଡ଼ାଏ ଗୁଡ଼ାଏ ଅତି ଉଦ୍ଭଟ ଅସମ୍ଭବ କଥା ବଖାଣ କରି ମୋ ଆଗରେ ।

'ଷ୍ଟ୍ରେଲଚ୍‌ସି', ସୂଶ ମାର୍କ ଲେର୍ମୋଣ୍ଟୋଭସ୍କି, ରହସ୍ୟମୟ ମଦନ୍ ଓ ତାହାର ଘୋଡ଼ା ସଓ୍ୟାର ସ୍ପାନସ୍ ଭଳି ବହି କେତେ ଖଣ୍ଡି ମତେ ଅଧିକ ସୁଖକର ଲାଗିଥିଲା, ଅନ୍ତତଃ ମଝେ ମଝେ ସେଗୁଡ଼ିକ କିଛି ହେଲେ ପ୍ରଭାବ ପକାଉଥିଲା ମୋ ମନରେ । କିନ୍ତୁ ସବୁଠୁଁ ବଳି ଉପଭୋଗ୍ୟ ହୋଇଥିଲା, "ସାଧୁସନ୍ଥଙ୍କ ଜୀବନ ଚରିତ ।" ଏଥିରେ କିଛି ଥିଲା, ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସତ୍ୟତାପୂର୍ଣ୍ଣ କିଛି ପ୍ରତ୍ୟୟ ଆଣିଲା ଭଳି ମନରେ, ଏମିତିକା ଠାଏ ଠାଏ ଗଭୀର ଭାବରେ ହୃଦୟସ୍ପର୍ଶୀ କିଛି ବି । କେଉଁ ଅଜଣା କାରଣରୁ କେଜାଣି, ପୁରୁଷ ଶହୀଦଙ୍କୁ ଭେଟିଲା ପରେ ସେଥିରେ ମନେ ହେଉଥିଲା, "ଏ, ଚମତ୍କାର !" ଆଉ ନାରୀ ଶହୀଦ ସବୁ ମନେ ପକାଇ ଦେଉଥିଲେ ମୋର ଅଈ ମା'ଙ୍କୁ. ଆଉ ବଡ଼ ବଡ଼ ଧର୍ମଯାଜକ ପୁରୋହିତମାନେ ମୋର ଅଜାଙ୍କୁ—ସେବେବେଳର ଅଜାଙ୍କୁ ଯେତେବେଳେ ସେ ରହୁଥିଲେ ତାଙ୍କର ସୁପ୍ରସନ୍ନ ମଧୁର ମୁହୂର୍ତ୍ତି ଗୁଡ଼ିକରେ ! ଘର ଛାତ ଉପର ଭଣ୍ଡାରିଆ ଆଣ୍ଠୁ ବଖରାରେ, ବାହାରେ ଜାଳେଣି କାଠ କାଟିବାକୁ ଗଲାବେଳେ, ଗୁଳିଅଟିରେ ଲୁଚିଛପି ଦୁ' ବହିପତ୍ର ଲେଖାଏ ପଢ଼ୁଥାଏ । ଏ ଦରିଦ୍ରିଆଣିଆ ଜାଗା ସମାନ ଏକାପରି ଥାଏ ଅଣ୍ଡା, ଅନ୍ଧାରିଆ ମଇଳା ଅସୁବିଧିଆ ଜାଗା ! କୌଣସି ଗୋଟିଏ ବହି ଯଦି ଖୁବ୍ ଭଲ ଲାଗୁଥାଏ ମତେ, ପଢ଼ିବାକୁ ଆଗ୍ରହ ଆସୁଥାଏ ମନରେ ବି ତାକୁ ଯଦି ଶୀଘ୍ର ଶୀଘ୍ର ପଢ଼ିବାକୁ ପଡୁଥାଏ । ତେବେ ମୁଁ ସେଥିଲାଗି ଉଠୁଥାଏ ପାହାନ୍ତାଆରେ ତଡ଼ିବସୁଥାଏ ଗୋଟାଏ ମହମବତୀ ଜଳେଇ । କିନ୍ତୁ ମେଣ୍ଟ୍ରୀ ବୁଢ଼ୀ ଆଖିରେ ପଡ଼ିଗଲା, ମହମବତୀଟା ରାତିରେ ଛୋଟରୁ ଛୋଟ ହୋଇଯାଉଛି । ସେ କି ଆଉ ସହି ହୁଏ ! ଛୁରି ଏ କାଠ ପାତିଆରେ ମାପିଲାଗଲା ମହମବତୀଗୁଡ଼ାକୁ ପ୍ରାୟ ପ୍ରତିଦିନ । ଆଉ ସେଇ ପାତିଅକୁ ଲୁଚେଇ ରଖିଲା କୋଉଠି କେଉଁ ଅନ୍ଧ-କାରରେ । କିନ୍ତୁ ଯେତେ ଥର ସେ ଏଇଆ କଲା, ସେତେ ଥର ମୁଁ ଖୋଜି ବାହାର କରି ଆଣିଲି, ସେଇ ପାତିଆକୁ । ଆଉ ଘୋଡ଼ାମହମବତୀ ମାପରେ ସମାନ କରି ଦେଇ ରଖିଲି, ବୁଢ଼ୀ ପାଇଁ ! କିନ୍ତୁ ଥରେ ଅବଧି ଯେତେବେଳେ ଏତିକ କରି ନ ପାରୁଥାଏ ସେ ତବେଲେ ସେଇ 'କାଠ' ଅଦୃଶ୍ୟ ହୋଇ ଯାଉଥାଏ ବୁଢ଼ୀର । ସେ ଆଖିମଣି ଠିକ କରି ଦେଉଥାଏ ପାତିଅଟିର ନମ୍ବରୁ ଛୁଡି ଯାଉଛି ମହମ-ବତୀର ଲମ୍ବ । ତା'ପରେ ସେ କି ହଇଚଇ, ସେ କି ପାଟି ତାର ରୋଷେଇଘରେ ! ଚେତେଇର ଶୁଣି ଶୁଣି ଥରେ ଉପରର ଲାଗିବେ ତା ଶୋଇବା ଥାନ ଭଣ୍ଡାରିଆ ଟେ ା ଉପରୁ ପାଟି କଲା ।

"ଗ୍ରାଭ୍ ତୋ ଭୂକା, ତୋ କୁଉିଭୂକା ବନ୍ଦ କର । ମା ! ମଣିଏ ଚଳି ପାରବ ନାହିଁ ବଂଶ ପ ରବ ନାହିଁ ମୂହୂର୍ତ୍ତେ. ତୋ ପାଙରେ ! ସେ ମହ୍ନମଡଶ ଜଳାଉଛ୍ଛ, ପୋଡ଼ୁଚ୍ଛ, ତୋର କ'ଣ ଗନ୍ଧ ଲେ'? 'ପଚ୍ଛୁ ସେ—ବନ୍ଧୁ ଆଗୁଡ ଷ୍ଟୋଭରୁ, ଦୋକାନରୁ । ଦେଖିତ ମୁଁ, ଜାଣେ ମୁଁ ! ଯା ଯାଣ୍ଡ୍ ଯା ଅଣ୍ତାଳ ଯା ସ୍ତ୍ରଓଆ ଆଡ଼୍ଟାକୁ ଯା ।

• ଧାଇଁଲ ବୃଢ଼ୀ ଗ୍ରାଭ ଉପର ସ୍ତ୍ରଓଆ ଆଡ଼କୁ,—ବହିଟିଏ ପାଇ, ଗ୍ରେଟିଆ ବନ୍ଧୁଟିଏ, ଯେଉଟି—ଧଶ କୁଟୁକୁଟା କଶ ପକେଇଲ ! କ ସଗରେ !

ସ୍ୱାଭାବିକ କଥା—ଏଇଟି, ଏଇ ଘଟଣାଟା ଯାହାକୁ ହେଉଲ ଆଘାତ ଦେଇଥାନ୍ତା । କାଟିଲି, ଖିଲ କାଟିଲି । କିନ୍ତୁ ଏହାହିଁ ପୁଣି କେତେଇ ତାହ ଦେଲ ପଢ଼ିବା ପାଇଁ ମୋର ପ୍ରବଳ ଆଗ୍ରହ ପ୍ରବଳ ଇଚ୍ଛା । ନିଶ୍ଚିତ ଭାବରେ ଧାରଣା କରିଥାଏ ମୁଁ ସେଇ ସାଧୁସନ୍ଥଙ୍କ ମଧ୍ୟରୁ ଜଣକର କାହାର ଯଦ ଆବର୍ଭାବ ଘଟିଥାନ୍ତା ସେଇ ଘରଟାରେ, ମୋ ମାଲିକାଣୀଗୃହାକ ତାଙ୍କୁ ଆଗ ଧଥାର ଶିଖାଇ ଦଣିଥାନ୍ତେ କେମିତ କେଉଁ ଆଚରଣର ଦାଟ ଧରିବାକୁ ହେବ,— ଆଉ ଯେମିତ 'ଯୋଗ୍ୟ' ହେବା ବୁଝିଥାନ୍ତେ, ସେମିତ ଠିକ ଗୋଟି ଗୋଟି ନୂଆ କରି ଗଢ଼ି ଥୋଇଥାନ୍ତେ, ତାଙ୍କୁ – ସେଇ ସନ୍ଥଙ୍କୁ ଏହା ଯେମାନେ କରିଥାନ୍ତେ, ଖାଲି ଏହାଠୁ ବଳି ଆଉ କିଛି ଭଲ କାମ କରିବାକୁ ନ ଥାନ୍ତା ବୋଲି ତାଙ୍କ ପାଖରେ ସେମାନେ ଯଦ କେବେ ବନ୍ଦ କରି ଦେଇଥାନ୍ତା ପାଟିତୁଣ୍ଡ କରିବା, ଅନ୍ୟ ସବୁ ଲୋକଙ୍କ ଉପରେ ଦୋଷ ଦେଇ ଟିପ୍ପଣୀ ଦେବା । ସେଇ ଲୋକଙ୍କ ବିଷୟରେ ଅଟା ଟାପରା କରିବା—ତେବେ ସେମାନେ ପ୍ରତ୍ୟେକେ ପାଲଟିଯାଇଥାନ୍ତେ ଗୋଟିଏ ଗୋଟିଏ ମୂକ, ଜଡ଼ା ବସ୍ତୁରେ, ଯଦେହେଲେ କିଛି କହିପାରି ନ ଥାନ୍ତେ, ଛାଟିପାରି ନ ଥାନ୍ତେ ସେମାନଙ୍କ ନିଜ ନିଜର ଅସ୍ତିତ୍ୱ କିଛି ଥିଲା ବୋଲି । ନିଜ ବିଷୟରେ ଅବହିତ ହେବାକୁହେଲେ ନିଜର ଅସ୍ତିତ୍ୱ କଣ ଜାଣିବାକୁ ହେଲେ ଯେ କୌଣସି ଲୋକକୁ ତ ଆଗ ନିଶ୍ଚିତ ଭାବରେ ସଚେତନ ସମ୍ପର୍କ ରଖିବାକୁ ହେବ ଆତ୍ମମାନଙ୍କ ସହିତ । କେବଳ ଗୋଟିଏ ପ୍ରକାର ସମ୍ପର୍କ ରକ୍ଷା କରି ଜାଣିଥିଲେ ମୋର ମାଲିକ ମାଲିକାଣୀ ଦୁହେଁ । ଜାଣିଥିଲେ ଶିକ୍ଷକ ବା ବିଚାରକ ପରି ସମ୍ପର୍କରକ୍ଷା କରାଯାଇ ପାରେ ଜୀବନରେ । ଏଥିପାଇଁ କେହି ବା ଯଦ କେବେ ତାଙ୍କର ଧାରଣା କଳନାର ଧାଞ୍ଚାରେ ଚଳିବାକୁ ବାହାରୁଥିଲ—ତ କୁ ମଧ୍ୟ ସେମାନେ ଦେଖୁଥିଲେ ବିରୂପ ବିରକ୍ତ ଆଖିରେ– ତା' ଉପରେ ଗର୍ଜମାନ ଝାଡ଼ୁଥିଲେ ଦୁହେଁକୁ ଦୁହେଁ ! ଏଇ ଥିଲା ସେମାନଙ୍କ ଚରିତ୍ର. ଏଇ ଥିଲା ସେମାନଙ୍କ ସ୍ୱଭାବ ।

ପଢ଼ିବ ବୋଲି, ପଢ଼ିବ ବୋଲି ବହିକୁ ଖଣ୍ଡେ ଖଣ୍ଡେ, କେଜାଣି କେତେ କୌଶଳ କରିଥିବି, ସୂକ୍ଷ୍ମ କୌଶଳ କରିଥିବି, ଚତୁରତାରେ, କିନ୍ତୁ ଏତେ କଲେ କଣ ହେବ ଥରକୁଥର ଅନେକ ଥର ନଷ୍ଟସ୍ମ ବୁଢ଼ୀଟା ଚିରିଚାରି ଫିଙ୍ଗିଫୋପାଡ଼ି ନଷ୍ଟ କରିବାରେ ଲାଗିଲା ମୋ ବହିଗୁଡ଼ିକୁ, ଶେଷରେ ଏସବୁ ଦେଖିକି ଦୁଃଖରେ

ହୋଇ ପଡ଼ିଲଣି ଦୋକାନଟି ପାଖରେ, ଯେ ଋଣର ପରିମାଣ ପୃଥ୍ବୀ କ ବସ୍ତୁଳ—ସତସ୍ତରଣ ନପେକ୍ (ପଇସା) ସେ ଦାବୀକରେ ବହିଲ୍, ସାଂଗେ ସାଂଗେ ଶୁଣିବୁ ଓ ଶୁଣିବୁ ଋଣ ପଇସା ଚୋର, ନଇଲେ ପାଉଁରୁଟି କଣିବାକୁ ଅସିବୁ ଯେତେ-ବେଳେ ସେଇ ପଇସାରୁ ମୁନବ ମାଲିକଙ୍କ ପଇସାରୁ କାଟି ରଖିବ ଯେତକ ପାଉଣା ମୋର ନିଜୁ ତାବତରେ—ଧମକେଇଲ ମତେ ଆଜ ଝଣ୍ଟା ଦେଇ ଦାନ-ଚଳା କଥାରେ ଶୁଣାଇଲ—"ଏମିତ କଲେ କଣ ହେବ କଣ ଘଟିବ ଜାଣିଚୁ କି?"

ତା' ସ୍ଵର ଦେଖିଲ ମାଝେ ଘଣାରେ ବରନ୍ତରେ ଆଉଣ୍ଟି ହୋଇ ଯାଉଥାଏ ମନଟା ମୋର, ଏତେ ଅବହେଳନବ୍ରବରେ ଜଘନ୍ୟ ଲଗୁଥାଏ ଲୋକଟା, ହୃଷ୍ଟ କଣାପଡ଼ି ଯାଉଥାଏ ସେ ଠିକ ଧରିପାରିଥାଏ ମୋର ଏ ମନୋଭାବଟା—ସେଇଥି ପାଇଁ ମତେ ସବୁ ପ୍ରକାର ଧମକଚମକ ଦେଇଦେଇ ଯନ୍ତ୍ରଣା ଦେଇ ବେଶି ଆନନ୍ଦ ପାଉଥାଏ, କୋମଳ ହେଉଥାଏ ଶତେଦେଇଙ୍କରେ ଯେତେବେଳେ ଯାର ଦୋକାନରେ ପହଞ୍ଚ ତା' ସୀମା ମାଡ଼ୁଥାଏ କି ନାହିଁ, ମତେ ଦେଖିଲାକ୍ଷଣି ତାର ଚୋଲଦା ଦାନ୍ତ ଝିଟିଝିଟି ମୁହଁଟା କୋଡ଼ିହୋଇ ଯାଉଥାଏ ହସରେ, ତାଚ୍ଛଲ୍ୟ ହସରେ ।

"ଅଣିଚୁ ? ମୋଠୁ ଯୋଉ ପଇସା ଧାରିଚୁ ଅଣିଚୁ ?" ପଚାରି ଦେଉଥାଏ ସେ—

"ନା !"

ଏତେକରେ କେମିତ ଭରେମି ଯାଉଥାଏ ମୋ ମଥାଟା, ଝୁପି ପଡ଼ୁଥାଏ ଚେଳମଟା ଫମ୍ପଫାମ୍ପ ଗାରୁ ଗାରୁ ହୋଇ କହୁଥାଏ—

"ନା ? କଚ ଯେ କରିବ ତତେ ସ୍ୱେ । କଣ କରିବା ଉଚିତ ହେବ ? ଏ ଅଇନ ବାଟ ଦେଇଦେଇଦେବ ତତେ, ପୋଲିସ ଲଗେଇଦେବ, ଶୂନ୍ୟେ ଶୂନ୍ୟେ ଜାହାଜ ଫାହାଜରେ ଝେକଦେବେ, ବୋହୁନେବେ ସେମାନେ ତତେ ସିଲିକ୍ସ ଯେଉଁ ଜେଲରେ ରଖାଯାଇ ସିଧା କରିଯାଏ, ସୁଧୁରିଯାଏ ସେଇ ଜେଲ ଡିପମେଣ୍ଟରିକୁ ?"

ପଇସାଟିଏ ମୋ ହାତରୁ ଝସିବାର ବାଟ ନ ଥାଏ କୋଉଠି, କାରଣ ମୋ ମୂଲ ମୋ ଦରମାତକ ଦିଆହେଉଥାଏ ଅଜାଙ୍କୁ, କଣ କରିବ ବୁଦ୍ଧିବାଟ ପାଇଲି ନାହିଁ, ଦୋକାନକୁ ଯେତେବେଳେ ଅନୁନୟକରି କହିଲି ଟିକଏ ଅପେକ୍ଷା କର, ସେ ତାର ସେଇ ଫୁଲିଲ ଫୁଲିଲ ଫିଟୋପରି ଚକଟା ଚକଣିଆ ହାତଟାକୁ ଲମ୍ବେଇ ଦେଇ ମୋ ଅଡ଼କୁ କହି ଉଠିଲ—

"ନେ, ତୁମ ଦେ, ସ୍ବାକୁ ! ଅପେକ୍ଷା କରିବ !"

ଦୋକାନ ପଟରୁ ପାଟରୁ ଉଠାଇନେଲ ଗୋଟାଏ ବଡ଼ ବଟକରା ଲୁହାର—ଝୁଲଉଲ ତା' ମୁଣ୍ଡକୁ ଲକ୍ଷ୍ୟ କରି, ସେ ନଇଁପଡ଼ି ସେଇଯାଇ ବଟକଟା ଉପରି ପାଟିକରି ଉଠିଲ—

"ହେକ୍ ହେକ୍, ଏ କଣ, ଏ କଣ, ଏ କଣ କରୁଚୁ ରୁ ? ଏମିତ ଟିକଏ ମୁଁ ଗେଲରେ-ତତେ ବୋକା ବନଉଥିଲି ନା !"

ମତେ ଲଗିଲା, ନା, ସେ ବୋକା ବନାଉ ନ ଥିଲା ମତେ, ଠଟ୍ଟା କରୁ ନ ଥିଲା । ଠିକ୍ କଲି, ଜିଙ୍ଗପର ଲାଗିଛୁ ମୋ ଦେହରେ, ତାଠୁ ରକ୍ଷା ପାଇବା ପାଇଁ ଚେଷ୍ଟା କରିବା ପଛେ, ତାକୁ ଶୁଝିବି । ଅନେକ ସମୟରେ ପ୍ରାୟ ସକାଳେ ମୋ ମାଲିକର ପୋଷାକପତ୍ର ଝାଡ଼ି ବ୍ରସ୍ କଲାବେଳେ କୁର୍ତ୍ତା ପକେଟରେ ଖୁଚୁରା ପଇସା କିଛି ଦେଖୁଥିଲି ବେଳେବେଳେ, ତାହାସବୁ ତଳେ ଖସି ପଡ଼ୁଥିଲା । ଥରେ ଗୋଟାଏ 'ମୁଦ୍ରା' ଖସି ଗଡ଼ିଗଲା ପାହାଚ ତଳେ କାଠଗଦା ଭିତରକୁ । ଏ କଥା ଭୁଲିଯାଇଥିଲି ମାଲିକଙ୍କୁ କହିବା ପାଇଁ, ଭୁଲିଯାଇଥିଲି କିଛିଦିନ ଯାଏ । ହଠାତ୍ ଥରେ କାଠ କୋଣରୁ କୋଡ଼ିଏ ପଇସିଟିଏ ହୁରୁଡ଼ିଯିବା ପର୍ଯ୍ୟନ୍ତ, ଏଇଟିକୁ ପାଇ ଫେରାଇଲି ଯେତେବେଳେ, ମାଲିକାଣୀ କହି ଉଠିଲେ ମାଲିକଙ୍କୁ—

"ଦେଖ, ପଇସାପତ୍ର ପକେଟରେ ଗଣିକରି ରଖିବ ଏଣିକି, ଏ କେମିତ ସେ ଚାକର ?"

"ଓ, ନା ! ସେ କିଛି ଚେଷ୍ଟାକରି ନେଇଯିବ ନାହିଁ ।" ମୋ ଆଡ଼କୁ ଅନେଇଦେଇ ହସି ହସିକା କହିଲେ ମାଲିକ ।

ଏବେ ଯେତେବେଳେ 'ସକାଳ'କଲି ପଇସାଟଙ୍କା ଚେଷ୍ଟା କରିବ, ମନେ ପଡ଼ିଗଲା ମାଲିକଙ୍କର ସେଇ କଥା ପଦକ ଆଉ ତାଙ୍କର ସେଇ କଣ୍ଢେଇଆ ହସ-ଟିକକ, ଏଇଟି ବଡ଼ କ୍ରୋ ବଡ଼ କଠିଣ ପରିସ୍ଥିତିରେ ପକେଇଦେଲା ମତେ, କେତେ ଥର କେଜାଣି ତାଙ୍କ ପକେଟରୁ ଖୁଚୁରା କିଛି କିଛି କାଢ଼ିଥିବ ଗଣିଗାଣି ଦେଖିଥିବ, ଅଉ ପୁଣି ଖେଳିଦେଇଥିବ ଥରକାନ ଦେଇ ପକେଟରେ—ଠନଠନ କାଳ ବାଜ ଯାଇରେ ନଜେ ମୁଁ ଲଢ଼େଇ ଚଳେଇ ସେଥିରେ ମଜ୍ଜି ରହିଲି ! ହଠାତ୍ ଦିନେ ସବୁ ଠିକ୍ଠାକ୍ ହୋଇଗଲା ଅତି ସରଳ ସିଧା ଉପାୟରେ !

"ଏଇ କେତେଦିନ ହେଲା, କଣ ହୋଇଚ ତୋର ପେଶକଭ ?" ଅତି ଅପ୍ରତ୍ୟାଶିତ ଭାବରେ ଅଗ୍ନକ ଦିନେ ପଚାରି ଦେଲେ ମତେ ମାଲିକ-"ତୁ ତ ତୋ ପର ଦିଶୁନୁ । ଆଗପରି ନାହୁଁ, କଣ ଝେରପ ଲାଗୁଛୁ, ଦେହଫେହ ?"

ଖୋଲିକରି କହିଲି କସେବୁ ବ୍ୟତିବ୍ୟସ୍ତ କରୁଥିଲା ମତେ—

"ଦେଖ ଏଥର ବୁଝ, ବହିପଢ଼ା କୁଅଡ଼ିକ ନେଇଯାଏ ମଣିଷକୁ" ! ମୁହଁ ଟାକୁ ଲମ୍ଭ ଫାଉଁକାନ କହିଲେ ସେ, ମାଲିକ । "ଏ ବାଟରେ ହେଉ କି ସେ ବାଟରେ ହେଉ ଗୋଟାଏ କୌଣସି ବାଟରେ ନଷ୍ଟିସ୍ତ ତା ଦୁଃଖ ଦେବ, କ୍ଷୟକ୍ଷତିରେ ପକେଇଦେବ ତତେ !"

କିନ୍ତୁ ପଚିଶଟି ପଇସା ବଢ଼େଇଦେଲେ ମତେ ଝାଲି ଯାହା ସତର୍କ କରିଦେଇ ।

"ଦେଖ ମୋ ମାଆ କି ଖରାପ କିଛି ନ ଜାଣନ୍ତି ଯେମିତି, ବୁଝିଲୁ, ଜାଣନ୍ତି ଯାହା ଗଣ୍ଡଗୋଳ, ଅଡୁଆ ଧରିବ ସବୁ ।"

କେମିତି ଗୋଟାଏ ଫଳଖୋଳା ମଧୁରିଆ ପ୍ରକୃତିର ହସରେ, ନିଜ କଥା ପଦକରେ ଆଉ ଦ'ପଦ ଯୋଡିଦେଲେ ସେ !

"ହେଉ, ଏତିକି ଜିଦଖୋରିଆ ଫାଜିଲ ବକେଟନାକୁ ସରକାନରେ ରୁ ? ଲାଗିଥିବୁ ଜୋକପରି. ହେଉ ଭଲ, ଭଲ,ବେଶ୍ ଭଲ ଗୁଣ ସେ—କିନ୍ତୁ ଗୁଡ଼, ବହୁ ଗୁଡ଼ ! ନୂଆ ବର୍ଷ ଆରମ୍ଭରୁ ଭଲ ଖବରକାଗଜଟିଏ ମଗେଇବ ମୁଁ ପଢ଼ିବୁ, ମନ ପୂରେଇ ପଢ଼ିବାକୁ ପାଇବୁ, ବୁଝିଲୁ !"

ମଗେଇଲେ ସିଏ, ପ୍ରକୃତରେ ମଗେଇଲେ ଖବରକାଗଜଟିଏ, ଆଉ ସବୁଦିନ ସଞ୍ଜହେଲେ ବୁଢ଼ାଖିଆ ଆଉ ବୁଢ଼ୀଖିଆ ମଝିରେ ବସେଇ ପଢ଼ିବାକୁ ଶୁଣେଇବାକୁ ହେଲା ମାଳିକମାଳିକାଣୀମାନଙ୍କୁ ସେଇ ମସ୍ତୋ ପତ୍ରିକାଟି, ଯେଉଁଥିରେ ବାହାରୁଥାଏ ଷ୍ୟାଦୋଭ, ସ୍ତେକଶାନନ୍, ରୁଡନକୋଭସ୍କି ଆଦି କେତେକ ଲେଖକଙ୍କର 'ନଭେଲ'ସବୁ, ଯେଉଁଗୁଡ଼ିକ ଲେଖା ହେଉଥାଏ କିଛି କାମଦାମ ନ କରି ଘରକୋଣଆରେ ସମୟ ନ କଟାଇପାରି ମରି ଯାଉଥିବା ଲୋକଙ୍କ ଲାଗି—ସେଇମାନଙ୍କ ଉଦ୍ଦେଶ୍ୟରେ ।

ବଡ଼ପାଟିରେ ପଢ଼ିବାକୁ ଭଲ ଲାଗୁ ନ ଥାଏ ମତେ, ଭିତରର ମର୍ମ ବୁଝିବାରେ ବାଧା ଆସୁଥାଏ ବଡ଼ପାଟିରେ ପଢ଼ିଲେ । କିନ୍ତୁ ମୋ ଶ୍ରୋତୃମଣ୍ଡଳି ମନକର୍ଣ୍ଣ ଦେଇ ଶୁଣୁଥାନ୍ତି, ସବୁ ଶୁଣୁଥାନ୍ତି ଶରଧା ଭକତିଆ ଉତ୍ସାହରେ ଆଗ୍ରହରେ କେତେବେଳେ କେତେବେଳେ ନିଃଶ୍ୱାସରୋଧ ହୋଇଯାଉଥାଏ ସେମାନଙ୍କର, ଶୁଣୁଥାନ୍ତି ହାସ୍ୟତାରେ ହୁଉହାଆ ହୋଇ କେତେବେଳେ ଚିତ୍କାର କରିଉଠି, ସେଇ ଦେମାସି ସଇତାନ କାରବାରଗୁଡ଼ିକର ବର୍ଣ୍ଣନା ଆଉ ସେ କି ଦର୍ପରେ ଟିପଣୀ କାଟି କୁହାକୋହି ହେଉଥାନ୍ତି ପରସ୍ପରକୁ ଜଣାଉଥାନ୍ତି ସେଇ ଗୋଟାଏ କଥା ।

"ଆଉ ଏଠି ଅମେ କେଡ଼େ ନିଷ୍କଳ ଶାନ୍ତିରେ, ଅଛେଁ, ଚଳୁଛେଁ ସତେ ବାହାରେ ଯେ କେତେ କଣ ଘଟିଯାଉଛି—ପ୍ରଭୁଙ୍କ ଦୟା ! କିଛି ଭଲ ଜାଣୁଥାନ୍ତେ କେବେ—ଧନ୍ୟବାଦ, ଧନ୍ୟବାଦ ପ୍ରଭୁ !"

ସବୁ ଘଟଣା, ସବୁ ଚରିତ୍ରଗୁଡ଼ାକୁ ସେଇ ବହିଗୁଡ଼ିକର—ଗୋଳେଇ ମୋଳେଇ ବୁଝୁଥାନ୍ତି ସେମାନେ, ବିଖ୍ୟାତ ଡାକୁ ଚୁରକିନର କୀର୍ତ୍ତି କାରବାର-ଗୁଡ଼ିକୁ, ଲଦୁଥାନ୍ତି ଗାଡ଼ୁଆନ୍ ଫୋମାଞ୍ଚେଂଶନା ଉପରେ, କହୁଥାନ୍ତି ଡାକୁର କୀର୍ତ୍ତିଗୁଡ଼ାକ ଚୁର୍କିନର, ସବୁବେଳେ ଗୋଳମାଳରେ ପଡ଼ୁଥାନ୍ତି ଚରିତ୍ରଗୁଡ଼ାକର ନାଆଁକୁ ନେଇ, ଯେତେବେଳେ ସଳଖେଇ ଦଉଥାଏ ମୁଁ ସେମାନଙ୍କୁ ଯେତେବେଳେ ବିସ୍ମୟରେ ଆଖି ଖୋସିହୋଇ ଯାଉଥାଏ ସେମାନଙ୍କର !

"ଆରେ, କି ସ୍ମରଣ ଶକ୍ତିରେ ପିଲାଟାର !"

ଅଧିକାଂଶ ସମୟରେ 'ମସ୍କୋ ପତ୍ରିକା'ରେ ବାହାରୁଥାଏ ଲିଓନିଦ୍ ଗେଭଙ୍କର କବିତା, ଖୁବ୍ ଭଲ ଲାଗୁଥାଏ ମତେ, ମୋ ଟିପା ଖାତାରେ ଟିପି ରଖୁଥାଏ ସେଗୁଡ଼ିକୁ—ମୋ ମାଲିକାଣୀମାନେ ସେ କବିଙ୍କ ସମ୍ପର୍କରେ କହନ୍ତି କହୁଥାନ୍ତି—

"କି ଜାନ୍‌ନୁ, କଥା ଖୋଜିଲି ଦେଖି, ବୁଢ଼ାଟାଏ ଲେଖୁଛି କବିତା !"

"ସବୁ ସମାନ, ସବୁ ସମାନ, ଏକା ସବୁ, ମାତାଲ ଆଉ ଅଧାପାଗଳ, ସେ ଦୁର୍ବଳିଆ ମତର ଲୋକଟା ସବୁ ଏକ କଥା ତା' ପାଖରେ ।"

ସ୍ତ୍ରୁଗନିନ୍ ଓ କାଉଣ୍ଟ ମିମେଣ୍ଟୋ ମୋଶଙ୍କର କାବିତାଗୁଡ଼ିକ ବେଶ୍ ଉପଭୋଗ୍ୟ ହୋଇଥାଏ ମୋ ପାଇଁ, କିନ୍ତୁ ବୟସ୍କା ଆଉ ତରୁଣୀ, ସବୁ ଧରଣର ମାଲିକାଣୀମାନେ ମୋର ଜୋରରେ ସହିତ ଦାବୀକରି କହୁଥାନ୍ତି 'କବିତା'ଗୁଡ଼ିକ ବିଶୁଦ୍ଧ ନିର୍ବୋଧ ପଣିଆର ନମୁନା, କବିତା କଣ ଲେଖା ମୂର୍ଖାମି !"

"ଯାହାର ଯେତେ ଦୁଆସିଆ, ନାଟୁଆ, ବହୁରୂପୀ, ଅଭିନେତା ସେଇମାନେ ଗାଆନ୍ତି କବିତା, ଗପନ୍ତି କବିତା ବିଷୟରେ !"

ଶୀତଦିନିଆ ସନ୍ଧ୍ୟାଗୁଡ଼ିକ ସେଇ ଅନ୍ଧାରୁଆ ନାଶ୍ତାସରୁଙ୍କ ଗ୍ରେଟ ବଖାରୁଟିରେ ମୋ ମାଲିକ ମାଲିକାଣୀମାନଙ୍କ ଆଖିଗୁଡ଼ିକ ନିବଦ୍ଧ ମୋ ଉପରେ । ଇଃ କି ବିରକ୍ତିଆ, କି ହାଡ଼ଚଡ଼ା ଲାଗୁଥାଏ ମତେ ! ରାତିଗୁଡ଼ିକ ଶୀତଳ କରୁଥାଏ ଝରକା ଆରପଟେ ମୃତ୍ୟୁପରି ବେଳେବେଳେ ରହି ରହି ଶୁଭୁଥାଏ ଯାହା କାନରେ ଟୁକୁଟାକ ଫାଟି ଫାଟି ଗଲା ଶବ୍ଦ—ତୁଷାର କଣିକାର । କିନ୍ତୁ ମୋର ସେଇ ଲୋକ ସବୁ ସେଇ ମାଲିକମାଲିକାଣୀମାନେ ଉଁ ଚୁଁ ନ ହୋଇ ବସି ରହୁଥାନ୍ତି ଟେବୁଲ ପାଖରେ, ବରଫଦିଆ ମାଛମାନ ପରି । ନଇଲେ କେତେବେଳେ କେମିତି ବି ଝଡ଼ ବହୁ ଆସି ଭୁରି ବାଜାଉ ଦେଉଥାଏ କାନ୍ଥଗୁଡ଼ାକୁ, ଝରକା କାଚ ପାଣିଆର କଚକୁ ସବୁ, ଚିମିନି ଭିତରେ ଚିତ୍କାର କରିକରିକା, ବରଫଲେଖା ଟିଣଗୁଡ଼ାକୁ ପିଟିପିଟିକା ବହୁଥାଏ ମାତାଲ ପରି ଆଉ ତେଣେ ଶୀଘ୍ରଦନରୁ ଭାସି ଆସୁଥାଏ କୁନିକୁନି ଚଞ୍ଚଳ ଛୁଆଗୁଡ଼ିକର ଅନବରତ କାନ୍ଦଣା, ଏଥିରେ ମୋ ପ୍ରାଣଟା ଛଟପଟ ହୋଇ ଉଠୁଥାଏ, ପଦ ଚପିଚପି ଚମ୍ପୁସ୍ ଛପିଯାଆନ୍ତିକି ଘନ୍ଟଘନ୍ଟିଆ ଅନ୍ଧାରିଆ ଲଗାତର କହିଲୁ କୋଉଠି ଆଉ ହୁଡ଼ୁଡ଼ ହୁଡ଼ୁଡ଼ କରି ଚିତ୍କାର କରନ୍ତି ହେଟାବାଘଟାଏ ପରି ।

ଟେବୁଲର ଗୋଟାଏ ମୁଣ୍ଡରେ ବସିଥାନ୍ତି ମାଇପେ ସବୁ, ବୁଣୁଥାନ୍ତି ସିଲେଇ କରୁଥାନ୍ତି ମୋଜା, ଆର ମୁଣ୍ଡରେ ଅନନ୍ଥରେ କହାଣି କଣ ଗୋଟାଏ ଅଙ୍କିଲା ଛବି ଉପରେ ନଇଁ ପଡ଼ିଥାଏ ଭିକ୍ଟର, ଯୋଉ ଛବିଟାକୁ ଗାରେଇ ଗାରେଇ କପି କରୁଥାଏ ସେ—ବେଳେବେଳେ କେତୋଟି ଲେଟାଏ ମୁହୂର୍ତ୍ତ ପରେ ପରେ, ପାନି କରୁଥାଏ ।

"ହେ ! ହଲନା, ହଲନା ଭଲ ଟେବୁଲଟାକୁ ! ନା, ରହ-ପାରବ ନାହିଁ, ବଂଚ ପାରବ ନାହିଁ ମଣିଷ ତମ ପାଖରେ, ମୁଗୁର ମୁଣ୍ଡିଆ ଥଉଥଉଆ ଡେଙ୍ଗୁ ଡେଙ୍ଗୁ ମାଗୁରମାଛୁଆ କଣ୍ଟାଗୁଡ଼ାକ !"

କଡ଼ରେ, ଟିକେ ଦୂରରେ ମସ୍ତବଡ ଫ୍ରେମ୍'ଟାଏ ସାମନାରେ, ବସିଥାନ୍ତି ମୋ ମାଲିକ—ଆଡ ସିଲେଇରେ ଛକକଟା ଖୋଳରେ କମକୂଟ କରୁଥାନ୍ତି ଟେବୁଲ-କଲ୍‌ଥକୁ ।

ସରୁ ସରୁ ଛିଦ୍ର ଆଙ୍ଗୁଳଗୁଡ଼ାକ ମୁନରୁ ତାଙ୍କର ବାହାର ଆସୁଥାନ୍ତି ଗୋଟିକୁ ଗୋଟିଏ କଙ୍କଡ଼ା, ନେଲି ନେଲି ମାଛ, ହଳଦିଆ ଦ୍ଵନଦିଆ ପ୍ରଜାପତି, ଆଉ ଧୂସରିଆ ଧୂସରିଆ ଶୀତକାଳିଆ ପଦ୍ମ । ନିଜେ ସେ ପସ୍ତୁତ କରଥାନ୍ତି ପରିକଳ୍ପନା-ଟାକୁ, ଆଉ ଉନଟା ଶୀତରରୁ ଚଳ ଲଗିଥାନ୍ତି ତାକୁ ରୂପ ଦେବାରେ । ଏବେ ପୂର୍ବପ୍ରାରମ୍ଭର ଚଟା ଧରଯାଏ ତାଙ୍କୁ ଅନେକ ସମୟରେ, ଦାନବେଳେ ଅବଶ୍ୟ ମୁଁ ଯଦ ବ୍ୟସ୍ତ ନ ଥାଏ କାମରେ ମୋତେ ଡାକ କହୁଥା'ନ୍ତି ।

"ନେ, ପେଣ୍‌କଭ, ନେ, ଦେଖ ! ଚଲ ଏ ଟେବୁଲକଲ୍‌ଥ କାମଟା ଚଲୁ—!

ଆଉ ମୁଁ ଚେଷ୍ଟା ଉନଦଆ ଛୁଞ୍ଚଟାକୁ ଟେର ଚଳାଉଥାଏ ସେଇ କମକୂଟିଆ ସିଲେଇ । ମାଲିକଟି ପାଇଁ ଦୁଃଖ ଆସୁଥାଏ ମନରେ, ସବୁବେଳେ ମୁଁ ଆକୁଳ ହେଉଥାଏ ଯେକୌଣସି ବାଟରେ ସମ୍ଭବ ହେଉ କେମିତ ସାହାଯ୍ୟ କରନ୍ତି କ ତାଙ୍କୁ । ଦନେ ଦନେ ଲାଗୁଥାଏ ମୋତେ, ଅଙ୍କାଅଙ୍କି, ବୁଣାବୁଣି, ତାସଖେଳ, ବନ୍ଦକର ଦେଇଥାନ୍ତି, ଆଉ କଣ କଛୁ କରବାକୁ ବାହାରୁଥାନ୍ତି ବଢ଼ିଆ କଛୁ ମନକୁ ପାଇଲା ଭଳି, ଯାହା ସେ ସ୍ୱପ୍ନ ଦେଖୁଥା'ନ୍ତି—ଯେମିତ ହଠାତ ଯେତେବେଳେ ସେ ନିଜ 'କାମ'ଟାକୁ ଛାଡଦେଇ ଆଶ୍ଚର୍ଯ୍ୟରେ ଅନାଇ ରହୁଥାନ୍ତି ସେହି କାମଟାକୁ ନିଜର ସତେ ଯେମିତ ତାକୁ ଦେଖିବାକୁ ପାଇଥାନ୍ତି, ପ୍ରଥମଥର ସେଇକ୍ଷଣି । ଛୁଡ଼ା ହୋଇ ରହୁଥାନ୍ତି ସେତେବେଳେ. ଭୂରୁ ଅଉ ଗାଲ ଉପରେ ଝୁଲି ପଡ଼ୁଥାଏ କେତୁଏଲେଖାଁ ବାଳ, ଦଶୁଥାନ୍ତି ଯେମିତ ନୂଆ ହୋଇ 'ଗିଜା' ଭଳି ମଠରେ ପଶିଥାନ୍ତି, ନୂଆ ଚେଲା'ଟିଏ ।

"କଣଗୁଡ଼ାଏ ଭାବୁଚ ଯେ" ପଚାରୁଥାଏ ତାଙ୍କ ଭାରଯା ।

"ଏମିତ ବିଶେଷ କଛୁ ନୁହଁ !" ପୁଣି କାମରେ ହାତ ଦେଉ ଦେଉ ଉତ୍ତର ଦେଉଥାନ୍ତି ସେ ମାଲିକ ।

ତାଙ୍କର ସେଇ ମୌନଭାବଟି ବସ୍ମିତ, ମୁଗ୍‌ଧକର ହେଉଥାଏ ମୋତେ । ଲୋକଟି କଣ ଭାବୁଚ, ଚଳୁଚ ଏ କଥା କେମିତ ପଚାରବ ଯେ ତାଙ୍କୁ ? ପଚାରିବାଟା କଣ ସୁନ୍ଦର ଅଉ ସଙ୍ଗତ ? ସେ ବା କେମିତ ଉତ୍ତର ଦେଇ ପାରବେ ସେଇ ପ୍ରଶ୍ନର ; ଗୋଟିଏ ବୋଲ ମୁହୂର୍ତ୍ତିରେ ଓ ଅନେକ ଅନେକ କଥା ଭାବେ ଲୋକ—ତା' ଆଖିରେ ପଡ଼ୁଚ କଣ ସେତିକବେଳେ, ଗଲ୍‌କାଲି ପଡ଼ିଥିଲା କଣ,

ଦେଖିଥିଲି ସେ କଣ ସବୁ ପୁଣି ଗଳ୍ପବର୍ଷ, ଏ ସବୁରେ ଗ୍ଲୁଇଗ୍ଲୁଇଆ ଗ୍ଲୁପିଗ୍ଲୁପିକିଆ ଗୋଲମଟୋଲିଆ ବଭ୍ରାଟିଆ ରୂପସବୁ, ଧାରଣା ସବୁ—ଧାଉଁଥାଏ, ଛୁଟୁଥାଏ, କେଜାଣି ଯେ କି ବେଗରେ, ବଦଳୁଥାଏ ! ଓଲଟୁଥାଏ ପାଲଟୁଥାଏ ସେଇ ଗୋଟିଏ ବୋଲି ମୁହୂର୍ତ୍ତିରେ କେତେ କେତେ ଥର କେଜାଣି !

ପର ଗୋଟାଏ ସଙ୍କେତ କହିପାରୁ ନ ଥାଏ ମଣ୍ଡୋ ପତ୍ରିକାର ଲେଖା-ଗୁଡ଼ାକ ପଢ଼ାରେ, କଥାଟାଏ ବଢ଼ିଲି, ଶୋଇବାଘରେ ବଛଣାତଳେ ସେଇ ପତ୍ରପତ୍ରିକା ଜମା ହୋଇଛି, ସେଥିରୁ ପଢ଼ାଯାଉ କିଛି କିଛି ।

"ସେଥିରେ ସବୁ କଣ ଅଛି ଯେ ପଢ଼ା ହେବା ଭଳି ଏମିତ ?" ଅବଜ୍ଞାମିଶା ଢଙ୍ଗରେ ପଚାରିଲା ଯୁବତୀ ମାଲିକାଣୀଟି ମୋର । "କିଛି ତ ନାହିଁ ଖାଲି ଛବି !"

କିନ୍ତୁ କେବଳ 'ଚିତ୍ର-ଜଲ୍ପ' ପତ୍ରିକାଟି ତ ସାଇତା ହୋଇ ନ ଥାଏ ବଛଣାତଳେ ! ଆଉ ସେଠି "ଶିଖା" ପତ୍ରିକାଟି ବି, ଯେଉଁଥିରୁ ଆମେ ପଢ଼ିବାକୁ ଆରମ୍ଭ କରିଥିଲୁ 'ସାଇଆସ'ଙ୍କ ଲେଖା "ଜାଉଣ୍ଡ୍ ଫଅଇନ୍ ବାଇଗ୍ରୁପି ।" ଏଇ ଗପଟାର ନାୟକ ବୋକା 'ଟମ୍ମଟା' କଥା ଶୁଣି ହସିଲେ ଖାଲି ହସିଲେ, ହସି ହସି ଗଡ଼ିଲେ ମୋ ମାଲିକ, ସେଇ ଯୁବକ ଭଦ୍ରଲୋକ ତରୁଣଟିର କରୁଣ ଦୁଃସାହସିକ କାହାଣୀ ଶୁଣିଲା ପରେ ଆଖିରୁ ଟୋପାକୁ ଟୋପା ଲୁହ ଝରି ଗଡ଼ି ଗଡ଼ି ଗିବାଯାଏ ଗାଲ ଉପରେ ।

"ଏଁ ଆରେ, କେତେ ମଜାର କେତେ ମଜାର !" ପାଟିକରି ଉଠୁଥାନ୍ତି ରହି ରହିକା ।

"ରୁକ୍ଷ ମନଗଢ଼ା ବା ଖଣ୍ଡାଖଣ୍ଡି ହୋଇ ଡଆସ !" ନିଜ ମତାମତର ସ୍ୱାତନ୍ତ୍ର୍ୟ ଟିକି ଦେଖାଇବା ପାଇଁ ଟିପ୍ପଣୀ ଦେଉଥାଏ ମାଲିକଙ୍କ ସ୍ତ୍ରୀ ଜା !

ବଛଣା ତଳ 'ବନ୍ଧୁଗୁଡ଼ାକ' କିନ୍ତୁ ସବୁ କାମ ହେଲା ମୋର । ସେଗୁଡ଼ିକ ସକାଳେ ହିଁ ମୋତେ ଅଧିକାର ମିଳିଗଲା ! ସେସବୁରକୁ ମୁଁ ପତ୍ରିକା-ଗୁଡ଼ିକୁ ନେଇ ରାତିରେ ପଢ଼ିବା ପାଇଁ ।

ମୋ ଭାଗ୍ୟକୁ ସନ୍ଧିଆରେ ମଜଳା ପାଇଁ ବାହାରିଗଲେ ଧାଇଁଟା, ଶୋଇବାକୁ ଯାଏ, ବିଛଣା ଧରେ ବୁଢ଼ୀ । ଭିକ୍ଟରର ତ ଆଉ କିଛି ନ ଥାଏ ମୋ ପଢ଼ିବାରେ । ଘଣ୍ଟାଏ ମାଗଣା ସମୟରେ ଟୁପୁରୁପ ବେଶ ହୁଏ, ପୋଷାକପତ୍ରରେ ସାଜସଜ୍ଜା ହୁଏ ଆଉ ଦିଆଯାଏ ହଜାର ହୋଇଯାଏ ଭୋର ସକାଳ ପର୍ଯ୍ୟନ୍ତ । ମାଲିକାଣୀ କିନ୍ତୁ ଆଉ ବର୍ଷ ରହିକି ନେଇଯାଏ ମନ୍ଦମନ୍ଦଙ୍କୁ—ଅନ୍ୟଥା ବନା କଟେଇବାକୁ ପଡ଼ିଲା ପ୍ରଥମେ ପ୍ରଥମେ ଭାରି କେତୁଟା ! ମନ୍ଦମନ୍ଦ କିଣିବା ପାଇଁ ପଇସା ତ ନ ଥାଏ ମୋ ପାଖରେ—ଗୋଟାଏ ବୁଦ୍ଧି ପାଇଲି । ଲୁଚେଇ ଛପେଇ ମନ୍ଦମନ୍ଦଙ୍କ ଦାମୀଙ୍କ ଛାତିଚୁଡ଼, କୋଟକୋଟ ବାଦର କଲି କାଣ୍ଡି ମନ୍ଦମ, ତା ରଖିଲି ନେଇ ଗୋଟିଏ ଖାଲି ମାଛଟିରେ । ତା' ଉପରେ ଠାକିଲି, ପଟଟେ ସାମନା ବଳିକ ସୀସାଟେବଲରୁ ଯେ କି ଆଣି ପାରିଲି, ସେଟିକୁ,

କେବଳ । ପ୍ରଭାତରେ ବଳକା କଣ ଲଗାଇଲି ମୁଁ ଛକିଣରେ । ହେଲା, ଅଧଃ ମୁଣ୍ଡୀ ବର୍ତ୍ତିକିଏ ଉଅଣ ହୋଇଗଲା—ଝିଙ୍କି ତାକୁ ଚୁଲ୍ଲୀ ଉପରେ ।

ଏଇ 'ଉବ' ଆଲୁଅରେ ଯେତେବେଳେ ଓଲଟାଇବାକୁ ଆରମ୍ଭ କଲି ବିଶାଳକାୟ ବହିଗୁଡ଼ାକରୁ ଗୋଟାଏ ଦଇଟା ପୃଷ୍ଠା, ଦେଖିଲି ଯେତେବେଳେ ଶ୍ଳେଟ ନାଲିଆ ଜିଭଟି ଉବ ଶିଖାରେ ଲହ ଲହ ହୋଇ ନାଚୁଛି, ଡରହୁଚ ମୋତେ ନଭେସିବ ବୋଲି । ବଳକାଟି ପଶି ପଶିଗଲା ମହମ ଭିତରକୁ ଅଉ ଆଖି ଧୁଙ୍ଗ ହୋଇ ଆସିଲା । ଖୁନ୍ଦୁଖୁଣ୍ଟ ହେଲ ଧୁଆଁରେ । କିନ୍ତୁ ଏଇ ଅସୁବିଧାରେ ବି ପଢ଼ିବାରେ ଲାଗିଲି ଏଣିକି । ଏ ଅସୁବିଧା ତ କହାଉ ତୁଚ୍ଛ ଥାଏ, ମୋର ସେଇ ଆନନ୍ଦ ଟିକକ ପାଖରେ, ଯେଉଁ ଆନନ୍ଦ ପାଇଲି ମୁଁ ଛବିଗୁଡ଼ିକୁ ଦେଖି ଆଉ ସେଇ ଛବିତଳେ ଲେଖା କେତୋଟି ମାତ୍ର ଧାଡ଼ି ପଢ଼ି ।

ଦେଳକୁ ଦେଳ ବିସ୍ମୃତରୁ ବିସ୍ମୃତତର ହୋଇ ଆସିଲା ମୋ ସାମନାରେ ଦୃଶ୍ୟପଟ ବିସ୍ତର ! ବିଶ୍ୱ ଯେଉଁ ଧାରେଣାଗୁଡ଼ିକ ଅନୁଚ୍ଛେଦିତ ହେଲା, କେତେ କେତେ ନୃତ୍ୟମୟୀ ନଗରର କଲ୍ପନାରେ ଉତ୍ତୁଙ୍ଗ ଗିରିମାଳାରେ, ଆଉ ସେ କି କମନୀୟ ତଟରେଖାରେ ସମୁଦ୍ରର ! ଦିଗ୍‌ଦିଗନ୍ତବ୍ୟାପୀ ହୋଇ ଉଠିଲା ଜୀବନ ଅତି ଆଶ୍ଚର୍ଯ୍ୟଜନକ ଭାବରେ । ଯେତିକି ଯେତିକି ଉପଲବ୍ଧିରେ ଆସିଲା ମୋର ବିପୁଳ ଏଇ ଧରଣୀ ଏପରି ନଟଘମୟୀ, ଏପରି ଜନକଣ୍ଠ ପୁଣି ଜନସମାଜର ଅଗ୍ରର ବିସ୍ତରରେ ଯୁଗ ଯୁଗରେ ବିଚିତ୍ର । ଏପରି—ସେତିକି ସେତିକି ଅଦ୍ଭୁତ ମନୋଜ୍ଞ, ଅଦ୍ଭୁତ ରମଣୀୟ ମନେହେଲା ସେଇ, ସେଇ ଧରଣୀ ! ଭଲଗାର ସେ କି ବିସ୍ତୃତିର ଅପର ପାର୍ଶ୍ୱର ସୁଦୂର ଚକ୍ରବାଳକୁ ଅନାଇଦେଲା ମାତ୍ରେ ଅନୁଭବ କଲି କେମିତି—ନା, ନୁହେଁ, ଶୂନ୍ୟ ନୁହେଁ, ଶୂନ୍ୟ ନୁହେଁ ତ ଏଇ ବିଶାଳ ବିସ୍ତୃତି, ଏଇ ଦିଗ୍‌ବଳୟବ୍ୟାପୀ ସ୍ଥଳ, ଶୂନ୍ୟଠାରୁ ଅଧିକ କିଛିର ପ୍ରତୀକ ଏ, ଶୂନ୍ୟରୁ ବଳି ଅଧିକ କିଛି ପ୍ରତିଧ୍ୱନି କରୁଛି ଯେପରି, ଆଗରୁ ଘାଟବଜାରର ପଶ୍ଚାତଦେଶର ଏଇ ବିଶାଳ ବିସ୍ତୃତି ଉପରେ ଦୃଷ୍ଟି ପକାଉଥାଏ ଯେତେବେଳେ କେତେଥର କେମିତି ଗୋଟାଏ ହତାଶିଆ ଉଦାସିଆ ଭାବରେ ଦବି ଦବି ଯାଇଥାଏ ମନଟା ମୋର ! ଲାଗିଥାଏ ଭୂମି ଉପରେ ଚିତ୍‌ପଟାଙ୍ଗ ହୋଇ ପଡ଼ିରହିଛି ପ୍ରାନ୍ତରଟା, ଠାଏ ଠାଏ ଘନକୃଷ୍ଣ ଶ୍ଳେଟ ଶ୍ଳେଟ ନଇଗୁଡ଼ିକ ଏକ ଆକାଶିଆ ଦୃଶ୍ୟରେ ବୈଶିଷ୍ଟ୍ୟ ଆଣୁଥାଏ, ଉପଶମ କରୁଥାଏ ବିରକ୍ତିକୁ । ଏ ବିସ୍ମୟରେ ଯାହା ଦୂରରେ ବହୁ ଦୂରରେ ପ୍ରାନ୍ତରଟାର ଉଚ୍ଚାବଚ ଦନ୍ତୁରିତ ଅରଣ୍ୟର ଧାର ଉପରେ ଆରୂଢ଼ ଧୂମଳ ମେଘ ଛନ୍ନ ଆକାଶ କି ନିର୍ମମ ନିଷ୍ଠୁର ଆଃ ସେ କି ରିକ୍ତତାର ଶୂନ୍ୟତାର ନିର୍ଜନ ନିଃସଙ୍ଗତାର ଭୂମି ! ହୃଦୟରେ ମୋର ପୁଣି ସେ କି ଶୂନ୍ୟତା, ଗଭୀର ରିକ୍ତତା—ଏକ ନଗର ମଧୁର ସ୍ୱପ୍ନଙ୍କାରେ କେବେକେବେ ଯାହା ବିଘ୍ନିତ, ବିଚଳିତ ହେଉଥାଏ ମାତ୍ର । ଆଶା ଅଭିଳାଷ ସବୁ

ଲୋପ ଯାଉଥାଏ ଉଷ୍ମନ ହୋଇ ଯାଉଥାଏ କୁଆଡ଼େ ! କିଛୁ ବୋଲି କିଛି ନ ଥାଏ କେଉଁଠି ସମୂଳମଣି ଯାହାକୁ ଖବରନାରେ ବୁଝିବ ହକଯିବ ମୁଦ୍ରନ୍ତ୍ରେ, ଆଖି-ମୋଡ଼ନ୍ତ ବୁଜ ରଖିବା ପାଇଁ ଅଧୀର ହେଉଥାଏ ହୃଦୟ । ତଳେ ହେଲେ ଆଶୀର ଚିହ୍ନ ନ ଥାଏ, ସ୍ପର୍ଶ ନ ଥାଏ ଏଇ ଶକ୍ତାଚାର ନିଃସଙ୍ଗତ ର ଘନଘୋର ହତାଶାର ପ୍ରାନ୍ତରରେ ସମସ୍ତ କାମନା ବାସନାର ଅନ୍ତରଣା ନଗିଡ଼ି ହୋଇ ବୋହିଯାଇ ଶୋଷିହୋଇ ଶୁଖିଯାଉଥାଏ, ନଷ୍ଟଯାଉଥାଏ ବା ।

ଶବଗୁଡ଼ିକୁ ବୁଝେଇବା ପାଇଁ ଲେଖାସବୁ ସରଳ ଭାଷାରେ କହି ଦେଉଥାଏ କେତେ କେତେ ରାଜ୍ୟ, କେତେ କେତେ ଲୋକଙ୍କ କଥା—ମେଲି ଦେଉଥାଏ ଅତୀତର ଓ ବର୍ତ୍ତମାନର ବିଚିତ୍ର କେତେ ଘଟଣାର କାହାଣୀ—ସେଥିରୁ ଅଧିକାଂଶ ବୁଝିପାରୁ ନ ଥାଏ ମୁଁ । ଏଥିରେ କିଏ ବା ଚଳନ୍ତା ନାହିଁ ! ଚମତ୍କାର ଲାଗୁଥାଏ ମତେ । କେବେକେବେ ମୋ ମୁଣ୍ଡରେ ଫେଣ୍ଡ ଫୋଡ଼ ହୋଇ ଯାଉଥାଏ ଅଦ୍ଭୁତ ଅଦ୍ଭୁତ ଶବ୍ଦ—ଏଇ ଯେମିତି ଅଧିବିଦ୍ୟା "ମେଟାଫିଜିକ୍ସ" କଲ୍‌ଆଇଡ଼ିୟମ୍, ବୃଷ୍ଟି । ସେଗୁଡ଼ାକ ବ୍ୟତିବ୍ୟସ୍ତ କରିପକାଉଥାଏ ମତେ, ଭାବୁଥାଏ ଆଃ ମରଯ ଆମ୍ଭା କି ମଣିଷ ! ଏମିତିଭାବରେ ବଡ଼ି ବ୍ୟାପି ଯାଉଥାଏ ମନରେ, ସେଥିରେ ଆଉ ଯାହା ଯେତେ ଚିନ୍ତା ଯୋଡ଼େଇ ହୋଇ ପଡ଼ୁଥାଏ । ଲାଗୁଥାଏ ମତେ, ଶବ୍ଦଗୁଡ଼ାକର ଅର୍ଥ ସବୁ ବାହାର କରିବାରେ ବ୍ୟର୍ଥ ହୋଇଯିବ ଆଉ କେବେହେଲେ ବୁଝିପାରିବି ନାହିଁ କୌଣସି ବୋଲି କୌଣସି କଥା ସତେ ଯେମିତି ସବୁ ରହସ୍ୟର ଦ୍ୱାରଦେଶରେ ଦେହଳି ପାଖରେ ଛିଡ଼ା ହୋଇଥାନ୍ତି ସେମାନେ, ସତର୍କ ଜଗୁଆଳପରି ସେହି ସେ ଶବ୍ଦ-ଗୁଡ଼ାକ ଅନେକ ସମୟରେ ଗୋଟାକୁ ଗୋଟା ପ୍ରସ୍ତପୂର୍ଣ ବାକ୍ୟଟିମାନ ମୂକ ଆ ମୂକ ଆ ଲୁହା ଟୁକୁରାପରି ଦେହରେ ଆଉ କିଛି ଭାବିବାକୁ ନ ଦେଇ ଲାଗି ରହୁଥାଏ ସ୍ମୃତିରେ ମୋର !

ମନେପଡ଼ୁଛି, ପଢ଼ିଥିଲି ଅଜଣା ଅଜଣା ଅବୁଝା ଅର୍ଥର କେତେଟି ଧାଡ଼ି—

ଚାଲେ ଅଶ୍ୱାରୋହୀ 'ଅଫିଲ' ଚାଲେ ମରୁଭୂମିରେ—
ଲୁହାର ପୋଷାକ ପରେ ଚାଲେ ସେ ହୁନ୍‌କୁଳର ସରଦାର
କବଚପରି ତମୋମୟ ମୌନ ଆଉ ନୀରବ ଓ ଗମ୍ଭୀର ·

ଆଉ ପଛେ ପଛେ ତାର ଘନଘୋର କୃଷ୍ଣକାୟ ମେଘଭଳି ଅଶ୍ୱାରୋହୀ ଚାଲନ୍ତି ପୁଣି ଦଳକୁ ଦଳ ଯୋଦ୍ଧା ଗର୍ଜନ କରି ।

କାହିଁ ସେଇ ରୋମ, କାହିଁ ସେଇ ରୋମ, ପରାକ୍ରମୀ ରୋମ ?

ଜାଣିଥାଏ ମୁଁ ରୋମ ଗୋଟାଏ ନଗର, କିନ୍ତୁ ହୁନ କିଏ ସେମାନେ, କିଏ ?... ଏହାହିଁ ଯେ ଜାଣିବାକୁ ହେବ ବାହାର କରିବାକୁ ହେବ ଯେମିତି ହେଉ—

ସୂତ୍ରଧାର ମୂର୍ତ୍ତିଟିଏ ଜଣକୁ ଆଣି ପହଞ୍ଚେଇ ଦେଲେ ମୋ ପାଖରେ ପୁରସ୍କାରଟିଏ, ଭଳି ପଚାରିଲି ମାଲିକଙ୍କୁ ।

"ହୁନ ?" ବିସ୍ମୟରେ ଓଲଟି ପଚାରିଲେ ଯେମିତି !

"ସଇତାନ୍, ଜାଣେ କିଏ ସେମାନେ ହେଲେ ହୋଇଥିବେ ଭିକାରି କେଉଁଟା ।"

ନାପସନ୍ଦିଆ ଅଗ୍ରାହ୍ୟଭାବରେ ମୁଣ୍ଡ ହଲେଇଲେ—

"ତୋ ମଥ ଟା ଯେତେ ଯେଉଁଠି ଅସନାମସନା, ଅଳିଆ ଆବର୍ଜନାରେ ଭର୍ତ୍ତି ଯେଣ-ଭ ଖରାପ ଭାରି ଖରାପ, ବୁଝିଲୁ ।"

ଖରାପ ହେଉ, ଭଲ ହେଉ, ମତେ ଜାଣିବାକୁ ହେବ ଯେମିତି ହେଉ ।

ଧରନେଲ ସୈନ୍ୟଫୌଜର ପୁରୋହିତ ସୋଲୋଭଓଭ୍ ଜାଣିଥିବ ନିଶ୍ଚୟ 'ହୁନ'ସବୁ କିଏ । ତାଙ୍କୁ ଅଗଣାରେ ପାଇ ପଚାରିଲି ଟିକିଏ ଉଚ୍ଛ୍ୱାସଭରେ ।

ଶେତାଳିଆ ଜରଜରିଆ ଦେହର ଲୋକଟା, ସବୁବେଳେ ବେଗଣା, କୁଞ୍ଚୁକୁଞ୍ଚା ଚର୍ଚ୍ଚାଚନ୍ଦା, ନାଲି ନାଲି ଆଖି ଭୁରୁଫୁରୁ ହେଲେ ଥାଅନ୍ତି ! ଭଲ ଅଣ୍ଟି ଉପରେ—ବକଟେନାକୁ ହଳଦିଆ ଦାଢ଼ି ।

"କାହିଁକି ? ତୋର କଣ ଦରକାର ? ତୁ କାହିଁକି ଆତୁର !" କଳା କର୍କଶ ଠେଙ୍ଗାଟା, ଯେଥିରେ ଅଗଣା ଧୂଳିଗୁଡ଼ାକୁ କେଞ୍ଚି କେଞ୍ଚି ଓଲଟି ଜାଣିବାକୁ ଖୁଣ୍ଟିଲି ସୋଲୋଭଓଭ୍ ।

ଲେଫଟନାଣ୍ଟ ନେଷ୍ଟେରଭଙ୍କୁ ହାବୁଡ଼ି ଯେତେବେଳେ ପଚାରିଲି ପୁଣି ସେଇ ପ୍ରଶ୍ନଟା, ରୁକ୍ଷାଟାକୁ କୋପ ଦେଖାଇ ଉତ୍ତର ଦେଲେ ସେ :

"କ ଅ-ଜଅ-ଅଣ ?"

ଠିକ୍ କଲି, 'ଯାଉଛି ଯିବ ଔଷଧ ଦୋକାନୀ ପାଖକୁ, ତା' ଦୋକାନକୁ, ପଚାରିବି ତାକୁ, ସେଇ ସେତୁ ସେ ହାବଭାବ ଭଲ ଦୋକାନୀକୁ ବେଶ ବୁଦ୍ଧିଦୀପ୍ତ ମୁହଁଟି ତାର, କେଡ଼େ ବଡ଼ ନାକଟା ସେଥିରେ—ଚମକୁ ଥାଏ ସୁନାଫ୍ରେମର ଚଷମା ।

"ହୁନ-ଗୁଡ଼ାକ ?" ଆରମ୍ଭ କଲା ଔଷଧ ଦୋକାନୀ ପାଭେଲ୍ ଗୋଲଡ-ବର୍ଗ "ହୁନଗୁଡ଼ାକ ଯାଯାବର ଜରଧି ଜଙ୍କ ପରି, ଆଉ ନାହିଁ ସେମାନଙ୍କର ଅସ୍ତିତ୍ୱ ନାହିଁ, ଗଲେଣି ମୂଳପୋଛ ହୋଇଗଲେଣି ସେମାନେ ।"

ଯେତକ ନୈରାଶ୍ୟ ଆସିଲା, ସେତକ ବିରକ୍ତି ସେତକ କ୍ରୋଧ ଆସିଲା ମନରେ—ହୁନଗୁଡ଼ାକ ମୂଳପୋଛ ହୋଇଯାଇଛନ୍ତି ବୋଲି ନୁହେଁ, ଯେଉଁ କଥାର ଅର୍ଥଟା ମତେ ଅଥେଇ ବଥେଇ କରି ଏତେ ଭୋଗେଇଲା ସେଥିକୁ ଜଣାପଡ଼ିଲା ସେଇଟା ଏତେ ସରଳିଆ, ଅଥଚ ମୋ ପାଇଁ ତାର ଏତେ ଟିକିଏ କିଛି ତାତ୍ପର୍ଯ୍ୟ ଥିଲା ନାହିଁ ବୋଲି ଆଦୌ ।

ବ୍ରୁନଗୁଡ଼ାଙ୍କ ପ୍ରତି କଲ୍ଲୁ ଖର କୃତଜ୍ଞ ହୋଇପଡ଼ିଲି, ତାଙ୍କ ସମ୍ପର୍କରେ ଯେଉଁ ଅଭିଜ୍ଞତାଟା ହେଲା, ସେଥିରେ ଆଉ ଶବ୍ଦଗୁଡ଼ାକ ଏଣିକି ମତେ ହଇରାଣିଆ କରି ପାରଲେ ନାହିଁ, ଅଟିଲଙ୍କୁ ଧନ୍ୟବାଦ, ସେ ନ ଥିଲେ ମୁଁ କଣ ମିଶି ପାଉଥାନ୍ତି ଚମ୍ପାପତରେ ହୋଇପାରଥାନ୍ତି ଔଷଧଦୋକାନୀ ଗୋଲଡ଼ବର୍ଗ ସାଥିରେ ?

ଏଇ ଲୋକଟି ଜାଣିଥାଏ, ଭାବିନେଲି ମୁଁ—ସବୁ ପଣ୍ଡିତିଆ ପଣ୍ଡିତିଆ ଶବ୍ଦରେ ସରଳ ଅର୍ଥ ଆଉ ତା' ଦ୍ୱାରା ମୋଠାରେ ଥାଏ ସବୁ ନିଗୂଢ଼ କଥାର ସବୁ ରହସ୍ୟର ସୂତ୍ରକାଠି ! ଯୋଉଁଏ ଆଙ୍ଗୁଠିରେ ଆଗ 'ସଳାଡ଼' ଠିକ୍ କରିଦିଏ ସେ ଚଷମାକୁ ନାକ ଉପରେ—ମୋଟା ମୋଟା ବହଳିଆ କାଚ ଦ୍ୱାଲକ ଭିତରୁ ମୋ ଆଖିକୁ ଅନାଇ ରହେ ଦୃଢ଼ ଅବଚଳିତ ଭାବରେ ଆଉ କହିବାକୁ ଆରମ୍ଭ କରେ ସତେ ଯେମିତି ମୋ ମୁଣ୍ଡରେ ଠୁକ୍ ଠୁକ୍ ବାଡ଼େଇ ଗଳାଇବାକୁ ଲାଗେ ଗୋଟାକୁ ଗୋଟା କାଠଖଣ୍ଡା କି ଲୁହା କଣ୍ଟା—

"ଗଛର ପତ୍ର ଭଳି,—ବୁଝିଲ ଟିକି ଦୋସ୍ତଟା ମୋର ବୁଝିଲୁ, ଶବ୍ଦ ସବୁ—ପତ୍ରଗୁଡ଼ାକ କାହିଁକି ଯେମିତି ଆକାର ପ୍ରକାରରେ ଏତକ ଜାଣିବାକୁ ହେଲେ, ଆଗ ଜାଣିବାକୁ ହେବ, ଗଛ କହ୍ନେ, ବଢ଼େ କେମିତି ! ପଢ଼ିବାକୁ ହେବ, ପଢ଼ିବାକୁ ହେବ ଖୁବ୍—ବହିଗୁଡ଼ାକ ଗୋଟିଏ ଗୋଟିଏ ସୁନ୍ଦର ବଗିଚା—ବୁଝିଲୁ ଦୋସ୍ତ,—ସେଥିରେ ସବୁ କଣ ବା ନ ପାଇବୁ ତୁ ? ପାଇବୁ ଯାହା ସବୁ ଆମୋଦ ଦିଏ, ଖୁସି କରାଏ, ଆଉ ଯାହା ପୁଣି ଉପକାରରେ ଅସେ—ମଙ୍ଗଳ କରାଏ ।"

ଅନେକ ସମୟରେ ମତେ ଦୌଡ଼ିବାକୁ ପଡ଼ୁଥାଏ ଔଷଧ ଦୋକାନକୁ—ବଡ଼ ବଡ଼ ବୟସ୍କ ଲୋକ କେତୁଟାଙ୍କର ଗୁନ୍ଥିପୋଡ଼ା ରୋଗ ତାଙ୍କ ସକାଶେ ସୋଡ଼ା ଆଉ ମ୍ୟାଗ୍ନେସିଆ ଆଣିବା ପାଇଁ—ପୁଣି ଧାଇଁବାକୁ ହେଉଥାଏ ଅନେକ ଥର, ଛୁଆପିଲଙ୍କ ସକାଶେ ଟୁଣ୍ଡୁଟୁଣ୍ଡୁ କଥା ଓ ଚେରମୂଳ ଔଷଧ, ଗଛମାଳିର ତେଲ ପାଇଁ । ଔଷଧ ଦୋକାନୀଟିର ସିଧାସଳଖ ସଂକ୍ଷିପ୍ତ ଶିକ୍ଷା ଦେଲାଭଳି ମତେ ପଦେ ଦି ପଦ କଥା, ମନରେ ମୋର ପ୍ରେରଣା ଦେଲା ବହିଗୁଡ଼ିକ ପ୍ରତି, ମୋର ଦୃଷ୍ଟିକୁ ଆହୁରି ଗଭୀର ଗୁରୁତ୍ୱପୂର୍ଣ୍ଣ କରିବା ପାଇଁ—ଅନ୍ତତଃ ପକ୍ଷେ ମୂଲାଙ୍କ ପାଇଁ ଖେଳନା ଭଳି ମୋ ଅଗୋଚରରେ ତାହା ଅପରିହାର୍ଯ୍ୟ ନ ହେବାଯାଏ ମୋ ପାଖରେ ।

ସେସବୁ—ସେହି ବହି ସବୁ ଦେଖାଇଦେଲେ ମତେ ନୂତନ ଗୋଟିଏ ସ୍ୱତନ୍ତ୍ର ଗୋଟିଏ ଜୀବନ—ମହାନ ଅଭିଳାଷର ଆବେଗରେ ଭରପୂର ଜୀବନ — ଯାହା ଟାଣିନିଏ ଲୋକଙ୍କୁ ଘୋର ଅପରାଧର ବା ବୀରତ୍ୱର ପଥକୁ ! ଦେଖିଲି, ଦେଖିଲି, ଭଲରୂପେ ଲକ୍ଷ୍ୟ କରି ଦେଖିଲି—ମୋର ପାଖଆଖର ଲୋକଗୁଡ଼ାକ ଥିଲେ ଯେମିତି ଅପରାଧଟିଏ କରିବାକୁ ଅପାରଗ ସେମିତି ବୀରତ୍ୱ ଆଡ଼କୁ ମୁହାଁଇବା

ପାଇଁ ଅକ୍ଷମ । ଏକ ବେଳକେ ଅଲଗା ହୋଇ, ଅସଂପୃକ୍ତ ହୋଇ ରହିଥିଲେ ସେମାନେ ବନ୍ଦୀଗୃହଗୁଡ଼ିକରେ ଯାହା ବଞ୍ଚିତ ହେଉଥିଲା, ସେହି ସବୁ ବିଷୟରୁ—ପ୍ରତ୍ୟେକଟିରୁ, କଣ ବା ଚିତ୍ତାକର୍ଷକ ଜିନିଷ, ଚମକପ୍ରଦ ଆବିଷ୍କାର କରିଯାଇ ପାରିଥାନ୍ତା ସେମାନଙ୍କ ଜୀବନରୁ, ଗୋଟିଏ କଥା ବୁଝିଥିଲି ମୁଁ କେବେହେଲେ ବୁଝିବି ନାହିଁ, କହେଁ ନା ମୁଁ ସେମାନେ ଯେମିତି ରହିଛନ୍ତି, ସେମିତି ଠିକ ରହିବା ପାଇଁ ଜୀବନ ଧରି ।

ବନ୍ଦୀଗୃହକ ଭିତରେ ଚଳପଥର ତଳେ ତଳେ ଯେଉଁ ପାଟେଇକ ଥାଏ, ତାକୁଇ ପଢ଼ି ଜାଣିପାରିଲି, ପ୍ରାଗ, ଲଣ୍ଡନ ଆଉ ପ୍ୟାରିସ—ସେହି ବଡ଼ ବଡ଼ ସହରର କେନ୍ଦ୍ରସ୍ଥଳୀରେ କୁଢ଼ କୁଢ଼ ଅଳିଆ, ଆବର୍ଜନାରେ ଭର୍ତ୍ତି ନାଳନର୍ଦ୍ଦମା, ବନ୍ଦ ନାହିଁ କି ମଇଳାପାଣିର ଧାର ଛୁଟୁନାହିଁ ସରୁ ସରୁ ନାଳୀରେ କେଉଁଠି—ସଳଖ ସଳଖ ଚଉଡ଼ା ଚଉଡ଼ା ରାସ୍ତା ସବୁ ନଳି କଢ଼ରେ—କେମିତି ସବୁ ଅଲଗା ଅଲଗା ଧରଣର କୋଠାବାଡ଼ି ଅଉ ଗୀର୍ଜା ! ଛଅମାସିଆ ଶୀତ ଋତୁରେ ଲୋକ-ଗୁଡ଼ାକ କବୁଳ କବୁଳ ଘର ଭିତରେ ନିଜକୁ ତାଲି ଠୁଙ୍କି ବସୁ ନାହାନ୍ତି କି ସେଇ ବସନ୍ତ ଋତୁର ଲେଣ୍ଟପର୍ବ ଭଳି ପର୍ବ ସମୟରେ ଖାଉ ନାହାନ୍ତି ଖାଲି ଆମ ଏଠିକା ଭଳି ଲୁଣଦିଆ ବନ୍ଧାକୋବି, ଲୁଣଦିଆ ଚିଙ୍ଗୁଡ଼ି, ଯଥା ଅଣ୍ଡା ଆଉ ବୋଲଅନ୍ନ, ଗୋଳେଇ ମିଶେଇ ନେଶି ତେଲରେ—। ଇଷ୍ଟର ପର୍ବପୂର୍ବରୁ ଲେଣ୍ଟ ପର୍ବ ଉପବାସର ସମସ୍ତଙ୍କ ଯୀଶୁଖ୍ରୀଷ୍ଟଙ୍କ ଉପବାସର ସ୍ମୃତିରେ କହି ପଢ଼ିବାକୁ ବାରଣ—'ପିକ୍ଚର ଶଲ୍ୟ' ପତ୍ରିକା ସବୁ କାଢ଼ି ନିଆଗଲା ମୋଠୁ । ସେ କି ଫାଙ୍କା ଫାଙ୍କା ଶୂନ୍ୟ ଜୀବନଟା—ସ୍ୱାଦହୀନ, ଗନ୍ଧହୀନ, ନିରସ ଜୀବନ ଲେଣ୍ଟ ପର୍ବ ସମୟର । ବାଧ ହେଲି, ତାର ଅଂଶବିଶେଷ ହେବା ପାଇଁ ବାଧ ହେଲି, ଆଉ ଏବେ ଦେଖିଲି ଯେତେବେଳେ ଏଭଳି ଏକ ପରିସ୍ଥିତିରେ ମୁଁ ଯେତେବେଳେ ଏଇ ଜୀବନକୁ ତୁଳନା କରି ଦେଖିପାରିବି ବନ୍ଦୀରେ ବଞ୍ଚିତ ଜୀବନ ସାଥିରେ—ସେତେବେଳେ ମତେ ଏଇ ଜୀବନଟା ମନେହେଲା ଆହୁରି ଉଦାସ, ଆହୁରି କୁତ୍ସିତ, ଆହୁରି ନୀରସ ! ପଢ଼ାପଢ଼ିର ପ୍ରଭାବରେ କିନ୍ତୁ ବେଳକୁ ବେଳ ଅନୁଭବ କରୁଥାଏ ବେଶି ଦୃଢ଼, ବେଶି ଶକ୍ତିଶାଳୀ ହୋଇ ଉଠୁଛି ମୁଁ । କାହା ଉପରେ ପ୍ରତିଶୋଧ ନେବା କାମନାରେ ଯେପରି ଆତ୍ମପ୍ରତ୍ୟୟରେ ଗଭୀର ସଙ୍କଳ୍ପରେ କାମ କରିଯାଉଥାଏ—କାରଣ, ଆଗରେ ଥାଏ ମୋର ଗୋଟାଏ ଲକ୍ଷ୍ୟ, ଗୋଟାଏ ଉଦ୍ଦେଶ୍ୟ, ଯେତେ ଶୀଘ୍ର ଶୀଘ୍ର ଶେଷ କରିବି କାମ, ସେତେ ଅଧିକରୁ ଅଧିକ ସମୟ ପାଇବି ପଢ଼ିବା ପାଇଁ । କିନ୍ତୁ ବନ୍ଦୀଗୃହକରୁ ବଂଚିତ ହୋଇ କେମିତି ଅଳସୁଆ ପାଲଟିଗଲି, ଅବସାଦରେ ବୁଡ଼ିଯାଇ ଉଦାସ ହୋଇପଡ଼ିଲି । ଆଗରୁ କେବେ ଅନୁଭବ କରି ନ ଥିଲି, ବିଷାଦରେ ବୁଡ଼ି ଯାଇ ମନମାରି ଦେଇ ବସି ରହିଲି, ପାସୋରିପଣ ଗ୍ରାସ କରିଦେଲା ଯେମିତି ମତେ, ସବୁ ଭୁଲିଭାଲି ଗଲି ।

ମନେପଡୁଛି—ଏହି ନିଷ୍ଫଳ ତାବଧା ତାବଧା ସମୟରେ ଗୋଟାଏ ଘଟଣା

ଘଟିଲ, ରହସ୍ୟଜନକ ଘଟଣା ! ହନେ ସନ୍ଧ୍ୟାରେ ଯିଏ ଯାହାର ବିଛଣାକୁ ଚାଲି ଯାଇଥାନ୍ତି ଶୋଇବା ପାଇଁ, ହଠାତ୍ ଗୀର୍ଜାର ଘଣ୍ଟା ବାଜିଉଠିଲା ଗମ୍ଭୀର ସ୍ୱରରେ ଟଂ ଟଂ ହୋଇ । ସଙ୍ଗେ ସଙ୍ଗେ ଉଠି ପଡ଼ିଲେ ସମସ୍ତେ ଅଧାଅଧି ଲଙ୍ଗଳା, ଦେହରେ ପୋଷାକ ଥାଏ କି ନାହିଁ, ଧାଇଁଲେ ସବୁ ଟିଙ୍କା ଜେଟ୍ଟିଟା ପାଖକୁ ।

ଏ,

"ଆତଙ୍କ ଘଣ୍ଟି, ସତର୍କ ଘଣ୍ଟି ?" କିଆଁ ଲାଗିଲା ନା କଣ ? ପଚରାପଚରି ହେଲେ ନିଜ ନିଜ ଭିତରେ !

ଶୁଣି ପାରିଲୁ ଅନ୍ୟ ଫ୍ଲାଟଗୁଡ଼ିକରେ ଲୋକେ ଧାଆଁପଡ଼ କଲେ, ଦୁଆର ବାଡେଇଲେ, କବାଟ ଖୋଲିଲେ । କିଏ ଜଣେ ଆଗଣାରେ ଲଗାମ ଲଗାଇ ଘୋଡ଼ାଟାକୁ ଟାଣି ଟାଣି ଧାଇଁଲା, ମୋ ବୟସ୍କା ମାଲିକାଣୀ ପାଟିକରି ଉଠିଲେ ଘେଉଁ ହୋଇଗଲା, ଜବାବ ହୋଇଗଲା ଗୀର୍ଜାରେ, ଜବାବ କିନ୍ତୁ ମାଲିକ ମୋର ଥରି ଥରି ଚୁନ କରେଇ ତାଙ୍କୁ କହି ଲାଗିଲେ—

"ଚୁପ୍ ଚୁପ୍, ମାଆ ! କିଛି ନୁହେଁ, କିଛି ନୁହେଁ, ଯେକୌଣସି ଲୋକ କହିଦେବ, ନୁହେଁ ସତର୍କ ଘଣ୍ଟି ନୁହେଁ, ଏ !"

"ଓଃ, ତା ହେଲେ ବଞ୍ଚିପ ଗଲେ ! ତାଙ୍କର କାଳ ହୋଇଗଲା ନିଶ୍ଚୟ !"

କାନର ଘଡ଼ିଆ ପଟା ଉପରୁ ତଳକୁ ଓହ୍ଲାଇଲା ଭିକଟର ।

"ଜାଣେ, କଣ ହୋଇଛି କଣ ଘଟିବ ଜାଣେ ମୁଁ ।" ପୋଷାକପତ୍ର ଗଳାଇ ଗଳାଇ ଦେହରେ ଭୁଟୁ ଭୁଟୁ ହେଲେ ସେ !

ମାଲିକ ମୋର ପଠାଇଦେଲେ ମତେ, ଛାତ ଉପର ଟୁଙ୍ଗିକୁ, ଦେଖିବା ପାଇଁ ଆକାଶଟା ହାଲୋଲ ଦିଶୁଛି କି ନାହିଁ । ଦୌଡ଼ିଲି ମୁଁ ପାହାଚଗୁଡ଼ାକୁ ଡେଇଁ ଡେଇଁ କା ଗୋଟାଏ ଡାଳି ଝରକା ବାଟେ ଗଳି ଚଢ଼ିଗଲି ଉପରକୁ ଛାତ ଉପରକୁ ! ନା, କେଉଁଠି କିଛି ଆଲୁଅର ଚିହ୍ନ ନ ଥାଏ ଆକାଶରେ । କିନ୍ତୁ ସେଇ ନୀରବ, ବରଫ ହିମାଳ ପବନରେ କମ୍ପାନ୍ୱିତ ସ୍ୱରରେ ବାଜୁଥାଏ ଗୀର୍ଜାର କଣ୍ଡ ଘଣ୍ଟାଟା । ଶୁଭୁଥାଏ, ମଶ୍ ମଶ ହେଉଥାଏ ତୁଷାରଗୁଡ଼ିକ ରାସ୍ତାରେ, ଅଦୃଶିଆ ଲୋକଗୁଡ଼ାଙ୍କର ଦୌଡ଼ିଲା ପାଦତଳରେ କେଁ କାଁ ଶବ୍ଦ ଆସୁଥାଏ 'ସ୍ଲେ' ଗାଡ଼ିରେ ବସି ପଳେଇବାକୁ ଆରମ୍ଭକରି ଦେଇଥାନ୍ତି କେତେକ । ବେଳକୁ ବେଳ ଭୟଙ୍କର ବିପଦର ସଙ୍କେତ ଦେଇ ପ୍ରଖର ସ୍ୱରରେ ବାଜି ଉଠୁଥାଏ ଗୀର୍ଜାରେ ଘଣ୍ଟି, ଫେରିପଡ଼ିଲି ଓହ୍ଲେଇ ଆସିଲି ତଳମହଲକୁ ।

"ନା, କିଆଁ ଫିଆଁ କିଛି ନାହିଁ ।"

"ଧୂତ୍, ଧୂତ୍ !" କହି ଉଠିଲେ ମାଲିକ !

କୋଟ୍, ଟୋପି ପିନ୍ଧି ସାରିଥାନ୍ତି ସେ । କୋଟର କଲରଟାକୁ ଟାଣିଲେ

ଟିକେ, ଆଉ କାବୁଅ ବୁଢ଼୍‌କୋଡ଼ା ଗ୍ୟାଲେସ ହଲକ ଭିତରେ ଗୋଡ଼ ଭଙ୍ଗି କରିବାକୁ ଲଗିଲେ ଅସ୍ଥିର ବିଚଳିତ ଭାବରେ । ଗୋଡ଼ ପଶୁଥାଏ ପଶୁ ନ ଥାଏ ସେଥିରେ ।

"ଯାଅ ମ, ଯାଅ ନା ମ" କାତର ଭାବରେ କହୁଥାଏ ତାଙ୍କ ଭାର୍ଯ୍ୟା, ନିବର୍ତ୍ତାଉଥାଏ ମିନତି କରି ।

"ଚୁପ୍, ଭୁଛା ଅଲଣା କଥାଗୁଡ଼ାକ !"

ଭିତରେ ବି ପିନ୍ଧି ଯାଉଥାଏ, ମଟେଇ ଯାଉଥାଏ—ହ୍ୟାଟ୍ କୋଟ ।

"ଜାଣେ ମୁଁ ଜାଣେ କାଇଁ ଏ—କଣ ଏ !" କହି କହିକା ଉଦ୍ବେଗ ଦିଖାଇବାକୁ ଲଗିଥାଏ ସମସ୍ତଙ୍କୁ ।

ତଇ ଦୁଇଁ ଘଣ୍ଟାକାଳ ପରେ, ମାଇପେଯାକ ହୁକୁମ ଦେଲେ ସତେ ଯାମୋଖର ଉଦେଇବା ପାଇଁ । ଆଉ ସେମାନେ ନିଜେ ନିଜ ଆସ୍ଥାନ ଜମେଇ ବସିଲେ ଝରକା ପାଖରେ, କିନ୍ତୁ ସେଇ ସଙ୍ଗେ ସଙ୍ଗେ କହିଲେ ଚଳେ, ପ୍ରାୟ କେଇଟା ମୁହୂର୍ତ୍ତ ଭିତରେ ଦୁଆର ଘଣ୍ଟି ବଜାଇଲେ, ଚୁମ୍ବସ୍ତପ ଧାଇଁ ଧାଇଁ ଚଢ଼ି ଆସିଲେ ପାହାଚଗୁଡ଼ାକୁ, ବଡ ହଲ କବାଟଙ୍କୁ ଠେଲି ଦେଇ ମେଲେଇ ଦେଇ ବସିଲ କସିଲ ଶୁଖିଲ ଗଳାରେ ଘୋଷଣା କଲେ—

"ହତ୍ୟା କରାଯାଇଚ ହତ୍ୟା କରାଯାଇଚ ଜାର୍‌ଙ୍କୁ !"

"ଏଁ, ନା, ନା, ହତ୍ୟା କରାଯାଇନି, ହତ୍ୟା କରାଯାଇନି !" ଚିତ୍କାର କରି ଉଠିଲ ବୁଢ଼ୀ ମାଇପିଟା !

"ହଁ, ହଁ, ହତ୍ୟା କରାଯାଇଚ—ଶୁଣିଲି ମୁଁ ଗୋଟିଏ ଅଫିସରଠୁ— କହୁଥିଲ ସେ କହିଲେ, ଆଉ କଣ ହେବ, କଣ ହେବ—କଣ ଘଟିବଟି ଏବେ !"

ଭିତରେ ଥିଲ କେଉଁଠି, ପଶି ଆସିଲ ଦ୍ଵାର ଘଣ୍ଟି ବଜାଇ ଯାଇ । ଦେହରୁ ପୋଷାକପତ୍ର କାଢ଼ୁ କାଢ଼ୁ ବିରକ୍ତିଆ ଖଟ୍‌ଖଟିଆ ସ୍ଵରରେ କହିଲ—

"ମୁଁ ଭାବିଲି କଣ ନା ଯୁଦ୍ଧ !"

ଏହାପରେ ସମସ୍ତେ ବସିଲେ ଚୁମ୍ବସ୍ତପ ସୁଦ୍ଧା ପିଇ ଡରି ଡରକା ରହି ଚାହି ଭୁନ ଭୁନ କଥାବର୍ତ୍ତା ହେଲା ଚପାଚପା ସାବଧାନିଆ ସ୍ଵରରେ, ବାହାରେ, ଘର ବାହାରେ ସବୁ ଅତି ନିସ୍ତବ୍ଧ ହୋଇଯାଇଥାଏ, କେଉ ହୋଇଯାଇଥାଏ, ଘନ ଘନ ଘଣ୍ଟାର ଶବ୍ଦ । ଦୁଇ ଦିନ କାଳ କେବେ ଫୁସୁ ଫୁସୁ ହୋଇ କଥାବର୍ତ୍ତା ହେଲେ ନିଜ ଭିତରେ । ଛପି ଛପିକା ଯାଆସ କଲେ ସନ୍ତର୍ପଣରେ । ବନ୍ଧୁ ବାନ୍ଧବ ଘରକୁ ଗଲେ । ବନ୍ଧୁ ସଂଖ୍ୟୁଲଙ୍କେ ନିଜ ନିଜ ଘରେ ଆଉ ଟିକିନିଖି କରି ଗାଇହେଲେ କହିହେଲେ ସବୁ ଘଟଣା । କଣ ଯେ ଏମିତି ଘଟିଯାଇଛୁ । କିଛି ବୁଝି ପାରୁନଥାଏ, ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାଏ ଜାଣିବା ପାଇଁ । କିନ୍ତୁ ମୋ ମାଲିକଗୁଡ଼ାକ ମୋଠୁ ଲୁଚାଇ ରଖିଲେ ଖବର-

କାଗଜକୁ ସବୁ, ଯେତେବେଳେ ପଚାରିଲି ମୁଁ ସିଦୋରଭଜନୁ, ତାରକୁ ସେମାନେ କଏ ସବୁ ମାରିଲେ କ ହିଁନ ? ଥରେକିନ୍ତ ନରମ ସ୍ୱରରେ କହିଲେ ସେ :

"ମନାରେ, ଏ ବୟସ୍ୱରେ ପାହି ଫିଟେଇବାକୁ କଥାନାଡ଼ିା ହେବାକୁ ମନା !"

କେତେ ଚଞ୍ଚଳ ସତେ ପାସୋର ହୋଇଗଲି ସମସ୍ତଙ୍କ ମନରୁ ସମୁଦାୟ ଘଟଣା ! ଘୋଡ଼େଇ ହୋଇ ଛପିଗଲା କୁଆଡ଼େ ନନ୍ଦନନ୍ଦନଆ ଜଞ୍ଜାଳ ଭିତରେ । କାଲୁ ଘୁଷ୍ଟୁ ଘୁଷ୍ଟୁ କେଇଟା ଦିନରେ ପୁଣି କେମିତି ଗୋଟାଏ ଅତି ଅପ୍ରୀତିକର ଅବସ୍ଥାରେ ପଡ଼ିଲି, ଅଯୁଝିଆ ଅନୁଭୂତିରେ ଗଢ଼ି କଲି ।

ଦିନେ ରବିବାରରେ ନେଇ ଟାଏ ମାଳିକର ବଂହୁଣଟାପାକ ସମସ୍ତେ ବଡ଼ ମନାଙ୍କୁ ଗୀର୍ଜାକୁ ବାହାରି ଯାଇଥାନ୍ତି ଖ୍ରୀଷ୍ଟଙ୍କ ନୈଶଭୋଜ ଉଜ୍ଞାଁ ଉତ୍ସବ ପାଳନରେ ପହିଲ ପ୍ରାର୍ଥନାରେ ବସିବା ପାଇଁ । ଆଉ ମୁଁ ସାମୋଭାରଟାକୁ ତତେଇବା ପାଇଁ ବସାଇ ଦେଇ ଲଗିଯାଇଥାଏ ଘରଦ୍ୱାର୍ ଝଲେଇ ସଫା କରିବାରେ । କେତେବେଳେ କେଜାଣି ଟିକି ଛୁଆଟିଏ-ଯାଇ ନ ଥାଏ ଗିର୍ଜା ଗୀର୍ଜାକୁ ରୋଷଘର ଭିତରକୁ ପଶିଆସି ଖୋଲିଦେଲା ସାମୋଭାର ନଳୀ ମୁହଁ ଟ୍ୟାପଟାକୁ ଆଉ ତାକୁ ନେଇ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଟେବୁଲ ତଳେ ବସି ଖେଳିଲା ସେଥିରେ—ସାମୋଭାର ନଳୀରେ ଥାଏ ତତ୍ତ ତତ୍ତ କଳକଳା ଫୋଇଲା । ତାତିଲା ଫୁଟନ୍ତା ପାଣି ବୋହି ଆସିଲା ମାତ୍ରେ ତରଳିଗଲା ଝଲେଇ ଚଳେଇ ଜାଗାସବୁ । ପାଖ ଘରେ ଥାଇ ଶୁଣି ପାରିଲି ଅଦ୍ଭୁତ ସ୍ୱରରେ ଯେମିତି ସେଇଟା, ସାମୋଭାରଟା, ଗଅଁ ଗଅଁ ଗର୍ଜନ କରୁଛି ଘଡ଼ଘଡ଼ ହେଉଛି । ଧାଇଁଗଲି ରୋଷଘର ଭିତରକୁ, ଯାହା ଦେଖିଲି ଭୟରେ ଆତଙ୍କରେ ଛାତି ଥରି ଉଠିଲା, ଆଖି ଝାପସି ହୋଇଗଲା, ବଣ କରିବ, ବୁଦ୍ଧି ବାଟ ଦିଶିଲା ନାହିଁ । ରୋଷଘରଟା ଧୂଆଁରେ ପୂରି କଳାପଡ଼ିଯାଇଥାଏ – ଆଉ ଥରୁଥାଏ ସତେ ଯେମିତି ବାତ ମାରୁଥାଏ ତାକୁ । ଝଲେଇ ଜାଗା ତରଳି ଯିବାରୁ ସାମୋଭାରରୁ ଖସି ପଡ଼ିଲା ପଟା ସେଉଁଥିରେ ଲଗିଥାଏ ଟାଇପଟା ଓହଳିପଡ଼ି ତଳକୁ ଝୁଲୁଥାଏ, ବିଷଣ୍ଣ ମନରେ ଯେମିତି—ଗୋଟାଏ କରରୁ ଝୁଲିଛି ଯାଉଥାଏ ପୋଡ଼ଣିଟା, ହ୍ୟାଣ୍ଡଲରୁ ଥପ୍ ଥପ୍ ହୋଇ ପଡ଼ୁଥାଏ ତରଳ ଟିଣ, ତଳେ ଦସ୍ତା ! କେମିତି ଏକପ୍ରକାର କୃଷ୍ଣ ନୀଳ ସାମୋଭାରଟା ଦିଶୁଥାଏ ଗୋଟାକଯ କମ ତାଲ ପରି । ଯେତେବେଳେ ଅଜାଡ଼ି ଦେଲି ଥଣ୍ଡା ପାଣି ତା' ଉପରେ ଶେଁ ଶେଁ ହୋଇ ଦୁଃଖରେ ଗଡ଼ି ଲେଟିଗଲା ଚଟାଣଟାରେ !

ଠିକ୍ ସେତିକବେଳେ ଟିଙ୍ଗ୍ ଟିଙ୍ଗ୍ ବାଜିଉଠିଲା ଦ୍ୱାରମୁହଁ ଘଣ୍ଟି । ଦ୍ୱାର ଖୋଲି ଦେଖେଁ ତ ବୁଢ଼ା ହୋଇଚ ବୁଢ଼ୀ ! ଦେଖୁ ନ ଦେଖୁ ପଚାରିଦେଲା, 'ସାମୋଭାରଟା ପୋଡ଼ିଗଲା କରେ ?"

"ହଁ" ଉତ୍ତର ଦେଲି ଗୋଟିଏ ବୋଲି ଶବ୍ଦରେ ସତ ଏ ।

ଉତ୍ତରେର ଲଗରେ, ସେ ଏ ଉତ୍ତରଟା ବାହାରି ଆସିଲା ମନରୁ । ସେଇଟା ଶୁଣି ହେଲା ଅଳ୍ପ କଣବା ଦଗରେ ନହାତ ଗୋଟାଏ ଅପଦେଷ୍ଟାରେ । ଆଉ ସେଇ ଅନୁସାରେ ସେଇ ଅନୁପାତରେ ବଢ଼ିଗଲା ମୋ ଶାସ୍ତି ମାତ୍ରଟା ! ଉହରେ ମୁଣ୍ଡରେ ବେଶ ପାଇଲି ମୁଁ ବାଧାଗ୍ରପୁତ୍ତା । ସାଥିରେ ନୋଡ୍ରଏ ସବୁ ସବୁ ପାଇନ କାଠ ଫାଳଅରେ ଖୁଣ୍ଟାରେ ପ୍ରହାର, ଚମତ୍କାର ଶୁନରେ ଏ କାମ ତୁଲେଇଲା କ୍ରୁଡ଼ୀ ! ଖୁବ୍ ଯେ ଗୋଟାଏ ଯନ୍ତ୍ରଣା କ ପୀଡ଼ା ଦେଲା ଏ କାର୍ଯ୍ୟଟା ତାର, ତା, ନୁହେଁ । କିନ୍ତୁ କେଜାଣି କେତେ ଅସଂଖ୍ୟ ମୁନିଆ ମୁନିଆ କାଠ ଖୁଣ୍ଟା ମୋ ଦେହରେ ଗଞ୍ଜିନିଆ ହୋଇ ଗଳିଯାଇ ଲାଗିରହିଲା ସେଥିରେ । ସନ୍ଧ୍ୟାବେଳକୁ ଫୋଟିଟା ଫୁଲ ଉଠିଲା ଚକଆ ଜଳ । ଆଉ ଚଢ଼ିଆ ଉଦନ ଉପନ୍ଦରେ ମାଲିକ ବାଧ୍ୟ ହେଲେ ମୋତେ ହସପିଟାଲକୁ ନେବା ପାଇଁ ।

ନବଜିଆ ସ୍ୱରରେ ତେଙ୍ଗା ଆଉ ପତଳା ଡାକ୍ତର ମୋ ଦେହମୁଣ୍ଡ ପରୀକ୍ଷା କଣସାଙ୍ଗ କହିଲେ ଧୀର ଗମ୍ଭୀର ସ୍ୱରରେ :

"ଯାଏଁ, ସରକାରୀ ଉକଗ ସାକ୍ଷୀ ପ୍ରମାଣପତ୍ର ପ୍ରସ୍ତୁତ କରେ ଆଗ ନିଶ୍ଚିତ ଭାବରେ ।"

ଲଜ୍ଜିତ ହୋଇ ଲାଲ ପଡ଼ିଗଲେ ମାଲିକର ମୁହଁ । ପାଦ ଦୁଇଟା ଗୋଟିକ ପରେ ଆରଟିକୁ ଉଠେଇ ପକେଇ ପଛେଇ ଠିକ୍ ରଖିବାରେ ଲାଗିଲେ, ମମ ମମ ହୋଇ ଡାକ୍ତରଙ୍କୁ କଣ କହିବାକୁ ଚେଷ୍ଟା କଲେ ସେ । କିନ୍ତୁ ଡାକ୍ତର ସିଧା ସଳଖ ଚାହିଁ ରହିଲେ ତାଙ୍କୁ—ଚାହିଁ ରହିଲେ ଏକଦୃଷ୍ଟିରେ—ଆଉ ଉତ୍ତର ଦେଲେ ଟୋକନ ।

"ନା ପାଶରେ ନାହିଁ, ମୋର ଅଧିକାର ନାହିଁ, କ୍ଷମତା ନାହିଁ ।"

ତା'ପରେ ମୋ ଆଡ଼କୁ ବୁଲିପଡ଼ି ମୋତେ ଅନେଇ କହିଲେ :

"ଅଭିଯୋଗ ଆଣିବାକୁ ଏତଲା ଦେବ କି ଚାହୁଁଛ ?"

ମୋ ପିଠି ଏତେ କାଟୁଥାଏ ଏତେ କଷ୍ଟ ହେଉଥାଏ ମୋତେ ଯେ ମୁଁ କହି ପକାଇଲି :

"ନା ଚାହେଁ ନା, ଶୀଘ୍ର ଯାହା କରିବାର କରନ୍ତୁ । ଅଙ୍ଗ ଅଛି ଦହି ହେଉନ, ଯାହା କରିବାର କରନ୍ତୁ ଆଗ ।"

ସେମାନେ ମୋତେ ନେଇଗଲେ ଆଉ ଗୋଟିଏ ବଖରାକୁ, ଶୁଆଇଦେଲେ ଟେବୁଲ ଉପରେ । ଭୀଷଣ ଭଳି ଲାଗୁଥାଏ, ମନଖୁସି କରେଇଲାଭଳି କେବଳ ଅଣ୍ଡା ନୂଆଁଟା କ ଖଣ୍ଡ ଅସିରେ ଡାକ୍ତର ଟାଣି ବାହାର କରିବାକୁ ଲାଗିଲେ ଗୋଟିକ ଗୋଟି କାଠ କେଞ୍ଚା ଖୁଣ୍ଟା ପାଟଅଁଚୁଡ଼ାକ । ସେସବୁ ବାହାର କଲା ବେଳେ ସେ କି ମଜାରେ ରହସ୍ୟ କରୁଥାନ୍ତି ସତେ !

"ଏ ଗୋରୁଙ୍କ ମାଉଁସି ଚମଡ଼ା ପରି ତୋର ଏ ଚମଡ଼ା ଉପରେ ବଢ଼ିଆ କାମ କରି ହାତ ଦେଖାଇଛନ୍ତି ସେମାନେ । ବୁଝିଲି ବାବୁ, ଏଣିକି ଆଉ ଚୋପାଏ

ବୋଲି ପାଣି ଗଳାଇ ନ ତୋ ଦେହରେ ସାଲାଜୁଲ ପାଣିନିରୋଧୀ, ହୋଇଗଲୁ ତୁ ।”

ମୋତେ ସଳସଳ କରି ଜଣ, କହିବାକୁ ଗଲେ ଏକାବେଳକେ ମୋର ଅସହିଷ୍ଣୁ ଭାବରେ ଯେତେବେଳେ ସେ କାମ ଝଡମ କଲେ ଜାଜର, ଯେତେବେଳେ ବାହିଲେ କେତେ ଖୁସିରେ :

“ଡ଼ୟାଙ୍କଗନା ଖେଣ୍ଡା କାଠପ ଡ଼ିଆ ବାହାର କଲି, ବୁଝିଲୁ ବାବୁ ! କେମିତିକା ତୋ’ ସାଙ୍ଗସାଥୀ ଦୋସ୍ତଙ୍କ ଆଗରେ ଗ୍ରହ ଫୁଟାଇ ବଡ଼େଇ ଜାହିର କହିବା ପାଇଁ କେମିତିକା କଥା ତୋ ପାଇଁ ! କାଲି ଠିକ୍ ଏହି ସମୟରେ ବ୍ୟାଣ୍ଡେଜ ବଦଳେଇ ନେବା ଲାଗି ଆସ । ତତେ କଣ ପାଇଁ ସବୁବେଳେ ପିନ୍ଧନ୍ତି ଏ ?”

“ଏବଠୁ ଅଗେ ତ ଆହୁରି ଲାଗ ଲାଗ ଘଟ ଘଟ ପିନ୍ଧୁଥିଲେ,” ଛୁଆଟିଏ ବର୍ଷର ମନରେ ଉତ୍ତର ଦେଲି ମୁଁ ଡାକ୍ତରଙ୍କୁ ।

ଗମ୍ଭୀର ଗଳାରେ, ଗମ୍ଭୀର ସ୍ୱରରେ ହସି ଉଠିଲେ ଡାକ୍ତର ।

“ସବୁ ମଙ୍ଗଳ ପାଇଁ, ସବୁ ଭଲ ପାଇଁ, ଆହୁରି ଆହୁରି ଭଲ ପାଇଁ ବାବୁ !”

ମୋତେ ମାଲିକ ପାଖକୁ ନେଇଗଲେ ଯେତେବେଳେ ସେ ଡାକ୍ତର ଦେଖେଇ ଶୁଣେଇ କହିଲେ ତାଙ୍କୁ :

“ଏଇ ନିଅ ! ନୂଆ କରି ଦେଇଚି, ନୂଆ ଭଳି ଠିକ୍ ଠାକ୍ ! କାଲି ଏହାକୁ ପଠାଇଦେବ, ପୁଣି ଏହାକୁ ବନ୍ଧାବନ୍ଧି କରିବାକୁ ହେବ ! ଭାଗ୍ୟ ତମର, ପିଲାଟିର ମିଜାଜ ବେଶ୍ ଦେଖିଲି ପ୍ରକୃତ ରସରସିଆ !”

ନୂଆଁଣିଆ ସ୍ୱର ବକଆ ଖେଳ ଘୋଡ଼ାଗାଡ଼ି ତ୍ରପକରେ ଚଢ଼ି ଫେରିଲୁ ଯେତେବେଳେ ମାଲିକ କହି କହି ସତେ ଅବା ପ୍ରବୋଧ ଦେଲେ ମୋତେ !

“ମୋତେ ବି ଯେମାନେ ଯେଉଁ ପିନ୍ଧନ୍ତିରେ ପେଶକଲ ! କଣ କରାଯିବ, କଣ କରାଯାଇ ପାରିଥାନ୍ତା ! ଓଃ, ସେ କ ମାଡ଼ ! କେମିତି ପିନ୍ଧୁଥିଲେ ସାର ! ଯାହାହେଉ, ଏବେ ତ ଅନ୍ତତଃ ମୁଁ ଅଛୁ, ତୋ ପାଇଁ ଟିକିଏ ଦୁଃଖ କରିବା ପାଇଁ କିନ୍ତୁ ମୋ ପାଇଁ ? ମୋ ପାଇଁ ଅବା ପଦେ କେହି କହିଥାନ୍ତା ଭଲ ପଦେ ! ନା, କେହି, ଜଣେ ବୋଲି କେହି ନୁହେଁ ! ପଲକୁ ପଲ ଲୋକ ଘୂରିଅଛନ୍ତି. ଗୋଟିଏ ବୋଲି ଦେଖୁଆ କଏ ଟିକିଏ ଦୟାମାୟା ଦେଖାଇ ଥାନ୍ତା ଭଲ ! ଆଉ କଣ ନା, ଆଃ ରେ ମୋତେ ଖାଲି କକ୍-କ କେଉଁ କେଉଁଆ କୁକୁଡ଼ା ଛୁଆ-ଗୁଡ଼ାକ ଘୂରିଆଡେ !”

ବାଟଯାକ ଏମିତି ସେ କହି ଯାଉଥାନ୍ତି । ତାଙ୍କ ପାଇଁ ଦୁଃଖ ହେଉଥାଏ ମୋର, ଅଥଚ ସେ ଏତେ ଉଦାର ଭାବରେ ନିଜ କଥା ଏମିତି ମତେ କହୁଥିବାରୁ ତାଙ୍କ ପ୍ରତି କୃତଜ୍ଞତା ଆସୁଥାଏ ମନରେ ।

ଘରେ ପହଞ୍ଚିଲା ମାତ୍ରେ, ମୋତେ ଅଭିନନ୍ଦନ କରାଗଲା, ଅଭ୍ୟର୍ଥନା କରାଗଲା, ରାଜ୍ୟ ଜୟ କରି ଫେରି ଆସିଥିବା ବୀର ପରି । ମାଉସେମାନେ ବେଢ଼ି ଯାଇ ଲାଗିଗଲେ ମୋ ସାଙ୍ଗରେ ଗୋଟି ଗୋଟି କରି କହିବା ପାଇଁ ତାଙ୍କୁ ସବୁ, ଡାକ୍ତର ଖେଣ୍ଟା ପାଉଥିବାଗୁଡ଼ାକ ବାହାର କଲେ କେମିତି, କଣ ସବୁ କହିଲେ ମତେ ! କହିଗଲି, ବର୍ଣ୍ଣନା କରି ବସିଲି ମୁଁ, ଆଉ ସେମାନେ ରହି ରହି ଓଠ କାମୁଡ଼ି ପକାଇ ଜିଭ ଚତ୍ ଚତ୍ କରି ବେଳେବେଳେ ଧୁଣି ମୁହଁ ଫଣଫଣ କରି, ଗଉଁ ଗାଉଁ ହୋଇ ଉଠି, ଉଃ, ଆଃ, କହି ବାଧା ଦେବାକୁ ଲାଗିଲେ ମୋର ସେଇ କଥାରେ, ସେଇ କ୍ରୋକ୍ତି ଟିକିନିଖି କାରବାରରେ ବର୍ଣ୍ଣନାରେ ଆଗ୍ରହୀ ହୋଇନାକି, ସେମାନଙ୍କର ସେ କି କୁଞ୍ଚିତ, କଦର୍ଯ୍ୟଆ ଆକୃତି ଦେଖି. ରୋଗ ଦୁଃଖ ଯନ୍ତ୍ରଣା ପ୍ରତି, ସବୁ ପ୍ରକାର ହାନିକରିଆ ଅଳୁଖିଆ କାରବାର ପ୍ରତି ।

ସେମାନଙ୍କ ଶବ୍ଦରେ ଏତଲା ଦେବାକୁ ଅଭିଯୋଗ ଆଣିବାକୁ ମନା କରି ଦେଇଥାଏ । ଦେଖିଲି, ସେଥିରେ ସେମାନଙ୍କ ମନ ଆନନ୍ଦରେ ହୁଡ଼୍ ହୁଡ଼୍ ହେଉଛି । ଏଇ ସୁବିଧାରେ ଅନୁମତି ଲୋଡ଼ିଲି, ଦରକାର ସ୍କରଯାଠୁଁ ବହିପତ୍ର ମାଗିଯାଚି ଅଣି ପଢ଼ାପଢ଼ି କରିବ ବୋଲି । ସେଭଳି ଘଟଣାରେ, ଯାହା ସବୁ ଘଟିଯାଇଥାଏ, ସେଥିରେ ମୋତେ ଆଉ ମନା କରିଦେବାକୁ ଅନୁମତି ନ ଦେବାକୁ ସାହସ ପାଇଲେ ନାହିଁ, କିନ୍ତୁ ବୁଢ଼ୀଟା ତାଙ୍କବାଟେ ଆଖି ଖୋସି ଦେଇ ପାଟି କରି ଉଠିଲା :

"ଏଁ, ଦେଖରେ, ଏଇ ବଳଟେକାକୁ ଟୁଆ, ସ୍ୱାର ବହସ ବାମାସି ଦେଖ, ଏଁ !"

ତହିଁଆରଦିନ ଠିକ ପାହୁନ ପାହୁଣୁ ହାଜର ହୋଇଗଲି ଦରଜା ଖାର୍ଯ୍ୟା ପାଖରେ, ସାମନାରେ ତାର ଛୁଡ଼ା ହୋଇ ଶୁଣିଲି, ସେ ଆଉ କହି ଯାଉଥାଏ :

"ଅରେ, ମେମାନେ କିନ୍ତୁ କହିଲେ ମତେ ଦେହ ଦୁଃଖରେ ପଡ଼ିଛୁ ! ନେଇଯାଇଚନ୍ତି ତ କୁରଖାନାକୁ । ଦେଖ, କି ମିଛ ଏ ଲୋକଙ୍କ କଥାଗୁଡ଼ାକ, ଗୁଜବ ଚୁଡ଼ାକ !"

ନାହିଁ, କହିଲି ନାହିଁ । ଅସ୍ୱୀକାର କଲି ନାହିଁ । ମତ କହିବାକୁ କେମିତି ଲାଜ ମାଡ଼ିଲା, ଭଲ ଲାଗିଲା ନାହିଁ । ଏତେ ସୁନ୍ଦର ଏତେ ଦୁଃଖଦ, ଏମିତି ଶୋଷାଦ-ଜନକ କଥାରେ ତାଙ୍କୁ ବ୍ୟସ୍ତ କରିଥାନ୍ତି କାହିଁକି ଉଚିତ ହୋଇନଥାନ୍ତା ଅଦୌ, ସେ ଯେ ଆଉ କାହା ସଙ୍ଗରେ ସମାନ ନୁହେଁ, ଠିକଏ ହେଲେ ମେଳ ନାହିଁ ତାର ଆଉ କାହା ସାଥିରେ, କି ଗୁଣରେ କି ରୂପରେ ! ଏଥିକରେ ତ କେତେ ସୁଖ ଥାଏ ମୋ ମନରେ !

ମୋଟା ମୋଟା ବହିଗୁଡ଼ାକ ବଡ଼ 'ଡୁମା'ଙ୍କର, ପଁସନ ଦ୍ୟୁ ଟେରେଲ, ମରେନ୍ ପିନ୍, ଜାକୋଁ, ଗାବୋ'ଗର୍ତ୍ତ, ଆଇମାର୍ଡ଼, ବୋଇ ଗୋବର୍ଟଙ୍କର ପଢ଼ିବାକୁ ଲାଗିଲି, ଗୋଟାକୁ ଗୋଟା, ଗୋଟକ ପରେ ଗୋଟାଏ କେତେ ଚଞ୍ଚଳ ଚଞ୍ଚଳ, ଯେ କି ଖୁସି ଲାଗୁଥାଏ ମୋତେ ! ଅନୁଭବ କରୁଥାଏ, ଗୋଟାଏ ଅଦ୍ଭୁତ ଅଲୌକିକ ଜୀବନର ଅଂଶଟିଏ ଯେମିତି ମୁଁ, ମଧୁର ଆବେଗରେ ଏହାହିଁ ଟହଲେଇ ଦେଉଥାଏ ମନକୁ, ସେ କି ତେଜରେ ଶକ୍ତିରେ ଭରପୂର କରି ଦେଉଥାଏ ମୋତେ । ଆଉ ଥରେ ଭୁସ ଭୁସ ହୋଇ କୁଣ୍ଡଳୀ ପରେ କୁଣ୍ଡଳୀ ଧୂଆଁ ଉଠିଲା ମୋ ହାତତିଆର ଭିତରୁ, ରାତିଯାଏ ଯେ ପଢ଼ିଲି ବସି, ଭୋର ଯାଏ ! ଫୁଲି ଉଠିଲା ଲାଲ ଲାଲ ହୋଇ ନାଲି ମୋ ଅଖି ଦୁଇଟା ! ପୁରୁଣା ବଡ଼ ମଲିକାଣୀ ମୋର କେମିତି ଗୋଟାଏ ହଂଶୁକୁଟିଆ ଖୁସିରେ ଫୁଟିଲାଇ ହୋଇ ସେହ୍ଲେଇ ହୋଇ କହିଲେ ଅଖିକୁ ଥରାଇ ।

"ଇଃ ରେ ଇଃ ବହିପୋକଟା ! ତୋ' ଡୋଳାର ପୁଅ ଦିଟା ଯଦି ବାହାରି ନ ପଡ଼ିଚି, ଫୁଟି ନ ଯାଇଚି, ଯଦି କହିବୁ ମୋତେ ?

ଖୁବ ଶୀଘ୍ର ବୁଝିପାରିଲି ସେଇ ଚଉଠାକିଆ ବହିଗୁଡ଼ାକ—ସେଥିରେ ବିଷୟବସ୍ତୁ ଆଉ ଘଟଣାବଳୀର ବିନ୍ୟାସରେ କେତେ ବୈଚିତ୍ର୍ୟ—ସେସବୁର ଉପସ୍ଥାପନରେ, ଚରିତ୍ରାବଳୀ ସଂଯୋଜନରେ କେତେ ବିଭିନ୍ନତା—କିନ୍ତୁ ହେଲେ କଣ ହେବ, ସେଗୁଡ଼ିକ ଘୋରଫେରି ଘୋରଫେରି କହୁ ହେଉଥାନ୍ତି ସମାନ ଗୋଟିଏ ବୋଲି କଥା—ଯେତେ ଭଲ ଲୋକ ଯେତେ ଚରିତ୍ରବାନ ସୁପୁରୁଷ—ସବୁବେଳେ ଅସୁଖୀ, ସବୁବେଳେ ନିପୀଡ଼ିତ, ନିର୍ଯାତିତ ସେମାନେ ଖଳପ୍ରକୃତିର ଖରାପ ଲୋକଙ୍କଦ୍ୱାରା ! ଆଉ ଶେଷରେ କିନ୍ତୁ ଯବନିକାପାତ ସମୟରେ କେଉଁ ଅବୋଧ କାରଣରୁ କେଜାଣି ପରାଜୟ ଘଟୁଛି ଯାହା ଦୁଷ୍ଟଣୀୟ ଯାହା ମନ୍ଦ ପ୍ରକୃତିର ତାର, ଆଉ ବିଜୟୀ ହେଉଛି, ଯିଏ ସତ୍ ଆଉ ସଚ୍ଚୋଟ । 'ପ୍ରେମ ଓ ପ୍ରଣୟ' ଶବ୍ଦରେ ମୋତେ ଜର ଆସିଯାଉଥାଏ ଯେମିତି, ଡର ହୋଇ ଉଠୁଥାଏ ମନଟା ସମାନ ଏକା ଧରଣର 'ଶବ୍ଦ' ଏକା ଧରଣର ସେହି ସବୁ ବହିରେ କି ସ୍ତ୍ରୀ କି ପୁରୁଷ ସବୁ ଚରିତ୍ରଙ୍କ ମୁହଁରେ—ଖାଲି ଯେ ବିରକ୍ତିକର ଲାଗୁଥାଏ, ନୁହେଁ—ଏଇ ସେଇ ତୁଚ୍ଛତା, ସେଇ ହୀନତା ଅତି ଅସ୍ପଷ୍ଟ ଭାବରେ ଗୋଟାଏ ସଂଶୟ ଆଣିଦେଉଥାଏ ମନରେ—

ବେଳେବେଳେ ଗୋଟିଏ ବହିର କେତୋଟି ମାତ୍ର ପୃଷ୍ଠା ପଢ଼ିଲା ପରେ ଠିକ୍ ଠଉରେଇବା ଆରମ୍ଭ କରି ଦେଉଥାଏ, ଶେଷରେ କଟାଙ୍କଟ ନେବ କିଏ, ଚତ୍‌ପଟାଙ୍ଗ ହେବ କେଉଁ ଜଣେ ! ପ୍ଲଟ କିଅ ବସ୍ତୁର 'ଟର୍ଣ୍ଣିଂ'ଟି ଅଖିରେ ଧରି ପଡ଼ିଯିବା ସଙ୍ଗେ ସଙ୍ଗେ ତାକୁ ଫିଟେଇ, ରହସ୍ୟ ଉଦ୍‌ଘାଟନ କରିବାରେ ଲାଗିଯାଉଥାଏ ମୁଁ ! ବହିଟିକୁ ମୁଡ଼ି ଥୋଇ ଦେଇ ଜଟିଳିଆ ଗାଣିତିକ ସମସ୍ୟା ବିଷୟ ଭାବିଲା ଭଳି ଚତୁର ଭାବରେ ଚିନ୍ତା କରୁଥାଏ ଟିକିଏ ଅଉ ବୋଳକୁ ହେଲା

ଅନେକ ସମୟରେ ପହଞ୍ଚିଥାଏ ସଠିକ ସମାଧାନରେ— ସବୁ ଚରିତ୍ରଙ୍କ ଭିତରେ କେଉଁଠି ଯାଇ ଅବତରଣ କରିବ ସ୍ୱର୍ଗରେ, ନନ୍ଦନବନରେ, ଆଉ କେଉଁଠି ଦଣ୍ଡ ପାଇ ଶାସ୍ତି ପାଇ ନିର୍ଯାତିତ ହେବ ପ୍ରାୟଶ୍ଚିତ୍ତ ପାଇଁ ପାପରୁ ମୁକ୍ତ ହେବା ପାଇଁ ନରକରେ !

କିନ୍ତୁ ଏସବୁ କାହିଁ କେଉଁଠି ପଛରେ ପଡିଲା—ଏହାକୁ ଟପିଯାଇ ଆଭାସ ପାଇଲି ମୋ ପାଇଁ ଗୋଟାଏ ବିରାଟ ଗୁରୁତ୍ୱପୂର୍ଣ୍ଣ କଥାର— ଆଉ ଏକ ପ୍ରକାର ଜୀବନର ଅଙ୍କାବଙ୍କା ବର୍ତ୍ତୁଳ ରେଖାଗୁଡ଼ିକର ଯାହାର ସବୁ ସମ୍ପର୍କ ଥିଲା ଅନ୍ୟ ଜଗତର । ସ୍ପଷ୍ଟ ପରିଷ୍କାର ହୋଇଉଠିଲା ମୋ ଆଗରେ, ପ୍ୟାରିସରେ ଘୋଡ଼ାଗାଡ଼ି 'ଆର୍ଜ'ଲାଇସ' ଶ୍ରମିକ ଆଉ ସୈନିକ, ସେଇ ଯିଏ ''ଇତର ଉଚ୍ଛୃଙ୍ଖଳ ଜନସାଧାରଣ' ନିଝ୍ନି-ନୋଭୋଗରୋଦ୍, କାଜାନ୍ ଆଉ ପର୍ମର ତାଙ୍କରି ଭଳି 'ଜନସାଧାରଣ' ଅନୁରୂପ ନ ଥିଲେ ଅଦୌ । ସେମାନେ ସେଠାର 'ଭଦ୍ରଲୋକ'ଙ୍କ କଥା ସହିତ କହୁଥିଲେ ସାହସର ସହିତ—ଦମ୍ଭରେ ସେଇ ଭଦ୍ରଲୋକଙ୍କ ସାମନାରେ କାରବାର ହେଉଥିଲେ ଅଧିକ ସହଜ ସ୍ୱାଚ୍ଛନ୍ଦ୍ୟରେ-ଅଧିକ ଅବାଧ ସ୍ୱାତନ୍ତ୍ର୍ୟରେ । ହୋଇ ଗୋଟିଏ ସୈନିକ ଯେଉଁ ବହି ବର୍ଣ୍ଣିତ ପ୍ୟାରିସର, ମୋର ଜଣାଶୁଣା, ଗୋଟିଏ ବୋଲି ସୈନିକ ଭଳି ହୋଇଥାଆନ୍ତା କିଛି, ନା, ତାହାରି ପରି ନ ଥିଲା ସେ—କି ସିଦେରେଭ, ଷ୍ଟିମରରେ ସେଇ ସୈନିକ ଏମିତିକ ସ୍ୱେରଗୋଖାନ୍ ପରି ନ ଥିଲା, ଠିକ୍ ଏ ହେଲେ ! ସେ ସେମାନଙ୍କ ତୁଳନାରେ ଥିଲା ଅନେକାଂଶରେ 'ମଣିଷ' ଭଳି ମଣିଷ ! ପ୍ୟାରିସ ସହିତ ତାର କେଉଁଠି କିଛି ସାଧାରଣଭାବରେ ମେଳ ଥିଲା, ଯେମିତି ପ୍ୟାରିସଠୁ ଅବଶ୍ୟ ଅଳ୍ପ ସ୍ଥୂଳ ଅଥଚ ପରିଷ୍କାର, ଆଉ ସମାନ ଥିଲା କେତେ ମାତ୍ରାରେ ତା' ସହିତ ! କିମ୍ବା ହୋଇଛି ଦୋକାନୀଟି ମୋ ଜଣାଶୁଣା, ଯେକୌଣସି ଦୋକାନୀଠୁ କେତେ ଭଲ କେତେ ଉନ୍ନତଧରଣର ଥିଲା ସେ ! ଏମିତିକ ବହିଗୁଡ଼ିକର ପାଦ୍ରୀ, ସବୁ, ମୋ ଜାଣିଥିବା ପାଦ୍ରୀଙ୍କ ସହିତ ସମାନ ନ ଥିଲେ ଜଣେ ହେଲେ । ଜନସାଧାରଣଙ୍କ ପ୍ରତି ଅଧିକ ସ୍ନେହ ଶ୍ରଦ୍ଧା ସହାନୁଭୂତି ଥିଲା ସେମାନଙ୍କର, ସାଧାରଣ ଭାବରେ କହିଲେ ବହିଗୁଡ଼ିକରେ ବର୍ଣ୍ଣିତ ଦୂର ବିଦେଶର ଜୀବନ କେତେ ଉନ୍ନତ, କେତେ ସହଜ, ସ୍ୱଚ୍ଛଳ ପୁଣି କେତେ ଅଧିକ ହୃଦୟସ୍ପର୍ଶୀ ଥିଲା ମୋର ପରିଚିତ ଜୀବନରୁ—ବିଦେଶୀ ରାଜ୍ୟଗୁଡ଼ିକରେ ଲୋକେ ଏମିତି ଅନେକ ସମୟରେ ନିଜ ନିଜ ଭିତରେ ଲଢ଼େଇ କରୁ ନ ଥିଲେ, ପିଟାପିଟି ହେଉ ନ ଥିଲେ, ଏମିତି ପଶୁଙ୍କ ପରି ହିଂସ୍ର ନିର୍ମମ ଭାବରେ ଷ୍ଟିମରରେ ସେ ସୈନିକଟିକୁ ଯାତ୍ରୀମାନେ ଗୋଟାଏ କୁତ୍ସିତ ହିଂସ୍ରପଣରେ କ୍ରୀଡ଼ନକ କରୁ ନ ଥିଲେ ତାହାକୁ, ମୋ ପୁରୁଣା ବଡ଼ ମାଲିକାଣୀ ଭଳି କ୍ରୋଧରେ ପ୍ରତିଶୋଧ କାମନାରେ ପ୍ରାର୍ଥନା କରୁ ନ ଥିଲେ ଡାକ ଛାଡ଼ୁ ନ ଥିଲେ ଭଗବାନଙ୍କୁ ।

ଲକ୍ଷ୍ୟ କଲି ବିଶେଷ ଭାବରେ ଖଳନାୟକଗୁଡ଼ିକୁ ଲୋଭୀ ଲାଳସୀ ହୀନ-ଚରିତ୍ର ଲୋକଗୁଡ଼ିକୁ ବର୍ଣ୍ଣନା କଲାବେଳେ ବହିସବୁ କେବେହେଲେ ଦେଖାଇ ନ

ଥିଲେ ଗୋଟାଏ ଅତି ଅବୋଧ୍ୟ 'ନୃଶଂସତା'ରେ ଆଚ୍ଛନ୍ନ ସେମାନେ ଅନ୍ୟମାନଙ୍କୁ ବ୍ୟଙ୍ଗବିଦ୍ରୂପ କରିବାର ମୋହରେ ମାତି ସେମାନେ ସେହିମାନଙ୍କ ଭଳି ଠିକ୍ ଯେଉଁମାନଙ୍କୁ ଅତି ନିକଟରୁ ଘନିଷ୍ଠ ଭାବରେ ଜାଣିଥିଲି ମୁଁ—ବାହାର ଦୃଷ୍ଟିରେ ଝାଳନାସ୍ତିକସବୁ ନିଷ୍ଠୁର ଥିଲେ ଯେମିତି ଗୋଟିଏ 'କାର୍ଯ୍ୟକାରୀ', ଭାବରେ ସେମାନଙ୍କର ନିଷ୍ଠୁରତା, ନୃଶଂସତା ସବୁବେଳେ ଜୀବନ ସବୁ କ୍ଷେତ୍ରରେ ସୁବୋଧ ଥିଲା ସୁସ୍ପଷ୍ଟ । କିନ୍ତୁ ମୁଁ ? ମୁଁ ଯେ ଦେଖୁଥିଲି, ଦେଖିବାକୁ ପାଉଥିଲି ଏଠା-ବେଳକେ ଅହେତୁକ ଏକାବେଳକେ ଅଜ୍ଞାନ ବିସ୍ମରଣ ଶୂନ୍ୟ ଉଦ୍ଦେଶ୍ୟହୀନ, ନୃଶଂସତା—ନୃଶଂସତା କେବଳ ଆମୋଦ ପାଇଁ ଯାହାର କୌଣସି ଲକ୍ଷ୍ୟ ନ ଥିଲା, ଆବେଗ ନ ଥିଲା ଆବେଦନ ନ ଥିଲା—ଯେମିତି ତୁଚ୍ଛ ଆମୋଦ, ତୁଚ୍ଛା ଆମୋଦ ପାଇଁ ।

ପ୍ରତ୍ୟେକଟି ନୂଆ ବହି ସୁରୁଚିର ସନ୍ଧାନ ଦେଇଦେଲା ମୋତେ ଜଣାଇ-ଦେଲା ଯେ କି ତଫାତ୍ ଥିଲା ରୁଷୀୟ ଜୀବନ ସହିତ ଅନ୍ୟ ଦେଶଗୁଡ଼ିକରେ ପ୍ରଚଳିତ ପ୍ରତିଷ୍ଠିତ ଜୀବନର—ଯେମିତି ଗୋଟାଏ ଅସନ୍ତୋଷ, ଗୁଳିଗୁଳିଆ ଅସ୍ପଷ୍ଟ ଅଶାନ୍ତି ଜଗାଇଦେଲା ମନରେ ଆହୁରି ବଢ଼ାଇଦେଲା ମୋର ସନ୍ଦେହକୁ—ଏଇ ଯେଉଁ ହଳଦିଆ ହଳଦିଆ ପୃଷ୍ଠାଗୁଡ଼ିକୁ ଗୋଟାକ ପରେ ଗୋଟାଏ ଓଲଟାଇ ଯାଉଛି ବୁଢ଼ା ଆଙ୍ଗୁଠି ଟିପ ମାରି ମାରି, ଏଇ ପୃଷ୍ଠାଗୁଡ଼ିକ ପୂରାପୂରି ସତ୍ୟାନ୍ୱେଷୀ ସତ୍ୟବାକ୍ ନ ଥିଲା ।

ଏହା ପରେ ମୋ ହାତରେ ପଡ଼ିଲା ଦାନବୋର୍ନଙ୍କର ଉପନ୍ୟାସ 'କେମତ ନୋ ଭ୍ରାତୃବୃନ୍ଦ' । ଗୋଟିଏ ରାତିରେ ତାହା ଶେଷ କରିଦେଲି ଏକାଥର, କିନ୍ତୁ ଏହାର ଅଭିନବତ୍ୱରେ ଯେଉଁ ବସ୍ତୁନିଷ୍ଠିକ ଆସିଲା ମନରେ, ତାହାହିଁ ମୋତେ ଯେମିତି ଟାଣିନେଲା ଆଉ ଥରେ ପଢ଼ିବା ଦିଗରେ ଏଇ ସରଳ ସହଜ ବିଷାଦମୟ କାହାଣୀଟିକୁ, ଏଥିରେ ଜଟିଳତା ନ ଥିଲା ଆଦୌ, ସେମିତିଥିରେ ବା ଘଟଣାଗୁଡ଼ିକର କ କୌଶଳମୟ ଖଞ୍ଜାଖଞ୍ଜିରେ ବି ଆକର୍ଷଣ ନ ଥିଲା ବାହାରକୁ ଅନ୍ତତଃ, ଅତି ଉପରଠାଉରିଆ ଭାବରେ । ଏମିତିକି ପଢ଼ିଲାଠାରୁ ଲାଗିଲା କିପରି ଶୁଷ୍କ ଗୁରୁଗମ୍ଭୀର "ସନ୍ଥମାନଙ୍କ ଜୀବନ ଚରିତ" ଭଳି, ପଢ଼ିଲାଠାରୁ ହିଁ ମନଟା ମୋର ଭାଜିପଡ଼ିଲା—ଏହାର ଏକାବେଳକେ ରୁକ୍ଷକଠୋର ଅନଳଂକୃତ ଭାଷାରେ କିନ୍ତୁ ଏହାର ବେକଠୋକ ସଂକ୍ଷିପ୍ତ ଶବ୍ଦଗୁଡ଼ିକ, ଛୋଟ ସରଳ ବାକ୍ୟ ଖଣ୍ଡଟିମାନ ଏମିତି ସିଧାସଳଖଭାବରେ ମୋ ହୃଦୟରେ ଚଳିଗଲା ସତେ ଅଉ ସେଇ ଆଖଡ଼ା ଓସ୍ତାଦ ମଲ୍ଲ ଭାଇଗୁଡ଼ାଙ୍କର ନାଟକୀୟତାର, ଅଦ୍ଭୁତସୁର ଏମିତି ବିଶ୍ୱାସଯୋଗ୍ୟ ବିବରଣୀ ଆଣି ରଖିଦେଲା ମୋ ସାମନାରେ ସତ କହୁଚି, ଆନନ୍ଦରେ ଅଧୀର ହୋଇ ନାଚିଉଠିଲି ଯେମିତି ! କାନ୍ଦିଲି, କାନ୍ଦିଲି ଖାଲି, ଛାତି ଫାଟିଯିବ ପରି ଏତିକି ଭାବିଲା ଯାଏ କାନ୍ଦିଲି. ପଢ଼ିଲି ଯେତେବେଳେ ଭଙ୍ଗାଗୋଡ଼ରେ ବିସ୍ଥିର ମଞ୍ଚଟି ଥର ଥର ହୋଇ ଚଢ଼ିବାକୁ ଲାଗିଲା ଘନା .

ଗୁପ୍ତ ଉପରକୁ ହୁଙ୍କି ପଡ଼ନ୍ତୁ, ଯେଉଁଠି ସେମାନଙ୍କର ଗୋପନ କାରବାର, କାରୁ-କୌଶଳ ଅଭ୍ୟାସ କରୁଥିଲା ତାର ଭିତ !

ଏଇ ଚମତ୍କାର ବହିଟିକୁ ଯେତେବେଳେ ଫେରାଇ ଦେବାକୁ ନେଲି ଦରଜି ଭାର୍ଯ୍ୟା ପାଖକୁ କହିଲି, ତାକୁ ଏମିତି ଆଉ ଖଣ୍ଡେ ବହି ଦେବା ପାଇଁ ମୋତେ ।

"ଆଉ ଖଣ୍ଡେ ଏମିତି ? ମାନେ ?" ହସି ହସି ପଚାରିଲା ସେ ।

କେମିତି କଥାଟାଏ ଅଡୁଆରେ ପଡ଼ିଗଲି, ଅଡୁଆରେ ପଡ଼ିଗଲି ତା' ହସରେ,—କଣ କହୁଁଛି ମୁଁ ବୁଝିନଥା ହୋଇ ବୁଝେଇ କହିପାରିଲି ନାହିଁ ଯେତେବେଳେ କହିଲା ସେ ଥିରିକିନା :

"ମଜା, ବଡ଼ ମଜା ବହିଟାଏ, ରହ!, ଟିକେ ଅପେକ୍ଷା କର ଆଉ ଖଣ୍ଡେ ଭଲ ବହି ଏହାଠୁଁ ଯୋଗାଡ଼କରି ଆଣିଦେବି, ଏହାଠୁ ବେଶି ମନକୁ ପାଇଲା ଭଳି ।"

ଅଳ୍ପ କେଇଟି ଦିନପରେ ସେ ମୋ ହାତକୁ ବଢ଼େଇ ଦେଲା 'ଗ୍ରୀନ୍‌ଉଡ୍'ଙ୍କର "ଶ୍ରେଷ୍ଠ ଗୋଟିଏ ଜୋତରା ମୋଡରା ବଗୁଲିଆ ଟୋକାର ସତ କାହାଣୀ" ଏ ବହି ଖଣ୍ଡିକ । ଆତ୍ମସଚେତନ ଭାବରେ ସଙ୍କୁଚିତ ହୋଇ ପୁଣି ଅଥୟ ବିଥେଇ ମନରେ ଆଉଡ଼େଇ ଆଉଡେଇ ଦେଖିନେଲି ବହିର ନାଆଁ ଟି । ପ୍ରଥମ ପୃଷ୍ଠାଟି ପଢ଼ୁ ନ ପଢ଼ୁଣୁ ଉକୁସି ଉଠିଲା ମନଟା, ହସର ରେଖାଟିଏ ଆଙ୍କି ହୋଇଗଲା ଓଠ କଣରେ ବା—ଲାଖି ରହିଲା, କେତୋଟି ଅନୁଚ୍ଛେଦକୁ ଦୁଇ ତିନଥର ଲେଖାଏଁ ସମୁଦାୟ ବହିଟିକୁ ଉପର ମଲାଟରୁ ତଳ ମଲାଟ ଯାଏଁ ପଢ଼ିସାରିଲି ଯାଏଁ ।

"ଆରେ ତେବେ ବିଦେଶରେ ବି ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କର ଜୀବନ ଏତେ ଦୁର୍ବହ, ଏତେ ଦୁଃଖର ;" ଭାବିଲି ତା' ତୁଳନାରେ ମୋ ଜୀବନଟା ବେଶ ସ୍ୱଚ୍ଛନ୍ଦ, ବେଶ୍ ସହଜ ! ଅନ୍ୟ କଥାରେ କହିଲେ, ଗୁଢ଼ ପତଳାକର ଦମ୍ଭ ହରେଇବାର ମୋର ବା କାରଣ କଣ ଅଛି ଏମିତି ?

ଗ୍ରୀନଉଡ୍‌ଙ୍କ ବହିରୁ ବହୁତ ଉତ୍ସାହ ମିଳିଗଲା, ପ୍ରେରଣା ପାଇଲି, ଖୁବ୍ ଶୀଘ୍ର ତା' ପରେ ପ୍ରକୃତରେ 'ଠିକ' ବହି କେତେଖଣ୍ଡି ହାବୁଡ଼ିଗଲା—ଏଇ "ହ୍ୟୁଜେନ ଗ୍ରାନ୍‌ଦେଭ ।"

ବୁଢ଼ା ଗ୍ରାନ୍‌ଦେଭ ଗୋଟି ପୁଞ୍ଜା ଟିକନଖିକର ମନେ ପକାଇଦେଲା, ମୋ ଆଖି ଆଗରେ ଆଣି ଠୁଆ କରେଇଦେଲା ମୋ ଜେଜେବାପାଙ୍କୁ । ଦୁଃଖ ହେଲା, ବହିଟି ଶ୍ରେଷ୍ଠ ବୋଲି କିନ୍ତୁ ସେଥିରେ କେତେ ବିପୁଳ ପରିମାଣରେ ସତ ଥିଲା ସତେ ! ଚକିତ ହୋଇଗଲି ! ଜୀବନ ତ ମତେ ଏଇ ସତ ସହିତ ପରିଚିତ କରାଇ ସାରିଥାଏ, କହିବାକୁ ଗଲେ ଅନ୍ତରଙ୍ଗଭାବରେ—କିନ୍ତୁ ବହିଟି ଗୋଟିଏ ନୂଆ ଆଲୋକରେ ପ୍ରଦର୍ଶେଇ ଦେଲା ଯେମିତି ମଧୁର ପ୍ରଶାନ୍ତିର ଅବେଗଶୂନ୍ୟ ନିର୍ଭିକତା

ପର୍ଯ୍ୟବେକ୍ଷଣର ସେ କ ନୈ୍ୟାତ୍ଧର୍ମିଯ୍ୟ ବନ୍ଧନରେ ସତେ ! ଗନକୋର୍ଟଙ୍କ ଛଡ଼ା ଯେତେ ଯେଉଁ ଲେଖକଙ୍କୁ ଭେଟିଥିଲି— ପଢ଼ିଥିଲି ମୁଁ, ସମସ୍ତେ ପ୍ରାୟ ଜନସାଧାରଣଙ୍କ ଉପରେ ସେମାନଙ୍କ ସମ୍ମୁଖରେ 'ସ୍ୱସ୍ଥ' ଦେଇଥାନ୍ତି ମୋ ମାଲିକମାନଙ୍କର ରକ୍ଷ କଠୋର ଅକାଣ୍ଡଛଡ଼ା ଚକ୍ଲାଣିଆ ସ୍ୱରରେ—ପାଠକଙ୍କୁ ଖଳ ଚରିତ୍ରପ୍ରତି ସହାନୁଭୂତି-ଶୀଳ କରେଇ ଅଉ ନକେ ନକେ ନୂଆ ଉକ୍ତ୍ୟକ୍ତ ହୋଇ ଉଠିଥାନ୍ତି ପ୍ରକୃତ ନିଷ୍ପାପ ମାନମାନ ନାୟକଙ୍କ ସମ୍ପର୍କରେ । ମୁଁ ବି ବିରକ୍ତ ଉତ୍ତ୍ୟକ୍ତ ହୋଇଯାଉଥାଏ, ଦେଖୁଥାଏ ଯେତେବେଳେ ଲୋକ ଯେତେ ନିଜର ଚିନ୍ତା ଚେତନା ଓ ଆସ୍ୱାଦ ଉଦ୍ୟମ ନିୟୋଗ କରୁ ପଛକେ ହରୁବେଳେ ବ୍ୟର୍ଥ ଆହତ ହେଉଥିଲ ସକଳ ସନ୍ଧାନରେ ନିଜଠା ସମାନ ସେହି 'ଜାତିମାନ' ଗୁଣବାନ୍ ଲୋକଗୁଡ଼ିକଙ୍କ ଦ୍ୱାରା । ପ୍ରଥମ ପୃଷ୍ଠାରୁ ଆରମ୍ଭ କରି ଶେଷ ପୃଷ୍ଠା ଯାଏ ଯେଉଁମାନେ ଠିକ୍ ଛିଡ଼ାହୋଇ ରହୁଥିଲେ ତା' ପଥରେ, ତା' ସାମନାରେ ଅଭେଦ୍ୟଦୁର୍ଭେଦ୍ୟ ପଥର ପାଚେରିଭଳି । ଏଇଟି ନିର୍ଦ୍ଦିଷ୍ଟ ଥାଏ ଅବଶ୍ୟ କଳୁଷାକ୍ତର, ପାପର ଯେତେ ଯାହା ଦୁରଭିସନ୍ଧି ଦୁରଭିପ୍ରାୟ ଏହି ପାଚେରିରେ ଠେକି ଚୂର୍ଣ୍ଣବିଚ୍ଛିତ ହେଉଥାଏ, କିନ୍ତୁ ପଥର କଣ ଏଭଳି ଏକ ପଦାର୍ଥ ଯାହା କେବେ ପ୍ରାଣରେ ସ୍ନେହମମତା ସଞ୍ଚାର କରିପାରେ ନା କରିପାରିଥାନ୍ତା ? ଯେତେ ଦୃଢ଼, ଯେତେ ଶକ୍ତ, ଯେତେ ମନୋରମ ହେଉ ପଛକେ ପାଚେରିଟା—ତା' ଆରପଟ ସେଓ ଗଛ ପାଖରେ ପହଞ୍ଚିବାକୁ ବୁଦ୍ଧି ବୁଦ୍ଧ ଯଦି ସେହି ଗଛରେ ଚଢ଼ିବ ବୋଲି ତମେ କଣ କେବେ ଭଲ ମନ ହେବ ପାଚେରିର ପଥରଗୁଡ଼ିକୁ ଦେଖି ମୁଗ୍ଧ ହୋଇ ବାହାବା ଦେବାକୁ । ପ୍ରାୟ ସବୁବେଳେ ଲାଗୁଥାଏ ମତେ ସବୁଠୁ ବଳି ସତ୍ୟ ଯାହା ଗୁରୁତ୍ୱପୂର୍ଣ୍ଣ ଯାହା ଥିଲା, ତାହା ସେଇ ଧାର୍ମିକଗୁଡ଼ିକ ନୀତିପରାୟଣମାନଙ୍କ ପଛରେ ।

ଖଳ ଚରିତ୍ର ନ ଥିଲେ କି ବୀର ଚରିତ୍ର ନ ଥିଲେ ଗନକୋର୍ଟ, ଗ୍ରୀନଉଡ୍ ଓ ବାଲଜାକଙ୍କଠି । ସିଧାସାଧା ସରଳ ଲୋକଗୁଡ଼ାଏ, ଜୀବନ୍ତ ଚମତ୍କାର ଭାବରେ ଜୀବନ୍ତ । କେହି କେବେ କଣ ସନ୍ଦେହ କରିପାରିଥାନ୍ତା ସେମାନେ କହୁଥିଲେ ଯାହାସବୁ, କରୁଥିଲେ ଯାହା, ତାହା କଣ ଠିକ୍ ସେହିଭଳିଭାବରେ ହିଁ ସମ୍ପନ୍ନ ହୋଇଥାନ୍ତା, କିଛି ଯାଇପାରି ନ ଥାନ୍ତା କି ସମ୍ପନ୍ନ ହୋଇପାରି ନ ଥାନ୍ତା ଆଉ କୌଣସି ଭାବରେ ?

ଏହିଭଳି ଭାବରେ ଶିଖିଲି ମୁଁ, ଜାଣିଲି ମୁଁ—"ଭଲ ବହି ଖଣ୍ଡିଏ, ଠିକ ବହି ଖଣ୍ଡିଏ" ପଢ଼ିବାର ଆନନ୍ଦ—ପ୍ରବଳ ଆନନ୍ଦ କଣ ! କିନ୍ତୁ ଏମିତି ବହି ସବୁ ପାଇବ କେଉଁଠୁ ? ଦାଦୀ ଭାର୍ଯ୍ୟା ଯେ ଅଉ ସାହାଯ୍ୟ ଦେଇ ପାରୁନାହିଁ, ସାହାଯ୍ୟ ଦେଇ ପାରିବ ନାହିଁ, ଅନୁଭବ କଲି ମୁଁ ।

"ହେଇ, କେତେଟି ଭଲ ବହି, ହେଇ !" ଅ.ସ'ସେନ ହୁସେସ୍ୱେଙ୍କର "ଅଞ୍ଜଳିଭର ଗୋଲାପ, ସୁନା, ରକ୍ତ" ବହିଟିକୁ 'ବେଲୋ', ପଲଦକକ ଓ ଫିଭାଲଙ୍କ ଉପନ୍ୟାସଗୁଡ଼ିକ ସାଥିରେ ମୋତେ ବଢ଼େଇ ଦେଇ ଦେଇ

କହିଲି ସେ, କହିଲି ସେ ଦରଜି ସ୍ତ୍ରୀ ! କିନ୍ତୁ ଏଣିକି ସେ ଏଭଳି ବହିସବୁ ପଢ଼ିବା ପାଇଁ ମତେ ରୀତିମତ ଅଭ୍ୟାସ କରିବାକୁ ପଡ଼ିଲା ପ୍ରାଣାନ୍ତକ ଭାବରେ !

ତାକୁ ଭଲ ଲାଗିଲା, ବେଶ ଉପଭୋଗ କଲା ସେ ମ୍ୟାରିସ୍ବାଟ୍ ଆଉ ଓ୍ୱାର୍ଣ୍ଣିଙ୍କର ବହି ସବୁ—କିନ୍ତୁ ମତେ ? ମତେ ଲାଗିଲା ନିହାତି ବିରକ୍ତିକର—ସ୍ପିଏଲହାଗେନ ଭଲ ଲାଗିଲା ନି ଆଦୌ, କିନ୍ତୁ ପ୍ରଚୁର ଆନନ୍ଦ ପାଇଲି ଅଏରବାକଙ୍କ ଗଳ୍ପଗୁଡ଼ିକ ପଢ଼ି । ଆଉ ହ୍ୟୁଗୋଙ୍କ ଗ୍ରନ୍ଥ ଅଧିକ ଆଗ୍ରହୀ ହେଲି ସାର ଓ୍ୱାଲଟରସ୍କଟ୍ଙ୍କ ପ୍ରତି । ଲୋଡ଼ିଲି ମୁଁ ସେମିତି ବହି —ଯାହା ମନର ଆବେଗ ଚଂଚଳ କରିଦେବ, ମୋ ପ୍ରାଣକୁ ଆଉ ମୋତେ ଅଚ୍ଛନ୍ନ କରିଦେବ ସୁଖର ଅନୁଭୂତିରେ ବାଲଜାକଙ୍କର ସେହି ଚମତ୍କାର ବହିଗୁଡ଼ିକ ଠିକ୍ । ବହିଗୁଡ଼ିକରେ ବର୍ଣ୍ଣିତ ଚୀନାମାଟିର କଣ୍ଢେଇ ଭଳି ଜୀବଗୁଡ଼ିକ ଆଉ ମୋ ମନକୁ ଘେନିଲେ ନାହିଁ—ଦିନକୁ ଦିନ କମି କମି ଆସିଲା ସେମାନଙ୍କ ପ୍ରତି ଅନୁରାଗ ।

ତାକୁ, ସେଇ ଦରଜୀ ସ୍ତ୍ରୀଟିକୁ ଭେଟିବାକୁ ବାହାରୁଥାଏ—ଗଲାବେଳେ, ମୁଁ ପିନ୍ଧୁଥାଏ ସଫା ଧୋବ କୁର୍ତ୍ତା, ଭଲ କରି ମଠିମୁଠି କୁଣ୍ଡେଇଥାଏ ବାଳଗୁଡ଼ିକୁ, ଯେତେ ଉପାୟରେ ପାରେ, ନିଜକୁ ସଜଉଥାଏ, ସବୁମତେ ନିଜକୁ ଦେଖେଇଲା ଭଳି, ଯାହାକୁ 'ଉପହାର' ଦେଲା ଭଳି ମୋହନସ୍ଥା କରି ନେଉଥାଏ । ଆଜି ସନ୍ଦେହ ହୁଏ, କେତେଦୂର ସଫଳ ହେଉଥାଏ କେଜାଣି, ଆଶା କରିଥାଏ, ମୋର ସମ୍ଭ୍ରାନ୍ତଭାବ, ମାନଅ୍ାନ ଓ ରୀତିନୀତି ଲକ୍ଷ୍ୟ କରି ସେ ଆହୁରି ଅଧିକ ସରଳ ସହଜ ଅକପଟ ସୌହାର୍ଦ୍ଦ୍ୟରେ ସହଜରେ ମୋତେ ଦି' ଗୁରିପଦ ଯାହା କହିବାର କହିବ ମୋ ସଙ୍ଗେ କିଛି କଥାବାର୍ତ୍ତା ହେବ—ଏତେବେଳେ ତାକ ତନ ନିର୍ମଳ ମୁହଁରେ ଖେଳାଇ ଲୁଚାଇ ଦେବ ଭଂଗୁର ହସଟିକୁ ଯାହା ମତେ ସବୁବେଳେ ଲାଗୁଥାଏ ସେ କେବଳ ଯୋଷାଙ୍ଗାନ୍ତିତରେ ଉକୁଟାଉଥାଏ ବିଶେଷରେ ମୋ ସହିତ ଭେଟାଭେଟି ମୁହୂର୍ତ୍ତିଟି ପାଇଁ । ସେ କିନ୍ତୁ ହସୁଥାଏ ହସୁଥାଏ ନିଷ୍ଠୁର, ଆଉ ପଚାରୁଥାଏ ତାର ସେ ମିଠାଳିଆ କାନ୍ତରେ ଖଜି ଖଜି ପଡ଼ିଲା ସ୍ୱରରେ ।

"ପଢ଼ିଲ କି ଏଇଟି ? କେମିତି ଲାଗିଲା ? ଭଲ ଲାଗିଲା ତ ?"

"ନା !"

ଏତିକିରେ କୁଞ୍ଚ କୁଞ୍ଚ ହୋଇ ଅଳ୍ପ ଟିକିଏ ଟେକି ହୋଇଯାଉଥାଏ ଭ୍ରୂରୁ ଯୋଡ଼ିକ କମନୀୟ ଭ୍ରୂଯୋଡ଼ିକ—ଦୀର୍ଘନିଃଶ୍ୱାସଟିଏ ପକାଇ କହୁଥାଏ ଆଗରୁ ମୋର ପରିଚିତ ଅନୁନାସିକା ସ୍ୱରରେ ।

"ନା କାହିଁକି ମ ?"

"ପଢ଼ି ସାରିଲିଣି ଯେ ସେ ବିଷୟରେ ।"

"କୋଉ ବିଷୟରେ ମ ?"

"ଏଇ ଭଲ ପାଇବା ଯେନ ।"

ସେ ଟିକଏ ମୁହଁ ଫଣ ଫଣ କରି ଦେଉଥାଏ, ଛଳନାମୟ ହସଟିଏ ଫୁଟି ଉଠୁଥାଏ ତାର ଓଠରେ ।

"ଆରେ ବାଃ ! କୋଉ ବହିଟାରେ ବା ଲେଖା ନାହିଁ ପ୍ରେମ ବିଷୟରେ ସବୁ ବହିତ ଲେଖା ଏଇ ପ୍ରେମ, ଭଲପାଇବା ଯେନ ?"

ବଡ଼ ଆରାମ ଚୌକିଟିରେ ବସି ଚଢ଼େଇଥର ଚଟିଭିତରୁ ସେ ତାର ଗ୍ରେଟ ପାଦ ଦୁଇଟିକୁ କଡେଇ ଦଏ ହଲାଏ, ହାତମାରେ, କାନ୍ଧ ଉପରେ ଟାଣି ନଏ ତାର ଡ୍ରେସିଂଗ ଗାଉନଟିକୁ, ଗୋଲାପୀ ଆଙ୍ଗୁଳିର ଟିପରେ ଠକ୍ ଠକ୍ କରେ । ବନେଇ ବହିର ଟାଣୁଆ ମଲାଟଟିକୁ ।

ମନ ହେଉଥାଏ କହନ୍ତି କ ତାକୁ :

"ଏଠୁ ଗ୍ଲାଲ ଯାଉନ କାହିଁକ ? ଏଇ ସୈନକଗୁଡ଼ାକ, ସାମରିକ ଅଫିସରଗୁଡ଼ାକ ଏବେ ବ ତମକୁ ଗ୍ରେଟ ଗ୍ରେଟ ଚଟଉଟିମାନ ଲେଖୁଚନ୍ତି, କେତେ ଥଟ୍ଟା ତାମସା କରୁଛନ୍ତି ତମକୁ ଯେନ ।"

ମୋ ଭାବନାକୁ ସବୁ ଭୁଣ୍ଡ ଫିଟେଇ ଜଣେଇବା ପାଇଁ ସାହସ ବା ପାଉଥାଏ କେତେବେଳେ, ସେଥିପାଇଁ ତା' ପାଖରୁ ଖସିଯାଉଥାଏ 'ପ୍ରେମ' ବିଷୟରେ ଅଉ ଗୋଟିଏ ମୋଟା ବହି ଧରି ଗୋଟାକଯାକ ହୃଦୟରେ ଭୁଚ୍ଛା ହତାଶ ଗୁଡ଼ାଏ ଭର୍ତ୍ତି କରି !

ତଳେ ଅଗଣାରେ, ଏଇ ମାଇପିଟି ସମ୍ପର୍କରେ ଟିକାଟିପଣୀ ଭୁଚ୍ଛା ଅଳଣା କଥାଭାଷାଗୁଡ଼ାକ ବେଲକୁ ବେଲ ବେଶ ବଦ୍ରୁପାତ୍ମକ, ବେଶ ଈର୍ଷାମୟ ହୋଇଉଠୁଲା, ସେଇ କୁତ୍ସିତ କଥାଗୁଡ଼ାକରେ ରତିଏ ସତ ନ ଥାଏ, ସେଉଁଥିରେ ମୋ କାନରେ ପଡ଼ିଲାକ୍ଷଣି ଭାରି କଷ୍ଟ ହେଉଥାଏ ମତେ । ତା' ପାଖରେ ଥାଏ ଯେତେବେଳେ, କେମିତି ଗୋଟାଏ ଦୟା ଆସୁଥାଏ ତା' ପ୍ରତି, ଭୟ ହେଉଥାଏ ମନରେ ତା' ପାଇଁ, କିନ୍ତୁ ତା' ପାଖରେ ରହୁଥ ଏ ଯେତେବେଳେ କେତୋଟି ମୁହୂର୍ତ୍ତ ବିତଉଥାଏ ତା' ସାମନାରେ, ଦେଖୁଥାଏ, ଭୁହିଁ ଦେଉଥାଏ ତାର ତୀକ୍ଷ୍ଣ ଅଖି ଦୁଇଟିକୁ, ଦେଖୁଥାଏ ତନ୍ୱୀ ସେ, ତାର ସୁଚଳୁଟିର ମାର୍ଜିତ ସୁଷମା ମଧୁର ଲାବଣ୍ୟ, ସେଇ 'କମ୍ପାନିଆ' ଲକ୍ଷପତି ମୁହଁଟି ମନରୁ ମୋର ଉଭାଇ ଯାଉଥାଏ ଦୟା ଆଉ ଭୟର ଭାବନ କୁହୁଡ଼ି ପରି—

ବସନ୍ତ ଆସୁ ନ ଆସୁଣୁ ଗ୍ଲାଲିଗଲା ସେ । ଗ୍ଲାଲିଗଲା ସେ ବସନ୍ତରେ, ଅଉ ଥ୍ରାନଟି ଗ୍ରୁଡ଼ି ଗ୍ଲାଲିଗଲା କେତୋଟି ଦିନ ପରେ ତାର ସ୍ୱାମୀ ।

ଲୋକବାକ ଆସି ଚଢ଼ିଲା ଆଗରୁ ଖାଲି ପଡ଼ିଲା ସେମାନେ ଯେଉଁ ଘରଟିରେ ଥିଲେ । ସେଇ ଫ୍ଲାଟ ଘର, କଣ ମନ ହେଲା କେଜାଣି ସେ ଘର ଭିତରକୁ ପଶିଯାଇ ଅନେଇଦେଲି ଖାଲି ଖାଲି କନ୍ଥ, ମେଞ୍ଚାମାଞ୍ଚ ହୋଇ ବଙ୍କେଇଯାଇ କେଉଁଠି କେଉଁଠି ଲଗିଥାଏ ସେଥିରେ ଲୁହା କଣ୍ଟା କେତୋଟି,

କେଉଁଠି କେମିତି କଣ୍ଠା ନାହିଁ ଗାତଗୁଡ଼ାଏ ! ରଙ୍ଗ ଖୁଆ ବଦଶ୍ଚିଆ, ଧୂଳାକୁ ଧୂଳା ଦାଗ—ଛବି ସବୁ ଝଙ୍ଗା ହୋଇଥିଲା ଯେ କେବେ ! ଚକବଚକ ରଙ୍ଗ-ବୋଲା ଟଟାଟ୍ରେ ଏଣେତେଣେ ବସ୍ତୁ ହୋଇ ପଡ଼ିଥାଏ ଚଗ୍ ଚଗ୍ କାଗଜ ଖଣ୍ ଖଣ୍ କେତେ କଣ ନେପଥର ନ୍ୟୁକ୍, ଔଷଧ ବଟିକାର ଖାଲି ଗୋଲା-ଗୁଡ଼ାକ ଆଉ ଅତର ଶିଶି କେଇଟା, ଆଉ ସେଇ ସବୁ ଭିତରେ ଟନ୍ ଟନ୍ କରୁଥାଏ ପିତଳର ଗୋଟାଏ ବଡ଼ ଚକଚକିଆ ପିନ୍ !

ସେ କ ଦୁଃଖରେ ବିଷାଦରେ ଫୁଲି ଉଠିଲା ମନଟା ! ଆକୁଳ ହୋଇ ଉଠିଲି ଆଉ ଥରେ ଦେଖନ୍ତି କ ସେଇ ଠିକ ଘରଯାଠିକୁ ଦରଜିର । କହନ୍ତି ତାକୁ କହନ୍ତି, କେତେ କୃତଜ୍ଞ, କେତେ କୃତଜ୍ଞ ମୁଁ !

## ଦଶମ

ଦରଜି ଅଉ ଦରଜି ଭାର୍ଯ୍ୟା ଫ୍ଲାଟ ଘରଟିକୁ ଗ୍ରଣ୍ଡିବା ଆଗରୁ ତାଙ୍କର, ଅମ ଫ୍ଲାଟଘରଟିର ଭଜମହଲ ଘରଟିରେ ଆସି ହାଜର ହୋଇଥାନ୍ତି, ତାକୁ ଦଖଲ କରି ଯାଇଥାନ୍ତି—ସାନଟିଅଟିକ୍ ନେଇ କୃଷ୍ଣନୟନା ତରୁଣୀଟିଏ ଆଉ ତାର ମାଆ । ଖଇଲିଆ ଖଇଲିଆ ବାଳ ସେଇ ମାଆ ବୁଢ଼ୀର । ପାଟିରେ ମୁହଁରେ ଲାଗ ସବୁବେଳେ ଲାଗି ରହୁଥାଏ ହଳଦିଆସିଆ, ଷ୍ଟିକ ଧାରୁର ସିଗାରେଟଧରା । କେତେବେଳେ ଯେ ସେ ସିଗାରେଟ ଟାଣୁ ନ ଥାଏ ବୁଝେଁ । ତରୁଣୀଟି ଥାଏ ସୁନ୍ଦରୀ, ଖାସ ସୁନ୍ଦରୀ—ରୂପର, ନୃପସୀ ଯାହାକୁ କହନ୍ତି । ସ୍ୱରଟି ତାର ଗଭୀର ଆଉ ମଧୁର ଓ ପ୍ରୀତିକର ବି, କିନ୍ତୁ ବଡ଼ ଉଦ୍ଧତ। ହୁକୁମବାଲି ସେ—ଫାଟି ପଡ଼ୁଥାଏ ଗର୍ବରେ—ତାର ଗୋଟିଏ ସ୍ୱଭାବ ଥାଏ କଥା ହେଲାବେଳେ ଲୋକଙ୍କ ସାଥିରେ ମୁଣ୍ଡକୁ ଟେକ ନେଇ ଉପରକୁ ଝାଙ୍କିଦେଇ ଟିକଏ ପଛକୁ ଜାକ ଜାକ ନେଉଥାଏ କୁଞ୍ଚୁକୁଞ୍ଚେଇ ଆଖି ଯୋଡ଼ିକୁ । ସତେ ଯେମିତି ଦୂରରେ ବହୁ ଦୂରରେ ଥାଆନ୍ତି ସେମାନେ, ଦେଖାଯାଉ ନ ଥାନ୍ତି ସ୍ପଷ୍ଟ ଭାବରେ । ପ୍ରାୟ ପ୍ରତିଦିନ ତାର ସୈନିକ ନୌକର ଡ୍ରାଫାଇଭ ଗୋଟାଏ ବରୁ ନଳୀଗୋଡ଼ିଆ କସରା ଦେଉଥା ଆସି ଛିଡ଼ା କରାଉଥାଏ ତା ଦ୍ୱାରମୁହଁର ଝିଲମି ତଳେ—ଆଉ ସଙ୍ଗେ ସଙ୍ଗେ ବାହାରକୁ ଆସି ଦେଖା ଦେଉଥାଏ ସେ, ତରୁଣୀଟି—ଦେହରେ ଲମ୍ବା ଗୋଟାଏ ଇଷ୍ଟାତ ଫାଣୁ ମଖମଲ ଘୋଡ଼ଚଢ଼ା-ପୋଷାକ, ହାତରେ 'ଶୁଭ୍ର' ଏକ ଦସ୍ତାନା ଲହ୍ୱାର, ଗୋଡରେ ବୁଟ୍ ଜୋତା, ବାଦାମୀ । ଗୋଟିଏ ହାତରେ ଧରି ଗୋଟିଏ ହାତରେ ଟେକ ଧରି ତାର ଜଲଟଣି ଅଞ୍ଚଳକୁ ଆଉ ନାଲକାନ୍ତି ମଣିବସା ଘୁଙ୍ଗୁରକଟିର ଦେଣ୍ଟକୁ । ଆର ହାତରେ ଆଉଁସି ଲଗୁଥାଏ ଘୋଡାର

ନାୟିକାଟିକୁ ? ସେ ଜାବତି ସେଥିକରେ ତାଲପାଟିକୁ ଦେଖାଇ ତ୍ରୋଲା ଘୋଡ଼ାକ ଲେଜହଲାଇ ଖେଳାଉଥାଏ ଖୁରରେ ଆଞ୍ଚୁଡ଼ି ଆଞ୍ଚୁଡ଼ି ଚଟାଣ ଠୁକ ଠୁକ କରି ଉଠୁଥାଏ—ଗୋଟାକଯାକ ଦେହ ତାର ଥରି ଯାଉଥାଏ ଉତ୍ତେଜନାରେ ।

'ଗ୍ରେବ' 'ଗ୍ରେବ'—ଘୋଡ଼ାର ଚମତ୍କାର ଚିକ୍କଣ ଚିକ୍କଣ ଗ୍ରୀବାକୁ ଥ ପୁଡ଼େଇ ଥାପୁଡ଼େଇ ହରସରେଇ ମର୍ଦ୍ଦନ କରୁଥାଏ ତରୁଣୀଟି ।

ତା'ପରେ ସେ ପାଦ ଦେଇ ରୁପାସ୍ପେଭର ଆଣ୍ଠୁ ଉପରେ ଉଣ୍ଢାସିଆରେ କେଉଁ ଡ଼ଡି ଯାଉଥାଏ ବସି ପଡ଼ୁଥାଏ ହାଉଦାରେ, ଘୋଡ଼ାକୁ ଛୁଟାଇ ଦେଉଥାଏ ଦମେଇ ଦମେଇ କଦମ ଗ୍ଲବରେ ଦଉଡ଼ାଉଥାଏ ସମୁଦ୍ରଯାଏ 'ଡ୍ୟାମ' ବନ୍ଧ ଉପରେ, ସେ ଏମିତି ବସି ରହୁଥାଏ ହାଉଦାରେ, ଲାଗୁଥାଏ ସତେ ଯେମିତି ଯେ ଜନ୍ମ ହୋଇଥାଏ ସେଇଥିରେ ।

ଅପୂର୍ବ ଏକ ଦୁର୍ଲଭ ସୌନ୍ଦର୍ଯ୍ୟର ଅଧିକାରିଣୀ ସେ—ସେଇ ଯେଉଁ ସୌନ୍ଦର୍ଯ୍ୟ ସବୁବେଳେ ନୂତନ, ସବୁବେଳେ ଅସାଧାରଣ, ଅବର୍ଣ୍ଣନୀୟ, ଯାହା ହୃଲ୍ଲୁଳଲପ୍ରାର୍ଣ୍ଣ କରିଦିଏ ହୃଦୟକୁ ମଧୁର ଏକ ପ୍ରଗାଢ଼ ମଉଆଳିଆ ଆନନ୍ଦରେ, ତାକୁ ଦେଖିଦେଲେ ଖାଲି ମନେହେଉଥାଏ ମୋର ତାରି ଭଳି ନିଶ୍ଚୟ ତା'ରି ଭଳି ହୋଇଥିବେ ଦ୍ୟାନେ ଦ୍ୟ ପୋଏଟସ୍ବର୍ଗ ରାଣୀ ମାର୍ଗେଟଙ୍କ ଭ୍ୟାଲିଅର ଓ ଐତିହାସିକ ଉପନ୍ୟାସଗୁଡ଼ିକର ଆଉ ଯେତେଯେତେ ମନମୋହିନୀ ରମଣୀ ସୁଚାରୁରା ନାୟିକା ନାୟିକାମାନେ ସବୁ !

ରୂପସୀଟିକୁ ସବୁବେଳେ ଘେରି ରହିଥାନ୍ତି ଆମ ସହରରେ ମୃତସ୍ଥନ ସୈନ୍ୟବାହିନୀର ଅଫିସର ଯେତେକ । ମସ୍ତ ହେଲ ମାନେ ଆସି ପହଞ୍ଚି ଯାଉଥାନ୍ତି ତା' ପାଖରେ—ତା' ଘରେ ବଜାଉଥାନ୍ତି ପିଆନୋ, ସ୍ପେନିଶ ଗିଟାର—ନାଚୁଥାନ୍ତି, ଗାଉଥାନ୍ତି ଆମୋଦରେ ! ମେଜର ଏଲେସଭ, ଗ୍ରେଟ ଗ୍ରେଟ ଗୋଡ଼ ଦଉଟି ସେଥିରେ ନାଚକୁଦରେ ଟପି ଯାଉଥାଏ ଆଉ ସମସ୍ତଙ୍କୁ । କୋଡ଼ାଳିଆ ମଣିଷଟିଏ, ଧୂସରିଆ ପାଣ୍ଡୁର ବାଳର ଚକଟାଳିଆ ମୁହଁଟି ତାର—ଯେକୌଣସି ଡେଲର ମୁହଁ ଭଳି, ଗିଟାର ବଜାଉଥାଏ—ଚମତ୍କାର ଆଗ୍ରହର ବ୍ୟବହାରରେ ଥାଏ ଯୁବତୀଟିର ବିନୀତ ବଶଂବଦ··· ଅନୁରକ୍ତ ଭୃତ୍ୟଟିଏ ।

ଯୁବତୀଟିର କୁରୁଳୁକାରୁଳୁ କୃଷ୍ଣକୃଷ୍ଣିଆ ବାଳର ପାଶ୍ୱବର୍ତ୍ତିର ବସ୍ତ୍ରମର ଫିଅଟି ତାରିପରି ଆଖି ଝଲସେଇ ସୁନ୍ଦରୀ । ବଡ଼ ବଡ଼ ନୀଳ ଆଖି ଦୁଇଟିର ଚାହାଣୀ ଶାନ୍ତ ଗମ୍ଭୀର ପ୍ରତ୍ୟାଶିନୀ—ତାର ଗାମ୍ଭୀର୍ଯ୍ୟରେ ଏମିତି କିଛି ଥାଏ, ଯାହା ଶିଶୁସୁଲଭ ନ ଥାଏ ଆଦୌ ।

ବଡ଼ସକାଳୁ ରାତିଅଧ ଯାଏ ଝିଅଟିର ହେଲ ଜେଜେମା ବୃଢ଼ୀ ଘାଣ୍ଟି ହେଉଥାଏ ଘରକାମରେ—ତାକୁ ସାହାଯ୍ୟ କରୁଥାନ୍ତି ରାଗରେ ଗଡ଼ଗଡ଼ ହେବୁବେଳେ ଚୁପଚାପ ରୁପାଦେଉଭ ଆଉ ବେଶି ମୋଟାସୋଟା ଆଲେନ୍ୟୁନା

ପରସ୍ପରକାଟିଏ—ଧାଇଟିଏ ନ ଥାଏ ପିଲାଟି ପାଇଁ, ବଢ଼ୁଥାଏ ଘୁଆଁ ଘୁଆଁ, କାହାର ତତ୍ତ୍ୱ ନ ଥାଏ ତା'ପ୍ରତି, ଧନମାନ ଖେଳଖେଳକା ବାରଣ୍ଡାରେ ନ ହେଲେ ତା' ସାମନା କାଠଚଦା ପାଖରେ । ସଞ୍ଜ ବୁଡ଼ିଲେ ଅନେକ ସମୟରେ ମୁଁ ଘୁଙ୍କିଯାଉଥାଏ ତା' ପାଖକୁ, ଖେଳୁଥାଏ ତା' ସାଥିରେ—କେମିତି ଗୋଟାଏ ମମତା ଆସିଗଲା ତା'ପ୍ରତି, ସେ ବି ଆଦରିଗଲା ମୋତେ, ପ୍ରାୟ ପ୍ରତିଦିନ ମୋଠୁଁ ପରୀଗପ, ବୁଢ଼ୀମା କାହାଣୀ ଶୁଣୁ ଶୁଣୁ ଶୋଇପଡ଼ୁଥାଏ ମୋ କୋଳରେ ନିଶ୍ଚିନ୍ତରେ । ଶୋଇପଡ଼ିଲେ ମୁଁ ତାକୁ କାନ୍ଧରେ ପକେଇ ନେଇ ଶୁଆଇ ଦେଇ ଆସୁଥାଏ ବଖରାରେ । ଯୁହୁଁ ଯୁହୁଁ ଏମିତି ଗୋଟିଏ ବେଳ ଆସିଲା, ଏମିତି ଅବସ୍ଥା ଉପୁଜିଲା ଯେ ତାକୁ ମୁଁ ଶୁଆଇ ନ ଆସିଲେ ଯାଇ ଖଟରେ ବି ବଖରାକୁ ଚଳେ ନାହିଁ । ସେ ଯେତେବେଳେ ଶିଶୁ ସଦନକୁ ଗଲା, ମୁଁ ଯାଇ ସେଠି ଗୋଡ଼ ଦେଲା ମାତ୍ରେ କୁଲୁକୁଲେଇ ଉଠିଲା । ମୋତେ ଦେଖିଲାକ୍ଷଣି ଆଗ ତାର କୁଲୁବୁଲିଆ ଟିକି ହାତଟିଏ ବଢ଼ାଇଦେଇ ବଡ଼ିଆ ଗୁରୁତ୍ୱପୂର୍ଣ୍ଣ ଭଙ୍ଗୀରେ କହିଲା :

"ନମସ୍କାର, କାଲି ସକାଳଯାଏ ନମସ୍କାର, ଜେଜେମା ମ, ଜେଜେମା ! ଆଉ କଣ କହନ୍ତି ଯେ" ପଚାରିଲା ତା' ଜେଜେମାକୁ କେତେବେଳେ କେମିତି ।

"ଆହା ଠାକୁରେ ଆଉଷ ଦଅନ୍ତୁ ଲୋ, ଯୋଡ଼େଇଯାଡ଼େଇ ରଖନ୍ତୁ ଲୋ, ମୋ ନାତୁଣୀଟିକୁ" ! ଦାନ୍ତସନ୍ଧିରୁ ଅଉ ନାକପୁଡ଼ାରୁ ସରୁଆ ସରୁଆ ଫୁଆର ଉଠାଇ ସିଗାରେଟ୍ ଧୂଆଁର ଉତ୍ତରଦେଲା ଜେଜେମା !

"ଠାକୁରେ ଯୋଡ଼େଇଯାଡ଼େଇ ରଖନ୍ତୁ ଲୋ ତୋତେ କାଲି ସକାଳ ଯାଏ । ଯାଏ ମୁଁ ଶୋଇବି ଯାଏଁ ।" ଝାଲରଲଗା ନରମ ଶେଯଟିରେ ଜାକିଜୁକି ହୋଇ କୁରୁରକାବୁର ହୋଇ ଶୋଇ ଶୋଇ ଦୋହରେଇ ହେଲା ଝିଅଟି ।

"କାଲି ସକାଳେ ନୁହେଁ ଲୋ ସବୁବେଳେ," ସଂଶୋଧିତ କରିଦେଲା ଜେଜେମା ।

"ମ ଆପଣା କାଲି କଣ ସବୁବେଳର ନୁହେଁ !"

ଭଲ ପାଉଥାଏ ଝିଅଟି, ଭଲ ପାଉଥାଏ 'ଆପଣା କାଲି' ଶବ୍ଦ ଦଓଟିକୁ ଅଉ ଯାହା ସବୁ ତାକୁ ଭଲ ଲାଗୁଥାଏ, ତା'କୁ ବଦଳେଇ ପଠାଇ ଦେଉଥାଏ କାଲାନ୍ତରିତ କରି ନେଉଥାଏ ଭବିଷ୍ୟତକୁ—ମାଟିରେ ଢେମ୍ପଲଗା ଫୁଲପେନ୍ଥାଏ କି ଗଛଗୁଳ୍ମର ଅଗିଡ଼ାଳ ଝଣ୍ଟେ ଦଣ୍ଟେ ପୋତିଦେଇ କହୁଥାଏ :

"ଯାଅରେ ଯାଆ' ବଢ଼ିଯିବୁ ହୋଇଯା କାଲି ସକାଳକୁ !"

"କାଲି ଆପଣା'କାଲି ମ, କିଣିବି ଘୋଡ଼ାଟିଏ ଆଉ ତା ଉପରେ ଚଢ଼ି ଛୁଟିବି ମାମି ପଶକା !"

ବୁଦ୍ଧିମନ୍ତୀ ଝିଅଟିଏ କିନ୍ତୁ ଚେତନଶୀଳ ନ ଥାଏ ସେମିତି କିଛି ! ଖେଳୁ ଖେଳୁ ଖେଳ ମଝିରେ ଅନେକ ସମୟରେ କେମିତି ତନ୍ଦ୍ରାମଗ୍ନ ହୋଇଯାଉଥାଏ ଆଉ ଏକାବେଳକେ ଅପ୍ରତ୍ୟାଶିତ ଭାବରେ ପଚାରି ଦେଉଥାଏ :—

"ପାଦ୍ରୀମାନେ ମାଇପିଙ୍କପରି ବାଳ ରଖିଛନ୍ତି କାହିଁକି ?"

ତନେ ପୋକ କେଉଁଟା କାମୁଡ଼ିଦେଲେ ତାଙ୍କୁ, ତାଙ୍କ ଆଙ୍ଗୁଠି ଦେଖାଇ ସତର୍କ କରିଦେଲ :

"ଦେଖ ସାବଧାନ ! ବାଟ ଧର ନଜର, ନଇଲେ ଠାକୁରଙ୍କ ତାକିବ ପ୍ରାର୍ଥନା କରିବ, ଝଗଡ଼ା କରିବେ ସେ ଚମରସବୁ, ଝଗଡ଼ା କରିବେ କଣିଆ ସେ ଝଗଡ଼ାକରି ପାରନ୍ତି ଯାହାର ଇଚ୍ଛା ତାହାର, ଏମିତିକି 'ମାମି'ର ।"

ବେଳେବେଳେ ବିଭିନ୍ନ ସ୍ନିଗ୍ଧ ଶାନ୍ତ ବିଷଣ୍ଣତାରେ ଆଚ୍ଛନ୍ନ ହୋଇପଡ଼ୁଥାଏ ସେ । ମୋ ଗ୍ରୁପରେ ଲଷିଯାଇ, ସେ କି ଆଶାପ୍ରୀ ନୀଳ ଆଖିଯୋଡ଼ିକୁ ଉପରକୁ ଆକାଶକୁ ଟେକି କହୁଥାଏ ସେ :

"ବେଳେବେଳେ ଗାଳିଦିଏ ଜେଜେମାଟା କାନ୍ତ ମମି ନାଁରେ କେତେ କିଛି ଟାଣିକରି କହେ ନାହିଁ ଗାଳି ଦିଏ ନାହିଁ । ଖାଲି ହସେ ଆଉ ହସେ । ମମିକୁ ଭଲ ପାଆନ୍ତି, ସମସ୍ତେ ଭଲ ପାଆନ୍ତି, କାହିଁକି ନା ତାର ତ ସମସ୍ତ ନ ଥାଏ କେତେ-ବେଳେ କେଉଁ କଥା କୁ ଆଉ ସବୁବେଳେ ତ ଲୋକେ ଆସନ୍ତି ତା ପାଖକୁ, ତାକୁ ଅନେଇ ରହନ୍ତି—କାହିଁକି ନା ସେ ସୁନ୍ଦର, ସେ ଏତେ ସୁନ୍ଦର ମନେ ମ ଅପୂର୍ବ ମମି ଅପୂର୍ବ, ନାଇଁ ? ହଁ, ମ ଓଲେସଭ ପରି କହେ ଚମତ୍କାର ଖୁବ ଚମତ୍କାର ମମିଟା !"

ଯେଉଁ ଦୁନିଆ ସେଇଁ ଜଗତ ସହିତ ମୋର ଜଣାଶୁଣା ନ ଥାଏ ପରିଚୟ ନ ଥାଏ ଆଦୌ, ତାହାରି ବିଷୟରେ ବିଶଦ ବିବରଣୀ ଶୁଣିବାକୁ ଖୁସି ଲାଗୁଥାଏ ମୋତେ । ସେ କି ଆକୁଳ ଆବେଗରେ ବ୍ୟଗ୍ର ଉତ୍ସାହରେ ଗପୁଥାଏ ତା' ମାଆ ବିଷୟରେ—ମୋ ପାଖରେ ଖୋଲି ଦେଉଥାଏ ଗୋଟାଏ ନୂତନ ଜୀବନ—ମନକୁ ପୁଣି ମନକୁ ମୋର ଆଣିଦେଉଥାଏ ରାଣୀ ମାର୍ଗଟାର କାହାଣୀ ! ଏହାହିଁ ଯେମିତି ବଢ଼ାଇଦେଲେ ବନ୍ଧୁଗୁଡ଼ିକ ପ୍ରତି ମୋର ଅନୁରାଗ, ମୋର ଆସ୍ଥା— ଆଉ କରି ସବୁ ଘଟୁଚି ମୋର—ମୋ ସମ୍ବନ୍ଧରେ ସେଥିପ୍ରତି ଆଗ୍ରହ ।

ତନେ ସଞ୍ଜରେ ବସିଥାଏ ମୁଁ ଝିଅଟିକୁ ଯେନ—ମୋ ଗ୍ରୁପରେ ଲଖି ଚାଲେଇଥାଏ ସେ—ବସିଥାଏ ମୁଁ ମୋ ମାଲିକଗୁଡ଼ାଙ୍କ ଅପେକ୍ଷାକରି, ବୁଲିଯାଇଥାନ୍ତି ସେମାନେ, କେତେବେଳେ ଫେରିବେ ଭାବି ଭାବିକା ଗୁହିଁଥାଏ ମୁଁ ସେମାନଙ୍କ ବାଟକୁ । ଯେ ତାରେ ଚଢ଼ି ଆସି ପହଞ୍ଚିଲ ତାର ମାଆ, ଥରକାନ ଉତ୍ସାହରେ ଓହ୍ଲେଇଲ କିନ୍‌ ଉପରୁ—ମୁଣ୍ଡଟିକୁ ଗ୍ରୁଟିଦେଇ ପଛଆଡ଼କୁ ପଚାରିଲ ।

"ଶୋଇପଡ଼ିଲ୍ କି ?"

"ହଁ !"

"ସତରେ ?"

ସୈନିକ ରୁଫ ସ୍ପେଭ ଧାଇଁ ଆସିଲ କୁଆଡ଼ୁ, ଘୋଡ଼ାକୁ କଲାସ୍ଟ'ର ଧରି ଟାଣିନେଇ ଗ୍ଲଲା । ଗ୍ଲବୁକଟିକୁ ଖୋସିଦେଇ କମରପଟିରେ ଯୁବତୀଟି ହାତ ବଢ଼େଇଦେଇ କହିଲ :

"ଦେ ମୋତେ, ଦେ ତାକୁ ।"

"ନେଇଯାଉଚ ମୁଁ ଗୁଲ ।"

"ନା, ନେବୁ ନାହିଁ ତୁ !" ଭଦ୍ରମହିଳା ପଟିକର ଉଠିଲେ ପାଦ ବାଡ଼େଇ ଭୂଇଁ ଉପରେ— ମୁଁ ଯେମିତ ତାଙ୍କର ଘୋଡ଼ା ମନେକଲେ ସେ ।

ଉଠିପଡ଼ିଲ ଝିଅଟି, ମିଛିମିଛି ଜଳ ଆଖିଯୋଡ଼କୁ, ଦେଖିପକାଇ ତା' ମାଆକୁ ହାତ ବଢ଼େଇଦେଲ ତା' ଆଡ଼କୁ—ଦୁହେଁ ପଶିଗଲେ ଘର ଭିତରକୁ ।

ମୋ ଉପରେ ପାଟିତୁଣ୍ଡ ହେବା ଏଇଟା ତ ମୋର ଦେହସୁହା ହୋଇ ଯାଇଥାଏ, କିନ୍ତୁ ବିଶେଷ ଭାବରେ ଖରାପ ଲଗିଲ ଅସୁଝିଆ ଲଗିଲ କାବିଲ ଯେତେବେଳେ ଏଇ ମାଇପିଟା ବି ପାଟି କରେ । କିଏ ବା ତା କଥା ଶୁଣନ୍ତା ନାହିଁ । ଯେତ୍ତେ ଥରକନ ନରମରେ ସେ ଯାହା ମାଗିଥାନ୍ତେ ସମସ୍ତେ ତ ତା' ଦେବାକୁ ତା' ଦାବୀ ତୁଲେଇବାକୁ ଉଲ୍ଲସିଥାନ୍ତେ !

ଅଳ୍ପ କେତୋଟି ମିନଟ ଯାଇଥାଏ କି ନାହିଁ, ଆଳଆସେଇ ପଜଗୁଣକାଟି ଅସି ଡାକିଲ ମୋତେ, ପିଲଟି, ସେଇ ଝିଅଟି ଏକାବେଳକେ ଜିଦ୍ ଧରି ବସିଚ ମୋତେ ରାତିକ ପାଇଁ ନମସ୍କାର ନ ଜଣେଇ ମୋଠୁ ରାତିକ ପାଇଁ ଛୁଟି ନ ନେଇ ବିଛଣାକୁ ଯିବ ନାହିଁ, ଶୋଇବ ନାହିଁ !

ମୋ ମନରେ ଯେ ଟିକିଏ ଗର୍ବ ନ ଆସିଲ ନୁହେଁ; ସେମିତକା ସେମିତକା ଭାବଟି ଧରି ବୈଠକ ଘରେ ପଶିଲି— ସେଇ ସେଇଠି ଯୁବତୀଟି ଝିଅଟିକୁ କୋଳରେ ଧରି ବସିଥାଏ, ତରବରରେ ତା ଅଙ୍ଗୀ ପାଲଟଉଥାଏ ।

"ହୁଁ, ହେଇ ସେ ଆସିଲ, ହେଇ ହେଲ ତୋ ବିଭୀଷଣ ଅସୁରଟା !" କହିଲ ସେ ଯୁବତୀଟି ।

"ସେ କାହିଁକି ଅସୁର ହେବ, ନା, ସେ ତ ମୋ ସାଙ୍ଗ ଖେଳ ସାଙ୍ଗ !

"ସତେ ? ବେଶ୍ ତେବେ ତୋ' ଖେଳସାଙ୍ଗକୁ ଗୋଟାଏ ଉପହାର ଦିଆଯାଉ, କେମିତ ଦେବା ତ ?"

"ଓ ହଁ, ହଁ, ନେ, ନେ, ମା, ଦେଖ ମା, ଦେଖ !"

"ଠିକ ତା' ହେଲେ, ଯା' ରୁ ବିଛଣାକୁ ଯାଆ ମୁଁ ତାକୁ ଦେବି, କଛି ଦେବ !"

"ନମସ୍କାର, କାଲି ସକାଳ ଯାଏ ନମସ୍କାର ହାତଟି ବଢ଼ାଇ ହାତରେ ମୋର ଟିକି ହାତଟି ମିଶାଇବା ପାଇଁ କୁଲୁକୁଲୁ ହୋଇ କହିଲ ଝିଅଟି, "ଠାକୁରେ ଅନେଇ ଥାଆନ୍ତୁ, ରଖନ୍ତୁ, ସକାଳଯାଏ, କାଲି ସକାଳ ଯାଏ !"

"ଏକଥା କହିବା ପାଇଁ କିଏ ତତେ ଶିଖାଇଚ- ଲେ, କିଏ ବିସ୍ମୟରେ ପାଟିକରି ଉଠିଲ ତା' ମାଆ ! "କିଏ ? କେଜେମା ?"

"ହୁଁଉ !"

ଝିଅଟି ଗୁଲଗଲ ପରେ ଶୋଇବା ପାଇଁ ସେ ଯୁବତୀ ମାଇପିଟା ଠାରିଲ ମୋତେ ପାଖକୁ ।

"କଣ ଦେବ ତୋତେ ?"

ଉତ୍ତର ଦେଲି କିଛୁ ନାହିଁ, କିଛୁ ଲୋଡ଼ା ନାହିଁ ମୋର । କିନ୍ତୁ, କିନ୍ତୁ ହୁଏତ ମତେ ବନ୍ଧୁକଣ୍ଠେ ତ ଯୋଗାଇଦେବ ଏଣି ସେପରି ଦେବା ପାଇଁ ।

ମୋ ଓଠଟିକୁ ଛୁଇଁ ଟେକିଦେଲି ଟିକିଏ ତାର ହସ୍ତ କୋମଳ ସୁବାସିତ ଅଙ୍ଗୁଳିରେ, କହିଲି ସେ ହସି ହସିକା ପୁଲକିତ ସ୍ୱରରେ ଥର ଥର ।

"ତୁ କେବେ ପଢ଼ିବାକୁ ଭଲ ପାଉ ! ଭଲ ପାଉ ପଢ଼ିବାକୁ ନାଇଁ ? କି କି ବହି ପଢ଼ିଚୁ ସେ ?"

ହସିଲି ବେଳେ ଆହୁରି କମନୀୟ, ଆହୁରି ଲାବଣ୍ୟମୟୀ ହୋଇଉଠିଲି ସେ ! କେମିତି ଗୋଟାଏ ଅନ୍ତୁଆରେ ପଡ଼ି ବଣା ହୋଇଯାଇ କହି ପକାଇଲି ଏଣୁ ତେଣୁ କେତୋଟି ଉପନ୍ୟାସର ନାଆଁ ଯାହା ଯେମିତି ମନେପଡ଼ିଲା ।

"ମ, ସବୁ କଣ ଏମିତି ଦେଖିଲୁ ଯେ ମନକୁ ପାଇଗଲା, ଲଷିଗଲା ମେଥିରେ ? ଟେବୁଲ ଉପରେ ଠୁକ ଠୁକ ବାଜା ବଜେଇ ତାଲ ଦେଇ ଦେଇ ପଚାରିଲା ସେ ।

ଦେହରୁ ତାର ଝରଝର ପସର ଆସୁଥାଏ ତୀବ୍ର, ସେ କି ପ୍ରବଳ ସୁଗନ୍ଧ କେତେ କୃଦ୍ରିମର, ଅଦ୍ଭୁତ ଭାବରେ ମିଶିଯାଇ 'ଘୋଡ଼ା' ଝାଳର ଗନ୍ଧରେ ! ପ୍ରଲମ୍ବିତ ଭ୍ରୁରୁ ତଳରୁ ତାର ସେ କି ଶୃଙ୍ଗାରୀ ଚାହାଁଣି ମତେ ପଡ଼ିବାକୁ ଲାଗିଲା ସେ ସେମିତି ଚଞ୍ଚଳ କୁଳ ସାତରେ ! ଆଗରୁ କେହି କେବେ ଏପରି ଅନେଇ ନ ଥିଲେ ମତେ ।

ବହିଘର ଝାଡ଼ଟିଏ ଭଳି ଦଶିଲା ମତେ, ସେଇ ଘର ବର୍ଷୁରଟି, ସେଥିରେ ଭର୍ତ୍ତି ହୋଇ ରହିଥିବାରୁ ସୁନ୍ଦର ସୁନ୍ଦର ନାନାପ୍ରକାର ଅସବାବ୍‌ପତ୍ର, ଗାଲିଚା ବିଛଣା ଚୌକି ଟେବୁଲ କି କଣ ! ଝରକା କେତୋଟି ଏକାବେଳକେ ଆଚ୍ଛାଦିତ ହୋଇ ଲୁଚି ରହିଥିଲା ଝରଣ ଲତାଗୁଳ୍ମର ଗହଳରେ—ଚାଲିଟିର ଚୂନର ଧବଳ ଟାଇଲଗୁଡ଼ିକ ଝଲମଲ କରୁଥିଲା ଗୋଧୂଳିର ଅଳ୍ପ ଅଳ୍ପ ଆଲୁଅ ଆଉ ଅନ୍ଧାରରେ, ପାଖରେ ତାର ଥୁଆ ହୋଇଥିଲା ଚକ୍ ଚକ୍ କଳା ପିଆନୋଟିଏ । କାନ୍ଥରେ ଝୁଲୁଥିଲା ଲମ୍ବ ଲମ୍ବ ଆକୃତିର ମୋଟା ଚମଡ଼ାରେ ପ୍ରାଚୀନ ସ୍ଥାପତ୍ୟ ଶୈଳୀର ଅସ୍ପଷ୍ଟ କଳାଆସିଆ ଅକ୍ଷରରେ ଲେଖାର ଭରପୂର ପୁରାଣ-ପତ୍ରିକା କେତେଟି, ଫିକାଲିଆ ଅନୁଜ୍ଜ୍ୱଳ ସୁନେଲି ଫ୍ରେମରେ ବନ୍ଧେଇ ହୋଇ, ଆଉ ସେଥିରୁ ଓହଳିଥିଲା ଚମଡ଼ା ରଶିରେ ବଡ଼ ବଡ଼ ସିଲ ବା ମୋହର । ଏଇ ସବୁ ଜିନିଷ ପ୍ରତ୍ୟେକଟି ଅନନ୍ୟ ଭାବରେ ଅନେଇ ରହିଥିଲେ ଚନ୍ଦ୍ରୀ ସେଇ ମହିଳାକୁ ହୃଦୟରେ ସମ୍ଭ୍ରମରେ, ମୋରି ପରି ଠିକ୍ !

ପରୁପର୍ଯ୍ୟନ୍ତ ଟୀକା ଟିପ୍ପଣୀ ଦେଇ ବୁଝେଇଲି ତାଙ୍କୁ ଜୀବନରେ କାହିଁ କେଉଁଠି ତେଜ ନାହିଁ, ଆଲୋକ ନାହିଁ—ବଡ଼ କରୁଣ, ବଡ଼ କଠିନ ଜୀବନ ; କିନ୍ତୁ ପାସୋର ହୋଇଯାଏ, ପୋଛି ହୋଇଯାଏ, ମନରୁ ଏସବୁ ବନ୍ଧଧର ବସିପଡ଼ିଲେ, ମଜ୍ଜିଗଲେ ପଢ଼ାରେ !

"ସତେ ନା ?" ଉଠୁ ଉଠ୍ ହୋଇ ହିଜଏ ହାତରେ ସଚକିତ ସ୍ୱରରେ କହିଲା ସେ ! ବଡ଼ିଆ କହିଲୁ ତ ଚେଡ଼ିଆ କଥା, ସବୁତ ହୁଏତ ଠିକ ଠିକ କହୁନ୍, କାନ୍ତ.କଣ ହେବ, ଉପାୟ କଣ ? ବହି କେତୋଟି ଦେଖିପାରିଲେ ଖୁସି ହୁଅନ୍ତି । ଖାଲି ଏରିଷ୍ଟଟଲ୍ ଯାହା ଖଣ୍ଡିଏ ଚୋରି ନାହିଁ ମୋ ପାଖରେ ! ଆରେ ହଁ, ହେଇ, ଏ ଖଣ୍ଡକ ଦେଇପାରୁ ରୁ !"

'କାଉଚ୍' ଉପରୁ ହଳଦିଆ ମଲାଟର ପୁରୁଣା ଦରଛିଣ୍ଡା ବହିଟିଏ ଉଠାଇ ଆଣିଲା ।

"ଏଇ ଖଣ୍ଡିକ, ଏଇ ପ୍ରଥମ ଭାଗଟି ପଢ଼ି ସାରିଲେ ଦେବ ଦ୍ୱିତୀୟ ଭାଗଟି— ଦେବ ସୁନ୍ଦର ଭାଗ ବହିଟିର ।"

ଫେରିଆସିଲ ପ୍ରିନ୍‌ସ ମେସ୍‌ଖେରେସ୍କିଭ ଲେଖା ସେଣ୍ଟ ପିଟର୍ସବର୍ଗର ରହସ୍ୟ ଏ ବହିଖଣ୍ଡିକ ନେଇ । ଲାଗିପଡ଼ି ପଢ଼ିଲି ବେଶ ଅଧ୍ୟବସାୟ ସହିତ । କିନ୍ତୁ ଅଳ୍ପକରେ—ଶୀଘ୍ର ଖୁବ ସାଫ ସାଫ ଜଣାପଡ଼ିଲା ସେଣ୍ଟ ପିଟର୍ସବର୍ଗର "ରହସ୍ୟ" ଥିଲ ମାଡ୍ରିଦ ବା ଲଣ୍ଡନ ବା ପାରିସର ରହସ୍ୟର ଆଦର୍ଶ ଅନୁକରଣୀୟ ଭାବରେ ଅନୁକରଣ । ବହିଟିରେ କେବଳ ଟିକେ ମଜାକୁ ପାଇଲି, ମୁକ୍ତ ଆଉ ମୃଦ୍‌ଗର କାହାଣୀଟି ।

"ମୁଁ ତୋଠୁ ଭଲ, ତୋଠୁ ବଡ଼," ମୁକ୍ତ କହିଲା, "କାହିଁକି ନା ବିଚକ୍ଷଣ ମୁଁ, ବିଜ୍ଞ ମୁଁ !"

"ନା, ନା, ମୁଁ ଭଲ ତୋଠୁ, ମୁଁ ବଡ଼ କାହିଁକି ନା ବଳୁଆ ଶକ୍ତିବାନ ମୁଁ," ଠୋକିକି ଜବାବ ଦେଲା ମୃଦ୍‌ଗର ।

କିଛି ସମୟ ଯୁକ୍ତିତର୍କ, ବାକ୍‌ବିତଣ୍ଡା ଚାଲିଲା ଦୁହିଁଙ୍କ ଭିତରେ, ତା'ପରେ ଆରମ୍ଭ ହୋଇଗଲା ଧସ୍ତାଧସ୍ତି ଲଢ଼େଇ । ମୁକ୍ତକୁ ବେଶ ପାନେ ଶୁଣାଇଲେ, ଆଚ୍ଛା କରି ପାହାର ପରେ ପାହାର ଚଢ଼େଇଲା ମୃଦ୍‌ଗର । ଆଉ ଯେତେ ଦୂର ମନେ-ପଡ଼ୁଚି, ଖଣ୍ଡିଆ ଖାବରା ହୋଇ ଘାଇହୋଇ ଶେଷରେ ହାସପାତାଳରେ ପ୍ରାଣ ହରେଇଲା ମୁକ୍ତ ।

ବହିଟିର ଚରିତ୍ରଗୁଡ଼ିକଙ୍କ ମଧ୍ୟରେ ଗୋଟାଏ ଚରିତ୍ର ଥିଲା ସନ୍ତ୍ରାସବାଦୀ ଧ୍ୱଂସକାମୀ "ନିହିଲିଷ୍ଟ" ମନେ ପଡ଼ୁଚି । ପ୍ରିନ୍‌ସ ମେଶଚେରେସ୍କିଙ୍କ ମତରେ ନିହିଲିଷ୍ଟ ମାନେ ଏତେ ଘୃଣ୍ୟ ଯେ କୁକୁଡ଼ା ଛୁଆଟିଏ ଯାଉଥିବ, ତା ଉପରେ ଯଦି ଆଖି ପଡ଼ିଯିବ ସେଇ ନିହିଲିଷ୍ଟର ତାହା ଭସ୍ମ ହୋଇଯିବ । ନିହିଲିଷ୍ଟ ଶବ୍ଦଟାକୁ ମନେକରି ଶିଖିଲି ଅପମାନକର, ଅଭଦ୍ର ! ଏତିକରୁ ଅଧିକା ଅଲଗା କିଛି ବୁଝି ପାରିଲି ନାହିଁ । ଏଥିରେ ମଜାଟା କେମିତି ଦବ ଦବ ଚାଲି, ଉଦପିଆ ଲାଗିଲା । ସ୍ପଷ୍ଟ ଧାରଣା ନେଲି ଭଲ ବହିଗୁଡ଼ିକ ବୁଝିବା ପାଇଁ

ଅଛନ ମୁଁ । କ୍ଷଣେ ପାଇଁ ହେଲେ ମୋର ସନ୍ଦେହ ଆସି ନ ଥିଲା ଏଇ ବହିଟି ସମ୍ବନ୍ଧରେ—ଏହାର ଉତ୍‌କର୍ଷ ପଣ ଯେଉଁ । ନା ସେଭଳି ଅରୂପ ରୂପସୀ, ସେଭଳି ମହନୀୟା ଗୁରୁତ୍ୱମୟୀ ନାୟିକା କେବେ ଖରାପ ବହି ପଢ଼ିନ୍ତା !

“କେମିତି ଲାଗିଲା ? ବେଶ୍ ଉପଭୋଗ୍ୟ ନା ?” ପଚାରିଲେ ସେ ଯେତେବେଳେ ଫେରାଇଲି ତାଙ୍କୁ ମେଣ୍‌ଟରେସ୍ଲିଙ୍କ ଉପନ୍ୟାସଟି ।

ଭଲ ଲାଗିଲା ନାହିଁ—ଏ କଥା ମାନିନେବା ତ କଠିଣ ଥିଲା ପ୍ରକୃତରେ ମୋ ପାଖରେ, କେମିତି ଏହା କହି ତାଙ୍କୁ ଅପମାନିତ କରିଥାନ୍ତି, ତା' ମନରେ ଆଘାତ ଆଣିଥାନ୍ତି ଯେ !

ସେ କିନ୍ତୁ ହସିଲା, ହସିଲା ଖାଲି, ଆଉ ଅଖିପିଛୁଳାକେ ଉଭାନ ହୋଇଗଲା ତାର ଶୋଇବା ଘର ଆଡ଼ ଦ୍ୱାରମୁହଁର ପରଦା ପଛପଟରେ, ଆଉ ପୁଣି ବାହାରି ଆସିଲା, ସଙ୍ଗେ ସଙ୍ଗେ ନାଲି ମରକୋ ଚମଡ଼ା ବନ୍ଧେଇ ଗ୍ରେଟ ବହିଟିଏ ଧରି ହାତରେ ।

“ଖୁବ୍ ଭଲ ଲାଗିବ ଏଇଟି । ନେଇ ଉପଭୋଗ କରିବୁ, କିନ୍ତୁ ଦେଖ୍ ସାବଧାନ ମଇଳା କରିବୁ ନାହିଁ ଯେମିତି !”

ବହିଟି ପୁଶ୍‌କିନଙ୍କ କବିତାବଳୀ । ଏକା ନିଃଶ୍ୱାସକେ ପଢ଼ିଗଲି ବହିଟିକୁ—ବସିବା ଥାନରୁ ମୁହୂର୍ତ୍ତେ ପାଇଁ ନ ଉଠି—ସେ କି କ୍ଷୁଧା ! କି ଲାଳସା ସ୍ୱାଦରେ ଅଣଆସ୍ୱାଦ ହୋଇ ଯେପରି—ଠିକ୍ ଯାହା ଲୋକ ଅନୁଭବ କରେ, ଯେତେବେଳେ ସେ ନିଜେ ଯାଇ ପହଞ୍ଚେ, ଅତୁଳ ଏକ ଅପୂର୍ବ ଏକ ରମଣୀୟ ସ୍ଥାନରେ, ପ୍ରତ୍ୟେକଟି କୋଣ ବିକୋଣ ଯାହାର ସେ ଏକ ସଙ୍ଗରେ ଖୋଜି ଖୋଜି ଆବିଷ୍କାର କରିବାକୁ ଚାହେଁ, ଆତୁର ହୋଇ । ସେଇ ଯେମିତି ଗୋଟାଏ କଂସନ୍‌ସନ୍ତ୍ରା ପକ୍ଷୀଙ୍କ ପାଣିପାଟରୁ ବାହାରି ଆସି ଶୁଖିଲାପାଚିଲା ଖାସ୍ ଝଲମଲ ଫୁଲରେ ଫୁଲରେ ଭରା ସୁନ୍ଦର ଉପତ୍ୟକାଟିରେ ଆପଣାକୁ ଆପେ ଭେଟିବା ଭଳି ଯେଉଁଠି ନିମେଷକ ପାଇଁ ଏକାବେଳକେ ବିହ୍ୱଳ ହୋଇ ମୁଗ୍ଧ ହୋଇ ଛୁଟା ହୁଏ ଟିକିଏ ସେ ଉପତ୍ୟକାଟିର ଏ ମୁଣ୍ଡରୁ ସେ ମୁଣ୍ଡକୁ ସେ ମୁଣ୍ଡରୁ ଏ ମୁଣ୍ଡ ଯାଏ ଧାଇଁ ଲାଗିବା ଯାଏ । ପ୍ରତ୍ୟେକ ଥର ଅନୁଭବ କରି କରି ଶିହରଣ, ଆନନ୍ଦର ଶିହରଣ କଅଁଳ କଅଁଳ ନରମ ନରମ ଘାସ ଶେଯରେ ତାର ପାଦ ଛୁଉଁ ନ ଛୁଉଁ ଛୁଇଁ ନ ଛୁଇଁ ।

ଏମିତି ଚମତ୍କୃତ ହୋଇଗଲି ପୁଶ୍‌କିନଙ୍କ କବିତାଗୁଡ଼ିକର ସରଳ ସହଜ ସ୍ୱର ମାଧୁର୍ଯ୍ୟରେ ଗତିମୟତାରେ ଯେ ଅନେକ ଦିନ ଯାଏ ମୋତେ ଲାଗିଲା ଯାହା ଗଦ୍ୟରେ ଲେଖା, ତାହା ଶୁଷ୍କ, ଅପ୍ରାକୃତିକ, କୃତ୍ରିମ ! ଏଣୁ ଗଦ୍ୟ ଲେଖା ପଢ଼ିବା କେମିତି କଷ୍ଟକର ହୋଇଉଠିଲା ମୋ ପକ୍ଷରେ ! “ରୁସ୍ଲାନ ଅଉ ଲୁଦ୍‌ମିଲା”ର ଉପକ୍ରମଟି ମନେହେଲା, ସବୁଠୁ ବଳି ବୁଢ଼ୀମା କାହାଣୀଗୁଡ଼ିକର ଚମ୍ପୁଡ଼ା ନିର୍ଯ୍ୟାସ ଭଳି । ଅଭିଭୂତ ହୋଇପଡ଼ିଲି କେତୋଟି ପଦର ସରସ ସୁନ୍ଦର ସାର୍ଥକ ବିନ୍ୟାସରେ—

କେତେ ନାମହୀନ ପଥ କଡ଼େ କଡ଼େ,
ଅନାମିକା ପଶୁ ଚଲାପଥ ପଡ଼େ ।

ଏଇ ଚମତ୍କାର ପଦଟିକୁ ଯେତେ ଯେତେ ଥର ଆଉଡ଼ାଇଲି ମନକୁ ମନ ଆବୃତ୍ତି କଲି ମୁଁ, ସେତେ ସେତେ ଥର ମୋ ଆଖିରେ ସତେ ଯେପରି କଳ୍ପନାରେ ଆଙ୍କିସି ଉଠିଲା, କ୍ୱଚିତ କେବେ ସଚେତନ ଅନୁଭୂତିରେ ଧରାପଡ଼ି ନ ଥିବା ସେହି ପରିଚିତ, ବେଶ୍ ପରିଚିତ ପଥଗୁଡ଼ିକ ଆଉ ସେହି ରହସ୍ୟମୟ ଚଲାପଥ ସବୁ – ଯେଉଁଥିରେ ପଡ଼ିଥିବା ଘାସଗୁଡ଼ିକ ଉପରେ ଶିଶିରବିନ୍ଦୁ ଚକ୍ ଚକ୍ କରୁଥାଏ ଠୋପାକୁ ଠୋପା ପାରଦ ପରି—ଅଦ୍ଭୁତ ଭାବରେ ସହଜ ହୋଇ ମନେରଖିବା ପାଇଁ ଧ୍ୱନି ଝଂକୃତମୟ ପଦଟି, ଏହି ଯେଉଁଟି ପ୍ରଚୁର ଅଲଙ୍କାର ବିଭବରେ ମଣ୍ଡନ କରିଥିଲା, ଯେଉଁ କଥାକୁ ପ୍ରକାଶ୍ୟରେ କହୁଥିଲା, ତାକୁହିଁ ସୁଖର ସୁଗନ୍ଧର ଅନୁଭୂତିରେ ପୂର୍ଣ୍ଣ କରିଦେଲା ମୋର ସମୁଦାୟ ଅନ୍ତରକୁ, ସହଜ ଛନ୍ଦ ସୁଷମାରେ କରିଦେଲା ମୋର ଜୀବନକୁ, ସତ କହିଲେ ନୂତନ ଜୀବନ ଅମର ଶୁଭ ସଙ୍କେତବାହୀ ଥିଲା ଏହି କବିତା-ଗୁଡ଼ିକ ପଢ଼ିବାକୁ ସମର୍ଥ ହେବା, କେତେ ଆନନ୍ଦର ଥିଲା ସତେ !

କବିତାରେ ଆହ୍ଲାଦମୟୀ କାହାଣୀଗୁଡ଼ିକ, ପୁଣି କବିଙ୍କର ଅନ୍ୟ ରଚନା ତୁଳନାରେ ଅକ୍ଳେଶରେ କେମିତି ଅଧିକ ସ୍ୱଚ୍ଛଳତାରେ ପ୍ରବେଶ କରୁଥିଲା ମର୍ମଦେଶରେ —ସୁବୋଧ ଲାଗୁଥିଲା ଅଧିକ । ବାରଂବାର ପଢ଼ି ପଢ଼ି ମୁଖସ୍ଥ ହୋଇଗଲା—ମନେରହିଗଲା ସେଗୁଡ଼ିକ । ଏମିତି କି ରାତିରେ ବିଛଣାକୁ ଗଲାବେଳେ ଆଖିବୁଜି ଦେଇ ଆଉ ନିଜକୁ ନିଜେ ଗୁଣି ହୋଇ ଶୁଣାଉଥିଲି ନିଦ ଲାଗିବା ଯାଏ । ବେଳେବେଳେ ଶୁଣାଉଥିଲି ଅଫିସରବୃନ୍ଦାଙ୍କର ବ୍ଲକରମାନଙ୍କୁ, ଯାହାକୁ ଶୁଣି ହସି ହସି ଖୁସି ହେଉଥିଲେ, ହସି ହସି ଗଡ଼ି ଯାଉଥିଲେ, ଦଅଙ୍କ ଋଣ ପକାଇ ହେଉଥିଲେ ଥରକୁ ଥର ! ସିଦୋରଭ ତ ମଥାକୁ ମୋର ଆପୁଡ଼େଇ ଆପୁଡ଼େଇ କହୁଥିଲି ଥିର ଥିର କରି ।

"କେଡେ ବଢ଼ିଆ ସତେ ମ ସେଗୁଡ଼ାକ, ଏଃ ?"

ମାଲିକ ପଞ୍ଚାକ ଜାଣିଗଲେ ମୁଁ ଯେଉଁ ଆବେଗ ଉତ୍ତେଜନାର ଅବସ୍ଥାରେ ଥିଲି, ଗଢ଼ କରୁଥିଲି । କଣା ସମା ଆରମ୍ଭ କରିଦେଲା ବୁଢ଼ୀଟି ।

"ଗଲାଣି ଗଲାଣି ସତଅନାସିଆ ଗଲାଣି, ଏକବେଳକେ ପଢ଼ା ପଢ଼ିରେ ପଶି । ସ୍ୱର ସ୍ୱର ଧନ ଦେଲା ସାମ୍ନାଘରରେ ହାତ ଲାଗି ନ ତାର—ମାଜିନ, ପାଲସ କରିନ, ପାଜି ଫିକରିଆ ଟୋକାଟା ! ଅରେ ଭାକୁ ପାଆନ୍ତି କ ଏ ବେଲଣାକାଠିରେ…"

ଜନ୍ମ କଣ ବା କରିଥାନ୍ତା, ବେଲଣାକାଠିଟା ମୋର ? ମୁଁ ତ ଆତ୍ମରକ୍ଷା କରୁଥିଲି କବିତା ଗାଇ ଗାଇ ।

…ଭୂମି ଓ ନାରୀ,

ଗୋଟାକଯାକ ଆତ୍ମା ତ ର କଳୁଷଭରା—ପାପ କାହାଣୀ…

ରୂପସୀ ମହିଳାଟି ପ୍ରତି ମୋର ଶ୍ରଦ୍ଧା ଓ ସମ୍ମାନବୋଧ ଆହୁରି ବଢ଼ିଗଲା । ଏମିତି ଉଚ୍ଚକୋଟିର ବହି ସେ ପଢ଼ନ୍ତି ଯେ, ସେ ତ ଆଉ ତୋ ଦରଜି ଝିଅଟାର ଚୀନାମାଟିର କଣ୍ଢେଇ ନୁହନ୍ତି !

ମୁଁ ଯେତେବେଳେ ବହିଟି ଫେରାଇଲି ତାଙ୍କୁ—ଦୁଃଖର ସହିତ ମୋର ଅଧିକାରଟିକକ ଛାଡ଼ିଲି ତା ଉପରୁ, କହିଲେ ସେ ଦୃଢ଼ ପ୍ରତ୍ୟୟର ସହିତ ।

“ବହିଟି ଭଲ ଲାଗିଲା, ନାହିଁ ? କେବେ ଭଲ ଶୁଣିଥିଲ ପୁଶ୍‌କିନ୍‌ଙ୍କ କଥା – ଜାଣିଥିଲ କିଏ ସେ ?”

କହିଲି ନା,—ପ୍ରକୃତରେ ସଦ୍ୟ ଗୋଟିଏ ପତ୍ରିକାରେ ପଢ଼ିଥିଲି ତାଙ୍କ ବିଷୟରେ କିଛି, ମହିଳାଟି କଣ କହିବେ, ଶୁଣିବାକୁ ଚାହିଁଥିଲି ଚୁପଚାପ ।

ପୁଶ୍‌କିନ୍‌ଙ୍କ ଜୀବନ ବିଷୟରେ, ତାଙ୍କର ମୃତ୍ୟୁ ବିଷୟରେ ଦି'ଚାରି ପଦ କଥା ଠିକେ ଠିକେ ବିବରଣୀଟିଏ ଦେଇ କହିଲି ପରେ ମୋତେ ସ୍ନିଗ୍ଧ ଚନ୍ଦ୍ରର ଉଜ୍ଜ୍ୱଳ ଆଭା ଭଳି ହସଟିକେ ଖେଳାଇ ଆନନ୍ଦ ମନରେ କହିଲେ ସେ, ସେଇ ମହିଳା—

“ଏବେ ବୁଝିଲ ତ କେତେ ବିପଜ୍ଜନକ—ଗୋଟିଏ ନାରୀକୁ ଭଲ ପାଇବା ?”

ଯେତେ ବହି ପଢ଼ିଥିଲି ମୁଁ, ପ୍ରତ୍ୟେକଟି ଅନୁଭବରେ ଅବଶ୍ୟ—ବିପଜ୍ଜନକ, କିନ୍ତୁ ଶୁଭଙ୍କର, ସୁନ୍ଦର ଯେ ସୁଖ ପ୍ରାପ୍ତି କରିବା ।

“ହୋଇପାରେ, ବିପଜ୍ଜନକ ହୋଇପାରେ ! କିନ୍ତୁ କିଏ ବା' ପ୍ରେମରେ ନ ପଡ଼େ ? କିଏ ବା ପ୍ରେମ ନ କରେ ?” କହିଲି ମୁଁ—“ନାରୀମାନେ କଣ କମ ଯନ୍ତ୍ରଣା ପାଆନ୍ତି ?”

ଭୂରୁ ଦୁଇଟିର ତଳପତା ଦୁଇଟି ନଇଁଆସିଲା ତରୁଣୀଟିର, ତା'ର ଚକ୍ଷୁ ଚାହିଁଲେ ସେ ମତେ, ଚାହିଁଲେ ଅନ୍ୟ ସମସ୍ତଙ୍କୁ ଚାହିଁ ଦେଖିଲା ଭଳି—ମନ୍ତବ୍ୟ ଦେଲେ ଗମ୍ଭୀର ଗୁରୁତ୍ୱପୂର୍ଣ୍ଣ ସ୍ୱରରେ—

“ସତେ ? ଯା' କହିଲ ତା ଅର୍ଥ କଣ ବୁଝିଲ ତ ? ଯଦି ବୁଝିଥାଅ, ଆଶା, କେବେ ତାକୁ ପାସୋରି ପାରିବ ନାହିଁ ।”

ତା' ପରେ ସେ ମତେ ପଚାରିଲେ—କେଉଁ କେଉଁ କବିତା ମତେ ଭଲ ଲାଗିଲା ?

ବୁଝେଇବାକୁ ଆଉ ହାତ ମୁହଁ ହଲେଇ ବିଭିନ୍ନ ଭଙ୍ଗୀରେ ଆବୃତ୍ତି କରିବାକୁ ଆରମ୍ଭ କଲି ଉତ୍ସାହରେ ଖୁବ୍ । ଗମ୍ଭୀର ନୀରବତା ଭିତରେ ଶୁଣିଲେ ସବୁ, ଉଠି ଛିଡ଼ାହେଲେ—ଘର ଭିତରେ ପଦଚାରଣା କଲେ ଭାବୁଚନ୍ତି କିଛି କହିବା ।

"ଆରେ ମୋର ଧନ ମାଙ୍କଡ଼···ଟିକି ମାଙ୍କଡ଼ ! ତୋର ସ୍କୁଲକୁ ଯିବା ଉଚିତ ରେ । ଉଃ ସବୁ ଦେଖିବ, ବାଟ ଦେଖିବ ଉଃ ! ଯେଉଁମାନଙ୍କ ପାଖରେ କାମ କରୁଛୁ, ଯୋଉମାନଙ୍କ କାମ କରୁଛୁ, ସେମାନେ କଣ ତୋର ବନ୍ଧୁବାନ୍ଧବ କିଛି ହୁଅନ୍ତି ?"

କହିଲି. ଯେତେବେଳେ ମୋ ସମ୍ପର୍କର—ସେ ଟିକିଏ ଆଶ୍ଚର୍ଯ୍ୟରେ ପାଟିକରି କହିଲେ "ଓ !" ସତେ ଯେମିତି ସେମାନେ ମୋର ବନ୍ଧୁବାନ୍ଧବ ହେବାଟା ମୋର ଦୋଷ !

ମୋତେ ଦେଲେ ସେ ନେରୁଦାଙ୍କ ଗୀତ ବହିଟି, ସୁନ୍ଦର ସୁନେଲି ଧାର ପୃଷ୍ଠାର ସମ୍ପୁଟରେ, ସେଥିରେ ଅଙ୍କା ହୋଇଥାଏ, ଖୋଲା ହୋଇ ବା ବନ୍ଦ କେତୋଟି । ବନ୍ଧା ହୋଇଥାଏ ଲାଲ ମରକୋ ଚମଡ଼ାରେ । ସେଇ ଗୀତ-ଗୁଡ଼ିକରେ ଥାଏ ତୀବ୍ର ଉଦ୍ଦୀପନାର ଉଦ୍ଭାବ, ଉଷ୍ଣତା ଆଉ ନିରଙ୍କୁଶ ଅବାଧ ଆମୋଦ—ଏକାଧ ମିଶ୍ରଭାବରେ, ମୋତେ ଉତ୍‌ଫୁଲ୍ଲ କରିଦେଲି ସେଗୁଡ଼ିକ ।

"ବୁଢ଼ା ଭିଖାରିଟି"ର ଟିକ୍ସ୍ଟ ଶବ୍ଦଗୁଡ଼ିକ ପଢ଼ିଲି ମାତ୍ରେ ମୋ ସ୍ନାୟୁରେ ଧମନୀରେ, ରକ୍ତ ମୋର ହିମ ପାଲଟିଗଲା—ଜମାଟ ବାନ୍ଧିଗଲା :

ପାଦତଳରେ ମୋତେ ଦଳି ଦେଉନାହଁ କାହିଁକି—
ଘୃଣ୍ୟ କୀଟଟି ଭଳି ଦଳି ଦେଉନ, ହେ ମୋର 'ଭଲ' ଭଦ୍ର ମଣିଷ ?
ଅଃ, ମୋତେ ତମେ ଶିଖାଉଥାନ୍ତ କି ?
ମଣିଷ ଜାତିର ମଙ୍ଗଳ ପାଇଁ କାମ କରିବା ପାଇଁ !
ତୁମାଳର 'ବିସ୍ଫୋରଣ'ରୁ ଆଶ୍ରୟ ପାଇ ତେବେ,
ଏବ୍ରୁ ଭୀଟ କଣ ପାଲଟି ନ ଥାନ୍ତା ଅଧିବସାସୀ ପିପିଲିକାରେ—
ଭାଇଭଳି ଭଲ ପାଉଥାନ୍ତ ତମକୁ,
କିନ୍ତୁ ଏବେ ବୁଢ଼ା ବାରିବୁଲି ମୁଁ—
ନିଃଶ୍ୱାସ ଛାଡ଼ିବ ତୁମର ଶତ୍ରୁ ଭାବରେ—

ଏଇଟି ପଢ଼ି ସାରିଲି ପରେ ପରେ ପଢ଼ିଲି ଯେତେବେଳେ 'କାନ୍ଦୁରି ଗିରସ୍ତ' ଗୀତଟି ହସିହସି ପ୍ରକୃତରେ କାନ୍ଦ ପକାଇଲି ମୁଁ—ବିଶେଷଭାବରେ ମନରେ ମୋର ରହିଯାଇଛି ବେରୁଦାଙ୍କ ଟିପ୍‌ପଣୀ ଗୋଟିଏ ।

ଶତ୍ରୁ ନୁହେଁ ଆଦୌ !
ସରଳପ୍ରାଣ ଲୋକଙ୍କ ଲାଗି—
ଶିଖିବା—
ମଉଜମଜଲିସିଆ ହେବାର କୌଶଳଟି ।

ଅଦମ୍ୟ ଉଦ୍ଦୀପନା ଜଗାଇଦେଲେ ବେସ୍ତଙ୍କର, ଜଗାଇଦେଲେ ମନରେ ମୋର, ସେଥିରେ ପ୍ରଶ୍ନକର ଗୋଟିଏ 'କାମନା' ଦୁଷ୍ଟାମି କରିବା ଥଟ୍ଟା ଟାପର କରିବା ଆଉ ହକ୍ତତପଣରେ ଟୀକାଟିପ୍ପଣୀ ଦେବାପାଇଁ ଏମିତି ଗୋଟିଏ 'କାମନା' ପୁଣି ଯେଉଁଟିର ପୂରଣରେ ମାତବାଲା ମଶଗୁଲ ହୋଇ । ସେଥି ମନେ ରଖିଲି ବ ତାଙ୍କର ଗୀତ କେତୋଟି । ଯେତେବେଳେ ସମୟ ପାଇଲି ଧାଇଁଲି ସେଇ ସୁକରମାନଙ୍କ ରନ୍ଧାଘରକୁ ଉଡାଣିଆ 'ଭକ୍ତ'ରେ—ଆଉ ସେଇଠି ଯାଇ ମହା ଉତ୍ସାହରେ ଆବୃତ୍ତି କଲି ସେଇ ଗୀତଗୁଡ଼ାକୁ ।

କାନ୍ଲ ବାଧ ହେଲି ଶୀଘ୍ର ଏ ଗୀତ ଗ୍ରହିବା ପାଇଁ । ବାଧ ହେଲି ଏଇ କେତୋଟି ପଦ ଲଗି :

ଯେକୌଣସି ଉଣ୍ଟାପିଆ ମାଇପି ଟୋପି.

ପାଲଟିଯାଏ କ'ଣ ସୋଳ ସତର ବୟସୀ ଟୋକି ?

ସୃଷ୍ଟି କରିଦେଲା ଅତି ଜଘନ୍ୟ ଆଲୋଚନା ନାରୀମାନଙ୍କ ସଂପର୍କରେ ; ଏତେ ଅପମାନଜନକ ଲାଗିଲା କଥାଗୁଡ଼ାକ, ପାଗଳ ହୋଇଗଲି ଯେମିତି ରାଗରେ କରେଇଥାଏ ଟେକ ଛେଚିଦେଲି ସେମାନଙ୍କ ସ୍ୱେରମୋଷିନ ତାଳୁରେ । ସାଲୁ ହାତପରି ହାତ ଦୁଇଟାରେ ସେ ଧରି ପକାଇଲା ମୋତେ ! ତାର ସେଇ ହାତ ମୁଠାରୁ ଉଦ୍ଧାର କଲେ ମୋତେ ସିଦୋରଭ ଓ ଆଉ ଯେତେକ ନୌକର ଥିଲେ ସେଠି, ତା'ପରେ ଆଉ ସାହସ କରିପାରିଲି ନାହିଁ ଅଫିସରଙ୍କ ସ୍ୱେଷଘର ସୀମା ମାଡ଼ିବା ପାଇଁ ।

ଥରେ ଅଧେ ଲୁଅଁଟେ ବୁଲବୁଲ କରିବାକୁ ଯିବି. ସେଥିକି ଭଲ ଅନୁମତି ମିଳୁଥାଏ ! ନା, ତା' ଏଣିକି ବନ୍ଦ ହୋଇଗଲା, ପ୍ରକୃତରେ କହିଲେ ଆଉ ସମୟ ରହୁ ନ ଥାଏ ହାତରେ. କାମଗୁଡ଼ାକ କ୍ରମେ ବଢ଼ିଯାଇଥାଏ ବହୁତ, ପୋଛାଲି ପରିବାରୀ କାମ, ଅଗଣା ଓଳାଳ କାମ, ବୋଲହାକ କାମ—ଏସବୁ ସାଂଗକୁ ଆହୁରି ମୋ ଉପରେ ଲଦିହୁଆ ଯାଇଥାଏ ପ୍ରତିଦିନ ଗୋଟିଏ ବଡ଼ ଫ୍ରେମରେ 'କାଲିକୋ' କନାରେ କଣ୍ଠା ବାଡ଼େଇବା, ସେଥିରେ ମାଲିକର ଅଙ୍କା ଛବି କେରୁଟାକୁ ଥଠାରେ ଲଗେଇବା, ତାର ଘର ତିଆରି ଅଟକଳମାନଙ୍କୁ କର୍ମ କରିବା ଆଉ କାନଚରିଟି ବିଲଗୁଡ଼ାକୁ ଯାଞ୍ଚକରି ଦେଖିବା । ମାଲିକଙ୍କ ମୋର ସକାଳୁ ରାତି ଅଧଯାଏ କମ୍ ଫୁର୍ସତ୍ ନ ଥାଏ—କାମରେ ଲାଗି ରହୁଥାଏ ଠିକ୍ ମେସିନ୍ଟା ପରି ।

ଏହି ସମୟକୁ ଦୋକାନଘର ବ୍ୟବସାୟୀଙ୍କର ବ୍ୟକ୍ତିଗତ ସଂପତ୍ତିରେ ପରିଣତ ହୋଇ ସାରିଥାଏ—ମେଳଣ ଯାହା ପଞ୍ଚଆର ସର୍ବସାଧାରଣ ଘରଦ୍ୱାର କୋଠାବାଡ଼ିଗୁଡ଼ାକ—ତନାଘନା ଉଦ୍ୟମ ଆରମ୍ଭ ହୋଇଯାଇଥାଏ ବ୍ୟବସାୟ କାରବାର ଲାଗି ନିର୍ଦ୍ଦିଷ୍ଟ ଧାଡ଼ିକ ଧାଡ଼ି ଘରଗୁଡ଼ାକୁ ପୁନର୍ବାର ନିର୍ମାଣ କରାଯିବା ବାଗରେ, ମୋ ମାଲିକ ନେଇଥାନ୍ତି କାନଚରିଟି । ପୁଣି ଦୋକାନ

ଘରଗୁଡ଼ାକୁ ମରାମତି କରିବେ, ନୂଆ କେତୋଟି ତୋଳିବେ । ସଲଖା ସଲଖା ଝିଲଣିମାନ ଗଢ଼ିବେ, ଝାଟିମାଟି କାନ୍ଥରେ ଡାହି ଝରକା ଲଗାଇବେ ବା ସେମିତି ଆଉ କିଛି କରିବେ ସେଥିପାଇଁ ନକ୍ସାମାନ ତିଆରି କରୁଥାନ୍ତି ମାଲିକ । ମୋତେ ଯିବାକୁ ହେଉଥାଏ ସେହି ନକ୍ସା ସହିତ ଗୋଟିଏ ଲଫାପାରେ ପଚିଶ ରୁବଲିଆ ନୋଟ ନେଇ ଗୋଟିଏ ବୁଢ଼ା ବନ୍ଧାଣୀ ପାଖକୁ । ରୁବଲଟିକ ପାଇସାରି ବୁଢ଼ା ଲେଖି ଦେଉଥାଏ—"ନକ୍ସା ଓ ଯୋଜନାକୁ ପ୍ରକୃତ ଘର ସହିତ ମିଳାଇ ଯାଞ୍ଚକରି ଯାଇଛି । ନିମ୍ନ ସ୍ୱାକ୍ଷରକାରୀର ପ୍ରତ୍ୟକ୍ଷ ବ୍ୟକ୍ତିଗତ ତତ୍ତ୍ୱାବଧାନରେ ସମସ୍ତ କାମ ସମ୍ପନ୍ନ ହୋଇଛି ।" ମୋତେ ଏଇ ଲେଖାଟି ନେଇ ଆସିବାକୁ ପଡ଼ୁଥାଏ ନିୟମିତଭାବରେ—ସତ କହିଲେ ଅସଲ ବାସ୍ତବ ଘରତୋଳା ସହିତ କରି ବା ସମ୍ପର୍କ ଥାଏ ଲେଖାର । କେବେହେଲେ ଭଲ ଯାଞ୍ଚ ହେଉଥାନ୍ତା ହୋଇପାରିଥାନ୍ତା କି ସେମିତି ? ବୁଢ଼ାର ଦେହମୁଣ୍ଡର ସ୍ୱାସ୍ଥ୍ୟର ଅବସ୍ଥା ଯାହା ତାହା ତ ତାକୁ କାବୁକରି ଚିରସ୍ଥାୟୀ ଭାବରେ ବନ୍ଦୀକରି ଦେଇଥାଏ ଘର ଭିତରେ ।

ମୁଁ 'ଲଞ୍ଚ' ତକ ନେଇ ପହଞ୍ଚାଇ ଦେଉଥାଏ ମେଳା ଇନ୍‌ସପେକ୍ଟର ଓ ଅନ୍ୟ କେତେକ କର୍ମଚାରୀଙ୍କ ପାଖରେ । ସେମାନଙ୍କଠାରୁ ଆଣୁଥାଏ ମାଲିକଙ୍କ କଥାରେ କହିଲେ 'ବିଭିନ୍ନ ଆଇନ ଭଙ୍ଗ ଲାଗି ଅନୁମତି' ଏଇ ଦଲିଲପତ୍ର । ଏହି କାମର ପୁରସ୍କାର ସ୍ୱରୂପ ମୋତେ ଅଧିକାର ମିଳିଥାଏ, ମୋ ମାଲିକ ମାଲିକାଣୀଗୁଡ଼ାକ ବନ୍ଧୁବାନ୍ଧବଙ୍କ ଘରକୁ ସବୁ ସନ୍ଧ୍ୟାବେଳେ କେଉଁଠିକି ବୁଲିଗଲା ପରେ ମୁଁ ସେମାନଙ୍କୁ ଅପେକ୍ଷା କରି ପାରିବ ଅଗଣାରେ ! କିନ୍ତୁ ଏମିତିକା ଘଟୁଥାଏ ଖୁବ କ୍ୱଚିତ । ତେବେ ଘଟିଲେ, ଅବଶ୍ୟ ମାଲିକ ଗୋଷ୍ଠୀ ଫେରୁଥାନ୍ତି ରାତି ଅଧକୁ, ଏଣୁ ମୋତେ ବେଶ କେତୋଟି ଘଣ୍ଟା ମିଳି ଯାଉଥାଏ । ମୁଁ ଯାଇ ବସି ପାରୁଥାଏ ବାହାର ଦ୍ୱାରମୁହଁ ତଳେ ଝିଲଣି ଅଳିନ୍ଦରେ ବା ସାମନାରେ ଥିବା କାଠଗଦା ଉପରେ । ସେଠି ବସି ମୋ ମହ୍ନସ୍ପା ତରୁଣୀଟିର ଫ୍ଲାଟ୍‌ଘର ଝରକାକୁ ଚାହିଁ ରହୁଥାଏ ଏକ ଲୟରେ । ଶୁଣୁଥାଏ ମନ-ଲହସା ରାଗରାଗିଣୀ ଆଉ ମଧୁରାଳାପଗୁଡ଼ିକ ଭାସି ଆସୁଥାଏ ଯାହା ସେହି ଝରକା ବାଟରେ !

ଖୋଲି ଯାଉଥାଏ ଝରକା କବାଟ, ଅଙ୍ଗୁରଲତାର ଆଡୁଆଳରୁ ପରଦାର ଆରପଟରୁ ବେଳେବେଳେ ଝଲସି ଯାଉଥାଏ ଅଫିସରମାନଙ୍କର ଚଳ ଚଞ୍ଚଳ ଚମତ୍କାର ରୂପଗୁଡ଼ିକ ଘରଭିତରୁ, ଦିଶିଯାଉଥାଏ ଗୋଲଗାଲିଆ ଥାକୁଲୁଥାକୁଲୁ 'ମେଜର' ଗଡ଼ୁଗଡ଼ୁକା ଏଣିକି ତେଣିକି ଧାଉଁଥାଏ କେମିତି ମୋର ଭଦ୍ର ତରୁଣୀଟିର ପଣତକୁ ଲାଗି ଲାଗି ପଛେ ପଛେ—ଆଉ ସେଇ ମହିଳା ପିନ୍ଧିଥାଏ ଗାଉନ୍‌ଟିଏ ଅପୂର୍ବ ଏକ ସରଳ ସୁକୁମାର ସୌନ୍ଦର୍ଯ୍ୟର—

ମୋ ରୁଏ ମୁଁ ମନକୁ ମନ ଡାକୁଥାଏ ରାଣୀ ମାର୍ଗଟ ।

"ଏଇ ତେବେ ମହଜମଜଲିସିଆ ଉଲ୍ଲାସର ଜୀବନ, ଏଇ ଯାହା ଚର୍ଚ୍ଚିତ

ହୋଇଚ ଫରସି ଉପନ୍ୟାସଗୁଡ଼ିକରେ !" ଝରକାକୁ ଅନେଇ ରହି ଅପଳକ ଆଖିରେ ମନକୁ ମନ ପୁଣି ଭାବ ଯାଉଥାଏ ମୁଁ । ଆଉ ସବୁବେଳେ କିନ୍ତୁ କେମିତି ବିଷାଦରେ ଘାର ହେଉଥାଏ ହୃଦସ୍ପନ୍ଦ ମୋର । ଏଇ ସବୁ ଲେକ ଫୁଲ ବଣଅନ୍ତେ ଭ୍ରମରଗୁଡ଼ିକ ଭଳି ଠିକ ଘୁର୍ ଘୁର୍ ହେଉଥାନ୍ତି ବଣୀ ମାର୍ଗଟ ଲୁଗପଟେ—ସେହି ଦେଖି ପିଲାଳିଆ ଈର୍ଷା ଆସୁଥାଏ ମନରେ ମୋର ।

ଡେଙ୍ଗା, ଗମ୍ଭୀର ଅକୃତର ସାମରକ ଅଫିସର ଜଣେ, କପାଳରେ ଛଡନ ଚନ୍ଦ୍ର, ଆଖି ଯୋଡ଼ିକ ତାର ପଣି ରହୁଥାଏ ଖଂଜଡ଼ିହୋଇ ଗଭୀରରେ କେଉଁଠି, ଅନ୍ୟମାନଙ୍କ ତୁଳନ ରେ ସେ ଖୁବ କମ୍ ଯା' ଆସ କରୁଥାଏ ତା' (ବଣୀ ମାର୍ଗଟ) ପାଖକୁ—ସେ ଆସୁଥାଏ, କିନ୍ତୁ ସେ ଗ୍ରସ୍ପୋଲିନ୍ କି ଧଣ ବଜାଉଥାଏ ଏତେ ସୁନ୍ଦର ଓ ହୃଦସ୍ପର୍ଶୀ ଭାବରେ, ବାଟରେ ବାଟୋଇ ଦଣ୍ଡେ ଘଣ୍ଡିଏ ଛିଡ଼ା ହୋଇ ଯାଉଥାଏ ଶୁଣିବା ପାଇଁ ମନ୍ତ୍ରମୁଗ୍ଧ ହୋଇ ସତେ ବା—ଅମ ଗଳିର ବସିନ୍ଦା ଯେତେ ବାହାର ଆସୁଥ ନ୍ତ ଘର ଭିତରୁ, ବସୁଥାନ୍ତି ଆସି କାଠଗଦା ଉପରେ । ଏମିତକି ମୋ ମାଲିକମାନେ, ଯେତେବେଳେ ଘର ଘରେ ଥାନ୍ତି, ସେମାନେ ମେଲକର ଦେଉଥାନ୍ତି ଝରକା, ସାବାସ୍ ସାବାସ୍ କହୁଥାନ୍ତି, ପ୍ରଶଂସା କରୁଥାନ୍ତି ସଙ୍ଗୀତଜ୍ଞଙ୍କୁ । ମନେ କର ପାରୁନାହିଁ, ଗିର୍ଜାର ପାଦ୍ରୀଙ୍କ ଛଡ଼ା କେବଳ ଆଉ କାହାଙ୍କୁ ସେମାନେ କେବେ ପ୍ରଶଂସା କରିଥିବେ ! ଜାଣେ ଭଲକର , ଜାଣେ ଏହି ସଙ୍ଗୀତ କି ଅଉ କେଉଁ ସଙ୍ଗୀତଠ୍ ବହୁତ ବହୁତ ଗୁଣରେ ବଳି ସେମାନେ ଉପଭୋଗ କରୁଥିଲେ ରସୁଆଳିଆ ମାଛ ଭଜା, ମାଛବର୍ ସର ।

ବେଳେବେଳେ ସେ ଅଫିସରଟି ଗାଉଥାଏ କଇଟଲ ବା କବିତା ଆବୃତ୍ତି କରୁଥାଏ କେମିତି ଗୋଟାଏ ଶୁଖିଲା ଶୁଖିଲା ଖାପୁଖାପୁଆ ସ୍ୱରରେ, ହସି ହସି ନଶ୍ୱାସ ଛାଡ଼ି, ତାର ହାତଟିଏ ଲୁଚି ରହୁଥାଏ ଭ୍ରୁରୁ ଉପରେ । ଦିନେ ମୁଁ ଖେଳୁଥିଲି କୁନ୍ଦ୍ରିଅଟି ସାଥିରେ ଝରକା ତଳେ, ବଣୀ ମାର୍ଗଟ ତାକୁ ଅନୁରୋଧ କର କହିଲା ଗୀତଟିଏ ଗାଇବା ପାଇଁ । କିଛି ସମୟ ଯାଏ ସେ ରାଜି ହେଲା ନାହିଁ, ମନାକଲା ଥରକୁ ଥର, ତା'ପରେ କହିଲା ଅକ୍ଷରେ ଅକ୍ଷରେ ସଠିକ :

ଗୀତଟିର ସିନା ସୁନ୍ଦରରେ ଦରକ—

ସୁନ୍ଦର କି କେବେ ଲୋଡ଼ଥାଏ ଗୀତ —

ଭାର ଭଲ ଲାଗିଲା ଏଇ ପଦଟି । କାହିଁକି କେଜାଣି କେଉଁ କାରଣରୁ ଦୁଃଖ ଆସିଲା ମନରେ ଅଫିସରଟି ପାଇଁ ।

ସବୁଠୁ ବଳି ତ ଭଲ ପାଉଥିଲି ମହାସୁନ୍ଦରୀ ମହିଳା ଟିକୁ ମୋର—ଅତୃପ୍ତ ଆଖିରେ ଅବାକ୍ ହୋଇ ଅନେଇ ରହିବା ପାଇଁ ଯେତେବେଳେ ସେ ଏକୁଟିଆଟ ଥାଇ ବସୁଟିଅଟି ବସୁଥିଲା ସିଅନୋ ପାଖରେ, ଆଉ କେହି କେଉଁଠି ରହୁ ନ ଥିଲେ ପ୍ରକୋଷ୍ଠଟିରେ । ମୋତେ ମତୁଆଲ କର ଦେଉଥିଲା ତାର ଗୀତ, ଝରକାଟି ଛଡ଼ା ଆଉ କିଛି ଦୃଷ୍ଟିରେ ପଡ଼ୁ ନ ଥିଲା, ଦେଖାଯାଉଥିଲା ଖାଲି ଝରକା ଭିତରୁ—

ଝରକା ଆରପଟେ ଲାବଣ୍ୟମୟୀ ପ୍ରଜାପତିର ରୂପରେଖା ଅଙ୍କି ହୋଇଯାଉଛି ପୀତାଭ ଦେୱାଲଗୁଡ଼ିକରେ, ରହି ରହି ଝଲସି ଉଠୁଛି ସସ୍ତା ମୁକ୍ତମାଳ ବପେଲ—ସେ କି ଦୃପ୍ତ ପାର୍ଶ୍ୱ-ଭଙ୍ଗି ମାଝି ପଡେ ! ଆଉ ରଜତ ଶୁଭ୍ର ହାତଯୋଡ଼ିକ ତା'ର ହୃତ୍‌ଗ୍ରାମ ଉପରେ ପଷ ଝାନ୍ତୁଛି କେଉଁ ବନ୍ଧନୀକି ବା !

ନିର୍ଭେ କି ଭରେଶି ଲକ୍ଷ୍ୟ କରୁଥିଲି ତାକୁ, ଶୁଣୁଥିଲି ନୂପୁରର ରାଗିଣୀ-ମୂର୍ଚ୍ଛନା ତାର, ଆଉ ମନକୁ ମନ ବୁଣିଯାଉଥିଲି ଅଦ୍ଭୁତ ଅଦ୍ଭୁତ କଳ୍ପନାର ସ୍ୱପ୍ନ ସବୁ, ଯେବେ ହେଲେ କେବେ ଆବିଷ୍କାର କରନ୍ତି ମୃତ୍ତିକା ନିହିତ ନିଧିସମ୍ପତ୍ତି ଆଉ ଅନାବୃତ ଦେବ ନେଇ ଯାଆନ୍ତି ତା' ପାଖରେ, ହେଉ ବିଜ୍ଞାନ କୀର୍ତ୍ତି ହେଉ ସେ ! ଆଉ ସ୍ପେଶାଲିଷ୍ଟ ହୃତ୍‌ପିଣ୍ଡ ଯନ୍ତ୍ର ମୁଁ ପୂ-ବାର ଯୁଦ୍ଧ ଘୋଷଣା କରନ୍ତି ତୁମମାନଙ୍କ ବନ୍ଧରେ, ଛତ୍ରପୂରଣ ଆରମ୍ଭ କରନ୍ତି ବନ୍ଦୀମାନଙ୍କ ପାଇଁ ଆଉ ନଗରୀର ଶୋଭାଯୁକ୍ତମ ସ୍ଥାନ 'ଉତ୍କଳ' କୂଳରେ ନିର୍ମାଣ କରନ୍ତି ନବରତ୍ନ ଏ, ରୂପସୀଟିଏ ପାଇଁ ମୋର, ଯେଉଁଠିକି ରୂପଯାତ୍ରୀ ଦୂରକୁ—ଆମ ଘରର ଆମ ଗଳିର ସେହି ପରିବେଶରୁ ଦୂରକୁ, ଯେଉଁଠିରେ ରହି ପ୍ରତ୍ୟେକେ ପସ୍ତର କରୁଛନ୍ତି, ରଚନା କରୁଛନ୍ତି, ଇତ୍ୟାଦି ଦୁର୍ଗନ୍ଧମୟ କି ହୀନ କୁତ୍ସିତ ଗାନଗଳ୍ପ ସବୁ ତା' ସମ୍ପର୍କରେ ।

ଆମ ଘରେ ସେହି ଫ୍ଲାଟରେ କାମ କରୁଥାନ୍ତି, ଚଳବଚଳ ହେଉଥାନ୍ତି ଯେତେ ଯିଏ ଦାସଦାସୀ, ଯେତେ ଯିଏ ବାସିନ୍ଦା, ବିଶେଷରେ ମୋ ମାଲିକମାନେ ରାଣୀ ମାର୍ଗଟ୍ ସମ୍ପର୍କରେ ଠିକ୍ ସେମିତି ହଂସକ୍ରୀଡ଼ା ପୂର୍ଣ୍ଣ କଥା ସବୁ କହୁଥାନ୍ତି ଯେମିତି କହୁଥିଲେ ସେମାନେ ଦରଜି ସ୍ତ୍ରୀଟି ସମ୍ପର୍କରେ—ଖାଲି ଏତିକି ଯେ ଏଥର 'ରାଣୀ' ବିଷୟରେ ଚର୍ଚ୍ଚା କରୁଥାନ୍ତି ଆହୁରି ଅଧିକ ସାବଧାନ ହୋଇ, ନଇଁଲା ନଇଁଲା ଦବିଲା ଦବିଲା ଗଳାରେ, ବ୍ୟଙ୍ଗ ବ୍ୟଙ୍ଗ ଭଙ୍ଗୀରେ କାହାଣୀମାନ ଛାଣି ।

ହୁଏତ ତାକୁ ଡରୁଥାନ୍ତି ସେମାନେ, କାରଣ ସେ ଯେ ବିଧବା ପତ୍ନୀ ଜଣେ ଅଭିଜାତ, ସମ୍ଭ୍ରାନ୍ତ ବ୍ୟକ୍ତିର । ଗୁପ୍ତଚର୍ଚ୍ଚା ଅଟେ କହୁଥାଏ ମୋତେ ରୂପସୀଟିର ଘର କାନ୍ଥରେ ଟଙ୍ଗା ହୋଇଥାଏ ଯେଉଁ ତୈଳଚିତ୍ରଗୁଡ଼ିକ, ସେ ସବୁ ଥାଏ ତା'ର ସ୍ୱାମୀର ପୂର୍ବଜ ବଂଶଧରମାନଙ୍କର ଗୋଡୁଜନ, ଆତ୍ମୀୟସ୍ୱଜନ, ମହାନ ମିଷ୍ଟରଙ୍କ ସମେତ ବିଭିନ୍ନ କାଙ୍କ ଦ୍ୱାରା ପ୍ରଦତ୍ତ ସନଦ । ହୁଏତ ଭୟ କରୁଥାନ୍ତି କେବେ ରୂପସୀ ମହିଳାଟି ତା'ର କଳକାକଳି ରଚିତ ଘୋଡ଼ା ସୈନ୍ୟର ବିରୁଦ୍ଧରେ ପଠାଇବ ଦା'ଭାତ ଗୁପ୍ତ ଲେଖାଏଁ । ସେମାନେ କହୁଥାନ୍ତି, ଥରେ ସେ ଏମିତି ପଠାଇଥିଲା ବିରୁଦ୍ଧରେ ଜଣେ ଉଚ୍ଚପଦସ୍ଥ ଗୁପ୍ତଚରପନ୍ଥୀ ଅଫିସରଙ୍କୁ ।

କିନ୍ତୁ ଟ୍ରମ୍ପ୍‌ଟାପ ଫିସ୍‌ଫାସ୍ ସବୁ କେଉଁ ଅଂଶରେ ବା ଭଲ ଶ୍ରେଷ୍ଠତର ଥାଏ ବଡ଼ ପାଟିରେ କୁହା କଥାଗୁଡ଼ାକଠୁଁ ? ମୋ ମହିଳାଟି ରହୁଥାଏ ଘନଘୋର ଏତୁ ତା'ର ମେଘପଟଳ ଭିତରେ, ସେଥିରେ କମ ବ୍ୟଥିତ ହେଉ ନ ଥାଏ,

ବନ୍ଧ୍ୟାନ୍ତରେ ପଡ଼ୁ ନ ଥାଏ ମୁଁ ! ଭିନ୍‌ଟର ବର୍ଣ୍ଣନା ଦେଇଥିଲି ଅବେ ଅମ ସମସ୍ତଙ୍କ ଆଗରେ ଗଢ ଅପରେ ଘରକୁ ଫେରି ରାଣୀ ମର୍ଗାରେଟର ଶୟନକକ୍ଷ ଟରକାଟେ ହର୍କିମାଣ ଦେଖିଥିଲି ସେ ପୋଷାକ ରୂପ ଗୁଟେଫଳା ବେଢ଼ରେଣ୍ଟି ଦେହରେ କାଢ଼ିତ ଉପରେ ବସିଥାଏ, ସେତେବେଳେ ଭର୍ଣ୍ଣେଟି ମେଲ—ତା ସାମନାରେ ଅଣ୍ଟୁ ମାଡ଼ି ବସି 'ମେଜର' ଲକେ କାଟିଲ୍‌ତା' ପାଟର ବୁଢ଼ା ଅଙ୍ଗୁଠି ନଖ ଆଉ ଶକ୍ତରେ ଯୋଡ଼ୁ ପଖାଳି ଲାଗିଲି ତାର ପାଦ ଦୁଇଟିକୁ ।

ବସୁସ୍ଥା ମାଲିକାଣୀ ମୋର ଏକଥା ଶୁଣି ହେପ ନିଶ୍ୱାଏ ଗୁନ୍ଦି ଦେଇ ଆରମ୍ଭ କରଦେଲ କଚାପଟା, ରାଳଗୁଳନ, ଅଭୁ ମୋର ମୁକ୍ତ ମାଲିକାଣୀର ମୂହଁ ଲାଲ ପଡ଼ିଗଲା ଅନକୁ ଅବ ଲାଜ ସରମରେ—ଟପ କ ପ୍ରବଳ ସ୍ୱରରେ ସତେ !

"ଏଁ, ଏଁ ଭିନ୍‌ଟକ !" ଚାଁ ଚାଁ ଚତ୍‌କାର କରି ଉଠିଲି ଗୁଣ୍ଡିଚ ଭଲ ସୁବକ୍ତା ମାଲିକାଣୀ......" "ହଉରେ ଦେ ତତେ ଲାଜ ନାହିଁରେ କିଦେ ତୋ ମୁହଁକୁ ? କହୁ ହେଉଛୁ ପୁଣି ସେଇ ଚମତ୍କାର ଲୋକଗୁଡ଼ାକ ଭଡ଼ ମସୀସୁରାକ କ ମାଉସିପଣା କେତେ କାମୁକରେ ଏଁ !"

ମାଲିକ ମୋର ମୁଣ୍ଡ ନେଇ ହସିଦେଲେ କିନ୍ତୁ ଦେ ଚୁଁ ପାନ୍ଥି ଡିକେଇ କହଲେ ନାହିଁ କିଛୁ, ଆଉ ମୁଁ ଜାଣିକ କେଜାଣି କେମିତି ସେ କିଛୁ ନ କହିବା ଯୋଗୁ କୃତଜ୍ଞତାରେ ଲୁଚ ପଡ଼ିଲି ତାଙ୍କ ପାଖରେ, ଟେବେ ମୋର ଭୟ ହେଉଥାଏ ସେଇ କୋଳାହଳିଆ ମିଶିବ କଥ ରେ ନାହିଁ ତ ସ୍ୱରଟା ତାଙ୍କର ! କେଜାଣି କେତେ ଉଃ ଅଃ, ଓଃ ଇ କରି ତାଗ ଭିତରେ ମାଉପେଯାକ ଭିନ୍‌ଟକୁ ଗୋଟି ଗୋଟି କରି ଫଟେଇ ହୋଇ ପଚ୍ଛରିଦେଲେ କିନ୍ତୁ ଷି କଥା ଟବୁ ଏଇ ଯେମିତି ମାଉସିଟି ବସିଥିଲି କେମିତି ମ ? ନା ଅଉ ସେ ମେଜର ସୈନ୍ୟାଧ୍ୟକ୍ଷଟା କେମିତି ଅଣ୍ଟୁ ମାଡ଼ି ବସିଥିଲି ତା ପାଦ ପାଖରେ. ଭିନ୍‌ଟଟା ଓଷ୍ଠ ଦ ବୁଝି ଦେଇ ଦେଇ କହିଲି ପଢ଼ଏ ପଢ଼ଏ ବାଛୁ ବାଛୁ ରସରସିଆ ମୁଠିଏ ମୁଠିଏ ପଙ୍କ୍ତି ଲାଗିଲି ଯେମିତି—

"ହଁ ମ, ମୁହଁ ଗୋଟିକ ଲାଲ ପଡ଼ିଯାଇଥାଏ, ଅଧ ଜିଭଟା ଲହ ଲହ ହେଉଥାଏ ଓହଳ ଆସି ....।"

ସେଥିରେ ବା କଣ ଏମିତି ଲାଜ ସରମର, ମାନ ଅପମାନରେ କଥା ଥିବ—ଏଇ ମେଜରଟା ମୋ ମହୁଲାଟିର ଗୋଡ଼ ନଖ, ବୁଢ଼ା ଅଙ୍ଗୁଠି ନଖ କାଟିବାରେ ଲୁଚି ପାରିଲି ନାହିଁ—ତେବେ ମୋର ଅଦୌ ବିଶ୍ୱାସ ହେଲା ନାହିଁ, ତା ଜିଭଟା ବାହାରକୁ ଓହଳି ପଡ଼ି ଲହ ଲହ ହେଉଥିବ—ଏତ ଜଘନ୍ୟ କୁତ୍ସିତ ମିଛ ଥିଲା ଏ କଥାଟା !

"ଏତେ ଯଡ ଅଭଦ୍ର ଏତେ ଯଡ ଅଶ୍ଳୀଳ ଥିଲ ଏଇଟା, ଝରକା ବାଟେ ହଠାତ୍ ଉଙ୍କି ମାରୁଥିଲୁ କାହିଁକି ?" ସମ୍ଭାଳି ନ ହୋଇ କହି ପକାଇଲି ମୁଁ "ତୁ ତ ଆଉ ଦୁଧପିଆ ଛୁଆଟିଏ ହୋଇ ନାହୁଁ ?"

ସେମାନେ ଅବଶ୍ୟ ସମସ୍ତେ ଫିଙ୍ଗି ଅସିଲେ ଗୁଡ଼ାଏ ଗୁଡ଼ାଏ ନୋଧ ଦେଖେଇଲେ ମୋତେ, ତାଙ୍କ ବାଳକଗୁଡ଼ାକ ଦେହକୁ ନେଇ ନାହିଁ ବିଜଏ ଦେଲେ। ଜନହେଲ ଝ ଲ ଚଲ ମହଲକୁ ଦେହଭିଡ଼ ମଧ୍ୟ କ ଧାଇଁଯାଇ ଅଣ୍ଟ ମାଡ଼ି ବସିପଡ଼ନ୍ତି କ ମୋ ଉମଣୀକି ସାମନା ରେ, ଠିକ ମେଳଣ ଭିତ ପର କହନ୍ତି ତାଙ୍କୁ :

"ନେହରୁ ହେଉଛୁ, ହାତ ଯୋଡ଼ୁଛୁ, ଯା ଦେଇ ଯାଏ ଘର ଗୁଡ଼ ପକେଇ ଯା ଗୋ ଦେଇ ଯା କଲ।"

ଏହି ଏମିତି କାଣ୍ଡିଲ ସେତେବେଳେ ମୁଁ ଜୀବନ ଅଛି, ଜୀବନର ଗତିବିଧି ବୁଝି ଆଉ କେତିଏ ପ୍ରକାରର, ଅଛନ୍ତି ଆଉ ସବୁ କେତେ କେତେ ଜଗମଗ ଲୋକ ଦୁନିଆ କେତେ ଧରଣର ମନୋବୃତ୍ତି କେତେ କେତେ ରୂପର ଧରଣ। ଜୋକଣୀ ପ୍ରତ୍ୟାପେକ୍ଷା କେତେ ଗୁଣରେ ଅଧିକା ବିରକ୍ତି ଜନକ ହେଉଛି ମଣିଷ। ସେ ଘରର ବାସିନ୍ଦାଙ୍କ ଦୃଷ୍ଟି, ସେ ଚେଷ୍ଟା ଯେମିତି ନିଷ୍ଟପଟ ହେଉଥିଲା ସଙ୍ଗରେ ତୁରେଇ ହୋଇ ଛନ୍ଦି ହୋଇ ଯାଉଥିଲା ଦୁର୍ଗନ୍ଧିଆ ଅସନା ଗାନଗଲିରେ, ଯେଉଁଥିରୁ ଜଣେ ଦେଲେ କେହି ନିସ୍ତାର ପାଉ ନ ଥିଲା କେତେବେଳେ! ସୈନ୍ୟବାହିନୀର ପୁରୋହିତଙ୍କ ନହାତ ଦରଜ୍ଜି ଗେରଣା ଲୋକଙ୍କ—ତାର ପୁଣି ନାଆଁ ଉଠୁଥିଲା ପଡ଼ୁଥିଲା, ଏତେ ଲମ୍ପଟ ଏମିତି ମଦୁଆ ଥିଲା ସେ! ମୋ ମାଲିକ-ଗୁଡ଼ାକ ବର୍ଷ ଶିକ୍ଷା ଅନୁସାରେ ସବୁ ଅଫିସର, ସେଇ ସାମରିକ ଅଫିସର ଆଉ ତାଙ୍କ ଉଦଯାଗୁଡ଼ାକ ବ୍ୟଭିଚାରରେ ବୁଡ଼ି ରହୁଥିଲେ—ଲୋଟୁଥିଲେ ସବୁ, ସେଇ 'କାମ'ରେ ବଢ଼ଯାଉଥିଲା ତାଙ୍କର ଧନଗୁଡ଼ାକ, ଘୃଣାରେ ନାକ ଟେକ ହୋଇ ଯାଉଥାଏ ମୋର ସ୍ତ୍ରୀଲୋକଙ୍କ ସମ୍ପର୍କରେ—ସୈନ୍ୟମାନଙ୍କର ଦେହଚଡ଼ା ଚାପଁ ଓ କଥାଗୁଡ଼ାକରେ କିନ୍ତୁ ସବୁଠୁ ବେଶୀ ଘୃଣା କରିବାକୁ ଲାଗିଲି ମୋ ମାଲିକ ପତ୍ନୀଙ୍କୁ ଭଲଭାବରେ ମାଲୁମ ଥିଲା ମୋତେ ଅନ୍ୟମାନଙ୍କ ସମ୍ବନ୍ଧରେ ସେମାନେ ଯେଉଁ 'ବସ୍ତୁ'ମାନ ଝାଡ଼ୁଥିଲେ, ସେସବୁର ଅସଲ ମୂଲ୍ୟ ଥିଲା କଣ! ଅନ୍ୟମାନଙ୍କୁ ନେଲେଇକରି କୁତୂହଳ କରି ଅମୋଦ ପାଇବାକୁ ହେଲେ ତ ପଇସା ପଡ଼େ ନାହିଁ ଏଣୁ ସେମାନଙ୍କର ମାଲିକ ପତ୍ନୀଙ୍କର ଏହି ମାଗଣା ଆମୋଦ—ଥିଲା ଏକମାତ୍ର ମଜା। ସତେ ଯେପରି ସେମାନେ ପ୍ରତିଶୋଧ ନେଉଥିଲେ ନିଜ ନିଜ ଉପରେ ସେମାନଙ୍କର ଆସ୍ତର ବିରକ୍ତିକର ଏକମୂର୍ଦ୍ଧ। ଖୋଷଗ ଜୀବନ ହେତୁରୁ!

ସ୍ତ୍ରୀ ମର୍ଗଟ ଯେକ ସେମାନେ ଯେତେବେଳେ ଅସନାମସନା ଅଥ ଅବର୍ଜିଆ ଗପଗୁଡ଼ାଏ କହୁ ହେଉଥିଲେ, ସେତେବେଳେ ମୋ ବସ୍ୱସଠ ଅଧିକ ସେସବରେ ଯାହା ଘଟେ, ଦେଖା ଦେଉଥିଲା ମେଠି ମୋ ମନରେ! ପିଛୁଲା ବେଗରେ କର୍ମି ଉଠିଲାଭଳି ଶୀତେଇ ଶୀତେଇ ଅବେଗରେ ଥର ଉଠୁଥିଲା ଦେହଟା ସେହି ମିଳୁଆ ଗାଲଗଲ୍ପ ଆଗୁଡ଼ାକ ପ୍ରତି—ଘୃଣାରେ ପୃଥିସଇ ଫାଟି ପଡ଼ୁଥିଲା ହୃଦୟଟା ଜେମିତି ଗୋଟାଏ ଅଜ୍ଞେୟ ଅବଶ୍ୟ ବାସନାରେ ଆଚ୍ଛନ୍ନ ହୋଇ ଯାଉଥିଲି ମୁଁ—ଚାପୁଥିଲା ମୋତେ ସେ ବାସନାଟା ତାଙ୍କୁ ସବୁ କେଣ୍ଟାଇ

ଖୁଣ୍ଟ ଦେଇ ଜଳେଇପୋଡ଼େଇ ହନ୍ତସନ୍ତ କରିବାକୁ, ପ୍ରତିପ୍ରତି ଶହ ଟଙ୍କା ଦେବାକୁ ଯଦିଓ ସେହି ସମୟରେ ପୁଣି କେମିତି ଆଉ ଏକ ପ୍ରକାର ବନ୍ଧୁଲତା ଆସୁଥିଲା ମନକୁ ଧାଇଁ—ଅଉସବୁ ଲୋକଙ୍କ ପାଇଁ କୃପାକରୁଣାର ଦ୍ୱାର ବୁଜା ପରେ ଦ୍ୱାରବୁଜାର ଆଉ ଏହି ମନୁଷ୍ୟଙ୍କ କୃପାଭିକ୍ଷା କଠିନ ଅତି କଠିନ ଥିଲା ଘୃଣାଭାବ ତୁଳନାରେ ସହିଯିବା ପାଇଁ ।

ସେମାନଙ୍କଠୁ ଯଥେଷ୍ଟ ଭିନ୍ନ କରିଥିଲି ମୁଁ ମୋ ରାଣୀ ସଂପର୍କରେ, ଅନ୍ୟ ମନରେ ମୋର ଆଶଙ୍କା ଥିଲା କାଳେ ସେମାନେ ଜାଣିଯିବେ ମୁଁ ଯାହା ଜାଣିଥିଲି ।

ରବିବାର ସକାଳୁ ସକାଳୁ ସମ୍ପୂର୍ଣ୍ଣ ପରିବାରଟା—ମାଲିକ ପରିବାରଟା ବ୍ୟସ୍ତ ହୋଇଥାଏ ଗିର୍ଜାକୁ ଖ୍ରୀଷ୍ଟଙ୍କ ନୈବେଦ୍ୟ ପର୍ବର ଉଲୁଆଁ ଭଜନରେ ଯୋଗଦେବା ପାଇଁ, ସେତିକିବେଳେ ମୁଁ ଯାଇ ପହଞ୍ଚି ଯାଉଥିଲି ମୋ ରମଣୀଟି ପାଖରେ । ସେ ମୋତେ ଡାକି ନେଉଥାଏ ତାର ଶୟନ କକ୍ଷଟିକୁ—ମୁଁ ଯାଇ ବସି ପଡ଼ୁଥିଲି ସୁନେଲି ରଙ୍ଗର ସିଲକ୍ ଗଦି ଉପରେ ଆରାମ ଚୌକିରେ, ଅନ୍ୟ କେବେ କେବେ ଧାଇଁଆସି ଚୌକିରେ ଚଢ଼ି ପଶିଯାଉଥାଏ ମୋ କୋଳରେ, ମୁଁ ତେଣେ ତା' ମାଆକୁ ଶୁଣେଇବାକୁ ଲାଗୁଥାଏ ଯେଉଁ ବହି କେତୋଟି ପଢ଼ି ସାରିଥାଏ ସେସବୁ ବିଷୟରେ । ରାଣୀଟି ମୋର ଶୋଇଥାଏ ପ୍ରଶସ୍ତ ନରମ ବିଛଣାରେ, ଗାଲଦୁଇଟି ଟିକେ ହାତ ଦୁଇଟିର ତଳେ ଥାଏ, ସୁନେଲି ରଙ୍ଗର ଗାଉନରେ ଠିକ୍ ଅନ୍ୟସବୁ ଜିନିଷଭଳି ଢାଙ୍କିହୋଇ ଲୁଚି ରହିଥାଏ ତନ୍ୱୀର ତନୁଟି, ଆଉ ତା କାନ୍ଧ ଉପରୁ ଖସି ପଡ଼ିଥାଏ କଜଳକୃଷ୍ଣ କେଶର ବେଣୀଟି ବେଳେବେଳେ ଦୋଳି ଦୋଳି ଝୁଲି ପଡ଼ୁଥାଏ ବିଛଣା ଉପରୁ ତଳକୁ ଛୁଇଁ ଛୁଇଁ ନ ଥାଏ ବା ଚଟାଣକୁ ।

ଶୁଣୁଥାଏ ସେତେବେଳେ ସେ ମୋ କଥା କେତୋଟି, ଦୃଷ୍ଟି ରହୁଥାଏ ମୋତେ ସ୍ନିଗ୍ଧ ସୁକୁମାର ଚାହାଣୀରେ, ସୂକ୍ଷ୍ମ ହସ ରେଖାଟିଏ ଅଧରକୁ ଉଙ୍କୁଟାଇ ଦେଇ ଆନନ୍ଦରେ କହୁଥାଏ ଥରକନ !

"ସତେ ନା ?"

ମୋତେ ଲାଗୁଥାଏ ଏମିତିକା ତାର ସେଇ ହସଟିକିନ ଥାଏ—ଗୋଟିଏ ରାଣୀର ପ୍ରସନ୍ନ ଏକ ଅନୁକମ୍ପାର ମଧୁର ଏକ ଦାକ୍ଷିଣ୍ୟର ହସ— ପଦେ ପଦେ କହୁଥାଏ ସେ ଗାଢ଼ଗଭୀର ଗଳାରେ ସେ କି ମିଠା କଥା ସ୍ୱରରେ—ଅନୁଭବ କରୁଥାଏ ମୁଁ । ସେ ଦୋହରେଇ ଦୋହରେଇ ଥରକୁ ଥର, ପ୍ରତି ଥର କହୁଥାଏ ସମାନ ସେଇ ଗୋଟିଏ ବୋଲି କଥା ।

"ମୁଁ କଣ ଜାଣେ ନାହିଁ ? ଜାଣେ ସ, ମୋ ସଂସାରରେ କଣ ତୁଳନା ଅଛି କାହାର ! ଅନ୍ୟ ସମସ୍ତଙ୍କଠୁ ଅନେକ ଅନେକ ଗୁଣରେ ଭଲ ମୁଁ, ସୁନ୍ଦର ସୂକ୍ଷ୍ମ, ନିର୍ମଳ ମୁଁ—ଆଉ ମୁଁ ତାଙ୍କ ଭିତରୁ କାହାକୁ କାହିଁକି ଲୋଡ଼ିବି ଯେ ! କି ଦରକାର ମୋର କାହାଠି ?"

ବେଳେବେଳେ ଆଖିରେ ପଡ଼ୁଥାଏ ମୋର ବଡ଼ ଗୋଟିଏ ଦର୍ପଣ ସାମନାରେ ଅଳ୍ପ ଉଚ୍ଚର ଆରାମଚୌକିରେ ବସି ବାଳ ସାଉଁଳେ ସେ, ମୋ ଅପେକ୍ଷାର ବାଳଭଳି ଲମ୍ବ ବହଳ କୁନ୍ତଳ ତାର, ଫିଟିପଡ଼ି କବରୀରୁ କେଶ କେଶ ହୋଇ ଲୁଳି ପଡ଼ୁଥାଏ ଆରାମଚୌକିର ହାତ ଉପରେ, ପିଠିରେ ଚେଳେ ଖେଳେଇ ହୋଇ ଆସି କେତେ ଟି କେଶ ପୁଣି ଲେଟି ଯାଉଥାଏ ଚଟାଣ ଉପରେ ଦର୍ପଣରେ ପ୍ରତିଫଳି ଉଠେ—ଦେଖେଁ ମୁଁ ଘନ କଳଙ୍କ ଦୃଢ଼ କଠିଣ ଗୋଧୂଳି ଧୂସର ସ୍ତନ ଦୁଇଟି । ମୁଁ ଥାଏ, ମୋ ଆଗରେ ପିନ୍ଧେ ସେ ସ୍ତନ ଓଢ଼ଣି କାଞ୍ଚଳି ଆଉ ଲଗାଏ ସେ ମୋ ଜାନୁଯାଏ ଲମ୍ବିଥିବା ମୋଜା ହାଲକ କିନ୍ତୁ ତାର ସେଇ ଉଲଗ୍ନତା ମୋ ମନରେ କାହିଁ ତ ଜଗାଇ ଦଏ ନାହିଁ ଲଜ୍ଜାଜନକ ଭାବଚିତ୍ରଙ୍କ କିଛୁ ! ଅପୂର୍ବ ତାର ସୌନ୍ଦର୍ଯ୍ୟରେ କେମିତି ଏକ ପୁଲକିତ ଗର୍ବରେ ପୂର୍ଣ୍ଣ ଉଠୁଥ ଏ ଅନ୍ତରଟି ମୋର—ହଠାତ୍ ଆସି ତାଠୁଁ ଟେଳେଇ ହୋଇଯାଏ କେଜାଣି କେତେ କୁସୁମର ସୁବାସ ବା ଅଉ ସବୁ ଯେମିତି ତାହାହିଁ ଥାଏ ତା' ସମ୍ବନ୍ଧରେ ସକଳ ପ୍ରକାର ପାପ ପଙ୍କିଳ କୁତ୍ସିତ ଭାବନା ବିରୁଦ୍ଧରେ ଅସ୍ତ୍ର ମୋର ସାଙ୍ଗରେ ।

ବେଶ୍ ହୃଷ୍ଟପୁଷ୍ଟ ସୁସ୍ଥ ସବଳ ଥାଏ ମୁଁ—ମୋ ପାଖରେ ଅଜଣା ନ ଥାଏ ଯୌନ ସଂପର୍କର ରହସ୍ୟଟିକିକ, କିନ୍ତୁ ମୁଁ ଶୁଣିଥାଏ, ଶୁଣୁଥାଏ ଅନେକଥର ଏମିତି ଅସନା ମସନା ଏମିତି ହୃଦୟହୀନ ଭାବରେ ଲୋକସବୁ, ଏମିତି ହୃଂସୁକୁଟିଆ ଆନନ୍ଦରେ ଗପୁଥାନ୍ତି ଯୌନ-କ୍ରିୟା ସମ୍ବନ୍ଧରେ, କଳ୍ପନା କରିପାରୁ ନ ଥାଏ ତଳେ ହେଲେ ଏଇ ରୂପସୀଟି କେବେହେଲେ ଆବଦ୍ଧ ହୋଇଯାଉଥିବ କେଉଁ ଏକ ପୁରୁଷର ଆଲିଙ୍ଗନର ପାଶରେ—ବିଶ୍ୱାସ କରିପାରୁ ନ ଥାଏ କେବେହେଲେ କାହାର ଅଧିକାର ଥିବ ଏମିତି ସାହସର ସହିତ ନିଲଜ୍ଜଭାବରେ ହାତ ରଖିବାକୁ ତନୁଟି ଉପରେ ତାର ସେହି ହାତଟିକୁ ନିଜର ସ୍ୱତ୍ୱାଧିକାରର ପ୍ରତୀକ ଯେଉଁଟି ନିର୍ଦ୍ଧିତରୂପେ ବୁଝିଥାଏ ମୁଁ ଜାଣିଥାଏ ରୋଷେଘରେ କି ଗୁହାଳଘରେ ହିଣଘରେ ବା ବାଡ଼ି ଅଗଣାରେ ଚାଲିଥାଏ ଯେଉଁ ପ୍ରେମର ଲୀଳା, ସମ୍ପୂର୍ଣ୍ଣ ପ୍ରକୃତି ବିରୋଧୀ ଥାଏ ରାଣୀ ମାଉସୀର, ଜାଣିଥାଏ ସେ ଅବନାଦ୍ଦନୀ ଥାଏ ସେ ଅନ୍ୟ ଏକପ୍ରକାର ମହିମାମୟ ଆନନ୍ଦର ଅନ୍ୟ ଏକ ରୂପର ପ୍ରଶୟ ।

ଦିନେ କିନ୍ତୁ ଗଡ଼ି ବି ଗଡ଼ିଯାଇ ନ ଥାଏ ସାପୁ ହୁଏଟି—ତାର ବୈଠକ ଘରେ ପାଦ ଦେଉଛି କି ନାହିଁ ଶୁଣିଲି କୁଚକ୍ରରୁ ହସର ଝଙ୍କାର ତାର—ଶୁଣିଲି ଗୋଟିଏ ପୁରୁଷର ସ୍ୱର ପୁଣି ଭାସି ଆସୁଥାଏ ବୈଠକ ଘର ଅଉ ରାଣୀର ଶୋଇବା ଘର ମଝିବାଟର ପରଦାଟିକୁ ଭେଦ କରି ଅରପାଟରୁ ।

"ମ, ମ, ଏମିତି ତରତର କର ଏମିତି ତର ତର ମ !" ବିନୟୀ ହେଉଥାଏ ପୁରୁଷଟି "ହେ ଭଗବାନ । ନା....ନା ବିଶ୍ୱାସକର ହେଉନ ଯେ ଏଁ ବିଶ୍ୱାସକର ହେଉନ ଯେ ।"

ପଟଲଇ ସିନାଟା ହଠାତ ହୋଇଥିଲା। ନ ବୁଝିଲି ନୁହେଁ, କେମିତି କେମିତି ସେଇ ବୈଠକ ଘରେ ଲାଗି ହୋଇଲା ପାଦ ଦୁଇଟା । ଶକ୍ତି ହେଲା ନାହିଁ ଘୁଞ୍ଚିବା ପାଇଁ କୁଆଡ଼କ ।

"କିଏ ମ ସେଠି ? କିଏ ?" କହିଲା ସେ, କହିଲା ସେଇ ରାଣୀଟି ମୋର ।
"ଓ ତୁ…? ଆ……ଭିତରକୁ ଆ ଭିତରକୁ ।"

ଘର ଭିତରଟି ଫାଟି ପଡୁଥାଏ ଫୁଲର ମହକରେ, ଝିଙ୍ଗଜଗୁଡ଼କୁ ଆଉ ଆଲୁଅର ଓହ୍ଲାଇ ଥାଏ ପରଦା— ଅଧ ଦୁଆ ଦରଜାରେ ପଲଙ୍କରେ ଶୋଇଥାଏ ରାଣୀ ମାର୍ଗଟ୍—ଓଠପାଏ ପାତଳଲଗ୍ନ କମ୍ପି ଦନ୍ତଟିକୁ ତାର ଘୋଡେଇ ଦେଇଥାଏ ହତ୍ନମ୍ରନ୍ଥ, ଗୁଡ଼ରହିଏ, ଅନ୍ୟ ପାଖରେ ତାର ଦେହ ଗୌର ବାହୁଅଳକ ଚିଠି କରି ବସିଥାଏ ଗ୍ରେସ୍ତ'ଲକ ନାସ୍ତକ ଅଭିସାର— ଦେହରେ ତାର ଜଟ୍ଟି ନ ଥାଏ ଆବରଣ ଖୋଲା ଖାସିଜନିଏ ଛନା—ଲୁଚେଇ ନ ରଖି ଦେଖେଇ ଦେଉଥାଏ ସେଇଟି— ତାର ଡାହାଣ କାନ୍ଧରୁ ଗ୍ରୀବ ଉପର ସ୍ତନରୁ ଲୁଣ୍ଠିଯାଏ କମ୍ର ବରାଟ ଗୋଟାଏ କଟା ଦାଗ ଏମିତି ନାଲି ଟହଟହ ଅଧା ଅଲୁଅ ଅଧା ଅନ୍ଧାରରେ ବାଣଦୋଇ ପଡ଼ୁଥାଏ, ହସ୍ତ ତାର ବାଳଗୁଡ଼ାକ କେମିତି ଗୋଟାଏ କୌତୁକଅଭାବରେ ଖେଳେଇ ହୋଇ ହେଉଥାଏ ମୁଣ୍ଡରେ ଫୁରୁଫୁରୁ ମେଞ୍ଚ ମେଞ୍ଚ ହୋଇ ଏଣେତେଣେ ସାରା ଅଙ୍ଗଣରେ । ପ୍ରଥମଥରପାଇଁ ଦେଖିଲି ଯେତେବେଳେ ବହଣ୍ଡ ଚାହୁଁମସ୍ତ ମୂର୍ତ୍ତିରେ ତାର ହକୁଟି ଉଠିଛି ହସ ଅଭୁତ ଭାବରେ, ହସୁଚି ସେ ମୁରୁକେଇ ମୁରୁକେଇ, ତାର ବଡ଼ ବଡ଼ ଡମା ଡମା ଆଖିଯୋଡ଼ିକ ମଟଳପି ଅଖିଭଳି ଉଷିଯୋଡ଼ିକ ଲକ୍ଷିଯାଇଚ ମୋ ରାଣୀଠି, ରାଣୀ ଉପରେ ଯତେ ଯେମିତି ତା' ରୂପର ମାଧୁର୍ଯ୍ୟଟିକ ଲୁଖିଥାଏ ସେ, ସେହିପରି ସୌନ୍ଦର୍ଯ୍ୟଟିକ ଦେଖିଥାଏ ପ୍ରଥମକରି ।

"ଇଏ, ଇଏ ମୋର ବନ୍ଧୁ ମୋ ସାଂଗ," କେମିତି ଟୋଟିଏ ଉତ୍ସୁକ ଥର ଥର ଗଳାରେ କହିଲା ସେ, କହିଲା ରାଣୀ ମାର୍ଗଟ୍ । ଧଇପାରିଲି ନାହିଁ ତାର ଏ କଥାପଦକର ଉପଲକ୍ଷ୍ୟ ଥିଲି ମୁଁ କି ସେ ସେଇ ଅଫିସର ?

"କଣ ଦେଖି ଏମିତି ଡରିଗଲୁ ଯେ !" ସତେ ଯେମିତି ତାର ହୃଦଟି ଭାସି ଆସିଲା ଦୂର ଦୂରାନ୍ତରୁ କେଉଁଠୁ । "ଆଆ ଆ, ଏଠିକି ଆ ।"

ଟିକିଏ ଆଗେଇଗଲି ପାଖକୁ ଯେତେବେଳେ ବେକଟିକୁ ମୋର ଭିଡ଼ିକେଇ ମୁହୂର୍ତ୍ତେ ହସ୍ତ କୋମଳ ଖୋଲା ହାତରେ କହିଲା ସେ—

"ଯେତେବେଳେ ବସ୍ତ୍ର ଦେହରେ ତୋର ଜାଣିବୁ ତୁ ଜାଣିବୁ ପୁଅ କଣ, କେଉଁଟି ପୁଷ୍ପ ଯା ଏଇକ୍ଷଣି ଯା !"

ବନ୍ଧ ଥାକରେ ବନ୍ଧଟି ରଖି ଦେଇ—ଆଉ ଟିକିଏ ନେଇ ବାହାରିଗଲି ମୁଁ ।

କଣ ସବୁ ମଜା ମଜା ହୋଇ ଭାଜ ପଡ଼ିଲା, ମୋ ଗୁଡ଼ ଭିତରେ ଚୂନ୍ ଚୂନ୍ ହୋଇଗଲା ହୃଦୟଟା ! ସତ କହିଲେ କ୍ଷଣକ ପାଇଁ ପୁଣି ଭାବ ନ ଥିଲା ରାଣୀ

ମୋର ଭଲ ପାଏ ପ୍ରେମରେ. ମୋତେ—ସାଧାରଣ ଲୋକଙ୍କ, ପକ୍ଷେ ଏଭଳି କଥା ଚନ୍ତା କରିପାରି ନ ଥିଲି 'ଅଫିସରଟି ସମ୍ପର୍କରେ', ମୋ ଆଖି ଆଗରେ ନାଚ ଲାଗିଲା ତାର ହସଟିକ—ହସୁଥିଲ ସେ, କ ନକ୍ଷତ୍ରଙ୍କ ଉଚ୍ଛ୍ୱସିତ ଭାବରେ ଶୀଶୁଡ଼ିଏ ପରି, ହଠାତ୍ କଣ ଦେଖି କଣ ପାଇ ବସ୍ତ୍ରବରେ ବହ୍ୱଳ ହୋଇଯାଇ, ଆଉ ତାର ସେଇ ନିଷ୍ପ୍ରଦଗୋଲା ମୁହଁଟି ଦେଖ ଯାଇଥିଲା, ନୂଆ ରୂପରେ ପୂରିପୂର । ସେ ନିଶ୍ଚୟ ଭଲ ପାଉଥିବ ରାଣୀଟିକୁ, ପ୍ରେମରେ ବୁଡ଼ି ଯାଉଥିବ ତାର, କିଏ କେଉଁଠି କେମିତି ବା ରହି ପାରିଥାନ୍ତା, ଭଲ ନ ପାଇ ତାକୁ, ପ୍ରେମରେ ହଜି ନ ଯାଇ ତାର ? ଆଉ ଅହେତୁକ ନ ଥିଲା ଆଦୌ, କାହିଁକି ବା ସେ ରାଣୀଟି ମୋର ଡାକଦେଇ ନ ଥାନ୍ତା, ଅଜାଡ଼ ଦେଇ ନ ଥା'ନ୍ତା ତାର ପ୍ରେମଟିକି, ପ୍ରସ୍ୱେଷଟିକି ତା' ଉପରେ—ସେହି ଅଫିସର ପ୍ରକୃତଟି ଉପରେ—ସେହି ଯିଏ ଭାୟୋଲିନ୍ ବଜାଉଥିଲା ଏତେ ଚମତ୍କାର ଆବୃତ୍ତି କରୁଥିଲା କବିତା, ଏତେ ଗଭୀର ଅବେଗରେ ହୃଦୟଦ୍ରବିଗ ଆବେଦନରେ ।

କିନ୍ତୁ ଏମିତି କେତେଗୁଡ଼ାଏ ସାନ୍ତ୍ୱନା ଯେ ଲୋକହେଲେ ଆଣେ ଆପେ ପ୍ରବୋଧିବାକୁ ଲାଗିଲି । ଏହି କଥା ସୁଝୁଇଦେଲି ଅଉ କେଉଁଠି କିଛି ଭୁଲଭ୍ରାନ୍ତି ଥିଲା ନିଶ୍ଚୟ ମୋର ଦୃଷ୍ଟିଭଙ୍ଗୀରେ ମନୋବୃତ୍ତିରେ ଯାହା ସବୁ ଦେଇଥିଲି ସେଗୁଡ଼ିକ ପ୍ରତି, ରାଣୀମାଗଙ୍କ୍ର ପତି ! ମନେହେଲା କଣ ମୁଁ ଶୁଣାଇ ବସିଛି କେଉଁଠି କଣ ଗୋଟାଏ ହକେଇ ଦେଇଛି ଅଉ ପାଇବି ନାହିଁ ଅଉ କେତେଦିନ ବିତିଗଲା କେଜାଣି କେତୋଟି ଦିନ ନିଶ୍ଚୟ ସେ କ ବ୍ୟଥାରେ ସେ କ ବେଦନାରେ ଆହତ ହୋଇ ଶ୍ରମ୍ତ ହୋଇ ରହିଲି ମୁଁ ।

ତନେ ନିହାତି ଉଚ୍ଛୃଙ୍ଖଳ ହୋଇ ପଡ଼ିଲି—ଗଣ୍ଡଗୋଳ ଦଙ୍ଗାହାଙ୍ଗାମା ଛିଅଇଲି ଭଲ ଖରାପ ବ୍ୟବହାର କରି ବସିଲି ବନ୍ଧୁ ଝଣ୍ଡିଏ ପାଇଁ—ମୋ ରୂପବତୀ ଭଦ୍ର ତରୁଣୀଟି ପାଖରେ ଯାଇ ଚହଳ ଥାଏ କ ନାହିଁ ; ମୋତେ ଦେଖି ଶାସନକଲପରି କଠୋର କଣ୍ଠରେ ସେ କହି ଉଠିଲି :

"ଏତେ ଚିହ୍ନେଇବାକୁ, ଏତେ ଚଟିଲି ବଦମାସ ତୁ ରେ ! ପୁଧୁରିବାର ବାଟ ନାହିଁ ତୋର ! ଏମିତି ତୁ ! ଏମିତି ତ କେବେ ଭାବି ନ ଥିଲି ତୋ' ବିଷୟରେ ।"

ସୀମା ଥାଏ ସହିବାର—କଳି ପଡ଼ିଲି କଥାଟା ।

ଆରମ୍ଭ କରି ଦେଲି ଅସମ୍ଭାଳ ହୋଇ ଆରମ୍ଭ କରିଦେଲି କହିବାକୁ କେମିତି କେତେ ଯନ୍ତ୍ରଣା ଭୋଗୁଥାଏ ମୁଁ କେମିତି ଜୀବନ ପ୍ରତି ଘୃଣାରେ କିନ୍ତୁ କେମିତି ଘଣ୍ଟି ହେଇ ଯାଉଥାଏ ହୃଦୟଟା ମୋର ଶୁଣୁଥାଏ ଯେତେବେଳେ ଲୋକେ କୁହାକୁହି ହେଉଥାନ୍ତି "ଖରାପ କଥାଗୁଡ଼ାକ" ତା' ସମ୍ପର୍କରେ । ସାମନାସ ମନ ତାଙ୍କ ଉପରେ ମୋର ହାତଟି ରଖି ତାର ଛୁଡ଼ା ହୋଇଥାଏ ସେ, ଗର୍ଭର ଖବରେ ପ୍ରଥମେ ବେଶ ଗୁରୁତ୍ୱ ସହକାରେ ମନ ଦେଇ ଶୁଣୁଥାଏ ଯାହା

ସବୁ କହି ଯାଉଥାଏ ମୁଁ—କିନ୍ତୁ ଖୁହୁଁ ଖୁହୁଁ ହସି ପକେଇଲା, ଖଲ ଖଲ ହୋଇ ଆଉ ଠେଲି ଦେଲା ମୋତେ ପାଖରୁ କାନ୍ଧଟିକୁ ହଲେଇ ମୋର ଦୂରକୁ ।

"ରଖ, ବହୁତ, ବହୁତ ହେଲାଣି ! ଜାଣେ ସବୁ ଜାଣେ ତୁମ ବୟସ୍‌ରେ—ବୁଝିଲ ? ଅଛପା ନାହିଁ କିଛି ମୋତେ !"

ମୋ ହାତ ଦୁଇଟିକୁ ଟାଣିନେଇ ଧରି ପକେଇଲା—ହାଲ ଦୁଇଟିରେ ମୁଠା ଭିତରେ ଜାକି ରଖିଲା, କହିଲା ସେ ନରମେଇ ସେ ହସେଇ ଲା ସ୍ୱରରେ—

'ସେଇ ଅସନାମସନା ଅଳିଆମଳିଆ କଥାଗୁଡ଼ାକ ଯେତେ କମ ଶୁଣୁ ଯେତେ କମ କାନ ଦେଇ ଧ୍ୟାନ ଦେବୁ ସେଗୁଡ଼ାକୁ ସେତେ ଭଲ, ସେତେ ମଙ୍ଗଳ ; ବୁଝିଲୁ, ଇସ୍ ତୋ ହାତ ଦୁଇଟା ଧୋଉନା କରେ ଭଲକରି ?"

ଏତକ କହି ନ ଥିଲେ କଣ ଚଳି ନ ଥା'ନ୍ତା । ତା କଥା ରହିଥାଆନ୍ତା ତାଠିଁ, ବାହାରି ତ ଆସି ନ ଥାନ୍ତା ପଦାକୁ, ଆଉ ତାକୁ ଯଦି ପଡ଼ୁଥାନ୍ତା କଂସା, ପିତ୍ତଳ ମାଜିମୁଜି ପାଲ୍‌ଟ କରିବାକୁ, ଘରଦ୍ୱାର ଝାଡ଼ୁଦେବାକୁ—ଓଳେଇବାକୁ, କଅଁଳା ପିଲାଙ୍କ କନାକବାଟି ପ୍ୟାଣ୍ଟ କାରେଣି ଧୋଇବାକୁ ତା ହାତଯୋଡ଼ିକ କଣ କେଉଁ ଅଂଶରେ ଭଲ ଦିଶୁଥାନ୍ତା ମୋ ହାତଠୁ ବଳି ସଫା ସୁତରା ଝକଝକ ?

"କେହି ଯଦି ଜାଣେ କେମିତି ବଞ୍ଚିବାକୁ ହେବ, କେହି ଯଦି ବଞ୍ଚେ ଚିକେ ଭଲକରି, ତାକୁ ନାକ ଟେକନ୍ତି, ଘୃଣା କରନ୍ତି ସମସ୍ତେ ଈର୍ଷାରେ, ହିଂସାରେ ସଢ଼ି ଯାଆନ୍ତି ସବୁ ! ଆଉ କେହି ଯଦି ଜାଣେ ନାହିଁ କେମିତି ବଞ୍ଚିବାକୁ ହେବ—ଯିଏ ପାରେ ସିଏ ତାକୁ ନିନ୍ଦା କରେ, ସମସ୍ତେ ଘୃଣା କରନ୍ତି ତାକୁ !" ଚିନ୍ତିତ ଭାବରେ କହିଲା ସେ—ଆଉ ଟାଣି ନେଇ ମୋତେ, ଟାଣିନେଇ ତା ପାଖକୁ ହସି ହସି ଆଖିରେ ମୋର ଆଖି ରଖି ତାର, ଗଭୀର ଭାବରେ ଚାହିଁ ରହିଲା ମୋ ଆଖି ଭିତରକୁ ।

"ତୁ କଣ ଭଲପାଉ, ଭଲପାଉ ମୋତେ ?" ପଚାରିଲା ସେ ।

"ହଁ" ।

"ଖୁବ୍ ?"

'ହଁ' ।

"କିନ୍ତୁ କାହିଁକି—କାହିଁକି ଯେ ?"

"ଜାଣେ ନା ।"

" ଉଁ, ଧନ୍ୟବାଦ ଦେବି କରେ ତୋତେ ? କେତେ ଆପଣାର କେତେ ପ୍ରାଣରେ ତୁ ମୋର ! ସମସ୍ତେ ଭଲ ପାଆନ୍ତି—ସୁଖ ପାଆନ୍ତି ମୋତେ, ଏଇଆ ତ ଲୋଡ଼େ ମୁଁ, ସ୍ୱାଠୁଁ ବଳି ଆଉ କଣ ଯେ ଭଲ ଲାଗିପାରେ ?"

ସ୍ମିତ ଟିକେ ଫୁଟି ଉଠିଲା ଓଠକଣରେ ତାର, ମନେହେଲା ଦରଫୁଟା ହସରେ କଣ ସବୁ କହିଯିବାକୁ ବାହାରିଲା ଯେମିତି ।

ଦୀର୍ଘନିଃଶ୍ୱାସଟିଏ ଜନ୍ମ ନେଲା ହୋଇ ଆସିଲା ତା' ଗ୍ଳାନି ଭିତରୁ । ମଉନ ହୋଇ ରହିଲି ମୋ ହାତ ଦୁଇଟିକୁ ଚାପିଧରି ସେମିତି ।

"ଆ ! ଆ ରୁ ! ଅଦ୍ଭୁତ ଆଦ୍ଭୁତ ବେଶି ଥର ଆସୁନୁ କାହିଁକି ? ଦେଖ ଅଛିରୁନ ? ଯେତେ ଥର ପାରୁ ଯେତେବେଳେ ନ ଛୁଆ—ଆସିବୁଟି ?"

ଏଇ ଅନୁଯୋଗ କୋମଳ ଆମନ୍ତ୍ରଣଟି ଗ୍ରହଣ କାହିଁକି ସେ ? ସୁବିଧା ନେଲି ସ୍ୱାର । ତମ ସହିତ ସମ୍ପର୍କରେ ବନ୍ଧୁତାରେ କଣ ଲଜ୍ଜାବାନ୍ ହେଲି ନାହିଁ ମୁଁ ! ମାଲିକମାନେ ଯେତେବେଳେ ଖିଆଁପିଆ ସାରି ଚଢ଼େଇ ଚଢ଼େଇ ହୁଅନ୍ତି ଯାଇ ଶେଯରେ, ଶୁଅନ୍ତି ନିଜେ—ପାଦ ଚପି ଚପି ଧାଇଁ ଧାଇଁ ସତେ ବା ଦେହ ନେଇଯାଏ ତଳ ମହଲକୁ—ସେ, ମୋ ରୂପସୀଟି ଥାଏ ଯଉ ଘରେ ତାର, ଯାଇ ବସିପଡ଼େ ତା' ପାଖରେ—ସେ ସେମିତି ଦଣ୍ଡାଏ ଖଣ୍ଡେ କ ବେଣି ।

"ଦେଖ ତୋର ଆଗ ପଢ଼ିବା ଉଚିତ ରୁଷୀୟ ବହିଗୁଡ଼ିକ · ଆମ ରୁଷୀୟ ଜୀବନ କଣ ସେମିତି—ଜାଣିବା ଦରକାର ସେ—ଟେଡ଼ ରୁ ।" ସେ ମୋତେ ଶିଖାଉଥିଲେ. ଚଳ ଚଞ୍ଚଳ ଗୋଲପି ଗୋଲପି ଆଙ୍ଗୁଳିରେ ରହିରହିକା ସେଇ ମୁଣ୍ଡକେଶ କେତୋଟି ଖୋସୁ ଖୋସୁ ମହମହ ମହକିଲ ମହକିଲ କେଶଗୁଚ୍ଛରେ ତାର ।

ଗୋଟି ଗୋଟି କରି କହିଯାଏ ରୁଷୀୟ ଲେଖକମାନଙ୍କର ନାଆଁ ଏବଂ ପରିଚୟ ଦଏ ମଝିରେ ମଝିରେ :

"କଣ ଭୁଲି ଯିବୁ ନାହିଁ ତ ? ମନେ ରଖିବୁଟି ?"

ଅନେକ ସମୟରେ ଚକିତ ସ୍ୱରରେ ସାମାନ୍ୟ ବିରକ୍ତିରେ ପାଟିକରି କହିପକାଏ ।

"ଇଲେ ମା ! ତୋର ଯେ ପଢ଼ିବା କଥା··· ଭୁଲିଯାଉଛୁ ମୁଁ ··· !"

ତା ପାଖରେ ବସି ସାରି ଧଡ଼ପଡ଼ ହୋଇ ଉଠି ଧାଏଁ ମୁଁ ଉପର ମହଲକୁ, ହାତରେ ନୂଆ ବହିଟିଏ ଧରି ଆଉ ମନରେ ?—ମନରୁ ସବୁ କଳୁଷ ଯେ ଧୁପାଛୁ ହୋଇଯାଉଛି, ଏହି ଏବଟି ନେଇ ।

ପଢ଼ିପାରିଲି ମୁଁ ଅକ୍ସାକଭଙ୍କର 'ପରିବାରଟିର ଇତିହାସ' (Family Chronicle), ଦଲ୍‌ଖୁସିଆ ରୁଷୀୟ କବିତା "ଆରଣ୍ୟାନୀରେ (In the-Forest), ଅଦ୍‌ଭୁତ ସେଇ ଶୀକାର କାହାଣୀ (Hunter Sketches), ତ୍ରେବେଙ୍କା ଓ ସୋଲେଗୁବ୍‌ଙ୍କ ବଡ଼ବଡ଼ ବହି କେତେଖଣ୍ଡ ଆଉ ଭେନେଭିଟନଭ ଓଦେ.ୟେଭସ୍କି ଓ ଯୁଭ୍ରସେଭଙ୍କର କବିତାବଳୀ । ସକଳ ପ୍ରକାର ଅଳିଆ-ଆବର୍ଜନା ପଙ୍କିଳତାକୁ ଓଟାଇ ନେଇ ନିର୍ମଳ କରିଦେଲି ଆତ୍ମାକୁ ମୋର—ଚିତ୍ତକୁ ମୋର ଏହି ବହିଗୁଡ଼ିକ—ଉଡ଼ାଇନେଲି ଯାବତୀୟ ଚିନ୍ତାଭାର—ଦୁଃଖଭାର ଦୁଃସ୍ୱପ୍ନଗୁଡ଼ିକ, ମୁକୁଳେଇ ଆଣିଲି ମୋତେ କଉଛୁଣିଆ ବାସ୍ତବତାର କବଳରୁ । ଭଲ ଭଲ ବହି କହିଲେ କଣ ବୁଝାଏ—ଏବେ ଜାଣିପାରିଲି, ମୁଁ, ପସନ୍ଦ କରି

ଶିଖିଲି ସେଗୁଡ଼ିକୁ. ବୁଝିଲି କେମିତି କେଡ଼େ ପ୍ରୟୋଜନୀୟ—କେଡ଼େ ଅପରିହାର୍ଯ୍ୟ ଥିଲି ସେସବୁ ମୋ ପାଇଁ—ଆଣିଦେଲି ସେସବୁ ପ୍ରସନ୍ନ ଏକ ଗଭୀର ବିଶ୍ୱାସ ଏକ ପ୍ରଗାଢ଼ ଆସ୍ଥା ମୋ ମନରେ— ନା ଏକା ନୁହେଁ, ମୁଁ ସଙ୍ଗହୀନ ନୁହେଁ, ମୁଁ ବିଶାଳ ଏହି ପୃଥିବୀରେ—ପାରିବି, ନିଶ୍ଚିତ ଭାବରେ ବାଟ କାଟି ଆଗେଇ ପାରିବି ମୁଁ, ଆଗେଇ ଯିବି ଜୀବନରେ ମୋର ।

ଆଇମା ଦିନେ ଆସି ପହଞ୍ଚିଗଲି, ମୋତେ ଦେଖିବାପାଇଁ—ଆଉ ମୁଁ ତା'ପାଖରେ ବାଡ଼ି ବସିଲି ଉତ୍‌ଫୁଲ୍ଲିଆ ବିବରଣୀ ରାଣୀ ମାର୍ଗଟ ସଂପର୍କରେ, ବେଶ୍ ପୁଲାଏ ନାସ ଶୁଙ୍ଘି—(ଗୋଟାଏ୍ ଦମ ଧୂଆଁ ଗୁଣ୍ଡ ପିକାରୁ)—କହିଲି ସେ, ଆଇମା—

"ଆରେ, କି କଥା ମ !—କେଡ଼େ ମନଖୁସିଆ ମ ଶୁଣିବାକୁ,—ହଁ ମ ମର୍ତ୍ତ୍ୟରେ କଣ କମ୍ ଭଲ ଲୋକ—ଭଲ ଗୁଣର ଅଛନ୍ତି କରେ, ଖାଲି ଯାହା ଖୋଜିଲେଖ କେଉଁଠି ସବୁ ଅଛନ୍ତି ଦେଖିବାକୁ ପଡ଼ିବ—ଆଉ ନହେଁ, ତାଙ୍କ ଭେଟ ମିଳିବ, ନିଶ୍ଚେ !"

ଆଉ ଦିନେ କହିଲି ସେ—ଆଇମା :

"ଶୁଣୁଚ, ଯାଉଚ ଯିବ ତା' ପାଖକୁ,—ଆଉ ତୋ ପାଇଁ—ତୋ ପକ୍ଷରୁ ମ—ଧନ୍ୟବାଦ ଦେବ ତାକୁ—କହିବ—"

"ନା, ନା,—ତା' କର ନାହିଁ ।"

"ହଉ ତେବେ, ହଉ କରିବ ନାହିଁ—ଯିବି ନାହିଁ ତା' ପାଖକୁ—ହେ ମହାପ୍ରଭୁ, ହେ ମହାପ୍ରଭୁ, କେଡ଼େ ଆନନ୍ଦର କଥା, କେଡ଼େ ଆନନ୍ଦର କଥା ମ—ମୋ ଦିନକାଳ ବଢ଼ିଯାଅନ୍ତା କି—କାଳ କାଳ ଯୁଗ ଯୁଗ ମୋର ବଢ଼ିଯାଆନ୍ତା କି ଏଥିରେ……"

ସୌଭାଗ୍ୟଟି ହେଲି ନାହିଁ ରାଣୀ ମାର୍ଗଟର ମୋତେ ସ୍କୁଲରେ ଭର୍ତ୍ତି-ହୋଇଯାଇ ପଢ଼ିବସିବାର ଦେଖିବା ପାଇଁ । ଠିକ ହ୍ୱିଟ୍‌ସନ ପର୍ବ ଦିନ (ଇଷ୍ଟର ପର୍ବର ସପ୍ତମ ରବିବାର) ଦିନ ଅଘୁଭ ଅତି ଅସୁଖକର ଘଟଣାଟାଏ ଘଟିଗଲି—ଯେଉଁଥିରେ ପ୍ରାପ୍ତ ସବୁ କାମ, ସବୁ ଆଶା, ସବୁ କାନ୍ତି ଏକାବେଳକେ ନଷ୍ଟ ହୋଇଗଲି, ପଣ୍ଡ ହୋଇଗଲି ମୋର କହିଲେ ଚଳେ ।

ସେହି ହ୍ୱିଟସନ ପର୍ବ ବେଶି ଦିନ ନ ଥାଏ । ହଠାତ୍ ମୋର ଆଖିପତା ଯୋଡ଼ାକ ଫୁଲି ଉଠିଲି—ଆଖିଦୁଇଟା ପୂରାପୂରି ବୁଜି ହୋଇଗଲି । ମାଲିକମାନେ ଡରିଗଲେ--ମୁଁ କାଳେ ଅନ୍ଧ ହୋଇଯିବି, ମୋତେ ଡର ମାଡ଼ିଲି—ସେମାନେ ମୋତେ ତାଙ୍କର ଚିହ୍ନାପରିଚ ଜଣାଶୁଣା ଜଣେ ଡାକ୍ତରଙ୍କ ପାଖକୁ ନେଲେ—ଧାତ୍ରୀବିଦ୍ୟାର ଡାକ୍ତର ସେ—ନାଆଁ ହେନେରିକ୍ ରେଡ୍‌କେଲ୍‌ଚ୍ । ଆଖିପତା ଦୁଇଟି ତଳେ ସେ ଛୁରିଛୁରି ଚଲାଇଦେଲେ—ବ୍ୟାଣ୍ଡେଜ-ଦିଆ ଆଖିରେ ବିଛଣାରେ ପଡ଼ିଲି କେତେଦିନ—ଝୁରି ହେଉଥାଏ ଅନ୍ଧାରରେ—ଛଟପଟ

ହୋଇ ଯନ୍ତ୍ରଣାରେ, ହୃଷ୍ଟସନ୍ ପଟ୍ଟର ପ୍ରବଞ୍ଚନ—ବ୍ୟାଣ୍ଡେଜ ଖୋଲ୍‌ହେଲା—ବିଛଣାରୁ ଉଠିଲି ନାହିଁ ଯେ ଉଠିଲି ସତେ ଯେମିତି କବର ଭିତରୁ—ଯେଉଁଥିରେ ଜୀବନ୍ତରେ ପକାଇ ଦିଆଯାଇଥିଲା ମୋତେ କେଜାଣି କେତେ କାଳରୁ । ଅନ୍ଧତ୍ୱରୁ ଅଧିକ କ'ଣ ଭୀଷଣ ଅଧିକ କଣ ବିଭୀଷିକାମୟ ଅକଥନୀୟ ଦାରୁଣ ଦୁଃଖ ଦୁର୍ଦ୍ଦଶାବନ୍ଧ ହୋଇପାରେ ବା ସମଗ୍ର ବିଶ୍ୱର ଦଶଙ୍କଗରୁ ନଅକ୍ଷଗ ଦର୍ଶନ ଉପଭୋଗରୁ ବଞ୍ଚିତ କରେଇ ତାର ଅନ୍ଧତ୍ୱର—ଶୀକାରକୁ ?

ଆନନ୍ଦରେ ଉଚ୍ଛୁଳି ଉଠୁଥାଏ ହୃଷ୍ଟ୍‌ସନ ପଟ୍ଟର ଦନଟି, ଦେହଦୁଃଖ ପାଇଁ ଦ'ପହରକୁ ଖଲାସ ପାଇ ମୋ କାମ ପାଇଟିରୁ ସିଧାସଳଖ ମୁହାଁଇଲି ମୁଁ ରୋଷଘରଗୁଡ଼ିକୁ—ଦେଖାକଲି ଯାଇ ଗୋଟିକ ପରେ ଗୋଟିଏ ସୈନ୍ୟଗ୍ରୁହଣିର ସେନାଧ୍ୟକ୍ଷମାନଙ୍କର ନୌକରମାନଙ୍କୁ, ଗମ୍ଭୀର ପ୍ରକୃତିର ରୁଫାସ୍ୱେଭକୁ ଖୁଜି କଏ ଯେ ଆଉ ମାତାଲ ଅବସ୍ଥାରେ ନ ଥିଲା, ଏମିତି ନୁହେଁ । ସଜ୍ଜ ହୋଇ ଆସୁଥାଏ, ଗୋଟାଏ ଶ୍ଳେଟ ମୁଣ୍ଡିକାଠରେ ସିଦୋରଭ ମୁଣ୍ଡକୁ ପାହାରେ ପକାଇଲା ସ୍ୱେଟମେଖୀନ । ବାଟଘରଟାରେ ଅଚେତ ହୋଇ ଢଳିପଡ଼ିଲା ସିଦୋରଭ । ଆଉ ଚେତା ପଶିଲା ସ୍ୱେରମୋଖୀନର, ଭୟରେ ଦୌଡ଼ିଲାଇ ଲୁଚିଲା ଯାଇ ଉପତ୍ୟକାରେ—ଗୋଟାଏ ଖାତ ଭିତରେ ।

ବୃଦ୍ଧଆଜେ ସେଇ ହତା ଭିତରେ ଗସ୍ତି ହୋଇଚଲି ଆଖିପିଛୁଳାକେ, ଖୁନ୍ କରାଯାଇଚ ସିଦୋରଭକୁ, ବାରଣ୍ଡା ପାହାଚଗୁଡ଼ିକ ପାଖରେ ଆସି ଚୁଣ୍ଡ ହୋଇଚଲେ ଦଳେ, ଅଳ୍ପ କେଇଜଣ ଅବଶ୍ୟ । ଏତେ ଏଡ଼େ ଡ଼େଲା କାଡ଼ି ଖୁନ୍ଧିରହିଲେ ରୋଷଘର ଆଉ ବାଟଘର ମଝିରେ ଦ୍ୱାରମୁହଁରେ ନିଶ୍ଚଳ ହୋଇ ଲମ୍ବ ହୋଇ ରହିଥିବା ସୈନିକ (ସିଦୋରଭ)ଟାର ଦେହକୁ । ଫୁସ୍‌ଫାସ୍ ହେଲେ ସମସ୍ତେ—ଡକାଯାଉ ପୁଲିସକୁ ଡକାଯାଉ, ଡକାଯିବା ଉଚିତ ହେବ । କିନ୍ତୁ କେହି ବାହାରିଲେ ନାହିଁ, ଡାକିବାକୁ ଯିବାପାଇଁ, ଆଉ କାହାରି ବି ସାହସ ପାଇଲା ନାହିଁ ଟିପ ମାରିବା ଲାଗି ସିଦୋରଭ ଦେହରେ ।

କାମବୃତ୍ତୀ ନାତାଲିଆ କୋଜ୍‌ଲୋଭସ୍କାୟା ପୋଷାକପତ୍ର ଧୁଆଧୋଇ ସଫାସଫି କରିବା କାମ ଯାହାର, କେଉଁଠି ଥିଲା ଆସି ପହଞ୍ଚିଗଲା ପିନ୍ଧିଥାଏ ଅରଖ ନୂଆ ଫିକାନେଳି ଲଭେଣ୍ଡର ରଙ୍ଗର ବେଶ ମହକିଲା ମହକିଲା ଫ୍ରକଟିଏ ଚଉଡ଼ା ଧଳା ରୁମାଲଟିଏ ପକାଇଥାଏ କାନ୍ଧରେ । ରାଗରେ ଗରଗର ହୋଇ ଠେଲିଠାଲି ଦ'କରକୁ ଆଡ଼େଇ ଦେଇ ଲୋକଗୁଡ଼ାଙ୍କୁ ଚଢ଼ିଗଲା ପାହାଚ ଉପରକୁ । ବାଟଘର ଦ୍ୱାରମୁହଁକୁ ଯାଇ ବସିପଡ଼ିଲା ଚକାକାଳି ପକାଇ ସୈନିକର ଦେହଟା ପାଖରେ ।

“ଅନ୍ଧ ବୋକାଗୁଡ଼ାକ, ମୁଣ୍ଡରେ ଗୋବର ଅଛି ତମର ! ବଞ୍ଚିଚ ଲୋକଟା ହେଇ, ଏଁ !” ପାଟିଟାଏ କଲା, ରଡ଼ିଟାଏ ବା, “ଆଣ, ଆଣ ବେ ପାଣି ଆଣ !”

"ତୋର କଣ ଯାଉଚ ଲୋ ନାକ ପୂରଉଚୁ ଆସି ଅନ୍ୟ ଲୋକଙ୍କ କାରବାରରେ !" ଡରେଇ ତାକୁ ସାବଧାନ କଲେ ସମସ୍ତେ ଏକସ୍ୱରରେ !

"ପାଣି ପାଣି, କହୁଚ ପାଣି !" ଗର୍ଜି ଉଠିଲା ସେ, ପାଟି କରି ଉଠିଲା ଆତୁର । ନିଆଁ ଲାଗିଗଲା ଯେମିତି କେଉଁଠି । ଝଟ୍‌କିନି, ଉଚିତ କାମକଲାଭଳି ଠିକ୍ ସମୟରେ ଆଣ୍ଠୁ ଉପରକୁ ଟେକିନେଲା ନୂଆ ଫ୍ରକଟାକୁ, ତଳକୁ ଝିଙ୍କି ଆଣିଲା ସାୟାକୁ—ଝରଝର ହୋଇ ରକ୍ତ ବୋହିଯାଉଥାଏ ସୈନିକର ମୁଣ୍ଡରୁ, ଟେକିନେଇ ଥିରକିନି ରଖିଲା ନିଜ କୋଳ ଉପରେ ।

ଧୀରେ ଧୀରେ ସେଠାରୁ ଗୋଟି ଗୋଟି ହୋଇ ଏଣିକି ତେଣିକି ମୁହଁ ବୁଲାଇ ଖସିଗଲେ ଭଦ୍ରାଳୁ, ନାପସନ୍ଦକାରୀ ଲୋକଗୁଡ଼ାକ । ଅନ୍ଧାରିଆ ଆଲୁଅରେ ବାଟଘରଟିରେ ଦେଖିପାରୁଥାଏ ମୁଁ, କାମତୁଣୀର ଗୋଲଗାଲ ମୁହଁଟିରେ ଚକ୍ ଚକ୍ କରି ଉଠୁଥାଏ ଜଳ-ଛଳଛଳା ଆଖିଯୋଡ଼ିକ । ପାଣି କଳସୀଏ ଘେନି ଆସିଲା, ଧାଇଁଯାଇ ସିଦୋରଭର ମଥାରେ ଆଉ ତୁଣ୍ଡରେ ଚାଳ୍—କହିଲା ସେ !

"କନୁ ଦେଖ୍, ଓଦା କରନା ମତେ—ଯାଉଚି ମୁଁ ସାନ୍ଧ ବୁଲି, ବନ୍ଧୁ-ବାନ୍ଧବଙ୍କୁ ଭେଟିବା ପାଇଁ ।" ସତର୍କ କରିଦେଲା ମୋତେ ।

ଚେତା ଆସିଲା ସୈନିକଟିର, ଆଖି ମେଲିଲା । କାଚକେନ୍ଦୁ ପରି ଶେତାଳିଆ ଆଖି । ଅନେଇ ରହି ଗଅଁ ଗଅଁ ହେଲା କୁଉଁ କୁଉଁ ହୋଇ କୁନ୍ଥେଇ ହେଲା ଯନ୍ତ୍ରଣାରେ କାତର ଭାବରେ ।

"ଉଠ' ସ୍ମାଲ୍ଟର ଉଠ, ଟେକି ଧର !" ତା' ଦ' କାଖ ତଳେ ହାତ ଦେଇ ନିଜର ମୁଠିଣିଏ ଛଡ଼ା ଦୂରରୁ ଧରି ରଖି ତାକୁ, କାଳେ ଫ୍ରକ୍‌ଟା ମଇଳା ହୋଇଯିବ ଏଇ ଡରରେ, ଠାରିଦେଇ କହିଲା ମୋତେ, ନାତାଲିଆ ଦମ୍ଭର ସହିତ ! ଆମେ ଦୁହେଁ ଟେକାଟାକି କରି ନେଲୁ ତାକୁ । ସେଇ ସୈନ୍ୟଟିକୁ, ରେଷଘର ଭିତରକୁ, ଶୁଆଇଦେଲୁ ବିଛଣାରେ । ଓଦାକନା ଖଣ୍ଡିକରେ ମୁହଁଟିକୁ ତାର ପୋଛିଦେଲା ନାତାଲିୟା, ଗୋଡ଼ କାଢ଼ିଲା ଘରୁ କହି କହିକା ।

"ଥରକୁ ଥର କନାଟିକୁ ଭିଜାଉଥିବୁ । ଆଉ ତା ମୁଣ୍ଡରେ ଦେଉଥିବୁ । ଯାଏଁ ମୁଁ ଖୋଜେ ଆଗ, ଦେଖେଁ କୁଆଡ଼େ ଗଲା ସେ ବୋକା ନିରୁଦ୍ଦିଆଟା ! ମାତାଲ ବଦମାସ, ପାଜି ସଇତାନଗୁଡ଼ାକ, ନିଜକୁ ନିଜେ ମଦ ପିଆଇ ପିଆଇ ଜେଲରେ ନ ପୂରେଇଲେ କଣ ଶାନ୍ତି ଅଛି ତାଙ୍କର !

ଦେହରୁ ତଳକୁ ଗଳେଇ ଖସାଇଦେଲା ରକ୍ତ ଦାଗଲଗା ସାୟାଟିକୁ, ଗୋଡ଼ରେ ଠେଲିଦେଲା ଗୋଟାଏ କଣକୁ । ଅତି ବେଶ୍ ଯତ୍ନର ସହିତ ସୁଧୁରି କରି ଝାଡ଼ିଝୁଡ଼ି ନେଲା ଉପରୁ ତଳଯାଏ ଖସଖସିଆ ନୂଆ ଫ୍ରକଟିକୁ ! ତାପରେ ବାହାରିଗଲା ପଦାକୁ !

ଗୋଡ଼ ହାତ ଗୁଡ଼ିକ ଲମ୍ବ ହୋଇ ପଡ଼ି ରହିଲା, ସିଦୋରଭ—କାଶିଲା ଆଉ ଗଅଁ ଗଅଁ ହେଲା ରହି ରହିକା, ଥପ୍ ଥପ୍ ହୋଇ କଳା କଳା ରକ୍ତ

ଝରିପଡ଼ିଲା ତା’ ମୁଣ୍ଡରୁ ଖୋଲା ପାଦ ଉପରେ ମୋର । କେମିତିକା ଅସନା ଅପୁଝିଆ ଲାଗୁଥାଏ ମୋତେ । କିନ୍ତୁ ଡରରେ ପାଦ ଦୁଇଟାକୁ ଟିକଏ ଖସେଇ ଘୁଞ୍ଚାଇ ପାରୁ ନ ଥାଏ ମୁଁ ହଲଚଲ ହୋଇ !

ସାଂଘାତିକ ଭାବରେ ହତାଶ ହୋଇପଡ଼ିଲି ମୁଁ ! ବାହାରେ ଚାରିଆଡ଼ କଥା କହି ଉଠୁଥିଲା ଛୁଟି ଦିନର ! ଅଳନ୍ଦଗୁଡ଼ିକ ବାରଣ୍ଡାଗୁଡ଼ିକ, ଫାଟକଗୁଡ଼ିକ ସଜ୍ଜା ହୋଇଥିଲା କଅଁଳ କଅଁଳ ବାର୍କରେ, ପ୍ରତି ଖମ୍ବରେ ଶୋଭା ପାଉଥିଲା ଛକଛଟା ସୂତରେ ବନ୍ଧା ହୋଇ ମ୍ୟାପ୍ଲ ଆଉ ଚେଷ୍ଟନଟ ଗଛର ଅଗି ଅଗ ଡାଳଗୁଡ଼ିକ, ଆନନ୍ଦର କଳକୋଳାହଳ ଧ୍ୱନି ଖେଳି ଯାଉଥିଲା—ବାଜି ଉଠୁଥିଲା ଏମୁଣ୍ଡ ସେମୁଣ୍ଡ—ସମୁଦାୟ ଗଳିପଥଟିରେ, ପ୍ରତ୍ୟେକଟି ଚଳ, ପ୍ରତ୍ୟେକଟି ମୁହଁ ଦିଶୁଥିଲା ଝକ ଝକ ସତେଜ, ଯୌବନରେ ଉଜ୍ଜ୍ୱଳ—ଖେଳ ଖେଳ ପହିଲି ସକାଳଟିରେ ମନେ ହୋଇଥିଲା ମୋର ଆସିଲା ବସନ୍ତର ଉତ୍ସବ ଏଇ । ବସନ୍ତର ଛୁଟି ଏଇ ଆସିଲା, ରହିବ ଏ, କଭିଯିବ ନାହିଁ କେବେହେଲେ—ଏହା ପରେ କିଛି ମଧୁମୟ ଉତ୍ସବମୟ ହୋଇ ଉଠିବ ମ, ଆନନ୍ଦମୟ ନିର୍ମଳ ଆଲୋକମୟ ହୋଇ ଉଠିବ ଜୀବନ ।

ବାନ୍ତିକଲା ସୈନ୍ୟଟା, ଗରମ ଗରମ ଭୋଦକା ଆଉ ପିଆଜ ରସୁଣର ପଚାସଢ଼ା ଦୁର୍ଗନ୍ଧରେ ଫାଟି ପଡ଼ିଲା ଟେପଘରଟା, ରୁନ୍ଧି ହେଇଗଲା ନାକପୁଡ଼ା ଦୁଇଟା ମୋର ! ବେଳେବେଳେ କିଛି କିଛି ସମସ୍ତ ଗୁଡ଼ି ଗୁଡ଼ି ଝରକା, କାଚ ପାନିଆଗରେ ଚାପି ହୋଇ ଲଗି ଯାଉଥାଏ ଅସି—ଦିଶି ଯାଉଥାଏ ମୋତେ, ଚଟକା ଚଟକା ଗୁଇ ଗୁଇଆ ଅସ୍ପଷ୍ଟ ମୁହଁଗୁଡ଼ାକ, ଆଉ ସେଇ ମୁହଁଗୁଡ଼ାକର ବ ଢ’ କରରେ ମେଲା ମେଲା ଓସାରିଆ ପାପୁଲିସବୁ, କ ବରକାଟିଆ ଉସ୍ଖୁଙ୍କିଆ କାନଗୁଡ଼ାକ ଯେମିତି ।

ମୁଣ୍ଡ ଭିତରଟି ସଫା ହୋଇ ଅସିଲା ପରେ ଟୁପୁଟୁପୁ ହୋଇ କହିଲା ସୈନ୍ୟଟି ।

"କଣ ହେଲା ଯେ ? ପଡ଼ିଗଲି ମୁଁ, ପଡ଼ିଗଲେ କଣ ମୁଁ ? ହେର ମେ ଝି କୋଉଠି ଗୁ ! ହେଇଟି ଯେ ଏଠି ତୋର ସାଙ୍ଗଟା ।"

କାଶିଲା ସେ ଭୁହାକୁ ଭୁହା କାଶିଲା, କାନ୍ଦିଲା ଲୁହ ଗଡ଼େଇଲା ମାତାଲର ଲୁହ, ଅଉ ବାହୁନି ହେଲା କରୁଣ ସ୍ୱରରେ, କେଁ କେଁ ହୋଇ ।

"ମୋ ଲୁନି ଭଉଣୀଟି ବସ୍ତୁରା, ମୋ ଟିକି ଭଉଣୀ ।"

ଗୋଟିକିଯାକ ଦେହ ପାଣି ସର ସର ଓଦା, ମ ଟି କାଦୁଅରେ ପୁରୁ ପୁରୁ ଖସଡ଼ା—କଦର୍ଯ୍ୟ ଗନ୍ଧ ବାହାରୁଥାଏ ସେଥିରୁ । ଟାଣି ଓଟାରି ହୋଇ ଉଠି ବସିଲି, ଛିଡ଼ା ହେବାକୁ ଚେଷ୍ଟା କଲି ହଠାତ୍, ମୁଣ୍ଡ ବୁଲେଇଗଲା ତ ର, ଘୂରିଯାଇ ମେଞ୍ଚା ହୋଇ ନାଥୁକିନ ଲେଟିପଡ଼ିଲା ବିଛଣାରେ ପୁଣି । ଡ଼ୋଳା ଦୁଇଟାକୁ ଗଡ଼ଉ ଗଡ଼ଉ ଆଖିକଣକୁ ଚାହିଲା ସେ ଗୁନିଆ ହୋଇ ଭୟରେ ।

"ଆରେ ସେ ମୋତେ ଖୁନ୍ କରିଦେଲା, ଖୁନ୍ କରିଦେଲା !"

ମାରଦେଲାରେ ମୋତେ, ମାରଦେଲା !

ଭାରି କୌତୁକିଆ, ଭାରି ମଜାର ଲାଗିଲା କଥାଟା !

"କଣ ଦେଖି ହସୁଚୁରେ ହେଁ ହେଁ ପାଜି, ଫାଜିଲଟା ?" ନିର୍ବୋଧ ଭଳି ନିସ୍ତେଜିଆରେ ଅନେଇ ରହି ମୋ ଆଡ଼କୁ ପଚାରିଲା ସୈନ୍ୟଟା । "କେମିତି ହସ ଆସୁଚିରେ, ହସ ମାଡ଼ୁଚିରେ ତୋତେ, ଏମିତି ଖୁନ୍ କରାଯିବା ବା ଏମିତି ମଲପୋଛ ହତ୍ୟା କରାଯିବା ଦେଖି ଏକବେଳକେ ଗୋଟିସୁଦ୍ଧା କାଳ କାଳ ପାଇଁ ଏ ......"

ତ' ହାତରେ ମତେ ଆଡ଼େଇ ପେଲି ଦେବାକୁ ବାହାରିଲା, ଚେଷ୍ଟା କଲା ଟୁପ ଟୁପ ହୋଇ :

"ଟଫେଟରେ (ଜେରୁଜେଲମ ପାଖ ନରବଳି ସ୍ଥାନ) ନରକରେ ପଡ଼ିଲେ ପୟଗମ୍ବର ଇଲ୍ୟାକୁ କହିଲେ, ଆଉ ଘୋଡ଼ା ଉପରେ ଜର୍ଜ, ତା ଆଗରେ ଦରଜ ର ହୋଇଲେ ! ଯା' ଭାଗ୍ ମୋ ଆଗରୁ, ଭାଗ୍ ବଦମାସ, ଭାଗ୍ ମୋ ପଟ ଗୁଣ୍ଡି ଭାଗ୍ ସଇତାନ !"

"ଚୁପ କର, ବନ୍ଦ କର ଏ ବଡର ବଡ଼ର୍—ଏ ବକ୍‌ବକ୍," କହିଲି ମୁଁ ।

ରାଗରେ ଗର୍ଜନ କରି ଉଠିଲା ସେ ! ପାଦ ଦୁଇଟାକୁ ଗୋଟାକ ପରେ ଗୋଟାଏ ଉଠାଇ ପକାଇ ବାଡ଼େଇ ଲାଗିଲା ।

"ଖୁନ୍ ହେଲି ମୁଁ—ଖୁନ୍ ହେଲି ମୁଁ—ମରିଯାଇଚି ମୁଁ, ମରିଯାଇଚି—ଆଉ ରୁ···ଆଉ ରୁ···"

ବିଧାଟାଏ କଷି ଦେଲା ସେ ମୋ ଆଖିକୁ ଆଡ଼ବାଟରେ ମଇଲା କୋତରା ଜିବଲୁଆ ହୋଇ ଝୁଲିପଡ଼ିଥିବା ଓଜନିଆ ହାତରେ ତାର । ଚିତ୍କାର କରି ଆଖି ବୁଜି ଯନ୍ତ୍ରଣାରେ ଏକମୁହାଁ ହୋଇ ଅନ୍ଧଭଳି ଦୌଡ଼ିଲି ଅଗଣା ଆଡ଼କୁ, ସେଠି ହାବୁଡ଼ିଗଲି ନାତାଲିୟାକୁ—ସେ ସ୍ୱେରମୋଖୀନକୁ ବାହାରୁ ଧରି ଟାଣି ଟାଣି ଯୋଷାରି ଯୋଷାରି ଆଣୁଥାଏ ଆଉ ପାଟି କରୁଥାଏ—

"ଚାଲ ଚାଲ ବେ ଖଚରଟା ବଲଦଟା !" ମତେ ଦେଖି ପକାଇ କହି ଉଠିଲା ସେ—

"କଣ ହେଲରେ—କଣ ହେ ପୁଣି ?"

"ମାରଧର କରୁଛି ସେ ।"

"ମାରଧର କରୁଚି ?" ଆଶ୍ଚର୍ଯ୍ୟ ହୋଇ ଦୋହରେଇଲା ନାତାଲିୟା—ସ୍ୱେରମୋଖୀନକୁ ଝାଙ୍କି ଦେଇ କହିଲା ତାକୁ ।

"ଏଥର, ଏଥର ବୁଝିଲୁ—ମୁଣ୍ଡିଆ ମାର, ମୁଣ୍ଡିଆ ମାର ଠାକୁରଙ୍କୁ—ସେଇ ଏକା, ସେଇ ଏକା ରଖିଲେ ତୋତେ !"

ଅଣ୍ଡାପାଣି ଗୁଡିଲି ଯାଇ ମୋ ଆଖିରେ—ଧୋଇଧାଇ ସାରିଲା ପରେ ଭଲକରି ଅନେଇ ପାରିଲି ଟିକିଏ—ଉର୍ଦ୍ଧ୍ୱମାରି ଚାହିଁଲି ହାରମୁହଁ ବାଟେ ରୋଷଘର

ଭିତରକୁ, ଦେଖିଲି ସେଠି ଦ'ଟାଯାକ 'ସୈନ୍ୟ' କାନ୍ଦୁଛନ୍ତି କଇଁ କଇଁ ହୋଇ କୁଣ୍ଢାକୁଣ୍ଢି ହୋଇ ଗଡ଼ୁଛନ୍ତି ମାତାଲଙ୍କ ପାଗଳାମିଆ ମିଳାମିଶାରେ, ସବୁ ସାଙ୍ଗଅହଙ୍କା ମଗ୍ନମନ ଭୁଲିଯାଇ । ହଠାତ୍ ସେମାନେ ଛଡ଼ାଛଡ଼ି ହୋଇଗଲେ— ବାହାରିଲେ ନାତାଲସ୍ବାକୁ କୁଣ୍ଢେଇବେ—ସେ କିନ୍ତୁ ଜବରଦସ୍ତ ଦ' ଦ' ଗୋଇଠା କସିଦେଲା ଦୁହିଙ୍କୁ, ପାଟିକରି ଉଠିଲା—

"ରଖ ତମର ପଂଝାଗୁଡ଼ାକ, ଛୁଅଁନା, ଲଗନା କହୁଚି ମୋ ଦେହରେ କେଉଁଠି—କୁହାଗୁଡ଼ାକ, କାମୁଡ଼ା କୁହାଗୁଡ଼ାକ ! କଣ ବୋଲି ମନେ କରିଚ କ ମୋତେ ?—ତମର କୋଦେଇ ଲାଲମୁହାଁ ଖାନକୀ ଟୁଣ୍ଡାଳଙ୍କ ଭିତରୁ ଗୋଟାଏ ମୁଁ ? ଯା ଶୁଅ ଯା ଚୁପଚାପ, ତମ ହାକମମାନେ ଘରକୁ ଫେରିବା ଆଗରୁ ଯା ଢୋକେଇ ଢୋକେଇ ଗଡ଼ ଯା, ଘୁଙ୍ଗୁଡ଼ି ମାରିନଥ ଦ'ଟା—ଯା ତାଜା ହୋଇ ଠିକ୍ଠାକ ହୋଇଯା—ନଇଲେ ପାଇବ ଯେ ପାଇବ ଆଚ୍ଛାକରି ପାନେ ପାନେ…"

ସେ ତାଙ୍କୁ ଓଟାରି ନେଇ ଶ୍ଳେଟପିଲାଙ୍କ ପରି ଗଡ଼େଇ ଶୁଆଇଦେଲା ବିଛଣାରେ, ଜଣକୁ ଖଟ ଉପରେ ଆଉ ଜଣକୁ ତଳେ ଚଟାଣରେ । ଘୁଂଘୁଡ଼ିମାରି ଆରମ୍ଭ କରିଦେଲେ ସେତେବେଳେ ସେମାନେ, ବାହାରଘରକୁ ବାହାରି ଆସିଲା ସେ—

"ଇଲୋ ମା ! ଦେଖ୍ ଲୋ ମୋ ଫୁକିଟାକୁ, କଣ ହୋଇଗଲା ଲୋ ! ଛି ଲୋ କୋଉ ଗୋଟାକଯାକ, ସ୍କୁଲ ପିଢ ପିଢ ସାହପଡ଼ଣା ବୁଲି, ବନ୍ଧୁଘରକୁ ସବୁ ? ଆରେ ସେ କଣ ମାରିଲା ତୋତେ ? ମାରିଲା ଏମିତି, ବୋକା ନଧଁମ ବୋକା, ପଇତାନଟା—ସେଇ ଦେଖିଲୁ ଏ ଭୋଦକା ପିଇଲେ କଣ ହୁଏ ? ଏ ଭୋଦକାପିଆ କଥା ମନେରଖିବୁ ବୁଝିଲୁ, ଧନଟି ପରା ! ପିଇବୁ ନାହିଁଟି କେବେ, କେବେହେଲେ ଛିସିଝିବୁ ନାହିଟି ଏ ବଦଅଭ୍ୟାସକୁ ."

ପାଖରେ ତାର ବସିଲି ଯାଇ ବେଞ୍ଚ ଉପରେ ଫାଟକ କରରେ । ପଚାରିଲି ତାକୁ—"କେମିତି କଥା ଏ ମାତାଲଗୁଡ଼ାକୁ ତମର ଡ଼ରଭୟ ନାହିଁ ଆଦୌ ?"

"ଥିରମତିଙ୍କୁ ବ ନାହିଁ, ଡରଭୟ ନାହିଁ ମୋର—ଏଇଠି, ହେଇ ଏଇଠି ଧରି ଧରି ରଖେ ସେମାନଙ୍କୁ ସମସ୍ତଙ୍କୁ !" କହିଲା ସେ ଲାଲ ହାତରେ ଶକ୍ତ ମୁଠାଟିକୁ ଦେଖାଇଦେଇ ମୋତେ, କହିଲା ସେ ଶିରଘଣ୍ଟା ଥିଲା ମୋର, ଜାଣିଲୁ ନାହିଁ ସେ ଆଜ ନ ହିଁ—ଗଲଣି ସେ, ସେ ଆଉପୁରକୁ ଗଲଣି କୋଉଁଦନରୁ—ମଦ ପିଇ ପିଇ ପଡ଼ିଯାଉଥାଏ ସେ, ମୁଁ କଣ କରୁଥାଏ ଜାଣ ? ହାତଗୋଡ଼ ବାନ୍ଧି ପକେଇ ଦେଉଥାଏ ଘଡ଼ିଏ ଖଣ୍ଡେ ଶୋଇପଡ଼ିଲେ ସେ ନିଶା ଛୁଟି ଛୁଟି ଆସିଲେ ତାର, ପ୍ୟାଣ୍ଟକୁ ଖସାଇ ଦେଉଥାଏ ତାର ଅଣ୍ଟାକୁ—ଆଉ ବେଶ୍ ଟାଣୁଆ ଦଣ୍ଡାଫଣ୍ଡା, ଦାଡ଼ଫାଡ଼ ଯାହା ପାଉଥାଏ ଦେଉଥାଏ ସେଥିରେ ଆଚ୍ଛା କରି

ଟେଢେଇ ପାହାର ଉପରେ ପାହାରମାନ ବସେଇ—'ଘୁଡ଼ୁ, ଘୁଡ ତୋର ଏ ଘୋଡ଼ାଚଢା, ଏ ଆକାଶଚଢ଼ା ପିଅପେଇ—ଘଡ଼ାକୁ ଘଡ଼ା ଘୁଡ଼ୁଘୁଡ଼୍ ଟୋପିକ ପରେ ଟୋପିଏ ଘୁଡ୍ ବନ୍ଦକର କହୁଚ, ସବୁଯାଃଟାଏ କଲେ ମଉଜ ପାଇଁ ଥାଏ ସେ, ଅନା ତାକୁ, ଛଳ ତା ଆଡକୁ—ମଉଜ କର ତାକୁ ନେଇ—ମଦଘଡା ମଦ-ସବୁକୁ ନେଇ ଲୁହେଁ—!' ଭୁଝ, ଭୁଝ ଏଥର—ଏଇ ଏମିତକା କହି ଦେଉଥ ଏ ଆହୁ ପିଟି ଲଗିଥାଏ ନ ପାଣବାପାଏ ଘୋଳେଇ ହେବାପାଏ ହାତଟା, ଆଉ ଏହା ପରେ ଜାଣିଲୁ, ଏହାପରେ ସେ ତ ଠିକ୍ ଝଲମେହୁଏ ମୋ ହାତରେ, ଲାଲହଳଦିଆ 'ପୁଷ୍ଟ' ରଙ୍ଗ ଘୁଳଏ ମୋ ମୁଠାରେ ।''

''ସବୁ ଟାଣ, ସବୁ ଶକ୍ତ ତ ତମେ'', କହିଲି ମୁଁ ଖୋଦ ଭଗବାନଙ୍କୁ ଠକାଥିଲି, ଭେଳକି ଲଗାଇ ମୋହି କରିଥିଲି ଯିଏ, ସେଇ ପହିଲି ନାସ୍ତି ଇଭିଟାକୁ ମନେପକାଇ । ନିଃଶ୍ୱାସଟିଏ ପକାଇ ଉତ୍ତର ଦେଲି ନାତାଲିସ୍ୱା !

''ଆରେ ମଣିଷଟାଠାରୁ ମାଇପିଟାର ଲୋଡ଼ା ବେଶି ତାକତ, ବେଶି ବଳ—ତାର ଏ ବଳ ଦରକାର ଦ'ଦଟାଙ୍କ ପାଇଁ ସେ ଆଉ ମିଣିପିଟା, କିନ୍ତୁ ହେଲେ କଣ ହେବ ଭଗବାନ ଠକଦେଲେ ତାକୁ—ମାଇପିଟାକୁ । ଠକ ଦେଇଛନ୍ତି ପୁରାପୁରି । ତେବେ ତ କେହି ଭରସା କରି ପାରିବ ନାହିଁ ତାରି ମୁଁହିଁକି ଉପରେ—ସାଆନ୍ତିଆ ଲୋକ ଉପରେ ।''

ରାଗ ନାହିଁ, ଇର୍ଷା ନାହିଁ, ଦ୍ୱେଷ ନାହିଁ, ମନରେ ଟିକିଏ ବୋଲି ଟିକିଏ କ୍ଷୋଭ ନାହିଁ—କଳୁଷ ନାହିଁ । ଧୀରସ୍ୱରରେ କହିଗଲି ସେ, ଗୁଡ ଉପରେ ବଡ ବଡ଼ ସ୍ତନ ଦୁଇଟି ଉପରେ ହାତ ଦୁଇଟିକୁ ଛନ୍ଦି ଦେଇ । ପିଠିଟି ଥାଏ ବାଡ଼ ଆଡ଼କୁ, ଆଉଜି ରହିଥାଏ ଟିକିଏ ସେଥିରେ । ସେ କି କରୁଣ ବିଷାଦରେ ସତେ ! ଆଖି ଦୁଇଟି ନିଶ୍ଚଳ ହୋଇ ଲାଗି ରହିଥାଏ ଉଙ୍କାଉଁଟା କଳକବ୍ଜା ଗେଳ୍ପଥରର ପ୍ରତିବନ୍ଧକରେ ଭର୍ତ୍ତି ଡ୍ୟାମଟାକୁ । ମୁହୂର୍ତ୍ତ ପରେ ମୁହୂର୍ତ୍ତ କୁଆଡେ ଆସି ବୋହି ଚାଲିଗଲି, ବୁଝି ପାରିଲି ନାହିଁ । ବାଉଳା ହୋଇ ବଟ ଭୁଲିଗଲି ସମସ୍ତର । ବସିରହି ଶୁଣି ଲାଗିଲି ଖାଲି ତାର ସେଇ ବଙ୍କା ବିଚକ୍ଷଣ କଥାଗୁଡିକ—ମତାମତଗୁଡ଼ିକ । ହଠାତ୍ ଆଖିରେ ପଡ଼ିଲି ମେର ଦୂରରେ ଡ୍ୟାମ ଉପରେ । ତା ଆର ମୁଣ୍ଡରୁ ମାଳକ ମୋର ତା' ସ୍ତ୍ରୀକୁ ଧରି ଅଣ୍ଟାରୁ ଆଲିଙ୍ଗନରେ ଆଗେଇ ଆସୁଛନ୍ତି ଚାଲି ଚାଲିକା । ଝୁଲି ଝୁଲି ଆସୁଥିଲେ ସେମାନେ କେଣ ଗଣମାମସ୍ତୀ ଭଙ୍ଗୀରେ, ମୃଗୀମୃଗୀ ପରି, ଆମ ଆଡ଼କୁ ଚାହିଁ ଚାହିଁ ଏକ ଲୟରେ—କଣ ସବୁ ଟିପ୍ପଣୀ କାଟି କୁହାକୋହି ହୋଇ ନିଜ ନିଜ ଭିତରେ ।

ସାମନାପଟ ଦ୍ୱାର ଖୋଲିବା ପାଇଁ ଧାଇଁଗଲି ମୁଁ । ସମସ୍ତେ ଉଠୁଥାଉ ପାହାଡ଼ରେ—ମାଲିକାଣୀଟି କହିଲା, କାମୁଡ଼ି ମାଂସ ଚୁଣ୍ଡେଇ ଦେଲାଭଳି :

''ହୁଁ, ତୁ ତେବେ ମଉଚ୍ଛ ସେଇ କାମଭୁଣୀ ଧୋବଣୀଟା ସାଙ୍ଗରେ !

ପାଉଁଥ କରୁଚ ନାହିଁ ? ଏଇ କଣ ଶିଖିଚୁ ତୁ ତଳ ମହଲର ସେଇ ଭଦ୍ରମାଇଟିଙ୍କ ଠୁ, ଏଇଆ ?"

କେତେ ଖୋଲ ଏତେ କଦୋ'ଧିଆ ଥିଲି ମନବ୍ୟାଟା ଯେ ଅପମାନଆ ଲାଗି ନ ଥାନ୍ତା ଆଉ, କନ୍ତୁ ମାଲିକଟା ମୋର ଯେତେବେଳେ ମୁରୁବୀଙ୍କ ଝାମ୍ପକନ ହସି ଦେଇ ପଚାରି କହିଲେ, ବାନ୍ଧିଲ ମୋତେ, ବାଧିଲ ମୋତେ କେଣି :

"ହୁଁ...ଆଚ୍ଛା, ବଡ଼ୁସ ହେଲଣି, ନାହିଁ ?"

ତହିଁ ଆରଦନ ସକାଳେ କାଲେଣିକାଠ ଆଣିବା ପାଇଁ ଗଲି ଯେତେ-ବେଳେ ଟିଣ-ଘର ଭିତରକୁ ଦେଖିଲି ଦ୍ୱାରମୂହେଁ ପାଙ୍କ କଳଣୀ କଣା ପାଖରେ ପଡ଼ିଚ ଖାଲ ପଇସା ଗାଣ୍ଡିଆଟିଏ । କେଜାଣି କେତେ ଥର ଦେଖିଥିବ ଏହି ଗାଣ୍ଡିଆଟିକୁ ପିଢୋରଭ ପାଖରେ । ସାଙ୍ଗେ ସାଙ୍ଗେ ତେଣୁ ଗୋଟେଇ ନେଇ ବଢ଼େଇଦେଲି ତାକୁ ।

"କନ୍ତୁ ଏ କଣରେ, ପଇସା ନାହିଁ ଏଥିରେ ?" ଗାଣ୍ଡିଆ ଭିତରେ ହାତ ପୂରାଇ କହିଲ ସେ । "ବୁଲ୍ଲିଟାଏ ଆଉ ଦଶଣ ଲୁପେନ, ଦେ ମୋତେ !"

ମୁଣ୍ଡରେ ତାର ଗୁଡ଼ିଆ ହୋଇଥାଏ ଚଉଲଆଟିଏ, ମୁହଁଟା ହଲଦିଆ ହୋଇ ଓହଳି ପଡ଼ିଥାଏ ତଳଆଡ଼କୁ, ଫୁଲିଲ ଫୁଲିଲ ଆଖି ଦୁଇଟାକୁ ମିଟି ମିଟି କରି ଚାହିଁଲ ସେ ମୋତେ, ବିଶ୍ୱାସ କଲ ନାହିଁ ଯେତେ କହିଲି ଗାଣ୍ଡିଆଟାରେ କିଛି ନ ଥିଲ, ଖାଲ ଥିଲ ସେଇଟା ପାଇଲି ଯେତେବେଳେ !

ସେ୍ୱରମୋହିନ କେଉଁଠି ଥିଲ—ମାଡ଼ିଆସିଲ—ତାକୁ ଅନ୍ଧୁର ଟିହାଇ ତା' ମନରେ ଭର୍ତ୍ତିକରି ଲଗିଲ ବିଶ୍ୱାସ ଜନ୍ମେଇବା ପାଇଁ...ମୁଁ...ମୁଁ ସ୍ୱୈର କରୀଚ, ମୁଁ ସ୍ୱୈର !

"ଏ, ହେଇ, ଏ ନେଇଚ—" ମୋ ଆଡ଼କ ମୁଣ୍ଡ ହଲେଇ କହିଦେଲି ସେ୍ୱରମୋହିନ ! "ନେ ଏହାକୁ ନେଇ ଯା ଏହା ମାଲିକ ପାଖକୁ । ସୈନ୍ୟଟିଏ ଆଉ ଚୋଟାଏ ସୈନ୍ୟ ଭାଇଠୁ ତ ସ୍ୱୈର କରେ ନାହିଁ ।"

ଏଇ କଥାରୁ ଠଉରେଇନେଲି ଠିକ୍ ପ୍ରକୃତରେ ପଇସାତକ ନେଇଯା'ଇ ସେ୍ୱରମୋହିନ ଖାଲ ଗାଣ୍ଡିଆଟିକୁ ଚତୁରଙ୍ଗବରେ ଆମ ନ ଜାଣିଲାପରି କିଛି ଚଖି ଦେଇଥାଏ ଟିଣଘର ପାଖରେ, ତେଣୁ ମୁହେଁ ମୁହେଁ ତାକୁ ବଢ଼େଇଦେଲି ସାଙ୍ଗେ ସାଙ୍ଗେ—

"ମିଛ, ଭୁଲ୍ଲା ମିଛ, ଡାହା ମିଛ । ତମେ, ତମେ ନେଇଚ ତମେ ସ୍ୱୈର କରୀଚ !"

ମୋ ଅନୁମାନ ଯେ ସତ, ଦୃଢ଼ବିଶ୍ୱାସ ଆସିଗଲ ମନରେ, ଦେଖିଲି ସେତେବେଳେ ତାର ସେଇ କର୍କଶିଆ ମୁହଁଟା ଏକାବେଳକେ ବିକୃତ ହୋଇଗଲ ଭୟରେ ଆଉ ରାଗରେ ।

"ପ୍ରମାଣ କର !" କେଁକେଇ ପାଟିକରି ଉଠିଲେ ସେ ।

କେମିତି ପ୍ରମାଣ କରିଥାନ୍ତି ସେ ? ପାଟିକରି ଅଜାଣ କମ୍ପାନି ସ୍ୱେରମୋଷିନ ନିର୍ଦ୍ଦେଶ ଦେଇସାରି ଦୋପାଟି ନେଲେ ମୋତେ ଅଗଣାକୁ—ସିଦୋରଭ ବ ପାଟି କରି କରି ବୁଲିଲେ ଆମ ପଛେ ପଛେ—ଝରକାରେ ସବୁ ଗୋଟାକୁ ତୋଟା ମୁହଁ ବୋତଲରୁ ସୋଲଠିପି ଛୁଟିକି ବାହାରି ପଡ଼ିଲାପରି ବାହାରି ଆସିଲି ଚଦକୁ ଠକଠାକ୍ ! ରାଣୀ ମାର୍ଗଟର ମାଆ ଦେଖୁଥାଏ ଆମକୁ ଧୀରସ୍ଥିର ଅବିଚଳ ଭାବରେ, ମୁହଁରୁ ଫସଫସ୍ ଧୂଆଁ ଛାଡ଼ି ଛାଡ଼ି ତାର ସେଇ ଅନିବାର୍ଯ୍ୟ ସିଗାରେଟରୁ । ମୋ ରୂପସୀ ମହିଳାଟିର ଆଖିରେ ସ୍ଥେଟ ହୋଇଗଲି—ତଳକୁ ପଡ଼ିଗଲି ଧୂସପୁର, କଣ୍ଠରେ ଗଲି—ଏଇଥ ଧରଣାକର ହତାହତ ଜନ ହରେଇଦେଲି ମୁଁ ।

ମନେଅଛି ଠିକ୍ ସୈନ୍ୟ ଦୁଇଟା ମୋ ହାତ ଦୁଇଟାକୁ ମୁଠରେ ଧରି ଜୋରରେ ନେଇଗଲେ ମୋତେ ମୋ ମାଲିକମାନଙ୍କ ଆଗକୁ, ମୋ ବିରୁଦ୍ଧରେ ଅଭିଯୋଗଗୁଡ଼ାକ ଅଜାଡ଼ି ହୋଇ ପଡ଼ୁଥିଲାବେଳେ କାନଦେଇ ସେଥିପ୍ରତି ମୁଣ୍ଡଟି ହଲଉଥାନ୍ତି ସେମାନେ ।

"ହୁ, ହୁଁ, ନିଶ୍ଚେ, ନିଶ୍ଚେ-ଖାସ ଦାମ ଖାସ କାରସାଦ ।" ଟିପ୍ପଣୀ ଦେଲି ଯୁବତୀ ମାଲିକାଣୀଟି ମୋର । "କାଲି ରାତିରେ ସବୁ ଦେଖିଛି ମୁଁ—ଦେହକୁ ଦେହ ଲଗେଇ ତାର ବସିଥିଲା କାମବାଲୀ ପାଖରେ, ପ୍ରେମ କରୁଥିଲା ତାକୁ । ନିଶ୍ଚେ ସେ ନେଇଥିବ, ନେଇଥିବ ପଇସାତକ—ବିନା ପଇସାରେ ବିନା ଟଙ୍କାରେ ଧୋବଣୀଠୁ କିଏ କଣ ପାଇପାରେ, ନା ପାଇବ ଏ !"

"ଠିକ୍ ଠିକ୍ ! ଠିକ୍ କଥା !"—ବଡ଼ପାଟିରେ କହିଉଠିଲା ସ୍ୱେରମୋଷୀନ ।

ଘାଇଁ ଘାଇଁ ହୋଇ ଘୂରିଗଲା ମଥାଟା ମୋର, କ୍ରୋଧରେ ଜଳି ଉଠିବି, ଗର୍ଜିନ ଉଠିଲି, ଯାହା ଇଚ୍ଛା ତାହା କହି କହି ଯୁବତୀ ମାଲିକାଣୀକୁ—ପାଇଲି ତାର ବନ୍ଦମୁହଁରେ ଅତି କଦର୍ଯ୍ୟ ଅତି ନାଇକ୍ସଗୁ ପାଣବଳ ପାହାର ପରେ ପାହାର ।

କିନ୍ତୁ ଏ ପାହାରଗୁଡ଼ାକରେ ଯେତେ ଯନ୍ତ୍ରଣା ପାଇଥିବ ମୁଁ—ସତ କହୁଛି ପାଇଲି ଖୁବ୍ କମ୍, ଯେତେ ପାଇଲି ରାଣୀ ମାର୍ଗଟ ମୋ ସପକ୍ଷରେ ଜଣ ମାରଣା କରିବ, ଏଇ ଭାବନାରେ ନିଜକୁ ନିଜେ ସଚେତ ବୋଲି ନ୍ୟାୟବନ୍ତ ବୋଲି ପ୍ରମାଣିତ କରିବ ମୁଁ କେମିତି ତା' ପାଖରେ—ଏ କ ନିଦାରୁଣ ମୁହୂର୍ତ୍ତ ଥିଲା ସେଇଟି ମୋ ପାଇଁ ;

ଭଗାକୁ ସୈନ୍ୟ ଦୁଇଟା ବୁହଁ ବୁହଁ ଅଗଣାମାଙ୍କ କେମିତି ସମ୍ମୁଖ ଚାଳିଟାରେ ପ୍ରଚୁର କରିଦେଲେ ଯାହା ସବୁ ଘଟିଥିଲା ତାର ହିଜିବିଜି ଖବରଣୀ, ତାର ସଂବାଦଗୁଡ଼ାକ । ସେହି ଦିନ ରାତିରେ—ଉପରମହଲା ଛାତିଆ ଅନ୍ଧାରି ଶୋଇଥାଏ ମୁଁ—ଶୁଣିଲି ତଳେ ଥାଇ ଆକାଶଛୁଆଁ ପାଟି କରୁଛି କାଡ଼ ଲିଷ୍ଟା କୋଟୋଲାଭସ୍କା !

"କାହିଁକି ମ, କ'ଣ ହୋଇଛି ମ ? ମୁଁ କାହିଁକି ପାଟି ବନ୍ଦ କରିବି ମ ! ବାହାରି ଆ - ଆ ଆ—ଭଲ ମଣିଷଟି ପରି ସିଧା ସିଧା ବାହାରିଆ, ଆ ଆ କହୁଚି, ନଇଲେ ହେଇ ଦେଖ, ଗଲିଲି ତୋ ମାଲିକ ପାଖକୁ, ହାକିମ ପାଖକୁ, ଆସୁ ବାହାର କରି ଆଣୁ, ସେ ତୋତେ ଆଣୁ ।"

ସାଙ୍ଗେ ସାଙ୍ଗେ ବାରିପାରିଲି ଏ ପାଟିରୁଣ୍ଡଟା ମୋର ନେଇ—ମୋର ସଂପର୍କରେ କିଣ ! ସେ ଛୁଡ଼ା ହୋଇଥାଏ ଆଉ ପାଟି କରୁଥାଏ ଆମ ବାଟଘର ଆଗରେ । ବେଳକୁ ବେଳ ସ୍ୱରଟା ଚଡ଼ାରୁ ଚଡ଼ା ହେଉଥାଏ—ବିଜୟ ଦର୍ପରେ ଫୁଲି ଫୁଲି ଉଠୁଥାଏ ସେ ନାଚୁଥାଏ—।

"କେତେ ପଇସା, କେତେ ଟଙ୍କା ଦେଖେଇଥିଲୁ ବାବୁ ମୋତେ ଗତ କାଲି ? ଏଁ ! କୋଉଁଠୁ ପାଇଥିଲୁ ସେଗୁଡ଼ାକ, ଶୁଣେ ଦେଖି କୋଉଠୁ ପାଇଥିଲୁ ?"

ଝୁପିରେ ବାଷ୍ପରୁଦ୍ଧ ହୋଇ ଆସିଲା ମୋର—ଶୁଣିପାରିଲି ଠିକ୍ ସେ କାତର ସ୍ୱରରେ କରୁଣ ସ୍ୱରରେ ବାହାନା ଆରମ୍ଭ କରିଦେଲା ସିଦୋରଭ ।

"ସ୍ୱେର୍ ମୋଖୀନରେ, ଇରେ—ସ୍ୱେରମୋଖୀନରେ ।"

"କଣ ନା ପିଲାଟା ଗାଳି ଖାଇଲା, ଦୁଧଖିଆ ପିଲାଟା ଗାଳି ଖାଇଲା—ମାଡ଼ ଖାଇଲା—ନୋଳା ଫାଟିଗଲା ତାର, ଏଁ, କେଡ଼େ କଥା ଲୋ !"

ମନହେଲା ଧାଇଁଯାନ୍ତି କି ତଳ ମହଲକୁ, ନାଚନ୍ତି କି, ନାଚନ୍ତି କି ଆନନ୍ଦରେ ପାଗଳ ହୋଇ ବିହ୍ୱଳ ହୋଇ, ଚୁହାକୁ ଚୁହା ଛୁମନ୍ତି କାମରୁଣୀର ହାତକୁ, ଚୁମନ୍ତି ଟାଳି । କିନ୍ତୁ ସେତିକିବେଳେ ଠିକ କାନରେ ବାଜିଲା ମାଲିକାଣୀ ପାଟି କରି ଉଠିଲେ—ଝିରକାବାଟେ ବେ ଧନ୍ଦୁଏ ।

"ଏ ପିଲାଟା ମାଡ଼ ଖାଇଲା, ଭଣ୍ଡସଣ୍ଡ ବକିଲା ବୋଲି । ହଇ ଲୋ ହେ ଟାନକୀ, ତୁ ଏକା ସ୍ୱବଚୁ ତୁ ଖାଲି ଜାଣୁ ସେ ବ୍ୟୈର କରିଚ ତୁ ଖାଲି ଜାଣୁ ।"

"ଆଲୋ ମୋର ମିଣିପଯୁଆଗୀ ଲୋ—ତୋଠୁ ବଳି ଆଉ ବେଧେଇ ଛୁଣ୍ଡାଳି କିଏ ବା ? ନେଥେଇଙ୍ଗଲେଇ ମାଠରୁଆଳୀ ବରୁଡ଼ି ନାଇଟାଏ ତୁ—କହିଲେ କ'ଣ ଦୋଷ ଲେଖିବ କଲେ ? କାହିଁକି ଭଲ ମନକୁ ଲାଗନ୍ତା ତୋର ?"

ସଂଗୀତର ମୂର୍ଚ୍ଛନା ଭଳି, ଶ୍ରୁତିତଟରେ ବାଜୁଥାଏ ଦୁହିଁଙ୍କର କଳିର ଝଙ୍କାରଟା । ଉତ୍ପୀଡ଼ନ ଉତ୍ପୀଡ଼ନ ଲୁହ ଦୁଃଖର ବେଦନାର—ଆଉ ନାତାଲିୟା ପ୍ରତି କୃତଜ୍ଞତାର, ଗଭୀର କୃତଜ୍ଞତାର, ବୁଢ଼ାଇ ଦେଲା ଭସାଇ ଦେଉଥାଏ ହୃଦସ୍ପନ୍ଦଟାକୁ ମୋର—ସେ କି ପ୍ଲାବନରେ ସତେ ! ରୋକିବାକୁ ଚେଷ୍ଟା କରି କଣ୍ଠରୋଧ, ବାଷ୍ପରୋଧ ହୋଇଯାଉଥାଏ ମୋର ।

ଧୀରେ ଧୀରେ ଘଣ୍ଟିଆ ଆଣ୍ଟୁ ପାହାଚରେ ଉପରକୁ ଉଠିଆସିଲେ

ମାଲିକ । ବାହାର ପଡ଼ିଥିବା ଲୁହା କଣ୍ଡା ଉପରେ ଆସି ବସିଲେ ମୋ ପାଖରେ ।

"ଲଗୁଚ କପାଳରେ ଭଲ ନାହିଁ ତୋର, ପେଣକଭ୍ !" କହିଲେ ସେ—ବାଲଗୁଡ଼ିକୁ ସାଉଁଳେଇ ସାଉଁଳେଇ ମୁଣ୍ଡରେ ।

ମୁହଁ ବୁଲାଇନେଲି, କିଛୁ ଉତ୍ତର ନ ଦେଇ ।

"କିନ୍ତୁ ଏଇଟା ସତ, ମନାକଣ ହେବ ନାହିଁ ଯେ ଅତି ଜଘନ୍ୟ ଅତି ଅପଯଶ ଭାଷା ବ୍ୟବହାର କରୁ ତୁ କିଛୁ କହିଲାବେଳେ", କହିଲେ ସେ ନିଜ କଥାର ଜମ ଧରି ।

"ଶୀଘ୍ର ମୁଁ ଏଠୁ ଉଠୁଚି, ସ୍କୁଲ ଯିବ," ଶାନ୍ତ ସ୍ୱରରେ ଜଣାଇଦେଲି—ମୁଁ ।

କିଛୁ ନ କହି କେତୋଟି ମୁହୂର୍ତ୍ତ ବସି ବସି ସିଗାରେଟ ଟାଣିଲେ ସେ, ସିଗାରେଟର ଶେଷମୁଣ୍ଡଟି ବେଶ୍ ଯତ୍ନର ସହିତ ନରକି ନରକି ପରଖିଲା ଭଳି ମନ୍ତବ୍ୟଟିଏ ଦେଲେ !

"ବେଶ୍, ତୋ' କଥା, ତୋ କାରବାର ତୁ ଜାଣୁ । ଅଭି ତୁ ଏଣିକି ତ ଗ୍ରେଟ ପିଲଟିଏ ନୋହୁଁ । କ'ଣ କରିବାକୁ ହେବ ଏବେ ତୁ ଜାଣୁଚୁ ଭଲକରି ।"

ଉଠି ଛିଡ଼ା ହେଲେ, ଚଲକୁ ଓହ୍ଲାଇଲେ ସେ । ସ୍ୱାଭାବିକ ସ୍ୱରରେ ଆଗ ଭଳି ତାଙ୍କ ପାଇଁ ମନରେ ଟିକିଏ ଦୁଃଖ ଆସିଲା ମୋର ।

ସ୍ୱେଟିଦିନ ପରେ ସ୍ତ୍ରୀହନ୍ତଦେଲି ମୋର ଶେ କାମ । ବଦଳି ହୋଇ କଣଶିଆ ସ୍ୱରରେ ଲେଡିହେଲି—କେମିତି ଟିକିଏ ବିଦାୟ ନଅନ୍ତି ନ ଗ୍ରଣୀ-ମାର୍ଗଟଠୁଁ । କିନ୍ତୁ ସାହସ ପାଇଲି ନାହିଁ ତାଙ୍କୁ ଦେଖା କରିବା ପାଇଁ, ସତି କହିଲେ, ଆଶା ଥାଏ ଗ୍ରଣୀ ମାର୍ଗଟ ନିଜେ ମୋତେ ଡକାଇ ପଠାଇବ ।

ଠିକ ଝିଅଠୁ ମେଲଣି ନେଲାବେଳେ କହିଲି, "ମାଆଙ୍କୁ କହିବୁ ଧନ୍ୟବାଦ, କୋଟି କୋଟି ଧନ୍ୟବାଦ ତାଙ୍କୁ—ବୁଝିଲୁ ? ମନେ ରହିବଟି ?"

"ହଁ ମ !" କଥା ଦେଲା ସେ କଥିଁ ଲଆ ମଧୁର ହେ ହଗୋଲା ହସଟିଏ ଫୁଟିଉଠିଲା ମୁହଁରେ ତାର—"ନମସ୍କାର, କାଲି ସକାଳ ଯାଏ ନମସ୍କାର !"

ବର୍ଷ ପରେ ବର୍ଷ, କୋଡ଼ିଏ ବର୍ଷ ପରେ ତାଙ୍କୁ ଭେଟିଥିଲି ମୁଁ । ସେତେବେଳକୁ ସେ ସହଧର୍ମିଣୀ ରକ୍ଷୀବାହିନୀର ଗୋଟିଏ ଅଫିସରର ।

# ଏକାଦଶ

ପୁଣି ଅରେ ବାସନମଜାଳି ହେଲି, ବାସନମଜାଳି ହେଲି ହଂସଭଳି ଧଳା 'ପର୍ମି' ବୋଲି ଗୋଟାଏ ବଡ଼ ଦ୍ରୁତଗାମୀ ଷ୍ଟିମରର । ହେଲି କିନ୍ତୁ ଏଥର ତଳିହା ରନ୍ଧୁଣିଆର ବୋଲକରା, ପରସୁଣିଆ ଯୋଗାଣିଆ ଟୋକା । ମିଳିଲା ମତେ ସାତ ରୁବଲ ଲେଖାଏଁ, ମାସକୁ ମାସ । ମୋ କାମ ହେଲା ଡକା ହକା ଶୁଣିବା ଅଣ୍ଟେଇଦେବା ରନ୍ଧୁଣିଆକୁ ।

ଷ୍ଟିମରର ବେବର୍ତ୍ତୀ ଷ୍ଟୁଆର୍ଡ, ଯିଏ ତତ୍ତ୍ୱ ନିଏ ସବୁ କଥାର, କୋଦା-କୋଦ ଲୋକଟାଏ ସେ, ସଦାବେଳେ ଫୁଲି ରହୁଥାଏ, ଫାଟି ପଡୁଥାଏ ଗର୍ବରେ, ଔଦ୍ଧତ୍ୟରେ । ବିଲକୁଲ ଚନ୍ଦା ମୁଣ୍ଡଟା ତା'ର, ଦିଶୁଥାଏ ବଡ଼ ଗୋଟାଏ ରବର ପେଣ୍ଡୁ ଭଳି । ପିଟିପଟେ ଛନ୍ଦ ଦେଇ ହାତ ଦି'ଟାକୁ ବୁଲୁଥାଏ ସେ, ଯାଉଥାଏ, ଆସୁଥାଏ ଷ୍ଟିମରର ପଟତଳିଆ ଗ୍ରୁଣ୍ଡ ଡେକ୍ ଉପରେ—ଭେମ ଦମରେ ଘୁସୁରି ଭଳି ଗ୍ରୁଇତଳିଆ ଜାଗା ଖୋଜିଖୋଜିକା । ଷ୍ଟେଜନ ଥାନଟି ମଣ୍ଡି ଦେଉଥାଏ ସେଇ ଡେକ୍ କରରେ ତା' ଖରଯା । ବୟସ ଲାଗୁଥାଏ ପ୍ରାୟ ଚାଳିଶ ଟପିଲଣି । ଦିନେ ଥିଲି ବେଶ୍ ମୋହନୀ ଥିଲି; କିନ୍ତୁ ଏବକୁ ଘୋର ହୋଇ ହୋଇ ଦିଶୁଛି କେମିତିକିଆଟା, ଖସପଡ଼ିଚି ତାର ଝଲକ ଝିକକ—ଓହ୍ଲା ପଡ଼ିଚି ବୟସ । ଏତେ ପାଉଡ଼ର ବୋଳି ହେଉଥାଏ ସେ ମୁହଁଟାଯାକ ଯେ ଗାଲ ଦି'ଟାରୁ ତାର ତୁଷାର ଚୂନା ପରି ଝଡ଼ିପଡୁଥାଏ ସେଗୁଡ଼ାକ । ଝଲମଲିଆ ଜାକଜମକିଆ ପୋଷାକ—ସେମିଜ ବଡ଼ସ୍ ଉପରେ । ଲଖି ରହୁଥାଏ ଚଟଚଟିଆ ହୋଇ ଠାଆକୁ ଠାଆ ଅଠାଳିଆ କଣ ଗୋଟାଏ ଧଳା ରଙ୍ଗର ଧୂଳି ପରି ।

ରନ୍ଧାଘରେ ସେନାପତିତ୍ୱ କରୁଥାଏ ରନ୍ଧୁଣିଆ—ଆଇଭ୍ୟାନ୍ ଆଇଭାନୋଭିଚ୍—ଡାକ ନାଆଁ ବାଲବାଳୁଆ ଖେଳନା ଭାଲୁ—ଟେଡ଼ି' ଭାଲୁ, ଗୋଲଗାଲ ଡହଳଡାହଳ ଲୋଚିଆ ବାଙ୍ଗର ମଣିଷଟିଏ, କୁହୁଣ୍ଡାଳିଆ ବଙ୍କା ନାକ, ଦୁଇଆ ଗୋଟାକୁ ଟାହି ଟାପରା କରୁଥାଏ ମିଟିମିଟିକା ଆଖି ହଳକ—ବଢ଼ଲେଞ୍ଚିଆ ଢଙ୍ଗ । ପ୍ରତିଦିନ ପିନ୍ଧଥାଏ ମଣ୍ଡଦିଆ ଇସ୍ତ୍ରି ଦିଆ ବେକପଟିର କାମିଜ । ନଡ଼ିଦିନିଆ ଖିଅରରେ ରୁହଁହୋଇ କେମିତି ନେଳିଆସିଆ ପଡ଼ିଯାଉଥାଏ ଗାଲ ଦୁଇଟା ତାର । କୁଞ୍ଚିକୁଞ୍ଚି ହୋଇ ମୋଡ଼ା ଠିଆ ଠିଆ ନିଶ । କାମ ନ ଥିଲାବେଳେ ଦରଦରସିଝା ଲାଲଲାଲ ଆଙ୍ଗୁଳିରେ ଟେକି ଟେକି ମୋଡ଼ି ଦେଉଥାଏ ତାକୁ ନିରଖି ନିରିଖି ଅନେଇ ଅନେଇ ଗର୍ବରେ—ବ୍ଲୁଟ ଗୋଟିଏ ଗୋଲ ହାତଆରଶିରେ ।

ଜାହାଜଟାରେ ସମସ୍ତଙ୍କଠୁ ବଳି ଇଞ୍ଜିନରେ କୌତୂହଳଜନକ ଲୋକଟାଏ ପରି ଲୋକଟାଏ ଥିଲି ସେ—କୋଇଲାଭଙ୍ଗାଳି ଷ୍ଟୋକର ସ୍ମାକଭ ଶୁମଭ, ଚଉକୋଣିଆ ଦେହ, ଓସାରିଆ କାନ୍ଧର 'ବ୍ଲୁଷୀ' ଟାଏ । ଓଲଟପୁଡ଼ା ଚେପ୍ଟା ନାକର ମୁହଁଟ, କୋଡ଼ି କାକନ୍ଦ ଭଳି ଚଉଡ଼ା ଆଉ ମୋଟା, ବଦହଳିଆ

ଭୂରୁ ହଲକ ଚଳନ୍ତ ଟେର୍‌ଛେଇ ଚେରଛେଇ ଅନାଉଥାଏ ଘଲୁଆ ଆଖି ଦଇଟା, ଗାଲ ଦୁଇଟା ଗ୍ରଇ ହୋଇଥାଏ କୁଞ୍ଚୁକୁଞ୍ଚୁଆ ମେଞ୍ଚ୍‌ମେଞ୍ଚ୍‌ ଦାଢ଼ିରେ । ସିଉଳି ପରି କେଉଁ ଗୋଟାଏ ପାଣିପାଟର ଯେମିତି ! ଆଉ ତାର ମୁଣ୍ଡ ଉପରେ ଟିକି ମୃଦଭଳି ମୋଡ଼ିମୋଡ଼ିକା ବାଳ ଥାଏ ଟୋପିଟାଏ ସୃଷ୍ଟି କରି, ଏତେ ଘଞ୍ଚ ଯେ ଯେ କେବେହେଲେ ନଜରର ବଙ୍କା ବଙ୍କା ଆଙ୍ଗୁଠିଗୁଡ଼ାକୁ ଗଳେଇ ପାରୁ ନ ଥାଏ ସେଥିରେ ।

ସେ ଥିଲା ଓସ୍ତାଦ୍ ଜୁଆଡ଼ି—କସ୍ତିମାତବାଲା, ଆଉ ଅଦ୍ଭୁତ ଦୁନିଆ-ଖିଆ ପେଟୁ । ଭୋକିଲା କୁତ୍ତା ଭଳି ଲଙ୍ଗପଙ୍ଗ ହେଉଥାଏ ଆସି ଶୋଷଘର ମୁହଁରେ, ଶୋଷଘରେ । ନିକଟେଇ ହୋଇ ମାଗି ହେଉଥାଏ ମାଂସ ଖଣ୍ଡେ କି ହାଡ଼ ଦ'ଖଣ୍ଡ । ଆଉ ସଂଜ ହେଲେ ବସି ପଡ଼ୁଥାଏ ଯାଇ ଟେଣ୍ଡି ଖାଲୁ ପାଖରେ । ବୃଦ୍ଧା ପିଉ ପିଉ ନିଜ ସଂପର୍କରେ ଅତି ବଢ଼ିଆ ଅସାଧାରଣ ବିବରଣ ବଖାନ କରୁଥାଏ ତା ଆଗରେ ।

ପିଲାଦିନେ ସେ ସାହାଯ୍ୟ କରୁଥିଲା ରାସ୍ତାକାନ ସହରର ମେଣ୍ଢା ଚରାଳିକୁ ସାହାଯ୍ୟ କରୁଥିଲା, ଜଣେ ବୃଦ୍ଧ ବାବାଜି ତାଙ୍କୁ ଭଳେଇ ଭୁଲେଇ ଗୋଟିଏ ମଠକୁ ନେଇଯିବା ଯାଏ । ଯେଉଁଠି ଶିକ୍ଷାନବିସ ନୂଆଚେଲା ଭାବରେ କଟିଯାଇଥିଲା ତାର ଗୁଣ୍ଡେଟି ବର୍ଷ ।

"ଆଉ ଆଜିଯାଏ ବି ମୁଁ ଚାହୁଥାନ୍ତି ସେହି ବାବାଜିଟିଏ ହୋଇ । ଗୋଟାଏ କଳା କଟିକଟି ନକ୍ଷତ୍ର ହୋଇ ଭଗବାନଙ୍କର", କହୁଥାଏ ସେ ବେଳେବେଳେ ତାର ସ୍ୱାଭାବିକ ଢଙ୍ଗକୁ ଟଳିଗଲା ଭଳି ଥରୁଲିଆ ସ୍ୱରରେ ! 'ଯେବେ ମଠକୁ ଆସି ନଥିଲି ପେନ୍‌ଜାର ସେଇ ପୁଣ୍ୟବନ୍ତା ମାଙ୍କପିଟା, ତାରି ପାଇଁ ସିନା ଗୁଲିଲି, ତାରି ପାଇଁ......ମନକୁ ପାଇଲା ଭଳି ଖାସ କୁଲୁବୁଲି ଗ୍ରେଟିଆଟିଏ, ମୁଣ୍ଡ ବିଗିଡ଼େଇ ଦେଲା ମୋର । ଓଃ, କେତେ ସୁନ୍ଦରଟିଏ ସେ, କି ବଢ଼ିଆ, କେତେ ଟାଣୁଆ ବଳିଲା ବଳିଲା ଗଢ଼ଣର ସେ । କହୁଥିଲା, କହୁଥିଲା ଖାଲି ମୋରି ପାଇଁ ସେ । ଏଇଟି ତ ମୋରି ପାଇଁ ଠିକ । ମୋରି ପରି ନିରମଳ ସଚ୍ଚା ସଚ୍ଚୋଟ ଟିଏ ଏକୁଟିଆରେ କଟୁଚି ଯାର ଦିନ—କାଠଚଢ଼େଇ ଡୁଟିଲି ଜାଳକୁ ମୋରିପରି ବିଧବା ପାଇଁ ସେ । ହଇରେ ଆସିବୁ ନାହିଁ କରି ! ମୋ ପାଇଁ କାମ କରିବା ସକାଶେ ଘରମଣିଷଟି ପରି ମୋର" ! କହୁ ହେଲା ପୁଣି । ମୋ ପାଙ୍ଗରେ ମିଣିମାଣି ଖଟିବା ପାଇଁ ମୋର ଯୋଉ ଘର ଦ୍ୱାର ଅଛି, ଆଉ ମୋର କୁକୁଡ଼ା ପର ଚଢେଇ ପରର କାରବାର ସେଇଥିରେ ସେ !'

"ମୁଁ ବା ନାହିଁ କଲି, ଆପତ୍ତି କରନ୍ତି କାହିଁକି । ସତେ ତେଣୁ ଅଦରି ନେଇଗଲା ତା ଘରକୁ ଘରମଣିଷ କରି । ଆଉ ମୁଁ ତାକୁ ଆଦରି କରି ରଖିଲି ଆଦରି ରହିଲି ତାକୁ—ବେଶ୍ ମନ୍ଦାକରେ ଉଁଚୁଁ ନ ହୋଇ ନରମ ଗଦିରେ ଯେମିତି ବସି ବସିକା କଟେଇଦେଲି ତିନିଟା ବର୍ଷ—

"କେତେ ମିଛୁଆ, ଢଙ୍ଗା ମଚୁଆ, ଗାଲୁଆଟାରେ ଭୁ, କ ସ'ହସ ରେ ତୋର . ଉଦ୍‌ବେଗିଆ ହୋଇ ନାକ ଉପରେ ଚେରୁଣିଟାକୁ ଠେଲି ହେଉ ହେଉ ବାଧାଦେଇ କହୁଥିଲ 'ଚେକ' ଖେଳଣା ଟିଲ୍ଲୁ ! "ଲୋକେ ଖାଉ ଖାଲୁ ଭୁଲୁଚ୍ଛ ଉଣ୍ଡ ମିଛ କହି ରୋଜଗାର କରୁଥାନ୍ତେ, ତେବେ କେଉଁଦିନୁଁ ତ ଗୋଟାଏ ମସ୍ତ ବଡ଼ଲୋକ ହୋଇ ଯାଆନ୍ତୁଣି ତ !"

ସ୍ନେଦେଇ ଲାଗିଥାଏ ସ୍ୱାଡ଼ଖଣ୍ଡେ, ରେକର୍ଡ ରେକର୍ଡ ସ୍ନେଦେଇ ହେଉଥାଏ ସ୍ୱାକତ । ଗାଲଦ'ଟା ଉପରେ ତଳ-ଉପର ଉପର-ତଳ ହୋଇ ନାଚୁଥାଏ ଧୂଷରିଆ ମୁନିଆ ଭଲ ଲୁଗଗୁଡ଼ାକ । ଆଉ ଏଥର ସେକର ହୋଇ ହଲୁଥାଏ ତାର ରୁମୁରୁମୁରିଆ କାନ ଦୁଲକ । ଗୁନ୍ଦୁଣିଆଟା ବାଧା ଦେଲା, ପରେ ବ କହୁ ସ୍ନଲିଲ ସେ ତା'ର କୁହୁରୁଲିଆ କଲୁ ସମରୁଲିଆ ସ୍ୱରରେ ।

"ବଡ଼ ବୟସରେ ବଡ଼ ଥିଲା ସେ ମୋଠୁଁ । ତେଣୁ ଆଉ ଭଲ ଲାଗିଲାନି ବରବୁଆ ଲଗିଲା, ଚଡ଼ମାଉଲା—ଗ୍ରୁଡ଼ିଗଲା ମନ ଗ୍ରୁଡ଼ିଗଲା ତାଠୁଁ । ଏଥର ଧରିଲି ତା' ଝିଅଟାକୁ, ମାତଲି ତା' ସାଥିରେ । ସେ ମାଇପିଟା ଆଉ କ ରୁନ ରହେ ? ଏ କଥା ଦେଖିଶୁଣି ଧଇଲା ମୋତେ ବେକମୁଣ୍ଡରୁ ଆଉ ଧକ୍‌କା ଦେଇ ନକାଲି ଦେଲା, ନକାଲି ଦେଲା ବାହାରକୁ ।"

"ଯେମିତି କାମକୁ ସେମିତି ମୂଲ, ସେମିତି ପୂଜା, ଠିକ ବାଟରେ" ସହଜିଆ ଭଙ୍ଗୀରେ ସ୍ୱାକତ କହିଲା ଭଳି ଟିପଣୀଟି ଦେଲା ଗୁନ୍ଦୁଣିଆ ।

ପୁଳାଏ ଚନ ଭର୍ତ୍ତି କରିଦେଇ ପାଟି ଭିତରେ କହୁ ସ୍ୱଲିଲ ବୋଇଲା ଲୁଲ୍ଲାଲ ।

"ଏମିତି ମୋ ପରେ କିଛି ଦିନ ପବନରେ ଉଡ଼ୁ ଉଡ଼ୁ ଭସି ଭସି ସୁଲିଲି ଏଠୁ ସେଠିକି ସେଠୁ ଏଠିକି । ସ୍ୱା କତରୁ ତା' କତକୁ । ସୁନ୍ଦରମିରର ଗୋଟାଏ ପୋଖତ ବୁଢ଼ା ବେପାରି ସାଥିରେ ଯୋଖି ହୋଇଯିବା ଯାଏ ଗାଡ଼ ଭଡ଼ାଟାଏ ଭଲ । ସେ ଅଉ ମୁଁ ବୁଲିଲୁ, ଏଣିକି ଅଧାଅଧି ଦୁନିଆ ବୁଲି ବୁଲିଲୁ । ପାହାଡ଼-ପର୍ବତ କନ୍ଦରକୁ । ଯାହାକୁ କହନ୍ତି 'ବଲକାନ' ଅଞ୍ଚଳ, ପହଞ୍ଚିଲୁ ଯାଇଁ କେଉଁଠି ତୁର୍କୀଙ୍କ ପାଖରେ, ତା ପରେ ରୁମ ନିୟନ୍ ଏବଂ ଗ୍ରୀକ୍—କେଜାଣି କେତେ ଜାତି ଅଷ୍ଟ୍ରିୟାକ, ଅଷ୍ଟ୍ରିୟାଙ୍କ ପାଖରେ ସବୁ କିସମର ସବୁ ଚଳମର ଲୋକ । ଗୋଟିଏ ଜାତର ଲୋକଙ୍କଠୁ ଖରଦ କର ବିକ ଲଗିଲୁ ଆଉ ଗୋଟିଏ ଜ ତର ଲୋକଙ୍କୁ ।

"ବ୍ୟୈର କରନ୍ତୁ", ବେଶ୍ ଗମ୍ଭୀର ସ୍ୱରରେ ପଚାରିଦେଲେ ଗୁନ୍ଦୁଣିଆ ।

"ବ୍ୟେର ଫୋର ବୁଢ଼ା ଆଗରେ—ନାଇଁ ନାଇଁ ନାଇଁ, କୋଉଥିପାଇଁ ନୁହେଁ ! କହୁଥାଏ ସେ ମୋତେ । ଡାଆରୁଥାଏ, ପଚଭୂଇଁରେ ବଦେଶରେ, ଯ ଆସ କର, କାରବାର କର ସଚୋଟ ପଣରେ । ସେଠି ସବୁ ଧରାବନ୍ଧା ନିୟମ ରହିଚ, ଚଳନ ରହିଚ, ଟିକଏନାକୁ ବ୍ୟୈର କଲେ, ହାତପୂରେଇ କାନଧ ନେଲେ କେଉଁଠୁ ମୁଣ୍ଡକାଟ ! ଆରେ ହଁ, ମୁଁ ଯେ ଥରେ ଅଧେ ଟିକଏନାକୁ

ଚେଷ୍ଟା କରନ୍ତି ସ୍ୱୈର କରିବା ପାଇଁ— ଏମିତି ତ ନୁହେଁ । କିନ୍ତୁ କଣ ହେବ, ଚଳିଲା ନାହିଁ ! ଥରେ ଚେଷ୍ଟା କରିଥିଲି, ଗୋଟାଏ ବେପାରୀ ବଣିକର ଘୋଡ଼ାଶାଳରୁ ଘୋଡ଼ାଟାଏ ଫିଟେଇ ନେବାପାଇଁ ! ପାରିଲି ନାହିଁ, ବୁଝିଲୁ, ହପ ସ୍ବ କରି ପାରିଲି ନାହିଁ କିଛୁ । ଧରିପକେଇଲେ ସେମାନେ । ଏଇଟା ସ୍ୱାଭାବିକ, ପିଟିଲେ ମୋତେ ଗୋରୁଛ ବାଡ଼ିଆ କଲେ । ଥକି ପଡ଼ିଲେ ଯେତେବେଳେ ପିଟି ପିଟିକା ଟାଣି ଟାଣି ଘୋଷାରି ଘୋଷାରି ନେଲେ ପୁଲିସ ସାମନାକୁ । ଦି ଜଣ ଥିଲୁ ଆମେ । ଜଣେ ପ୍ରକୃତ ଅସଲ ସଚ୍ଚୋଟ ଘୋଡ଼ା ସ୍ୱୈର, ଆଉ ମୁଁ ସତ କହିଲେ, ଖାଲି ଆଉ ଗୋଟାଏ କଣ ହେଉଛି ଦେଖିବା ପାଇଁ ଘଟଣାଟା ଦେଖଣାହାରୀ—ଯେତେବେଳେ ଖଟୁଥାଏ ମୁଁ ବେପାରୀଟା ପାଖରେ । ତାର ନୂଆ ଗାଧୁଆଘରେ ଚଢ଼ିଗାଢ଼ ବସିଥାଏ ଚୁଲ୍ଲୀ, ଯେତେବେଳେ ବେମାର ପଡ଼ିଥାଏ ବେପାରୀଟା । ଖରାପ ସ୍ୱପ୍ନ ଗୁଡ଼ାକରେ ତାର, ଦେଖିଲା ଖାଲି ମୋତେ ! କେମିତି ଗୋଟାଏ ଭୟ ପଶିଗଲା ମନରେ ତାର । ଗ୍ରାମଆଡେ ମୁହାଁଇଲା ସେ ହଠାତ୍ ପାହିଆ ଥାକିମଙ୍କ ପାଖକୁ ନେହୁରା ହୋଇ କହି ଲାଗିଲା, "ଛାଡ଼ିଦିଅନ୍ତୁ, ଆଜ୍ଞା, ଛାଡ଼ି ଦିଅନ୍ତୁ ତାକୁ" । ସେ ନୁହେଁ ମୁଁ, ସେ ସ୍ୱୈର କରିନି, କରିଚି ମୁଁ, ସବୁ ଦିନ ଦେଖୁଚି ମୁଁ ତାକୁ ସ୍ୱପ୍ନରେ— ତାକୁ ଯଦି କ୍ଷମା ନ କର, ଦେଖୁଛି ମୋର ଏ ଜୀବ ରହିବ ନାହିଁ । ମୋର ପଣ୍ଡାରେ ଆଜ୍ଞା, ଦେଖୁଚି ମୁଁ ସ୍ୱପ୍ନରେ କେମିତି ଗୋଟାଏ ଚୁଣିଆ ଯାଦୁକରଟାଏ ସେ— ନା, ଠିକଏ ହେଲେ ସନ୍ଦେହ ନାହିଁ, ସେଇ ଯାଦୁକରଟାଏ ମୁଁ ହେବି ହୁଏତ— ବୁଝିଲୁ ଗ୍ରାମଆଡ଼େ ନାଆଁ ଡାକ ଜଣାଶୁଣା ବିଖ୍ୟାତ ବେପାରିଟାଏ ଥିଲା ସେ ସେଇ ବୁଢ଼ା, ତେଣୁ ଛାଡ଼ିଦେଲେ ସେମାନେ, ମୋତେ ଛାଡ଼ିଦେଲେ—

"ଠିକ କଲେ, ଛାଡ଼ିଦେବା ଉଚିତ ନ ଥିଲା ସେମାନଙ୍କର— ବେକରେ ତୋର ପଥର ମୁଣ୍ଡାଏ ବାନ୍ଧି ଓହ୍ଲେଇ ଦେଇ—ଉଚିତ ଥିଲା ତାଙ୍କର ନଈମଝିରେ ବୁଡ଼େଇ ରଖିବା ତୋତେ ଚିରଦିନ ଚିରକାଳ ତୋ ବାହାପଥାଗର । ତୋର ଗୋଲଫାଙ୍କିଆ ଭଣ୍ଡାମିକୁ ସବୁ ଫମ୍ପେଇ ଫୁଲେଇ ଚଦୁଡ଼ି ବାହାର କରି ନେବାଯାଏ ତୋଠୁଁ ।

ସଙ୍ଗେ ସଙ୍ଗେ କଥାର ମର୍ମଟାକୁ ଧରିନେଲା ସ୍ୱ କୋଭ । ଠିକ୍ କହୁଚୁ, ଠିକ୍ । ଗୁଡ଼ାଏ ଗୁଡ଼ାଏ ଭଣ୍ଡାମି ବଢ଼େଇ ଫଢ଼େଇ ଭରିଛି ହୋଇଚି ମୋଠି । ସତ କହିଲେ ଗାଆଁ ଗୋଟାକର ଗାଆଁ ଟାଯାକ ପାଇଁ ।

କାମିଜ୍ ବେକ କଲରରେ ଅଙ୍ଗୁଠି ପୂରେଇ କେଞ୍ଚକେଞ୍ଚିକା ଭିତରେ ଟାଣି ଟାଣି ପୁଣି ସେଇଟାକୁ ମୁଣ୍ଡ ହଲେଇ ହଲେଇ କହି ଲାଗିଲା ଚଢ଼ି ଚାଢ଼ି ହୋଇ ସ୍ୱନ୍ଦୁଣୀଟା !

"ହୁଁଃ ! ଏମିତିକା ଗୋଟାଏ ଅସାମୀ, ଦୁନିଆଯାକ ବୁଲୁଥିବ ମଦ ପିଇ ପିଇ ଢକ୍ ଢକ, ଥୁ ଥୁ କରି ଫେଣ କାଢ଼ି କାଢ଼ି ମୁହଁରୁ—ବୁଲୁଥିବ ଟୁଲୁଟୁଲୁ

ଲୁଲୁ ଘୁଲୁ ହୋଇ— କାହିଁକି ? କୋଉଥି ପାଇଁ ? ବଡ଼ା ବେବଡ଼ା, ମୋତେ କାହିଁକି ବଂଚଉଥୁ, କୋଉଥି ପାଇଁ ?”

ତାକୁ ନିଜ ଓଠରେ ଓଠକୁ ବନ୍ଦେଇ ଦେଇ ଉତ୍ତର ଦେଲା କୋଇଲା ଭୁଂଜାଳି :

“ଜାଣିଚ ଜଣେ ମୁଁ କେଉଥିପାଇଁ ? ବଞ୍ଚେ ମୁଁ, ଆଉ ସମସ୍ତେ ଯେମିତି— ସମସ୍ତଙ୍କ ପରି । ଯେତେ ଖାଲି ନିଶ ଉଚନ୍ତି—ଶୋଉଚନ୍ତି, କେତେ କିଏ ଖାଲି ବୁଲୁଛନ୍ତି, ବୁଲୁଛନ୍ତି—ବୁଲୁଛନ୍ତି । ବନମାନ ପୁଣି ନିଜ ନିଜ ପିଠିକୁ ଟେରଦେଇ ପିଠି ଉପରେ ନିଜନିଜର ବସିଚନ୍ତି କୋଣମାଂଗୁଡ଼ାକ, ସମସ୍ତଙ୍କ ପେଟରେ ତ କିଛି କିଛି ପଡ଼ିବା ଦରକାର ।”

ସନ୍ଧ୍ୟାଣୀର ବିରକ୍ତିରେ ଆଉ ଟିକିଏ ମିଶାଇଦେଲେ ଏଇ କଥା ପଦକ ।

‘‘ଏମିତିକା ଘୁଷୁରିଟାଏ ରେ ତୁ—ଛିଃ କହୁହେବ ନାହିଁ କଥାରେ— ଘୁଷୁରିଙ୍କ ପାଇଁ ଫୁଲାଏ ତୁ ଛୋକେ ତୁ ପୁଣି ।’’

“ଏଇ କି ପାଗଳାମିରେ ତୋର, କୋଉଥି ସକାଶେ ?” ବିସ୍ମୟରେ ପଚାରିଲା ପ୍ଲାନୋଭ । ଗୃହୀ ବାପୁଡ଼ା ‘ମ୍ୟାଙ୍କ’ ଆମେ ଏକା ନାଉର ଫଳ । ଦେଖ୍ ଆଉ ପାଗଳାମି କାଢ଼ ନା ମୋତେ କାଟୁ କରିବ ନାହିଁ—ସୁଧୁରେଇ ଭଲକରି ଦେବ ନାହିଁ ।’’

ଖୁବ୍ ଶୀଘ୍ର ଅତି ଘନିଷ୍ଠ ଭାବରେ ଅନୁରକ୍ତ ହୋଇ ଉଠିଲା ଲେକଟାର । ଦେଖିଲା, ତାକୁ ଦେଖିଲାଗିଲା ଆଗେ—ଓଣା ବିସ୍ମୟରେ ଆଁ ଆଁ କରି ଶୁଣି ଲାଗିଲା ତାର କଥାଗୁଡ଼ାକ । ଲାଗିଲା ମୋତେ ନିଜ ଭିତରେ ନିଜ ଜୀବନ-ଅଭିଜ୍ଞତାରେ ସୁଦୃଢ଼ ଦୁର୍ଗ ନିବାସ ନିର୍ମାଣ କରିଦେଇଛି ସେ । ଯାହାକୁ ଭେଟୁଥାଏ ନିୟମ ପ୍ରଥା ନ ମାନି ଫେଲଗୀ ଦେଉଥାଏ, ଆଦର ସମ୍ଭାଷଣ ଜଣାଉଥାଏ, କୁଶଳ ପୁଛୁଥାଏ ତାର । ସମସ୍ତଙ୍କୁ ଦେଖୁଥାଏ ସେ ନିଜର କଣ୍ଢାକିଆ ଭୁରୁହଲକ ତଳରୁ ସମାନ ଏକା ଧରଣର—ଖୋଲଖୋଲା ବେପରୁଆ ଭାବରେ ସ୍ୱାଧୀନ ସ୍ୱଇଚ୍ଛାରେ ମିଶୁଥାଏ ସମସ୍ତଙ୍କ ।-କପ୍ତାନ ହୁଅନ୍ତୁ କି ଜାହାଜ ବେବର୍ତ୍ତୀ ଷ୍ଟୁଆର୍ଡ଼ ହୁଅନ୍ତୁ କି ଫାଷ୍ଟକ୍ଲାସରେ ପ୍ରଥମଶ୍ରେଣୀର ମହା ମହା ଅଭିବଡ଼ଯାତ୍ରୀ ହୁଅନ୍ତୁ— ମିଶୁଥାଏ ପ୍ରତ୍ୟେକଙ୍କ ସମାନ ଏକା ଶ୍ରେଣୀରେ, ଏକା ସ୍ତରର ନାଉରି ମଝିଙ୍କ ସହିତ—ଷ୍ଟୋକର କକ୍ଷରେ ପରିଷ୍କାରିଆ ବୋଇଲକରମାନଙ୍କ ସହିତ, ଥାର୍ଡ଼କ୍ଲାସ ଯାତ୍ରୀ ଓ ନିଜ ସହିତ ।

ବେଳେବେଳେ ଦେଖେ ଛିଡ଼ାହୋଇ ରହେ ସେ, କପ୍ତାନ କି ମୁଖ୍ୟ ଇଂଜିନିୟର ସାମନାରେ—ତାର ଲମ୍ବା ମାଙ୍କଡ଼ହାତ ଭଳି ହାତ ଦୁଇଟାକୁ ପଛପଟରେ ରଖି ଶୁଣେ ତ ଗପସପ ସେମାନେ ଯେତେବେଳେ ଗାଳି ଦେଉଥାନ୍ତି ତାକୁ ତାର ଅଳସପଣ ପାଇଁ କି ଏକାବେଳକେ ନିର୍ବାକ ନିର୍ଲିପ୍ତ ଭାବରେ

ତାସ ଖେଳରେ କାହାକୁ ହରେଇ ଫତୁଆ କରିଦେବା ପାଇଁ ! ସ୍ପଷ୍ଟ ଜଣା ପଡ଼ୁଥାଏ, ଗାଲଗୁଲଜ କିଛିଏ ହେଲେ ପ୍ରଭାବ ପକାଉ ନ ଥାଏ ତା ମନରେ, ଆଉ ଯେତେ ଧମକ ଚମକ, ତାହାର କୂଳରେ ଲାଗିଲେ ଏଥର ଷ୍ଟିମରରୁ ଉତାରି ଦିଆଯିବ, ବାହାର କରି ଦିଆଯିବ—କିଛିଏ ହେଲେ ଭୟଭୀତ ଅଂଶୁ ନ ଥାଏ ମନରେ ତାର ।

କଣ କହୁ କେମିତି ଅଲଗା ଧରଣର ଥାଏ ସ୍ବାକୋଭଟି—ଯେମିତି ତାର ଯାଉଣୁ ଆସୁଣୁ ସଦାବେଳର—"ବଢ଼ିଆ, ଖୁବ ବଢ଼ିଆ ଭଲ" । ପ୍ରକୃତରେ ଧରି ହେଉଥାଏ, ତାର ଯେମିତି ଦୃଢ଼ବିଶ୍ୱାସ ଥାଏ ଅଲଗା ସେ, ସମସ୍ତଙ୍କଠୁ ଅଲଗା ସେ, ଭିନ୍ନ ଗୋଷ୍ଠର—କାହାରି କ୍ଷମତା ନ ଥାଏ ବୁଝିପାରିବାକୁ ତାଙ୍କୁ !

ଏଇ ଲୋକଟା କେତେବେଳେ ଚିନ୍ତା କରି ବସିଥିବ, ଭାବନାରେ ବୁଡ଼ିଯାଇଥିବ କି ମୁହଁ ହାଣ୍ଡିକରି ଗାରୁ ଗାରୁ ହେଉଥିବ, ଦେଖିନି, କେବେହେଲେ ଦେଖି ନି, କାହିଁ ମୋର କିଛି ମନେ ପଡ଼ୁନାହିଁ—କେବେହେଲେ ହାବୁଡ଼ି ଯାଇଥିବ ଥୋଡ଼ାଏ ବେଳ ପାଇଁ ବନ୍ଦ କରି ଧ୍ୟାନ ହୋଇ ରହିବ ସେ ! କଥାଗୁଡ଼ାକ ତା' ପାଟିରୁ ବାହାରୁଥାଏ ସବୁବେଳେ, ଝର ଝର ଥର ଥର ଅଛିଣ୍ଡା, ଅଶେଷିଆ ସୁଅରେ—ତା ଇଚ୍ଛା ବଳରୁ ବହିଲେ ବଳେ ! ଯେତେ-ବେଳେ ଗାଳି ବୃଷ୍ଟି ହେଉଥାଏ ତା ଉପରେ କି ଯେତେବେଳେ ତା' ଆଗରେ ବଢ଼ାଯାଉଥାଏ ମନୋଜ୍ଞ ଗପ କି କାହାଣୀ, ସେତେବେଳେ ଦେଖେଁ ମୁଁ ଓଠ ଦୁଇଟା ଚଞ୍ଚଳ ହେଉଥାଏ, ହଲଚଲ ହେଉଥାଏ, ଯତେ ଯେମିତି ସେ ନିଜ ଆଗରେ ନିଜେ ଦୋହରେଇ ପୁନରାବୃତ୍ତି କରି, ଶୁଣଉଥାଏ ନିଜକୁ ଯାହା ସବୁ ବାଜୁଥାଏ ତା କାନରେ—କିମ୍ବା ହୁଏତ ସେ ନୀରବରେ ଶାନ୍ତ ଭାବରେ ରୂପ ଦେଉଥାଏ ନିଜର ଭାବନାଗୁଡ଼ାକୁ । ପ୍ରତିଦିନ କାମ ଶେଷ ହୋଇଗଲେ ତାର ଷ୍ଟିମର ଇଞ୍ଜିନ ଗହ୍ୱରରୁ ଉପରକୁ ଉଠି ଆସୁଥାଏ ସେ—ଝାଳନାଳ ହୋଇ, ତେଲଚିକିଟା ହୋଇ, ଖାଲି ଖାଲି ପାଦ, ଝିପି ଓଦାଳ ପଡ଼ୁଥାଏ କମିଜଟି, ମେଲି ହୋଇ ରହିଥାଏ ଓଦା କୁରୁତାଟା, ଯତେ ଯେମିତି ଦେଖାଇ ଦେବାକୁ କୁଞ୍ଚୁକୁଞ୍ଚିଆ ଗହଳିଆ ବାଳର ଭିତ୍ତିଁ ଗୁଡ଼ିଟାକୁ ତାର ! ଘଣ୍ଟେ ଘଣ୍ଟେ ମୁହୂର୍ତ୍ତିରେ ଶୁଣୁ ଆମେ ତାର ଘାଗଡ଼ା ଗଭୀରିଆ ଏକସୁରିଆ ସ୍ୱର—ଟୋପାକୁ ଟୋପା ବର୍ଷାପାଣି ପରି ଡେକ ଉପରେ ଛୁଞ୍ଚ ବିଗୁଡ଼ି ଦିଏ କଥାଗୁଡ଼ାକୁ ।

"ନମସ୍କାର ମା' କୁଆଡ଼େ ଚଳିଲୁ ? ଚଷ୍ଟୋପୋଲ ? ଜାଣେ ଜାଗାଟିକୁ । କାମ କରୁଥିଲି ନା ସେଠି, ଗୋଟିଏ ଧନୀ ତାତାର ଗ୍ରଣ୍ଡୀ ପାଖରେ, ତା' ନାଁ ? ହଁ. ରଃ ! ଉଷାନ ଗୁବାଇଦୁଲିନ—ଜାଣୁ, ଚଳନ୍ତା, ଚଳନ୍ତା ଷର୍ଯ୍ୟା ଥିଲା ବୁଢ଼ାର ! ନୀରସିଆ ଶୁଖିଲା ଫେଣୁଭିଲିଆ ନାଲିମୁହଁ । ଲୋକଟା ! ତାର ଟୋଙ୍କା ଷର୍ଯ୍ୟା

ଖବରୁ ଗୋଟାଏ, ଯାହାକୁ କହନ୍ତି ମନକୁ ପାଇଲା ଭଳି, ଠିକ ତା'ତାର ଚଳଣିଟିଏ, ତା' ସାଥିରେ ବୁଝିଲୁ, ବେଶ ଅଧର୍ମରେ ପାଖ କର୍ମରେ ଚାଲିଥିଲି ମୁଁ !"

କୋଉଠିକି ଯେ ଯାଉଁ ନ ଥାଏରେ ମୁହିଁ ! ଆଉ ସବୁଠି ସେ ସାଙ୍ଗ ସେଇ ସ୍ୱାର୍ଲେବଙ୍କୁ ଭେଟିଥାଏ, ତାଙ୍କ ସାଥିରେ ଚାଲିଥାଏ ସପନ ମଧରେ—ଲଟପଟ ହୋଇଥାଏ ଅନ୍ଧାରେ—ଗୋଟି ଗୋଟି କରି ବର୍ଣ୍ଣନା କରେ ସେ । କେମିତି ଏକ ମଧୁର ପ୍ରାନ୍ତରେ ସଦସ୍ୟ ସ୍ନିଗ୍ଧ ଉଦାରତାରେ ସତେ ସେପରି କାହାଠୁ କେବେ ଅପମାନ ପାଇ ନ ଥାଏ କି କେହୁ ତାକୁ କ୍ରୁଦ୍ଧାରେ ଗାଳିମନ୍ଦ କରି ନ ଥାଏ କେବେ ହେଲେ । ମିନିଟିକ ପରେ ପୁଣି ତା' କଥା ଗଦଗଦ ହୋଇ ହୋଇଆସେ ଷ୍ଟିମରର ପଛପଟ ମଞ୍ଚ ପାଖରୁ କେଉଁଠୁ ।

"କିଏ ପକେଇବ କହେ ତାସ ପକେଇବ ? ଖେଳିଆସ— ତିନି ଜଣିଆ ଚାରିଜଣିଆ ଚାରିପଟ ଥଳି ଭରିଥିଆ ନହେଲେ ଖାଲି ଉଠାପକା ଅରେ ହାଲୁକା କରିଦିଅ, ତୋଷ କରିଦିଏ ସେ ମନକୁ, ତାସ ! ଖାଲି ବସିପଡ଼ ଆହେ ମନ୍ଦ ଜନ ବେପାରୀ ପରି ଗୋଟାଏ, ଜମା କର ଟଙ୍କା !"

ଲକ୍ଷ୍ୟ କରିଚ ଅତି କୃଚିତ କେବେ ସେ ବ୍ୟବହାର କରୁଥାଏ 'ଗାଳିମନ୍ଦ' କି ଦୁଷ୍ଟ ଶବ୍ଦଗୁଡ଼ାକ । କିନ୍ତୁ ପ୍ରାୟ ସବୁବେଳେ ତାରୁ କଥାରେ କହୁଥାଏ 'ଖାସା ସୁନ୍ଦର' ମନୋହାରୀ କୌତୁକିଆ, ସନ୍ତୋଷିଆ, ଅଶ୍ଳୀଳିଆ—ତା' ମାନେ ତା ଅଗରେ ରୂପସୀ ନ ଛପିଟିଏ ଥାଏ, "କୁଲୁକୁଲିଆ ଝିଲ ଜଳଯନିଏ ବହିଆ ମନୋହାରୀ ଜନନୀଟିଏ, ଚମତ୍କାର ଝରା ଝକ୍ ଝକ୍ ଦିନଟିଏ ଥାଏ", "ଖାସା ସନ୍ତୋଷିଆ ଅଶ୍ଳୀଳିଆ ଏକା ? କଥା କଥାକେ ମନ ଅନୁକୂଳିଆ ଟିପ୍ପଣୀ ବାହାରୁଥାଏ ନିମ୍ନସ୍ୱରେ ହେଉ କି ଆନନ୍ଦରେ ହେଉ :—

"ପକେଇ ଦେରେ ଛେପଲେଣ୍ଡାଏ !"

ସମସ୍ତେ ତାକୁ ବସ୍ତୁତଃ ଅଲଗୁଆ ଟାଏ ନିପଟ ଅଲଗୁଆଟାଏ । ମୋତେ କିନ୍ତୁ ଲାଗୁଥାଏ ଆହା ଯେ କୌଣସି ଲୋକ ଭଲ ସଙ୍ଗୀତରେ ନୀରବ କଣ୍ଠ ସ୍ୱରରେ ନିଆଁ ପାଖରେ ଇଞ୍ଜିନ ଗନ୍ଧରେ ସେଇ ନିଶ୍ୱାସରୁ ଦୁର୍ଗନ୍ଧ, କ୍ରୁଦ୍ଧାସ୍ପଦ ଗହ୍ୱରରେ ଝଟୁଥାଏ ସେ—ଅଥଚ କେବେହେଲେ ଶୁଣୁ ନ ଥାଏ ମୁଁ ଅନ୍ୟ ସବୁ ଷ୍ଟୋକରଙ୍କ ପରି ଥକି ପଡ଼ିଲି କେମିତି ଓଜର ଆପତ୍ତି ।

ତନେ ବୋଟିଏ ବୃଢ଼ୀ ପାଦେଷ୍ଟରର ବେଶ ହୋଇଗଲା ପଚିଶ ଗାର୍ଡ଼ି ଅଛିଟିଏ । ସେ ଦିନ ସନ୍ଧ୍ୟାଟି ଆସିଲା, ଶାନ୍ତଶୀତଳ ନୀରବ ନିର୍ମଳତାରେ ପ୍ରତ୍ୟେକଙ୍କ ମନରେ ଫୁଟିଉଠିଲା ଶାନ୍ତିର ଭାବ କିଛିଏ । କାପ୍ତାନ ବୃଢ଼ୀକୁ ଦେଲା ପାଞ୍ଚଟି ରୁବଲ ଆଉ ପାଦେଷ୍ଟରର ସବୁ ଲାଗି ପଡ଼ିଲେ ତା ପାଇଁ କିଛି ସଂଗ୍ରହ କରିବାରେ । ସେମାନେ ଯେତେବେଳେ ତା ହାତକୁ ବଢ଼ାଇଦେଲେ, ଯାହା ସଂଗ୍ରହ କରି ପାରିଲେ, ସେ ଗ୍ରନ୍ଥରେ ତାର ଲୁଣ ଚାମ୍ଭାର ଛବି ଅଙ୍କି ଆଙ୍କି ଓଲଗି ହେଲା, ଅଣ୍ଟା ନଇଁପଡ଼ି କହୁ କହୁକା ।

"ହେ ମୋର ବାପଟିମାନେ ଲୋ, ମୋ ଗାଣ୍ଡି ଆଗେ ଯେତେ ଥିଲ୍ ତାଠୁଁ ଟନ ଗୁଡେଲ ଦଶ କପେକ୍ ଅଧିକା ଡେଇଚ ଲୋ ମୋତେ !"

ଏବେ ଜଣେ ଖୁସିରେ ଫ ଟିକଣ ଉଠିଲା :—

"ନେ ଆଉ ନେ, ତୋ ଭାଗ୍ୟକୁ ଓଲଗି ହୁଅ ଅଧିକା ଟନ ଗୁଡେଲ ଥିଲେ ସବୁବେଳେ ତ ହାତ ପାଆନ୍ତ କାମରେ ଲାଗିଥିନ୍ତି ।"

ଆଉ ଜଣେ ଏବେ ଟିପ୍ପଣୀ ଦେଲା ଯଥାର୍ଥ ଟିପଣୀ :—

"ଟଙ୍କାପଇସା ତ ଆଉ ମଣିଷଙ୍କ ପର ନୁହେଁ —ଜେବେ ହେଲେ ଅଣଲେଢ଼ା ହେବ ।"

ସ୍ୱାନେକ କନ୍ତୁ ଅଗେଇଗଲା ବୁଢ଼ୀ ପାଖକୁ—ନଜର ଗୋଟାଏ ପ୍ରସ୍ତ ବାଛି ବାଡ଼ି ।

"ଦେଇ ଦେ ବଲକାତକ, ଦେଇଦେ, କହିଲା ସେ— "ଖେଳିବ ମୁଁ ତ ସ, ଖେଳିବ ସେଥିରେ !"

ହୋ ହୋ ହୋଇ ହସିଉଠିଲେ ସମସ୍ତେ ସତରେ ଅଟା ଜନ୍ତ ନୌକରଟା । ସେ କନ୍ତୁ ଗୁରୁତ୍ୱ ସହ ବାଧା କରିବା ସ୍ୱରରେ ବାରମ୍ବାର କହିହେଲା :—

"ଅଃ ଦେଇ ଦେ, କଣ କରିବୁ ତୁ ଏତେ ଟଙ୍କରେ ନଣ ଦରକାର ତୋର ବଢ଼ ପାହଲେ ତ କାଲି ଗୁରୁଣ୍ଡି ଗୁରୁଣ୍ଡି ପେଟେଇ ପେଟେଇ ବୁଲିବୁ ତୋ କବରକୁ ।"

ଯେମିତିନେ ସମସ୍ତେ ଫ ଟିକ୍ଳଣ ଉଠେଲେ ତା' ଉପରେ—ତଡ଼ିଦେଲେ ତାକୁ ସେଠୁ । ଆଉ ସେ ଆଶ୍ଚର୍ଯ୍ୟ ହୋଇ କହିଲା ମୋତେ ।

"କି ବଡ଼ଟଏ ପଲେ ଏଁ, ଅନ୍ୟଲୋକଙ୍କ କାରବାରରେ ନାକ ପୂରେଇବାର ମତଲବ କଣ ଏମାନଙ୍କର ? ବୁଢ଼ୀଟା ତ କହିଲା ତାର ଅଧିକା ଟଙ୍କା ଦରକାର ନାହିଁ । କନ୍ତୁ ଟେନ୍ଟା ବୁଲୁ କେଡ଼େ ସନ୍ତୋଷିଆ, କେଡ଼େ ସୁନ୍ଦର ହୁଅନ୍ତା ମୋ ପାଇଁ ।"

ମତେ ଲଗିଲା—ଟଙ୍କା ପଇସାକୁ ଅନେଇ ଅନେଇ ତାର ମୁଖ ତାର ଆନନ୍ଦ । କାହିଁକ ନାଁ କଥାବାର୍ତ୍ତା ହେଉଥିଲବେଳେ ସେ ବୁଢ଼ୀର କ ଚମ୍ପାର ଗୋଟାଏ ଟଙ୍କା ପଇସାକୁ ନିଜ ପ୍ୟାଣ୍ଟରେ ଦେଖେ, ପକାଏ କରେ । ଅଉ ତାର ଚକମକ ଝୁଲପଟା—ଶୁଙ୍ଘିବା ପାଇଁ କ ଦେଖିବା ପାଇଁ କେଜାଣି—ଟେକ ଧରେ ତାର ଓଲଟା ପୁଡ଼ା ଟେପ୍ଟାନାକ ସାମନାରେ । କନ୍ତୁ ସେ ଲେଉ୍ନ ଥାଏ ଅଦୌ ।

ତନେ ସେ ଡାକିଲା ମତେ ବ୍ୟାଙ୍ଗ୍-ଡାଉନ୍ ଉଠାପକା ତାସ ଖେଳିବାକୁ । କନ୍ତୁ ମୁଁ ଜାଣି ନ ଥିଲି ତାସ ଖେଳିବାକୁ ହୁଏ କେମିତ ।

"ଜାଣିନୁ ତୁ କେମିତି ଖେଳନ୍ତି ଏଁ !" ଆଶ୍ଚର୍ଯ୍ୟ ହୋଇ କହିଲି ସେ । 'ଇଏ କେମିତିଆ କଥା । ଆଉ ତୁ ଯିଏ ଜାଣିଚୁ ପଢ଼ିବାକୁ ହୁଏ କେମିତି ! ନା, ମୋତେ ଶିଖେଇଦେବାକୁ ହେବ— ଆ—ଖେଳିବା—ଖୁସିରେ ଖାଲି ଏମିତି କୌତୁକପଣରେ ଖେଳିବା ଆ 'ଟନ' ପୁଳାଏ ପୁଳାଏ ବାଜି ରଖ୍ ଖେଳିବା ଆ ।"

ଅଧଘଣ୍ଟେ ପାଉଁରୁଟି-ଟନ ଜିଣିନେଲି ମୋଠୁଁ । ଆଉ ଖଣ୍ଡେ ଖଣ୍ଡେ କରି ପୂରେଇ ଲାଗିଲି ପାଟିରେ । ସେତେବେଳେ ଦେଖିଲି, ବୁଝିଲି—ତା' କୌଶଳଟା କେଣ୍ ଧରିପାରିଛୁ, ମୁଁ କହିଲି —

"ଆ ଆ, ଏଥର ପ୍ରକୃତ ବସ୍ତୁରେ ଅସଲ ଖେଳ ଖେଳିବା ଟଙ୍କା ପାଇଁ । ଅଛି କିଛି ?"

"ପାଞ୍ଚ ରୁବଲ ।"

"ଆଉ ମୋର ଅଛି ଦୁଇ-କିଛି ?"

ଏମିତିକା ଘଟଣାରେ ସେ ଘୁହୁଁ ଘୁହୁଁ ମୋତେ ଜିତି ସବୁ ମୋଠୁ ନେଇଯାଆନ୍ତା ନାହିଁ ତ କଅଣ୍ଟା କିଏ ? ମୋ ଶୀତଦିନିଆ କୋଟ୍‌କୁ ବାଜି ରଖିଲି ପାଞ୍ଚ ରୁବଲ ପାଇଁ—ଆଉ ହରେଇଦେଲି ବି । ପଣ ରଖିଲି ନୂଆ ବୁଟ୍‌ଯୋଡ଼ା ଡଲକ ତିନିରୁବଲ ପାଇଁ, ହରେଇଦେଲି ବି ପୁଣି । ତା'ପରେ ଚିଡ଼ି-ଚିଡ଼ି ହୋଇ ପ୍ରାୟ ରାଗିଯାଇ କହି ଉଠିଲି ସ୍ୱାକୋଭ ।

'ଖେଳଫେଳ ମାଲୁମ ନାହିଁ ତୋତେ—ଖେଳାଳି ନୋହୁଁ ତୁ, ଅତି ହିଦଣ୍ଡିଆ ଚଣ୍ଡଟାଏ ତୁ ! ସବୁବେଳେ ମଥା ଗରମ । ତୁନି ଫେରେଇ ନେ ତୋର କୋଟ, ତୋର ବୁଟ—ଦରକାର ନାହିଁ ମୋର । ହେଉଛି ସବୁ ନେ । ଆଉ ନେ ତୋର ଟଙ୍କା ପଇସା ଗୃଣ ଚୁବଲ ବି । ନୋଟିଏ ଆସିଲି ମୋ ପାଖକୁ ତୋତେ ଶିଖେଇବା ପାଇଁ—କିଛି ମନେ ନ କରୁ ଯଦି କିଛି ନ ଭାଇ ।"

କୃତଜ୍ଞ ହୋଇପଡ଼ିଲି ତା ପାଖରେ ।

"ଧୂର୍ତ୍ତ ତେରକ ଥୁ !" ମୋ କୃତଜ୍ଞତା ପ୍ରକାଶର ଉତ୍ତରରେ କହିଲା ସେ, "ଖେଳ ହେଉଛି ଖେଳ" ମାନେ, ମଜାକ ପାଇଁ—କୌତୁକ ପାଇଁ । କିନ୍ତୁ ତୁ ସେଥିରେ ମଜ୍ଜିଯାଉଚୁ—ସତେ ଯେମିତି ଲଢ଼େଇ ସେଇଟା । ଦେଖ୍— ଲଢ଼େଇରେ ବି ତ ପୁଣି ମଥା ଗରମ କରିବା ଠିକ ନୁହେଁ—ଟଣ୍ଡା' ଅବିଚଳିତ ଆଖିରେ ଧରି ରଖିବା ଉଚିତ ମେମାନଙ୍କୁ—ଶତ୍ରୁଙ୍କୁ । ଏମିତି ଡାଟିଯିବା ପାଇଁ କିଏ ଅଛି ଏଥିରେ ! ଶକ୍ତ କରି ଦୃଢ଼କରି ଧରି ରଖିବାକୁ ହେବ ତେତେ ନିଜକୁ । ଥରେ ହାରିଲୁ ପାଞ୍ଚଥର ହାରିଲୁ, ସାତ ଥର ହାରିଲୁ, କୋଉଥର ଲକ୍ଷ ଠିକ ହେଲା ନାହିଁ, ଛୋଃ ! ଛେପ ପଡ଼ୁରେ । ଯା ଘୁଞ୍ଚିଯା ଆଗରୁ । ଯା ! ଅଣ୍ଡା ହୁଅ ଯା, ପୁଣି ଥରେ ଲାଗ ପୁଣିଥରେ ସେଇ ଖେଳ ପିଣ୍ଡରେ ଏମିତି ସିନା ଖେଳିବାକୁ ହୁଏ ହୁଁ ।"

ତାକୁ ଭଲପାଇ ଲଗିଲି କେତେବେଳେ ଖୁବ ଆଉ କେତେବେଳେ ଉଣାଉଣିରେ । କେତେବେଳେ ସେ କଥା କହିଲେ ମନେ ପଡ଼ଯାଉଥାଏ ଅନୁମା— ଲଗୁଥାଏ ଅନୁମା କହୁନ ତ ଆଉ ! ତାଠି କିଛି ଏମିତ କଣ ସବୁ ଥାଏ, ଯାହା ମୋତେ ଟାଣିନେଉଥାଏ ତା' ଆଡ଼କୁ, କିନ୍ତୁ ବାଧ ପାଇ ଆସୁଥାଏ—ତା' ଲୋକଙ୍କ ପ୍ରତ ହୃଦୟ ମନୋଭାବର ଯେଉଁ ବଦଳିଲ ଚମ, ମୋଟା ଅଚ୍ଛାଦନ ରହୁଥାଏ ତାହାଠି, ସେଇଥିରୁ ଲଗୁଥାଏ ମୋତେ ସେଇ ବଦଳିଆ ଚମ, ମୋଟା ଉପର ଆବରଣ ତଥାଏ ହୋଇଥାଏ ସମୁଦାୟ ଜୀବନରେ ତାର ।

ତନେ ସୂର୍ଯ୍ୟ ବୁଡ ବୁଡୁ ହେଉଥାଏ—ଦ୍ୱିତୀୟଶ୍ରେଣୀ ପାସେଞ୍ଜରଙ୍କ ଭିତରୁ ଗୋଟିଏ ଫର୍ମର ଅାକ୍ରାନ୍ତ ନେପାଳିଟାଏ, ମଦ ପିଇପିଇ ମାତାଲ ହୋଇ ଖସିପଡ଼ିଲା ଜାହାଜ ଉପରୁ ପାଣିକୁ । ପାଗଳଙ୍କ ପରି ହାତ ହଲାଇ ହଲାଇ ଓଟାରହୋଇ ଭାସି ଭାସି ବୁଲିଲା, ଜାହାଜ ପଛ ପୁନେଲ-ନାଲ ଜାହାଜ ଗତି ହେତୁ ତଥାର—ସୂଅଧାରରେ । ସଙ୍ଗେ ସଙ୍ଗେ ବନ୍ଦ କରି ଦିଆ ଗଲା ଇଞ୍ଜିନକୁ, ଅଚଳ ଅବସ୍ଥାକୁ ଅଣାଗଲା, ଖୋଜା କରେଇ ଦିଆଗଲା ଜାହାଜକୁ । ସ୍ୟାଡ଼ଲ ଚକଗୁଡ଼ିକରୁ—ଥୋଇ ଥୋଇ ବାହାର ଆସିଲା ଫେଣ ଟାଲ ଫେଣ— ଏତକ ଧ୍ୱନି ଏତେ ବଚନ, କଲୋଚ୍ଛ୍ୱାସରେ ସୂର୍ଯ୍ୟାସ୍ତ ଯୋଗୁଁ ଦିଶି ଦିଶିଗଲା ରକ୍ତ ପରି ଲାଲ । ଏଇ ଟକମକ ଅାଉଟା 'ରକ୍ତ' ଭିତରେ ବିକଳରେ ଗୁହିପିଟି ହୋଇ ଲଢ଼ିଲା । 'କଳା' ବର୍ଣ୍ଣ ଗୋଟାଏ, ଦେହ ଗୋଟାଏ, ମଙ୍ଗଠାରୁ ବହୁତ ଦୂରରେ ଏବେ ଅବାଚକାତ ପାଣି ଭିତରୁ ଉଠିଲା—ସେ କ ହୃଦୟଫଟା କରୁଣ ଚିତ୍କାର । ପାସେଞ୍ଜର ପାନି ଜଣ ଉଠିଲେ, ଠେଲଠେଲି ହେଲେ, ଜଣକ ପରେ ଜଣେ ଆସି ପଡ଼ିଲେ ଜାହାଜର ମଞ୍ଚ ମୁଣ୍ଡ ଉପରେ । ବୁଡ଼ିଯାଉଥିବା ଲୋକଟିର ବନ୍ଧୁ ଜଣେ ନେପାଳିଆ, ଲାଲ ଚାଣ୍ଡ, ସେ ବି ପିଇଥାଏ ଅଜସ୍ର, ଗର୍ଜି ଗର୍ଜି ଆସିଲା ଲୋକଙ୍କୁ ଠେଲିପେଲି ।

"ବାଟ ଛାଡ ! ଅରେ ବାଟ ଦିଅ ମୋତେ ! ଯିବି, ମୁଁ ଯିବି ତା' ପାଖକୁ ଯିବ ।"

ଦୁଇଜଣ ମାଝି ଏତେବେଳକୁ ପଶିଯାଇଥାନ୍ତି ପାଣିରେ—ପହଁରି ପହଁରି ଆଗଉଥାନ୍ତି ବୁଡ଼ିଯାଉଥିବା ଲୋକଟି ପାଖକୁ । ଜୀବନରକ୍ଷା ନୌକାଟାଏ ତଳା ହେଉଥାଏ ତଳକୁ ପାଣି ଉପରକୁ । ମାଝିମାନଙ୍କର ପଛି, ମାଛମିଶ୍ରିତ ଜଳର କେଁ କାଁ ଇଆ ଚିତ୍କାରକୁ ଦବେଇ ଶୁଣାଗଲା ଖାପୁଂଖାପୁଂଆ ଖୁଣ୍ଟିଲା ଗର୍ଜ୍ଜର କେଲର ଧୀରଣାନ୍ତ ସ୍ୱର ସ୍ୱାନୋଭର ।

"ସେ ବୁଡ଼ିଯିବ, ବୁଡ଼ିଯିବ, ମଲ୍ଲାର ନଜର ଯେ ଦେଖୁ ନ ହିଉତ ସେ କୋନଟାଏ, ଲମ୍ବା ପୋଷାକପତ୍ର ଅଳେ ତମେ ବୁଡ଼ିଯିବା ଜଣି ତ । ଏଇ ଧର ମାଇମି ଲୋକଙ୍କ କଥା, ସେମାନେ ସୁବୁଣଙ୍କ ଭୂଲଦାରେ ଅବ ବୁଡ଼ିଗଲା ତାଙ୍କ 'ସ୍କାଟ' ଯୋଗୁଁ । ମାଇପିଟାଏ ପାଣିରେ ପଡ଼ିଗଲେ ପାଣିରେ ବାନ୍ଧେଇ

ହୋଇଯିବା ଛଣି ଯାଏ ତଳକୁ ତଳକୁ ଖସିଯାଅନ୍ତି ଓଜନ ଭଳି । ଅନା, ଅନା ଗଲଣି, ବୁଡ଼ିଗଲଣି ସେ—କଣ କରୁଥିଲି ମୁଁ ?"

ପ୍ରକୃତରେ ବୁଡ଼ିଗଲା ଲୋକଟି ! ଦୁଇ ଘଣ୍ଟା କାଳ ତା' ଶବଟା ପାଇଁ ଗୁଡ଼ାଏ ଖୋଜାଖୋଜି କରି ନିରସ୍ତ ହେଲେ ସେମାନେ – ମଠ ସ୍ଥିର ହୋଇଥିଲି ଏତେବେଳକୁ ତା' ବନ୍ଧୁ ଟାର, ମଙ୍ଗ ଉପରେ ଦୁଃଖରେ ମ୍ରିୟମାଣ ସେ – ଅଶାନ୍ତ ହୃଦୟରେ ଛଟପଟ ହେଲି ମନକୁ ମନ ।

"ଏ କଣ ହେଲାରେ ! ଏ କଣ ଘଟିଲା ! କ'ଣ କରିବ ମୁଁ ? କଣ କରାଯିବ ଏବେ ! କଣ ? କଣ କହିବ ଯାଇ ତା ଘରେ ତା ଲୋକଙ୍କୁ ? କଣ କହିବି, କେମିତି ମୁହଁ ଦେଖାଇବି ସେମାନଙ୍କୁ ! ତା ଘର ଲୋକଙ୍କ ପାଇଁ ହେଇ ନ ଥାନ୍ତା ଯଦି !"

ପଛରେ ହାତ ଛନ୍ଦି ଦେଇ ତା ସାମନାରେ ଛିଡ଼ା ହୋଇଥିଲି ସ୍ୟାକୋଭ । ପ୍ରବୋଧିଲି ସ୍ୱରେ ସାନ୍ତ୍ୱନାର ଶବ୍ଦଗୁଡ଼ିଏ ଅଯାଚିତ ଭାବରେ ନିବେଦନ କରି କରି ତାଙ୍କୁ ।

"କଣ କରିଯିବ ମହାଜନେ ! କାହାର ବଳ ଅଛି ଏଥିକି । କିଏ କଣ ଜାଣେ କେମିତି କେଉଁ ମୁହୂର୍ତ୍ତରେ ଧନ ପଶିଯିବ ତାର । ଘଟେ ଏମିତି ବି ଘଟେ, ଲୋକ ଚେତେ କେ ପିଉଥାଏ, ଗୁଣ୍ଡ ଖାଉଥାଏ, 'ଛତୁ' ଗ୍ରେବାଉଥାଏ ଫୁ କରି ଉଡ଼ିଯାଏ ତା' ପ୍ରାଣବାୟୁ, ସ୍ଥଳେ ସେ କବରକୁ । ହଜାର ହଜାର ଲୋକ, କେତେ କିଏ ବା ଖାଇବସି ନ ଥାନ୍ତି, ଛତୁ ଗ୍ରେବାଇ ନ ଥାନ୍ତି ସେତେବେଳେ, କାଲି ସ୍ଥଳେ, ଜଣେ ସ୍ଥଳେ ମରଣକୁ ତାର । 'ଛତୁ' ଗୋଟିଏ ଖାଇବ ମୁଠିଏ ବା କଣ ?"

ଛିଡ଼ା ହୋଇଥିଲି ସେ ଦେପାଟିଟି ଆଗରେ – ଶାଳପଥର କି ପେଷଣା ଚକି ପଥର ଓଜନରିଆ ଆଉ ଶକ୍ତ । ଛିଡ଼ା ହୋଇଥିଲି ଭୂଷ ଭଳି ତାର କଥାଗୁଡ଼ାକୁ ଉଡ଼ାଇ ଉଡ଼ାଇ ବାହି ବାହି ଗୁରୁଆଡ଼ୁ – ପ୍ରଥମେ ଧୁଁ ଧୁଁ ହୋଇ ଭୁଜ ଭୁଜ କାନ୍ଦୁଥିଲେ ଦେପାଟିଟି ବଡ଼ ପ୍ରଶସ୍ତ ପାପୁଲିରେ ଲୁହ ଟୋପାକୁ ଗୁଡ଼ାକୁ ଲୁହାକୁ ଲୁହା ପୋଛୁ ପୋଛୁକା ଦାଢ଼ିମୁଛ ଉପରୁ ନିଜର— ସ୍ୟାକୋଭର କଥା କେଇପଦର ମର୍ମ ଯେତେବେଳେ ପହଞ୍ଚିଲା ଯାଇ ବାଜିଲା ଯାଇ ହୃଦୟରେ କାଁ କାଁ ହୋଇ କାନ୍ଦିଉଠିଲା ବିଜେଲଟା ।

"ଦୂର ହୋ ବଦମାସ୍ ! ଦୂର ହ ପାଖରୁ ମୋର । କାହିଁକି ନେଇଥିପାଇଁ ମୋ ଅମୃତ କୁ ମୋଡ଼ି ମକଚି ମାଛି ପକାଇଚୁ କୁଧୁକୁଡା କରି ତାକୁ ବାହାନାଚୁ ଏମିତି—ଯେତେ ଯିଏ ପ୍ରକୃତ ଭଗବାନ ବିଶ୍ୱାସୀ ନେଇଗଲେ ନେଇଗଲେ ତାକୁ—ପ୍ରକୃତ ଠାକୁର ବିଶ୍ୱାସୀ ଯିଏ ନେଇଯାଉ ରେ ନେଇ ଯା ତାକୁ—ନଇଲେ ସାହା ଘଟିବ ସେଥିପାଇଁ କୈଫିୟତ ଦେବ ନାହିଁ ମୁଁ ।"

ଧୀରଶାନ୍ତ ଭାବରେ ଖସି ଆସିଲା ସ୍ୟାକୋଭ କେବଳ ଟିପ୍ପଣୀ କାଟି କାଟି—

"ଲୋକଗୁଡ଼ାକ ସବୁ ମଜାର ସତେ ! ଭଲ କରିବା ପାଇଁ ଚେଷ୍ଟା କର, କେବେହେଲେ କେହି ବୁଝିପାରିବେ ନାହିଁ ତମକୁ ।"

ବେଳେବେଳେ ଲାଗୁଥାଏ ମୋତେ କୋଇଲା ଭାଇଙ୍କ ସରଳ ପ୍ରକୃତିର କଥା ଅଧିକାଂଶ ସମୟରେ ଅନୁଭବ କରୁଥାଏ, ସେ ଯେମିତି ଛଳନା ଜାଣୁଥାଏ ସରଳତା ସେହି । ଆକୁଳ ହେଉଥାଏ ମୁଁ ତାଙ୍କୁ ଶୁଣିବା ପାଇଁ—ସେ ଯେଉଁ ଯେଉଁଠିକି ଯାଇଥାଏ ଯାହା ଯାହା ଦେଖିଥାଏ, ସେ ସବୁ ବିଷୟରେ, କିନ୍ତୁ ଟିକିଏ ହେଲେ ଭଲ ମୋ ମନ ତୃପ୍ତ ହେଉନଥିଲା କାହିଁ କହୁଥାନ୍ତା କି ! ମୁଣ୍ଡଟାକୁ ଝାଙ୍କି ଦେଇ ପଛକୁ, ଦରଦର ମୁଦାକର ତାର ଅଙ୍କ ରଖା ଅନ୍ଧାରିଆ ଗଲୁଅଛି ହସଲୁ, ତା' ମାଛିପିଆ ଗାଲକୁ ଆଗ୍ରହରେ ଅଉଁସି ଦିଏ ଖାଲି—ପଚାରିଲାବେଳେ ମୁଁ, ଆଉ ତାର ସୁନ୍ଦର ଛିଅଗୁଡ଼ାକୁ ଟାଣି ଓଟାର ଦେଖାଏ ଟିକିଏ ।

"ଲୋକ, ଖାଲି ଲୋକ ! ସବୁ, କୋଉଠି ବା ଲୋକ ନାହାନ୍ତି ପିମ୍ପୁଡ଼ିଙ୍କ ପରି ଗଳକୁ ଗଳ । ଏଠି ଲୋକ ସେଠି ଲୋକ—ଯେଉଁଠିକି ଯା ସେଠି—ଖାଲି ମାଲୁ ଅଧିକାଂଶ ଚପାଭୁଷା, ଚମ୍ପାଭୁଷା ଅବଶ୍ୟ ପୃଥିବୀଯାକ ସୁନ୍ଦରଅଛନ୍ତି ଖେଦ ମାତ୍ର ରହିଚନ୍ତି, ବର୍ଷ ତ୍ର ହୋଇ ପଡ଼ିଚନ୍ତି, ଶୀତଶେଷର ଝଡ଼ପଡ଼ଭଳି ! କୁଳଗାର୍ ? କୁଳଟେଶଥର ଲୋକ ? ହଁ ନିଶ୍ଚୟ ଦେଖିଚି ମୁଁ କୁଳଗାରଙ୍କୁ, ଦେଖିଚି ସ୍ତ୍ରୀଙ୍କୁ ଆଉ ସର୍ବସ୍ୱ ତୁମାନଆର ଲୋକଙ୍କୁ ଅଉ ନେକାଣି କେତେ କହମଲ କପ୍ସିଙ୍କୁ ସବୁ ଧରଣର—କେମିତିକା ସେମାନେ ? ନାଇଁ, ହଁ କାହାଭଳି ହେବେଟି ସେମାନେ ? ସହରରେ ସହରି, ଗାଆଁରେ ଗାଉଁଲି । ଏଇ ଅମର ଏଠି ଯେମିତି ସେମାନେ ସମାନ—ସବୁବେଳେ ସମାନ, ଏକାଭଳି ସବୁଠି । କେତେ ପୁଣି କଥାକିଆ ହୁଅନ୍ତି, କଥା କହନ୍ତି, ଆମରିପରି ଠିକ୍, ଆଦତ ପଣ ନୁହେଁ ଏଇ ଯେମିତି ତାତାର କ ମୋର୍ଦ୍ଧୋଭିଅଟ ସେମାନେ ! ସ୍ତ୍ରୀମାନେ କିନ୍ତୁ କଥା କହନ୍ତି ନାହିଁ ଆମପରି । ଯାହା ତାଙ୍କ ମୁଣ୍ଡକୁ ଅସେ ବଙ୍କର ବଙ୍କର ହୋଇ ଚାଳିପକାନ୍ତି ତା'ସବୁ—ଶୁଣିବେ ଦେଗୁଡ଼ାଏ, କଥାଗୁଡ଼ାଏ ଭଲ—କିନ୍ତୁ କଣ ଯେ କହନ୍ତି, କୋଉ ବିଷୟରେ କିଛି ଭଲ ଧରି ହୁଅନ୍ତା ! ତମକୁ ତାଙ୍କ ସାଙ୍ଗରେ କଥା କହିବାକୁ ପଡ଼େ ହାତରେ—ତମ ହାତରେ ! ମୋର ସେ ବୁଢ଼ାଲୋକଟା ମନେମନେ ଭାବିଥାଏ, ବିଶ୍ୱାସ କରିଥାଏ, ସ୍ତ୍ରୀମାନେ ଯାହା କହନ୍ତି ବୁଝିପାରୁଛି ଟୁପୁ ଟୁପୁ କହି ହେଉଥାଏ 'କାଲମସ' 'କଲମାରୁ' ! ଚତୁର ଧୂର୍ତ୍ତଟାଏ ଠିକ୍ । ସେମାନଙ୍କ ସଗଟା ଧରିପାରୁ ନ ଥାଏ ଯଦଓ, କଣ ତା । ପୁଣି ପରୁରୁଚୁ ମଧେ କେମିତି ସେମାନେ, କାହାପରି ? ବୋକା କର୍ଦ୍ଦମ ବୋକା ! କାହାପରି ହେବେ ସେମାନେ ? ହଁ, ରଙ୍ଗ ଅନେକ କଳାଅଖିଆ ଗାଡ଼ୁଆ—ତୁମାନଆର ଲୋକଗୁଡ଼ାକ କଳା କଳା ବ—ଧର୍ମ ଗୋଟାଏ ସେମାନଙ୍କର ସମସ୍ତଙ୍କର । କୁଳଗାରମାନେ ବ

କଲାବର୍ଣ୍ଣର, କିନ୍ତୁ ସେମାନେ ଆମପରି ପ୍ରକାଣ୍ଡ ପ୍ରାର୍ଥନା-ପ୍ରାର୍ଥନା କରନ୍ତି । ଅଉ ଗ୍ରୀକଙ୍କ କଥା କଣ ? ସେମାନେ ତୁର୍କଙ୍କପରି ।"

ଅନୁଭବ କଲି ସେ ମୋତେ ସବୁ କଥା କହୁ ନ ଥାଏ, ଏମିତି କିଛି ଲୁଚୁଥାଏ ଯାହାକୁ ସେ ଲୁଚେଇ ରଖୁଥାଏ ।

ପଥପାର୍ଶ୍ୱର ଛବିଗୁଡ଼ିକରୁ ଜାଣି ପାରୁଥାଏ ଯେ ତା'ପର ରାଜଧାନୀ ଏଥେନ୍ସ । ପ୍ରାଚୀନ ଆଉ ଏକ ସୁରମ୍ୟ ନଗର । ସ୍କୋଲ୍ କିନ୍ତୁ ଅବଶ୍ୟ ଅଉ ସନ୍ଦେହମିଶା ଭଙ୍ଗୀରେ ମୁଣ୍ଡ ହଲେଇଲ—ଅସ୍ୱୀକାର କଲ ଏଥେନ୍ସର ଅସ୍ତିତ୍ୱକୁ ।

"ଅରେ ହଁ, ମିଛ କହନ୍ତି ସେମାନେ, ମିଛ କହୁଛନ୍ତି ସେମାନେ ତେ ତେ । ଏଥେନ୍ସ ଫ୍ରେଥେନ୍ସ କିଛି କୋଉଠି ନାହିଁ, ଅଛି ଅଥେନ—ଆଉ ସେଇ ନଗର ଫର ନୁହେଁ, ଗୋଟାଏ ପାହାଡ଼, ତା ଉପରେ ଅଛି ମଠଟାଏ । ବାସ୍ ସେତିକି । ତାକୁଇ କୁହାଯାଏ ପବିତ୍ର ଗିରି ଅଥେନର । ଏହାର ସବୁ ଛବି ଅଛି, ବୁଢ଼ା ବଙ୍କା ଦେଖନ୍ତୁ ଯାହାକୁ—ଡାନ୍ୟୁବ ନଦୀ ଉପରେ ହେବ ବେଲଗୋରେଡ ସହର ସ୍କୋପ୍ଲେ ଭଳି ବା ନଇଁନ ଭଳି କିଛି ଗୋଟାଏ । ସେମାନଙ୍କ ସହରଗୁଡ଼ାକ ସମ୍ପର୍କରେ ଏମିତି ବିଶେଷ କିଛି କହିବାର ନାହିଁ—କିନ୍ତୁ ସେମାନଙ୍କ ଗାଆଁଗୁଡ଼ାକ ଅଲଗା ! ଅଉ ସେମାନଙ୍କ ତରଳ ମାଇପେଗୁଡ଼ାକ ଏତେ ବଢ଼ିଆ, ଏମିତି ମନୋହାରିଣୀ ଯେ କଥାରେ କହି ହେବ ନାହିଁ । ମୁଁ ତ ପ୍ରାୟ ଲଖିଯାଇଥିଲି ସେଠି —ସେମିତି ଗୋଟିଏ ତରଳ ପାଇଁ, କ'ଣ ତାର ନାଆଁ ଟି ଏବେ···।"

ଖରଖର ଘଷି ଲଗିଲା ପାପୁଲି ଦୁଇଟାକୁ ମୁହଁରେ - ଥର ଥର ନରମରେ ଝସ୍ ଝସ୍ ଶୁଭୁଥାଏ ଦାଢ଼ିପୁଳାକ । ସେତିକିବେଳେ ଗଳାର କେଉଁ ଗହ୍ୱରଆ ଅଂଶ ଭିତରୁ ଘିଁଘିଁଆ ଘୁଡ଼ୁଘୁଡ଼ୁ ହୋଇ ବାହାରିଲା ଫଟା ଘଣ୍ଟି ଯାଗୁଡ଼ାରୁ ବାହାରିଲାଭଳି ।

"ଛିଃ, ମଣିଷ କେମିତି ଭୁଲିଯାଏ ହୋ—ପାସୋରି ପକାଏ ସବୁ ଆଉ ଯେତେବେଳେ ଦୁଣି ଗୁଲିଥିଲି ତାର ଓ ମୋର··· ସେ ଆଉ ମୁଁ · ସେ'କ କାନ୍ଦଣା ତାର ଯେତେବେଳେ ମେଲିଣି ମାଗିବ ତା ପାଖରୁ ଆଉ ମୋର ବନ୍ଧୁ କଣ ବିଶ୍ୱାସ କରିବ ? କେହି କଣ ବିଶ୍ୱାସ କରିବ – ମୋର ବ···।"

ଅବଚେତନ ଶାନ୍ତ ନୀରବତାରେ ମୋତେ ଝିମାଇ ବସିଲି କେମିତି ବ୍ୟବହାର ଦେଖାଇବ ମାଇପି ଲୋକଙ୍କୁ—କେମିତି ଚଳନ୍ତି ଲୋକ ତାଙ୍କ ସାଂଗରେ ।

ମାଠ ଉପରେ ବସିଥାଉ ଦୁହେଁ ଯାକ, ମଧୁର ସ୍ୱରରେ ମନପ୍ରାଣ ହୋଇଯାଇ ଆମ ପାଖକୁ ଭସି ଭସି ଆସୁଥାଏ ଜ୍ୟୋତ୍ସ୍ନାମୟୀ ରାତିଟି—ତାଆଁ ପଛରେ ଆମର ତୃଣଭରା ପ୍ରାନ୍ତରଟି ବିସ୍ତୃତ ହୁଏ ଜଳଗଣିର ଆରପଟକୁ ଦିଶୁଥାଏ କି ଦିଶୁଥାଏ ନାହିଁ—ତାହାଉପରେ ପାହାଡ଼ କରେ କରେ ପାହାଡ଼ର ସାନୁରେ ଠାଆକୁ ଠାଆ ଛୁଇଁଯାଇ ଜୁଳୁଜୁଳୁ ହୋଇ ମିଟିମିଟି କରୁଥାଏ ହଳଦିଆ ଆଲୁଅ, ବୁଦାକୁ

ବୃନ୍ଦା ବନ୍ଧନୀ ତାଙ୍କଗୁଡ଼ିକ ପରି । କେଉଁ ବ୍ୟକ୍ତି କେଉଁଠି ବା ସଚଳ ହୋଇ ଉଠି ନ ଥାଏ, ଗତିଶୀଳ ନ ଥାଏ, ଅଚେତରେ କମ୍ପିତ ହେଉ ନ ଥାଏ ଅପୂର୍ବ ଚାଞ୍ଚଲ୍ୟରେ ! ଜୀବନ ଆଉ ଉପଭୋଗ କରୁ ନ ଥାଏ ନିବିଡ଼ ପ୍ରଶାନ୍ତିରେ ଜୀବନକୁ ? ସେହି ମାଧୁର୍ଯ୍ୟମୟ ନୀରବତାରେ ଶୁଷ୍କଭଳି ଖସ ଖସ ହୋଇ ଝଡ଼ିଝଡ଼ି ପଡ଼ିଲା ଶାଳୁଆରୁଆ କଥାଗୁଡ଼ାକ—

"ଘଟିଛି-ଘଟିଛି, ଏମିତି କେବେ ହେବ ସହଗେ ସଂଗେ ମେଳେଇ ଦେଉଥାଏ ହ ତ ଦୁଇଟିକୁ—ଗୁଡ଼ିକୁ—।"

ଯାଜପୋଖରୀର କାହାଣୀରେ ନିଳଷ୍କପଟ ଥିଲା ସତ—କିନ୍ତୁ ଘୃଣା ଉପୁଜେଇ ଓକାର ଉଠେଇଲାଭଳି ଦୁର୍ଗନ୍ଧ ନ ଥିଲା କେଉଁଠି । ଘଟର କ ୃଗକଠୋର ମଡଗଡର ସ୍ପର୍ଶ ନ ଥିଲା ଆଦୌ—ଥିଲା ସ୍ୱଚ୍ଛ ଶ୍ୟାମଳ ସତ, ଥିଲା ଟିକିଏ ଅଜ୍ଞାତ କଗି ନାକକାଟଣା ଝୁଣ୍ଟହେଲା ଭାବ ସେଥିରେ— ଉର୍ଦ୍ଧ୍ୱରେ ଆକାଶରେ ଭଲଗ୍ନ ତାଟିକି କଟ୍ଟର ଥିଲା, ନିର୍ଲଜ୍ଜ ଥିଲା, ବେହିଆମିରେ ଭରପୂର ଥିଲା ସମାନ ସେହିଭଳି— ଆଣୁଥିଲା, ଜଗାଇ ଦେଉଥିଲା ସମାନ ସେହିଭଳି ବ୍ୟଥାରୁଚତା ବଞ୍ଚଣା ପ୍ରାଣରେ ମୋର । କେବଳ ଭଲ ଯାହା, ଭଦ୍ର ଆଉ ସୁନ୍ଦର ଯାହା, ଉତ୍କୃଷ୍ଟ ଯାହା ; ତାହାହିଁ ସେହିକଥା ସେହି ଘଟଣାକୁ ହିଁ ମନେ ରଖିଥାଏ ମୁଁ ଗୁଣୀ ମାଉଟଙ୍କୁ ଆଉ ସତ-ଭାବରେ ସ୍ୱୀକୃତି ଅପାଶୋରା ଧାଡ଼ି କେତୋଟି ସେହି :—

> ସୁନ୍ଦର ପଣରେ ଯିନା ଲେଡ଼ହୁଏ ଗୀତ
> ସୁନ୍ଦରେ ଲୋଡ଼ିବା ଗୀତ ନୁହେଁ ନୁହେଁ ଗୀତ,
> ସୁନ୍ଦର କି କେବେ ଲେଡ଼ୁଥାଏ ଗୀତ—
> ଗୀତ ଯିନା ଲୋଡ଼େ ସୁନ୍ଦର ନିତ ।

ମୋର ଧ୍ୟାନର, କଳ୍ପନାର ଗଢକୁ ତନ୍ଦ୍ରାଳୁର ଅବସ୍ଥାଭଳି ଝାଡ଼ିଝୁଡ଼ି ଟିକିଟୋପାଡ଼ି ଦେଇ ଲଗେଇଲା ପୁଣି କୋଇଲା ଭୂଷାଳି ସାଥିରେ କହିବା ପାଇଁ ତାର ଜୀବନ ବୃତ୍ତାନ୍ତ, କହିବା ପାଇଁ ଯାହା ସବୁ ଦେଖିଥାଏ, ଅନୁଭବ କରିଥାଏ ସେ ।

"କେଡ଼େ ଅଡୁଆ ଚଢ଼େଇଟାରେ ଭୁ !" କହିବାକୁ ଆରମ୍ଭ କଲା ସେ, "କଣ କହିବ ଯେ ? କଣ ବା ନ ଦେଖିଚ ମୁ ? ଦେଖିଚ ସବୁ ଦେଖିଚ, ମଠ ? ହଁ, ମଠ ଦେଖିଚ, ମନ୍ଦଲଟି ? ହଁ, ମନ୍ଦଲଟି ବି ! ଦେଖିଚ ଭଦ୍ରଲୋକଗୁଡ଼ାଙ୍କର ଜୀବନ, ଆଉ ଗୃହୀବାପୁଡ଼ା ମୁଂଢ଼ିଙ୍କଙ୍କର ବି ! ପାଇଚ ପ୍ରଚୁର ପାଇଚ ମୁଁ—କିନ୍ତୁ ନା ପାଇକି, କିଛୁ ପାଇକି, 'କିଛୁ ରଖିନି ମୁଁ ।"

ନାହିଁ ରସାତଳରେ ଗହ୍ୱରଆ ଖାହାଡ଼ିଆ ନଈ—ଉପରେ ଟଳଟଳ ଦୋହଲୁଥିବା କାଠଘୋଳକୁ ଧୀରେ ଧୀରେ ପାର ହେଲାଭଳି ମନେ ପକେଇ ଲାଗିଲା ସେ ଅତୀତଟାକୁ—ଅତୀତକୁ ମୁହାଁଇ—

"ଏଇ ଧର, କଥାକୁ କହୁଚ—ଏଇ ଏଠି ହାଜତରେ ବସିଚ ମୁଁ ଘୋଡ଼ା ଚୁରିର ପାଇଁ," ଏଥର ସେ ଇବେଶଆ ଏଣେଟି କହନ୍ତି, ଭାବୁଚ ମୁଁ ମନକୁ ମନ, ଆଉ ସେଠି ପୋଲିସ୍ ଅଫିସର ଥାନାବାବୁ ତାଙ୍କ ନୂଆ ଘରେ ଧୂଆଁ ବାହାରୁଥିବାରୁ ଚୁଲିକୁ ଗାଳିଗୁଲଜ ଦେଇ ଅଭିଶାପ ଦେଉଥାନ୍ତି, ତେଣୁ ମୁଁ ତାଙ୍କୁ କଣ କହୁଚ ଜାଣ? ଆଜ୍ଞା ମାନ୍ୟବର ମହାଶୟ, ମୁଁ ତାଙ୍କୁ ଠିକ୍ କରିଦେଇ ପାରିବି, ଦାନ୍ତନଖ ଦେଖାଇ ମୋ ଉପରକୁ ଝାମ୍ପି ପଡ଼ନ୍ତି ସେ—"ତୁମ କଟ ବେ! ସହରଟାରେ ସବୁଠୁ ବଡ଼ ଓସ୍ତାଦ ଚୁଲି·ଓାଲା ଚୁଲିଗଢ଼ାଳି ଯିଏ ସିଏତ ପାରିଲା ନାହିଁ, ଅଉ ତୁ?" କହନ୍ତି ମୁଁ ପୁଣି କହୁଚ, "ଆଜ୍ଞା ବେଳେବେଳେ ସାଆନ୍ତଠୁ ବଳି ଗୋଟାଏ ଗୋଟାଏ ବୋକା ବି ବୁଲନ୍ତି ଚତୁର ଚଟପଟିଆ କାମିକା ହୁଅନ୍ତି।" ସମୁଦାୟ ସାଇବେଶଅଟା ମୋ ମୁହଁକୁ ଅନେଇଥାଏ ସେହୁ ଯେମିତ ମୋତେ ଏଡ଼େ କରି ଦେଇଥାଏ! "ବେଶ୍ ତେବେ, ଦେଖ ଚେଷ୍ଟା କରି ଦେଖ।" କହୁଚ ସେ। "କିନ୍ତୁ ସେଥିରୁ ଯଦି ଅଧିକ ବେଶି ଆଖିକାନକୁଛିଆ ଧୂଆଁ ବାହାରେ ତେଣି ତମେ ବୁଝିବାକି ଦଳିତଳିଟି ଖଲ କରିଦେବ ଏକାବେଳକେ।" ଦି'ଟା ଦିନରେ, ବୁଝିଲୁ, ଚୁଲି ମରାମତି ସରିଗଲା। ଏ ଘଟଣାଟାକୁ ସହେଇ ପାରିଲା ନାହିଁ ମନକୁ ସେଇ, ସେଇ ଥାନା ପୁଲିଶବାବୁଟା—ପୁଣି ଆସି ପଡ଼ିଲା ମୋ ଉପରେ ଦାନ୍ତନଖ ଦେଖାଇ ମୁକ୍କଟରେ, "ଗଧଟାଏ, ଘୁଷୁରିଟାଏ, ଗୋବରଗଣ୍ଡି ମଥାରେ, ବୋକା ବଦମାସ୍ଟା। ଏମିତି ହାତ ତୋର ଏମିତି ଓସ୍ତାଦଟାଏ ତୁ ଆଉ ବୁଲୁଚୁ କଣେ। ଘୋଡ଼ା ଚୋରି କଣ କରି। କଣ ତୋର କଥା କଣ? କାହିଁକି କଣ ଏହାର ଏଁ!"

"ଆଉ କଣ ଆଜ୍ଞା, ମୋର ବୋକାମିର ଠିକ୍ ବୋକାମିର କାରବାର ଆଜ୍ଞା, 'ଠିକ୍' କହିଲ ସେ— "ଠିକ୍ ବୋକାମି, ବୋକାମି ଖାଲି କ ଦୁଃଖର କଥା, ଦୟା ଅଛିଚ ତୋ ପ୍ରତି, କହିଲ ସେ—। ଶୁଣୁଚୁ ତ? ଥାନା ପୋଲିସ ବାବୁ କହୁଚ ଏମିତ—କହିଲ ଏମିତ। ତାର ଯୋଉ ବୁଦ୍ଧି ସେଉ ଚେଷ୍ଟା ସେଥିରେ କର୍ମଳଆ ହେବା, ଦୟା ଦେଖାଇବାର ଅଧିକାର ତାର କାହିଁ? ତା କଣ ପେ ଷାଏ ତାକୁ? କିନ୍ତୁ ମୋ ପ୍ରତି ଦୟାରେ ଫାଟି ପଡ଼ିଲା ସେ।"

ହୁଁ ଏ ତ, ତା' ପରେ ହେଲା କଣ ପଚାରିଲି ମୁଁ।

"ହେବ ଆଉ କଣ? କିଛି ନାହିଁ, ଖାଲି କୃପା ଦେଖାଇଲା ସେ ମୋତେ। ଅଉ କଣ ହୋଇଥାନ୍ତା, ଭାବୁଚୁ ତୁ!"

"ସେ ତମକୁ ଏଥିପାଇଁ କୃପା ଦେଖାଇଲା କାହିଁକି ଯେ, ତମେ ତ ପଥର ଭଳିଆ ଶକ୍ତ ଟାଏ।"

ହସିଲା ସେ, ହସି ପକାଇଲା ସ୍ୱ କୋଉ– ସରଳ ସୁବିଚିତ୍ରଆ ଢଙ୍ଗରେ।

"କି ଅପୂର୍ବ ଚଡ଼େଇଟା ରେ ତୁ।" ପଥର, ହେଁ କଣ କହିଲୁ ପଥର ମୂଣ୍ଡାଏ ମୁଁ--- ପଥର ମୁଣ୍ଡକୁ ବି ମାନଥାନ ଦେଖାଇବା କଥା! ପଥର ତ ପୁଣି ତା

ନିଜ କାମ କରେ—ତା'ର ନିଜର ଗୁଣ ଅଛି ସଡ଼କ ଉଆଁଶରେ ସେମାନେ କ'ଣ କାମରେ ଲାଗନ୍ତି ? ପଥରକୁ, ପ୍ରତ୍ୟେକ ଜିନିଷକୁ ମାନଆନ ଦେଖାଇବା ଉଚିତ, ପ୍ରତ୍ୟେକର ଗୁଣ ଜାଣିବା ବା ବୁଝିଲୁ ପ୍ରତ୍ୟେକ ଜିନିଷ ଦରକାରୀ—ବ୍ୟବହାରରେ ଲାଗେ—ଏଇ ଧର ବାଲି, ବାଲି ବା କଣ ? ସେଥିରେ ପୁଣି ଜନ୍ମେ ଆଉ ବଡ଼େ ଘାସ ।"

କୋଇଲି ଭୁଲାଲି ଏହିଭଳି ସବୁକଥା କହୁଥିଲା ବେଳେ ମୋ ମନରେ ସ୍ପଷ୍ଟ ଧାରଣା ହୋଇଯାଉଥାଏ—ମୋର ବୁଝିବା ଜାଣିବା କ୍ଷମତାରୁ କେତେ ଦୂରରେ ଥାଏ ତାର ଜ୍ଞାନର ଭଣ୍ଡାର !

"ଗାନ୍ଧୁଣିଆ ସମ୍ପର୍କରେ ତୁମର ମତାମତ କଣ ?" ଧାରଣା କଣ ପଚାରି ଦେଇଥିଲି ଥରେ ।

"କଏ ଖେଳିଥିଲୁ 'ଚେନ୍ତି' ଖେଳ ?" ଉଦାସୀନ ସ୍ୱରରେ ଓଲଟି ମୋତେ ପଚାରିଲା ସ୍ମାକୋଭ. "ତା ବିଷୟରେ ମତାମତ କଣ ? କଣ ସ୍ୱତନ୍ତ୍ର ବା ତା ସମ୍ପର୍କରେ । କିଛି ନାହିଁ ସ୍ୱଚ୍ଛବା ପାଇଁ—ଧାରଣା କରିବା ପାଇଁ ।"

ସତ, କରୁଣ ସତ, ଆଇଭାନ ଆଇଭାନୋଭିଚ ଏକେ ଚକ୍ଷ ଏକେ ସଠିକ୍ ଥିଲା. ତାହାଠି କିଛି ଏମିତ ନ ଥିଲା ଯେଉଁଥିରେ ଝଗଡ଼ା ହୋଇଥାନ୍ତା ବା ଟୁଲେଇ ହୋଇଥାନ୍ତା ସ୍ୱବନାଗୁଡ଼ାକୁ—ଗୋଟିଏ କଥା କେବଳ ତାହାଠି ଦେଖିଥିଲି ଯାହା କୌତୂହଳିଆ ଲାଗିଲା ମୋତେ, ଯେଉଁଟି କୋଇଲି ଭୁଲାଲିକୁ ଅଟେ ଭଲ ପାଉ ନ ଥିଲା ସେ. ଦେଖିଲେ ନାକ ଟେକୁଥିଲା ତାକୁ—ସବୁବେଳେ ପାଟି କରୁଥିଲା ତା' ଉପରେ, କିନ୍ତୁ ସବୁବେଳେ ତାକୁଇ କୋଇଲି ଭୁଲାଲିକୁହିଁ ଯାଚୁଥିଲା ଖାଇବା, ଡାକୁଥିଲା ଖାଇବା ପିଇବାକୁ ତା ସାଥିରେ ।

ଥରେ ସେ କହିଲା ସ୍ମାକୋଭକୁ, ଏବେ ଯଦି ଆମେ କୋଠିଆ ବେଠିଆ କଣାଦାସ ଫାସ ରଖି ପାରୁଥାନ୍ତେ ଆଉ, ମୁଁ ତୋର ସାଆନ୍ତ ହୋଇଥାନ୍ତି— ସପ୍ତାହକ ସାତଦିନ ଗ୍ରୁଲ ଉଷ୍ମରୁ ଆଆନ୍ତା ତୋ ପିଠିରୁ—ସେ ଗ୍ରୁଲକୁ ସଲଖାଉଥାନ୍ତି, ବୁଝିଲୁ ବାରବୁଲା ମଗନ୍ଦାଟା !"

"ସପ୍ତାହକୁ ସାତଦିନ ଟିକିଏ ବେଶି ହୋଇଥାନ୍ତା," ଚୀତ୍କାର ସ୍ୱରରେ ଟିପ୍ପଣୀ ଦେଲା ସ୍ମାକୋଭ !

ସବୁବେଳେ ଗାଳିବୃଷ୍ଟି କରୁଥାଏ ତା ଉପରେ, ତାକୁ ପୁଣି ଦେଇ କାରଣରୁ କେଜାଣି ଖାଇବାକୁ ପିଇବାକୁ ଦେଉଥାଏ ପ୍ରଚୁର ଯନ୍ତ୍ରଣାଟା ! ତା ହାତକୁ ଖାଇବା ଚିଜ କିଛି ବଢ଼ାଇ ଦେଉଥାଏ ଆଉ କହୁଥାଏ—

"ଖାଇ ନେ ରେ ନେ, ଗଳାଟା, ଭୁନାଆ ଗିଳାଟା"—

"ତୋ ପାଇଁ ଧନ୍ୟବାଦ ଆଇଭାନ୍ ଆଇଭାନୋଭିଚ—ବେଶ୍ ବହେ ବଳ ଜମା କରିପାରୁଚି ଦେହରେ ମୋର ।" ଖାଇବା ଜିନିଷଟିକ ଧୀରେ ଧୀରେ ଚୋବାଉ ଚୋବାଉ ସ୍ମାକୋଭ ସବୁବେଳେ ଉତ୍ତର ଦେଉଥାଏ ଏମିତି ।

"କଣ ହେବ ରେ ତୋର ଏତେଗୁଡ଼ାଏ ବଳ ? କଣ ତୋର ଦରକାର ରେ ଅଳପୁଅ ବୁଦ୍ଧି ଅଳପୁଅଟା !"

"କଣ କହିଲୁ, କଣ ଭାବୁଚୁ ତୁ ଆରେ ? ବହୁତ ଦିନ ବଂଚିବାର ଅଛି ମୋର, ଏବେ ବି ।"

"କାହିଁକି, କାହିଁକି ବଂଚିବୁରେ ତୁ, କାହିଁକି ବଂଚିବାକୁ ଚାହୁଁଚୁ, ମର ସଇତାନ୍ ବଦମାସଟା ।"

ଆରେ ସଇତାନ ତ ଚାହେଁ ବଂଚିବାକୁ, ହୁଏତ ବଂଚିବାର ସୁଖ କୌତୁକ ତୋତେ କିଛି ଜଣା ନାହିଁ ନୁହେଁ, ତୁ କିଛି ପାଉନୁ, ଜୀବନଟା ବଡ଼ ମଜ୍ଜିଆ କୌତୁକିଆ ରେ ଆଇଜନ !

"ଜଧୁମ ବୋକାଟାଏ ତୁ !"

"ଉ ହୁଁ ଅବୋକା !"

"ନା, ନା—ବେ-ଓ-କା-ଆ"

"କୋଉଠୁ ପାଇଲୁ ଏମିତି ଶବଦ ଚୋଟାଏ ?" ଆଶ୍ଚର୍ଯ୍ୟ ହୋଇ ପଚାରିଲି ସ୍ୱାକୋଭ ।

'ଦେଖିରେ ଅନେକ ଖେଳ ଖେଳିଲୁ, ଟେଙ୍ଗ ଭୁଲୁ'', କହି ଦେଲି ମୋ ଆଗରେ— "ତୁ ଆଉ ମୁଁ, ଝିଲିକ ଲ ହେଉଚୁ, ପିଟୁଚୁ ଏଇ ନରକ ନାଆଁ ଚୁଲ୍ଲୀରେ ଷ୍ଟୋଭରେ ଆଉ ବଟିଚ ସେ ସେଠି— ଘୁମୁରି ଜଳ ଖାଉଚ ଖାଲି— ମିଳୁଚ ।"

"ଯହା କପାଳରେ ଯହା ଅଛି," ନିକଏ ହେଲେ ବିଚଳିତ ନ ହୋଇ କହିଲା କୋଇଲାଭସ୍ମଜାଳ !

ଜାଣିଥିଲି ଷ୍ଟୋଭ ଉପରେ ଛୁନାହୋଇ ରହିବାଠୁଁ ନେଣି କଷ୍ଟକର ଥିଲା ଚୁଲ୍ଲୀ ଜାଳିବା, ଦହମୁଣ୍ଡ ତାତି ଜଳ ଯାଉଥିଲା ଯେମିତି ସେଥିରେ—ଅରେ ଦ'ଅର ସ୍ୱାକୋଭ ପାଖରେ ନ୍ହେ କାମ କରିବାକୁ ଚେଷ୍ଟା କରିଥାଏ—ବୁଝିପାରି ନ ଥାଏ ସେ କାହିଁକି କେବେହେଲେ କୋର ସହିତ କଥା ନ ଥାଏ ତା କାମଟା ଏତେ କଠିନ ଏତେ କଷ୍ଟସାଧ୍ୟ ବେ । ତାର ଦୃଷ୍ଟିଭଙ୍ଗୀ ତାର ମତାମତ ମୋ ମନରେ ଗୋଟାଏ ବିସ୍ମୟ ଆଣି ଦେଉଥାଏ , ତାର ବିଶେଷ ଜ୍ଞାନ ଥାଏ ସେଥି ସମ୍ପର୍କରେ— ଖୁବ ପାରଙ୍ଗମ ଥାଏ ସେ ।

କଏ ଯେ ତା' ବିରୁଦ୍ଧରେ ଅଭିଯୋଗ କରୁ ନ ଥାଏ ଏମିତି ନୁହେଁ, କି କପ୍ତାନ, କଲମିସ୍ତ୍ରୀ କି ମାଝି ଯିଏ ହେଉ ଯାହାର ଟିକଏ ହେଲେ ସମ୍ବନ୍ଧ ଥାଏ ତା' ସାଥିରେ, କାମରେ ସବୁବେଳେ ଅଭିଯୋଗ କରୁଥାଏ ସେ ! ଆଶ୍ଚର୍ଯ୍ୟ ଲାଗୁଥାଏ ଏତେ କଥା କହୁଥାନ୍ତି ସମସ୍ତେ ତା ବିରୁଦ୍ଧରେ, କାହିଁକି ଯେ ତାଙ୍କୁ ତଡ଼ିଦେଉ ନ ଥାନ୍ତି କେଜାଣି, ଆଉ ଯେତେ ଚେଷ୍ଟାକର କୋଇଲାଭସ୍ମଜାଳର କଳୁ

ତା' ପ୍ରତି କେମିତି ଗୋଟିଏ ଉଦାର ମନୋଭାବ ଥାଏ, ଯଦିଓ ସେମାନେ ତାଙ୍କୁ ଅଶ୍ରଦ୍ଧା କରୁଥାନ୍ତି ତାର ବକରବକର, ତାର ତାସ ଖେଳ ଲାଗି ।

ଥରେ ମୁଁ ପଚାରିଲି ସେମାନଙ୍କୁ—

“ସ୍ୱାମୀ କେମିତି ? ଭଲ ମଣିଷଟିଏ ତ ?”

“ସ୍ୱାମୀ ? କାହିଁକି ବଡ଼ିଆ ତ ତାର ମାନଅପମାନ ନାହିଁ…… କୋଉଥିରେ ସ୍ୱତନ୍ତ୍ରତା ନାହିଁ, ଯାହା ଇଚ୍ଛା ତାହା, ଯେମିତି ଇଚ୍ଛା ତାହା ବ୍ୟବହାର କରିପାରି ତା ସାଥିରେ—ଏମିତିକ ତା ଲୋକମୁଣ୍ଡରେ କଳଙ୍କ କୋଇଲି ନେଇ ଥୋଇପାରେ !”

ଏତେ ହାଡ଼ଭଙ୍ଗା ଖଟଣି କଠିନ ଝଟଣି—ଫଣ୍ଡ୍ରେସ ଚୁଲି ପାଖରେ ଏମିତି ପ୍ରବଳ କ୍ଷୁଧା ତାର ହାଁ ହାଁ କହୁଲେ ଚଳେ, ତଥାପି ସେ ଶୋଉଥାଏ କହାତ ଅଳ୍ପ ସମୟ । ତା ପାଇଁ ସବୁଗଲା ପରେ ଦେଖା ଦେଉଥାଏ ଆଖି ତେଜ ଉପରେ ଅସନା ମସନା କୋଇଲା ଗୁଣ୍ଡରେ କଟି କଟି ଝାଳ ଗମ୍‌ଗମ ଦେହରେ ଦେଖା ଦେଉଥାଏ । ଅନେକ ସମୟରେ କାମ ପୋଷାକପତ୍ର ନ ବଦଳେଇ ଥାଉ କରୁଥାଏ ହସ ଖୁସିରେ—ସମ୍ପ୍ରଦାୟ ଘଣ୍ଟା ବଜାଇ ଦେଉଥାଏ ସାଥେଷ୍ଟରଙ୍କ ସାଙ୍ଗରେ ଗପସପ କରି ବା ତାସ ଖେଳି ।

ମୋ ପାଇଁ ଗୋଟାଏ ନବୁଜ ସିନ୍ଦୁକ ଥାଏ ରେ ଯେଉଁଥିରେ ବା ରଖୁଥାଏ ମୁଁ କିଛି ଖୁବ ଦରକାରୀ ଯାହା ନ ହେଲେ ନ ହୁଏ, ଏମିତି କିଛି—ରହୁଥାଏ ଗୁପ୍ତରେ, ଆଉ ମୁଁ କୋଦକୋଣରେ ଦୃଢ଼ ଭାବରେ ଖୋଜ ହେଉଥାଏ ଚାବିଟା, ଯେଉଁଥିରେ ଫିଟେଇ ହେବ ସେଇଟି ।

“ଇରେ ଭାଇ, ତୁମେ ପାରୁନ କାହିଁକି ଲାଗିବ ମୋ ସାଙ୍ଗରେ, କ ସଇତାନ ପଣ ଜାଣି ନାକୁ ଗୁହୁଁଚ ଜେଜାଣି,” କହିଲ ଭୁରୁଟେକେ କୋଉ ଗଭୀରରେ ଲୁଚିଥିବା ଆଖି ଦୁଇଟାରେ ଟିକନିଖି କରି ପଢ଼ି ପଢ଼ି ମୋତେ କହିଲ, ସେ ଦୁନିଆ ବିଷୟରେ ଜାଣିବା ଇଚ୍ଛା ନାହିଁ ? ସତ ମୁଁ ଦୁନିଆଟା ଯକ ବୁଲିଚ ! କଲ୍ଲ କଣ ତା'ମାନେ ଗୋଟାଏ ଅପୂର୍ବ ଶଜ୍ଞ୍ଚା ଗୁଳି । ଶୁଣ, ଦିନେ କଣ ଘଟିଥିଲା ମୋ ଭାଗ୍ୟରେ କଣ କରିଭେଇଥିଲି ମୁଁ….”

ଆଉ ସେ କହି ବସିଲ ମୋତେ ଏଇ କାହାଣୀଟି । ଅନେକ ଦିନ ହେଲାଣି ଗୋଟାଏ ପ୍ରାଦେଶିକ ସହରରେ ଥାଏ ଯନ୍ତ୍ରାଳିଆ ଯୁବକ ବାବୁରଙ୍ଗଟିଏ ଆଉ ତାର ସ୍ୱାସ୍ଥ୍ୟବତୀ ବାଂହ ଭାର୍ଯ୍ୟା, ଜର୍ମାନ ଜାତିର । ଦିନେ ଗୋଟିଏ ବଣିକର ପ୍ରେମରେ ପଡ଼ିଲ ସେ—ସେଇ ଭାର୍ଯ୍ୟା ଦେଖିବାକୁ ସୁନ୍ଦରୀ ଯାହାକୁ କହନ୍ତି, ଘନଟି ଛୁଆର ମାଆ ହେଲେ କଣ ହେଲ ବଣିକଟା ଯେତେବେଳେ ଜାଣିପାରିଲା, ସେଇ ଜର୍ମାନ ମାଇପିଟି ତା' ପ୍ରେମରେ ପଡ଼ିଛ ମନେମନେ ପାଇଥିଲ, ତା' ସାଥିରେ ଆଉ ଟିକିଏ କୌତୁକ କରିବ, ଖେଳିବ ! ଥରେ—ସେ ତାଙ୍କୁ କଣ୍ଢେଇ ଖବରଦେଲ

ଭେଟ ହେବ ବଗିଚ୍ଚରେ ଗୋଟିଏ, ଝୁଲକଳର ବୁଦୁବୁଦୁକଥା ଶୁଣୁଛନ୍ତି ଗହଳରେ ଲୁଚେଇ ରଖିଲି ନିଜର ଯେଉଁଏ ସାଂଗଙ୍କୁ ।

ଏବେ ଦେଖ ମଜା ! ଜର୍ମନ ମାଇପିଟି ଆସିଲା ବୋବେଇଲାବେଳେ ଗରମ ହୋଇ ଅସମ୍ଭାଳ ଫଡ଼ଫଡ଼, ତାଙ୍କୁ ଦେଖି ବଣିକଟାକୁ ଜଣେଇ ଦେଇ ଦେଇ, ଖାଲି ଟିକିଏ ଠାରିଦେଲେ ପଦେ କହିଲେ, ସେ ଲେଞ୍ଜିଯିବ ତା' ଘରରେ କାଲୁ ବଣିକଟା କହିଲା, ଘରସଂସାର କରୁଚ, ମୁଁ ବାହା ହୋଇଛୁ, ମୁଁତ ତମଙ୍କୁ ଆଦର ପାଇବ ନାହିଁ ମହାଶୟା, କାଲୁ ତମ ପାଇଁ ଦେଖା ଦେଖା ଯେଉଁଏ ଭେଣ୍ଡିଆ ସାଂଗ ଆଣିଚ ମୋର— ଜଣେ ବାଡ଼ୁଅ ବାହା ହୋଇନ ଅଛି ଜଣକର ଭାଉଁଯା ନାହିଁ ଏବକ୍ର !' ଏତକରେ ମାଇକିନିଆଟା ପାଟିକରି ଉଠିଲା, ଆଉ ଏମିତି ଗୋଟିଏ ମୁଥ ମାଇଲା ବଣିକଟାକୁ ଯେ ବେଖ ଉପରେ ମାଙ୍କଡ଼ଟେଡ ମାରିଲାପରି ଗଡ଼ପଡ଼ିଲା ସେ—ଆଉ ସଂଗେ ସଂଗେ ସେ ମାଇପିଟି ତା' ଦେହରେ କଷି ଦେଇଗଲା ଗୋଟେ ଠୋଗୁଡ଼ାଏ, ମୁଁବି ତ ଆଣିଥାଏ ସେ ମାଇପିଟାକୁ ବଗିଚ୍ଚା ଭିତରକୁ ନାହିଁକି ନା ମୁଁ ଥାଏ ବବୁରପଟର ହାତପାଆନ୍ତ ବନ୍ଧୁ ଲୋକ । ଦାଣ୍ଡଣା ଭିତରୁ ମୁଁ ଅନାଉଥାଏ, ଦେଖୁଥିଲି ସବୁ ଏ ନାଟ, ଏ ଗଣ୍ଡଗୋଳିଆ କାରବାର. ଶୁଣୁଥିଲି ଏ ପାଟିତୁଣ୍ଡ ସବୁ । ଦେଖିଲି ବଣିକର ସାଂଗ ଦଟା ବୁଦାମୂଳରୁ ଧାଁ ମାରି ଧାଇଁଆସି, ପଡ଼ିଲେ ମାଇପଟା ପାଖକୁ, ବନ୍ଧୁଡ଼ି ଯାଇ ତା' ବାଳ ଝିଙ୍କି ଓଲଟେଇ ପକେଇଲେ, ତାକୁ ଘୋଷାରିଛନ୍ତି କି ନାହିଁ ବାଡ ଡେଇଁ ମୁହାଁମୁହିଁ ଦୌଡ଼ିଗଲି ଅଟକେଇ ଦଟେଇଦେଲି ସେମାନଙ୍କୁ, କହିଲି 'ଇଏ କଣ ହୋ' ! ଇଏ କଣ ଅଟଳ କାମ କରିବାର ଠିକ୍ ବାଟ ? 'ଭଦ୍ରଘରର ମାଇପିଟି ଆସିଲେ' ସ୍ୱୋପନର ବଣିକ ପାଖକୁ ଚଣିକ କଥାରେ, ଆଉ ସେ କଣନା ଓଲଟି ଅପମାନ ଦେଉଛନ୍ତି ତାଙ୍କୁ ।" ମୁଁ ଭଦ୍ର ମାଇପିଟିଙ୍କୁ ଉଦ୍ଧାର କରି ଯେମିତ ଆସିଚି କି ନାହିଁ ସେମାନେ ଦଟା ପଥର ଫିଙ୍ଗିଲେ ମୋ ଉପରକୁ—ଗୋଟାଏ ସେଥିରୁ ବାଜିଲା ଆସି ମୋ ମୁଣ୍ଡରେ । ଯେତେବେଳେ ଚେଇଁଲି—ଖରା ଟେରପ ଲାଗୁଥାଏ, ବବୁରପଟ ସ୍ୱାମୀକୁ ଦେଖି ବୁଝିଲି, ଖାଲି ଘରକୁ ଫେରି ଅଗଣାଯାଏ ଏମୁଣ୍ଡ ସେମୁଣ୍ଡ ବୁଲି ଲାଗିଲି, କଣ କରିବ ନିଜକୁ ନେଇ ନିଜ ସଂପର୍କରେ କି ବାଟ ଧରିବ ଜାଣି ନ ପାରି କହିଲି ମୋତେ, "ନା ଯାଉଚ ଚାଲିଯିବ, ମୁଁ ଫେରିଯିବ ମୋର ଜର୍ମାନ ଲୋକଙ୍କ ପାଖକୁ, ବୁଝିଲୁ ସ୍ୱାମୀ ଅଉ ରହିବ ନାହିଁ ଏଠି । ଆଉ ନେଡ଼ିଚଦନ ବ ! ମୋ ଶିଉସ୍ତଟା ସେ ମରିଯିବା ମାତେ ପକେଇବ ମୁଁ, ଚାଲିଯିବ ।" "ଠିକ୍ କଥା ! କହିଲି ମୁଁ ଉତ୍ତରରେ । ତମର ଚାଲିଯିବା ଉଚିତ ନିଶ୍ଚୟ ଉଚିତ !" ବୁଝିଲୁ, ବବୁରପଟ ମଲା, ସେ ମାଇକିନିଆ ବି ଚାଲିଗଲା, ଚାଲିଗଲା ! ବେଶ ପୁରୁମାଖିଆଟିଏ ଥିଲା, ଜାଣିବାର ଶୁଣିବାର, ବୁଦ୍ଧିମନ୍ତ ! ଆଉ ବବୁରପଟଟି ଥିଲା ଭଦ୍ର, ଖୁବ ଭଦ୍ର, ସ୍ୱର୍ଗରେ ଶାନ୍ତିରେ ଥାଉ ତା ଆତ୍ମା !'

କଦ୍ଧ ଣୀଟାର ତାତ୍ପର୍ଯ୍ୟ କଣ ଧରି ନ ପାରି ପାଟି ଖୋଲିଲି ନାହିଁ, କିଛି କହିଲି ନାହିଁ ମୁଁ । ଠିକ୍‌ରେଇଲି କିଛି କଟ ଯେମିତି ନାତିଦିନିଆ ଜଣାଶୁଣା ଜଞ୍ଜାଳତା, ନର୍ମମତା ଥିଲା ସେଥିରେ ଥିଲା ପୁଣି ହୃଦୟସ୍ପର୍ଶକତା, ଚିନ୍ତାଶୂନ୍ୟତା । କିନ୍ତୁ କଣ ବା କହିଥାନ୍ତି, କଟ ବା ଥିଲା କହିବାକୁ ?

"କେମିତି, ମନକୁ ପାଇଲା ଗପଟା ?" ପଚାରିଲେ ସ୍ୱାମୀଜୋଭ ।

ନିଃଶ୍ୱାସ ରୁନ୍ଧି ଚୁପ୍ଚାପ୍ କଣ କିଛି କହିଲି ମୁଁ—ସେ କିନ୍ତୁ ଧୀରଶାନ୍ତ ସ୍ୱରରେ ବୁଝାଇ ଲାଗିଲେ :

"ସେଇ, ସେମାନଙ୍କ କିସମର ଲୋକଗୁଡ଼ାକ ଖାଇପିଇ ଅଏସରେ ଥାନ୍ତି ଓ ବେଳେବେଳେ ତାଙ୍କର ସବୁ ଲୋଡ଼ା ହୁଏ ଟିକିଏ ଟିକିଏ ଖେଳ କୌତୁକ ଲାଗି କିନ୍ତୁ ସବୁବେଳେ ତ ଆଉ ଫଳିଯାଏ ନାହିଁ, ସେମାନେ ବି ଜାଣନ୍ତି ନାହିଁ ଫଳେ ନାହିଁ, ଯେମିତି ରହିବାନ୍ତି ହୁଏ, ହେବ କେମିତି ଫଳିବ କେମିତି ବାଟରେ— ଏଇଟା ବି ଅତି ସାଧାରଣିଆ ସ୍ୱାଭାବିକ କଥା—ସେମାନେ ସବୁ ଓଜନଦାର ଦେହର ଶ୍ରେଣୀଆ କାରବାରୀ ଲୋକ କି ନା ! କରେ କାରବାର କରିବା ପାଇଁ ତ ମଥା ଖଟେ, ବୁଦ୍ଧି ଖେଳେ ସବୁବେଳେ । ଖାଲି 'ମଥା' ଖଟେଇ କ'ଣ କିଏ ବଂଚେ, ଝରକୁଆ ହୋଇଯାଏ—ଏଟା ଲାଗେ ସବୁ କଥା । ଲେଖି ଥରେ ଅଧେ ଖେଳିବା ପାଇଁ କୌତୁକ କରିବା ପାଇଁ ମନ ହୁଏ ସେମାନଙ୍କର ।"

ଜାହାଜର ଆଗମଙ୍କୁ ଫେଣର କୁହୁଡ଼ି ପଟଳ ଭିତରେ ଚଳିହୋଇ ହୋଇ ଭଉଁରି ଖେଳି ଖେଳି ନଇଟା ଘୁରୁ ଘୁରୁ ଯାଉଥାଏ—ଘୁରୁଣିରେ ଲାଗିଥାଏ ପଛକୁ ପଛକୁ । ଶୁଣିପାରୁଥାଉ ପାଣିର ସରସର କଳକଳ ଶବ୍ଦ । ଦେଖି ପାରୁଥାଉ କଳକଳା ନଇତଟ ପଛକୁ ଘୁରୁ ଘୁରୁ ଯାଉଚି ଧୀରେ ଧୀରେ ପତଳୀ ଢେଙ୍ଗୀ ମାଇପିଟିଏ, ଗୋଟିକିଯାକ ଦେହ ତାର କଳାରଙ୍ଗର ପୋଷାକ ଭିତରେ—ଖୋଲା କେବଳ ଧୂସର କେଶଗୁଚ୍ଛଭରା ମୁଣ୍ଡଟି—ଅଙ୍କେଇ ବଙ୍କେଇ ସାପ ଭଳି ଆସିଲା ସେ—ବୁଲିଲା ବେଞ୍ଚଗୁଡ଼ାକର ମଝିରେ, ଶୋଇଲା ଲୋକଗୁଡ଼ାକର ଭିତରେ । କୋଇଲା ଭୁଂଜାଲି ଟିକିଏ ଠେଲିଦେଇ କୋଂଚ ଦେଲା ମୋତେ, କହିଲା ଧରକନ—;

"ଦେଖ୍ ଦେଖ୍ କେମିତି ମରୁଆଳି ହୋଇ ଅଣ୍ଡାଳି ହେଉଚରେ ।"

ଲାଗିଲା ମୋତେ, ଅନ୍ୟର ହୃଦୟରେ ଦୁଃଖ, ଅନ୍ୟର ମନରେ ବେଦନା, ସେଥିରେ ଯେମିତି ଖୁସି ହେଉଥାଏ ସେ—ଆନନ୍ଦ ପାଉଥାଏ ସେ ।

କେତେ ଗପ, କେତେ କାହାଣୀ ମୁଁ ଶୁଣୁଥାଏ ମୋତେ ସବୁବେଳେ— ଆଉ ମନକଣ୍ଠ ଦେଇ ଶୁଣୁଥାଏ ମୁଁ ସେଗୁଡ଼ିକ । ତାର ଗୋଟାଏ ହେଲେ ଗପ ପାସୋର ଯାଇନି ମନରୁ ମୋର । କିନ୍ତୁ କାହିଁ କେବେ ଧାରଣା ହୋଇନି— ମନେପଡ଼ୁନି ହସଖୁସିଆ ଗପଟିଏ କହିଥିବ ବୋଲି । ବହିଗୁଡ଼ାକଠୁ ବଳି ଅଧିକ

ଅଧିକ ନିର୍ବିକାର ନିର୍ଲିପ୍ତ ଆବେଗଶୂନ୍ୟ ଭାବରେ କହୁଥାଏ ସେ । ବହିଗୁଡ଼ିକରୁ ତ ଅନେକ ସମୟରେ ପାଉଥାଏ, ଜାଣିପାରୁଥାଏ ମୁଁ ଲେଖକର ନିଜର ଭାବ, ଭାବନା ଯାହା—ତା'ର ହର୍ଷ ଆଉ ବିଷାଦ—ତା'ର କ୍ରୋଧ ଆଉ ବିଦ୍ରୂପ ! କ୍ଷୋଭର, କୋଇଲି ଭୁଂଜାଳ କେତେବେଳେ ଅନ୍ଥା ବିଦ୍ରୂପ କରୁ ନ ଥାଏ କମ୍ପା 'ଶସ୍ତ ଦେଇ ବସି ନ ଥାଏ ନିଜର କେଉଁ କଥାରେ । ଆଖିରେ ପଡ଼ିଲା ଭଳି କିଛି କେଉଁଠି ପୂର୍ବସନ୍ତୋଷ ଆଣି ଦେଉ ନ ଥାଏ କି ଅପମାନ କରୁ ନ ଥାଏ ଆଦୌ । ଅଦାଲତରେ ନ୍ୟାୟାଧିକରଣରେ ଅସଂପୃକ୍ତ ନିର୍ଲିପ୍ତ ସାକ୍ଷୀ ଭଳି ବର୍ଣ୍ଣନା କରୁଥାଏ ସେ, ସାକ୍ଷୀ ଲୋକ ଭଳି ଠିକ୍ ଯାହା ପାଖରେ କି ବାଦୀ ଅପରାଧୀ କି ପ୍ରୋସିକ୍ୟୁଟର କି ବ୍ୟାରିଷ୍ଟର ସମସ୍ତେ ସମାନ, ସମସ୍ତେ ଏକାପରି । ତାର ଏଇ ଉଦାସୀନତା ବିରକ୍ତିକର ଲାଗୁଥାଏ, ମର୍ମାନ୍ତିକ ଯନ୍ତ୍ରଣାକାତର କରି ଦେଉଥାଏ ହୃଦୟକୁ ମୋର—ଶେଷରେ ଏହାହିଁ ସୃଷ୍ଟି କରିଦେଲା ବୈରକ୍ତ୍ୟ ।

ବିଦ୍ୟୁତର ପାଖରେ ଫର୍ଣ୍ଣେସରେ ଶିଖା ଭଳି ଜୀବନଟା ନୃତ୍ୟ କରୁଥାଏ ମୋର ତା ଆଗରେ—ନୃତ୍ୟ କରୁଥାଏ, ଯେତେବେଳେ ସେ ଛୁଟା ହୋଇଥାଏ ମୁଗୁରଟିଏ ଧରି ଭାଲୁ ପଂଝାରେ ତାର ଧୀରେ ଧୀରେ ଠୁକୁଠୁକୁ କରି ବାଡ଼େଇ ବାଡ଼େଇ ଲିଭରକୁ—କାନେଣିର ପ୍ରଜ୍ୱଳକୁ କମେଇବାକୁ ବଢ଼େଇବାକୁ ଥାଏ ସେଇ ଲିଭରଟି ।

''କେହି କଣ କେବେ ତମକୁ ଆଘାତ ଦେଇଛି ?"

''ମତେ କିଏ ଆଘାତ କରିବ ? ପାରିବ ତ ? ଯିଏ ଆସୁ ତାକୁ ମାରି ଗଡ଼େଇ ଦେବା ପାଇଁ, ମୁଁ କ'ଣ କମ ବଳୁଆ ନା କଣ ?"

''ନାହିଁ ନାହିଁ, ସେ କଥା କହୁ ନ ଥିଲି । କହୁଥିଲି କେହି ହୁଏତ ଆଘାତ ଦେଇଥିବ ତମ ଭିତରଟାକୁ—ମାନେ ଏଇ ତମର ଆତ୍ମାକୁ ?"

'ଆତ୍ମାକୁ ? ଲୋକର ଆତ୍ମାକୁ କେହି କେବେ ଆଘାତ କରିପାରେ ଭଲା, ଆତ୍ମାର ମାନ ଅପମାନ ନାହିଁ ;'' କହିଲା ସେ, ''ଏମିତିକି ଛୁଇଁ ପାରିବ ନାହିଁ ତମେ ସବୁ କୌଣସି ଜିନିଷ ଯୋଗେ ନୁହେଁ ।''

ଜାହାଜ ଯାତ୍ରୀଯାକ, ମାଝିଗୁଡ଼ିକ ଆଉ ଯେତେ ଯିଏ ଅଧିକାଂଶ ସମୟରେ ଅଧିକ ମାତ୍ରାରେ—ସେତିକି 'ଆତ୍ମା', ବିଷୟରେ କଥାବାର୍ତ୍ତା ହେଉଥାନ୍ତି, ଚର୍ଚ୍ଚା କରୁଥାନ୍ତି—ସେତିକି ଆଲୋଚନା କରୁଥାନ୍ତି ସେମାନଙ୍କର ଜମିବାଡ଼ି, ଜାମଦାମ, ଖଟରୁଟି ଆଉ ସ୍ତ୍ରୀଲୋକଙ୍କ ସଂପର୍କରେ । ସରଳ ଜନସାଧାରଣଙ୍କର ବ୍ୟବହାର ଶବ୍ଦ ପୁଂଜିରେ 'ଆତ୍ମା' ଗୋଟିଏ ଅତି ସାଧାରଣ ଶବ୍ଦ, ତାର ବ୍ୟବହାର, ତାର ଚଳଣି ପାଣିପରିସି ପରି ଗୋଟିଏ । ମନରେ ଦୁଃଖ ହେଉଥାଏ—କ୍ଷୋଭ ହେଉଥାଏ ମୋର— ଅଠାଳିଆ ଅଠାଳିଆ ଗୁଣ୍ଡରେ ଜାବୁଡ଼ି ହୋଇ ଲାଖି ରହୁଥାଏ ଏହି ଶବ୍ଦଟା—। ଲୁଣୀବୁଡ଼ାଟିଏ ଯେତେବେଳେ ଅନ୍ୟା ପରିହାସରେ

ହେଉ କି ପ୍ରକୃତି ଆନ୍ତରିକତାରେ ହେଉ କି ଦର୍ଶ ଭାଷାରେ କିଛି କହିବାକୁ ଯାଇ ଜାତିସଂପି ଗାଳିମନ୍ଦ କରୁଥିଲି ଆମ୍ଭାକୁ—ସତ କହିଲେ, ଗ୍ଳାନି ଭିତରଟା କିଣ ହୋଇଯାଉଥିଲା ମୋର – ସଂସାରଲିଖ ଯେମିତି ପାହାର ଉପରେ ପାହାର ବର୍ଷୁଥିଲା ସେଥିରେ ।

ଭଲରୂପେ ମନେଥାଏ ମୋର, ଆଉ କେମିତି ସବୁବେଳେ ସେ କି ଭକ୍ତିରେ, ସମ୍ଭ୍ରମରେ କହୁଥାଏ ଆମ୍ଭା ବିଷୟରେ । ସେହି ସ୍ନେହ ପ୍ରେମ ଆନନ୍ଦର, କେଜାଣି କି ସୌନ୍ଦର୍ଯ୍ୟର ରହସ୍ୟମୟ ଆମ୍ଭା ବିଷୟରେ ! ଆଉ ଦୃଢ଼ ସ୍ୱରରେ ବିଶ୍ୱାସ କରୁଥାଏ ମୁଁ, ଭଲ ସଚ୍ଚୋଟ ମଣିଷମାନଙ୍କର ମଣ ଯାଉଥାଏ ଯେତେବେଳେ ତାର ଆମ୍ଭାକୁ ଶୁଭ୍ର-ପକ୍ଷ ଦେବଦୂତ ସବୁ, ବହନେଇ ଯାଉଥାନ୍ତି ସୁନୀଳ ସ୍ୱର୍ଗ ଧାମକୁ—ଆଉ ମାର କରୁଣାମୟ ଭଗବାନଙ୍କ ନିକଟକୁ । ସେଇ ଭଗବାନ ଆଗକୁ ଯିବ ତାକୁ ସ୍ମରଣ କରୁଥାନ୍ତି ସୁକୋମଳ ସ୍ପର୍ଶରେ, ସୁଗଭୀର ସ୍ନେହ ଆଉ ଆଦରରେ—

"ଆରେ ମୋର ସ୍ନେହର, ଆଦରର ଧନ—ଆରେ ମୋର ନିର୍ମଳ ପବିତ୍ରମଣି—ଖବରରେ କିଣ କରିଥିଲୁ ଉନଗ୍ରିନକ ସେଠି, ମର୍ତ୍ତ୍ୟରେ—ତାଙ୍କୁ ଦୁଃଖମୟ, କଷ୍ଟଦାୟକ ଥିଲା ସମୟ ସେଠି ?"

ଆଉ ସେ କରୁଣାମୟ ଭଗବାନ, ଆମ୍ଭା ଉପରେ ଢାଳି ଦେଉଥାନ୍ତି ଶ୍ରେଷ୍ଠ ନିସର୍ଗଦୃତ, ନିଜର ପକ୍ଷର ଛଅଟି ପକ୍ଷ ।

ସ୍ୱାକୋଭ ଶୁମୋଭ ଠିକ ସେହିଭଳି, ଆଉ ମା ଭଳି ଭକ୍ତିରେ, ସମ୍ଭ୍ରମରେ, କହୁଥିଲା କେମିତି ସ୍ୱଳ୍ପ ମାତ୍ରାରେ—ବାଧ୍ୟ ହୋଇ ଅନିଚ୍ଛାରେ ପଢେ ଅଧେ ବା ଆମ୍ଭା ଯେନ । କେବେହେଲେ ଗାଳିମନ୍ଦ କରି ଦୋଷ ଦେଉ ନ ଥାଏ ଆମ୍ଭାକୁ, ଅଭିଶାପ ଅଜାଡ଼ୁ ନ ଥାଏ ତା' ଉପରେ । ଏମିତିକି ଯେତେବେଳେ ଖରାପ ଭାଷାରେ ଆଳାପ କରୁଥାଏ, ଗାଳି ଫଜିତ କରୁଥାଏ କାହାକୁ ସେତେବେଳେ ବି ବରଂ କେହି ସେମିତି ଅକଥା କଥା କହି ଆମ୍ଭାକୁ 'ଶୋଧୁଚ' ଶୁଣିପାରିଲେ ଚୁପ ହୋଇ ରହି ଯାଉଥାଏ ଆଉ ତାର ଲାଲ ଫସ୍‌-ବେକଟି ଗର୍ଦ୍ଦି ମୁଣ୍ଡ ନୁଆଁଇ ଦେଉଥାଏ ।

ଯେତେବେଳେ ମୁଁ ପଚାରୁଥାଏ ଆମ୍ଭା କିଣ, ସେ କହୁଥାଏ—

"ଗୋଟାଏ ଭୂତ ପ୍ରେତ ? ଭଗବାନଙ୍କ ନିଃଶ୍ୱାସ !"

ଏଭଳି ଉତ୍ତରରେ ମୁଁ କି ସନ୍ତୁଷ୍ଟ ହୁଏ ; ଖୋଲତାଡ଼ି ଆହୁରି ଅନେକ ପ୍ରଶ୍ନ କରୁଥାଏ ଯେତେ ବେଳେ ଆଖି ନୁଆଁଇ ଦେଇ ତଳକୁ, କହୁଥାଏ ସେ—

"ଆରେ ଭାଇ, ଏମିତିକି ପାଦ୍ରି ପୁରୋହିତମାନେ ବିଶେଷ କିଛି ଜାଣନ୍ତି ନାହିଁ ଆମ୍ଭା ସଂପର୍କରେ । ସେଇଟି ଗୁପ୍ତ, ଗୂଢ଼ କିଛି ।"

ଅନବରତ ସେ ଥାଏ ମୋ ଧ୍ୟାନରେ, ମୋ ଚିନ୍ତାରେ—ତାର କଥା ଭାବୁଥାଏ ମୁଁ । ତାକୁ ସମଜିବା ଲାଗି ସବୁ ପ୍ରଯତ୍ନ ମୋର ଠୁଳ କରିଥାଏ ଯେମିତି

ଭାବଠି । କିନ୍ତୁ କଣ ହେବ—ସବୁ ବୃଥା ହେଉଥାଏ । କିଛି ଦେଖିପାରୁ ନ ଥାଏ ମୁଁ, ସେଇ ସ୍ୱାକୋଭ ଛଡ଼ା ଆଉ କିଛି—ତା ବିଶାଳ ବପୁ ପଛରେ—ଉହାଡ଼ରେ ରହିଯାଉଥାଏ ଯେମିତି ଆଉ ଯାହା—ସବୁ ଲୁଚେଇ ଦେଉଥାଏ ସେଇ ଦେହ ।

ଜାହଜ ବେବର୍ତ୍ତୀର (ଷ୍ଟୋକର) ଭାର୍ଯ୍ୟା, ସଂଶୟ ଆସୁଥାଏ ମନରେ, ମୋତେ ଆଟେଇଥାଏ ଯେମିତି ବୁଝାବୁଝି କରୁଥାଏ ମୋ କଥା, ଙ୍କବର ଅନ୍ତର ଦେଖିଥାଏ ମୋର । ପ୍ରତ୍ୟେକ ଦିନ ସକାଳୁ ଧୁଆଧୋଇ, ଗାଧୁଆପାଧୁଆ ସଫୁ ସଣି ଦେବାକୁ ହେଉଥାଏ ମୋତେ । ଭର୍ତ୍ତି କରିବାକୁ ହେଉଥାଏ କୁଣ୍ଡରେ । ପ୍ରକୃତରେ ନ୍ୟାସ୍ତତଃ ଏଇଟି ଥାଏ ଦ୍ୱିତୀୟ ଶ୍ରେଣୀ ପାସେଞ୍ଜରଙ୍କ ଘର ପାଇଁ ନିଯୁକ୍ତ ସେଇ ହସ ହସ, ସଫାସୁତୁରା ଟିକି ପେଣ୍ଟି ମାଇପିଟିଏ ଲୁଗାର କାମ । ପାଣି ତାଳିଲା ବେଳେ କୁଣ୍ଡରେ ମୋତେ ଛୁଡ଼ା ହେବାକୁ ପଡ଼ୁଥାଏ—ଷ୍ଟୋଭୋର୍ଡ଼ ଭାର୍ଯ୍ୟା ପାଖରେ ପ୍ରାପ୍ତ ସଂକୀର୍ଣ୍ଣ କେବିନଟିରେ—ତାର ମଳଚଷ୍ଟା ହଳଦିଆ ସିଆ ରଙ୍ଗ ଦେହ, ବାସି ଅମ୍ଳିକିତ ମଉଳାଖଳଭଳ ଫୁଲ ରହୁଥାଏ ଯେମିତି ତାକୁ ଦେଖି ଘୃଣାରେ ପଛକୁ କୁଆଡ଼େ ହଟି ଯାଉଥାଏ ମନଟା । ଆଉ ତାର ସେଇ ଦେହଟାକୁ ମୁଁ ତୁଳନା ନ କରି ରହିପାରୁ ନ ଥାଏ ରାଣୀ ମାର୍ଗଟର ସଲଖ ସୁନ୍ଦର ଦୃଢ଼ ଗଢ଼ଣର ବଳିଷ୍ଠ ଦେହଟା ସହିତ । ବେବର୍ତ୍ତୀଣୀ କଣଗୁଡ଼ାଏ ବଳ ବଳ କରି କହୁ ହେଉଥାଏ । କେତେବେଳେ ଭୁନ୍ଭୁନିଆ ଅଭିଯୋଗରେ—କେତେବେଳେ ବା ବନ୍ଧୁପ୍ରିଅ ସ୍ୱରରେ !

ସେ ଯାହା କହୁଥାଏ, ଯେଉଁ ଭାବନା ପ୍ରକାଶ କରୁଥାଏ, ମୋ ପାଖରେ ସହଜ ନ ଥାଏ ଆଦୌ ଯଦିଓ ମୁଁ ଠିକ ଅନୁମାନ କରିପାରୁ ଥାଏ ସେଗୁଡ଼ିକର ମର୍ମ ! ଅତି ଜଘନ୍ୟ କୁତ୍ସିତ ଲଜ୍ଜାଜନକ ତାତ୍ପର୍ଯ୍ୟ ତାର—ସେଇ କଥାଗୁଡ଼ାକର ! ମାନସିକ କ୍ଷେତ୍ରରେ—ମନୋରାଜ୍ୟରେ ମୋର ବହୁତ, ବହୁତ ଦୂରରେ ଥାଏ ମୁଁ ବେବର୍ତ୍ତୀଣୀଠୁ—ବହୁତ ଦୂରରେ ଥାଏ ଜାହାଜରେ ଯାହା ସବୁ ଘଟୁଥାଏ ସେଗୁଡ଼ାକ ପାଖରୁ । ପ୍ରକାଣ୍ଡ ଗୋଟାଏ ଖିଅଳାଲଗା ଶିଳାଖଣ୍ଡ ଯେପରି ମତେ ମୋ ଚାରିପାଖର ଦୁନିଆରୁ ଅଲଗା କରି ରଖି ଭାସି ଭାସି ବୁଲୁଥାଏ—ଭାସୁଥାଏ ଅବିରାମ ସାଗରରେ—ଦିନ ପରେ ଦିନ !

“ବେବର୍ତ୍ତୀଣୀଟା ବୁଝିଲୁ ଗୋଟିକଯାକ, ଗୋଡ଼ଠୁ ମୁଣ୍ଡ ଯାଏ ପଡ଼ିଚି ତୋ ପ୍ରେମରେ—” ସ୍ୱପ୍ନ ଭାଙ୍ଗି ଦିନେ ବାଜିଲା କାନରେ ଏଇ ଛୁଆଳିଆ ଟାହିଟାପରିଆ କଥା ଲୁସାର, “ଦେଖ ସୁଯୋଗ ମିଳିଚି ଯେତେବେଳେ ଛାଡ଼ୁ ନା, ନେ ମଉଜ କରି ନେ ଟିକିଏ ।”

ଏକା କଣ ସେଇ ଏମିତି ଟାପରା କଲା, ଥଟା କରି କହି ହେଲା ମତେ ! ଭୋଜନ ଘରଟିରେ ଯେତେ ଥିଲେ ଚାକର ବାକର ସମସ୍ତେ, ସମସ୍ତେ ଜାଣିଥିଲେ ସେଇ ମାଇପଟାର ଅନୁରାଗ ବିଷୟ ମୋ ପ୍ରତି—ଖେତେଇ ହୋଇ ମୁହଁ-ମେଞ୍ଚି ଆଖି ନଚେଇ ଦିନେ ଟିପ୍ପଣୀ କାଟିଲା ରନ୍ଧୁଣିଆ—

"ସ ଅନ୍ତଃଶୀ ଗୁଷିଚୁଷି ପାରିଲେଣି ସବୁ, କେଜାଣି କେତେ ରକମର ଖାଇବା ଚଳ—ଏବେ ଟିକିଏ ଦେଖିବେ, ଜିଭରେ ମାଗ ପରଷିବେ ଫଗସୀ ପିଠା, କେମିତ ! ଫୁଃ ! ଅଷିପାଷି ମେଳ ରଷି ଯାଆଆସ କରୁଥା ରେ ପେଶକଭ, ନଇଲେ ପଡ଼ିସିବୁଟି ଅଡ଼ୁଆରେ, ଅଠାକାଠିରେ ପଡ଼ିବୁ !"

ସ୍ୟାକୋଭ ବ ପିତୃମୂଳଭ ଉପଦେଶ ଦେଲ :

"ହେଁ ସତ କହୁଲେ ଖୁ ସଦ ଦ' ଢନବର୍ଷିଆ ପିଲକିଏ ହୋଇଥାନ୍ତୁ, ହଁ ଅଲଗା ଖବରେ କହନ୍ତୁ ; କନ୍ତୁ ଏଇକ୍ଷଣି ତୋର ବୟସ ଯାହା, ଭଲ ହେବ ଯଦ ମଙ୍କ ନ ଯାଉ ମୁଣ୍ଡ ନ ନୁଆଁଉ, ତେବେ ତୋ ଖୁସି, ଯାହା, ତୋ' ମନ କଣପାରୁ ଯେ ।"

"କାହିଁକ ପକାଉଚ ସେ କଥା—ଭୂଲ ଯା !" କହୁଲ ମୁଁ—"ଉଚ୍ଛା ଗଛଆ କଥା !"

"ନହେଁ ତ ।"

ମିନଟିକ ପରେ କନ୍ତୁ ତାର ଅନ୍ତୁଆ ତଡ଼ୁଆ ଟଣ୍ଟିଗଣୁଥା ବାଲ ଭିତରେ ଅଙ୍ଗୁଳି ଚଳେଇ ଚଳେଇ ବୁଣି ଲଗିଲ ସେ ତାର ଗୋଲଗାଲଆ ଟିକ ଟିକ ଶବ୍ଦଟିମାନ ପଦକୁ ପଦ କଥା—

"ସେ ମାଇମିଟା ଆଡ଼ୁ ତୋତେ ପୁଣି ବଗୁରବାକୁ ହେବ—ଅଢ଼ ମାହା, ଶୀତଦନଆ କୋହଲ ପାଗ ତା' ପଟରେ ! ଏମିତକ କୁକୁରଟିଏ ବ ତ ଟିକିଏ ଆଉଁସା ଟିକିଏ ଆଦର ଖୋଜ ଲୋଡ଼େ, ମଣିଷର କଥା ହିଁ ନାହିଁ, ତାର ତ ଲୋଡ଼ା ବେଶୀ ! ଆରେ, ସ୍ନେହ ସୋହାଗରେ ବଞ୍ଚେ ବଢେ ମାଇପି ଲୋକ—ବର୍ଷାରେ ଛତୁ ଭଳି ଛତଛଡ଼େଇ ! ଲଜସରମର ପ୍ରଶ୍ନ କୋଉଠି ? କଏ ବୁଝୁ କ ନ ବୁଝୁ, କନ୍ତୁ କଣ କରବ ଯେ ସେ ? ଦେହଟା ତ କୁନଟାର, ଲମ୍ବଟିମାର ବେଶ୍ୟାର, ଆଉ ଅଧିକା କଚ୍ଛୁ ନୁହେଁ ।"

ତାର ପ୍ରହେଳକାମୟ ଅବୋଧ ଆଖି ଦୁଇଟା ସ୍ଥିର ଦୃଢ ଭାବରେ ଇଚ୍ଛା କଣ ଅନେଇ ରହୁ ପଗୁରଲ ।

'ତମ ମନରେ କଣ କଷ୍ଟ ହେଉଚ, ତା ପାଇଁ ?"

"ମୋର ? ସେ କଣ ମୋର ମାଆ, କନ୍ଥ କରଚ ମତେ ? କେତେ ତ ଅଛନ୍ତି; ନଜ ମାଆ କଥା ଭାବନ୍ତି ନାହିଁ, ଦୁଃଖ କରନ୍ତି ନାହିଁ । "ଏ, ଗୋଟାଏ ଅପୂର୍ବ ଚରେଇ ରୁ !"

ଥରକକ ହସିଲ ସେ, ଫଟାଘଣ୍ଟିର ଆବାଜ ଭଳ ।

ବେଳେବେଳେ ମୁଁ ତାଙ୍କୁ ଅନେଇ ଅନେଇ ଦେଖିଲେ ଲଗୁଥାଏ ମୋତେ, ମୁଁ ଯେମିତ ଲମ୍ଫ ଦେଇ ପଶି ବୁଡ଼ିଯାଉଛି ଗୋଟାଏ ନୀରବ ଶୂନ୍ୟତା ଭିତରେ, ଅତଳତଳ ଅନ୍ଧକାରମୟ ଗଭୀର ଗହ୍ବରରେ !

"ସମସ୍ତେ ତ ବଷ ହେଉଛନ୍ତି, ସ୍ୱାକୋଭ—ତୁମେ କାହିଁକି ହେଉନ, ବଷ ହେଉନ ?"

"କାହିଁକି ଯେ ? କୋଉଥି ପାଇଁ ? ବୁଦ୍ଧିଲ ମାନେ ଯେତେବେଳେ ଇଚ୍ଛା ଯେତେବେଳେ, ଦରୁବେଳେ ପାଇପାରିବ ମାଇକନଅଛିଏ—ଭଗବାନଙ୍କ ଦୟା, ଧନ୍ୟବାଦ ତାଙ୍କୁ, ଭଷ ସୋଜା, ଯଥେଷ୍ଟ ସୋଜା ! ଦାହାଚୋଲା ହେଲେ ଘରେ ରହିବାକୁ ହେବ, ଖଟିବାକୁ ହେବ ଜମିବାଡ଼ିରେ ! ଆଉ ମୋ ବାଲାବାଡ଼ି ସେମିତି କିଛି ଉର୍ବରଆ ନୁହେଁ, ବେଶୀ ବି ନାହିଁ, ଯାହା ଥିଲା, ଦାଦ ନେଇଯାଇଛି କୋଉଦିନୁ, ଭଇଟା ମୋର ସୈନ୍ୟକାମ ହାର ପାଇବାର ପରେ ମ, ଘରକୁ ଫେର ଆସି ତୁହାଏ କଳିତକରାଳ ଆରମ୍ଭ କରିଥିଲା ଦାଦ ସାଙ୍ଗରେ, ତାଙ୍କୁ ଧମକ ଦେଖାଉଥିଲା, ଆଇନବାଟ ଧରିବ, ଆଉ ଶେଷରେ ପାହାଚଟାଏ ପକେଇଥିଲା ତା' ମୁଣ୍ଡରେ ! ବୁହାଇ ଦେଇଥିଲା ରକ୍ତ ଆଉ ସେଥିପାଇଁ ତାକୁ ଦେଢ଼ ବର୍ଷ ଠୁଙ୍କ ଦେଇଥିଲେ ନେଇ ସେମାନେ ଜେଲରେ ଆଉ ତାପରେ ତ ଗୋଟିଏ ବୋଲି ଗପ୍ପା ପୂର୍ଣ୍ଣ । ଜାଗୀ ଅଗରେ ପୃଥ୍ୱୀ ହେଇ ନେବାକୁ ! ତା' ସ୍ତ୍ରୀଟି ଥିଲା ବଡ଼ିଆ ସୁନ୍ଦରୀ ସୁକୁମାରୀଟିଏ ! ଆଉ କଣ କହିବ ଯେ ? ଥରେ ବାହା ହୋଇ ପଡ଼ିଲେ, ଘର ସଂସାର କରିବା, ପିଲାଛୁଆ ପାଳିବା ଛଡ଼ା ଆଉ କି କାମ ଥାଏ ? କିନ୍ତୁ ସୈନ୍ୟ ଯିଏ ହୁଏ, ସେ ତ ନିଜ ଜୀବନକୁ ବି ପଳି ପାରେନା, ଶାସନ ଶୃଙ୍ଖଳାରେ ରଖି ପାରେନା ?"

"ତମେ ଭଗବାନଙ୍କୁ ଡାକ—ପୂଜାପାଠ କର ?"

"କି ଅପୂର୍ବ ଚଢ଼େଇଟାରେ ତୁ, ନ କରନ୍ତି କାହିଁକି ? କର୍ ରେ ।"

"କେମିତି ?"

"କେତେ ପ୍ରକାର ଉପାୟ ଅଛି, ପନ୍ଥା ଅଛି ।"

"କି ଭଳି ପୂଜାଉଜା ତମକୁ ମାଲୁମ ଯେ ?"

"ନା, ପୂଜାଉଜା କିଛି ବୋଲି କିଛି ଜାଣେନା ମୁଁ । ଖାଲି କହେ ହେ ପ୍ରଭୁ ! ହେ ମହାପ୍ରଭୁ ଯୀଶୁ, ଯେଉଁମାନେ ବଂଚି ରହିଛନ୍ତି, ଦୟାକର ତାଙ୍କୁ, ତୁମର କରୁଣା ଝରୁ ତାଙ୍କ ଉପରେ, ଯିଏ ମରିଗଲେଣି ଶାନ୍ତି ଦିଅ ସେମାନଙ୍କୁ ଅଉ ଆମକୁ ରକ୍ଷାକର ରୋଗବେରାମରୁ, ଅଉ ହଁ, ଆହୁ କେତୋଟି କଥା ।"

"ଅଉ କେତୋଟି, କଣ ସବୁ ?"

"ଓଃ, ଜାଣେ ନା, ନା ଜାଣେ ନା । ତମେ ଯାହା କହ, ତାହା ପହଞ୍ଚି-ଯାଏ ପ୍ରଭୁଙ୍କ ପାଖରେ !"

ମୋ ସହିତ ତା'ର ବ୍ୟବହାରଟି ଥାଏ ମଧୁର, ସେ କେତେ ଧୀର ଶାନ୍ତ ଭାବରେ ମିଶୁଥାଏ ମୋ ହାତରେ କେମିତି ଗୋଟିଏ ପ୍ରକାର କୌତୂହଳରେ ସତେ ଯେମିତି ! ମୁଁ ଥାଏ ଗୋଟାଏ ଚଲାଖ ଚତୁର କୁକୁରଛୁଆ, ମଜାଳିଆ କୌତୁକିଆ ଖେଳ ଦେଖାଇବାରେ ଓସ୍ତାଦ୍ । କେବେ କେବେ ସଂଜରେ ଯାଇ

ବସୁଥାଏ ମୁଁ ତା' ପାଖରେ—ତା ଦେହରୁ ସେତେବେଳେ ବାହାରୁଥାଏ ତେଲ-ପିଆଜ ରସୁଣର ବାସନା, ସ୍ୱାସ୍ଥ୍ୟ ଭଲପାଉଥାଏ ପିଆଜକୁ ଆପଲ ଭଳି—ଖାଉଥାଏ ପାଇଲାମାତ୍ରେ କଞ୍ଚା କଞ୍ଚା ଖୁସିରେ, ହଠାତ୍ ସେ କହି ଉଠୁଥାଏ :—

"ଧନ୍ୟ ଏ ଆଲଓଣା, ଦ' ସ୍ୱରପଦ ଛନ୍ଦ ଚଉପଦୀ ଶୁଣାଯାଉ ଏ !"

ବହୁତ ଚଉପଦୀ, ବହୁତ କବିତା ମୁଖସ୍ଥ ଥାଏ ମୋର, ତା' ଛଡ଼ା ଗୋଟାଏ ମୋଟା ଟିପା ଖାତା ରଖିଥାଏ, ମୁଁ ସେଥିରେ ଉଦ୍ଧୃତ ରଖିଥାଏ ମନଲଖି କେତେଗୁଡ଼ିଏ କବିତା ! ବୋଲେ ମୁଁ, ଆବୃତ୍ତି କରେ ରୁସଲମ ଆଉ ଲୁଦ୍‌ମିଲ୍ଲା ଗାଥାଟି, ନିଶ୍ଚଳ ହୋଇ ଶୁଣେ ସେ, ଆଉ କୁଆଡ଼କୁ ଦୃଷ୍ଟି ନ ଥାଏ ତାର, ନା, ଥରେ ଖଁ ଝୁକନ ହୁଏ ନାହିଁ ପାଟି ଖୋଲେନ, ରୋକି ନେଇଥାଏ ତାର ଖାପୁଖାପୁଆ ଝରଝରିଆ ନିଃଶ୍ୱାସକୁ । ବୋଲି ସାରିଲା ପରେ ମୁଁ ଧିରକାଇ ନରମ ସ୍ୱରରେ କହେ ସେ :—

"ବଡ଼ିଆ ବଡ଼ିଆ କାହାଣୀଟିଏ, ତୁ କଣ ଜାଣେ ଫାଦରୁ ମନେମନେ ପାଞ୍ଚ ଫାଦର ? କିଏ ପୁଶ୍‌କିନ୍ ଫାଦରୁ—ହଁ, ହଁ ଗୋଟାଏ ଯାଆନ୍ତି ଅଛୁ, ବଡ଼ଲୋକ, ନାଆଁ ତାର ମୁଶୀନ ପୁଶକିନ । ଥରେ ଦେଖିଥିଲି, ଭେଟିଥିଲି ତାକୁ ।"

"ନା ତାଙ୍କୁ ନୁହେଁ ! କେତେଦିନ ତଳେ ଏହି ପୁଶ୍‌କିନଙ୍କୁ ମାରି ପକାଇଛନ୍ତି ସେମାନେ ।"

"କୋଉଥିପାଇଁ ସେ ?"

ସଂକ୍ଷେପରେ ସଂକ୍ଷେପରେ କହିଯାଏ ମୁଁ ସେହି କାହାଣୀଟି ଶୁଣିଥିଲି ଯାହାକୁ ରାଣୀ ମାର୍ଗଟଠୁ । ଶେଷ କଲା ପରେ ମୁଁ ଶାନ୍ତ ଭାବରେ କହେ ସେ—

"କେତେ କେଜାଣି ଲୋକଙ୍କର ଏମିତି ଦୁର୍ଦ୍ଦଶା ଘଟେ ମାଇକିନିଆଙ୍କ ଯୋଗୁ ।"

"କେତେ ଲୋକ ଯେ ଏକାବେଳକେ ନଷ୍ଟ ହୋଇଯାଆନ୍ତି ଟଳିଟଳାନ୍ତି ହୋଇ ଶେଷ ପାଇଯାଆନ୍ତି ମାଇପଙ୍କ ମୋହରେ, ମାଇପଙ୍କ ସକାଶେ ସତେ ।"

ଅନେକ ସମୟରେ ମୁଁ ତାକୁ ଗପ କହୁଥାଏ, ବହିପଢ଼ା ଗପ—ସେଗୁଡ଼ିକ କେଜାଣି କେତେ ଗପ ଏକାଠି କେମିତି ମିଶିମାଶି ଛନ୍ଦଗ୍ରନ୍ଥ ହୋଇ ଗୋଟିଏ ଦଉଡ଼ିଟି କଥାର ଖିଅରେ କେଜାଣି କେତେ ଖିଅ ଯେ ଓଡ଼ାଯାଡ଼ି ବୁଣି ହୋଇ ଅଡ଼୍‌ଆ ତଡ଼୍‌ଆରେ ଅଥଚ ସୁନ୍ଦର ଭାବରେ ପ୍ରକାଶ ପାଉଥାଏ ବେଶ୍ ଗୋଟାଏ ପ୍ରଳମ୍ବିତ କାହାଣୀ ରୂପରେ—ପ୍ରାଣର ପ୍ରବଳ ଆଲୋଡ଼ନରେ ପ୍ରେମର ଅନୁରାଗର ରକ୍ତିମ ଆବେଗରେ ଉଲ୍ଲାସ ଭରପୂର । ସେ କାହାଣୀ, କଣ ବା ଫୁଟି

ଉଠ୍ ନ ଥାଏ ସେଥିରେ, ହିଂସ୍ରତା, ଦୁଃସାହସିକତାର, ବାଘେଦାନ୍ତ ନାୟକର ଚିତ୍ର—ଅବିଶ୍ୱାସ୍ୟ ସୌଭାଗ୍ୟର, ପ୍ରେମ ପାଇଁ କଳହର ଦ୍ୱନ୍ଦ୍ୱ, ଯୁଦ୍ଧର ଆଉ ମୃତ୍ୟୁର ଚିତ୍ର, ସେଥି ସଙ୍ଗେ ସଙ୍ଗେ ଚମତ୍କାର ସଂଳାପ, ଆଉ ସମ୍ଭ୍ରାନ୍ତ କ୍ରିୟାକଳାପର ବର୍ଣ୍ଣନା—କଣ, କଣ ବା ନ ଥାଏ ସେଥିରେ ? 'ରେକାମ୍ବୋଲ' ଉପରେ ଅନାଡ଼ି ଦେଉଥାଏ ମୁଁ ଲେ ମୋଲେର 'ହାଞ୍ଚବାକ' ଓ କୋନ୍ଲେନାର ଶୌର୍ଯ୍ୟର ବିଭବ, ଲୁଇ ୧୧ଶ ଉପରେ ଲାଦି ଦେଉଥାଏ ଗ୍ରାଣ୍ଡେଟର ଜନକର ଅପୂର୍ବ ଗୁଣାବଳୀ ; ଗପରେ କାହାଣୀରେ ମୋର କଣ୍ଠେଁ ଓ ଉତଲେତାସ୍ମେଭ ବାଣ ହେଉ ନ ଥାଏ ହେନେଷ୍ଟ ୪ର୍ଥରୁ । ସେ ଅଦ୍ଭୁତ ପ୍ରେରଣାର ଅନୁପାତରେ କେଜାଣି ପୂରାପୂରି ବଦଳାଇ ଦେଉଥାଏ ମୁଁ ଲେଖକଙ୍କର ଚରିତ୍ର ସବୁ, ପୁନରାୟ ସଜାଇ ନେଉଥାଏ ନୂତନତମ ରଚନା ସରେ ଘଟଣାଗୁଡ଼ିକୁ ଏବଂ ଏହି କ୍ରମରେ ସୃଷ୍ଟି କରୁଥାଏ ମନୋଜ୍ଞ ଜଗତ ଗୋଟାଏ ସେଠିଥିରେ, ଅଜାଙ୍କର ସେହି ଭଗବାନ, ଯିଏ କେଳେବେଳେ ଲକ୍ଷ୍ୟହୀନ ଭାବରେ ଲୀଳାଖେଳାରେ ମଗ୍ନ ହେଉଥାନ୍ତି ମର୍ତ୍ତ୍ୟବାସୀଙ୍କ ସହିତ—ତାଙ୍କରି ଭଳି ସୃଜନ କରୁଥାଏ ମୁଁ ଅବାଧ ନୈତିକତାରେ ସେହି ସବୁକାର ମୋର ! ଜୀବନର ବାସ୍ତବତା ଦେଖି ଅନୁଭବ କରିବାରେ ଚଳେ ମାଧ୍ୟ ବାଧା ନ ଦେଇ ପ୍ରତିବନ୍ଧକ ନ ହୋଇ, ଜୀବନ୍ତ ଲୋକଗୁଡ଼ିକୁ ଉପଲବ୍ଧି କରିବା ଲାଗି ଆକାଂକ୍ଷାକୁ ଅଣୁମାତ୍ର କମାଇ ନ ଦେଇ ପୋଥି-ପୁସ୍ତକର ଜଗତଟାର ବିଶୃଙ୍ଖଳା ରଚନା କରୁଥାଏ ସ୍ୱଚ୍ଛ ଅଥଚ ଅଭେଦ୍ୟ ଆଚ୍ଛାଦନ ଯେପରି ରକ୍ଷା କରୁଥାଏ ମୋତେ ମୋ ଗୁରୁଅଡ଼ ଜୀବନରେ ଲୁଚିଛପି ସନ୍ଧି ସୁ ବିଷାକ୍ତ ଆବର୍ଜନାରୁ ଅସଂଖ୍ୟ ଆଧିବ୍ୟାଧିର ସଂସ୍ପର୍ଶରୁ ।

ବହିଗୁଡ଼ିକ ହିଁ ମୋତେ ଅଭେଦ୍ୟ ଅଜସ୍ର କରି ରଖିଥାଏ କେଜାଣି କେତେ ଘଟଣାର ଆକ୍ରମଣରୁ—ଲୋକେ କିପରି ପ୍ରେମରେ ପଡ଼ି ଯନ୍ତ୍ରଣା ପାଉଥାନ୍ତି, କିପରି ଦୁଃସହ ବେଦନାରେ ମର୍ଜ୍ଜିତ ନେଉଥାନ୍ତି, ଏତିକି ସମ୍ପର୍କରେ ଜ୍ଞାନଲାଭ ଠିକ ମୋର, ଅସମ୍ଭବ କରିଥାଏ ମୋ ପାଇଁ ବେଶ୍ୟାଳୟ ଗମନକୁ ! ଲମ୍ପଟାଚାର ଖାଉଣ୍ଡ ଭ୍ରଷ୍ଟାଚାରର ସହଜ ସୁଲଭତା କିପରି ଗୋଟାଏ ଘୃଣାଭାବ ଜନ୍ମାଉଥାଏ ମନରେ ମୋର—ଘୃଣା ଆଉ ତାଚ୍ଛଲ୍ୟ ଭାବ, ଆଣିଥାଏ ମନରେ ମୋର, ଯେଉଁମାନେ ସ୍ୱୀକାର କରୁଥାନ୍ତି ଦେହଭଳି କ୍ରିୟାକ୍ରମକୁ ମାଧୁର୍ଯ୍ୟମୟ ଭାବ—ସେମାନଙ୍କ ପ୍ରତି ! 'ରେକାମ୍ବୋଲ' ଶିଖାଇଥାନ୍ତି ମୋତେ ନିର୍ଲିପ୍ତ ଭାବରେ ସମସ୍ତ ବରଦାସ୍ତ କରି ପ୍ରତିରୋଧ କରିବା ପାଇଁ ଘଟଣାବଳୀର ପ୍ରବଳ ଶକ୍ତିକୁ । ଡୁମାଙ୍କ ଚରିତ୍ରଗୁଡ଼ିକ ହୃଦୟରେ ଗଭୀର ଆକାଂକ୍ଷା ଆଣିଥାନ୍ତି ମୋର ଜୀବନକୁ ଉତ୍ସର୍ଗ କରିବା ସକାଶେ, ମହାନ କେଉଁ ତାତ୍ପର୍ଯ୍ୟପୂର୍ଣ୍ଣ କାର୍ଯ୍ୟରେ । ହାଉଣ୍ଡସିଆ ରଜା ହେନେଷ୍ଟ ୪ର୍ଥ ଥାଏ, ମୋର ମନ ପାଇଲା ଚରିତ୍ର । ଏଇ ରଜା ହେନେଷ୍ଟ ବିଷୟ, ମୋତେ ଲାଗୁଥାଏ, ଆଖି ଆଗରେ ରଖି ଲେଖକ ବେରାଙ୍ଗର ରଚନା କରିଥିଲେ :

ତୋଷିଲେ ପୁରରେ କେତେ ଯେ
ନତ ସରଳ ଜନେ
ନଜେ ପିଇ ହେଲେ ବହ୍ୱଳ
ଜାଣ ପୁଲକ ମନେ ।
ମତୁଆଲ କଆଁ ଖପ୍ପରେ
କହ୍ନ ନ ହେବ ରଜା ?
ଯଦ ତା’ ରଇଜ ତେସନେ
ରହେ ନସ୍ତ ତାଜା ।

ଉପନ୍ୟାସଗୁଡ଼ିକରେ ହେନେର ଏଅକ୍ଟ ଚିତ୍ରଣ କରାଯାଇଥାଏ, ଉଦାର ଦୟାଦ୍ର ଲୋକଟିଏ ଭାବରେ, ପ୍ରଜାପାଳକଙ୍କ ହୃଦୟହାରୀ ପ୍ରିୟତମ ରଜା ଭାବରେ । ତାଙ୍କ ପ୍ରକୃତରେ ଖର ଝଲମଲ ଘାତ୍ପିଟିକ ମନରେ ମୋର ଅବଚଳତ ଅବକମ୍ପିତ ପ୍ରତ୍ୟୟ ଆଣି ଦେଇଥାଏ, ପୃଥିବୀରେ ସବୁଠାରୁ ବଳ ମନୋରମ ଦେଶ ହେଉଛ ଫ୍ରାନ୍ସ.—ଶୌର୍ଯ୍ୟର ବୀର୍ଯ୍ୟର ଭୂମି ବି, ଯେଉଁଠାରେ ସାଧାରଣ ଗ୍ରମୀର ପୋଷାକ ଦେହରେ ଲୋକଗୁଡ଼ାକ ରଜକୀୟ ପୋଷାକ ପରପାଟୀରେ ସଜ୍ଜିତ ଲୋକଙ୍କ ପର ଉଦାରମନା, ସଂଭ୍ରାନ୍ତ ! ଆଷ୍ଟ୍ରୁ ପିଟ୍ସ ସମାନ ଡଆଟାନନ ପର ଶୌର୍ଯ୍ୟଶାଳୀ ଓ ସାହାସୀ । ହେନେରୀ ନହତ ହେଲେ ଯେତେବେଳେ ଅବଶ୍ୟ ସେ କ କରୁଣ ଭାବରେ ଆବେଗରେ କାନ୍ଦଲ ମୁଁ, ରଭେଲକ ପ୍ରତ ଘୃଣାରେ—ଦାନ୍ତରେ ଦାନ୍ତ ଘଷି କଡ଼ମଡ କର ଉଠିଥିଲ ମୁଁ । ଷ୍ଟୋକରକୁ ଯେତେ ଯେଉଁ ନାପ କହୁଥାଏ, ସେଥିରେ ପ୍ରାୟ ମୂକ ଚରଜ ଭାବରେ ରହୁଥାଏ ହେନେର । ମନେହେଲ, ଯ୍ୟାକୋଭର ବି ତା’ ପ୍ରତ ଆଉ ଫ୍ରନ୍ସ ପ୍ରତ ବେଶ୍ ଅନୁରଗ ଆସିଯାଇଛ ।

“ବଢ଼ିଆ ଲୋକଟାଏ ତ ମୋର ରଜା ହେନେର ! ତା’ ସାଙ୍ଗରେ ମାଛ ମାର ଯାଇପାର, ଆଉ ଯାହା ଇଚ୍ଛା ତା’ କର ପାର ।” ମନ୍ତବ୍ୟଟାଏ ଝାଡ଼ିଦେଲ ଯ୍ୟାକୋଭ ।

କେବେହେଲେ ଅତଶୟ ଉଲ୍ଲାସରେ ବହ୍ୱଳ ହୋଇ ଯାଉ ନ ଥିଲ ସେ, କ ଏଣୁ ତେଣୁ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ ପଗ୍ଭର ବାଧା ଦେଉ ନ ଥିଲ ମୋ ଗପକୁହା ମଝିରେ—ମନକଣ୍ଠି ଦେଇ ଶୁଣୁଥିଲ ଚୁପ୍‌ଚାପ । ଭୁରୁ ହଲକ ନଇଁ ଆସୁଥିଲ ତାର, ମୁହଁ ଗୋଟାକରେ ଲଗି ରହୁଥିଲ ଏମିତ ଏକ ପ୍ରକାର ଅପରବର୍ତ୍ତନୀୟ ଭାବ, ସତେ ଯେମିତ ମନେ ହେଉଥିଲ, କେଉଁ ଆଦମ କାଳରୁ ଶିଳା ସୋପାନରେ ବହଳ ହୋଇ ରହେଚ ଶିଉଳ ପରସ୍ତେ ! ଯଦ କହୁଁ କହୁଁ କେବେ ମୁଁ ଅଟକ ଯାଉଥାଏ ମଝିରେ କେଉଁଠି, ସଙ୍ଗେ ସଙ୍ଗେ କହ୍ନ ଉଠୁଥାଏ ସେ :—

"ସେଥିକି କ'ଣ ? ସରିଲା ?"

"ନା, ମ, ଆଉ ଅଛି ।"

"ତେବେ ବନ୍ଦ କଲୁ କାହିଁକି ।"

ଅବେ ସେତେବେଳେ ଆମେ ଆଲୋଚନା କରୁଥିଲୁ ଫରାସୀ ଲୋକଙ୍କ ସଂପର୍କରେ, ନିଃଶ୍ୱାସଟିଏ ପକାଇ କହିଲା ସେ—

"କେତେ ସୁନ୍ଦର, କେତେ ସଉଖୀନତାରେ ଅଛନ୍ତିରେ ସେମାନେ !"

"ମାନେ ?"

"ତୁ ଆଉ ମୁଁ, ଆମେ ଅଳ୍ପ କେମିତି, ଅଳ୍ପ ଟାଙ୍କରେ ଗଳମରେ । ଝଟଣି ଆଉ ଝଟଣି, ସବୁବେଳେ ଖଟଣି ! ସେମାନେ ବେଶ୍ ସୁନ୍ଦର ଭାବରେ ସଉଖୀନତାରେ ଅଛନ୍ତି । କାମଦାମ ନାହିଁ, ଖଟଣି ନାହିଁ, ପିଅ ମନଇଚ୍ଛା ପିଅ ଅଉ ଭୁଲ ଫୁର୍ତ୍ତି କର । ମଉଜିଆ ଜୀବନଟା ଝୁମିବାପିଆ ବଞ୍ଚିବାଟା !"

"ନା, ସେମାନେ ଖଟନ୍ତି, କାମ କରନ୍ତି ବ !"

"କାହିଁ, ସେଇ ଗପଗୁଡ଼ିକ ଶୁଣାଉଚୁ ତୁ ସେଥିରୁ ଜଣାପଡ଼ୁନାହିଁ, ଏଉଳି ।" ବ୍ୟାଙ୍ଗୋକ୍ତ ମତ ଦେଲା, କୋଇଲା ଭୂଂକାଉ— ଅଉ ହଠାତ୍ ମୋ ଚେତା ପଶିଲା, ମନରେ ମୋର ଉଦ୍ଧି ଉଠିଲା. ହଲେ ତ, ଯେତେ ଯେତେ ବହି ମୁଁ ପଢ଼ିଲିଣି, ସେଥିରୁ ଯେତେ ଦୁଣି ଅଛନ୍ନ କରି ରଖିଚ ମୋ ମନକୁ, କାହିଁ କେଉଁଥିରେ ହେଲେ ତ ଗୋଟିଏ, କୁହ ଯାଇ ନାହିଁ, ଲୋକେ କାମ କରନ୍ତି କେମିତି କ କେଉଁମାନଙ୍କର ଶ୍ରମ ଉପରେ, କେଉଁମାନଙ୍କ ଶ୍ରମର ଚିହ୍ନ ପାଇ, ସାହାଯ୍ୟ ପାଇ ଛିଡ଼ା ହୋଇଛନ୍ତି, ଆତଯାତ ହେଉଛନ୍ତି କୁଳୀନ ଚରିତ୍ରଗୁଡ଼ିକ !

"ଅଗ୍ର ହେଉ. ଟିକଏ ଘୁଞ୍ଚିକ ଦ'ଟା ମାରନାଁ !" ଚିତ୍ ହୋଇ ପିଠି ଉପରେ ଭର ଦେଇ ଗଡ଼ି ପଡ଼ୁ ପଡ଼ୁ କହିଲା ସ୍ୱାଚୋଭ, ଆଉ ମିନିଟକ ପରେ ବେଶ ଆରାମରେ ଶାନ୍ତିରେ ନାକ ଡାକିଲା ତାର !

ଆସିଲା, ଶରତଟା ଆସିଲା, କାମ ନଇର ତଟଦେଶ ଦଖିଲା ରକ୍ତ ଧୂସର, ଚତୁଳତା ପୁଷ୍ପୀଭ ଆଉ ମ୍ଳାନ ହୋଇ ଆସିଲା ଚୀର୍ଯ୍ୟକ ସୂର୍ଯ୍ୟ ରଶ୍ମିର ସ୍ରୋତ— ଥିଲା ଥିଲା ହଠାତ୍ ଜାହାଜ ଗୁଡ଼ା ବୁଲିଗଲା ସ୍ୱାଚୋଭ, ବୁଲିଯିବା ପୂର୍ବରୁ ଠିକ କହିଗଲା ମୋତେ—

"କାଲି ଗୁଡ଼ା ପଅରଦିନ, ତୁ ଆଉ ମୁଁ ପହଞ୍ଚିବା ଆମେ ପର୍ମରେ, ଆକଉଣ୍ଟ ବୁଝିଲୁ, ସେଠି ଯିବା ଆମେ ଗାଧୁଆ ଘରକୁ, ମନଇଚ୍ଛା, ବାଥ୍‌ରେ ଗରମ ପାଣିରେ ଗାଧୋଇବା ପାଇଁ, ତା' ପରେ ତ ସିଧାସଳଖ ମୁହାଁଇବା ସରେଇଖାନାକୁ ନାକୁ, ଦେଇ ଯେଉଁଠି ବୁଲିଥିବ ଗାଉଣା ବାଜଣା । ସବୁଓ ମତେ ଭଲ ଲାଗେନା ସେମାନଙ୍କର ସେଇ ହାତବାଜାଗୁଡ଼ିକୁ ଘଉଁ ଘାଉଁ କରିବାଟା ।"

ସାଗପୁଲରେ କନ୍ତୁ ଜାହାଜରେ ଉଠିଲା ଗୋଟାଏ କଟାରୁଭଳି ମୁଥୁଲକାୟ ଲୋକଟାଏ, କଣ ଦାଢ଼ିର ଚିହ୍ନ ନ ଥାଏ ମୁହଁରେ—କେମିତକା ମାଇପି ମୁହଁଟା ! ପିନ୍ଧଥାଏ ଲମ୍ବା କୋଟ୍‌ଟାଏ, ଆଉ କୋକଣିଆଳି କାନ ଭଳି କାନ୍ଲଗା ଟୋପିଟା—ଏଇଥିରୁ ଅଦ୍ଭୁତ ବେଶ ଫୁଟି ପଡ଼ୁଥାଏ ମାଇପଙ୍କ ସେଙ୍କ୍ସ ସାଦୃଶ୍ୟଟା ତାର । ସଙ୍ଗେ ସଙ୍ଗେ ରନ୍ଧାଘର ପାଖରେ ଗୋଟିଏ ଉପୁମୁଳିଆ କଣରେ ବାଛି ନେଲ ଟେବୁଲ୍‌ଟା—ବସିପଡ଼ି ବରାଦ କଲ ଗ୍ଲାସ, ଆଉ ଟିକେ ଟିକେ ଶୋଷିବାକୁ ଲାଗିଲ ଦହଡ଼ ଦହଡ଼ ଗ୍ଲାସ ପାଣି, ଦେହରୁ କୋଟଟା ନ କାଢ଼ି ଏକାବେଳକେ ଝାଳରେ ଜୁଡ଼ୁବୁଡ଼ୁ ହୋଇ—ଗାଧୋଇ ।

ଶରତ ମେଘରୁ ଝର ଝର ପଡ଼ିଲ ଚମତ୍କାର ବର୍ଷା, ଝରଝର ଅସମ୍ଭାଳୁ ଅସମ୍ଭା ଲାଗିଲ—ସେଇ ଲୋକଟା ଗାଣଗାଣିଆ ରୁମାଲରେ ଯେତେବେଳେ ପୋଛି ହୋଇ ବସିଲ ମୁହଁକୁ ସତେ ଯେମିତି ଥମ୍ ପଡ଼ିଯିବ ଟୁପୁଟୁପୁ ବର୍ଷା ଆଉ ଯେତିକି ଗମଗମ ଝାଳ ବୋହିଲ ତା' ଦେହରୁ ସେତିକି ଜୋରରେ ଗ୍ଲାସଲ ବର୍ଷା, ଅବିରଳ ଭାବରେ ।

ଗ୍ଲାସ ଗ୍ଲାସ କେଉଁଠି ଥିଲ ସ୍ୱାନୋଭ ଆସି ବସିପଡ଼ିଲ ଲୋକଟି ପାଖରେ । ଆଉ ଦୁହେଁ ଦେଖି ଲାଗିଲେ ପାଣ୍ଡିରେ ଗୋଟାଏ ମାନଚିତ୍ର । ସେଇ ଘଣ୍ଟିଟି ଆଙ୍ଗୁଠିରେ ଗାର କାଟି କାଟି ଆଙ୍କି ଲଗିଲ କଣ ସବୁ, ଶାନ୍ତ ଭାବରେ କହିଲ କୋଇଲଭୁଷ୍କାଳି ।

"ହେଉ, କଣ ହେଲ ଯେ, ମୋ ପଣ ଲୋକ ପାଇଁ ତ ସହଜ ଖୁବ୍ ସହଜ ତାହା—ଥୁଃ ?"

"ହେଉ, ଭଲ !" ଗୋଡ଼ପାଖରେ ଖୋଲ ଚମଡ଼ା ଥଳି ଭିତରେ ପାଣ୍ଡିଟାକୁ ପୁଣି ଗୁଞ୍ଜି ଦେଇ ଦେଇ ଫୁସ୍‌ଫୁସିଆ ସ୍ୱରରେ କହିଲ ଘଣ୍ଟିଟି ! ଧୀରସ୍ଥିର ଭାବରେ ଗପଚେ ଆଉ ଗ୍ଲାସପିଆରେ ମଜଗଲେ ସେମାନେ ।

ସ୍ୱାନୋଭର ନାମ-ଗାଳି ଆବୃତ୍ତି ହେବା ପୂର୍ବରୁ ଠିକ୍ ପଚ୍ଚରିଲ ତାକୁ, କଏ ସେ ଲୋକଟି ? ଟିକଏନାକୁ ହସିଦେଇ ଉତ୍ତର ଦେଲେ ସେ ।

"ହେସ୍ତତା, ମାଇଚଆଟାଏ ମନେ ହେଉଚ—ନାହିଁ ? ମାନେ ଖାସ୍ତଟାଏ, କାହିଁ କେଉଁ ଦୂରରୁ, ସାଇବେରିଆରୁ ଆସିଚ ! ଅଜବ ଚଢେଇଟାଏ । ଖାଲି ଗୁଡ଼ାଏ କଥା ପାଞ୍ଚ ପାଞ୍ଚ କଳନା କରି କରି ବସୁଚ !"

ଖାଲି ଖାଲି ଗେଇଠ ଦ'ଟା, ଗୋରୁ ଖୁରଭଳି କଳା କଳା ଆଉ ଶକ୍ତ । ଠିକ୍କି ପାହୁଲଣି ପକେଇଲ ଭଳି, ଦୁଲ ଦୁଲ କରି ପକେଇ ଚାଲିଯାଉଥିଲ ମୋ ପାଖରୁ ! ହଠାତ କନ୍ତୁ ଅଟକିଯାଇ ବୁଲିପଡ଼ି ମୋ ଆଡ଼କୁ, ପଞ୍ଜରା ହାଡ଼କୁ ନିଜର କୁଣ୍ଡେଇ କୁଣ୍ଡେଇ କହିଲ—

"ତା' ପାଖରେ ଖଟିବା ପାଇଁ, ବୁଝିଲ୍ ଭଡ଼ା ଲଗେଇ ଦେଲିଣି ନିଜକୁ ଶୀଘ୍ର, ଆମେ ପର୍ମରେ ପହଞ୍ଚିବା ଛଣି ଏଇ ଜାହାଜରୁ ଓହ୍ଲେଇଯିବ ମୁଁ ଆଉ

ଚେଣିକ ବଦ୍‌ମାସ୍, ଆଲ୍‌ଖ୍ରା ବଦ୍‌ମାସ୍ । ଆଗ ଟ୍ରେନ୍ ଧରବୁ ଆମେ । ତା'ପରେ ଯିବୁ ନଈରେ ଉଠାଣି, ବୁଝିଲୁ—ସେଇଠୁ ବସିବୁ ଘୋଡ଼ାରେ, ପାଞ୍ଚସପ୍ତାହ ଲାଗିଯିବ ପହଞ୍ଚିବାକୁ ସେଠି । ଦେଖ ନାହିଁ କି ଦୂରଦୂରାନ୍ତର କୁଣ୍ଡ ମୁଣ୍ଡରେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ପହଞ୍ଚୁଛନ୍ତି ଲୋକଗୁଡ଼ାକ !''

"ତମେ କଣ ଜାଣ ତାଙ୍କୁ" ? ପଚାରିଲି ଆଶ୍ଚର୍ଯ୍ୟ ହୋଇ ଏଇ ଅପ୍ରତ୍ୟାଶିତ ସିଦ୍ଧାନ୍ତରେ ସ୍ୱାକୋଭର ।

"ଜାଣନ୍ତି କେମିତ ସେ ? ଆଗରୁ କଣ କେବେ ଦେଖିଥିଲ ତାଙ୍କୁ ନା ଯାଇଥିଲ କେବେ ସେଠାକୁ—ଯେଉଁଠି ଘରଦ୍ୱାର ତାର, ଥାଏ ସେ ?''

ତହିଁଆରଦିନ ସକାଳେ ସ୍ୱାକୋଭ ଦେଖାଦେଲା ଗ୍ଲେଟିଆ ନାଲିଲା ନାଲିଲା ତେଲଚକଚକିଆ ମେଣ୍ଢା ଚମ ପୋଷାକରେ, ମକମ୍ବମକଚ ଧାର ନ ଥିବା କୁଟା ଟୋପି ଟେଡ଼ା କରି ଲଗାଉଥାଏ ଯୋଉଟାକୁ, ଥାଏ ତ.' ମୁଣ୍ଡରେ ଆଉ ପାଦରେ ଥାଏ ଚୁଣ୍ଡା ଚଟି ହଲେ, ଗଛବକଲ ରେ ତିଆରି । ତାର ଲମ୍ବା ଅଙ୍ଗୁଳିର ହାତରେ ମୁଠେଇ ଧରିଲା ମୋ ହାତକୁ କହିଲା ସେ—

"ଆ, ଅ, ମୋ ସାଙ୍ଗରେ ଆ ! ଏଃ ! ଏଠି ସେ ନ କେଇଯିବ ତୋତେ— ସେଇ ହେଣ୍ଡ଼ା ମାଇଚଅଁଟା, କହିଲା ମାତ୍ରେ ମୁଁ ନେଇଯିବ ସେ ! କଣ କହୁଚୁ କହିବ ତ ତାଙ୍କୁ ? ଯାହା ତୁ ଦ୍ୱିହିବୁନ କରିବାକୁ ତାକୁ ବାଦ ଦେବ ସେ, ତୋତେ ଝଟେଇବ ନାହିଁ ସେଥିରେ ! ଆଉ ଦେବ ସେ ତୋତେ ପଇସାପଇ ଦେବ୍‌ କଟୁ ! ବଂସେଇ ଭଲ ଲାଗେ ମଣିଷକୁ କାଟିକୁଟି ଥୋଇବାରେ ଖୁସି ସେମ ଦଙ୍କଚ, ଗୋଟ ଏ କୁଟି ଦନର ମଉଜ ଯେମିତ । ଆଉ ସେଥିପାଇଁ ତାଙ୍କୁ ପୁଣି ବେଶ ଯଇସା ଦଅନ୍ତି, ସେଥିରେ କୃପଣପଣ ନଥାଏ ।''

ଖାପୁଟା ଛୁଟା ହୋଇଥାଏ ଚେଲିଙ୍ଗ ପାଖରେ, କାଖରେ ଧଳା କନାର ଘାଗ୍ରଅ ଗ୍ଲେଟ ଗଣ୍ଠିଲିଟିଏ, କେମିତ ମାନ୍ଦା ମାନ୍ଦା ନର୍ଜାବା ଅଖିରେ ଏକ ଲାଖରେ ଅନେଇ ରହିଥାଏ ସ୍ୱାକୋଭଙ୍କୁ । ଖାପୁଟାଏ ଦଶୁଥାଏ ପାଣିରୁ ଛଡ଼ା ହୋଇ ଅସିଥିବା ଗୋଟାଏ ବୁଡ଼ଯାଇଥିଲା ମଣିଷଭଳି, ଓଜନଥା, ଖୁବ୍ ଓଜନଥା ଆଉ ଫୁଲିଫାଲି ଶୋଥାଳିଆ ! ନିଃଶ୍ୱାସ ଗୋଟେ ମନକୁ ମନ ଗୁଡ଼ାଏ ଗାଳିଦେଲି ତାଙ୍କୁ । ଅଭିଶାପ ଦେଲି ତା'ଉପରେ । ଅଉ ଥରେ ମୋ ହାତଟାକୁ ମୁଠେଇ ଜାବୁଡ଼ି ଧରିଲା କୋଇଲା ଭୂତ୍ତାଳି ସ୍ୱାକୋଭ !

"ଥୁଃ ! ଯିଏ ଯହା ବାଟରେ ଡାକେ ଭଗବାନଙ୍କୁ ତୋର କଣ ଯାଏ ଆସେ ସେଥିରେ ? ଆଚ୍ଛା ବଦମାସ୍ ! ପୁଚ୍ଛରେ ଆ—ଭଗବାନ୍ କରନ୍ତୁ ମଙ୍ଗଳ ହେଉ ତୋର !''

ବୁଲିଗଲି ବୁଲିଗଲି ସ୍ୱାକୋଭ ଶୁମନ୍ଦ ବଣାଳକାଯ୍ୟ ଭଲି ଭଲି ଚଳି ଚଳି ଧସେଇ ହୋଇ । କେତେ କେତେ ରୂପରେ, କେତେ ପ୍ରକାର ଚନ୍ଦ୍ର ର ଆବେଗମୟ ସଂଘର୍ଷରେ, ପରସ୍ପର ବିରୋଧ ଭାବନାରେ ଛିନ୍ନବିଛିନ୍ନ ହୃଦୟଟାକୁ ଗୁଡ଼େଇ ଦେଇ

ମୋର ! ଗୁଲିଗଲା ସେ—ତା' ପାଇଁ ଯେତେକ ବେଦନାରେ ମଜ୍ଜି ହେଲା ହୃଦୟଟା, ସେତିକ ଭରି ଉଠିଲା ଭରି ଉଠିଲା ବିରକ୍ତିରେ । ଆଜି ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଏ, ଅଶ୍ରୁମ ହୋଇଯାଏ ମନେ ପକାଏ କି ଈର୍ଷାରେ ଟିକିଏ, ଭୟରେ ଟିକିଏ ସେମିତି ଗୋଟାଏ କାହିଁ କେଉଁ ଦୂର ସୁଦୂରର ଅଜଣା ସ୍ଥାନକୁ ଗୁଲି ଯିବାଟା ଉଚିତ ଥିଲା । ଅବଶ୍ୟକ ଥିଲା କାହିଁକି ବା ତାର ? ହୁଁ ହୁଁ ; ମନେ-ପଡ଼ିଲେ ଗ୍ରବେ ବେଳେବେଳେ କେମିତିକା କଭିଳି ମଣିଷଟିଏ ଥିଲାରେ ସତେ ! କଭିଳି ଲୋକଟିଏ ଥିଲା ଏମିକୋଭ ଶୁମନ୍ତ ।"

## ଦ୍ୱାଦଶ

ଶରତକାଳ ଶେଷହୋଇ ଆସିଥାଏ, ଜାହାଜ ଚଳ ଚଳ ବନ୍ଦ ହୋଇଗଲେ । ପଟଚନ କର୍ମଶାଳାରେ 'ଶିକ୍ଷାନବିଶ' ହୋଇ ତାଲିମ ପାଇବାକୁ ଆରମ୍ଭ କରିଥାଏ ମୁଁ । ପଢ଼ାପଢ଼ିର ଦ୍ୱିତୀୟ ଦିନ ମାଲିକାଣୀ ମୋର, ନରମ ପ୍ରକୃତିର 'ଟିକି' ବୁଢ଼ୀ ମାଇପଟିଏ ସବୁବେଳେ ପିଉଥାଏ ମାତାଲି 'ଘୋଷଣା' କରି ଜଣେଇଦେଲେ—

"ବେଶ୍ ଦିନଗୁଡ଼ାକ ଶ୍ରେଷ୍ଠ ହୋଇଗଲାଣି ଏବେ ରାତିଗୁଡ଼ାକ ବଡ଼ ଲମ୍ବା—ତେଣୁ ତୋତେ ଏଣିକି ପ୍ରତିଦିନ ଦଣ୍ଡାଗ୍ରେରୁ ଯିବାକୁ ହେବ ଦୋକାନକୁ ବନ୍ଦିବଟାରେ ସାହାଯ୍ୟ କରିବା ପାଇଁ ଆଉ ପଢ଼ାପଢ଼ି କରିବାକୁ ହେବ ସଞ୍ଜ ହେଲେ ବୁଝିଲୁ ।"

ଆଉ ସେ ମୋତେ ଗ୍ଲନ୍ତଦେଲେ—ଯତ କହିଲେ, ଟେକିଦେଲା ଗୋଟିଏ ଭୁଲୁଭୁରିଆ ଟୋକା ଦୋକାନ କର୍ମଚାରୀ ହାତରେ 'ସାକେସ୍ତିଇନା' ଭଳି (ଗୁଡ଼ ଭଳି), ଏକପ୍ରକାର ମଧୁରିଆ, ବେଶ ସୁନ୍ଦରିଆ ଚେହେରାର । ନଡ ନଡ ହେମାଳିଆ ଅନ୍ଧାରରେ ଭୋରଟାରୁ ନଦୁଆ ନଦୁଆ ଇଲମ୍ପିଙ୍କା ଚାଲବାଟେ ମେ ଅଉ ମୁଁ 'ପାର' ହେଉ ସହରଟାକୁ—ଧାଇଁବାକୁ ଲାଗୁ ପହଞ୍ଚାଯାଏ ନଲବଜାରରେ ସେଇ ଯେଉଁଠି ବ୍ୟପଣୀବୀଥିର ଦ୍ୱିତୀୟ ମହଲରେ ଥାଏ 'ଦୋକାନ'ଟା । ଗୋଟାଏ ଗୋଦାମ ଘର ଥିଲା ସେଇଟା କେବେ କେଉଁକାଳରେ, ଶ୍ରେଷ୍ଠ ବଖରାଟିଏ, ଅନ୍ଧାରିଆ—ଦୁଆରହଲକ ଲୁହାର, ସାନ ଝରକାଟିଏ ଆଡ଼କୁ ମୁହଁ ତାର ଥାଏ, ଘରର ବାହାରପଟ ଲମ୍ବ ଲୁହାଗ୍ରୁଚର ଅଳିନ୍ଦ ଆଡ଼କୁ । ଦୋକାନ ଘରଟାରେ ଆମର ଖୁନ୍ଦା ହୋଇ ଭର୍ତ୍ତି ହୋଇ ରହିଥାଏ ଶ୍ରେଷ୍ଠ ବଡ଼ ପଟଚନ-ଗୁଡ଼ାକ, ଚନ୍ଦ୍ରପ୍ରେମସବୁ କେତୋଟି ସେଥିରୁ ସାଧାସିଧା ଆଉ କେତୋଟିରେ କେତେ କାମକୃଷ୍ଟ ଅଙ୍କା ହୋଇଥାଏ ଲତାପତ୍ର, ନର୍ତ୍ତକିଙ୍କ ଛବି । ସେହି ଘରଟିରେ

ହଳଦିଆ ଚମଡ଼ା ବନ୍ଧେଇ ଧର୍ମ ପୁସ୍ତକସବୁ ପୋଥି, ପୁରାଣ, ପୁରୁଣା ସ୍ଲାଭ୍ ଭାଷାର ଲିପିରେ ଛପା ।

ଆମ ଦୋକାନକୁ ଲାଗି—ପଡୋଶୀରେ ଆମର ଆଉ ଗୋଟିଏ ପଟଚିତ୍ର ଓ ବହି ଦୋକାନ ଚଳୋଉଥାଏ ଗୋଟାଏ କଳାଦାଢ଼ିଆ ବେପାରୀ, ଭଲଗା ନଈଠୁ ଦୂରରେ କର୍ଜେନେଟସ୍ ଜଙ୍ଗଲରୁ ଆସିଥିବା ଅଞ୍ଚଳଯାକରେ ଜଣାଶୁଣା ଅତି ପୁରୁଣା କଟ୍ଟର ମତ ବା ଧର୍ମପନ୍ଥୀ ଗୋଷ୍ଠୀର, ସତେ ଯେମିତି ଭୂତ ପ୍ରେତର ଜଣେ ସେ ! ତାର ଥାଏ ମୋର ବୟସର ପୁଅଟିଏ, ବୁଢ଼ାଲୋକର ଶୁଖିଲା ଚମଉଠିଲା ମୁହଁଟା ତାର, ଆଉ ଆଖି ଯୋଡ଼ିକ ଗାଳୁଆ ମଝାର—ଭୁଲୁଥାଏ ଏଣିକି ତେଣିକି ସବୁବେଳେ ।

ମୋର କାମ ଥାଏ ଦୋକାନ ଫିଟେଇ ସାରି ଗରମ ପାଣି ପାଇଁ ଦୌଡ଼ିବା ନିକଟର ମଦଖଟିଟାକୁ ବୃଦ୍ଧା କରି ଆଗ ବସି ଖାଉ ଦୁହେଁ । ତାପରେ ଲାଗି ଯାଉଥାଏ ମୁଁ ଦୋକାନ ସଜେଇବାରେ, ଝାଡ଼ିଝୁଡ଼ି ରଖୁଥାଏ ଜିନିଷପତ୍ର-ଗୁଡ଼ାକୁ । ସବୁ ଠିକଠାକ ହୋଇଗଲେ, ସଜାଡ଼ା ସରିଲେ ଦୋକାନ ମୁହଁ ଝୁଲିଣ ତଳେ ଛିଡ଼ା ହୋଇ ଖରିଦଦାରମାନେ ଯେମିତି ଆମ ପଡୋଶୀ ପାଖକୁ ନ ଯାଇ ଆମ ପାଖକୁ ଆସନ୍ତୁ, କୌଶଳ କରି ଦେଖିବା କାମଟା ଧରିବନ୍ଧା ରୂପେ ଆସି କରିଯାଉଥାଏ ମୋ ଠାରୁ !

"ବୋକା, ଜନ୍ମ ବୋକା ଖରିଦଦାରଗୁଡ଼ାକ ?" ଦୋକାନ କର୍ମଚାରୀ ବତାଉଥାଏ ମୋତେ—'ତାଙ୍କ ପାଖରେ ଯେଉଁଠି ଇଚ୍ଛା ସେଠୁ ଖରିଦ କରିବା ସମାନ, ଯେଉଁଠି ଶସ୍ତା ପାଇବେ ସେଠିକି ମୁହାଁଇବା ମନ କରିବା—ଠିକ୍, ସେମାନେ କଣ ଭଲମନ୍ଦ ବାଛି ପାରନ୍ତି କେବେବେଳେ ?"

ମୋତେ ଏ ପାଠ ପଢ଼ାଉ ପଢ଼ାଉ ସେଇ ବ୍ୟବସାୟଟାରେ ନଜର ଲାଗି କେତେ ଦେଖାଇ ହେଉ ହେଉ ଠକ୍‌କିନା ଆଖିପିଛୁଳାକେ ସେ ଗୁପ୍ତି ଚାଲି ବଜାଇବା ସ୍ୱରରେ ଯୋଡ଼ି ଏକାଠି କରି ଦେଉଥାଏ ପଟଚିତ୍ର ପଟାଗୁଡ଼ାକୁ ।—

"ତିଡ଼ିଆ 'ଦାମ'ର କମକୁଟ ଜିନିଷ ଏ ଟଙ୍କା ଏ... ଶସ୍ତା, ଖୁବ୍ ଶସ୍ତା ଏସବୁର ଛବି, ଲମ୍ବ ସ୍ୱର ଫୁଟ—ଦାମ ଯେମିତି ଜିନିଷ ସେମିତି, ହେଇ ଆଉ ଗୋଟାଏ ଛଅରେ ଯାଉ—ଦାମକୁ ବୁଝି, ସାଧୁସନ୍ଥଙ୍କୁ ଜାଣିଛନ୍ତି ? ମନେ ହୋଉ ଭାଙ୍ଗଫାଟି ଅମଳ ମାତାଙ୍କ ପାଇଁ, ଶସ୍ତାଦ 'ଭାରଭାର'—ଦାନ୍ତବଥା ଆଉ ଅସ୍ୱାସ୍ଥ୍ୟରେ ମରିବାକୁ ଯିବା ପାଇଁ—ମଙ୍ଗଳା ଏଇ 'ଭସିଲ୍'—ଜର ଆଉ ହାତଗୋଡ଼ ଗ୍ରନ୍ଥି, ଲାଠିଦେଇ ବାଉଳାଗୁଳା ଖାଇ । ଜାଣିଛନ୍ତି ତ 'ଭର୍ଜିନ' କୁମାରୀ କ ? ଦେଖନ୍ତୁ ଶୋକାତୁର ଗୋଟିକୁ—ତିନିହାତିଆ କୁମାରୀଙ୍କୁ, କାନ୍ଦ କାନ୍ଦ କୁମାରୀ ସେ—ମୋ ଦୁଃଖରେ ସାନ୍ତ୍ୱନା ଦାତ୍ରୀ କୁମାରୀଙ୍କ କାଜାନ, ପୋକ୍ରଭ ଯେମିତ୍ରେ ଲନ୍ୟାସ୍...।"

ଶୀଘ୍ର ଶୀଘ୍ର ଘୋଷି ମନେ ରଖିଦେଲି—ପଟଚିତ୍ରଗୁଡ଼ାକର ଆକାର ଆଉ କାରୁକାର୍ଯ୍ୟ ଅନୁଯାୟୀ ଧାର୍ଯ୍ୟ ଥିବା ଦରଦାମ ଶିଖିଗଲି 'କୁମାରୀଙ୍କ' ବାଛିନ୍ତୁ

'ମୂର୍ତ୍ତି' ଛବିଗୁଡ଼ିକୁ ବାଛି ରଖିବା ପାଇଁ—କିମ୍ବା ଅଡୁଆରେ ପଡ଼ିଲେ ସେଇ ବିଭିନ୍ନ ଜଗତର 'ସାଧୁସନ୍ଥ' ଯେଉଁ 'ମଙ୍ଗଳ' ଅଳାଡ଼ ଦେଉଥିଲେ—ତାହାକୁ ସବୁ ମନେ ରଖିବାରେ ।

ଦୋକାନ-କର୍ମଗୃହ ଜଣେ ମୋ 'ଜ୍ଞାନ' ପରଖକରି ବୁଝୁଥାଏ ଯେତେବେଳେ ଦେଖୁଥାଏ ଦୋକାନ ଦ୍ୱାରମୁହଁରେ ମୁଁ ମଜ୍ଜି ଯାଇଛି ଦିବାସ୍ୱପ୍ନରେ ମୋର—

"ପ୍ରସବ ବେଦନା ଶମାଇବାକୁ କଣ ?"

ମୋ ଉତ୍ତରଟା ଯଦି ଭୁଲହୋଇ ଯାଉଥାଏ, ତେବେ ସେ ନାକଟେକି ତାଚ୍ଛଲ୍ୟରେ କହୁଥାଏ—

"ତୋ ମୁଣ୍ଡଟା ତେବେ କାହିଁକି ଅଛିରେ, ଏ କେଉଁଥି ପାଇଁ ?"

ଏହି କଥଠୁ ବଳି ଅଧିକ କଠିଣ, ଅଧିକ ଶକ୍ତ ଲାଗୁଥାଏ ଜନ୍ତପକ୍ଷ କଣିବା ଲାଗି ଖରିଦଦାରଙ୍କୁ ପ୍ରଦର୍ଶନ କରିବା ! ପଟଚଟରେ ଥିବା କୁତ୍ସିତ ମୁହଁ ଗୁଡ଼ାକୁ ଗ୍ରହିପାରୁ ନ ଥାଏ ମୁଁ—ଏତେ ଖରାପ ଦିଶୁଥାଏ ସେଗୁଡ଼ାକ, ସେଗୁଡ଼ାକ କେମିତି ବିକି କରିବାକୁ ହେବ, ବୁଝି ପାରୁ ନ ଥାଏ ଆଦୌ, ଆଉମା କାହାଣୀରୁ ମନରେ ମୋର ଅଙ୍କି ହୋଇ ରହିଥାଏ—କୁମାରଟି ଥିଲେ କଅଁଳ ସୁନ୍ଦର ଟେଣ ଭଲ ସୁକୁମାରୀ ସୁନ୍ଦରୀ, ଏମିତି ବି ଦେଖିଥାଏ ତାଙ୍କୁ ପକ୍ଷପକ୍ଷିକାର ଛବିଗୁଡ଼ିକରେ, ପଟଚଟରେ କିନ୍ତୁ ଦିଶୁଥାନ୍ତି ବୁଢ଼ୀ ଯେଉଁ, ଆଡଯୋଡ଼ି, ହଂସୁଳୁଟୀ, ଲମ୍ବାବଙ୍କା ନାକ, କାଠୁଆ ହାତ ଯେମିତି ତାଙ୍କର ।

ହାଟଦିନ-- ପ୍ରତି ବୁଧବାର ଆଉ ଶୁକ୍ରବାର ଆମର ବ୍ୟବସାୟ ବିକିବଟା ଚାଲୁଥାଏ ଜୋରସୋରରେ—ବେଶ ଭଲଭାବରେ । ଆମ ପାହାଚସବୁରେ ସବୁବେଳେ ଚଢ଼ିବାରେ ଲାଗିଥାନ୍ତି 'ଗୃହୀଗୁଡ଼ିକ' ବୁଢ଼ା ବୁଢ଼ୀ ସବୁ, ଏମିତିକି ବେଳେ ବେଳେ ଗୋଟାଏ ଗୋଟାଏ ପୁରା ପରିବାର ପିଲାଛୁଆଙ୍କଠୁ ବୁଢ଼ା ବୁଢ଼ୀ ପର୍ଯ୍ୟନ୍ତ—ସେହିପୁରୁଣା 'ଧର୍ମର' ବିଶ୍ୱାସୀସବୁ—ସେହି ପନ୍ଥୀ—ଫଣ ଫଣ ସ୍ୱର ଗର ଗର ମୁହଁ—ବୃନ୍ଦଆଟା ପ୍ରତି ଅବିଶ୍ୱାସରେ 'ଫନ୍ଦସ୍ତୀ' ବଣୁଆ ଲୋକଗୁଡ଼ିକ, ଭଲଗାର ଉପର ଅଞ୍ଚଳର ସେମାନେ । ଦେଖୁଥାଏ ଗୋଟାଏ ଗୋଟାଏ 'କୋଠମାଲୁ' ଲୋକ ଗୁଡ଼େଇପୁଡ଼େଇ ହୋଇ ମେଣ୍ଢାଚମ ଆଉ ହାତକଟା ସୂତାର ବୁଣା ପୋଷାକ-ପଟରେ ଧୀରେ ଧୀରେ ଅଲ ଅଲ ଭାବରେ ନିଜ ବାଟ କାଟିକାଟି ଚାଲୁଥାନ୍ତି ଅଳନ୍ଦରେ—ଏତେ ଯେମିତି ଭୟ ହେଉଥାଏ ତାଙ୍କର ଅଳନ୍ଦଟା ଭାଙ୍ଗିଯାଇ ଭୁଷୁଡ଼ି ପଡ଼ିବ ମୁହୂର୍ତ୍ତିକରେ ଆଉ ମୋତେ କେମିତି ଲାଜ ଲାଜ, ଅଡୁଆ ଅଡୁଆ ଲାଗୁଥାଏ ତାଙ୍କ ପାଖକୁ ଯିବାପାଇଁ—ତାଙ୍କୁ କିଛି କୋବଲେଇ କହିବା ପାଇଁ । ଟାଣିଓଟାର ହୋଇ ଚେଷ୍ଟା କରିବାକୁ ପଡ଼ୁଥାଏ ମୋତେ ତାଙ୍କ ବାଟ ଅଟକି ନିଜକୁ ଉଭା କରେଇ ତାଙ୍କର ହାସ୍ୟକୁଆ ବିଶାଳ ବିଶାଳ ଜୋତା ପାଖରେ ମଶାଭଳି ଗୁଣୁଗୁଣୁ ହୋଇ ନାଚିବା ପାଇଁ ।—

"କଣ କଣ ଦରକାର ଆପଣଙ୍କର, ଆଜ୍ଞା ? ଆପଣଙ୍କ ଭଳି ଲୋକତ କହିଁ କେଉଁଠି ନ ଥିବେ—ଏତେ ବଢ଼ିଆ, ଏତେ ସୁନ୍ଦର ଲୋକ ଆପଣ ? କଣ ଦରକାର ଆଜ୍ଞା ? ପୂଜାବିଧି ପୁସ୍ତକ, ପ୍ରାର୍ଥନା ବହି, ବାଇବେଲର ସ୍ତୋତ୍ରଗୁଡ଼ିକ, ମୂଳଘଟଣା ସାଂଗରେ ସଂପର୍କ ଥାଇ ଟୀକା ଥାଇ ? ଯେଫ୍ରେମ୍ ସିରନ୍ ଆଉ କରଲଙ୍କ ବହି ? ଥରେ ଟିକଏ ଦୟାକରି ଆଖି ପକାନ୍ତୁନା ? ଦେଖିଯାଆନ୍ତୁ, ଯେମିତି ଇଚ୍ଛା ସେମିତି ପଟଚିତ୍ର, ସେମିତି ମୂର୍ତ୍ତି, ଯେକୌଣସିଟି ଚାହିଁବେ— ସମାନ ଦାମ ନୁହେଁ, ଅଲଗା ଅଲଗା ଦାମର, ଚମତ୍କାର 'କାରୁକାମ' ବଢ଼ିଆ, ବଢ଼େଇ ବେଶ୍ ଗାଢ଼ ରଙ୍ଗର ! ଆମେ ରଙ୍ଗ କରୁ, ସେଥିପାଇଁ 'ଅର୍ଡର' ଆଦେଶ ନେଉ ଯେକୌଣସି ସାଧୁସନ୍ଥଙ୍କ କୁମାରୀଙ୍କ ଚିତ୍ର ଚାହିଁବେ—ଯେମିତି ରଙ୍ଗ କରିବାକୁ, କରିଦେବୁ ଆଜ୍ଞା । ଆପଣ ବୋଧହୁଏ ଚାହିଁବେ ଆଉ କାହାପାଇଁ—କାହାର 'ଇଷ୍ଟଦେବତା' ଇଷ୍ଟଗୁରୁ କି କାହା କୁଳଗୁରୁ କୁଳଦେବତାର ଚିତ୍ର ପାଇଁ ଅର୍ଡର ଦେବେ—।" ଜାଣନ୍ତି ନା, ରୁଷରେ ଆମର ହେଉଛି ସବୁଠୁ ବଳି ବଢ଼ିଆ ସବୁଠୁ ବଳି ଉତ୍କୃଷ୍ଟ କାରଖାନା ? ସହର ଯାକରେ ତ ହେବାର କି କଥା !"

କଥାରେ 'ଅଭେଦ୍ୟ' ଖରିଦଦାର ଲୋକଟା, କିଛି ସମୟ ଅନାଇ ରହୁଥାଏ ମୋତେ ନୀରବରେ—ଯେମିତି କୁକୁରଟାଏ ମୁଁ—ତା'ପରେ, ଥାଏ ଥାଏ ହଠାତ୍ ମୋତେ ଠେଲି ଆଡ଼େଇ ବନ୍ଧୁଆ ହାତରେ ପଶିଯାଉଥାଏ ପଡ଼ୋଶୀ ଦୋକାନରେ, ଆଉ ଆମ ଦୋକାନ କର୍ମଚାରୀଟା ତା ବଡ଼ କାନ ଦ'ଟା ମଳି ମଳି ରାଗରେ ଗରଗର ହେଉଥାଏ—

"ହୁଁ, ଛାଡ଼ିଦେଲୁ, ଛାଡ଼ିଦେଲୁ ତାକୁ, ଏଁ ହୁଁ ! ଖାସା ଦୋକାନୀ—ଖାସା 'ବକାଲି' ରୁ—!

ଆଉ ଦୋକାନଟିରୁ ଯେତେବେଳେ ଠିକ ଅନାଡ଼ି ହୋଇ ପଡ଼ୁଥାଏ ମହୁଆ ମହୁଆ ଶବଦଗୁଡ଼ାଏ ନରମ ନରମ ସ୍ୱରରେ ।

"ଆପଣଙ୍କ— ମୋର ତ ଅତି ଆପଣାର ଚିହ୍ନା ଶରଚାସ୍କ ଲୋକ କେତେ କାଳର ଆପଣ ! ଆପଣ କଣ ଜାଣନ୍ତି ନାହିଁ—ମେଣ୍ଢା ଚମଡ଼ା ବ୍ୟବସାୟ ଏମିତିକ ଚମଡ଼ା ଜୋତା ବେପାର ନୁହେଁ, ଆମର ଅମେ ବ୍ୟବସାୟ କରୁ, ଭଗବାନଙ୍କ ଆଶୀର୍ବାଦ ସବୁ ସୁନାରୁପାଠୁ ବଳି, ଦୁର୍ମୂଲ୍ୟ ମହରଗ ସାଂସାରିକ ସବୁ ତ ତୁଚ୍ଛ ଯାହା ଆଗରେ—ଅମୂଲ୍ୟ ଯାହା —"

"ଧେତ୍ ତେରିକି !" ଆମ ଦୋକାନ କର୍ମଚାରୀ ଜଣକେ ଫୁସ ଫୁସ କରି କହୁଥିଲେ । ଈର୍ଷାରେ ପୁଣି କଥାଗୁଡ଼ାକ ପ୍ରତି କହିବାଶୈଳୀ ପ୍ରତି ଖାତିରରେ—ଶ୍ରଦ୍ଧାରେ ! "ଶୁଣ ଟିକେ ଶୁଣ, କେମିତି ସେ ତପାଭୂଷାଟାର କାନରେ ତୁଳା ବିଣ୍ଡା ମାରିଦେଇଛି ସେ ! ଶିଖ୍ ତା'ଠୁ, ଏ ପାଠ ଶିଖ୍ ।"

ମୋର ସବୁ ବିବେକବୁଦ୍ଧି ଖଟାଇ ଶିଖିବାକୁ ଚେଷ୍ଟା କଲି, ବିଶ୍ୱାସ କରିଥାଏ ଯେତେବେଳେ ହାତ ଦେଇଛି, ପଶିଚି ଗୋଟିଏ କାମରେ—ତାକୁ

ଭଲ ଭାବେ ବୁଝେଇ ବି ଯେମିତି ହେଉ—କିନ୍ତୁ ଖରିଦଦାରଙ୍କୁ ଭୁଲେଇ ଭଣ୍ଡେଇ-ବାରେ, ସେମାନଙ୍କୁ ସେମାନଙ୍କ ଦ୍ୱାରା କିଣେଇବାରେ ଠିକିଏ ହେଲେ ଭଲ ପ୍ରତିଭା ଦେଖାଯାନ୍ତା ମୋର । କାହିଁକି ସବୁବେଳେ ମନରେ ଦୁଃଖ ଆସୁଥାଏ, ବିଷାଦ ଆସୁଥାଏ—ଦେଖିଦେଲି କ୍ଷଣି ସେହି ନୀରବାତ୍ମକ ଗମ୍ଭୀର ରୂପ, ଫଣ ଫଣ ମୁହଁ ବୃଦ୍ଧ ଲୋକଗୁଡ଼ିକଙ୍କୁ, ଆଉ ସେହି ମହାଭଲ ବୁଢ଼ୀମାନଙ୍କୁ ଭଣ୍ଡାଉଥା, କୁକୁର ଭଳି ହୀନମାନିଆ ନିକୃଷ୍ଟ ନିକୃଷ୍ଟ ମୁହଁରେ, ଅନବରତ ହସୁଥାଏ ମୁଁ, ମନଭୁଲାମନ ଭଳି ହେଉଥାଏ, ତାଙ୍କ କାନରେ ସବୁ ମୁରମୁର କରି ଥରି ଥରି କହୁଦେବି ଚନ୍ଦ୍ରପଟ ଓ ମୂର୍ତ୍ତିଗୁଡ଼ିକର ଅସଲ ମୂଲ୍ୟ ଯାହା ଯେମିତିକି ଅଧିକା କୋଡ଼ିଏଟି କପର୍ଦ୍ଦକ ଦେବାକୁ ନ ପଡ଼େ ତାଙ୍କୁ, ଠକାଇ ନ ହୁଅନ୍ତେ ସେମାନେ । ଗୋଟି ଗୋଟି ସମସ୍ତେ ସେମାନେ ଲାଗୁଥାନ୍ତି ମୋତେ, ଏତେ ଗମ୍ଭୀର, ଏମିତି ସ୍ନେହଳ ଉପାସିଆ—ଆଶ୍ଚର୍ଯ୍ୟ ହୋଇଯାଉଥାଏ, କେମିତି ସେମାନେ କେଉଁଠୁ ଅତି ସାଧାରଣ ଭାବରେ କିଣା ହେଉଥାଏ ସେଇ 'ସାଲଟର' ସ୍ତୋତ୍ରକବଚ ବହି ଖଣ୍ଡିଏ ଖଣ୍ଡିଏ ପାଇଁ ଦେଇପାରୁଥିବେ ସାଢ଼େ ତିନି ରୁବଲ ଲେଖାଏଁ ।

ଆହୁରି ଆଶ୍ଚର୍ଯ୍ୟ ଲାଗୁଥାଏ ମୋତେ—ସେଇ ବହିଗୁଡ଼ିକ ସମ୍ପର୍କରେ ସେମାନଙ୍କର ପୁଣି ଏତିକି ଜ୍ଞାନ ଥାଏ, ଏତେ କଥା ଜାଣିଥାନ୍ତି ସେମାନେ, ଚନ୍ଦ୍ରପଟ ଆଉ ମୂର୍ତ୍ତିଗୁଡ଼ିକର କାରିଗରୀ କମକୃଷ୍ଟ ଦେଖି ଏମିତି ପସନ୍ଦ କରି ବାଛି ପାରୁଥାନ୍ତି ସେମାନେ ! ଥରେ ପାଟଲିବାଳିଆ ବୁଢ଼ାଟିକୁ ଲୋଭ ଦେଖେଇ ଚେଷ୍ଟା କଲି ଦୋକାନକୁ ଆସିବାକୁ—ବୁଢ଼ାଟି କହିଲା :

"ସତ କହୁନୁ, ବାବୁ ! ପିଲା ଲୋକ ତୁ, ସତ କହୁନୁ ଯେତେବେଳେ କହୁଚୁ ତମର ଝୁଷଯାକରେ ହେଉଛି ସବୁଠୁ ଭଲ ଚନ୍ଦ୍ରପଟ ଓ ମୂର୍ତ୍ତି ତିଆରି କାରଖାନା । ମସ୍କୋରେ ସବୁଠୁ ଭଲ 'ରେଗୋଝୀନ' କାରଖାନା ।"

ଲାଜ ଅପମାନରେ ସଢ଼ି ଯାଇ ଆଡ଼େଇଗଲି ମୁଁ—ଆଉ ସେ ଧୀରେଧୀରେ ଆଗେଇଗଲା ତା ବାଟରେ—ଡା. ପନୀନ୍ ନାହିଁ ପଡ଼ୋଶୀ ଦୋକାନରେ ବି ।

"ପାଇଲୁ, ପାନେ ପାଇଲୁ ତ ! ଧରାପଡ଼ିଲୁ ?" ଦୋକାନ କର୍ମଗୁରୁ ଛିଗୁଲେଇ ହର୍ଷରେ କହି ଉଠିଲା ସାଙ୍ଗେ ସାଙ୍ଗେ ।

"ବାଃ ବେଶ୍ ତ ତମେ—ରେଗୋଝୀନ କାରଖାନା କଥା କେବେ କିଏ କହିଚି ଭଲା ମତେ, କେବେ ତ କହିନ ।"

ଖୁବ୍ ଏ ଗାଳିଗୁଲଜ, କଟା, ଯମା ଆରମ୍ଭ କରିଦେଲା ଦୋକାନ କର୍ମଗୁରୁ ।

"ସବୁବେଳେ, ସବୁବେଳେ, ତାହାରି ପରି, ସେଇ ବୁଢ଼ାଟା ପରି—ମଉନମୁହାଁ ଭୂତ୍‌ଭାନ ଚୋରଙ୍କ ପରି କାନକାନ ନକୁଛିଆ ଜୀବ—ସବୁ ଜାଣିଶୁଣି, ଖାଲି ବକର ବକର ହୋଇ ଲେପଟେଇ ଲେପଟେଇ ଉପର ଉପର ପୁଣି କେତେବେଳେ ଆସନ୍ତି ଯାଆନ୍ତି—ପାପ, ପାପ ତ !"

ଚକଚକିଆ ଫିନ୍‌ଫାଟ ଖର୍‌ଚୀ ଲେବଟା—ଦୋକାନ କର୍ମଚାରୀ ଅକାମିକା ମୁନ୍ଦର ଚେହେରାର । ଗ୍ରାହିକଏ ଦେଖିଲେ ଘୃଣାରେ ଅନ୍ୟ ଦୃଷ୍ଟି ହେଇଯାଉଥାଏ ତାର । ଥରେ କହି ବସିଲା ମୋତେ—

"କାଶ୍ମୀର, ସ୍ୱର୍ଗକ ଚଳୁର ମୁଁ କେମିତି ମୋତେ ଭଲ ଲାଗେ ଅନେକ ଜିନିଷ—ବାଜନା ଭଲ ଭଲ ମଦ ଜର, ଧୂପ ଦୀପ, ଧୂଆଁଧୋଇ ପାଣି, ଏମିତି ଯେତେ ଯେତେ ଜିନିଷ—ଆଉ ଦେଖ୍, ଦଳେ ଜା କର ଏମିତିକା, ମୋ ଭୂତର ମୋ ଚଲଣିର ଲୋକ, ମାଲିକାଣୀଟା ପଞ୍ଚ କପେକ ପାଇବ ବୋଲି ହାତ ମଳାମଳି ମୁଣ୍ଡ ନୁଆଁଇ ପାଦ ଘଷି ଦେଖି ନଜର ଦାନ ନକୁଚି ହେବ, ଛୋଟଗ୍ରାହୀଗୁଡ଼ାଙ୍କ ଆଗରେ । କଣ ଭାବୁଛ, କେମିତି ପେଟରେ ପଶିବ, ଏ କଥାଗୁଡ଼ାକ ମୋର କେମିତି ସହିବ ଯେ ! ଗ୍ରାହୀଟାଏ, ଚୋଟ କଲେ ବଟାଏ ଯେ ଇଃ କ ଗନ୍ଧିଆ କଣ୍ଠା ନମଜ୍ଞାର, ଶାଗୁଣାର, ଢକୁଣିଆ ଲୋକଟାଏ ଏ ମାଟି ଉପରେ, ଏ ପୃଥିବୀ ଉପରେ ଘାଲୁ ଘାଲୁ ଅଛି ମୁଁ ।"

ଚଡ଼ ଚଡ଼ ହେଇ ଚୁପ ହୋଇଗଲା ମେ ଛୁଆଁ କୁ ଛୁଆଁ ।

ଗ୍ରାହୀଗଣଙ୍କୁ ଦେଖିଲେ ମୋତେ ଖୁସି ଲାଗୁଥାଏ, ଭାରି ଭଲ ଲାଗୁଥାଏ, ଜନ୍ମ ପତ୍ୟେକଟି ଦେଖୁଥାଏ ମୁଁ, ଜାଣି ପାରୁଥାଏ ରହସ୍ୟମୟ ଅବୋଧ କିଛି ଯେମିତି ଦେଖିଥିଲି ମୁଁ ଅନୁଭବ କରିଥିଲି ସ୍ୱାନୋଲରେ ଫଷ୍ଟର୍ଣ୍ଣରେ ଆସି ।

ଦେଖୁଥାଏ ମୁଁ—ମେଣ୍ଢା ଚମର ପୋଷାକ ଉପରେ ଗୋଟାଏ ଚିରା ଗାଉନ ବା ଆଲଖାଲା ଓଟାରି ହୋଇ ରହିଥାଏ । କ୍ଲାନ୍ତିରେ ଅବସାଦରେ ଘୋଷାରି ହୋଇ ଚଉହଡା ଆଣ୍ଠୁଟାଏ କେବଳ ପଶିଆସେ ଦୋକାନ ଭିତରକୁ—କାଢ଼ିପକାଏ ବାଳନାଳୁଆ ଟୋପିଟିକୁ ମୁଣ୍ଡରୁ, ଯୋଡ଼ାଏ ଆଙ୍ଗୁଠିରେ ଅଙ୍କିଦଏ କ୍ରୁଶଚିହ୍ନ, ଆଖି ଦୁଇଟି ତ ର କଜ୍ଜଳ ହୋଇ ଲଖି ରହେ ଠାକୁରଙ୍କ ମୂର୍ତ୍ତି ଥିବା କୋଣରେ ,ସେଇ ଯେଉଁଠି ଜୁଲୁଜୁଲୁ ଜଳୁଥାଏ ଦୀପ—ତା ପରେ ଭୁଲି ପଡ଼େ ସେ ଅପବର୍ଣ୍ଣ ଅପରାଜା ମୂର୍ତ୍ତି ଗୁଡ଼ାକୁ ଅଡ଼େଇଯାଇ ଶେଷରେ ନୀରବ ଦୃଷ୍ଟି ଦିଏ ପକାଇ ଖୁରିଆଡ଼ କୁ କହେ ସେ ।

"ସେଇ ଟୀକା ସ୍ତୋତ୍ର ବହିଗୁଡ଼ିକରୁ ଖଣ୍ଡିଏ ଦିଅ ଆମକୁ ।"

ତାପରେ ଚିରା ଆଲଖାଲା (ଉପର ପୋଷାକ)ର ଅସ୍ତିନଟାକୁ ଓଲଟେଇ କାଢ଼ିନେଇ ସେଇ ବହିଖଣ୍ଡିକର ମଲାଟ ଉପରେ ଅକ୍ଷର ଗୁଡ଼ାକୁ କଷ୍ଟେମଷ୍ଟେ ପଢ଼ିଲା ସେ ବହୁତ ସମୟ । ଆଉ ଧୀରେ ଧୀରେ ନାଗରବଦରେ ଗଢ଼ି କରେ ଫାଟଲ ମାଟିଆ ଓଠ ଦୁଇଟି ।

"ହୁଏତ ଆଉ କିଛି କେମିତିକା କହି ଥିବ ଆଗକାଳର ପୁରୁଣା ।"

ଆଗକାଳର ପୁରୁଣା ପୋଥି, ବାଇବଲର ଦାମ ହଜାର ହଜାର ରୁବଲ୍ । ତମକୁ ତ ଅଜଣା ନୁହେଁ, ତୁମେ ବେଶ୍ ଜାଣ ।

"ଜାଣେ ।"

ଓଦା କଣ କଣ ଆଙ୍ଗୁଠି ଟିପକୁ ଘୂଷିଟି ଓଲଟାଇ ଲଗେ ପୃଷ୍ଠା ଗୁଡ଼ିକ ବହି ଭିତରର—ପୃଷ୍ଠାର ଧାରରେ, କଡ଼ରେ ରହିଯାଏ କଳାସିଆ ଦାଗ ! ଦୋକାନ କର୍ମଚାରୀ ଜଣକ ଘରରେ ଅପଲକ ଆଖିରେ ଅନାଇ ରହିଥାଏ, ତା ମୁଣ୍ଡ ଉପରକୁ, ବହି ବହି—

"ଯେତେ ପବିତ୍ର ପୁରାଣ ପୋଥି ଗାଉଛ, ସବୁ ସମାନ ସମସ୍ତଙ୍କ, ତୋହିଁ ଏ ମୁରୁର—ଭଗବାନ ତ ଆଉ କାହାର 'ବାଣୀ' ଅଙ୍କୁ ଅଉ ବଦଳାନ୍ତି ନାହିଁ ।"

"ଶୁଣିଛୁ ଆମେ ଅନେକ ଥର ଶୁଣିଛୁ ଏ କଥା, ଭଗବାନ ନିଜ 'ବାଣୀ' ବଦଳାନ୍ତି ନାହିଁ, କିନ୍ତୁ ନିଜନ ବଦଳାଉଥିଲେ ।"

କହିହିଁକୁ ବନ୍ଦ କରିଦେଇ ଖରିଦଦାରଟି ବାହାରିଯାଏ ଦୋକାନରୁ ଚୁପ୍‌ଚାପ !

ବେଳେବେଳେ (କେତେବେଳେ କେମିତି), ଏହି ଘୋର ଜଙ୍ଗଲର ବଣୁଆ ଲୋକଗୁଡ଼ିକରୁ କେତେକ ଯୁକ୍ତି କରି ବସନ୍ତି, ତର୍କ କରନ୍ତି ଦୋକାନ କର୍ମଚାରୀଟି ସାଙ୍ଗରେ । ବେଶ୍ ଲକ୍ଷ୍ୟକରି ବୁଝି ପାରୁଥାଏ ମୁଁ, ସେମାନେ "ପବିତ୍ର ଲେଖା-ଗୁଡ଼ିକ ସଂପର୍କରେ ଯଥେଷ୍ଟ ବେଶୀ ଭଲଭାବରେ ଅବହିତ ଥାନ୍ତି । ଦୋକାନୀ କର୍ମଚାରୀଙ୍କ ଠାରୁ ବଳି, ତା' ତୁଳନାରେ !"

"ପାଣି-ପାଚ ସନ୍‌ସନ୍‌ଆ ଅଞ୍ଚଳର ଚଳମ ଲିଆ ସ୍ଥାନ ଧର୍ମୀୟତା ଏ ।" ଭୁନ୍ଭୁନ୍ ହୁଏ ଦୋକାନ କର୍ମଚାରୀଟା !

ଅଦ୍ଭୁତ ନ ମୁଁ ଦେଖି ପାରୁଥାଏ ବେଶ୍ । ନୂଆ ଅଧୁନିକ ବହିଗୁଡ଼ିକ ମନକୁ ପାଉ ନ ଥାଏ ସେତ ଘୂଣୀଲୋକଙ୍କ, ତଥାପି ସେ ସେଗୁଡ଼ିକୁ ଅନାଉଥାଏ ଭକ୍ତିରେ, ଦୁଃଖରେ, ସମ୍ମାନ ଦେଖାଇଲା ଭଳି ଆଉ କି ଧରୁଥାଏ ଥରକାଳ । ଆଡ଼ ଆଡ଼ ଛୁଆଁରେ ଅଛୁଆଁକୁ ଛୁଇଁଲାପରି—ସତେ ଯେମିତି ଭୟ ହେଉଥାଏ ତାର ଚଟେଇ ଭଳି ଉଡ଼ିଯିବ, ଯେଗୁଡ଼ିକ ହାତରୁ ଖସିଯାଇ ? ଏଥିରେ ତ ମୋ ତେ ଏତେ ଖୁସି ଲାଗୁଥାଏ ଯେ କହିଲେ ନସରେ । କାରଣ ବହିଟିଏ ଥାଏ ମୋ ପାଖରେ ଅତି ଚମତ୍କାର ଚିଜ, ଯେଉଁଥିରେ ଅବଦ୍ଧ ହୋଇ ବନ୍ଦୀ ହୋଇ ରହିଥାଏ ଲେଖକର ଆତ୍ମା ! ଯେତେବେଳେ ମୁଁ ପଢ଼ିବସୁଥାଏ ବହି କଣେ, ମୁକ୍ତ କରିଦେଉଥାଏ ସେହି ବନ୍ଦୀ ଆତ୍ମାଟିକୁ—ଯିଏ ମୋ ସାଙ୍ଗରେ ହୃଦରେ ହୃଦ ମିଳାଇ 'ଆଳାପ' ଜମାଉଥାଏ ଅତି ରହସ୍ୟଜନକ ଙ୍ଗରେ !

ଅନେକ ସମୟରେ ବୁଢ଼ାବୁଢ଼ୀଗୁଡ଼ିକ ସୁଧାରକ ନକନ୍ ର ବହୁ ଆଗର ବହି ଆଣି ଯାଉଥାନ୍ତି ଆମକୁ ବିକିବା ଇଚ୍ଛାରେ—ହୁଏତ ବା ସେମାନେ ଅଣିଥାନ୍ତି ସେମିତିକା ବହିର ତାଲିକା ସବୁ ଇଂରେଜୀ ବା କଡ଼ଷ୍ଟେନେତସର ବାବାଜୀ-ଗୁଡ଼ିକଙ୍କ ଦ୍ୱାରା ସୁନ୍ଦର ରୂପେ ଚିହ୍ନ ହୋଇ ଲେଖା ହୋଇଥାଏ ନାଆଁଗୁଡ଼ିକ ବହିର । ଆଣିଥାନ୍ତି ଦମିଙ୍କ ଟ୍ରେଷ୍ଟୋଭସ୍କିଙ୍କ ଦ୍ୱାରା ସଂଶୋଧିତ ମାର୍ଜିତ ହୋଇ

ଅଥବା 'ରତ୍ନାବଳୀ'ର ନକଲ ହେବ, ଅତି ପୁରୁଣା କାଳର ମୂର୍ତ୍ତି ଆଉ ଟିଣ—ନୂଣ (କଳେଇ) ହୋଇଥିବା ପିତଳର ଘଣ୍ଟି, ଆଉ କେତେ ଧାତୁ ତିଆରି କେତେ ଶିଳ୍ପ ଦରିଆପାରି ଦେଶର । ରୂପାର ତଙ୍କି, କଟକୁଳମାନ ଯାହାକୁ ଏବେ ମୟୂର ରାଜରାଜୁଡ଼ାଏ ଦାନ କରିଥାନ୍ତି ତାଙ୍କ 'ଆଦର' ପାଇଥିବା ମଦଖଟି ମାଲିକ-ମାନଙ୍କୁ ! ଏଇ ସବୁ ଯାଚୁଥାନ୍ତି ସେମାନେ—ସେହି ବୃଷୀଗୃହକ ଘେରରେ ଲୁଚି ଛପିକା, ଏଣିକି ତେଣିକି ଚବର ଚବର ହୋଇ ଅନେଇ ଅନେଇ ।

ଆମର ଦୋକାନ କର୍ମଚାରୀ ଜଣକ ଅତି ସନ୍ଦେହୀ ଲୋକ ମୋ, ଉଭୟେ ଆଖିକାନ ଖୋଲି ରଖି ଟାକି ରହିଥାନ୍ତି, ସେଭଳି 'ଜିନିଷପତ୍ର' ସର୍ବସହଙ୍କୁ । ଚୁଲିକ ଚତୁରପଣରେ ଖଣ୍ଡ କରିବାରେ ହେପଗୁଙ୍କୁ ଚେଷ୍ଟା କରୁଥାନ୍ତି ପରସ୍ପରକୁ ଟପି ଯିବାରେ । ପ୍ରାଚୀନ ସଂପଦଟିକୁ କିଣିବା ଲାଗି କେତେ ବା ଦେଉଥାନ୍ତି—ଦଶ ଟଙ୍କାରୁ ବେଶୀ ନୁହେଁ, ତାକୁ ପୁଣି ଧନୀ ପୁରୁଣାପନ୍ଥୀ ଧର୍ମବିଶ୍ୱାସୀଙ୍କୁ ବିକୁଥାନ୍ତି ଶହ ଶହ ଟଙ୍କାରେ !

"ଦେଖ, ଆଖି ରଖି ରଖିଥା । ତୀକ୍ଷ୍ଣ ଆଖି ରଖିଥା—ମନମୂନ ଲଗାଇ, ବୁଝିଲୁ, ସେଇ ପୁରୁଣା ଭୂତପ୍ରେତ ଡାହାଣୀ ଚଟେଶ୍ୱରୀଙ୍କ ଉପରେ ! ଦୋକାନ କର୍ମଚାରୀଟା ଚେତେଇ ଦେଉଥାଏ ମୋତେ—"ତାଙ୍କର ସେଇ ବୁଜୁଳିରେ ଚଣ୍ଡିକରେ ଅଣିଥାନ୍ତି ସେମାନେ ଅମୂଲ୍ୟ ନିଧି । ଯେତେ ଆମର ଭାଗ୍ୟ ସବୁ !"

ଖରିଦ କରିବା ଲାଗି (ସୁବିଧାଜନକ) ଭଲ ଖାଉରେ ପାଇଲା ମାତ୍ରେ ସେ ମୋତେ ପଠାଇ ଦେଉଥାଏ ସେହି ମହାନ୍ତ ପିଉନ—ଭିପିଲସେଭିଟକୁ ଡାକି ଆଣିବା ପାଇଁ ସେଇ ଯାହାର ପ୍ରାଚୀନ ପୋଥି ପୁରାଣ, ମୂର୍ତ୍ତି ପୁତ୍ତଳି ଚିତ୍ରପଟ୍ଟ ଆଉ ସେମିତିକା ଜିନିଷ ସଂପର୍କରେ ଥାଏ ପରିପୂର୍ଣ୍ଣ ଦୋରସ୍ତ ଧାରଣା, ଅଗାଧ ଜ୍ଞାନ !

ଡେଙ୍ଗା ବୁଢ଼ା ମଣିଷଟିଏ, ବୁଦ୍ଧିଦୀପ୍ତ ଆଖି ଯୋଡ଼ିକ ତାର, ମଧୁରିଆ ହସ୍‌ପ୍ରିୟ ସିଆ ମୁହଁ ଆଉ 'ଭଗବାନ' ଭ୍ୟାପିଲଙ୍କର ଲମ୍ବା ଦାଢ଼ି ତାର ! ଗୋଟାଏ ପାଦର ବୁଢ଼ା ଆଙ୍ଗୁଠି ନଥାଏ ତାର, କଟି ଯାଇଥାଏ କେବେଠୁଁ, ସେଥିପାଇଁ ବାଡ଼ି ଧରି ଚାଲୁଥାଏ ସେ । ଖରା ହେଉ ଶୀତ ହେଉ ସବୁ ଋତୁରେ—ପିନ୍ଧିଥାଏ ହାଲୁକା ଜାମା ଉପରୁ ଆଲଖାଲ ବା ଜେହେରେଣ ଭଳି ପାଦ୍ରିଙ୍କର, ଆଉ ମୁଣ୍ଡରେ ଥାଏ ତାର ଆଣ୍ଟିକା ଅକ୍ଟୁଭର ମଖମଲ ଟୋପି ।

ସାଧାରଣତଃ ତାର ଚାଲି ଚଳଣି ଆଉ ଚଞ୍ଚଳ ତେବେ ଦୋକାନମୁହଁ ମାଡ଼ିଲା ଛଣି ବଙ୍କେଇ ନୁଆଇଁ ନେଉଥାଏ କାନ୍ଧ ଦୁଇଟିକୁ ଜଣେ ସଚିବ ଗୁଡ଼ୁଥାଏ ଥରେକେ । ଚୁପୁ ଚୁପୁ ହୋଇ ପ୍ରାର୍ଥନା କରି ଶ୍ଳୋକ ପଢ଼ି-ପଢ଼ି ପୁରାଣପନ୍ଥୀ ଧର୍ମବିଶ୍ୱାସ ଅନୁସାରେ ଗୋଟାଏ ଆଙ୍ଗୁଠିରେ ଆଉ ଗୋଟିଏ ଆଙ୍ଗୁଠି ଛନ୍ଦେଇ ଅଙ୍କି ଦେଉଥାଏ କ୍ରୁଶ ଚିହ୍ନ ! ବାର୍ଦ୍ଧକ୍ୟର ଆଉ ପବିତ୍ର ଧର୍ମ ଆଚରଣର ସେହି 'ପ୍ରଦର୍ଶନୀ'ଟିକ ଦୁଷ୍ପ୍ରାପ୍ୟ ମୂଲ୍ୟବାନ ପଦାର୍ଥର ବିକ୍ରେତା-ମାନଙ୍କ ପ୍ରାଣରେ ସଞ୍ଚାର କରି ଦେଉଥାଏ ଭୟ ଆଉ ବିଶ୍ୱାସ !

"ସାଂସାରିକ ବିଷୟ ଯେନି କାରବାରଟା କଣ ତମର ମୋ ସାଥିରେ ?" ପଚ୍ଚାର ଦେଉଥାଏ ବୁଢ଼ା !

"ଏ ଲୋକ ମୂର୍ତ୍ତିଟାଏ ଆଣିଚ, ଜୋର ସହୁତ କହୁଚ, ଜବରଦସ୍ତ କହୁଛି ଏହା ଗୋଟାଏ ଷ୍ଟ୍ରଗୋନଭ ଢଆଣ !"

"କଣ କହିଲ ?"

"ଗୋଟାଏ ଷ୍ଟ୍ରଗୋନଭ ମୂର୍ତ୍ତି !"

"ହିଁକିଏ କାଲ ମୁଁ, ଜାଣିଚ—ମୋ କାନ ଦୁଇଟା ବନ୍ଦକରି ଦେଉଛି, ନକଳଙ୍କ ଚେଲାଯାକ ଯେଉଁ ଖରାପ କୁତ୍ସିତ କଥା ରଟେଇଥାନ୍ତି ।

ଟୋପ କାଢ଼ି ମଥା ଉପରୁ ମୂର୍ତ୍ତିଟାକୁ ଚଜପଟଙ୍କୁ ଧରୁଥାଏ ସେ ସାମନ୍ତବଲବଦରେ ଭୂମି ସହିତ, ନିରଖି ନିରଖି ଦେଖୁଥାଏ ଚଜକୁ—ତା'ପରେ ପରଖି ଲଗୁଥାଏ କର ଓ ଧାର, ଆଉ କାଠ କଣ୍ଢାଗୁଡ଼ାକ ଆଖି ଦୁଇଟାକୁ ସଙ୍କୁଚେଇ ଟୁପୁଟୁପୁ ହୋଇ ।

"ନଗୀଶ୍ବର ନାସ୍ତିକ ନକୋନାଇଟ୍‌ଗୁଡ଼ାକ ପ୍ରାଚୀନ କାରୁକାର୍ଯ୍ୟ ପ୍ରତି ଆମର ଶ୍ରଦ୍ଧା ଦେଖି ସଇତାନଠୁ ଶିଖିପାଇ ମିଥ୍ୟା ବୋଲି ପ୍ରମାଣିତ କରିବା ସକାଶେ—ସାଧାରଣତଃ ଦୁର୍ଲଭ ଦକ୍ଷତାରେ ଅଦ୍ଭୁତ, ଅତି ଅଦ୍ଭୁତ କୌଶଳରେ ନକଲ କରୁଛନ୍ତି, ଏବେ ପବିତ୍ର ମୂର୍ତ୍ତିକୁ ସବୁ, ଦେଖିଲା ମାତ୍ରେ ମନେହେଉଛି ଯେମେ ଚଜପଟଟା ପ୍ରକୃତରେ ଷ୍ଟ୍ରଗୋନଭ ବା ଉସ୍ତ୍ରୁଗଙ୍କର ଅଙ୍କା, ହୁଏତ ଏପରିକି ସୁଜଦାଲଙ୍କର, କିନ୍ତୁ ଅନ୍ତର୍ଦୃଷ୍ଟିରୁ ଆଲୋକ ସଙ୍ଗେ ସଙ୍ଗେ ପ୍ରକାଶ କରିଦେଉଛି ଏହା ଗୋଟାଏ 'ମିଥ୍ୟାଶ୍ବର, ଅସତ୍ୟ କୃତ ।"

ଥରେ ସେ ଗୋଟାଏ ଚଜପଟଙ୍କୁ କି ମୂର୍ତ୍ତିକୁ 'ମିଥ୍ୟାଶ୍ବର' ପରିଣାମ—କୃତ୍ରିମ ବୋଲି କହିଦେଲେ, ନିଶ୍ଚିତ ଭାବରେ ସେଇଟା 'ଦୁର୍ଲଭ' ଆଉ ବହୁ ଅର୍ଥସାପେକ୍ଷ ମୂଲ୍ୟବାନ ପାଲଟି ଯାଉଥାଏ । ବହୁ ପ୍ରଚଳିତ ଶୁଣିଚ ବହୁ ଷ୍ଟଉଭଟକା ଯେନି 'ସନ୍ତି' ଠାକୁରରେ ହୁଅନ୍ତୁଥାଏ ଦୋକାନ କର୍ମଚାରିଙ୍କୁ କେତେ ରୁବଲ ଯାଚନ ହେ, କେତେ ଦାମରେ କିଣିବାକୁ କହିବ ସେ । ଜାଣି ଯାଇଥାଏ ମୁଁ, "ଦୁଃଖ ଓ ବିଷାଦ" ଶବ୍ଦ ଯୋଡ଼ିକରି ଅର୍ଥ ଥାଏ ଦଶ ରୁବଲ ଆଉ "ନକଳ ବ୍ୟାପ୍ତ" ବୁଝାଉଥାଏ ପଚିଶ—ଲଜ୍ଜାଜନକ ଲାଗୁଥାଏ । ସେମାନେ ଯେମିତି ଠକୁଥାନ୍ତି ବନ୍ଦେତାଙ୍କୁ କିନ୍ତୁ ମୋତେ ମଜା ଲାଗୁଥାଏ—କେମିତିକା ରହସ୍ୟ ବ—ବୁଢ଼ା ଯେଉଁ ବତୁର ପଣିଆରେ ଖେଳ ଖେଳୁଥାଏ ସେଥିରେ ।

'ନକୋନାଇଟ୍‌ଗୁଡ଼ାକ—ଏ ନକୋନବ୍ୟାଧ ର କଳା କଳା ବନ୍ଧନ, ତାଙ୍କୁ ସଇତାନ ଶିଖାଇଛି ସାଙ୍ଗରସ୍ତ କଦର୍ଯ୍ୟ କାମ କରିବା ପାଇଁ—ହେଇ ଏବେ, ତମେ ଭାବିବ ଏ 'ମୂଲଦୁଆ' ପ୍ରକୃତ କୃତ୍ରିମ ନୁହେଁ କଦ୍ରତାକୁ ରକ୍ଷା କରିଛି ନକ କରିଛି ଜଣକର ହାତ—କିନ୍ତୁ ଦେଖ ମୁହଁଟାକୁ ଦେଖ—ଏ ମୁହଁ ଅଙ୍କା ହୋଇଛି ଆଉ ଗୋଟାଏ ତୂଳୀରେ ! ପୁରୁଣା ପୋଖତ ଚଜକର ସବୁ ସାଇମନ୍ ଉଷାକଭ

ପରେ ଧର୍ମଦ୍ରୋହୀ ହେଲେ କଣ ହେବ, ସେମାନଙ୍କୁ ଆଙ୍କୁଥିଲେ, ରଙ୍ଗ କରୁଥିଲେ ସମସ୍ତଙ୍କରେ ନିଜେ ନିଜେ, କପଡ଼ା ଉପରେ ମୁହଁଟିକୁ ତୁଳୀରେ କାଟିକୁଟି ଯେମିତି ସେମିତି ଆବଶ୍ୟକ କମାକମି କରୁଥିଲେ, ଛବିର ଆକାର ପ୍ରକାରକୁ, ଆଉ ଗଢି ଦେଉଥିଲେ ଅସଲ ମୌଳିକ ଛବି—କିନ୍ତୁ ଏବର, ଆମର ଏଇ ଏବକାଳର ଅଧମ ଚିତ୍ରକର ଙ୍କ ଚକ୍ଷୁ ଏସବୁ କରିବା ପାଇଁ ଦକ୍ଷ ନୁହନ୍ତି, ଶୁଦ୍ଧାନ୍ତ ନାହିଁ ବା। ମୂର୍ତ୍ତିକୁ ପଟରେ ଚିତ୍ରଣ କରିବା ପୂର୍ବକାଳରେ ଥିଲା ଭଗବତ କର୍ମ ଏବେ ଏହା କାରିଗର ତୁଚ୍ଛା କାରିଗର—ଆଃ, ପ୍ରକୃତ ଧର୍ମବିଶ୍ୱାସୀ ଥିଲେ ସେକାଳର ସେମାନେ !”

ଶେଷରେ ସେ ଦୋକାନର ‘ବନ୍ଦି-ଖଣ୍ଡ’ କରିବାର ପଟା କାଉଣ୍ଟର ଉପରେ ରଖୁଥାଏ ଚିତ୍ରପଟ କି ମୂର୍ତ୍ତିକୁ ଆଉ ଟୋପି ଲଗାଉଥାଏ ମୁଣ୍ଡରେ କହୁକହୁ କା :

“କି ଦୁର୍ଭାଗ୍ୟର ତାଙ୍କର ଆତ୍ମାଗୁଡ଼ାକ !” କି ପାପ କି ଅଧର୍ମ ତାଙ୍କ ଆତ୍ମାରେ ।”

ଏହାର ମର୍ମ ଥାଏ ଯାଆ, ଆଗେଇଯାଅ—କିଣି ପକାଅ ।

ମତାନ୍ତର ‘ପ୍ରଗଲଭତା’ରେ ଭସିଯାଇ ବିମୂଢ଼ ହୋଇ ପୁଣି ତାର ପ୍ରବଳ ପ୍ରଭୁତ୍ୱ ଜ୍ଞାନରେ ବାଧ୍ୟହୋଇ ସଂଶୟ ମନରେ କ୍ରେତା ପଚାରି ଦେଉଥାଏ ସାଂଭୁରେ ତତ୍ପର ସନ୍ଦେହ :

“ତେବେ ଚିତ୍ରପଟ କଥା କଣ ଅଛି ! ପବିତ୍ର ଜ୍ଞାନ ଯୋଗ୍ୟ ପାଦ୍ରୀ ପୂରେଇଛନ୍ତି ଆପଣ ।”

“ଏ ଚିତ୍ରପଟ ଦେଉଛୁ ନିକୋନାଇଟ୍‌ମାନଙ୍କ କୃତି ।”

“କିନ୍ତୁ ତା’ ହୋଇପାରେ କେମିତି ? ଆମର ବାପଅଜା, ପଣଅଜା, ଅଣଅଜା ସମସ୍ତେ ପୂଜାକରି ଆସିଛନ୍ତି ଏଇ ଚିତ୍ରପଟକୁ !”

“ବୁଝିଲ, ନିକୋନ ଆଗର ବହୁତ ଆଗରେ, ତୁମର ପରଦାଦାଙ୍କଠୁ ବହୁତ ଆଗରୁ !”

ବିକ୍ରେତାର ମୁହଁ ପାଖରେ ଚିତ୍ରପଟଟି ଧରି ଠିଆ ହୋଇଯାଉଥାଏ ଖୁବ୍ ଗମ୍ଭୀରସ୍ୱରରେ—ପ୍ରତିଷ୍ଠା କଣ୍ଠରେ କହୁଥାଏ ।

“ଦେଖ, ଦେଖୁଚ !”

“ଦେଖୁଚ କି ଫାଳିଲମି କି ଚଗଲମି ଏଇ ଦେବତାର ମୁହଁରେ, ସ୍ୱାକୁ କହୁଛ ଚିତ୍ରପଟ, ତୁଚ୍ଛା, ଛବିଟାଏ, ଅଳିଆ କଳା, ନିକୋନାଇଟସଙ୍କ ଖିଆଲିବାଜି, ଏଭଳି କାମରେ କି ଆତ୍ମା ଅଛି—ମହତ ପଣ ଅଛି ? ମୁଁ କଣ ଆଉ ଗୋଟାଏ ଅସତ କଥାଟାଏ କହୁଛନ୍ତି ? ବୁଢ଼ା ହେଲିଣି, ମୋ ଧର୍ମ ବିଶ୍ୱାସ ମୋ ଧର୍ମମତ ଲାଗି କଣ କମ ଭୋଗିଲିଣି ? ଯନ୍ତ୍ରଣା ନିର୍ଯାତନା—ଆଉ କେତେଦିନ ବା ଜୀବିତ ଭଗବାନଙ୍କୁ ଭେଟିବା ପାଇଁ—ମୁହାଁମୁହିଁ । ମୋ ଆତ୍ମାକୁ ବିକ୍ରିକରି କଣ ପାଇବ, କି ଲାଭ ପାଇବ ସେ ଆଉ ?”

ସେ ଦୋକାନରୁ ଅଳନ୍ଧରୁ ବ ହାରଯାଏ, ବୟସ ହୋଇଥାଏ, ଦୁର୍ବଳତାରେ ମୂର୍ଚ୍ଛାଗଲା ଭଳି ହୋଇ, ଆଉ ତା'ର ହସ୍ତରପଣ, ତାର ସ୍ୱରରେ ଅବଶ୍ୱାସ—ଏଥିରେ ଏକାବେଳକେ ଅଭିଭୂତ ହୋଇ ମନରେ, ଦୋକାନ କର୍ମଚାରୀ ଚାନ୍ଦପଟ୍ଟପାଇଁ କେତୋଟି ରୁମାଲ ଦଏ—ବନ୍ଧେଇଟି ପିଓର ଭ୍ୟାସିଲିସ୍ଲେଇନ୍‌କୁ ଓଲଟି ହୋଇ ବଦାଯ୍ ନଏ, ଆଉ ମେ ତେ ଘାଗେ ଘାଗେ ସେତେବେଳେ ପଠେଇ ଦଅନ୍ତି ଏ ମହଦାନ୍ତିକୁ ଗରମ ପାଣି ପାଇଁ, ଫେରିଆସି ମୁଁ ଦେଖୁଥାଏ ବୁଢ଼ା ପୁଣି ତେଜ ଉଠିଚ—କେତ୍ୱନମରେ, ସ୍ଫୂର୍ତ୍ତି ହୋଇଯାଉଚ—ସିନେହରେ ଏକଳାସ୍ୱରେ ଅନାଇ ରହିଚ ଖରିଦ କିନପଟ୍ଟାକୁ, ଦୋକାନ କର୍ମଚାରୀଙ୍କୁ କହୁଯାଉଚ—

"ଦେଖ, ନିକେ ଦେଖ, କ ଚମତ୍କାର କ ସହଜ ଭଙ୍ଗୀରେ ଅଙ୍କା ହୋଇଛୁ ଚାନ୍ଦଟି! ଖ୍ରୀ ଦେଶ'ରେ ଈଶ୍ୱରଙ୍କ ଠି ନୟ୍, ଈଶ୍ୱରଙ୍କ ଭୟ ଅଉ ଯାହା ମାନୁଷିକ ତାର ପରିହାର!"

"କାହା ହାତର!" ଚକଚକ୍ ଆଖିରେ ଉତ୍ତେଜିତ ହୋଇ ବୁଢ଼ାପଡ଼ ପଚାରୁଥାଏ ଦୋକାନ କର୍ମଚାରୀ।

"ଏତେ ଚଞ୍ଚଳ ଜାଣିପାରିବୁ ନା।"

"ଜାଣନ୍ତା, ଲୋକଟା, କେତେ ଦେବେ ଯେ ଏଇଟି ପାଇଁ।"

"ଜାଣିବ କେମିତ…ଦେଖେଇବ, କାହାକୁ, ବୁଝିବ।"

"ବୁଝିଲି ପିଓର ଭାସିଲିସ୍ଲେଇଚ୍।"

"ଆଉ ମୁଁ ଯଦ ବନ୍ଦି କରିଦଏ, ଏହାକୁ ପଚୁଣି ରୁମାଲ ତୋର, ତାଠୁ ଅଧିକା ଯାହା ମୋର।"

"ହୁଁ!…"

"ଆଉ ହୁଁ ହଁ। ନୁହେଁ।"

ସେମାନେ ବୁଢ଼ା ପିଆରେ ବସିଥାନ୍ତି, ନର୍ଲଜଭାବରେ ଗଉଭଟ୍ଟକା ଚଳାନ୍ତି, ଦର କଷାକଷି ହୁଅନ୍ତି, ଆଉ ପରସ୍ପରକୁ ପଚାରିବାରେ ଲଗନ୍ତି ଚିକନଖିକର ଦ୍ରୁତରଙ୍କ ପରି, ଆଖିରେ ସହ ଜଡ଼ାପଡ଼ି ଯାଉଥାଏ ଦୋକାନ କର୍ମଚାରୀଙ୍କ ଚାହୁଥାଏ ପୂର୍ବପୂର୍ ବୁଢ଼ା କଦଳାରେ, ବୁଢ଼ାର ଦସ୍ତା ଉପରେ ନର୍ଭର କର—ଆଉ ବୁଢ଼ା ଚାଲିଗଲା ପରେ କହୁଥାଏ ମୋତେ।

"ଦେଖ, ଏଇ କାରବାର କଥା ମାଲିକ ଯେମିତି କିଛି ନ ଜାଣେ! କିଛି କହିବୁ ନାହିଁ ବୁଝିଲୁ।"

ଚାନ୍ଦପଟ୍ଟାକୁ ବନ୍ଦି କରିବା ପରେ ଯେତେବେଳେ କଥା ପକାହୋଇ ଯାଉଥାଏ ବ୍ୟବସ୍ଥା ହୋଇଯାଉଥାଏ, ଦୋକାନ କର୍ମଚାରୀଙ୍କ କହୁଥାଏ:

"ସହରରେ ଏବେ ନୂଆ ଜଣ ପିଓର ଭ୍ୟାସିଲିସ୍ଲେଇଚ୍!"

ହଳଦିଆ କେତାଳିଆ ହାତରେ ମୁହଁହଳକୁ ପଟପାଟ ସାଉଁଳୁଥାଏ ବୁଢ଼ା—ବାହାରକୁ ଓହ୍ଲାଇ ଆସୁଥାଏ ତେଲିଆ ଓଠ ଯୋଡ଼ିକ, ତା ପରେ ସେ କଥର

ତାହା ଟେଲିଦେଉଥାଏ, ଧନୀ ବଣିକ ବେପାରୀଙ୍କ ଜୀବନ ବୃତ୍ତାନ୍ତ ବଖାଣି ଯାଉଥାଏ ଗୋଟିକ ଗୋଟି—ବ୍ୟବସାୟ କାରବାରରେ କେମିତି କର୍ଣ୍ଣ ହାତସଫାଇ କାଟି ସଫଳ ହୋଇଥାଏ, କିଏସବୁ କେଉଁଠି ବେଗରେ ପଡ଼ିଥାନ୍ତି, ବାହାପୁଅଣି କେମିତି ମାତି ଉଠିଥାଏ, ଆଉ ମଦପିଅରେ ମାତାଳଙ୍କ ମହଲ ଭୁଲିଥାଏ କେଉଁଠି ପୁଣି କେଉଁଠି ବିଚିତ୍ର ଛଇଯାଙ୍କୁ ଠକୁଥାଏ ଓ ଝଗଡା ଗିରସ୍ତଙ୍କୁ । ଦୋକାନ ବାହୁଣିଆ ପଣ କାଟୁଥାଏ ତାହାଆ ଉପରୁ ପକେଇ ଢେଉଠେଇ ଟଟାପଟ ଗୋଟାକୁ ଗୋଟା ଉପରସିଆ ଉସୁମା ଉସୁମ ତତଲା ତତଲା ପିଠାଭଳି କଥା ଆଉ ତା' ଉପରେ ଅଜାଡୁଥାଏ ତାର ହସିହସିଆ ହସଟ ସିନା । ଗୋଲମୂର୍ଦ୍ଧଟା ଦୋକାନ କର୍ମଚାରୀର ଲାଳପଡ଼ି ଯାଉଥାଏ ଲୋଭ ଅପୂର୍ବାର ଅନନ୍ଦରେ, ଆଖି ହଲକା ଢଳଢଳ ହେଉଥାଏ, ସ୍ୱଚ୍ଛଳଭାବରେ ଦୀର୍ଘନିଶ୍ୱାସଟିଏ ପକାଇ କହୁଥାଏ ସେତେବେଳେ ।

"ଇଃ କି ଅଦ୍ଭୁତରେ କି ଜୀବନରେ ଲୋକଙ୍କର !—କେମିତି ରହୁଛନ୍ତି, ଆଉ ମୁଁ ...!"

"ଯାହାର ଯାହା କପାଳ !" ଯାଉଁକନ ହେଲା ବୁଢ଼ା ଗମ୍ଭୀର ଗଳାରେ । "କାହାର ଝକଝକ ରୂପା ହାଣ୍ଡିରେ ସିଝିପଚି ହୋଇ ଗଢ଼ା ଦଅଁ ଦେବତାଙ୍କ ହାତରେ ଓ ଆଉ କାହାର ଗଢ଼ା ସଇତାନ ହାତରେ ଦନ୍ତୁଡ଼ା ବାରସି-କୁଣ୍ଡରେ !"

ସେହି ଜକଷ୍ଟ ପେଶଲ ବୁଢ଼ାଟାକୁ କଣ ବା ମାଲୁମ ନ ଥିଲା ! ମାଲୁମ ଥିଲା ସବୁ—ସମୁଦାୟ ସହରଟାର ଜୀବନ, ବଣିକ ବେପାରୀ, କରାନ, ପାଦ୍ରୀ ଆଉ କାଗଜଙ୍କର ରହସ୍ୟସବୁ—ଉଗଲ୍ ଭଳି ଧାରୁଆ ଧାରୁଆ ଅଖି ତାର ଆଉ ତାଠି ଥିଲା ଭେଞ୍ଚାର ଓ କୋକଣିଆଳିଆ କିଛି । ସବୁବେଳେ ମନ ହେଉଥାଏ ଥଟା ଟାପରାରେ ଖେଳେଇ ହୋଇ ବିଦ୍ରୂପ କରି ତାକୁ ଉଡ଼ାଇ ଦଅନ୍ତି କି ! କିନ୍ତୁ ସେ ଅଟେଇ ରହୁଥାଏ ମୋତେ, ଯେଉଁ ଭଙ୍ଗୀରେ ସତେ ଯେପରି କୁହୁଡ଼ିଆ କୁହୁଡ଼ିଆ କି ହିଁ କେଉଁଠି ଦୂରରୁ—ସେଥିରେ 'ନିରସ୍ତ' ହୋଇ ଯାଉଥାଏ ମୁଁ—ସାହସ ପାଉ ନ ଥାଏ ମୋର । ଲାଗୁଥାଏ, ତାର କରଣଅକେ ପେଶ ରହୁଥାଏ ଗୋଟାଏ ଦାନ୍ତୋସ୍ତ 'ଚତୁର', ତା' ପାଖକୁ କେହି ସାହସ ଧରି ଗଲେ ସେତେବେଳେ ଲୋକ ଗ୍ରାସ କରିଦେବ ମୁହୂର୍ତ୍ତକରେ, ଅନୁଭବ କରୁଥାଏ କୋଇଲା ଭୂତାଳ ସ୍ୱାକୋଜ ଦୁମଉ ଆଉ ତା' ଭିତରେ କଣ କିଛି ସାଧାରଣ ଗୁଣ ପ୍ରକୃତ ଥିଲା ନିଶ୍ଚୟ ।

ବୁଢ଼ାର ଚତୁରପଣରେ ଦୋକାନ କର୍ମଚାରୀଟା ମନ୍ତ୍ରମୁଗ୍ଧ ହୋଇ ଯାଉଥାଏ, ତା ସାମନାରେ ଅଉ ପଛରେ କହୁଥାଏ ବି । କିନ୍ତୁ ବେଳ ପଡ଼ୁଥାଏ ସେତେବେଳେ ଦୋକାନ କର୍ମଚାରୀଟା ବି ଖୁଣ୍ଟୁଥାଏ ବୁଢ଼ାକୁ ରଟେଇବ, ଆଚ୍ଛାକରି ଅପମାନ ଦେବ ।

"ଲୋକଙ୍କ ଅଖିରେ କେମିତି ଧୂଳିପକା ହୋ ତମେ, ଅନ୍ଧ ପୁଟୁଳି ବାନ୍ଧିଦଅ ପୁଣି ପଶମ କନାରେ ତାଙ୍କୁ ଠକିଦଅ କେମିତି ।" ଥରେ ସେ ବୁଢ଼ାକୁ କହୁଥିଲା ଲଢ଼େଇ ଡାକରା ଶୁଣାଣୀରେ ଅଜେଇ ।

"ଭଗବାନ ହିଁ କେବଳ ଲୋକଙ୍କୁ ଠକନ୍ତି ନାହିଁ, ବୋକା' କରନ୍ତି ନାହିଁ ।" ଅନ୍ୟମନସ୍କଭଙ୍ଗୀରେ କୁରୁକୁରୁ ହୋଇ ଉତ୍ତର ଦେଉଥିଲି ବୁଢ଼ା, "ଆଉ ଆମେ ଯେତେ ବଞ୍ଚୁ ବୋକାଙ୍କ ଉପରେ । ତମେ ଯଦି ବୋକାଙ୍କୁ 'ବୋକା'କରି ନ ପାର, ତାହାହେଲେ କଣ ଲାଭ ହେବ, କଣଟା ଭଲ ହେବ ତାର ?"

ରାଗିଗଲା ଦୋକାନ କର୍ମଚାରୀ—

"ହବୁ ଗୃହୀ (ମ୍ୟୁଜନ୍) ବୋକା ନୁହନ୍ତି, ସେହି ଗୃହୀଙ୍କ ଭିତରୁହିଁ ବେପାରୀ ବାହାରନ୍ତି ।"

"ଆମେ ଓ ଯୋଉମାନେ ବଣିକ ବେପାରୀ ହୁଅନ୍ତି, ତାଙ୍କ କଥା କହୁନୁ, ଅଲୋଚନା କରୁନୁ—ବୋକାଯାକ କେବେ ଗ୍ରାହକ ଚତୁର ଠକ ହୋଇପାରନ୍ତି ନାହିଁ । ବୋକାଗୁଡ଼ାକ ସବୁ ବୁଦ୍ଧିଶୁଦ୍ଧି ଜ୍ଞାନ ମସ୍ତିଷ୍କଜ୍ଞାନ ସାଧୁଯାନ୍ତି ।"

ବୁଢ଼ା କଥାଗୁଡ଼ାକୁ ଏମିତି ଓଟାଇ ଓଟାଇ ସ୍ୱର ଲମ୍ବେଇ ଲମ୍ବେଇ କହୁଥାଏ ଯେ ରାଗରେ ବଚନ୍ତରେ ଦେହ ତାତି ହୋଇ ଉଠୁଥାଏ, ଗୋଟାଏ ପାଣି ପଚପଚ ପଙ୍କୁଆ ପାଟ ମଝିରେ ମାଟିକୁନ୍ଦ ଉପରେ ଛୁଡ଼ା ଲୋକଟାଏ ପରି ସେ । ତାକୁ ଟିକଏ ଚଳେଇବା ଚଢ଼େଇବା ଅସମ୍ଭବ ଥିଲା, ରାଗ କଣ ପହଞ୍ଚୁ ନ ଥିଲା ତା' ପାଖରେ—ଛୁଇଁପାରୁ ନ ଥିଲା ତାକୁ କମ୍ଭା ସେ ଜାଣିଥିଲା ରାଗକୁ ଲୁଚେଇ ରଖିବାକୁ ହେବ କେମିତି ।

ଅନେକ ସମୟରେ ସେ ଓଲଟି ଆରମ୍ଭ କରି ଦେଉଥାଏ ମୋତେ ଟାପରା କରି ଚଢ଼େଇବାକୁ । ମୋ ମୁହଁ ପାଖକୁ ନିଜ ମୁହଁଟାକୁ ଘେନି ଆସି ମୋ ମୁହଁରେ ମୁହଁ ଲଗେଇ ରଖିବାକୁ ଯାଇ ଯେମିତି ଦାନ୍ତ ଭିତରେ କୁରୁକୁରୁ ହୋଇ ଉଠୁଥାଏ ସେ ।

"ସେହି ଫଗ୍ୱର୍ଡୀ ଲେଖକଟାକୁ କଣ କହୁଚ—କଣ ବୋଲି ତାକୁ—ପଣ୍ଡୋସ ।"

ତାର ନାଆଁଗୁଡ଼ାକୁ ବିକୃତ କରିବାର ଭଙ୍ଗୀରେ ମୋତେ ରାଗରେ ଉଡ଼େଇ ଦେଉଥାଏ—ମୁଁ କିନ୍ତୁ ନିଜକୁ ସଂଯତକରି ଉତ୍ତର ଦେଉଥାଏ ।

"ପନସୋନ ଦ୍ୟୁ ତେରେଲ ।"

"କାହା ଅଛି ?"

"ବୋକାଗିରି ଦେଖାଅ ନାହିଁ—ପିଲା ନୁହଁ ତମେ ।"

"ଠିକ୍ କଥା ! ଠିକ କହୁଛ··· ପିଲା ନୁହଁ ମୁଁ ।"—

"କଣ ସେଇଟି ପଢ଼ୁଚୁ ଯେ ?"

"ସ୍ୱେଫ୍ରେମ୍ ସିଉନ୍ ।"

"ଭଲ ଲେଖେ କିଏ ? ଟିକେ ଲେଟକ ସବୁ ନା ସେ ନିଜେ ?"

କୌଣସି ଉତ୍ତର ଦେଲି ନାହିଁ ମୁଁ ।

"ଗଳ୍ପରେ ସବୁ କଣ ଲେଖାଥାଏ—କିଏ କହେ ସେଗୁଡ଼ାକ ?" ଘୋରଡେଇ ହେଲା ସେ ।

‘‘ସାଧ୍ୱୀଦେବୁ ଏଟେ ସେଇ ସମ୍ପର୍କରେ କୋଉଁଟି କୋଉଁଟି କର ।’’

‘‘ଘୋଡ଼ା କୁକୁର ଦେଖିନ ବ ? ସେମାନେ ବ ତ ଘଟନ୍ତି ।’’

ଦୋକାନ କର୍ମଚାରୀ ହୋ ହୋ ହୋଇ ହସିଉଠିଲା । ସେ ଅନ୍ତ ମୁଁ ଘଡ଼ଘଡ଼େ ଚାଲିବାକୁ ଲାଗିଲି ।

ବେସି ଦୌଡ଼ି ପଳାଇବା ଇଚ୍ଛାକୁ ରୋକି ପାରୁ ନ ଥାଏ କିନ୍ତୁ ଖସି ଦୌଡ଼ି ପଳାଇଥାନ୍ତି ଯଦି ଦୋକାନ କର୍ମଚାରୀଟା ପାଟି କରି ଉଠିଥାନ୍ତା…।

‘‘କୁଆଡ଼େ ଯାଉଚୁ ତୁ ?’’

ବୁଢ଼ା ମୋ ସହନଶୀଳତା ପରଖ କରୁଥାଏ ।

‘‘ହେଇଟି, ଏବେ ହେଲା ରେ ଲମ୍ବାମୁଣ୍ଡିଆ—ଏ କଥାର ଚିଣ୍ଟି ଫିଟେଇଲୁ, ଏ ପ୍ରହେଳିକାଟା ସମାଧାନ କରୁ ଦେଖି ! ତୋ ସାମନାରେ ଛିଡ଼ା ହୋଇଛନ୍ତି ହଜାରେ ଟଣ୍ଡେ ଲଙ୍ଗଳା ଲୋକ— ପାଞ୍ଚଶ ମିଣିପେ, ପାଞ୍ଚଶ ମାଇପେ । ଆଉ ତାଙ୍କ ଭିତରେ ଅଛନ୍ତି ଆଦମ୍ ଓ ଇଭ୍ । କେମିତି କହିପାରିବୁ, ବାଛି ପାରିବୁ କିଏ ଆଦମ୍ କିଏ ଇଭ୍ ?’’

ଜୋର ଜବରଦସ୍ତି ନ କରି ମୋ ଧାଡ଼ିରେ ଲଗେଇ କିଛି ସମୟ ବିଜୟ ଦର୍ପରେ ଘୋଷଣା କରୁଥାଏ ସେ ।

‘‘ଆରେ ବୋକା : ପ୍ରଭୁ ସୃଷ୍ଟି କରିଥିଲେ ସେମାନଙ୍କୁ—ଭୂଇଁରେ ପଡ଼ି ସେମାନେ ଜନ୍ମ ହୋଇ ନାହାନ୍ତି—ତା’ ଅର୍ଥ ସେମାନଙ୍କର ଅଣ୍ଟାଗୁଡ଼ିଆ କଣା ନ ଥିଲା, ମେଣ୍ଟଲ୍ସକୁ ପୋଷାକ ବୋତାମ ନ ଥିଲା ।’’

ଏମିତି ଅସଂଖ୍ୟ ପ୍ରହେଳି ଜାଣିଥାଏ ବୁଢ଼ା, ସେଗୁଡ଼ାକ ପଚାରି ବ୍ୟତିବ୍ୟସ୍ତ କରୁଥାଏ ମୋତେ ।

ମୋର ସବୁଲ କେଇଟା ଦିନରେ ଦୋକାନରେ—ଦୋକାନ କର୍ମଚାରୀଟା ଆଗରେ ବଖାଣ କରିଥାଏ ମୁଁ—ଯେଉଁ ବହିସବୁ ପଢ଼ିଥିଲି, ତାର କେତେ ଭିତରୁ କେତୋଟି—ଏବେ କାହିଁକି ତାକୁ କହିଲି ସେ ସବୁ—ସେଥିପାଇଁ ଶୋଚନା କରିବାକୁ ପଡ଼ିଲା, ଦୋକାନ କର୍ମଚାରୀଟା ସେଗୁଡ଼ାକୁ ପୁଣି ବଖାଣୁ ଥିଲା—ବୁଢ଼ା ଆଗରେ ସେଗୁଡ଼ାକ ବିକୃତ କରି ଅଉ ସେ ସବୁର ଅତି ଖରାପ ଇତର ପ୍ରେମପ୍ରୀତିର ଟୀକା ଟିପ୍ପଣୀ ବ୍ୟାଖ୍ୟା କରି । ବୁଢ଼ା ବି ତାକୁ ଉତ୍ସାହ ସାହାଯ୍ୟ କରୁଥାଏ । ଅତି କଦର୍ଯ୍ୟ ବୀଭତ୍ସିଆ ପ୍ରଶ୍ନମାନ ପଚାରି—ସେମାନଙ୍କର ଖରାପ ଭାଷାରେ ମୋର ପ୍ରିୟ ଚରିତ୍ରସବୁ ଯୁଜେନି ଗ୍ରାଣ୍ଡେଟ୍, ଲୁଦମିଲ୍ଲା ଆଉ ୪ଥ ହେନେରୀଙ୍କର ଦେହ-ମୁଣ୍ଡରେ ଛିଟିକି ଲାଗି ଯାଉଥାଏ ଅସନା ମଇଳା ସବୁ ।

ଜାଣି ପାରୁଥାଏ ମୁଁ, ସେମାନେ ଏସବୁ କହୁଥାନ୍ତି ଈର୍ଷାରେ ବିଦ୍ୱେଷରେ ନୁହେଁ : ନିଜ ନିଜ ଜୀବନପ୍ରତି ବିରକ୍ତିରେ, କିନ୍ତୁ ଏହା ଜାଣିପାରି ଏଥି ଜ୍ଞାନ ବଳରେ ଯେ ସେ ସବୁ ମୋର ବରଦାସ୍ତ କରିବା ସହଜ ହେଉଥାଏ, ଏହା ନୁହେଁ, ଧୂଳିପରି ସେମାନେ ସେମାନଙ୍କ ନିଜ ନିଜ ଚଥାର ପଙ୍କରେ ଆଉ ଯେଉଁ ସୁନ୍ଦର

ସୁନ୍ଦର କଥା ଓ ବସ୍ତୁଗୁଡ଼ିକ ତାଙ୍କୁ ଲାଗୁଥାଏ ଅଦ୍ଭୁତ ଓ ଅବୋଧ ଆଉ ସେଇଥି ପାଇଁ ଠିକ୍ କୌତୁକଆ ସେଇଗୁଡ଼ିକୁ ମଇଳାକରି ଅଯଥାକରି ଘୁଁ ଘୁଁ ହେଉଥାନ୍ତି ସୁଟରେ ଆନନ୍ଦରେ ।

ବଣିକ ବେପାରୀ, ଦୋକାନଦାର, ଦୋକାନ କର୍ମଚାରୀଙ୍କ ସେହି ସମ୍ପ୍ରଦାୟ ବ୍ୟବସାୟୀ ସାଥିରେ ଜୀବନ ଚାଲୁଥାଏ । ବଢ଼ିଯାଉଥାଏ ଅଦ୍ଭୁତଭାବରେ—ସେହି ଜୀବନ— ଝସିବାସିରେ ବୃଦ୍ଧ ଆମୋଦ ପାଉଥାଏ ସେମିତିକା ସବୁ କଦର୍ଯ୍ୟ ବଦମାସିଆ କୌତୁକରେ—ଯେଉଁଗୁଡ଼ାକ ଲାଗୁଥାଏ ଯେମିତି କପଟ ଦୁର୍ବୋଧିଆ, ପିଲାଳିଆ ସେମିତି ଜଘନ୍ୟଆ, ପଙ୍କିଳତାରେ । ଯେତେ ଚାଷୀଟିଏ ସହରକୁ ଆସି ପ୍ରଥମେ ପଚାରୁଥାଏ କାହାର ଠିକଣା କେମିତି ପାଇବ ସେହି ଠିକଣାର ଲୋକ—ସେମାନେ ସାଧାରଣତଃ ତାକୁ ବତେଇ ଦେଉଥାନ୍ତି ଠିକ୍ ଓଲଟା ବାଟର ବାଟଟା । ଏତେ ସାଧାରଣିଆ ହେଉଥାଏ ଏହି ଘଟଣା ଯେ, ସେହା ଯେ ଭଳେଇବା ଭୁଲେଇବା ଅଧେ ବାଟକୁ ମଡେଇବା ପାଇଁ ଉଚିତ୍, ଏତିକ ଚାଲିଯାଉଥାଏ ସେଥିରୁ । ବେପାରୀମାନେ ଧରି ଅଣୁଥାନ୍ତି ଦୁଇଟା ମୂଷା, ଲାଙ୍ଗୁଡ଼କୁ ଲାଙ୍ଗୁଡ଼ ଛନ୍ଦି ଦେଉଥାନ୍ତି ସେ ଦୁଇଟିର ତା'ପରେ ଛୁଡ଼ାହୋଇ ଦେଖୁଥାନ୍ତି ସେମାନେ କେମିତି କାମୁଡ଼ା କାମୁଡ଼ି ଆମ୍ପୁଡ଼ା ଅମ୍ପୁଡ଼ି ହେଉଥାନ୍ତି ଟଣାଓଟରା ହେଉଥାନ୍ତି ପରସ୍ପରର ଓଲଟା ଦିଗକୁ । ବେଳେବେଳେ ସେ ବେପାରୀମାନେ ସେହି ଅସହାୟ ଜୀବଙ୍କ ଉପରେ କିରାସିନି ଅଜାଡ଼ି ନିଆଁ ଲଗାଇ ପୋଡ଼ି ପକାଉଥାନ୍ତି ସେମାନଙ୍କୁ । ନ ହେଲେ କୁକୁର ଲାଞ୍ଜରେ ବାନ୍ଧି ଦେଉଥାନ୍ତି 'ଟିଣ' ପାତ୍ର ଗୋଟାଏ—ଭୟାତୁର ପଶୁଟା ଭୁକି ଭୁକି ଧାଉଁଥାଏ ଏଣିକି ତେଣିକି—ଟିଣଟା ବାଜୁଥାଏ ତା' ପଛପଟ ଦେହରେ ଆଉ ଦେଖଣାହାରୀସବୁ ହୋ ହୋ ହୋଇ ହସି ଗଡ଼ିଯାଉଥାଆନ୍ତି ଯେମିତି ।

ଏମିତି କେତେ ଦୁଷ୍ଟାମିଆ କୌତୁକରେ ମାତୁଥାଆନ୍ତି, ଯେତେ ଯେମିତି ପ୍ରତ୍ୟେକେ— ବିଶେଷରେ ଗାଁ ଗହଳରୁ ଆସୁଥାନ୍ତି ଯେଉଁ ଚାଷୀଗୁଡ଼ିକ ସେମାନେ ସମସ୍ତ ଜୀବନ ଧରି ରହିଥାଆନ୍ତି ଖାଲି ସେମାନଙ୍କ ଖେଳ-କୌତୁକ ବଜାରକୁ ସବୁ ଖୁସି କରାଇବା ଆମୋଦ ଯୋଗାଇବା ପାଇଁ । ବେପାରୀ ଆଉ ତାଙ୍କର କର୍ମଚାରୀଯାକ—କାହାକୁ ହେଲେ ଥଟ୍ଟା ପରି କରିବେ, ବିଦ୍ରୂପ କରିବେ, କାହାକୁ ଯନ୍ତ୍ରଣା ଦେବେ, ହଇରାଣ ହରକତ କରେଇ ଅସୁବିଧାରେ ଅସୁଖରେ ପକାଇବେ, ଏଥିଲାଗି ସବୁବେଳେ ଉଣ୍ଡି ହେଉଥାଆନ୍ତି ସୁବିଧା ସୁଯୋଗ ।—ମୋତେ ଅଦ୍ଭୁତ ଲାଗୁଥାଏ, ଯେଉଁ ବହିଗୁଡ଼ାକ ପଢ଼ିଥାଏ ବା ପଢ଼ୁଥାଏ ମୁଁ ସେଥିରୁ ଗୋଟିକରେ ହେଲେ କେଉଁଠି ପଦେ ହେଲେ ନ ଥାଏ ଏଇ 'ବିକୃତି'ଗୁଡ଼ାକ ସଂପର୍କରେ ।

ଏହିଭଳି ଯେ ଏକ ବିକୃତି ସେଇ ପଣ୍ୟାଗାରଟାରେ ମୋତେ ଏକା-ବେଳକେ ଘୃଣାରେ-ମନ୍ଥିତ କରିଦେଇଥିଲା ଠେଲି ଦେଇଥିଲା ଦୂରକୁ ।

ଆମ ଦୋକାନ ତଳେ ତଳ ମହଲରେ ଥାଏ ପଶମ ଓ ଲୋମ ଦୋକାନରେ

ଗୋଟିଏ କର୍ମଚ୍ଛୁସ୍ତ, ଏମିତ ଦୂନଅଁଗିଲା ପେଟୁ ସେ—ତା ନାଁ ଉତ୍ତଉତ ହୋଇ ଦାଜିଥାଏ ତଳ ବଜାରଟାଯାକ ବୁଲିଆତେ । ସେଇ ଦୋକାନମାଲିକ କର୍ମଚ୍ଛୁସ୍ତଟାର ଭୋଜନପଟୁ ଭୋଜନ କ୍ଷମତାର ବାହାବା କରୁଥାଏ, ବଢ଼େଇ ଦେଖୁଥାଏ ଠିକ ଯେମିତି କେତେକ ବଡ଼େଇ କାଢ଼ନ୍ତି—ତାଙ୍କ କୁକୁରଘୋଡ଼ାଙ୍କର ଭୟାଙ୍କରିଆ ହିଂସ୍ରତା ପାଇଁ ବା ତାଙ୍କ ବଳଆ ଘୋଡ଼ା ସଂପର୍କରେ ସେ ଦୋକାନ ମାଲିକ ଅନେକ ସମୟରେ ବାଜି ପକାଉଥାଏ ତା ପଡ଼ୋଶୀଙ୍କ ସହିତ ।

“କାଢ଼, କଏ କଏ କାଢ଼ି ପାରିବ ଦଶ ରୁବଲ୍ (ଟଙ୍କା), ଯିଏ ଇଚ୍ଛା ସିଏ ହେଉ ତା ସାଥିରେ ବାଜି ପକେଇ କହିବ ମିଶା ଦୁ’ ଘଣ୍ଟାରେ ଖାଇ ଶେଷ କରିଦେବ ଦଶ ପାଉଣ୍ଡର ହ୍ୟାମ (ଘୁଷୁରି ମାଂସ) ।”

ମିଶା ଯେ ଏହା କରିପାରିବ ଏହା ଜାଣିଥାଆନ୍ତି ସମସ୍ତେ, କାହାରି ମନରେ ସନ୍ଦେହ ନ ଥାଏ ଏ ସଂପର୍କରେ ତାର ସାମର୍ଥ୍ୟ ଯେନି । ଏଣୁ ସେମାନେ କହୁଥାନ୍ତି .

“ବାଜି ପକେଇବୁ ନି, କିନ୍ତୁ ଆମେ କିଣିଦେବୁ ହ୍ୟାମ୍ ତକ ଚାଲହୁ ସେ—ଆମେ ଖାଲି ଦେଖିବୁ, ଦେଖିବୁ କୌତୁକଟା ।”

“କିନ୍ତୁ ଦେଖ, ଦଶ ପାଉଣ୍ଡର ମାଂସ ଖାଲି—ସେଥିରେ ହାଡ଼ ନ ଥିବ ଟିକିଏ ହେଲେ ।”

ଅବହେଳା ଭାବରେ ଉତ୍ସାହ ନ ଦେଖାଇ ସେମାନେ ଯୁକ୍ତିତର୍କ କରୁଥାନ୍ତି ଅନ୍ଧାରିଆ ଭଣ୍ଡାରଘରଟାରୁ ହଠାତ୍ ବାହାରି ପାହାଚରେ ଚଢ଼ି ଆସିଲା ସାଏ— ଗୋଟାଏ ଧେଡ଼ଙ୍ଗା ମଠିଆ, ଦାଢ଼ିମୁଛ ନାହିଁ, ଉଞ୍ଚା ହାଡୁଆ ଗାଲ ଆଉ ହଳୁର ଲୋକଟାଏ—ମେଞ୍ଚାକୁ ମେଞ୍ଚା ଝୁଲାଉଥିଲା ଲମ୍ବା କୋଟ୍‌ଟାଏ ଦେହରେ— ଲାଲ ବଡ଼ ରୁମାଲ ‘ସାଶ’ରେ ଭିଡ଼ା ହୋଇଥାଏ ସେଇଠି ଅଣ୍ଟାଟି ତାର, ମାନଥାନ ଦେଖାଇବାକୁ ଯାଇ ଟୋପିତଳ ଗ୍ରେଟମ୍ବଣ୍ଟି କାଢ଼ି ଛଳଛଳିଆ କୁହୁଡ଼ିଆ ଚାହାଣୀ ପକେଇ ତା ମାଲିକର ଟାଆଁପିଆ ‘ରୁଡ଼’ ଭଳି ଗୋଲଗାଲିଆ ମାଉଁସିଆ ମୁହଁ ଉପରେ ।

“କିରେ, ଏଇ ଘୁଷୁରି ଫଣ୍ଡଆଟାକୁ ଚଳେଇ ପାରିବୁ ତ ?” ପଚାରିଲେ ମାଲିକ ।

“କେତେ ସମୟ ଭିତରେ” ଉତ୍ତର ଦେଲା ‘ମିଶା’—ଶୁଖିଲା ସରୁ ଫସାଶ୍ୱ ସ୍ୱରରେ ।

“ଦୁ ଘଣ୍ଟା”

“କଠିଣ ହେବ—।”

“ତୋ ପାଇଁ ନୁହେଁ !”

“ଦୁ ‘ମଗ୍’ ବିୟରର ମିଶେଇ ପାରିବ ତ ?” ପଚାରିଲା ମିଶା ।

“ହେଉ—ପିଇବୁ ପଛେ”, ମାଲିକ କହିଦେଇ ଏତକ ପ୍ରୀତଫୁଲ୍ଲ ଗଳାରେ ବଡ଼େଇରେ ମୁହଁ ବୁଲାଇଲା ପଡ଼ୋଶୀ ଆଡ଼କୁ ।

"ଶୁଣୁଚ ନା, ଖାଲି ପେଟରେ ଆରମ୍ଭ କରିଦେବ ସେ ଖାଇବାଟା ? ଆରେ ନା-ନା ସକାଳେ ଆଜ ଖାଇଚ ଦି' ପାଉଣ୍ଡର ପାଉଁରୁଟି—ଆଉ ଦି'ପହରେ ଭଲ ଭୋଜନଟାକୁ କଣ ଛାଡ଼ିବ ସେ ?"

ଆଣିଲେ ସେମାନେ ଘୁଷୁରି ଫାଳିଆଟିଏ, ତା ଚାରିପଟରେ ଅଧି ଚୋରଗଲେ ଦେଖଣାହାରିଏ, ସମସ୍ତେ ବେପାଟ. ଜାନଦାରଆ କୁର୍ତ୍ତା ଭକ୍ତଭକ୍ତ ହୋଇ ପିନ୍ଧିଥାଆନ୍ତି ଆଉ ଅଣ୍ଟାରେ ବାନ୍ଧି ଦେଇଥାଆନ୍ତି କମରପଟି । ଦେଖାଯାଉଥାନ୍ତି ସବୁ ଓଜନିଆ ଓଜନିଆ ବସ୍ତୁଳକାୟ ସବୁ ଆଟିକା ପେଟା ଲୋକଗୁଡ଼ାକ—ଚର୍ବିରେ ହଜିଯାଇଥାଏ ଟିକିଟିକି ଅଖି ସବୁ, ଚକ୍ ଚକ୍ କରୁଥାଏ ବରକୁଆରେ ।

ଆସ୍ତିନ ଭିତରେ ନିଜ ନିଜର ହାତ ପୂରାଇ ହପୁରିଆ ଭାବରେ ସେମାନେ ଖାଦଖାଦ ହୋଇ ଘୋଶ ରହିଲେ ପେଟୁଟିକୁ । ଏତେବେଳକୁ ପେଟୁ ଧଣଧଣ-ଥାଏ କୁମ୍ଭଟା ଆଉ ସୋରିଷିଆ-ଶସ୍ୟ ଭଳିଆ ବନ୍ଧ ପାଉଁରୁଟିଟାଏ । ଥରକୁଥର ତରବରରେ 'କ୍ରୁଶ' ଚିହ୍ନ ଆଙ୍କି ହୋଇ ପଣମକୁରୁ ଉପରେ ବସି ପଡ଼ିଲା, ଘୁଷୁରି ଫାଳିଆଟାକୁ ଥୋଇଲା ଗୋଟାଏ କିମତି ରଖା ପେଡ଼ି ଉପରେ, ଆଉ ତାକୁ ପସନ୍ଦ କରି ଲଗିଲା ପ୍ରଶଂସାପୂର୍ଣ୍ଣ ଆଖିରେ ।

ତା ପରେ କାଟିଲା ସେ, ପାଉଁରୁଟି ଚକୁଲାଏ, ଆଉ ବହଳିଆ ଫାଳିଆରୁ ଖଣ୍ଡେ, ନିର୍ମଳ ଭାବରେ ଥୋଇଲା ଗୋଟିକ ଉପରେ ଆଉ ଗୋଟିଏ, ଆଉ ଦି' ହାତରେ, ଟେକିନେଲା ସେସବୁକୁ ମୁହଁ ପାଖକୁ, ଲମ୍ବା ଜିଭରେ କୁକୁର ପରି ଚାଟିଲାଗଲା ଓଠ ଦି'ଟାକୁ, ଫୁଟି ଦିଶୁଥାଏ ଦାନ୍ତଗୁଡ଼ାକ, ତାପରେ କୁକୁର ପରି ମାଂସପୁଳାକ ଉପରେ ଜାବ ପକାଇଦେଲା ତଳପାଟି ଉପର ପାଟିର—ଚାପିନେଲା ।

"ଏଇରେ ଆରମ୍ଭ କରିଦେଲା ରେ !"

"ଅନେଇ ଥା ସମସ୍ତଙ୍କୁ—କେତେ ସମସ୍ତ ?"

ପେଟୁରି ମୁହଁ ଉପରେ ଲାଖି ରହିଥାଏ ସମସ୍ତଙ୍କ ଅଖି ସ୍ଥିର ଅବିଚଳ ହୋଇ ରହିଥାଏ ଚାକୁଚାକୁ ଚୋବାଉଥିବା ପାଟି ଉପରେ । ଏକାରୁ ସେକର ଟପି ପଡ଼ୁଥିବା କାନ ଆଖି କୁଦ ଉପରେ, ମୂନିଆ ଓଠର ଛନ୍ଦୋମୟ ଉଠବା ପଡ଼ିବା ଉପରେ ରହି ରହି ମତାମତ ବିନିମୟ ହେଉଥାଏ ସେମାନଙ୍କ ଭିତରେ ।

"ଚୋବଉଛି—ଭାଲୁ ଭଳି !",

"ଦେଖିଛୁ ଭଲ କେବେ ଭାଲୁ ଚୋବାଏ କେମିତି ?"

"ମୁଁ କଣ ଜଙ୍ଗଲି ? ଜଙ୍ଗଲରେ ଥାଏ ?"

ଏଇଟା ଗୋଟାଏ କଥାର କଥା ନା—ଭାଲୁ ଭଳି ଚୋବାଉଚ, ଏଁ—

"କଥାଟା ହେଉଚ, ଚୋବାଉଚ ଘୁଷୁରି ଭଳି ।"

"ଘୁଷୁରି ଘୁଷୁରିକି ଖାଏ ନାହିଁ ।"

ନିସ୍ପନ୍ଦ ସ୍ୱରରେ ହସିଲେ ସେମାନେ—ତାଙ୍କ ଭିତରେ ପଣ୍ଡିତିଆ ଦେଖେଇ ମୂର୍ଖ କିଏ କହିଲା ।

"ଅରେ ଘୁଷୁରି କିଏ ନ ଖାଏ, ସବୁ ଖାଏ—ସମସ୍ତିଙ୍କୁ ଖାଏ, ଏମିତିକି ତା' ଛୁଆପିଲାଙ୍କୁ ତା ଭାଇଭଉଣୀଙ୍କୁ...।"

ଧୀରେ ଧୀରେ ସେନ୍ଟୁଟାର ମୁହଁ ଲାଲ ପଡ଼ିଆସିଲା, କାନ ଦୁଇଟା ନେଳି ନେଳି ଦିଶିଲା, ଗାଡ଼ୁଆ ଗାଡ଼ୁଆ ଆଖି ଦି'ଟା, ନିଜ ନିଜ 'କକ୍ଷପଥ'ରୁ ଖସି ବାହାରିବାକୁ ବସିଲା, ଆଉ ତା'ର ନିଃଶ୍ୱାସ ସାଇଁ ସାଇଁ ଶୁଭିଲା, ଶୁଣିଲା ଲୋକର କାନକୁ ବି ବାଧିଲା । କିନ୍ତୁ ତାର ଓଠ ସମାନ ଗତିରେ ନିୟମିତ ତାଳରେ ରଡ଼ିକରି ଚାଲିଥାଏ ।

"ଶୀଘ୍ର ଶୀଘ୍ର ମିଶା—ସମସ୍ତ ଚୋର, ସରିଆସିଲା ଦେଖ", ତାଙ୍କୁ ଉସ୍କେଇ କଥାରେ କଥାରେ କେଂଚବାରେ ଲାଗିଲେ ସମସ୍ତେ । ଅଧୁଖିଆ ଅଧୁଖିଆ ହୋଇ ସେ କଳନା କରି ଦେଖିଲା, ଘୁଷୁରି ଫଡ଼ିଆର ଅବଶିଷ୍ଟ ଅଂଶତକ—ସିଇଲା ଦି'ଗ୍ରାସ ତୋକ ବୟସ—ତାପରେ ସେ ବାଇ ଲାଗିଲା ଆଗପଛ । ଦେଖଣାହାରୀଏ ତା' ମାଲିକ ହାତର ଘଣ୍ଟାକୁ ଚାହିଁଥାଆନ୍ତି, ଆହୁରି ଉତ୍ତେଜିତ ହୋଇଉଠିଲେ—ପରସ୍ପରକୁ ସତର୍କାଇଲେ ।

"ଅନେଇ ଥା, ସେ ଭୁଲେଇ ନ ଦେଉ ଯେମିତି କଣ୍ଟାଟା ବରଂ ତା'ଠୁ ଧେନଥାସ ଘଣ୍ଟାଟା ?"

"ଆଖି ରଖ୍ 'ମିଶା' ଉପରେ କାଳେ ସେ ତା' ଆସ୍ତିନବାଟେ କିଛି ଗଳେଇ ଖସେଇ ଦେବଟି !"

'କେବେହେଲେ ଠିକ୍ ସମୟରେ ସାରିପାରିବ ନାହିଁ ସେ ।"

"ବାଜି ପଚିଶ ଟଙ୍କା, ବାଜି ପକେଇଲି ମୁଁ ।" ବେପରୁଆ ଚିନ୍ତାଶୂନ୍ୟ ମନରେ ପାଟିକରି ଉଠିଲା ମିଶାର ମାଲିକ, "ଦେଖ୍ ମୋ ନାଆଁ ପକା ନା ମୋତେ ଅପମାନ ଦିଅନା ମିଶା !"

ଦେଖଣାହାରୀଏ ପାଟି କରି କରି ଉତ୍ସାହିତ କରୁଥାଆନ୍ତି—କେହି କିନ୍ତୁ ତା ବାଜିକୁ ଗ୍ରହଣ କଲେ ନାହିଁ ।

ମିଶା ଚୋବାଉଥାଏ, ଚୋବାଉଥାଏ—ମୁହଁ ତାର ଦିଶିଲା ଘୁଷୁରି ଫଡ଼ିଆ ମାଂସ ପରି ଠିକ୍ । ତାର ମୁନିଆ ଗୋଜିଆ କେମିତିକା ବଙ୍କାଟିଆ ନାକ ଡାକିଲା କରୁଣ ସ୍ୱରରେ—ସିଂହ ମାତହେଲା ସାଇଁ ସାଇଁ, ତାଙ୍କୁ ଚାହିଁ ଦେଲାକ୍ଷଣି ଡ଼ର ମାଡ଼ୁଥାଏ—ଲାଗୁଥାଏ ମୁଁ ଯେ କୌଣସି ମୁହୂର୍ତ୍ତରେ ଭେଁକିନା କାନ୍ଦି ଉଠିବ କହିବ :

'ଦୟାକର ! ଦୟାକର ମୋତେ ।"

ନଇଲେ ଯେତେ ଯାଏ ତାର ଭର୍ତ୍ତି ହୋଇଯିବ ଘୁଷୁରି ମାଂସ ଫାଟି ପଡ଼ିବ ଗଲା, ଦେଖଣାହାରୀଙ୍କ ପାଦପାଖରେ ଟଳିପଡ଼ିବ ସେ, ନିଃଶ୍ୱାସ ରୁନ୍ଧିଯିବ ତାର—

ଶେଷରେ ଖାଇସାଲେ ସମୁଦାୟ ମାଂସ । ତୋଳା ଦୁଇଟାକୁ ଗଡ଼େଇ ଗଡ଼େଇ ଆଖି ଢ଼'ଟାରେ ଦେଖଇ ଦେଖେଇ ଲୋକଗୁଡ଼ାଙ୍କୁ କାନ୍ତସ୍ୱରରେ ପେଲ୍ ହେଲ ସେ, ଧଇଁସଇଁ ହେଲ—

"ଭାଅ, ମିଳିବାକୁ ଦଅ ଟୋପିଏ—ପିଇବାକୁ ।"

ହଁ ମାଲକ ଘଣ୍ଟାଟିକୁ ଚାହିଁଲ, ଝୁଁଉଝଉଁ ହେଲ—

"ଗୁଣମନନ୍ତ୍ ଡେଣ—ଜାଗଜାଭଜାଟ ।"

କେତେ ଖସପ କଥାଟା ହେଲ—ଆମେ ତମ 'ବାଜି'ଟା ସେନଥାନ୍ତୁକ ? ଚଡ଼େଇ ଲାଗିଲେ ଲୋକଗୁଡ଼ାକ, "ନିଶ୍ଚୟ ହାରିଥାନ୍ତ—ହରେଇଥାଅନ୍ତ କ ବାଜିଟା ।"

"କାଲୁ ଯାହା କହ ମାନୁ ନାହିଁ ଟୋପିଟା, ଯୋଡାଟାଏ !",

'ଭାର ଆନ ସର୍କସରେ ।"

"ଭଗବାନ କ ଅଦ୍ଭୁତ ରଂଗ ଦେଖାନ୍ତ—କେତେ ଲୋକଙ୍କୁ ସେନ କ ଅଦ୍ଭୁତ ଯାଦୁ ଦେଖାନ୍ତ ସତେ !"

"ହଉ, ଆଗ ଚାହା ପିଆ ଯାଉ ଆଗ, ଆସରେ ସବୁ ?"

ଦୌଡ଼ ଛଡ଼ା ନାହାନ୍ତିଲ—ଭେଲାଭଲ ସେମାନେ ପାଲ ଉଡ଼ାଇ ଚାଲିଲେ ମଠଖଟିକୁ ।

ସ୍ତମ୍ଭିତ ହୋଇଗଲ ବୋଧଥ ପାଇଁ କୋଧ କାରଣରୁ ସେହି ଗମ୍ଭୀର ଭାଗ ଭାଗ ମୂର୍ତ୍ତି ମେଦବହୁଳ ପେଟୁଆ ପେଟୁଆ ଲୋକଗୁଡ଼ାକ ଏହି ଅଶ୍ୱଗାଟାଙ୍କୁ ସେବ ଯାଇଥିଲେ, ଚୂର୍ଣ୍ଣ ହୋଇଥିଲେ ତା' ଗୁଣପାଖରେ—ସେ କ ଆମୋଦ ଆହ୍ଲାଦ ପାଉଥିଲେ ସେମାନେ—ଏମିତ ଅତି ଅଦ୍ଭୁତକର 'ଭିଲାପଣରୁ' ?

ଅନ୍ଧାରୁଆ, ହତାଶିଆ ହୋଇ ଲମ୍ବି ରହିଥାଏ ସବୁ ସଜାମ୍ମ 'ଗ୍ୟାଲେଣ୍ଟ' ବପଣୀଗାଥିର ଏଠିସେଠି ଖଣ୍ଡ ଢ଼ାଇ ରହିଥାଏ ସେଥିରେ ବସ୍ତାକୁ ବସ୍ତା ଢ଼ଳ, ମେଣ୍ଟା ଚମଡ଼ା, ଛଣପଟ ଦୌଡ଼, ଲୋମ ବୁଜ ଅଉ ଯୋଡ଼ାଲଦନ କ୍ରିନ୍ ଓ କାମସ୍ୱାର । ବାରଣ୍ଡାଠାରୁ ଅଲଗା ଥାଏ ସେହି ଗ୍ୟାଲେଣ୍ଟା—ମୋଟାମୋଟି ଅଡ଼ଙ୍ଗିଆ ଇଟା ଖୁମ୍ବରେ, ବୟସ ହେତୁରୁ ସେଇଁଠରୁ ଝୁରୁଝୁରୁ ଖସୁଥାଏ ଇଟା ଚୂନା, ଅଉ ସେଗୁଡ଼ାକ ବଣକଟିଆ କଳାପଡ଼ ଯାଇଥାଏ ଗୁସ୍ତାର ଧୂଆଁ ଧୂଳ ମଇଲାରେ । ହଜାର ହଜାର ଥର କେଜାଣି ଗଣିଥିବ ମୁଁ ଇଟାଗୁଡ଼ାକ—ତା' ଗାନ୍ଥିନ ଭିତର ଫାଟଗୁଡ଼ାକ—ନଇଲେ ସେସବୁର କୁତ୍ସିତ ରୂପ-ଜାଲଟା ମୋ ମନ ଗହ୍ୱରରେ ପଶି ଲଷିଯାଇଥାନ୍ତା କାହିଁକ ?

ଆଦୌ ଚଞ୍ଚଳ ନ ହୋଇ ଚଲବାଟରେ ଯାଆସ କରୁଥାନ୍ତି ଲୋକେ, ବାଟୋଇ ସବୁ—ଜଳ ଗସ୍ତାରେବ ସେମିତ ଠିକ୍ ଅଚଞ୍ଚଳ ମନ୍ଥର ଗତରେ ଚାଲୁଥାଏ 'ଇଜକ୍ଷେଜକ' ଗାଡ଼ି ଆଉ କାରବାଣ୍ଟ ଜନପଦରେ ବୋଝେଇ 'ଡ୍ରେ' ଗାଡ଼ିଗୁଡ଼ାକ । ଦୂରରେ ଗଳମୁଣ୍ଡରେ ଥାଏ, ଚଢ଼ି ଛୁଟିଥାଏ ଚଉକୋଣିଆ

ସ୍ଲାନଟାରେ ନାଲି ଇଟାର ଦ'ମହଲା ଦୋକାନଘରଗୁଡ଼ାକର ବେଢ଼ଣରେ ଯେମିତି । ଆଉ ସେଠି ହେଇ ଜାଗାଟାରେ ଏଣେତେଣେ ପ୍ୟାକିଙ୍ଗ୍ ଖୋଳ ନଡ଼ାକୁଟା, ଛିନ୍ନପତ୍ର, ବନ୍ଦେଇ କାଗଜ ଲୋକଙ୍କ ପାଦତଳେ ଚକଟିମକଟି ହୋଇ ବରଫରେ ଏଣେତେଣେ ପଡ଼ିଥାଏ ବିଛୁଡ଼ି ହୋଇ ।

ସବୁବେଳେ ଯାଆସ, ଚଳପ୍ରଚଳ ଲାଗି ରହିଥିଲେ କଣ ହେବ, ମନେ ହେଉଥାଏ ଦୁନିଆଟାଯାକ ସମସ୍ତେ, କି ଲୋକବାକ କି ଗାଡ଼ିଘୋଡ଼ା କେଉଁଠି କିଛି ଚଳୁ ନ ଥାନ୍ତି ଯେମିତି—ସ୍ଥାଣୁ ପାଲଟି ଯାଇଥାନ୍ତି, ଗୋଟିଏ 'ସ୍ଲାନ'ରେ ଘୂରୁଥାନ୍ତି ଖାଲି ସତେ ଯେମିତି ଅଦୃଶ୍ୟ ଶିକୁଳିରେ ବନ୍ଧା ହୋଇଥାନ୍ତି ସବୁ ସେଠି, ସେହି ସ୍ଲାନଟା ଦେହରେ ! ଦେଖୁଥାଏ, ଏଇ ଜୀବନଟାର ଅଛିବ ଥାଏ ଧ୍ୱନି, ସେହିଥିରେ ଉତ୍ପୀଡ଼ିତ ହେଉଥାଏ ସବୁବେଳେ ଯେଉଁ ଧ୍ୱନି ବା ଶବ୍ଦ ଥାଏ ଟିକିଏନାକୁ ତା ଅନୁରଣିତ ରହିଥାଏ କେଉଁକାଳରୁ । ବରଫ ଉପରେ ସରସର ଟପ ଖପ କେଁ କେଁ ହୋଇ ସ୍ଲେଗାଡ଼ିଗୁଡ଼ାକ ଦୋକାନ ସବୁର କବାଟଗୁଡ଼ାକ ଧଡ଼ଧଡ଼ ପଡୁଥାଏ ଖୋଲୁଥାଏ ବି, ପିଠା ବଜାଲିର ତୁଣ୍ଡ ଶୁଭୁ ନ ଥାଏ ନୁହେଁ ସେ ପାଟିକିର ଜଣେଉଥାଏ ତା' 'ବନ୍ଦି ଛନ୍ଦ' କଥା—କେନ୍ଦୁ ମଣିଷର ସ୍ୱର ମଣିଷର କଥା ଏମିତି ମାଦା ଏମିତି ନର୍ମବ ଏମିତି ପୁଣି ସମାନ ଏକାଭଳି ଥାଏ କାନରେ ତାହା ବାଜୁ ନ ଥାଏ ଆଦୌ—କାନ ତାହା ସବୁ ଶୁଣିବାଟା ଛାଡ଼ି ଦେଇଥାଏ ବା !

ଗୀର୍ଜା ଘଣ୍ଟା ବାଜୁଥାଏ, କବରଦିଆ ବେଳର ମଶାଣିଆ ଶବ୍ଦରେ, କେବେହେଲେ ଭୁଲିପାରିବ ନାହିଁ ରକ୍ତଶୁଖା ହତାଶିଆ ଭୟଙ୍କରିଆ ଶବ୍ଦ । ସକାଳୁ ରାତିଯାଏ ଏହା ଭାସି ବୁଲୁଥାଏ ଖେଳୁଥାଏ ବଜାର ଉପରେ ଗଳିପଶି ଯାଉଥାଏ ଲୋକର ସମସ୍ତ ଭାବନା କଳ୍ପନା ଅନୁଭୂତି ଭିତରେ । ଲୋକର ସମସ୍ତ ଭାବନା କଳ୍ପନା ଓ ଅନୁଭୂତି ଭିତରେ ସମସ୍ତ ଧାରଣା ଭାବନାକୁ ତାର ଟାଙ୍ଗି ଦେଇ ଘୋଡ଼େଇ ପକାଇ ପିଉଳିଆ କାଣ୍ଠିରେ ।

ଗୋଟାଏ ଏକପ୍ରକାରିଆ ହେମାଳିଆ ମନ ଚଡ଼ଚଡ଼ା ଶରଭ୍ରୁଭାବ—ଖାଇ ଖାଇ ଯାଉ ପ୍ରାଣକୁ—ବାହାରୁଥାଏ ପ୍ରତ୍ୟେକଥିରୁ ଅବନାମସନା ବରଫର ସ୍ତରର ତଳୁ ମାଟିରୁ—ଗଛର ଉପରେ କୁଢ଼ କୁଢ଼ ପାଉଁଶିଆ ବରଫରୁ, କୋଠାଘରଗୁଡ଼ାକର ମାଂସଭଳି ଲାଲ ଲାଲ ଇଟାଗୁଡ଼ାକରୁ । ବାହାରୁଥାଏ ଲଟେଇ ଲଟେଇ ମୋଡ଼ି ମୋଡ଼ି ହୋଇ କୁଣ୍ଡଳିକର ଧୂସରିଆ ଧୂସରିଆ ଧୂଆଁ ଶଳହିରୁ, ଚିମନି ସବୁରୁ—ଗୁଡ଼େଇଗୁଡ଼େଇ ହୋଇ ସତେ ଅବା ଗୁରୁଣ୍ଡି ଗୁରୁଣ୍ଡି ବୁଲୁଥାଏ ଓହଳି ପଡ଼ିଥିବା ପାଉଁଶିଆ ନିଶୂନ ଆକାଶଟାରେ ସେଇ ଚଡ଼ଚଡ଼ା ପଣ ଢେଉଢେଉକା ହୋଇ ବାହାରି ଆସୁଥାଏ ପୁଣି ଘୋଡ଼ାଗୁଡ଼ାକଙ୍କର କରପଟରୁ, ଲୋକଙ୍କର ନାକପୁଡ଼ାରୁ ଏହାର ବାସନା ଥାଏ ଏକ ଅଦ୍ଭୁତ ବାସନା—ଝାଳନାଳର, ମେଦମାଂସର ଧୂଆଁ ଧୂଳିର, ଛପେଟ ମଞ୍ଜି ତେଲର ଆଉ ଚକଟାମିକଟା ପିଠାର ଉଷୁମୁଳିଆ

ଟାଇଟ୍ ଟୋପିପରି ମୁଣ୍ଡକୁ ଏତ୍ତା ବୁଦି ଧରୁଥାଏ କ୍ରୋଧରେ—ପଣି ଭେଦଯାଇ ଛିଦ୍ରକୁ ଛିଦ୍ର ସୃଷ୍ଟି କରୁଥାଏ ଗୋଟାଏ ପ୍ରକାରର ମରୁଆକର୍ଷଣ—ଯେତ୍ତ ଯାହା ଲୋକକୁ ପ୍ରବର୍ତ୍ତାଉଥାଏ ଆଖି ବୁଜିଦେବା ପାଇଁ, ସମସ୍ତ ବଳ ଖଟେଇ ଗର୍ଜନ କରିବା ପାଇଁ, ଆଉ ଲୁଚିଛପି ହୋଇ ଧାଇଁବାକୁ ଦୂରକୁ ମୁଣ୍ଡଟାକୁ ପିଟିଦେବା ଲାଗି ପଟଳ ପଥର କାନ୍ଥ ଦେହରେ ।

ଅନେକ ସମୟରେ ଜଣେଖି ନଜଣେଖି ପଡ଼ିଥାଏ ମୁଁ ବେପାରୀଗୁଡ଼ାକଙ୍କ ମୁହଁଗୁଡ଼ାକୁ—ଖାଇପିଇ ତୃପ୍ତିରେ ଚକଚକିଆ, ଲାଲ ଲାଲ ବଡ଼ଳିଆ ବଡ଼ଳିଆ ରକ୍ତର ସଞ୍ଚାଳନରେ ଭରପୂର, ବରଫର ଦଂଶନ ଦାଉରେ ଆହତ ନକ୍ଷତ୍ରସବୁ—ସତେ ଯେମିତ ନିର୍ଘୋଡ଼ ନଜରରେ କେଉଁକାଳରୁ ଚାହିଁ ମାରୁଥାନ୍ତି, ଅନେକ ସମୟରେ ପାଟିଗୁଡ଼ାକ ଓଟେଇଖେଇ ମେଲି ଦେଉଥାନ୍ତି ଚେଉରେ ଅ.ସି କୂଳରେ ଲୁଚିହୋଇ ପଡ଼ି ଆଁ ଆଁ କରୁଥିବା ଯେପରି ମାଛସବୁ ।

ଜାଡ଼ଦିନେ କୋହଲ ହୋଇ ଆସୁଥାଏ ବନ୍ଦାଜଣା କାରବାର, ବେପାରୀଗୁଡ଼ାକଙ୍କ ଆଖିରେ ଆଉ ରହୁ ନ ଥାଏ, ଅଭାବ ହୋଇଯାଉଥାଏ ସେଇ ସାବଧାନୀ ହିସାବୀ ଚକଚକ ଯାହା ଖରଦିନରେ ଉଦ୍ଦୀପିତ କରୁଥିଲା । ପ୍ରାୟ ଅନଙ୍କରେଇ ସଜାଉଥିଲା ସେଗୁଡ଼ାକୁ । ଖପାଖପି କୋଟ୍ ସବୁ ବାଧା ଦେଉଥାଏ ଗୁହ୍ୟଚଳନରେ, ତାଙ୍କୁ ମାଟିରେ ପିନକଣ୍ଟା ମାରି ଲଟେଇ ଦେଉଥାଏ ଯେମିତି । ସେହି ବେପାରୀମାନେ କଥା କହୁଥାନ୍ତି ମଠେଇ ମଠେଇ ଅଳସରେ, ବିଟିଗଟି ମାତଯାଉଥାଆନ୍ତି ଶେଷ ପର୍ଯ୍ୟନ୍ତ ଯୁକ୍ତିତର୍କରେ । ମନେ ହେଉଥାଏ ଜାଣିଶୁଣି ଏମିତି ହେଉଥାନ୍ତି, ଏମିତି କହୁଥାନ୍ତି ସେମାନେ । ପରସ୍ପରକୁ ଦେଖେଇ ଶୁଣେଇ ପ୍ରମାଣ କରିବା ପାଇଁ ଚାହିଁଛନ୍ତି ପ୍ରତ୍ୟେକ ଗୋଟି ଗୋଟି ହୋଇ ।

ସ୍ପଷ୍ଟ ଦେଖିପାରୁଥାଏ ସେମାନେ ଝାଉଁଳି ପଡ଼ୁଥାନ୍ତି, ଗୋଟାଏ ସଂଗ୍ରାମୀ ବସନ୍ତରେ ତତ୍ପରତାରେ—ସେମାନଙ୍କର ନିର୍ମମ ଚିନ୍ତାଶୂନ୍ୟ ଜଡ଼ତାକୁ ବୁଝିପାରୁଥାଏ ମୁଁ—ତତ୍ପରତାକୁ କଟାଇବା ଲାଗି, 'ବସନ୍ତ' ସାଙ୍ଗରେ ଲଢ଼ିବା ଲାଗି ଗୋଟାଏ ହତାଶିଆ ପ୍ରାଣାତ୍ମକ ଉଦ୍ୟମ ଥାଏ ଖାଲି ଆମୋଦ ପ୍ରମୋଦଗୁଡ଼ାକ ତାଙ୍କର ।

ବେଳେବେଳେ ଏକଥା କହି ଦେଉଥାଏ ମୁଁ, ପିଓନ ଭାସିଲିଭେଭିଚ ଆଗରେ । ତାର ମନୋଭାବଟା ମୋ ପ୍ରତି ସାଧାରଣ ମୋଟାମୋଟି ବନ୍ଧୁପ୍ରିୟ ହିଂସାପିଆ ଥାଏ ସତ, ତଥାପି ମୋର ଦେହ ପ୍ରତି ଅନୁରାଗ ଦେଖି ଖୁସି ହୋଇ ଯାଉଥାଏ, କେତେବେଳେ କେମିତି ମୋ ସଙ୍ଗରେ କଥାଭାଷା ହେଉଥାଏ ଗମ୍ଭୀର ଭାବରେ, ଗୁରୁତ୍ୱ ସହକାରେ, ମୋତେ ଶିକ୍ଷା ଦେଲାଭଳି ପରାମର୍ଶ ଦେଇ ଦେଇ

"ଏ ବେପାରୀଗୁଡ଼ାଙ୍କ ଯେମିତି ରହଣିଚଳଣି, ଚାଲିଚଳନ୍ତି ଦେଖିଲେ କାହାକୁ ଭଲଲାଗବ ଯେ ?" ଅଧୈର୍ଯ୍ୟ ମୋ ମନକୁ ପାଉନାହିଁ ଥରେ କହି ପକାଇଲେ ।

ଦାଢ଼ିଟାକୁ ଖେଳେଇ ଖେଳେଇ ମୋଡ଼ି ମୋଡ଼ି ଟିକିଏ, ପଚାରିଲା ସେ—

"ଜାଣିଲୁ, କେମିତି କଳ୍ପୁଛନ୍ତି ସେମାନେ ?"

ବୋଧହୁଏ ତୁ ବହୁତ ଥର ଯାଆସ କରୁଚୁ ତାଙ୍କ ପାଖକୁ, ମୁହଁ ଦେଖାହୁଏ ନାଇ ସେମାନଙ୍କୁ ? ଏଇଟା ଗୋଟାଏ ଗଳି, ଗୋଟାଏ କନ୍ଦରେ ପୂଅ—ଲୋକେ ଓ ଆଉ ଗଳିକନ୍ଦ ରାସ୍ତାରେ ରହନ୍ତି ନାହିଁ । ସେମାନେ ରାସ୍ତା ଉପରେ ବିକାକିଣା ବଣିକ ବେପାର କରନ୍ତି, ନଇଲେ ନିଜ ନିଜ ଘରମୁହାଁ ଧାଆଁନ୍ତି ଭରଭରରେ । ରାସ୍ତାରେ ସେମାନେ ତ ଗୋଟିଏ ଗୋଟିଏ 'ଗଣ୍ଠିଲି', ଗୋଟିଏ ଗୋଟିଏ ଗଣ୍ଠିଲି, ଲୁଗାକପଡ଼ାରେ ଘୋଡ଼ାକପଡ଼ା, କିଏ ଜାଣେ ନା ତଳେ ସେଇ ଗଣ୍ଠିଲି ଭିତରେ କଣ ସବୁ ଥାଏ ? ବୁଝିଲୁ ଲୋକ ପଶେ ଘରଭିତରେ ଥାଏ ସେଠି, ତା ନିଜ ଘରକାନ୍ଥ ଭିତରେ । ସେତିକିବେଳେ ସେ ତଳେ ପୂରାପୂରି ଖୋଲାଖୋଲିରେ, କିନ୍ତୁ କେମିତି ? ଜାଣିବାର ଉପାୟଟା ବା କେଉଁଠି ?"

"କିନ୍ତୁ ତାଙ୍କ ଭାବନା, ତାଙ୍କ ମନ ତ ସମାନ, ଘରେ ହେଉ ବା ଏଠି ହେଉ ।"

"କିଏ କହୁ ପାରିବ କାହା ପଡ଼ୋଶୀ ଭାବେ କ'ଣ ତା ସମ୍ପର୍କରେ ?" ବୁଢ଼ା ଲୋକଟା, ଅଜଣା ସ୍ୱରରେ କହିଲା, କଠୋର ଭାବରେ କଟମଟ କରି ଅନେଇ ମୋ ଆଡ଼କୁ । ଭାବନାଭାବନାର ଉଦ୍ଧୃଣିପଣ ମାଲ୍‌ମାଲ୍—ଗଣି ହୁଏନାହିଁ. ଯାହା କହନ୍ତି ମରହଟିଆ ବୁଢ଼ାମାନେ । ହୁଏତ ସେ ଉପରେ ଘଡ଼ିକୁ ସେଣ କିଏ ଅଣ୍ଟୁ ମାଡ଼ି ବସେ, ଏମିତିକି ଲୁହ ଗଡ଼େଇବା ଆରମ୍ଭ କରିଦିଏ ଆଉ ଠାକୁରଙ୍କୁ ଡାକେ : ହେ ପ୍ରଭୁ କ୍ଷମାକର, ଅପରାଧ କ୍ଷମାକର ! 'ତୁମର ପୁଣ୍ୟ ଦିନରେ' ତୁମର ପବିତ୍ର ଦିନରେ ସେଉଁ ପାପକର୍ମ କରିଛୁ, ଅପରାଧ କରିଚି । ସେଥିପାଇଁ ହେ ପ୍ରଭୁ ନଇଲେ ହୁଏତ ଧର "ତାର ଘରଟା ହୋଇଚି ତା' ପାଇଁ ଗୋଟାଏ ମଠ, ସେଉଁଠି ସେ ଏକା ଏକା ସମସ୍ତ ବିତାଏ ଭଗବାନଙ୍କ ସାଥିରେ ! କୋଉ ବୁଢ଼ି ଆଣି ବା ଚହେଁ ନାହିଁ—କୋଣ ଦେଖି ନିଜର— ତୋ ଜାଳବୁଣାରେ ଲାଖି ତୁ ନିଜ ଓଜନ ବୁଝ । କଳନା କର ତା ହେଲେ ଠିକ୍ ରହିପାରିବୁ ତୁ—ସେଇଟା ଧାରରେ ଧରିରଖିବ ତୋତେ ।"

ସେତେବେଳେ ସେ ଗୁରୁତ୍ୱ ଦିଏ କଥାରେ, ତାର ସ୍ୱରଟା ସେତେବେଳେ ଶୁଭୁଥାଏ ଆହୁରି ନରମିଆ—ଯେତେ ସେମିତି ବଣ୍ଟାସରେ ସେ ଶୁଣାଉଥାଏ, କହୁଥାଏ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଗୁପ୍ତ କଥା କିଛି ।

"ତୁ କଥାର ଛିଅ ନାଡ଼ୁଛୁ—କେଳେଇକୁଟି ବଗ୍ରବକର ଲାଗିଛୁ, ଦେଖ ବୟସ କଣ ହେଲାଣି ତୋର ଏ ଅବସ୍ଥାରେ ମାଡ଼ିବା ପାଇଁ ? ଏଇ ତୋ ବୟସରେ ମଣ୍ଡ ଖେଳେଇ ବୁଝିଶୁଝି ଖଟେଇ ଚଳିବାଟା ଉଚିତ ନୁହେଁ, ତୋର ବୁଝିଲୁ । ଚଳିବାଟା ଉଚିତ ତୋର ଆଖିରେ ଆଖି ଖୋଲି, ଆଖି ଫଟେଇ ଆଉ ପ.ଟି

ବଡ଼ବଡ଼, ମଥାଟା ମଗଜଟା! ବ୍ୟବସାୟ ପାଇଁ ଅଳ୍ପ ବିଶ୍ୱାସ ଯଦି ଅଛି ବଡ଼ ଆସ୍ଥା ପାଇଁ । ବହି ପଢ଼ିବା ପ୍ରଶଂସାର କଥା, ବାହାଦୂର କାମ କିନ୍ତୁ ସବୁଥିର ସୀମା ଅଛି ପୁଣି, କେତେ ଲୋକ ଏନେ ପଢ଼ନ୍ତି ଯେ ମଥା ଖରାପ ହୋଇ ବସନ୍ତି ଆଉ ଭଗବାନଙ୍କୁ ବି ହରାନ୍ତି !”

ସବୁଥିଲେ ତାର ବିଶ୍ୱସ୍ତ ମହଣ୍ଟିଗଣ, କିଛି ନାହିଁ, ମୁଣ୍ଡହୀନ ସେ—ତାର ବଦଳିବାଟା ବେଳକୁବେଳ ବୃଦ୍ଧା ହେବାଟା କଳ୍ପନା କରିପାରୁ ନ ଥାଏ । ତାକୁ ଭଲ ଲାଗୁଥାଏ ଗପ କହିବାକୁ—ସେହି ଶିବ ନାମଜାଦା ହୋଇ ସାଇଥିନ୍ତି ବେପାର ଖଣ୍ଡ ଡକେଇତ, ନଇଲେ ବା ନକଲ ଟଙ୍କା ଫାଶିବା କାରବାରୀଙ୍କ ସମ୍ପର୍କରେ, ସେମିତି କେତେ ଗପ ଶୁଣିଥାଏ ମୁଁ ଅଜାଙ୍କଠୁ ମୋର—କିନ୍ତୁ ସେସବୁ କହୁଥାନ୍ତି ଆହୁରି ମନ ମଜେଇଲାଭଳି ଭାବରେ, ତାଠୁ ବଢ଼ିଆ ଅନେକ ଗୁଣରେ କିନ୍ତୁ ସବୁ ଗପର ମର୍ମ ଥାଏ ସମାନ ଏକ—ଧନ ସମ୍ପଦ ମିଳେ ଭଗବାନଙ୍କ ବନ୍ଦନାରେ ମଣିଷ ବିରୁଦ୍ଧରେ ଯାଇ ପାପ କଲେ ଦୋଷ କଲେ । ପିସ୍ୟୋନ ଖ୍ରେସିଲ୍‌ସ୍ୱେଇଚର ଠିକଏ ହେଲେ ଦୟା ଥିବ, ଠିକଏ ହେଲେ କରୁଣା ଭଲ ଥାଆନ୍ତା ଲୋକଙ୍କ ପ୍ରତି କିନ୍ତୁ ସେ ବଡ଼ ଆଦରରେ କହୁଥାଏ ଭଗବାନଙ୍କୁ କହୁଥାଏ ନିଃଶ୍ୱାସ ପକେଇ ଆଖିଯୋଡ଼ିକୁ ନୁଆଁଇ ଦେଇ ।

“ଦେଖ ଦେଖ, ଲୋକ କେମିତି ଭଗବାନଙ୍କୁ ବୋକା ବନେଇବାରେ ଲାଗିଛନ୍ତି, କିନ୍ତୁ ପ୍ରଭୁ ଯୀଶୁ ନ ଦେଖନ୍ତି ବା କିଣ, ବୁଝନ୍ତି ସବୁ ଆଉ ତାଙ୍କ ପ୍ରଭୁ କାନ୍ଦେ ସେମାନଙ୍କ ପାଇଁ : “ଆହା ମୋର ମୋର ଲୋକେ, ମୋର ଆପଣା ଲୋକେ ରେ ସବୁ । ତୁମ ପାଇଁ ନରକ ଅପେକ୍ଷା କରି ରହିଛି ରେ ହାୟ ନରକଟା ତ !”

ଥରେ ତାକୁ କହିବା ପାଇଁ ସାହାସ ପାଇଲି ।

“ତମେ ତ ପୁଣି ସୁଷୀଗୁଡ଼ିକୁ ବୋକା ମଣି ବୋକା ବନାଅ ।”

ସେ ଅପମାନ ବୋଲି ଗଣିଲା ନାହିଁ କଥାଟାକୁ ।

“ହଁ, ମୁଁ କି କ୍ଷତି କରେ ତାଙ୍କର ? କାଲିଙ୍କି ଖରେ ସାମାନ୍ୟ, ମୋ ନିଜ ପାଇଁ ଚାରି ପାଞ୍ଚ ଋବଲ ଖର୍ଚ୍ଚଦେଖି ଓର ଉଣ୍ଡି ବା ମାରେ, ସେତିକି ମାତ୍ର, ତାଠୁ ବେଶୀ ନୁହେଁ କେବେ ।”

ଯେତେବେଳେ ସେ ଦେଖି ପକାଉଥାଏ, ମୁଁ ପଢ଼ୁଛି ବସି—ଛଡ଼ାଇ ନେଇଯାଉଥାଏ ବହିଟାକୁ ମୋ ହାତରୁ, ପଚାରୁଥାଏ କଣ ସବୁ ଅଛି ସେଥିରେ, କି କଥା, କି ବିଷୟ—ଆଉ ଦୋକାନ କର୍ମଚାରୀ ଆଡ଼କୁ ମୁହଁ ବୁଲାଇ କେମିତି ଏକ ପ୍ରକାର ସନ୍ଦେହ ସନ୍ଦେହ ବିସ୍ମୟରେ କହୁଥାଏ :

“ଅନା, ଅନା, ଏ କୁଆଡ଼େ ବୁଝି ପାରୁଚି ବହିଗୁଡ଼ାକ ଏ ! ଏଇ ବକଟେନାକୁ ମାଙ୍କଡ଼ ଏ !”

ତାପରେ ମୋତେ ଖାଲି ଖାଲି ବାହୁଲ୍ୟଭାବ ଏକାବେଳେକେ ଅବିସ୍ମରଣୀୟ ଭାବରେ ଉପଦେଶ ଶିକ୍ଷା ଦେଉଥାଏ ।

"ଶୁଣ୍, ମୋ କଥା ଶୁଣ୍, ନାସ୍ତେ ଖ୍ରିଷ୍ଟେ ଭକ୍ତମାନଙ୍କର ଆଶିଷ ସେମାନେ ! ଦୁଇଟା ଥିଲେ 'କଲକମ୍'–ବୃଦ୍ଧ ବଡ଼ ଧର୍ମଯାଜକ, ପାଦ୍ରୀଙ୍କ ଭିତରେ ବଡ଼ ପାଦ୍ରି, ବିଶପ୍, ନାଗଣ ଆଲେକ୍‌ଜାଣ୍ଡ୍ରିଅର, ଆଉ ଜଣେ ଜେରୁ-ଜେଲମ୍‌ର । ପହିଲି ଜଣଙ୍କ ଲଢ଼ୁଥାଏ ସେଇ ଅପଶାଙ୍ଖପିଆ, ଧର୍ମଦ୍ରୋହୀ ଧର୍ମ ଅବିଶ୍ୱାସୀ ନେଷ୍ଟୋରିଅସ୍ ସାଥିରେ ତାର ଅଶ୍ଳୀଳ ଶିକ୍ଷା ସମାଜର ପେଟ– କଣେଇ ସମସ୍ତ ଜଣ ଥିଲେ ? ମଣ୍ଡିୟର ତ, ମଡ' ଲୋକରେ ସେ କେମିତି ଜନ୍ମ-ଦେଇଥିଲେ ଭଗବାନଙ୍କୁ, ସେ କନ୍ୟକଲେ ମଣିଷଟିଏ, ଖ୍ରିଷ୍ଟ–ପୃଥିବୀ ରକ୍ଷକ ! ଉଦ୍ଧାରକ । କେଣୁ ପ୍ରମାଣ ମିଳିଲା ଆମର ତାଙ୍କୁ ଭଗବାନଙ୍କ ମାଆ କହିବା ଉଚିତ ହେବ ନାହିଁ । ଡାକିବା ଉଚିତ ହେବ, ଖ୍ରିଷ୍ଟଙ୍କ ମାଆ, ବୁଝିଲୁ ? ଏଇଆକୁ ଧର୍ମରେ ଅବିଶ୍ୱାସପଣ ଧର୍ମଦ୍ରୋହ କହନ୍ତି ଚମେ ! ଆଉ ଜେରୁଜେଲମ୍‌ର 'କଲକ' ଧର୍ମଦ୍ରୋହୀ ଅବିଶ୍ୱାସୀ ଏଟିସ୍ୱସ ସଂଗରେ ଲଢ଼ୁଥିଲା··· ।"

ଗୀର୍ଜା ଧର୍ମର ଇତିହାସ ପେଟ ତାର କି ଜ୍ଞାନ ! ଗଭୀର ଭାବରେ ପ୍ରଭାବିତ ହେଉଥାଏ ମୁଁ । ସେ ତାର ନରମ ଫସ୍‌କାନ ହଠାତୁଉଠା ଦାଢ଼ିଟାକୁ ସାଉଁଳି ସାଉଁଳି ଦଣ୍ଡେଇ କରୁଥାଏ ।

"ଗୋଟାଏ ସେନାପତି ଭଳି ମୁଁ, ଏହିଭଳିଆ ପ୍ରଶ୍ନ ଉଠେ, କଥା ଦେଖାଉଏ ଯେତେବେଳେ 'ହ୍ୟୁଟ ସନ୍‌ଡେ' ଉତ୍ସବ ସମୟରେ ମଠ୍ୱେ ଯାଇଥିଲି ଥରେ । ଖାସ୍ ଲଢ଼େଇ କରିବା ପାଇଁ ପଣ୍ଡିତ ବାଦୋନାଭିଙ୍କ୍, ପାଦ୍ରି ଆଉ ତାଙ୍କ ସ୍ତାବକ ସେଇ ସାଧାରଣ ଲୋକଙ୍କର 'ବଷାକୁ ଜଭ' ଗୁଡ଼ାକ ସାଥିରେ । ପଣ୍ଡିତଙ୍କ ଭିତରେ ତହୁଁ ବଳି ଉର୍ଦ୍ଧ୍ୱ ବଳି ଯିଏ ତାଙ୍କ ସାଙ୍ଗରେ ଯୁକ୍ତି କଲି ପ୍ରସ୍ତାବରେ । ଏମିତି କି ଯେଉଁ କାମ୍ଭଡ଼ାଟାଏ ଦେଲି ମୁଁ ଥପ୍‌ଥପ୍ ହୋଇ ରକ୍ତ ଗଳିଲା–ସେଥିରେ ଗୋଟାଏ 'ଧର୍ମଙ୍କ' ପୁରୁଷର ଭାବ ଦେଖି କେମିତିକା ହୋଇଥିବ ।"

ନାଲି ପଡ଼ିଗଲା ତା' ଗାଲ ଦୁଇଟା–ଚକ୍‌ଚକ୍ ହୋଇ ଜଳି ଉଠିଲା ଆଖିଯୋଡ଼ିକ ।

ସ୍ପଷ୍ଟ ଜଣାପଡ଼ିଲା ଯେମିତି ବିରୋଧୀ ପକ୍ଷର ନାକରୁ ରକ୍ତ ପଡ଼ିବାଟା ଥିଲା ମସ୍ତ ସାଫଲ୍ୟଟାଏ ତାର, ତା' ସମ୍ପୂର୍ଣ୍ଣ ମୁକୁଟରେ ଗୌରବର ଉଜ୍ଜ୍ୱଳମଣି ଭଳି । ବିଜୟଦର୍ପରେ ଏ ବିଷୟରେ କହିଲା ସେ :

ଦେଖିବାକୁ ବେଶ୍ ସୁନ୍ଦର ଚେହେରାର ଲୋକଟାଏ, ଅପୂର୍ବ ଭଳି ପଞ୍ଚହାତିଆ ମରଦଟାଏ । ମଣ୍ଡପ ଉପରେ ଗଳାଟେ, ଛୁଡ଼ା ହୋଇଥାଏ, ଆଉ ତା' ନାକରୁ ଗଳୁଥାଏ ଲହୁ ଟପ୍ ଟପ୍ ଆଉ ତାକୁ ଜଣା ମାଲୁମ ପଡ଼ୁଥାଏ କି ଲଜ୍ଜା କି ଅପମାନର ଘଟଣା ସେଇଟା ! ସିଂହ ପରି ଭୟଙ୍କର ଦୁର୍ଦ୍ଦାନ୍ତ ସେ, ସ୍ୱରଟା ଭାରି ଘାଉଁଘାଉଁଆ ଘଣ୍ଟାପିଟାର । ଆଉ ମୁଁ କଣ କରୁଥାଏ ନା, ଟିକିଏ ତାକୁ ଫୁରୁସତ ନ ଦେଇ ଛୁରି ଭଳି ଭୁଷିବାରେ ଲାଗିଥାଏ ମୋ କଥାଗୁଡ଼ାକୁ,

ତା ଆତ୍ମାରେ, ଗଭୀର ଶାନ୍ତ ଆତ୍ମାରେ, 'ଠିକ୍ ତା' ମଣିଷ ହାର୍ଦ୍ଦ ବକ୍ଷରେ ସନ୍ଧରେ ଆଉ ସେ ପାପାତ୍ମର ଧର୍ମଦ୍ରୋହିତା ଧର୍ମ ଅବଶ୍ୟ ପରେ ଗରମ ହୋଇ ଉଠୁଥାଏ ତାର ପାତଳା ଦେହର ଉପର ବା ଚଳ୍ଳୀଟିଙ୍କା ଭଳି, ଆଃ ଦିନ ଥିଲା ଦିନ ପରି ଦିନ ଏକା !"

ଆମ ଲୋକମାନଙ୍କୁ ଅନେକ ସମୟରେ ବି ଆସୁଥାନ୍ତି ଅନ୍ୟ ମତର ଧର୍ମାନ୍ଧ ସବୁ । ଆସୁଥାଏ 'ପାଙ୍କୋମି' ନତପଥା ଶରୀଫ ଭଳି ଅନ୍ତଲପେଟ ଏକଅଖିଆ କିନ୍ତୁ ; ଙ୍ଗ୍ରେଜମାନଙ୍କ ସ୍ୱରରେ କଥା କହୁଥାଏ ସେ—ଆଉ ହରୁନେଲେ ପିନ୍ଧଥାଏ ପୁରୁଣାକଳା କୋଟ ଟକଟା ଟୋପ୍ । ଆସୁଥାଏ ପୁଣି ବୃଦ୍ଧା ଲୁକଞ୍ଜନ, ଶ୍ରେଷ୍ଠ ବାଙ୍ଗ୍ମ ମଣିଷ ନିଏ, କିନ୍ତୁ କନ ଭଳ ଚତୁର ଠିକ୍ ମସ୍ୟ ପରି—ଆତ୍ମର ବ୍ୟବହାରରେ ଭଦ୍ର—ଖୁବ୍ ଧୀର ହସଖୁସିଆ । ତା' ସାଙ୍ଗରେ କିନ୍ତୁ ସବୁବେଳେ ଥାଏ ହଷ୍ଟା ଡେଙ୍ଗା ଲୋକ ଫଣଫଣ ଗାଲୁଗାଲୁ ମୁହଁ । ଦିଶୁଥାଏ ଚାଉଡ଼ସରପ ଭଳି, ମୋଟା କଳା ଦାଢ଼ି ଗାଲରେ, ଆଖି ହଳକ ଅଚଳ ପଥର ପରି ସୁନ୍ଦର କିନ୍ତୁ କେମିତିକା ଅଣ୍ଟେଇଁଆ ମୁହଁରେ ଶୋଭାଏ ଫାଙ୍କା ଫାଙ୍କାଭାବ ।

ପ୍ରସ୍ତୁ ସବୁବେଳେ ସେମାନେ ଚେଷ୍ଟା କରୁଥାନ୍ତି ଆମକୁ ଚକିତ ଲାଗି ପୁରୁଣା ପୁରୁଣା ବହି, ଛାପଚିତ୍ର, ଧୂପଦୀପ, ଗିର୍ଜାର ପୂଜାପାତ୍ର ସବୁ—, କେତେବେଳେ କେମିତି ସାଙ୍ଗରେ ଆସୁଥାନ୍ତି ଜଣେ ଅଧେ ଆଉ କାହାକୁ—ଭଲ ଗାର ଉପର ଅଞ୍ଚଳରୁ ବୁଢ଼ାଟାଏ କି ବୁଢ଼ୀଟିଏ, ଯେଉଁମାନେ ବି ଖୁବ୍ ଥାନ୍ତି କିଛି କିଛି ଜଣାଣ ବଜାବା ପାଇଁ । ଗାଉବଣା, ଖଣ୍ଡେ ଖଣ୍ଡ ସରଗଲା ପରେ ବାଡ଼ରେ କାଢ଼ୁଥିବା ପର ବସୁଥାନ୍ତି 'ଭାଉଣ୍ଡର' ଝଣ୍ଟି ଖଣ୍ଡ କାରବାର ପଟା ଉପରେ ଟେ ପିଏ ଟୋପିଏ କରି ବ୍ରାଣ୍ଡି ପିଉଥାନ୍ତି, ଦିନ ଆହ୍ ଫଳମୁଣ୍ଡ, ଶିକ ପାର୍ଟିରେ ପକାଉଥିବା ସଙ୍ଗେ ସଙ୍ଗେ, ଆଉ ମନେପକାଇ ପକାଇ ବର୍ଣ୍ଣନା କରୁଥାନ୍ତି ନକୋଇନାଇଟପନ୍ଥୀମାନେ ଯେଉଁ ନର୍ଯ୍ୟାତନା ଦେଉଥାନ୍ତି, ବର୍ଣ୍ଣନା କରୁଥାନ୍ତି ହୋଇ ଏଠି ଧର୍ମ ବନ୍ଧ ସବୁ ବାଜ୍ୟାପ୍ତ ହୋଇଗଲା, ସେଠି ହୋଇ ପୁରୋହିତ ବନ୍ଦ କରିଦେଲା ସେମାନଙ୍କର ଶ୍ରେଷ୍ଠ ଚର୍ଚ୍ଚ 'ପୂଜା ଆସ୍ଥାନକୁ' କଚଗଣ୍ଡ ଟାଣିନେଲ କେଲସେଲ ସେବକମାନଙ୍କୁ ଅଭିଯୋଗ ଆଣିଲ ୧୦୩ଧାରା ଭାଙ୍ଗିଛନ୍ତି ବୋଲି ।

ଧାରା ୧୦୩ ଥିଲା ସବୁଠୁ ପ୍ରିୟ ବିଷୟ, ସେମାନଙ୍କ ଆଲୋଚନାରେ । କିନ୍ତୁ ସେମାନେ ସେ ବିଷୟ ଉଲ୍ଲେଖ କରୁଥାନ୍ତି । ନିର୍ବିକଳ୍ପ ମନରେ ନିଃସ୍ପୃହ ଭାବରେ ସତେ ଯେପରି ଏଇଟା ଥିଲା ଗୋଟାଏ ଅବଧାର୍ଯ୍ୟ କିଛି, ଶୀତଦିନରେ କୁହୁଡ଼ି କାକର ପରି ।

ସେମାନଙ୍କ କଥାଭାଷାର ଶବ୍ଦଗୁଡ଼ାକ—ମୋଲ୍ଟସ, ଛଦନ୍ତ, ଜେଲ, କଚେରି, ସାଇବେରିଆ—ସେଇ ଯେଉଁଗୁଡ଼ାକ ଘୋରଚେଇ ଘୋଳେଇ

ବାରମ୍ବାର ବ୍ୟବହାର କରୁଥାନ୍ତି ସେମାନେ—ନିଜର ଧର୍ମବିଶ୍ୱାସ ପାଇଁ ନିଦାରୁଣ ଦୁଃଖଯନ୍ତ୍ରଣା ବର୍ଣ୍ଣନା କଲାବେଳେ, ମୋର ଗ୍ରନ୍ଥ ଉପରେ, ମୋ ହୃଦୟରେ ପଡ଼ୁଥାଏ—ତାହାର ତାତଲ 'ଜଳନ୍ତା' ଲୋହର ମୁଣ୍ଡା ପରି ସହାନୁଭୂତି ଆଉ ଶ୍ରଦ୍ଧାଭକ୍ତି ଜନ୍ମାଇ ଦେଇ ସେଇ ବୃଦ୍ଧାବୃଦ୍ଧାଙ୍କ ପ୍ରତି । ଯେଉଁ ଧନ୍ଧମନ୍ତ୍ର ପଢ଼ୁଥାଏ ମୁଁ, ଶିଖିଥାଏ ସେଥିରୁ ଶୃଙ୍ଖଳାବଦ୍ଧ ହୋଇ ନୈତିକ ସାହାସକୁ, ଆଉ ସମ୍ମାନ ଦେଖାଇବାକୁ ସେହିବ ସେହିମାନଙ୍କୁ, ନିଜର ଲକ୍ଷ୍ୟ ସାଧନରେ ଯେଉଁମାନେ ଅଟଳ ।

ଗୋଟିଏ ପ୍ରାଚୀନ ଧର୍ମମତର ଏହି ପୋଷାକ-ପ୍ରସ୍ତୁତକମାନଙ୍କର ବ୍ୟକ୍ତିଗତ ଯୋଗଣ ହିଁ, ସ୍ୱଇଚ୍ଛିକ ଦୁର୍ବଳ-ଅକ୍ଷମତା ମନେ ରହୁ ନ ଥାଏ ମୋର, ଚେତନାରେ ଥାଏ କେବଳ ସେମାନଙ୍କର ଶାନ୍ତ ସୁଧୀର ଧର୍ମପରାୟଣତା-ନୀରବ-ଅନୁରକ୍ତି-ଯାହାର ତଳେ ତଳେ ଥାଏ—ମୋତେ ଲାଗୁଥାଏ ବା ଯେମିତି ଅକଂପିତ ଅଟଳ ବିଶ୍ୱାସ ସେମାନଙ୍କର ଲକ୍ଷ୍ୟ ଓ ଆଦର୍ଶର 'ସଠିକତା', ସତ୍ୟତା ପ୍ରତି—ଥାଏ ସୁଦୃଢ଼ ମନୋବଳ, ସମସ୍ତ ଦୁଃଖ ଯନ୍ତ୍ରଣା ସହ୍ୟ କରିବା ପାଇଁ ସେହି ଲକ୍ଷ୍ୟ ଓ ଆଦର୍ଶ ସାଧନପଥରେ ।

ପରେ, ବୃଦ୍ଧ ନିର୍ବାସୀମାନଙ୍କ ଭିତରେ, ସରଳ ଲୋକଗୁଡ଼ିକଙ୍କ ଭିତରେ ଏମିତି ଅନେକଙ୍କୁ ଭେଟିଲି ଯେତେବେଳେ, ଭଲରୂପେ ବୁଝି ପାରିଲି ସେଉଁମାନଙ୍କର ଗୋଟିଏ ଠାଆରେ ଗୋଟିଏ ବନ୍ଦରେ ଏହିସ୍ଥଳ ଛାଡ଼ି ଆଉ ଯିବାକୁ ନ ଥାଏ ଯୋଉଠିକି, ଘନଘନ ଧୋକର ଧାରଣାଗୁଡ଼ାକର ଅଡ଼୍ୟା-ତଡ଼୍ୟା ଗଣ୍ଡି ଲଣ୍ଡି କିଆ ସ୍ୱଭାବରେ ଛନ ରହି ଯାହାଙ୍କର, ବାସ୍ତବିକ ଅଭିଲାଷ ନ ଥାଏ ଅଧିକା ଟିକେ ଆଗେଇବା ପାଇଁ, ସେହିମାନଙ୍କର 'ନିଷ୍କ୍ରିୟତା', ଉଦାସୀନତା ଛଡ଼ା ଆଉ କିଛି ନ ଥିଲା, ସେହି ନିଷ୍ଠା ସେହି ଅନୁରକ୍ତି ସେହି ଧର୍ମପରାୟଣତା—ସ୍ନାୟୁହୀନ ଦୁର୍ବଳ ଅଶକ୍ତ ହୋଇଯାଇଥାଏ ସେମାନଙ୍କର ମନୋବୃତ୍ତି, ଇଚ୍ଛାଶକ୍ତି ଭବିଷ୍ୟତର ଉନ୍ନତ ପଥରେ ମୁହାଁଇବା ପାଇଁ, ହଠାତ୍ ଯଦି ସେଥିରୁ ମୁକ୍ତି ମିଳିଥାନ୍ତା ସେମାନଙ୍କୁ । ଯାନ୍ତ୍ରିକ ଗତିରେ ତା ହେଲେ ପାହାଡ଼ ପର୍ବତ କଡ଼ରୁ ପଥର ପରି ଗଡ଼ି ଗଡ଼ି ଯାଇଥାନ୍ତେ ସେମାନେ ତଳକୁ ତଳକୁ ! ବନ୍ଦୀକରି ରଖାଯାଇଥାଏ ସେମାନଙ୍କୁ ମଳଗଲା ଧାରଣାଗୁଡ଼ାକର, କଳ୍ପନାଗୁଡ଼ାକର କବରଖାନାରେ—ରଖାଯାଇଥାଏ ପଶ୍ଚାତମୁଖୀ ନିଷ୍ପ୍ରାଣ ଗୋଟାଏ ବଳର ପ୍ରୟୋଗରେ ସମସ୍ତ ଦୁଃଖ ଯନ୍ତ୍ରଣା ଅନ୍ୟାୟ ଅତ୍ୟାଚାରର ନିର୍ଯାତନା ପ୍ରତି ବେଗଣା ଏକ ଅନୁରାଗ ସେ ! ଦୁଃଖକଷ୍ଟ ସହିବାର ସୁଯୋଗରୁ ବଂଚିତ ହେଲେ ପରେ ସମସ୍ତ ଧାର ଯେମିତି ନିଗିଡ଼ି ଯାଇଥାନ୍ତା ସେମାନଙ୍କଠାରୁ, ଉଭେଇ ଯାଇଥାନ୍ତା ସତେଜ ଏକ ଝଡ଼ ଦିନରେ ମେଘଭଳି ।

ସେଉଁ 'ବିଶ୍ୱାସ' ଯାହିଁ ସେମାନେ ଆତ୍ମୋତ୍ସର୍ଗ କରୁଥିଲେ ଏତେ ଆବେଗରେ ଆକୁଳତାରେ ଆଉ ଏତେ ମିଥ୍ୟା ଦମ୍ଭରେ ଗର୍ବରେ—ସେହି ବିଶ୍ୱାସ ସେ ଦୃଢ଼ମୂଳ ଥିଲା ନିର୍ଦ୍ଦନରେ ବୁଝାଯାଇପାରେ ଅବଶ୍ୟ । କିନ୍ତୁ ସେହି

ବିଶ୍ୱାସ ଥିଲା—ଦିଶୁଥିଲା ସମାନ କେଉଁକାଳର ପୁରୁଣା ପୁରୁଣି ପୋଷାକ ପରି, ଏତେ ବହୁକାଳରେ ଧୂଳି ମଇଳା ବସି ଏମିତି ବୋଳି ବାନ୍ଧିଥିଲା ଯେ ସେଥିରେ ଚଳିଲା ପରି ଯେ ସମସ୍ତର ଦୁରନ୍ତ ଆକ୍ରମଣ ଧ୍ୱଂସକାରୀ ଲୀଳା ପାଇଁ ବି ଅପଞ୍ଝନ୍ତ ଥିଲା ପରସ୍ପର । ସେମାନଙ୍କର ଆବେଗ, ଅନୁଭୂତି ଚିନ୍ତା ଚେତନା ଅଭ୍ୟସ୍ତ ହୋଇ ଯାଇଥିଲା—କୁସଂସ୍କାର ଆଉ ପ୍ରଥା ପ୍ରଥା ଯେମିତି ମତାନ୍ଧତାର ପେଣ୍ଡରେ ଏମିତି ଘନକଠିନ ସ୍ତରରେ ନିବଦ୍ଧ ହୋଇ ନିରୁଜ ହୋଇ ରହିବା ପାଇଁ ସେମାନେ ଯେ ଯେଉଁଥିଲାଗି ସବୁ ବିକୃତ ବିକଳାଙ୍ଗ ହୋଇ ଯାଇଛନ୍ତି, ମାଟିରେ ମାଟି ହୋଇ ବନ୍ଧା ହୋଇ ରହିଛନ୍ତି ସେଥିରେ—ଏସବୁ ଟିକିଏ ହେଲେ ବିଚଳିତ କରୁ ନ ଥିଲା ସେମାନଙ୍କ ମନକୁ ।

ଏହି 'ଆହତ ଯୋଗେ ବିଶ୍ୱାସ' ବା ଆସ୍ଥା ସ୍ଥାପନ ହେଉଛି ଆମ ଜୀବନର ଅତି ଜଘନ୍ୟ, ଅତି ନିଗୂଢ଼ଭାବେ ଗୋପନୀୟ ଘଟଣା । ପଥର ପାଚେରି ନିକଟରେ ତା'ର ଚକଡ଼ା ପାଖରେ ବନ୍ଧ ଗ୍ରନ୍ଥିରେ ଦେଖାଗଲା ଭଳି ଏଭଳି ବିଶ୍ୱାସର ପରିଧିରେ ମାତ୍ର ନୂତନ ଉନ୍ମେଷର ତାହାର ପ୍ରକାଶ ଘଟେ, ବିକୃତିରେ ବିକଳାଙ୍ଗତ୍ୱରେ ଦୌର୍ବଲ୍ୟରେ, ନିରକ୍ତତାରେ, ସ୍ନେହପ୍ରୀତିର ଅତ୍ୟନ୍ତ କେତୋଟି କ୍ଷିପ୍ର ମାତ୍ର ଭେଦ କଲେ କି ନାହିଁ 'ବିଶ୍ୱାସ'ର ନିବିଡ଼ ଭିତ୍ତିକୁ ଅସ୍ପୃଶ୍ୟ, ହିଂସା ପ୍ରତିଶୋଧ ପ୍ରତିହିଂସାର ଦୁରନ୍ତ କଳ୍ପନା କରୁ ଦେଖାଦିଏ । ଘୃଣାର ତାଚ୍ଛଲ୍ୟର ସମାନ ଏକା ଚକ୍ରର ଖାଇଭଣ୍ଡଣୀ ପରି ଏଭଳି ବିଶ୍ୱାସର ପ୍ରତ୍ୟୟର ଯେଉଁ 'ଅଣୁ' ତାହା କେବଳ ଧ୍ୱଂସର ବିପ୍ଳବର ଫସଫସର ଝଲକ ଭଳି ।

ମୋ ମନରେ ପ୍ରତ୍ୟୟ ଆସିବାକୁ କିନ୍ତୁ ଏ ସଂପର୍କରେ ଅନେକ ବର୍ଷର କଠିନ ଅବସ୍ଥାରେ ବିତାଇବାକୁ ହେଲା ମୋର ଜୀବନର ଦିନଗୁଡ଼ିକ, ଧଳାସାର୍ଟ କଢ଼ିବାକୁ ପଡ଼ିଲା ମତେ କେଜାଣି କେତେ କଳ୍ପନାର ପ୍ରତିମୂର୍ତ୍ତି, ଆଉ ମୂଳୋତ୍ପାଟନ କରିବାକୁ ହେଲା କେଜାଣି କେତେ ବଦ୍ଧମୂଳ ଧାରଣା । ବାସ୍ତବିକ ଯେତେବେଳେ ମୋର ଚତୁଃପାର୍ଶ୍ୱର ନ୍ୟାୟ ଅନ୍ୟାୟ ଶବ୍ଦର ଶୂନ୍ୟ ଅସାରତ୍ୱ ପ୍ରକୃତରେ କହିଲେ 'ନିସ୍ତ୍ରାଣ' ଦିନଗୁଡ଼ିକ ମଧ୍ୟରେ ପ୍ରଥମେ ଭେଟିଥିଲି ମୁଁ ଏହି ଦେବଦୂତ ପ୍ରହରୀମାନଙ୍କୁ,—ଭାବି ନେଇଥିଲି ମୁଁ ବିପୁଳ ନୈତିକ ବଳର ଅଧିକାରୀ ଥିଲେ ସେମାନେ, ବଳୀୟାନ ଥିଲେ ନୈତିକ ଆଚରଣରେ, ଏ ମର୍ତ୍ତ୍ୟମଣ୍ଡଳର ପ୍ରକୃତ 'ସାରସତ୍ତ୍ୱ' ଥିଲେ କେତୋଟିକ ଗୋଟିଏ ସେମାନେ, କିନ୍ତୁ କେବେ କେବେ ହେଲେ କେବେ ପ୍ରାୟ ପ୍ରତ୍ୟେକେ ସେମାନଙ୍କ ଭିତରୁ ଓଟର ହୋଇଥିଲେ କୋର୍ଟ କଚେରୀକୁ—ନିକ୍ଷିପ୍ତ ହୋଇଥିଲେ ଜେଲ କୋଠରୀରେ, ବିତାଡ଼ିତ ହୋଇଥିଲେ ନଗରରୁ ସବୁ । ବାଧ୍ୟ ହୋଇଥିଲେ ଯାତ୍ରା କରିବା ପାଇଁ, ଘୋର ଅବସାଦମୟ କ୍ଲାନ୍ତିମୟ ନିର୍ବାସନ ପଥରେ, ଅନ୍ୟ ସବୁ ଅପରାଧୀଙ୍କ ସହିତ ।

ତେବେ ଲକ୍ଷ୍ୟ କରିଥିଲି ମୁଁ ହକୋନାଇଟ୍‌ମାନଙ୍କର 'ଭ୍ରାନ୍ତ ଛଟା' ପେଟ-ଘଡ଼ିଆ ସ୍ଥାନ ପେନ୍ସ ଅତିକ୍ରମ କଲାବେଳେ ସେମାନେ—ଯେନ୍ସ'ବୁଢ଼ା ବୁଢ଼ୀ ଦନ୍ତବୁଢ଼ାମାନେ ଜାଣିଶୁଣି ନିଜ ନିଜ ଇଚ୍ଛାରେ ଆଖିରେ ପଟ୍ଟାଲି ଭଳି କେଶ୍ ଖୁସିରେ—ଲିପ୍ତ ହୋଇ ରହୁଥିଲେ ପରସ୍ପରକୁ ପଜ୍ଜଡ଼ିବାରେ ।

ସୁରପାଟରେ ବୁଡ଼ି ରହୁଥିବା ବେଳେ .କଣାଆଖିଆ ପାଖୋମି ଭଳି ପାହୁଥାଏ ଦେଖେଇ ହେବା ପାଇଁ ପ୍ରକୃତରେ ସେହି ଅସାଧାରଣ ସ୍ୱର୍ଣ୍ଣଶଳୁଟା, ଅଙ୍କୁଠି ଅଗରେ ସେ ଜାଣି ଶଣି ଦେଉଥାଏ ପବିତ୍ର ଧର୍ମଗ୍ରନ୍ଥଗୁଡ଼ାକ ନାଆଁ—ଠିକ୍ କହୁବୁ । ନଭେଲନବିଶ ଲେଖକମାନେ ଯେମିତି ଜାଣି ଗଣି ପାରୁଥିନ୍ତ—'ତାଲମୁଡ'ର ପଦଗୁଡ଼ାକ, ଯଥେଚ୍ଛା ଭାବରେ ଅଙ୍କୁଠି ମାରି ଯେ କୌଣସି ଗୋଟିଏ ଶବ୍ଦ ଉପରେ ବାହାର ସେଇଠୁ ଆରମ୍ଭ କରି ଦେଉଥାଏ ମନେ ପକାଇ ଅବୃତ୍ତି କରିବାକୁ—ଗାଇବାକୁ ନରମ ଅନୁନାସିକ ସ୍ୱରରେ—ସେତେବେଳେ ଅନେଇ ରହୁଥାଏ ତାଣାକୁ—ତାର ଭଳି ଆଖିଟା ଉତ୍ସୁକ ହୋଇ ଧାଉଁଥାଏ ହରିଣ ଭଳି ଦୌଡ଼ୁଥିଏ । ସତେ ଯେମିତି ଅତି ଅମୂଲ୍ୟ କିଛି ଖୋଜି ହେଉଥାଏ ଜଙ୍ଗଲରେ ଅଧିକାଂଶ ସମୟରେ ପ୍ରିନ୍ସ ମିଣଡେସ୍କିଙ୍କୁ "ଭୁଖର ଅଙ୍କୁର" କହୁଥା ଧରୁଥାଏ—ବ୍ୟବାହାର କରୁଥାଏ ତା ନିଜର ପ୍ରତିଭା ପ୍ରଦର୍ଶନ ଲାଗି ସବୁଠୁ ଭଲ ଭାବରେ ସେ ଜାଣିଥାଏ—ଶୌର୍ଯ୍ୟମୟ ସୁନ୍ଦର ଶସ୍ତ୍ରାଦମାନଙ୍କର ଅତିଶୟ ସୌନ୍ଦର୍ଯ୍ୟଶୀଳ, ଅତି ସାହସିକ ସ୍ୱରରେ ଦୁଃଖଯନ୍ତ୍ରଣା ବରଣ । ଆଉ ପିଓନ ଭସିଲିସ୍ଟେଭ ସବୁବେଳେ, କିନ୍ତୁ ତେଣେ ଅନେଇ ରହୁଥାଏ—ତାର ଭୁଲଗୁଡ଼ାକ ଧରିବା ପାଇଁ ।

"ଭୁଲ, ଭୁଲ, ସେଇଟା ଘଟିଥିଲା ଡେନିସ, ସହୋଟ ଡେନିସ ସଂପର୍କରେ—ସାଧୁ ସାଇପ୍ରିଆନ୍ ସମ୍ପର୍କରେ ନୁହେଁ ।"

"ଡେନିସ ! ଡେନିସ୍ କିଏ ହୋ ? କିଏ କେବେ ଶୁଣିଛି ଭଲା ସେମିତି କାହାର ନାଆଁ ? ଡାୟୋନିସିୟସ୍—ଡାୟୋନିସିୟସ ହେଉଛି ନାଆଁ, ଅସଲ ନାଆଁ ।"

"ନାଆଁ ନେଇ ଅଉ ଛଳଛଦ୍ମିଆ ଖେଳ ଦେଖା ନା ।"

"ତୁ ବି ଆଉ ବାହାର କାଠ୍ ନା ମତେ ଶିଖେଇବା ପାଇଁ ।"

ମିନିଟ୍ କ ପରେ ଦୁହିଁଙ୍କି ଦୁହେଁ ପାଚ ଲାଲ ପଡ଼ିଯାଉଥାନ୍ତି ରାଗରେ—କଟମଟ କରି ଅନେଇ ପରସ୍ପରକୁ ଦବେଇବା ପାଇଁ କହୁଥାନ୍ତି—

"ମଦୁଆ, ଦୁନିଆ ପିଆ---ହଲଦୀ ଅଲଜ୍ଜ କଥା—ଘୁଷୁରିଟା ତୁ ଦେଖ୍ ତୋ ପେଟଟାକୁ ତୋ ଉପରେ ମାଡ଼ି ବସିଚ କେମିତି ।"

ପାଖୋମି ଉତ୍ତର ଦେଉଥାଏ ଅଙ୍କକପାଳି ପରି ଅଙ୍କ କଷିକଷିକା ଯେମିତି ନିର୍ଲିପ୍ତ ଭଙ୍ଗୀରେ—

"ଗୋଟାଏ ଛେଳି ତୁ, ଛକ୍କର ଚୁଣ୍ଡାଳିଆ ଖାନମାନିଆ ମାଇପିକଣ୍ଠ-ଗୋଡ଼ିଆଟାଏ ତୁ !"

ଦୋକାନର ଗୁମାସ୍ତାଜଣକ ଜାମାଟାକୁ ହାତ ଉପରକୁ ଗୋଟେଇ ନେଇ ମୁରୁକ ମୁରୁକ ହସେ । କେମିତି ଗୋଟାଏ କୁଟିଳ ତାର ସେ ହସ । ସେହି ହସରେ ସେ ପ୍ରାଚୀନ ଧର୍ମର ଏହି ପୂଜାରୀମାନଙ୍କୁ ଉତ୍ସାହିତ କରି କହେ, ସତେ ଯେମିତି, ସେମାନେ ଗୋଟିଏ ଗୋଟିଏ ସ୍କୁଲ ପିଲା :

"ଦଅ, ତାକୁ ଆଉ ପାନେ ଦଅ ! ଠିକ୍ ହୋଇଛି ।"

ଦନେ ଦ'ବୁଢ଼ାଙ୍କ ଭିତରେ ସାଙ୍ଘାତକ ଗୋଟାଏ ଲଢ଼େଇ ହୋଇଗଲା । ପିଓଟର ଖ୍ରିସିଲଫ୍ଲେଭ ହାତଉଠେଇ ପାଖୋଇ ଟାଲରେ ବସାଇଦେଲା ଚଟକଣା-ଟାଏ ଏକାମାଡ଼କେ ପାଖୋଇ ଦୌଡ଼ି ଦୌଡ଼ି ପାରି । ଝାଳନାଳ ହୋ'ଇ, କପାଳ ପୋଛି ପୋଛି ପିଓଟର ତା' ପଛେ ପଛେ ପାଟି କରି ଉଠିଲା, "ରହିଥା, ଦେଖିବୁ ରହ ! ଏଇ ପାପ ତୋ ମୁଣ୍ଡ ଉପରେ ଯିବ । ଗୁଇ ମତେ ହାତ ଉଠେଇ ଏଇ ପାପ କରିବା ପାଇଁ ବାଧ କଲୁ । ଛିଃ ଧିକ୍ ତତେ ! "

ନଜର ସାଙ୍ଗମାନଙ୍କୁ ବିଧର୍ମୀ ବୋଲି ଗାଳିଦେବାରେ, ସେମାନେ "ନାସ୍ତିକ" ବୋଲି ଅଭିଯୋଗ କରିବାରେ ସେ କେମିତି ଏକ ବିଶେଷ ଆନନ୍ଦ ପାଏ ।

"ସେଇ ଆଲେକ୍‌ଜାଣ୍ଡାର ତୋ' ମୁଣ୍ଡକୁ ଏମିତି ଖାଇଛି, ସେଇ ବଡ଼ କୁହାଳିଆ ଆଲେକ୍‌ଜାଣ୍ଡାର୍ !"

"ନାସ୍ତିକ" ଶବ୍ଦଟି ତାକୁ ଖୁବ ଚଢ଼େଇ ଦିଏ, ବୋଧହୁଏ ଡରେଇ ଦିଏ ମଧ୍ୟ । କିନ୍ତୁ ଏଇ ନାସ୍ତିକବାଦ କ'ଣ ବୋଲି ତାକୁ ପଚାରିଲେ ସେ ବୁଝାଇବାକୁ ଚେଷ୍ଟାକରେ, ଅବଶ୍ୟ ଖୁବ ଅସ୍ପଷ୍ଟ ଭାବେ :

"'ନାସ୍ତିକତା' ହେଉଛି ସବୁଠାରୁ ଖରାପ ଧର୍ମ, ସେଥିରେ ଈଶ୍ୱରଙ୍କର ସ୍ଥାନ ନାହିଁ, ଖାଲି ମନ, ତା'ଛଡ଼ା ଆଉ କିଛି ନୁହଁ । ଏଇ କୋସାକ୍‌ମାନଙ୍କୁ ଦେଖ୍‌ନା— ସେମାନେ କେବଳ ବାଇବଲ୍‌କୁ ଗ୍ରହଣ କରନ୍ତି. ଆଉ ଏଇ ବାଇବଲ୍ ଆସିଛି ସାରାଟୋଭ୍‌ର ଜର୍ମାନମାନଙ୍କଠୁ, ସେମାନଙ୍କର ଲୁଥେର୍‌କୁ ଯାହା ସଂପର୍କରେ ଲୋକେ କହନ୍ତି, 'ତା ନାଁ ଲୁଥେର୍ ବୋଲି କିଏ ଦେଇଛି, ଠିକ୍ ବାଛି ବାଛି ଦେଇଛି; ଲୁଣ୍ଟର୍‌କୁ ଲୁଥେର୍, ଲୁଥେର ଲମ୍ପଟ, ଲମ୍ପଟ ଲୁଥେର୍" । ଏଇ ଜର୍ମାନ ଲୋକଗୁଡ଼ାକୁ ଲକ୍ଷ୍ମୀଛଡ଼ା ବୋଲି କେହି କେହି କହନ୍ତି । ଏସବୁ ଆସିଛି ସେଇ ପଶ୍ଚିମରୁ, ସେଇ ଧର୍ମଛଡ଼ା ଲୋକଙ୍କ ଆଡ଼ୁ ।"

ଗ୍ରେଟା ପାଦଟାକୁ ତାର ତଳେ ଟିକିଏ କସୁଡ଼ି ଦେଇ ସେ ପୁଣି କହେ । କଥାଟାକୁ ଓଜନିଆ କରିନେବା ପାଇଁ କଣ୍ଠକୁ କଠୋର କରିଦିଏ :

" ସେହିମାନଙ୍କୁ ହିଁ ଖୋଜି ଖୋଜି ବାହାର କରିବାକୁ ହେବ । ସେହି-ମାନଙ୍କୁ ହିଁ ଦମନ କରିବାକୁ ହେବ, ଜୀଅନ୍ତା ପୋଡ଼ିବାକୁ ହେବ । ଆମକୁ ନୁହଁ । ଆମେ ହେଲୁ ରୁଷିଆର ଲୋକ, କେଉଁ ଅନାଦି କାଳରୁ ଆମେ ରହିଆସିଛୁ । ଆମର ଧର୍ମ ହେଉଛି ପ୍ରାଚ୍ୟଜଗତର ପ୍ରକୃତ ଧର୍ମ, ପୁରାପୂରି ଖ୍ରୀଷ୍ଟ ଧର୍ମ, ତାର ମଂଜ ପର୍ଯ୍ୟନ୍ତ । ଆଉ ସେଇ ପଶ୍ଚିମାଗୁଡ଼ାକ, ସେମାନେ ସବୁ ମୁଣ୍ଡବୁଲା ଲୋକ,

ବିକୃତ ସ୍ୱାର୍ଥର ଚଲ୍ଲା ସେମାନଙ୍କର । ଜମିଦାରମାନଙ୍କଠାରୁ ଆରମ୍ଭ କରି ସେମାନେ ସମସ୍ତେ ସେସ୍ଥା । ସେମାନଙ୍କ ଦେଇ ହେବ କ'ଣ ? କିଛି ନାହିଁ । ଏଇ ଦେଖୁନା— ଟିକିଏ ମନେ ପକାଇଲ ୧୮୧୨ କଥା—"

ନିଜ କଥାରେ ସେ ଏତେ ବେଶି ମଜ୍ଜି ଯାଉଥାଏ ଯେ, ସେ ଭୁଲିଯାଏ ସେ ଟୋକାବୋକଟେ ସାଙ୍ଗରେ କଥାବାର୍ତ୍ତା କରୁଛି । ମୋ କମରବନ୍ଧକୁ ଜୋରରେ ଜାବୋଡ଼ି ଧରିପକାଏ, ବେଳେବେଳେ ପାଖକୁ ଟାଣିନିଏ, ବେଳେବେଳେ ପଛକୁ ଠେଲିଦିଏ । ଆଉ ଏଣେ କହିଯାଉଥାଏ ଘୋର ଉତ୍ସାହୀ, ଆଗ୍ରହୀ ଯୁବକ ପରି :

" ମଣିଷର ଜ୍ଞାନ, ତାର ବୁଦ୍ଧି ଅନ୍ଧ ପରି ଘୂରିବୁଲେ ତା'ର ନିଜର ମନଗଢ଼ା କଥାର ଅରଣ୍ୟ ଭିତରେ । ଗୋଟାଏ ହିଂସ୍ର ଶ୍ୱାପଦ ପରି ସେ ବୁଲେ, ସଇତାନର ତାଡ଼ନାରେ ବୁଲେ, ମଣିଷର ଆତ୍ମାକୁ ବଳି ଦେଇ । ହଁ, ମଣିଷର ଆତ୍ମା, ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ଦାନ ! ସଇତାନ୍‌ର ଏଇ ସେବକମାନେ, କ'ଣ ସେମାନେ ବାହାର କରିଛନ୍ତି ସେମାନଙ୍କର ମୁଣ୍ଡ ଭିତରୁ ? ଏଇ ଶୁଣ ସେମାନଙ୍କର ଶିକ୍ଷା କ'ଣ, ଏଇ ନାସ୍ତିକତାର ପୂଜାରୀମାନଙ୍କର ଶିକ୍ଷା କ'ଣ : ସଇତାନ ମଧ୍ୟ କୁଆଡ଼େ ଈଶ୍ୱରଙ୍କର ସନ୍ତାନ, ଯୀଶୁଖ୍ରୀଷ୍ଟଙ୍କର ବଡ଼ଭାଇ ସେ । ଖାଲି ଦେଖି ନେ' କଥା । ଆଉ ସେମାନେ ଲୋକଙ୍କୁ ଶିଖାନ୍ତି ସରକାରକୁ ମାନ ନାହିଁ, କାମ ବନ୍ଦ କରିଦିଅ, ସ୍ତ୍ରୀ ପିଲଙ୍କୁ ଛାଡ଼ିଦିଅ । କିଛି କର ନାହିଁ । କିଛି ଶୃଙ୍ଖଳା ଦରକାର ନାହିଁ । ଯେମିତି ଇଚ୍ଛା ସେମିତି ବଂଚରହ, ନ ହେଲେ ସଇତାନ ଯାହା କହୁଛି ତା' କର । ଆଃ, ପୁଣି ସେହି ଆଲେକ୍‌ଜାଣ୍ଡାର ଆସିଲାଣି··· ନରକର କୀଟ କେଉଁଠିକାର···

ବେଳେବେଳେ ଦୋକାନର ଗୁମାସ୍ତା କୌଣସି କାମ କରିବା ପାଇଁ ମତେ ଡାକନିଏ । ବୁଢ଼ା ଏକୁଟିଆ ରହେ । ସେହି ଅନ୍ଧ ତଳେ ସେମିତି ବସି ବସି ଶୂନ୍ୟତାକୁ ତା' କଥା ଶୁଣାଉଥାଏ :

'ହାୟ ! କି ହତଭାଗା ଏ ମଣିଷ ! କି ଅନ୍ଧ ପଶୁ ! ପଥଭ୍ରାନ୍ତ ଆତ୍ମା । ମୁଁ ଯିବି କୁଆଡ଼େ ? କିଏ ମତେ ଆଶ୍ରୟ ଦେବ ?"

ତା'ପରେ ମଥାଟାକୁ ପଛକୁ ଟିକିଏ ଢ଼ୁଲେଇ ନେଇ, ଆଣ୍ଠୁ ଉପରେ ପାପୁଲିପିଠା ଭରା ଦେଇ ଅପଲକ ଆଖିରେ ସେ ଅନେଇ ରହେ ସେଇ ଧୂଂସର ଶୀତାର୍ତ୍ତ ଆକାଶ ଭିତରକୁ ।

କ୍ରମେ କ୍ରମେ ମୋ ପ୍ରତି ସେ ଘୋର ସନ୍ଦିଗ୍ଧ ହୋଇ ଉଠିଲା । ମୋ ପ୍ରତି ଅଧିକ ନଜର ଦେଲା । ଯେତେବେଳେ ମତେ ସେ ଦେଖେ ମୁଁ ବହି ଖଣ୍ଡେ ଧରି ପଢ଼ୁଛି ମୋ କାନ୍ଧ ଆଗୁଡ଼େଇ ସେ କହେ :

"ହେ' ପଢ଼ି ଯା, ବାବୁ, ପଢ଼ି ଯା । ଦରକାରବେଳେ କାମରେ ଆସିବ । ମୁଣ୍ଡରେ ତୋର ବୁଦ୍ଧି ଥିଲା ପରି ଲାଗେ । କିନ୍ତୁ ତୁ ବଡ଼ ବଡ଼ଙ୍କ କଥା ଶୁଣୁ ନାହୁଁ । ସମସ୍ତଙ୍କ ବିରୁଦ୍ଧରେ ଯାଉଛୁ । ସେ' କିଛି ଭଲ କଥା ନୁହେଁ । ଏମିତି ଫାଜିଲାମି ଚଳେ କୁଆଡ଼େ ନେବ ? ନେଇ ନେଇ ସେଇ କଏଦୀ ଜଙ୍ଗଲକୁ ଟାଣି ନେବ, ବୁଝିଲୁରେ ବାପ ! ହଉ, ହଉ, ତୁ ପଢ଼ି ଯା, ଯେତେ ପାରୁଛୁ ସେତେ ପଢ଼ି ଯା । କିନ୍ତୁ ଭୁଲି ଯା'ନା— ବହି ହେଲା ବହି – ତୋ ମୁଣ୍ଡ କିଂରୁ ଖେଳେଇ-ବାକୁ ପଡ଼ିବ । ବହୁ ଦିନ ତଳେ ଖ୍ରୀଷ୍ଟିମାନଙ୍କ ଭିତରେ ତାଙ୍କର ଜଣେ ଗୁରୁ ଥିଲା । ତା'ନାଁ ଓେଜନସୁଲ । ସେ କହେ ବହିଗୁଡ଼ାକ କିଛି କାମର ଜିନିଷ ନୁହେଁ । ପୁରୁଣା ହେଉ କି ନୂଆ ହେଉ ସେସବୁ କିଛି କାମରେ ଆସେ ନାହିଁ । ତେବେ ସେ ବହି-ଗୁଡ଼ାକ ସବୁ ନେଇ ନଈରେ ଫୋପାଡ଼ି ଦେଲା । କିନ୍ତୁ ତା'ବି କିଛି ଭଲ କଥା ନୁହେଁ, ଖାଲି ମୂର୍ଖାମୀ । ତା' ଛଡ଼ା ସେଇ ଆଲେକ୍‌ଜାଣ୍ଡ୍ରାଟା, ବଦମାସ ଲୋକଟା, ଲୋକଗୁଡ଼ାକୁ ଖାଲି ଘାଣ୍ଟି ଚକଟି ପକାଉଛି···

ମୁଁ ଦେଖିଲି ଏଇ ଆଲେକ୍‌ଜାଣ୍ଡ୍ରାର କଥା—ସେ ଆଜିକାଲି ବାହିକ ବେଶି ବେଶି କହୁଛି । ତେବେ ସେ ହଠାତ୍ ଦୋକାନ ଭିତରକୁ ପଶି ଆସିଲା ଖୁବ ବ୍ୟସ୍ତ ଭାବ୍ ଚମ୍ପତ ହୋଇ । ଦୋକାନର ଗୁମାସ୍ତାକୁ ଶାଣିତକଣ୍ଠରେ କହିଲା :

" ଏ, ଶୁଣ ! ଆଲେକ୍‌ଜାଣ୍ଡ୍ରାର ଟାଉନକୁ ଆସିଛି । କାଲି ଆସି ପହଞ୍ଚିଛି । ମୁଁ ତାକୁ ସବୁଆଡ଼େ ଯାଇ ଖୋଜିଲିଣି । କିନ୍ତୁ ଏପର୍ଯ୍ୟନ୍ତ ତାକୁ କେଉଁଠି ପାଇଲି ନାହିଁ । କେଉଁଠି ଯାଇ ଲୁଚିଛି କେଜାଣି ! ମୁଁ ଟିକିଏ ଏଇଠି ବସେ । କାଳେ ସେ ଆସିପାରେ !"

"ମୁଁ କାହାକୁ ଜାଣିନାହିଁ କି କିଛି ଜାଣିନାହିଁ ।" ଚଡ଼ ଚଡ଼ ହୋଇ ଜବାବ ଦେଲା ଗୁମାସ୍ତା ।

ବୁଢ଼ା ମଥା ହଲାଇ କହିଲା : "ଠିକ୍ କହୁଛୁ ! ତୁ କେବଳ ଚିହ୍ନୁ କିଣିଲା-ବାଲା ଆଉ ବିକାଳିବାଲା ଲୋକଙ୍କୁ । ତା'ଛଡ଼ା ଦୁନିଆରେ ଅଉ କେହି ନାହାନ୍ତି ତୋ ପାଇଁ । ହଉ, ହଉ ମତେ ଗିଲାସେ ଚାହା ଖୁଆଇଲୁ ।"

ବଡ଼ ପିତଳ ଚାହା କେଟିଲ୍‌ଟାରେ ଗରମ ପାଣି ଭର୍ତ୍ତି କରି ମୁଁ ଆସି ଦେଖେତ ଦୋକାନରେ ଆଉ କେତେଜଣ ଆସି ଜମିଗଲେଣି । ସେମାନଙ୍କ ଭିତରୁ ଜଣେ ହେଲା ବୁଢ଼ା ଲୁକିଆନ୍ । ମୁହଁରୁ ହସ ଛଳୁଛି ପଡ଼ୁଛି ତାର । ଆଉ ଜଣେ କିଏ ବସିଛି କବାଟ ଉହାଡ଼ରେ ସେହି ଅନ୍ଧାରିଆ କୋଣ ଭିତରେ । ଲୋକଟା କିଏ ମୁଁ ଚିହ୍ନେ ନାହିଁ, ଦେଖି ନାହିଁ କେବେ । ଗୋଡ଼ରେ ଲମ୍ବା ଲମ୍ବା ଫେଲ୍‌ଟ ବୁଟ, ଦେହରେ ଗରମ କୋଟ, ଅଣ୍ଟାରେ ଶାଗୁଆ କମରବନ୍ଧ । ମଥାର ଟୋପିଟା ଆଖି ଉପରକୁ ଟଣା ହୋଇ ଆସିଛି । ଲୋକଟାର ମୁହଁଟା ମତେ ବାହିକ ଭଲ ଲାଗିଲା-

ନାହିଁ । କିନ୍ତୁ ଦେଖିବାକୁ ବେଶ୍ ସାଧାସିଧା ଶାନ୍ତ ମଣିଷଟିଏ । ଦୋକାନରୁ ତଡ଼ା ଖାଇଥିବା ଜଣେ ଗୁମାସ୍ତା ପରି ଦେଖିବାକୁ ଠିକ୍, ତଡ଼ାଖାଇ ମନ ତାର ମରି-ଯାଇଛୁ ଯେମିତି !

ତା' ଅଡ଼କୁ ନ ଅନେଇ ପିଓଟର ଭ୍ୟାସିଲିସ୍ଟେଭ ଗମ୍ଭୀର କଣ୍ଠରେ ତାକୁ କ'ଣ କହିଲାଗିଛୁ । ଆଉ ସେହି ଲୋକଟା ତାର ଅଶଳ ଅଶଳ ଡାହାଣ ହାତରେ ମଥାର ଟୋପିଟାକୁ ଏପଟ ସେପଟ କରୁଥାଏ । ବେଳେବେଳେ ହାତ ଉଠାଇ ନିଜ ହାତରେ କ୍ରୁସ ଚିହ୍ନ ଅଙ୍କିଲା ଭଳି ଭଙ୍ଗୀ କରେ । କିନ୍ତୁ ତାର ହାତଟା ଉଠିଯାଏ ଅନ୍ଧର ଉପରକୁ । ମଥା ଉପରକୁ ହାତ ନେଇ ସେ ଟୋପିଟାକୁ ଟିକଏ ପଛକୁ ଠେଲିଦିଏ । ତା'ପରେ ପୁଣିଥରେ ଆହୁରି ଟିକଏ ଠେଲିଦିଏ । କିଛି ସମୟ ପରେ ପୁଣିଥରେ ଠେଲିଦିଏ । ଅବଶେଷରେ ଟୋପିଟା ପଛକୁ ଏତେ ଖସି ଗଲା ଯେ ମନେହେଲା ସତେ ଯେମିତି ତଳେ ଖସି ପଡ଼ିବ । କିନ୍ତୁ ପର ମୁହୂର୍ତ୍ତରେ ସେ ପୁଣିଥରେ ଟୋପିଟାକୁ ସାମନାକୁ ଟାଣି ଆଣିଲା ଆଖି ଉପରକୁ । ତା'ହାତର ଏଇ ଅସ୍ଥିର ଭଙ୍ଗୀ ଦେଖି ମୋର ମନେ ପଡ଼ିଗଲା ପାଗଲା ଇଗୋଶା କଥା, ସେ "ପକେଟରେ ମରଣ" କଥା ।

"କେତେ କଙ୍କଡ଼ା ଆସି ଆମର ଏଇ ଗୋଲାପଣିକୁ ଆହୁରି ଗୋଳିଆ କରି-ଦେଲେଣି । ଗୋଳପାଣି ସୁହାଏ ସେମାନଙ୍କୁ", କହିଲା ପିଓଟର ଭ୍ୟାସିଲିସ୍ଟେଭ୍ ।

ଦୋକାନର ଗୁମାସ୍ତା ପରି ଦେଖାଯାଉଥିବା ଲୋକଟା ପଚାରିଲା ଧୀରେ ଧୀରେ, ଶାନ୍ତ କଣ୍ଠରେ ।

"ତୁମେ କ'ଣ ମୋ କଥା କହୁଛ ?"

"ଯଦି କହେ, କ'ଣ ହେଲା ?"

ତା'ପରେ ପୁଣିଥରେ ସେଇ ଲୋକଟା ପଚାରିଲା ସେମିତି ଥରି ଥରି, କିନ୍ତୁ ପ୍ରାଣଭରା କଣ୍ଠରେ :

"ଆଉ ତୁମ ନିଜ କଥା କ'ଣ କହିଲ ଦେଖି, ବାପ ?"

"ମୋ କଥା ମୁଁ କେବଳ ଈଶ୍ୱରଙ୍କୁ କହେ—ସେ ମୋ କାରବାର ମୁଁ ବୁଝିବି ।"

"ନାଁ, ନା । ବାପ, ସେ କେବଳ ତୁମ କାରବାର ନୁହେଁ, ସେ ମଧ୍ୟ ମୋ କାରବାର", ସେଇ ଅପରିଚିତ ଲୋକଟି ଜବାବ ଦେଲା ବେଶ୍ ଦୃଢ଼ କଣ୍ଠରେ ଗଡ଼ କାଢିଲା ପରି । "ସତ୍ୟ ନିକଟରୁ ମୁହଁ ଫେରାଇ ହୁଏ ନାହିଁ, ଆତ୍ମତୃପ୍ତିରେ ଆଖି ବୁଜିହୁଏ ନାହିଁ । ଈଶ୍ୱରଙ୍କ ନିକଟରେ ମଣିଷ ନିକଟରେ ମଣିଷର ପାପ ଅଶେଷ ।

ପିଓଟର ଭ୍ୟାସିଲିସ୍ଟେଭକୁ ସେ ଯେ "ଆରେ ବାପ" ବୋଲି କହିଲା ସେ କଥାଟା ମୋ ମନକୁ ଖୁବ ପାଇଲା । ତାର ସେଇ ଶାନ୍ତ ଗମ୍ଭୀର କଣ୍ଠ ମଧ୍ୟ ମୋ ମନକୁ ଚହଲାଇ ଦେଲା । ଜଣେ ଭଲ ପାଦ୍ରି ଯେମିତି ପଢ଼େ, "ହେ, ଈଶ୍ୱର, ହେ,

ଏଇ ଶରୀରର ସ୍ରଷ୍ଟା..........." ଠିକ୍ ସେମିତ ସେ କଥା କହେ । ଆଉ ଧୀରେ ଧୀରେ ମୁହଁ ଆଗରେ ହାତକୁ ହଲେଇ ହଲେଇ ଟିକଏ ଟିକଏ ସେଇ ଚୌକୀ ଉପରେ ଆଗକୁ ଘୁଞ୍ଚି ଘୁଞ୍ଚି ଆସେ ।

"ମୋ ଉପରେ ଏମିତ ଗସ୍ସ ଦେଇ ବସୁଛ କାହିଁକି ! ତମଠୁ ବଳି ଏମିତ କିଛୁ ଅଧିକା ପାପୀ ନୁହେଁ ମୁଁ ।" ଆରେ ସାମୋ ସ୍ୱରଟା ( ହଠାତ୍ଲିଟା ) କେମିତ ଥୁ ଥୁ ହେଉଛୁ, ଚଡ଼୍ ଚଡ଼୍, ବଡ଼ ବଡ଼ ହୋଇ ଦେହ ଜଳେଇଲା ଭଳି କହୁଲା ଲୁକଆନ୍ । କିନ୍ତୁ ହେ ଅଜଣା ଅଚହ୍ନା ଲୋକଟା ସେଥିକି କାନ ଦଅନ୍ତା ବା କାହିଁକି ଟିକଏ !

"ଭଗବାନ ହିଁ ଜାଣିପାରନ୍ତି—ଜାଣନ୍ତି କେବଳ । କଏ ଘାଣ୍ଟିଚକଟି ଗୋଳିଆ କରେ ପବିତ୍ର ଆତ୍ମାର"—କୁଅଟ୍ଟରଟାକୁ । ଦୁଏତ ଏହା ତୁମର ସବୁ ପାଠ । ପୋଥି ପଢିଆ—ପୋଥି ମୁହଁା ପଣ୍ଡିତଗୁଡ଼ାକଙ୍କର ! ପୋଦପଡ ଭେ ମଲୁମ୍ ନାହିଁ କି, ପାଠଶାଠ କ'ଣ ଜାଣେ ନା ମୁଁ । ଜାଅନ୍ତା ମଣିଷଟାଏ ମୁଁ, ସରଳ ମଣିଷଟାଏ ।"

"ତମ ସରଳପଣିଆ ବେଶ୍ ମାଲୁମ ମତେ——ବହୁତ ଶୁଣିଚ ମୁଁ ।"

"ତୁମେ, ତୁମେଇ ସବୁ ଗୋଳିଆ କର, ବଗାଡ଼ ଦଅ ଲୋକଙ୍କ ମୁଣ୍ଡକୁ । ତୁମେ, ତୁମେ ଯେତେକ ବହିପଢୁଆ ଭଣ୍ଡ-କପଟୀଗୁଡ଼ାକ ପୁରୁଣା ଇହୁଦୀଙ୍କ ଭଳି, ତୁମେ ଯେତେକ ସହଜ ସରଳ ଭାବଗୁଡ଼ାକୁ ଥୁଅ ବିକୃତ କରି ସବୁବେଳେ, "ତୁମେ" । ଆଉ ମୁଁ, ମୋ ବୟସ୍ସରେ କହିପାରିବ ଭଲି କ'ଣ ଶିଖାଏ— ମଣାଏ, କ'ଣ ପଢ଼ାଏ ମୁଁ ?"

ଧର୍ମ ହୋଇ ପଣିଆ, ଧର୍ମଦ୍ୱେଷ କହୁଉଠିଲା ପିତ୍ତଜ ଭ୍ୟାସିକ୍ଏଭ ଅଜଣା ଲୋକଟା । ହାତ ପାପୁଲିଟାକୁ ମୁହଁ ସାମ୍ନାରେ ଧରିଲା, ସତେ ଯେମିତ ସେଥିରେ କ'ଣ ସବୁ ଲେଖା ହୋଇଥିଲା ପଢ଼ିଲାଗିଲା ଯଉ ଅତ ନିଷ୍ଠାପର ସହୃତ ଉଚ୍ଚସ୍ୱରେ କହୁଲା—

"ତମେ ଭକ୍ତତ ଲୋକଙ୍କୁ ଗୋଟାଏ ଘୁଞ୍ଚୁରି ଗୁହାଳକୁ ନେଇ ଅଉ ଗୋଟିକରେ ଭର୍ତ୍ତି କରିଦେଲେ ତାଙ୍କ ଭାଗ୍ୟ ଖୋଲିଯିବ । କହି ରଖୁଚ, ଏମିତ ହେବ ନାହିଁ କିଛୁ । ଶୁଣ, ଶୁଣରେ ମାନବା ଶୁଣ—ଫିଟେଇ ଦଅ, ଫଟେଇ ଦଅ ବନ୍ଧନରୁ ନିଜକୁ । କ'ଣ ବା ସେସବୁ, କ'ଣ ବା ମୂଲ୍ୟ ସେସବୁର । ଘରଦ୍ୱାର 'ପୁଅ-ଝିଅ' ସ୍ଥାବର-ଅସ୍ଥାବର ଧନସମ୍ପତ୍ତିର କ'ଣ ବା ମୂଲ୍ୟ ! ଭଗବାନଙ୍କ ସାମନାରେ ମୁକ୍ତ କରିଦଅ ନିଜକୁରେ—, ସେହି ଯାହାସବୁ କଢ଼େଇ ନିଏ ହିଂସାଦ୍ୱେଷ, ମରାମରି ଆଡ଼କୁ । ମୁକ୍ତ କରିଦଅ, ସୁନାରୁପା ଆଉ ଯେତେ ଯାହା ବିଭବ ଅଛୁ, ସେଥିରୁ ଧୂଳିସବୁ, ମାଟିସବୁ । ମାଟିରୁ ଆସିଚୁ ମାଟିରେ ମିଶିବ— ଶାଉଁଶ ପାଉଁଶରେ ସବୁ ଓ ଧରା । ମୋକ୍ଷ ପାଇବ, ମୁକ୍ତ ହେବ କଏ, ଏଇ ଧରିତ୍ରୀର ବୁକୁରେ ନୁହେଁ—

ବନବନ ପ୍ରାନ୍ତରରେ ନୁହେଁ, ପାଇବ, ମୋକ୍ଷ ପାଇବ, ମୁକ୍ତ ହେବ ବୈକୁଣ୍ଠରେ, ଗିରି ଗହ୍ୱରରେ । ସବୁଥିରୁ ଛଡ଼େଇ ଆଣ—ଛଡ଼େଇ ଆଣ ନିଜକୁ କହୁଚି ଭାଙ୍ଗି ଦିଅ, ଭାଙ୍ଗି ଦିଅ ସବୁ ଶୃଙ୍ଖଳକୁ ଯେତେ ଯାହା ଧରି ରଖିଛି, ବାନ୍ଧି ରଖିଚି ତୁମକୁ ଏ ସଂସାରରେ, ଏ ପୃଥିବୀରେ । କାରଣ, ସେସବୁ ଗଢା ହୋଇଚି ଯେତେ ବିରୋଧୀ, ଖ୍ରୀଷ୍ଟ ବିରୋଧୀ ତାଙ୍କର ହାତରେ, ଚାଲିବ ମୁଁ ସିଧା ସଳଖ ସଂକୀର୍ଣ୍ଣ ବାଟରେ । ତେଲେ ହେଲେ ଅବିଶ୍ୱାସରେ ଅନାସ୍ଥାରେ ଏଣେତେଣେ ଭ ହେଇ ଆତ୍ମା ଟିକିକୁ ନଖ ପର୍ଯ୍ୟନ୍ତ ସବୁ ଗ୍ରନ୍ଥିଗୁଡ଼ି, ଏମିତିକ ଯେଉଁ ଆଖି ମୋହରେ ପକାଏ, ଲୋଭରେ ପକାଏ ସେହି ଆଖିକୁ ଛାଡ଼ି ଦେଇ, ଖୋଲି ଫୋପାଡ଼ି ଦେଇ ଖୋଜ ତୋର ମୁକ୍ତି, ଖୋଜ, ମୋକ୍ଷ ଖୋଜ । ଭଗବାନଙ୍କ ପାଇଁ, ତାଙ୍କୁ ପାଇବା ପାଇଁ ରେ । ଦେହ ମାଂସର ସାର ପଣିଆଁକୁ ନାଶ କରି ଦେ'—ନାଶ କରି ଦେ ଅଭି ସଂଚ ରଖ, ସ୍ୱଚ୍ଛ ରଖ ନିଜକୁ ଅନ୍ତରାରେ, ଯେମିତିକ ଐଶ୍ୱରିକ ପ୍ରେମରେ ଦୀପ୍ତିମନ୍ତ ହୋଇ ଉଠୁଥିବ, ଜଳୁଥିବ ଯୁଗ ଯୁଗ ଧରି ସେଇ ସେଇ ଆତ୍ମା ତୋର ।"

"ଫୁଃ । ତମ ସଙ୍ଗରେ କୁସ୍ତି ନାକୁ ଯିବ ନା, ଦୂର ଗାତକୁ ଯିବ ।" ଉଠୁ ଉଠୁ କହିଲ ପିଓଟର୍ କସଲହେଭ୍ । ଖାଇବାଥିଲ ଗଲାବର୍ଷଠୁ ବର୍ଷେ ଟିଏ ଭିତରେ କିଛି ବୁଦ୍ଧି ସୁଦ୍ଧି ହେବଣି, ମୁଣ୍ଡଟା କାମ କରିବଣି, ଦେଖୁଚି ଆଗଠୁ ବଳି ଏକା-ବେଳକେ ଯାଇଚୁ ତୁ ରସାତଳକୁ ।

ବୁଢ଼ା ଚପେଇ ଚିପେଇ ପୋକାନକୁ ବାହାରିଗଲା ବାଟମୁହଁ ଖିଲଣ ଅଡ଼କୁ । ଆତଙ୍କିତ ହୋଇଉଠିଲା ଆଲେକ୍‌ଜାଣ୍ଡର ; ଅତଚ୍ଛ ହୋଇ ପଶିଗଲା ତରବରରେ ।

"ଆରେ, କ'ଣ ଚାଲିଯାଉଛ ଯେ— ଏ କ'ଣ ? ଆଖି ଟିପି କହିଲା

"ଠିକ୍ ଅଛି, ଠିକ୍ ଅଛି ।"

କିନ୍ତୁ ଆଲେକ୍‌ଜାଣ୍ଡର ରାଗିଗଲା ତା' ଉପରେ । ଝାମ୍ପି ପଡ଼ିଲା ଯେମିତି ତା' ଉପରେ ।

"ତୁ ବି ବାହାପିଆ ଗପୁଡ଼ି ଖାଉହାଟ । ଶୁଣିବାରେ ଲାଗିଛୁ । ବୁଝିବୁ, ବାହାରିଚୁ ତୋର ନିକମା ବହୁନଗୁଡ଼ାକୁ—ଅଗାଡ଼ିଗୁଡ଼ାକୁ ! କ'ଣ ଯାର ଅର୍ଥଟା କ'ଣ, ମତଲବ୍‌ଟା କ'ଣ ? ଦ,ଦଥର ଜପ୍ପ ଜପ୍ପ ଗାଅ— ଧନ ଧନ ଥର···" ।

ହସିଦେଇ ଟିକିଏ ଲୁକଆନ୍ ବି ବାହାରିଗଲା ବାଟମୁହଁ ଖିଲଣ ତଳକୁ— ଅଚହ୍ନା ଲୋକଟି ଠିକ୍ ଯେତେବେଳେ ଦୋକାନ କର୍ମଚାରୀ ଆଡ଼କୁ ବୁଲିପଡ଼ି କହି ଲାଗିଲା ମନରେ ଦୃଢ଼ ବିଶ୍ୱାସ ଧରି, ଦମ୍ଭରେ ।

"ମୋ ମନରେ ମୋ ଆତ୍ମାର ବଳଟା ସମ୍ଭବ ବହୁତ ବେଶି ସେମାନଙ୍କ ପକ୍ଷରେ— ବହୁତ ବେଶି । ପଳାନ୍ତୁ ସେମାନେ, ଖସି ପଳାନ୍ତୁ ଧୂଆଁ ଭଳି ନିଆଁରୁ ।"

ଦୋକାନ କର୍ମଗୃହଟି ଭୂବୃତ୍ତଳକ ତଳରୁ ଉପରକୁ ତୋଳା ଟେକ ଗୃହଁଲ ଟିକଏ, ଶୁଖିଲ ଭାବରେ ଟିପ୍ପଣୀ କାଢ଼ିଲ—

"ମୁଁ— ମୁଁ ନ ଆଏ ଏମିତଆ କଥାରେ । ପାଖ ମାଡ଼େନା କେବେ ଏମିତଆ କଥାର ।

ଆଶ୍ଚର୍ଯ୍ୟ ହୋଇଗଲ ଅଚହ୍ଲା ଲୋକଟି ଏଇ ପଦାରେ । ଟୋପିଟିକୁ ଟାଣି ଦେଇ ଟିକଏ ତଳମୁହାଁ ହୋଇ ଟୁପୁ ଟୁପୁ ହେଲ ମନକୁ ମନ ।

"ଏମିତଆ କଥାରେ ନ ଆଅ ତୁମେ କେମିତ, କେମିତ ବା ଯାଅ ନା ଏମିତଆ କଥା ପାଖକୁ ? ଏମିତଆ କଥା— ଏମିତଆ କଥାଗୁଡ଼ାକ ତ ସ୍ୱହାନ୍ତ, ଯାଆନ୍ତୁ ସମସ୍ତେ ତାଙ୍କ ପାଖକୁ— ପଶନ୍ତୁ ସବୁ ତାଙ୍କ ଭିତରେ ।

ମୁହୂର୍ତ୍ତେ ଖଣ୍ଡେ ମୁଣ୍ଡ ନୁଆଁଇ, ହଲେଇ କହଲେ ଚଲେ— ବସି ରହିଲ ସେ ଚୁପ୍ ଚୁପ୍ । ତା' ପରେ ଡାକଲେ ତାକୁ, ବୁଢ଼ାଯାକ ଆଉ ଜନହଙ୍କି ଜନହେଁ ସେମାନେ । ବାହାରଗଲେ ବଦାଷ୍ଟ ନନେଇ, ଓଲଗି ନହୋଇ, ଯାଉଚ୍ଛ ବୋଲି କହି ।

ରାଗରେ ଅଗ୍ନିଉତ୍ସବ ଭଳ ଭାବ ଉଠିଥିଲ ଅଚହ୍ନା ଲୋକଟି ମୋ ସାମ୍ନାରେ—ସ୍ୱଳର୍ଗ ଯାଇ କେତେବେଳେ ନଭ ନଭ ହୋଇ କେତେବେଳେ ତା ସେହି ସଂସାରକୁ ଅସ୍ୱୀକାର କରିବାର କେତେକ ଯଥାର୍ଥତାରେ ।

ସନ୍ତରେ ସେଦନ ସୁବଧା ଉଣ୍ଟି ଗୋଟିଏ ମୁହୂର୍ତ୍ତରେ ଖୁବ ଉତ୍ସାହରେ ମୁଁ ତାକୁ ବର୍ଣ୍ଣନା କଲି— ଗୋଟି ଗୋଟି କରି କହିଲ ତା ବିଷୟ । ଆମ କାରଖାନାର ଧୀର ଶାନ୍ତ ଲୋକଟି ମୁଖିଆ ମିସ୍ତ୍ରି ଆଗରେ । ସମୁଦାୟ ଶୁଣିସାରି ସେ ମୋତ କହିଲ—

"ଧାଆଁ-ଦଉଡ଼ଆଟାଏ ହୋଇଥିବ ନିଶ୍ଚୟ— ସେମିତ ଗୋଟିଏ ଗୋଷ୍ଠୀର ଲୋକ ଅଛନ୍ତି— ଯିଏ କଛି ମାନନ୍ତି ନାହିଁ— କଛି କଥା ଗ୍ରହଣ କରନ୍ତି ନାହିଁ ।"

"କଣ ଚଳନ୍ତି କେମିତ, ବଞ୍ଚନ୍ତି କେମିତ ସେମାନେ ?"

"ଧାଆଁ ଧଉଡ଼ କରି— ବୁଲି ବୁଲି ବୁନଆଟାଯାକ । ସେଇଥିପାଇଁ ତ ନାଆଁଟା କମେଇଛନ୍ତି ସେମାନେ— ଧାଆଁ-ଦଉଡ଼ଆ ବୋଲି । ସେମାନେ କହନ୍ତି ଏ ମଣିଷଟା, ଏ ପୃଥିବୀଟା ଆଉ ଏହା ଉପରେ ଯେତେ ଯାହା ଅଛି— କହିବାକୁ ହେବ ନାହିଁ, ସେସବୁ କଛି ନାହିଁ— ଅସ୍ତିତ୍ୱ ନାହିଁ ସେଗୁଡ଼ାକର । ପୋଲିସ୍ ଆଖିରେ ତ ସେମାନେ ଷଡ଼ଯନ୍ତ୍ରକାରକ ଅପରାଧୀ ସବୁ, ଏଣୁ ତାଙ୍କ ପଛରେ ଲାଗି ରହିଥାନ୍ତି ପୋଲିସ୍ ଖୋଜି ଖୋଜି ଗୋଡ଼େଇଥାନ୍ତି ସେମାନଙ୍କୁ ।"

ଜୀବନ ମୋର କମ୍ ଭକ୍ତି, କମ୍ ସମ୍ମାନ୍ ନ ଥିଲ, ତଥାପି ବୁଝି ପାରୁ ନ ଥିଲି ପୃଥିବୀରେ ପ୍ରତ୍ୟେକ ଜିନିଷକୁ ପ୍ରତ୍ୟେକ କଥାକୁ ଅସ୍ୱୀକାର କରିପାରୁଚ କେମିତ । ସେ ସମୟରେ ବି ଅନେକ କଥା, ଅନେକ ଘଟଣା ଥିଲ ବୁଝିଆଡ଼ର, ଯାହାକୁ ମଣି-

ପାରୁଥିଲି ପ୍ରିୟ ବୋଲି; ଜୀବନରେ ମୋର ଆପଣାର ବୋଲି, ଯାହା ପ୍ରତି ବେଶି ଆଗ୍ରହ ଥିଲା ମନରେ— ଯାହା ଏତେ ରୋଚକ ଥିଲା ପୁଣି । ଏଣୁ ଚାହୁଁ ଚାହୁଁ କେଉଁଠା ଦିନରେ ସ୍ମୃତିପଟରୁ ମୋର ପୋଛି ହୋଇଗଲା— 'ଆଲେକ୍‌ଜାଣ୍ଡର' ରୂପର ଗ୍ଲାସଟି ।

କିନ୍ତୁ ଆଉ ଆଉ ଅନେକ ସମୟରେ— ଦୁଃଖରେ ବସିବାର ମୁହୂର୍ତ୍ତରେ ଆବିର୍ଭାବ ହଉଥିଲା ସେଇଟି— ଥରକୁ ଥର । ଗଛଆ ଦେଇ ଧୂସର ରାସ୍ତାଟାରେ ଚାଲିଯାଉଥିଲା ବନସ୍ତ ଆଡ଼କୁ ମୁହାଁଇ । ଆଉ କାମଦାମରେ ଧୂଳି ଧୂସରିଆ ମଇଳା ନୁହେଁ । ଏମିତିକା ଧଳା ହାତରେ କଂପିଲା କଂପିଲା ସ୍ୱରରେ ପଛକୁ ଠେଲି ଖସାଇ ନେଉଥିଲା ରହିରହିକା, ଟୋପିଟିକୁ ।

“ ଚାଲିଚ ମୁଁ ସିଧାସଳଖ ସଙ୍କୀର୍ଣ୍ଣ ରାସ୍ତାଟିରେ— ମାନେନା ମୁଁ କାହାକୁ ବୋଲି କିଛୁ— କାହାର ଅସ୍ତିତ୍ୱ ! ଛଡ଼ାଇ ଦେ, ଛଡ଼ାଇ ଦେ'ରେ ବଂଧନ—ସବୁ ବଂଧନ ।”

ଲାଗୁଥିଲା ପାଖେ ପାଖେ ତାର ଦେଖୁଥିଲି ମୁଁ ବାପାଙ୍କୁ ମୋର କେମିତି ଠିକ୍ ଆତ୍ମାର ସ୍ୱପ୍ନରେ ଦେଖା ଦେଉଥିଲେ ସେ । ହାତରେ ବେତ୍ ଗଛ ଡାଳର ବାଡ଼ି । ଗୁପିଗୁପି କିଆ କୁକୁରଟା ଲାଗି ଲାଗି ତାଙ୍କ ପଛରେ ଲହଲେଇ ଲହଲେଇ ଛୁଉଟା—

## ତ୍ରୟୋଦଶ

ଓଧାଓଧି ଚଉଖୁଣିଆ କୋଠାରେ ଥାଏ ଫଟୋ-ଛବି ତିଆରି କାରଖାନା । ଦୁଇଟି ବଖରାରୁ ଗୋଟିକର ଚଉକୋଣି ଝରକା ଥାଏ ଅଗଣା ଆଡ଼କୁ — ସେଥିରୁ ଦୁଇଟିର ମୁହଁ ପୁଣି ଥାଏ ବଗିଚାକୁ । ଆର ବଖରାଟିର ଗୋଟିଏ ଝରକା ଥାଏ ବଗିଚାକୁ, ଅନ୍ୟ ଗୋଟିଏ ରାସ୍ତା ଆଡ଼କୁ । ଝରକାଗୁଡ଼ିକ ଛୋଟ ଛୋଟ ଚଉକୋଣିଆ । ସେଥିରେ ଯେଉଁ କାଚ ଲାଗିଥାଏ— ବହୁତ ହୋଇଯିବାରୁ ଦିଶୁଥାଏ ଇନ୍ଦ୍ରଧନୁ ରଙ୍ଗର— ଏଣୁ ଶୀତଦିନର ଦୁର୍ବଳିଆ ସୂର୍ଯ୍ୟଆଲୁଅ ଚତୁରେଇ ପଡ଼ୁଥାଏ, ଯେଉଁ ଅଳ୍ପ ଟିକକ ତା'ପାଇଁ ଝରକା କାଚରେ ପଶିବାକୁ ବାଟ ନଥାଏ ତାକୁ ବାଟ ଛାଡ଼ୁନଥାଏ ଝରକା କାଚଗୁଡ଼ାକ ।

ଦୁଇଟିଯାକ ବଖରାରେ ଠାବ ନଥାଏ ଟେବୁଲ ଉପରେ । ନଇଁ ପଡ଼ୁଥାନ୍ତି ଜଣେ ନ ହେଲେ ବା କେଉଁଟିରେ ଦୁ'ଜଣ ଫଟୋଗ୍ରାଫର । ପାଣି ଭର୍ତ୍ତି କାଚହାଣ୍ଡି ସବୁ ଝୁଲୁଥାଏ ଦଉଡ଼ିରେ । ଚାରିକୋଣିଆ ପଟ୍ଟଚିତ୍ର-କାଗଜ ପଟା ଉପରେ ଲ୍ୟାମ୍ପ-ଗୁଡ଼ିକର ନଷ୍ଟପ୍ରାଣ ରଶ୍ମିକୁ ସବୁ ପ୍ରତିଫଳେଇବା ପାଇଁ ।

ଯେମିତି ଗରମ ସେମିତି ବୁଛନ୍ଧ ବୁଛନ୍ଧ ଲାଗୁଥାଏ ଭାଉଖାନା ଭିତର । କୋଣରେ ସଜନ ହେନ ଦର୍ଶ ଦେବତା ଚାକର ସବୁ 'ପାଲେଶ', ଖେଲୁଇ' ଓ 'ମାଟ୍ରନ୍'ର ଠେଲ ହୋଇଆନ୍ତି ସେଇଠି । ସମସ୍ତେ ସେମାନେ ପିନ୍ଧିଥାନ୍ତି ଗାଢ଼-ଗଢ଼ନିଆ ରଙ୍ଗିନ୍ କାମିଜ୍, ବେକପାଖ ଖୋଲା । ପ୍ୟାଣ୍ଟସବୁ ମୋଟା ଶେଯ ଖୋଲ କନାର । ଖାଲି ପାଦ ସମସ୍ତଙ୍କର ନ ହେଲେ ବା ଅତି ସ୍ଲିପରମାନଆ ଜୋତା ପିନ୍ଧିଥାନ୍ତି କେହି କେହି । ଚାକରଙ୍କ ମୁଣ୍ଡଗୁଡ଼ାକୁ ଘୋଡ଼େଇ ରଖିଥାଏ ମ ଖୋରକା ପାଉଁଶିଆ ଧୂଆଁପଟଳ ମେଦାଭଳି ଠିକ୍ । ଅଉ ଶୁଖି ଶୁଖି ଆସୁଥିବା ତେଲ, ଲଙ୍କା, ଆଳୁଚପ ଓ ପଚା ଅଣ୍ଡାର ଗନ୍ଧରେ ସ୍ୱନ ସ୍ୱନ ହୋଇ ଉଠିଥାଏ ବଖରା ଭିତର ପବନଟା ଥାଏ ବା ଯେତିକି । ବଦଳିଆ ବଦଳିଆ ଗରମ୍ ଗରମ୍ ଆଲୁଚପ୍ ପର ବୋହିଯାଉଥାଏ ଭ୍ଲାଦମିର କ୍ଲେକଗୀତରୁ :

ଏତେ ଅଲ୍ଲଜୁକ ଲ୍ଲେକରେ ତମେ
ଏତେ ଅଲ୍ଲଜୁକ ସତେ
ଟୋକାଟାକୁ ତମେ ଛୁଡ଼ ଦେଇଚରେ
ଭୁଲାଇ ନେବାକୁ ଟୋକାଟାକୁ
ପ୍ରୀତପଥେ ରେ
ଏତେ ଅଲ୍ଲଜୁକ ସତେ !

ଏମିତିକା ଆଉ ଆଉ ଗୀତ ଗାଉଥାନ୍ତି ସେମାନେ ଏମିତି ହସଖୁସିର ଛୁଇ ନ ଥାଏ ଯେଉଁଥିରେ । କିନ୍ତୁ ଏଇ ଗୀତଟି ଥାଏ ତାଙ୍କର ଅତି ଆଦରର, ଅତି ପ୍ରିୟ । ଟଣା ଓଟରେ ବିଲମ୍ବିତ ତାନଟା ଏହାର ବାଧା ଦେଉ ନ ଥାଏ କାହାର ଚଳାଧାରରେ କି କାହାର ସରୁ ସରୁ ଏରମାଇନ (ନେଉଳ ଜାତୀୟ ଜୀବ) ରୁମ ବ୍ରୁଶର ଚଲଚଲରେ—ସେଇ ଯେଉଁ ବ୍ରୁଶ୍ ଆଙ୍କି ଯାଉଥାଏ ରେଖାଗୁଡ଼ିକ ଧର୍ମାତ୍ମା ସନ୍ଥଙ୍କ ପୋଷାକର ଭାଙ୍ଗଗୁଡ଼ିକରେ କିମ୍ବା ଏ ରଙ୍ଗୀନ ନଇଲେ ବା ହାଡ଼ୁଆ ହାଡ଼ୁଆ ମୁହଁଗୁଡ଼ାକରେ ଯୋଡ଼ି ଦେଉଥାଏ ଅଙ୍କିଅଙ୍କି କା ଅନ୍ୟଣାର ଚେହ୍ନ । ଝରକା ବାଟେ ଆସୁଥାଏ ହାତୁଡ଼ିର ଶବ୍ଦ, ମସ୍ତବଡ଼ ଲମ୍ବା ଲାଲ୍‌ନାକିଆ ମାତାଲ ବୁଢ଼ା ଖୋଖୋ ଲେଭର ତୀକ୍ଷ୍ଣ ସୁରର ଠକ୍ ଠକ୍ ହାତୁଡ଼ି ଗୀତଟାର ଅବଶ ଗତିରେ ଆଣୁଥାଏ — ତାଳ ଦେଉଥାଏ ରହି ରହିକା ମନରେ କଟଟାଏ କୋଉଠି ଖାଲି, କୋଉଠି ରେ ଲାଗିଛି ଚେଇଟାଏ କେଉଁଠି ।

କାହାର ଭଲ ଲାଗିକ ଟିକିଏ ଆଗ୍ରହ ଥାଆନ୍ତା, ଚେଟଗୁଡ଼ାକୁ ଚାହିଁବାକୁ । କେଉଁ ପ୍ରତିଭା-ଭୁତ ଯାହାର ପ୍ରତିଭାଟା ମନକାମକୁ ମୁହାଁଏ କେବଳ ଦୃଷ୍ଟ ବୃଦ୍ଧି କିଏ ଏମିତି କେତେଗୁଡ଼ାଏ ଧରିବନ୍ଧା ପ୍ରଣାଳୀରେ ପକାଇ ଦେଉଥାଏ ଏଇ ପଟ ଚାଷଣ କମକୁ ଯେଉଁଥି ସଙ୍କାଶେ ଆଦୌ ଫୁଟିପାରୁ ନ ଥାଏ ସୌନ୍ଦର୍ଯ୍ୟ କି ସୌକୁମାର୍ଯ୍ୟ । ସେଥିପାଇଁ ସେ କାମ ପ୍ରତି ଆଦର କି ଆଗ୍ରହ ଜନ୍ମିବା ଥାଏ ଅସମ୍ଭବ । ଟେରିଆଖିଆ ମହୁରଣୋଟା ପ୍ୟାନଫିଲ, ସ୍ଫାନ୍‌ଗ୍ରୁକରିଆ ଅତପାଠିଆ ଲେ୍‌ଟା

ଭିନ୍ନ ଭିନ୍ନ ଆକୃତିର ସାଇପ୍ରେସ ଆଉ ଲଣ୍ଡେନ କାଠର ପଟାସବୁ ଆଣୁଥାଏ, ତାକୁ ସବୁ ରନ୍ଦାମାରି, ଅଠାଦେଇ ସମତୁଲ୍ୟ କରୁଥାଏ । ଧଳିଆ ଟୋକା ତାଉଡ଼ ଦେଉ ପଟାଉପରେ, ମୂଳ ଅଙ୍କାଟା ସାରି ଦେଉଥାଏ, ଆଉ ତା ପରେ ତା ସାଙ୍ଗ ସୋଭେଜନ ପଟାଗୁଡ଼ିକରେ ପୁନେଲି ରଙ୍ଗ ବୋଳିବାରେ ଲାଗିଯାଉଥାଏ । ମିକ୍ରଭାଶୀନ କେଉଁଠୁ କେଉଁ ଚିତ୍ରପଟ ଆଣି ତାକୁ ନକଲ କରି ଆଙ୍କୁଥାଏ ପେନ୍‌ସିଲରେ, ସାଧୁସନ୍ଥଙ୍କ ଚିତ୍ର ବୁଢ଼ା ଗୋଗୋଲେଭ୍ ପୁନେଲି ରଙ୍ଗ ମଡ଼ଉଥାଏ ; ଆଉ ସବୁ ସବୁ 'ଡିଜାଇନ' ଖୋଳୁଥାଏ ପୁନେଲି ଲେଖା ଉପରେ—ଚିତ୍ରକର ଯିଏ ଅଙ୍କୁଥାଏ ସାଧା ଦେହ ଆଙ୍ଗୁଳି, ପ୍ରାକୃତିକ ଦୃଶ୍ୟ ଯେଉଁଠି ଯେମିତି ଦରକାର ଆଉ ଆଙ୍କୁଥାଏ ସାଧୁସନ୍ଥଙ୍କ ପୋଷାକ ପରିଚ୍ଛେଦଗୁଡ଼ାକ, ତା'ପରେ ତାଙ୍କୁ ଆଉଜା ହୋଇ ରହୁଥାଏ ଚିତ୍ରଟା, ମୁଣ୍ଡ ନ ଥିବା, ହାତ ନ ଥିବା ମୂର୍ତ୍ତିଟା, ଅପେକ୍ଷା କରୁଥାଏ 'ମୁହଁ ଅଙ୍କାଳି' ଶିଳ୍ପୀମାନଙ୍କୁ ସେମାନଙ୍କର 'ଦାନ' ପାଇଁ ।

ଭାରି ଅଦ୍ଭୁତିଆ ଲାଗୁଥାଏ ଦେଖିଲା କ୍ଷଣି କାନ୍ଥରେ ହାତଗୋଡ଼ ମୁଣ୍ଡକୁଣ୍ଡ ନ ଥିବା ଧର୍ମଚିତ୍ରର ମୂର୍ତ୍ତିଗୁଡ଼ାକ । ସେଥିରେ ଖାଲି ଖାଲି ସନ୍ନ୍ୟାସୀ ପୋଷାକ-ପତ୍ର, ହାତ ହତିଆର, ସନ୍ତୁ ନଇଲେ ବା ଶ୍ରେଷ୍ଠ ସ୍ୱର୍ଗଦୂତଗୁଡ଼ାଙ୍କର ଅତି ଗ୍ରେଷ୍ଟିଆ ଗ୍ରେଷ୍ଟିଆ ଲୁଗା । ସେଇସବୁ ମୂର୍ତ୍ତି ଯାଇ ପୂଜା ହେବାକୁ ଥାଏ ଚିତ୍ରପଟ-ବେଦିଙ୍କା ଉପରେ ବା 'ପୂଜାବେଦୀ' ଘରର ଦ୍ୱାରମୁହଁରେ । ସେଇ ଚକ୍ ଚକ୍ ଝଳ-ମଲିଆ ରଙ୍ଗର ପଟଗୁଡ଼ାକରୁ ବାହାରୁଥାଏ ମରଣର ଭାବ । ସେଥିରେ ନ ଥାଏ ବନ୍ଧୁବର୍ଗ ଜୀବନସଂଗ୍ରାମ କିଛି ବେଲ କଛ । କିନ୍ତୁ ମନେ ହେଉଥାଏ ସତେ ଯେମିତି ସେମିତିକା ସବୁଦିନେ ଥିଲା ସେଥିରେ, ଖସି ପଳେଇ ଯାଇଛି ଅଦ୍ଭୁତ ଭାବରେ—ଦୈବୀ ଆକସ୍ମିକତାରେ ଛାଡ଼ି ଯାଉଛି ପୋଷାକପତ୍ରର ପଟିଭଙ୍ଗା ।

ମୁହଁ ଅଙ୍କାଳି ଶିଳ୍ପୀର କାମ ସରିଲା ପରେ ପଟଚିତ୍ରକୁ ଆଉ ଜଣେ କାରିଗର ହାତକୁ ବଢ଼ାଇଦିଆଯାଉଥାଏ ସେଇଟି । ସୁନାଢ଼ି ଡିଜାଇନରେ ସେ ଚଢ଼ଉଥାଏ ଏନାମେଲ ଆଉ 'ଅନୁଲେଖ'ଟା ଖୋଳା ହେଉଥାଏ ଆଉ ଜଣେ କାରିଗର ହାତରେ, ଏମିତି ତିଆରି ପଟଚିତ୍ର ଲାଗି ଆଉ ଆଲକାତରାରେ ବୋଳି ମାଠିମୁଠି ଠିକ୍ କରୁଥାଏ ଅଇଭାନ ଲିଓଣ୍ଟିନଚ୍ ନିଜେ, ଚିତ୍ରସ୍ତୁପ ଧାରଣୀଭ ମଣିଷଟିଏ, କାରଖାନାର ମ୍ୟାନେଜର ।

ଧୂସର ମୁହଁ, ଧୂସର ଦାଢ଼ି, ସିଲ୍କ ବା ପଶମ ଭଳି ସବୁ ଚିକ୍କଣ ପାହୁଣିଆ ଆଖି ପଲକ, ବିଶେଷ ଭାବରେ ଦିଶୁଥାଏ ଚେହେରା ଆଉ ବଳିଷ୍ଠ । ସିଗ୍ଧ ହସଟିଏ ଲାଗି ରହିଥାଏ ଓଠରେ ତାର, କିନ୍ତୁ କେଜାଣି କାହିଁକି ଓଲଟି ହସିବାକୁ ସେହି ହସଟିକୁ ଦେଖି ଲାଗୁଥାଏ ଭୁଲ ହୋଇଯିବ ପରି ! ସେ ଦିଶୁଥାଏ ଚିତ୍ରରେ ସାଇମନ ଚିତ୍ର ମୂର୍ତ୍ତିଟି ପରି, ସେମିତି ପତଳା, ସେମିତି ଢ଼ଙ୍ଗୁଡ଼ା

ଶୁଣିଲି । ସେମିତି ଷଣ୍ଢରେ ଗଳା ଦେଇ ତାର । କାହାକୁ ଗ୍ରାଣ୍ଡ ଲୋକଙ୍କୁ ଝପି ଦ୍ୱାରକୁ କାହିଁ କେଉଁ ଦୂରକୁ ନେଇ ରହୁଥାଏ ଯେତେବେଳେ ବାଗ ହୋଇ ପଡ଼ୁଥାଏ ପ୍ଲିର ନିଷ୍ଠୁର ଆଖି ଦୁଇଟାରେ ତାର ପୂର୍ବର କାମରେ ଲାଗି ବ୍ୟସ୍ତତାର ଭାବ ।

ମୁଁ ଜାଲଖାନାରେ ପଶିବାର ଅଳ୍ପ କେଇ ଦିନ ପରେ ଯୁଷ୍ଟ୍ର, ସୁନ୍ଦର ବଳିଷ୍ଠ ରୂପର କାପ୍ତେନ୍ ଦ୍ରୁଏଖିନ ବୋଲି ଡନ୍‌ଜାହାଜ୍ ପତାକା ଚନ୍ଦ୍ରକାର କାମକୁ ଆସିଲା. ପ୍ରାୟପୂର୍ଣ ମାତାଲ ଅବସ୍ଥାରେ । ଦାନ୍ତଗୁଡ଼ାକ ଚିପି ଚିପି ଜୋରରେ, କୁଞ୍ଚ କୁଞ୍ଚେଇ ନିମନ୍ତ୍ରଣ ମ ଇପି ଆଖିପୋଡ଼ାକୁ ଫାଟି ନ ଫିଟେଇ ଚୁପ୍‌ଚାପ୍ ଘଷି ଲାଗିଲା ଖୁନ୍ଦା ପରେ ଖୁନ୍ଦା ଖୁନ୍ଦ ଲାଗିଲା—ସମସ୍ତଙ୍କୁ ଲୁହାଭଳି ମୁଠାରେ ନମନ୍ତ୍ରୁ ସାବଲୀଳ ନଷ୍ଟ ଭଙ୍ଗି ତାର, ବିଶାଳ ନୁହେଁ ଏମିତି । ଘୃଣାବାକୁ ଲାଗିଲି ଘୁଣ୍ଟି ପରି ଜାର ଖାନ ରେ । ମୂଷାବହୁଳ ଗହ୍ଵରରେ ମାର୍ଜାରଟାଏ ବା ! କ'ଣ କହିବେ, କୁଆଡ଼େ ଯିବେ ବାଟ ନ ପାଇ ଉଦ୍ଭ୍ରମର ଧାଇଁଲେ ସବୁ ଘରକଣକୁ । ସେଇଠି ଥ ଇ ଉ କ ଗ୍ଲାଣ୍ଟଲେ ପରସ୍ପରକୁ ।

"ଆରେ ଦଅରେ ତାକୁ ଆଲ୍ଲା କଣ ପାନେ ।

ଦଅ !"

ମୁହିଁ ଅଙ୍କାଲୀ ଶିଳ୍ପୀ ସ୍ୱେଭଟଗନ ସିତାନଭ କୌଣସିମତେ ସେହି ହତ-ପାଠଆ, ବଦମାସକୁ ଜବତ କରିପାରିଲା ତାକୁ ହତଭୁକ୍ତି କରି ଗ୍ରାଣ୍ଡଲ । ତା ମୁଣ୍ଡରେ ଷ୍ଟୁଲଟାଏ ଠେକି କସୁଣ୍ଡି ଦେଇ ଜହାଜ୍‌ଟା ଲଥ୍‌କାନ ଢଳିପଡ଼ିଲା ଚଟାଣ ଉପରେ । ଅଖି ପିଛୁଳାକେ ସମସ୍ତେ ଘେରିଯାଇ ଚତ୍ କରି ପକାଇଲେ ତାକୁ । କଷି କରି ବାନ୍ଧଦେଲେ ଡହଲ ଆରେ । ସେ ବା ବାଘୁଆ ଦାନ୍ତରେ ଛୁଡ଼େଇ କୁତୁ-କୁତା କରି ଲାଗିଲା ଡହଲିଆକୁ ସବୁ । ଏଥିରେ ହନ୍ତଓ ହୋଇ ଉଠିଲା ସ୍ୱେଭଗେନ । ସେ କୁନ୍ଦାଟାଏ ମାରିଲା ଟେବୁଲ ଉପରକୁ । କହୁଣୀ ଦୁଇଟାରେ ନିଜର ଅଣ୍ଟା'କୁ ଚିପି ନେଲା ଡେଇଁ ପଡ଼ିବା ପାଇଁ କଷାକ୍ ଉପରକୁ । ତାର ଓଜନଦାର ଦେହର ଚାପରେ ଗୁଣ୍ଡୁଗୁଣ୍ଡା ହୋଇ ଦଳି ହୋଇଯାଇଥାନ୍ତା । କାପେନ୍ ଦୂଃଖୀନର ଗ୍ଲାଡଟା କିନ୍ତୁ ଠିକ୍ ସେହି ମୂହୂର୍ତ୍ତରେ ଲାଇଓନଚ ଟୋପି ଓ କୁର୍ତ୍ତା ହାତରେ ପହଞ୍ଚିଗଲା ଅସି । ଆଙ୍କୁଳି ହଲଇ ସିତାନଭ ସାମନାରେ ଧୀର ଶାନ୍ତ ତଥ୍ୟ କହୁଁମା ବିଷସ୍ତି ସ୍ୱରରେ କହିଲା ।

'ନେଇ ଯା' ତାକୁ ବାଟଘରକୁ । ମୁଣ୍ଡ ଅଣ୍ଟା ହେଉ, ପିଠି ବସୁ, ବସିଯାଉ ।"

ଜାରଖାନାରୁ ଘୋଷାରି ଘୋଷାରି ନେଇଗଲେ ସେମାନେ କଷାକ୍‌କୁ । ଟେବୁଲ ଚୌକିଗୁଡ଼ାକୁ ରଖାରଖି କରି ଯଥା ସ୍ଥାନରେ କାମରେ ପୁଣି ଲାଗିଲେ । କାପେନ୍ ଦ୍ରୁଏଖିନର ବଳବପୁ ସଂପର୍କରେ ଟିପଣୀ କାଟିକାଟି ଆଉ ଉଦ୍ବେଷ୍ୟ କରି କରି ତାର ମୁଣ୍ଡୁ ଲଢ଼ାଲଢ଼ିରେ ।

"ସହଜ ହେବ ନାହିଁ ତାକୁ ମାରିଦେବା ଜୀବନରେ, ଶକ୍ତ ହେବ । ଶାନ୍ତ ଅବିଚଳିତ ଭାବରେ କହିଲା ସିତାନଭ ଯେମିତି କିଏ କୁହେ କୌଣସି କାମ

ବିଷୟରେ, ଯେଉଁଥିରେ ତାର ପୁଅ ଦଖଲ୍‌ଥାଏ । (ଯାହା ତାକୁ ମାଲୁମ୍ ଥାଏ ପୁଙ୍ଖାନୁପୁଙ୍ଖ) ।

ଆଖି ପକେଇ ଟିକଏ ଲାରୱେନଚ୍ ଉପରେ ଚେଷ୍ଟା କଲ୍ ଅନୁଧ୍ୟାନ କରିବାକୁ । ଏଇ ଏଡ଼େ ବଳୁଆ ବଳୁଆ ଦୁର୍ଦ୍ଦାନ୍ତ ବାଲୁଙ୍ଗା ବଣ ଝଙ୍କଲିଆ ଲୋକଗୁଡ଼ାକ ତାକୁ ମାନିଯାଉଛନ୍ତି କାହିଁକି ସେ କିଛି କହିବା ମାତ୍ରେ ସାଙ୍ଗେ ସାଙ୍ଗେ ଚୁପ୍ କରି ।

କେମିତି କାମ କରିବାକୁ ହେବ ସେ ଦେଖାଇ ଦେଉଥାଏ ସମସ୍ତଙ୍କୁ । ଏମିତିକି ସବୁଠୁ ବଳି ଅଭିଜ୍ଞ ଓସ୍ତାଦ୍‌ମାନେ ସ୍ୱେଚ୍ଛାରେ ଗ୍ରହଣ କରୁଥାନ୍ତି ତାର ପରାମର୍ଶ । ଅନ୍ୟ ଯେ କୌଣସି ଲୋକ ତୁଳନାରେ କାପେନ୍‌ଡ୍ୟୁଂଖୀନକୁ ଶିଖାଇବାରେ ମଣେଇବାରେ ତାର ବେଶୀ ସମୟ କଟିଯାଉଥାଏ, ବେଶୀ କଥା ଲାଗିଯାଉଥାଏ ।

"ଶିଳ୍ପୀ— ବୁଝିଲ କାପେନ୍‌ଡ୍ୟୁଂଖୀନ୍— ଶିଳ୍ପୀ ଡାକୁଛନ୍ତି ତମକୁ ସମସ୍ତେ, ଶିଳ୍ପୀ ଯିଏ ତାକୁ, ତାର କାମକୁ, ଶିଳ୍ପକାମକୁ ଜୀବନ୍ତ କରିବାକୁ ହେବ । ଠିକ୍ ଜୀବନଭଳି ବାସ୍ତବ ଯେମିତି ଇଟାଲିର ଶିଳ୍ପୀମାନେ କରନ୍ତି, କରିଛନ୍ତି । ତୈଳଚିତ୍ର ଆବଶ୍ୟକ କରେ, ଉଷ୍ମ ମଧୁର ରାଗ-ରଙ୍ଗର ସମନ୍ୱୟ— ସେତିକିର ସୃଷ୍ଟି ବିନ୍ୟାସ । କିନ୍ତୁ ଦେଖ୍ ଯେଉଁ ଧଳା ରଙ୍ଗ ଘୁଲାଏ ବୋଲି ଦେଉଚ୍ ସେଠି, ସେଇଥିପାଇଁ କୁମାରୀ ମେରୀ ଆଖିଯୋଡ଼ିକ ଦିଶୁଚି ଏତେ ନିଷ୍ପ୍ରଭ, ଏମିତି ହିମ ଶୀତଳ ବା ଗାଲ୍ ଦୁଇଟି ବେଶ୍ ଗୋଲଗାଲ୍ ଲାଲ । ଆଖିଯୋଡ଼ିକ ମାନୁଚ ତ, ଖାପ୍ ଖାଉଚି ତ ଦେଖିକି ? ତା'ଛଡ଼ା ସେ ଦୁଇଟି ଗଣ୍ଡା ହୋଇନି କି ଠିକ୍‌ଭାବରେ— ଠିକ୍ ସ୍ଥାନରେ କାହିଁ । ଗୋଟାଏ ଏକାବେଳକେ ନାକକୁ ଲାଗି ଅତି ନିକଟରେ ନାକର ତ ଆକୃତି ସେମିତି ହୋଇଯାଇଚି ଗିରମୁଣ୍ଡା ଆଡ଼କୁ । ତେଣୁ ମୁହଁରେ ନିର୍ମଳ ପବିତ୍ର ଠାଣି ରହିବ କ'ଣ ବାହାରୁଚି ଚତୁରତା, ସାଂସାରିକତା ଯଥେଷ୍ଟ ମନଧ୍ୟାନ ଦେଉନ ତମେ କାର୍ଯ୍ୟରେ କାପେନଡ୍ୟୁଙ୍ଖୀନ ।"

ଶୁଣିଲକ୍ଷଣି ଏତିକି ମୁହଁ ମୋଡ଼ି ଦେଉଥାଏ । ତା'ପରେ ନିର୍ଲ୍ଲଜଭାବରେ ହସୁଥାଏ, ତାର ଯୋଇ ମାଇପି ଆଖିରେ । ମିଠାଳିଆ ମଦ ପିଇ ପିଇ ଜିଭ ଶୁଖି ଶୁଖି ଲୁରୁବୁଡିଆ ସ୍ୱରରେ କହିଲା ଥରେ—

"ଅ !" ଆଇଭାନ ଲାରୱେନଚ୍ । ଏ କାମ ପାଏ ନା, ମୋତେ ପାଏ ନା, ମୋ ପାଇଁ ନୁହେଁ । ଗାଉଣା ବାଜଣା ପାଇଁ ଜନ୍ମ ହୋଇଥିଲି ମୁଁ । ଆଉ ଏଠି, ଏଠି ମୁଁ ଅଛି ଗୋଟାଏ ମଠରେ ।"

"ଆରେ ନା ! ସବୁ ଆୟତ୍ତ କରି ପାରିବ ପ୍ରତ୍ୟେକ କଥା ଯଦି କଠିଣ ପରିଶ୍ରମ କର, ଚେଷ୍ଟା କର ।

"କିଏ ମୁଁ ଏ କାମ ପାଇଁ— ଏ କାମ କରିବାକୁ ? ମୋର ତ ସଇସ ହେବ ଉଚିତ— ଡେଙ୍ଗା ଘୋଡ଼ା ଲାଗିଥିବା ଝୁଟ୍‌କା ନେଇ······ଏଃ ।"

ଓସ୍ତାରଆ ପାଟିକୁ ଆହୁରି ମେଲାଇ ଦେଇ ଗୁଣୁଗୁଣେଇ ଦେଲା ସେ ବେତାଳିଆ ଗୀତ ପଦେ— ଦୂର ମୁଲକ ମରୁଆଳିଆ ଦେଶ୍ ।

ଏଃ, ରେ. ଏ— ଏଃ ଷ୍ଵଏ—

ଅନନ୍ତ ଅନନ୍ତ ଝମ୍ପୋକାରେ ଦେବ ଯୋଚ ଦୁଇଟି ଘୋଡ଼ା ମୋ (ଗୋଟିଏ ଖୋଲ ଯେ) ଡଙ୍ଗୁ

ଏଃ, ରେ ଏ ! ଏଃ ରେ ଏ !

ଚକ୍ ଚକ୍— ଭସିଲା ଭସିଲା ଖସିବ ତ ମ୍ୟାରେ

ଚଳାଇ ଦେବ ମୁଁ ମରମ ବସାରେ

ଦୁଃଖ ଲଟ୍ଟୁ ନ କଟ୍ଟୁ

ପ୍ରିୟାର ପାଖକୁ, ଦୂରକୁ ଦୂରକୁ—

ଆଉ ନ ବସିବ ଶୋଚ ।

ମୁରୁକି ହସି ଭୁଲିଗଲା ମନକୁ ଆଇସ୍କାନ୍ ଲର୍ଡ଼ମନଚ୍ । ତାର ନେଳିଆସିଆ ବିଶାଳ ନାକ ଦଣ୍ଡା ଉପରେ ସଜାଡ଼ିନେଲା ଚଷମା ହଳକ ଆଉ ଥିଏଟର ଖସି ଗୁଲିଗଲା ସେଠୁ । ସେଇକବେଳେ ଠିକ୍ ତା'ପଛେ ପଛେ ଦଶ ବାରଟି ଗଳାରେ ଝଙ୍କାର ଉଠିଲା ଗୀତପଦ ୬ । ହକ ହକ ଯାଇ ଗୋଟାଏ ଶକ୍ତିଶାଳୀ ଲହରୀରେ ସତେ ଯେମିତି ତାହା ଉଠାଇନେଲା ସମୁଦ୍ରାସ୍ଥ କାରଖାନାଟିକୁ ଆକାଶକୁ, ସମୀରର ଗଳ୍ପକୁ ଏବଂ ଧୀରେ ଦୋଳେଇଲା ତା'କୁ ଆଗକୁ ଆଉ ପଛକୁ—

ଯେଉଁଠି ରହେ ରେ ପ୍ରିୟା ମୋ ହୃଦୟରାଣୀ

ସେଠିକି ବାଟ ଯେ

କେଉଁ ଘୋଡ଼ା ମୋର

କେବେ କି ନ ପାରେ ଜାଣି ?

ତାଲିମ୍ ହେଉଥାଏ । ଶିକ୍ଷାନବିଶ ଥାଏ ପାଣ୍ କା ଓଦଲ୍ୟସଭ— ଅଣ୍ଟାରୁ କେଶର ବାହାର କରୁଥାଏ ବସିବସିକା— ଡ' ହାତରେ ଅଣ୍ଟା ଖୋଲପା, ଘର ସଗୀତରେ ସୁମଧୁର ତାନରେ କୋରସ-ଗାଉଣାରେ ନେତୃତ୍ୱ ନେଲା ସେ ।

ସ୍ୱରର ଝଙ୍କାରରେ, ଧ୍ୱନିର ସ୍ରୋତରେ ମଉଳି ଅସମୟ୍ର । ଗୋଟିଏ ଭାବ ପ୍ରବାହରେ ଅନୁପ୍ରାଣିତ । ସମତାଳରେ ନିଃଶ୍ୱାସ ମାରି ଭୁଲିଗଲେ ପାଗୋଇ ପକାଇଲେ ପ୍ରତ୍ୟେକ କଥା ବା ! କିନ୍ତୁ ସେମାନଙ୍କର ଗୋଟାଏ ଆଖି ଥାଏ କଷ୍ଟାକ୍ ଉପରେ । ଖାଇଲାବେଳେ ସେ ଯେମିତି ପାଲଟି ଯାଉଥାଏ କାରଖାନାର ମାଲିକ— ପ୍ରଭୁ ! ସେଭଳି ମୁହୂର୍ତ୍ତରେ ସମସ୍ତେ ଅନଉଥାନ୍ତି ତା' ଆଡ଼କୁ ଲକ୍ଷ୍ୟ କରି । ଅନୁସରୁଥାନ୍ତି ତା'ହାତର ଭାବଭଙ୍ଗୀକୁ— ଯାହାକୁ ସେ ହଲାଉଥାଏ ଏମିତି ସତେ ବା ଉଡ଼ିଯିବ କେଉଁଠିକି । ଚେଷ୍ଟାଟା ଆରମ୍ଭ କରିଦେଇଛି ସେଥିପାଇଁ । ଲଜ୍ଜିତ ଭାବରେ ଏବେ ମନେହେଉଛି ମୋର ସେ ଯଦି ସେତେବେଳେ ହଠାତ୍

ଆପଣା ଗୀତବୋଲକୁ ଫଟାଇ ଦେଇ, ବାଧା ପକାଇ ସେଥିରେ ତାକ ଛାଡ଼ନ୍ତି— "ଆସ ରେ, ସବୁ କାର୍ଣ୍ଣି ଗୁଣ୍ଡ ଗୁଣ୍ଡ' କରିଦେବା, ଆସ ।" କାର-ଖାନାଟିର ସବୁଠୁ ଏମିତକ ଓସ୍ତାଦମାନଙ୍କ ଭିତରେ ଅତି ଭଦ୍ରଚଳ୍ କଣ, ମାନ୍ୟଗଣ୍ୟ ଲୋକମାନେ ସମେତ ସମସ୍ତେ ପାଞ୍ଚମିନିଟ୍ରେ ଧିକାସରୁ କରିଦେଇଥାନ୍ତେ କର-ଖାନାକୁ । ଜମା ଡରିଦେଇଥାନ୍ତେ ଇଟାପଥର, ଲୁହାଲକ୍କଡ଼ ଭଗ୍ନାବଶେଷ କେବଳ ।

କ୍ୱଚିତ୍ କେବେ ଚାଲୁଥାଏ କଣ୍ଠାବ୍ଦି— କିନ୍ତୁ ଗାଉଥାଏ ଯେତେବେଳେ ତାର ମନମତାଣିଆ ଗୀତଗୁଡ଼ାକ— ସେଗୁଡ଼ାକର ଲୋକ ହୃଦୟକଣା ଅଦୃଶ୍ୟ ଅନ୍ତରସ୍ପର୍ଶ ଶକ୍ତି ଫୁଟି ପଡ଼ୁଥାଏ ସତେ ! ଏମିତ ସାର୍ଥକ ସ୍ୱରରେ ଜଣାଇ ମତାଇ ଦେଉଥାଏ ସମସ୍ତଙ୍କୁ, ଏମିତ ଯେତେ ଯାହାର ମନୋବଳ ଭାଙ୍ଗି ଯାଉଥାଏ, ଦବ ଯାଉଥାଏ— ତାହାଙ୍କୁ ବ । ସମସ୍ତେ ଶିଶୁ ବୁଦ୍ଧି ହୋଇଯାଉ ପଛେ ଲାଗି ଯାଉଥାନ୍ତି କାମରେ ଅଧିକ ବଳରେ ବଳ ମିଶି ସମସ୍ତର ରୂପାନ୍ତରିତ ହୋଇ-ଯାଉଥାଏ ପ୍ରବଳ ଏକ ସଂଗଠିତ ଶାଣିତ ଶକ୍ତିରେ ।

ସେହି ଗୀତଗୁଡ଼ିକ ମୋତେ ଉର୍ଦ୍ଧ କୁଳ କରି ଦେଉଥାଏ ସେହି ଗାୟକଟି ପ୍ରତି ଆଉ ସେ ଯେଉଁ ଚମତ୍କାର ପ୍ରଭାବ ପକାଉଥାଏ ଲୋକଙ୍କ ଉପରେ, ଅନୁଭବ କରି ଦେଉଥାଏ ଯେଉଁ ଶକ୍ତିରେ, ସେହି ପ୍ରଭାବ ସେହି ଶକ୍ତି ପ୍ରତି ତ ର । ହୃଦୟ ମୋର ଏମିତ ପୂର୍ଣ୍ଣ ହୋଇ ଉଠୁଥାଏ, କମ୍ପନଶୀଳ ଭୟ ଓ ସଂଭ୍ରମରେ ଫୁଲି ହୋଇ ଉଠୁଥାଏ ଯନ୍ତ୍ରଣାଦାୟକ ହେବାଯାଏ । ଇଚ୍ଛା ହେଉଥାଏ କାନ୍ଦି ପକାନ୍ତି କି ତାକ ପକାନ୍ତି କି ଆକୁଳ ହୋଇ ଗାୟକ ଲୋକଗୁଡ଼ିକୁ ।

"କେତେ ସୁଖ ପାଏ, କେତେ ଭଲ ପାଏ ମୁଁ ତୁମକୁ ମୁଁ ।"

ହଳଦିଆ ରଙ୍ଗର ଧଳିଆ ଦାଢ଼ିବାଲା, ମେଞ୍ଚା ମେଞ୍ଚା ବାଳ ଦେହଯାକ— ଅଁ କରିଦିଏ ସଦ୍ୟ ଓ ମୁଦ୍ରିତା ତାମରିକାଉ ଭଳି ।

ତେବେ କଣ୍ଠାକ୍ ଦ୍ଧି କେବଳ ମନମତାଣିଆ, ମଜୁଆଳିଆ ଗୀତ ବୋଲିବା ଆରମ୍ଭ କରି ଦେଉଥାଏ । ସାଧାରଣତଃ କିନ୍ତୁ ଚିଏତାରକାଗୁଡ଼ିକ ଗାଉଥାନ୍ତି ଦୁଃଖିତ ଗୀତଗୁଡ଼ିକୁ । "କେତେ କଠୋରରେ ହୃଦୟ ତୁମର ହେ ଲୋକେ— ।" "ଆଃ ରେ, ଅଃ ବଣ ବାଟେ ବାଟେ ଗ୍ରୋଷ୍ଟ ବଣଟିର ଏଇ ବାଟେ ବାଟେ" ଗୀତ କେତେଟି ପରି କମ୍ବା ଅଲେକ୍ଜାଣ୍ଡର ପ୍ରଥମର ମୃତ୍ୟୁରେ ଶୋକ ସଙ୍ଗୀତ ପରି— "କେମନ୍ତ ଆସିଲେ ଅଲେକ୍ଜାଣ୍ଡର— ସାହସୀ ସୈନ୍ୟ ଦେଖିବା ପାଇଁ—"

ବେଳେ ବେଳେ କାରଖାନା ଓସ୍ତାଦ୍ 'ମୁହଁ' ରଙ୍ଗଣୀ, ମୁହଁ ଚନ୍ଦକାର ଟିଂକାରେଭ୍ଚ କଥାରେ, ସେମାନେ ଗାଉଥାନ୍ତି 'ଗୀର୍ଜା' ଗୀତ କେତେଟି କିନ୍ତୁ ଏଭଳି ଗୀତ ବୋଲିବାରେ ସେମାନଙ୍କ ଆପ୍ରାସଟା ସଫଳ ହେଉଥାଏ କେବେ କ୍ୱଚିତ୍ । ଝିଙ୍କାରେଭ ସବୁବେଳେ ଲାଗେଇ ହେଉଥାଏ ତା' ମନକୁ ପାଇଲା ଭଳି ଗୀତ ପାଇଁ । ସେଥିସକାଶେ ଅନ୍ୟମାନଙ୍କ ଗୀତ ବୋଲିବାକୁ ସମାଲୋଚନା କରୁଥାଏ ସବୁବେଳେ ପ୍ରାୟ ।

ପଚଲା ଲୋକଟିଏ, ପଇଁଷ୍ଟଳଣ ବର୍ଷର ହେବ । ଚନ୍ଦାମୁଣ୍ଡରେ ଖପୁରି ଭଳିଆ ଅଧା ଜହ୍ନ ଆକୃତିର 'ଜପ୍‌ସି' ବାଳ । କୁଞ୍ଚୁକୁଞ୍ଚୁ ମୁଛହାଳକ ଭଳି ଓହଳିଆ ଓହଳିଆ କଳା ଭୃକୁ । ଘଞ୍ଚାଳିଆ ଗୋଜିଆ ଖାଖ ଦାଢ଼ି । ପ୍ରକୃତରେ ଅଳଙ୍କାର ଭଳି ଶୋଭା ପାଉଥାଏ ତାର । କାମିନା ବରୁଆ— ଚମତ୍କାର ରୂପରଙ୍ଗର ଅଣରୁଷୀୟ ମୁହଁରେ କିନ୍ତୁ ତାର ମୁନିଆ ଚଟେଇ ନାକ ଦଣ୍ଡାରେ ଚମକଉଥାଏ ମୁଛହାଳ । ଭୃକୁ ଯୋଗୁଁ ଜନ୍ମାଡ ଉଙ୍କୁରିଆ ଅଦରକାଗ୍ର ଓ ସ୍କବରେ ନୀଳ ଆଖି ଯୋଡ଼ିକ ଗୋଟିକରୁ ଅଲଗା ଆଉଟି— ବାରି ହୋଇ ପଡ଼ୁଥାଏ ବାଆଁ ଟା ବଜ ଡାହାଣଠୁଁ ।

'ପାଣ୍‌ନା' ! ଡାକ ପକାଇବ ସେ— ଡାକିଲା ତାର 'ତର' ସୁବିଆ ଗଳାରେ ମୋ ସାଥୀ ଶିକ୍ଷାନବୀସ୍‌କୁ "ହେଁ ! ଦେ, ଆରମ୍ଭ କରି ଦେ,— ତୁମ ନାମ ଗାଏ ହେ ପ୍ରଭୁ, ତୁମେ ଶୁଣ—ତା ।" ଶୁଣ୍‌ ବେ ଶୁଣ ସମସ୍ତେ ।

ଆପ୍ରନ୍‌— ଉପର ଆଚ୍ଛାଦନଟାରେ ହାତ ପୋଛୁ ପୋଛୁ ଆରମ୍ଭ କଲା ପାଣ୍‌କା—

"ତୁମେ ଶୁଣ······ ତୁମ ନାମ······ ।

"ତୁମ ନା, ନା, ଆ— ମ— ଅ— ଅ— ପ୍ରଭୁ··· ।" ତାଲ ମିଳାଇ ସପ୍ତରେ ଗାଇ ଉଠିଲେ କେତୋଟି କଣ୍ଠ ! ଉତ୍ତେଜିତ ସ୍ୱରରେ ଚିତ୍କାର କରି ଲାଗିଲା ଝିକାରେଭ ।

"ହଁ, ହଁ ନୁଆଁଇ ଦେ— ନୁଆଁଇ ଦେ, ଜମ୍ କର ଜମ୍ କର ଆଲ୍ଗେ ସୀତାନଭ— ସ୍ୱରଟାକୁ ଖସାଇ ଦେ— ଖସାଇ ଦେ ବୋ ଆମ୍ଭର ଗମ୍ଭୀରତା ।"

ସିତାନଭ ଗୁରୁଗମ୍ଭୀର ସ୍ୱରରେ ଗାଇ ଲାଗିଲା— ଯଥା ଯେମିତ ଗୋଟାଏ ବ୍ୟାରେଲ— ମଦଘଡ଼ା ଭିତରେ ଆଘାତ କଲା । ।

"ସେବକ ସବୁ ଦାସ ସବୁ -- ପ୍ରଭୁ ହେ—"

"ଧୁଃ— ନା, ନା, ସେମିତ ନୁହେଁ । ତୁମେ ରୁହଁ ଗୁଡ଼ଦେବ, ସ୍ୱରଟାକୁ ଗୁଡ଼ଦେବ ଏମିତ ଷେଥରେ କର୍ମ ଉଠିବ ମେଦନୀ । ଆପେ ଆପେ ଖୋଲିଯିବ ଦ୍ୱାର ଆଉ ଝରକାଗୁଡ଼ାକ ।

ଅବୋଧ୍ୟ ଉତ୍ତେଜନାରେ ସେ କ ବେପଥୁ ଆସିଲା ଚ ହାରେ ଝିକାରେଭର୍ । ସ୍ୱେଦାକ୍ତରେ ମୋଡ଼ି ମୋଡ଼ି ହୋଇ ଉଠିଲା ରନ୍ଧ୍ର ରନ୍ଧ୍ର । ଅଦ୍ଭୁତ ଭୃକୁହାଳକ ଉଠିଲା ପଡ଼ିଲା । ମୁହୂର୍ତ୍ତ ମୁହୂର୍ତ୍ତ— ଖର୍ଗି ଖର୍ଗି ଆସିଲା ସ୍ୱର । ଆଙ୍ଗୁଳି-ଗୁଡ଼ିକ ଓଟାଣି ଲାଗିଲା ଅଦୃଶ୍ୟ ତ ରଗୁଡ଼ିକ ।

"ଡଭୁଙ୍କର ଦାସ ପରିକର ସବୁ— ଦେଖିପ ରୁ ଚା ?" ଚାପ୍ୱିମ୍ପ ଖ୍ରୀ ଷ୍ଟଡରେ ପଚାରିଲା ସେ— "ମର୍ମରେ ଅସଲ ମର୍ମ ବନ୍ଦରେ ପଶି ଅନୁଭବ କରିବାକୁ ହେବ— ତୁମ ଦେହଖୋଳଟାକୁ ଟପି ଅସଲ ମର୍ମରେ ପଶି, ବୁଝିଲ । ଜୟ ହେଉ— ଜୟ ହେଉ— ପ୍ରଭୁଙ୍କର ଜୟହେଉ ରେ— କାକର ପରଜରପବୁ । କରେ କ'ଣ ଅନୁଭବ କରିପାରୁନ ? ସରଳ ନିର୍ମଳସବୁ ।"

ତମେ ଜାଣ, ଆମେ କେବେ ପହଞ୍ଚି ପାରୁନା ସେଠି । ପାଉନା ସେ ସ୍ଥାନଟିକୁ । କୌଶଳନ୍ତମେ ଟିପ୍ପଣୀ ଦେଲା ସୀତାନଭ ।

"ବେଶ୍ ତେବେ ଗୁରୁ, ବନ୍ଦ କର ।"

ଅପମାନିତ ହୋଇ କେତେକାଂଶରେ ନିକିରେଭ ଫେରି ପଡ଼ିଲା କାମକୁ. ଆମର ସବୁଠୁ ବଳି ଶ୍ରେଷ୍ଠ ଓସ୍ତାଦ୍ ଥିଲା ସେ । ମୁହଁଟିଏ ଚିତ୍ରକରି ପାରୁଥିଲା ବାଇଜାଣ୍ଟିନୀୟ ଢଙ୍ଗରେ ବା ଫ୍ରାନସ୍ କି ଇଟାଲୀୟ ପରମ୍ପରାରେ । ଲଗଉନଚ୍ ଧର୍ମଚିତ୍ର ପାଇଁ ଅର୍ଡ଼ର ଟାଏ ଗ୍ରହଣ କରୁଥିଲା ଯେତେବେଳେ ଆଗ ପରାମର୍ଶ ନେଉଥିଲା ନିକିରେଭର, କାରଣ ନିକିରେଭ ହିଁ ଥିଲା ମୂଳ ଚିତ୍ରର । ଯେତେ ସେଇଠୁ ଆସୁଥିଲା ଅଲୌକିକତା ଘଟଉଥିଲା, ଧର୍ମ ପଞ୍ଚଚିତ୍ର ସବୁ । ଯେମିତି ଫିଓଦୋରୋଭ, ସ୍ମୋଲେନସ୍କ ଓ କାଜାନ୍ସ୍କର ଭର୍ଜିନ ମୂର୍ତ୍ତି ସବୁ । ସେ ସବୁ ଆଗ ପରଖ ହୋଇ ଗଢ଼ା କରୁଥିଲା ତା ହାତରେ । କିନ୍ତୁ ସେ ମୂଳ ଚିତ୍ରଗୁଡ଼ିକୁ ପରଖି-ନିରଖି ଦେଖିଲା ମାତ୍ରେ ଏକାବେଳକେ ବଡ଼ ପାଟିରେ ଅଭିଯୋଗ କରୁଥିଲା ।

"ଏଇ ଏଇ ମୂଳ ଚିତ୍ରରେ ବାନ୍ଧି ପକାଉଛନ୍ତି ସେମାନେ, ବାନ୍ଧି ପକାଇଛନ୍ତି ଆମକୁ, ହୁଁ, ହୁଁ ଠିକ୍, ଏହାହିଁ କରିଛନ୍ତି, ଏଃ ।"

କାରଖାନାରେ ତାର ଗୁରୁତ୍ୱ, ତାର ପ୍ରତିପତ୍ତି ଏତେ ବେଶି ତା ସତ୍ତ୍ୱେ ସେ ଥିଲା ସମସ୍ତଙ୍କଠାରୁ ବଳି ବିନୟୀ, ଧୀର ଆଉ ଶାନ୍ତ ପ୍ରକୃତିର ସହାନୁଭୂତିଶୀଳ— ଦ୍ୟାଦ୍ ପ୍ୟାଭେଲ ଏବଂ ମୋର ଶିକ୍ଷାନବୀସଙ୍କ ପ୍ରତି ସେହି କେବଳ ଗୋଟିଏ ମାତ୍ର ବ୍ୟକ୍ତି ଥିଲା କାରଖାନାରେ, ଯିଏ ତାର କାରୁକୌଶଳ ଶିଖେଇବାକୁ ଆମକୁ ଚାହୁଁଥିଲା, ଆଗ୍ରହ ଦେଖାଉଥିଲା ସବୁ ସମୟରେ ।

ତାକୁ ବୁଝିବା ଥିଲା ଦୁଷ୍କର । ମୋଟ ଉପରେ ଅତି ଖୁସିବାସିଆ ଲୋକ ନ ଥିଲା ସେ । ବେଳେବେଳେ ସପ୍ତାହେ କାଳ ଲଗାତର କାମ କରିଯାଉଥିଲା । ପଦେ ହେଲେ କିଛି ନ କହି ବୋବାକାଲାଙ୍କ ଭଳି । ସେତେବେଳେ ସେ ସମସ୍ତଙ୍କ ଆଡ଼କୁ ଚାହୁଁଥିଲା କେମିତି ଗୋଟାଏ ବିସ୍ମୟର ଦୂରଦୂରାନ୍ତ ଦୃଷ୍ଟିରେ, ସତେ ଯେମିତି ପ୍ରଥମ ଥର ପାଇଁ ସେ ଦେଖୁଥିଲା ଆମକୁ । ଗୀତ ଗାଇବାକୁ ଏତେ ଭଲ ପାଉଥିଲା ସେ ସେତେବେଳେ କିନ୍ତୁ ଚୁପଚାପ ରହୁଥିଲା ଏମିତିକି ଅନ୍ୟମାନେ କ'ଣ କହୁଛନ୍ତି ଶୁଣି ପାରୁନଥିଲା ଆଦୌ । ସମସ୍ତେ ତାକୁ ଅନେଇ ଅନେଇ ଆଡ଼ୁଆଳରେ, ତା' ପଛରେ ଆଖି ମଟମଟ ହେଉଥିଲେ । କିନ୍ତୁ ସେ ଅଣେଇ ହୋଇ ରହିଥାଏ, ଚିତ୍ରପଟ ରଖାଯାଇ ଅଙ୍କା ହେଉଥାଏ ଯେଉଁ କାଠପଟା ଉପରେ, ନଇଁପଡ଼ି ଗୋଟାଏ ଧାରକୁ ତାର ଆଣ୍ଠୁ ଉପରେ ପକାଇ ଆଉ ଗୋଟିଏ ଧାର ଟେବୁଲ ଧାରକୁ ଲଗାଇ ରଖି ସରୁ ତୂଳୀରେ ତାର ବେଶ, କଠିନ ଅଭ୍ୟାସରେ ଟାଣିଯାଉଥିଲା ଗୋଟିଏ ମୁହଁର ରେଖାଗୁଡ଼ିକ— ଆଙ୍କି ଯାଉଥିଲା ତାର ନିଜର ମୁହଁ ଭଳି ଅନ୍ଧାରିଆ ଦୂର ଦୂର ଛଡ଼ା ନିରେଖିଆ ଗୋଟାଏ ମୁହଁର ରୂପ ।

ହଠାତ୍ କିନ୍ତୁ ସେ କହି ଉଠୁଥିଲା, ମାପିଚୁପି ଠିକ୍ ଯେତିକି ଦରକାର ସେତିକି, କହି ଉଠୁଥିଲା କ୍ଷତ ବିକ୍ଷତ ସ୍ୱରରେ :

'ପ୍ରେଦଭେକ' କ'ଣ ମାନେ ଏହାର ? 'ଭେକ' ତ ଗୋଟାଏ 'ସ୍ଲାଭ' ଭାଷାର ମରହଟିଆ ଶବ୍ଦ ଯାହାର ମାନେ 'ଯିବା'। 'ପ୍ରଦ'ମାନେ ଆଗୁ ପ୍ରେଦ-ଭେକ୍ ର ଅର୍ଥ ଆଗଚାଲା, ଆଗଦୌଡ଼ା, ଏତିକି ଆଉ ଅଧିକା କିଛି ନୁହେଁ।

ଚୁପ୍ ଚାପ୍ ଦାଣ୍ଡ ଜଳୁଚି ହସୁଥିଲେ, ଖଟେଇ ହେଉଥିଲେ ସମସ୍ତେ ଆଢ଼ୁଆଳରେ ଆଡ଼େଇ ଆଡ଼େଇ ସ୍ୱେଚ୍ଛାନୁସ୍ୱରେ ଅନାଉଥିଲେ ତା ଆଡ଼କୁ। ଆଉ ସେହି ନିଃଶବ୍ଦତା ଭିତରେ ଟାଇଁ ଟାଇଁ ହୋଇ ବାଜୁଥିଲା ତା'ର ଅଦ୍ଭୁତ କଥ ଗୁଡାକ।

' ନା, ମେଣ୍ଢା ଚମ ଉପରେ ତା'ର ଚିହ୍ନ—ନା, ଭଲ ହେବ ନାହିଁ କିନ୍ତୁ ତେଣାଗୁଡ଼ାକ ସହିତ............"

' ର୍ ର୍ ର୍, କାହା ସଙ୍ଗେ ଟୁପୁ ଟାପ କଥାବାର୍ତ୍ତା ଚଲେଇଚ ଯେ," କିଏ ଜଣେ ସାହସ କରି ପଚାରି ଦେଉଥାଏ।

ସେ କିନ୍ତୁ ଉତ୍ତର ଦେଇ ନ ଥାଏ, ହୁଏତ ପ୍ରଶ୍ନଟା ବାଜୁ ନ ଥାଏ ତା କାନରେ, ନଇଲେ ବା ଉତ୍ତର ଦେବାକୁ ସତ ବଳୁ ନ ଥାଏ, ଖୁସି ଲାଗୁ ନ ଥାଏ ! ତା ପରେ ପୁଣି ପ୍ରତୀକ୍ଷାମାନ ନୀରବତା ଭେଦ ଟପ୍ ଟପ୍ ହୋଇ ଝରୁ-ଥାଏ ତାର କଥା।

"ତାଙ୍କର ଜୀବନଚରିତ ଜାଣିଥିବା ଉଚିତ ଆମର, କିଏ ଜାଣେ ସେମାନଙ୍କୁ, ସେହି ପବିତ୍ର ଗ୍ରନ୍ଥକୁ ସବୁ ? କ'ଣ ବା ଜାଣୁ ଆମେ ? ଜୀବନ ଗୁଲଚି କରେ କରେ ପକ୍ଷୀଗାନ। କାହିଁ ଆତ୍ମା ? ପଚାରୁଚି ମୁଁ, ଏଇଆ ପଚାରୁଚି ମୁଁ କାହିଁ କେଉଁଠି ? ହଁ, ଅଛି ଆମ ପାଖରେ ମୂଳ ଚିହ୍ନଗୁଡ଼ାକ ମୂଳ ରୂପଗୁଡ଼ାକ ଅଛି-ଶତ-ଶତ ଏଇଟା କିନ୍ତୁ କାହିଁ ପ୍ରାଣ କାହିଁ, ନାହିଁ ପ୍ରାଣ, ନାହିଁ ପ୍ରାଣ।"

ଏଇ ଉଚ୍ଚ ଭାବନା କଥାଗୁଡ଼ାକ ଭାବମଗ୍ନ ଉକ୍ତିଗୁଡାକ ଉଚ୍ଚସ୍ୱରରେ ଭୁହା ହେଇ ପ୍ରତି ଓଠରେ ଖେଳେଇ ହେଉଥାଏ ହସ ଟିକେ ଟିକେ—କେବଳ ସୀତାନଭର ଓଠଟି ଛଡ଼ା ପ୍ରାୟ ସବୁବେଳେ ଏମିତି ଅବସ୍ଥାରେ କେହି ହେଲେ କେହି ଟାପରା କରି କହୁଥାଏ।

"ଶନିବାର ଭଳି ଗୁଲବ ମଦପିଆ ପାଲଟା।"

ଢେଙ୍ଗା ବଳୁଆ ପେଶଳିଆ ଦେହର ସୀତାନଭ, ବାଇଶ ବର୍ଷର ଭେଣ୍ଡିଆଟା, ଗୋଲଗାଲ ମୁହଁ-ଯାହା କିଛି ମାଲୁମ ନ ଥାଏ ଦାଢ଼ି କିଣ ଏମିତିକି ଭୁରୁ କିଣ, ଅନେଇ ରହୁଥାଏ ବିପର୍ଯ୍ୟସ୍ତ ଗମ୍ଭୀର ଭାବରେ ଗୋଟାଏ କଣକୁ।

ମନୋପଡ଼୍ଟ ହିଂଖାରେଭ ଟେବୁଲ ଉପରେ ଫିଓଦ୍ରୋଭ କୁମାଷ୍ଟର ଛଆର ଛବିଟକୁ ରଖୁରଖୁ କେମିତ ଥରେ ଉତ୍ତେଜିତ ସ୍ୱରରେ ପାଟିଟାଏ କରି ଘୋଷଣା କରିଥିଲା :

"ଶେଷ ହେଲା, କରୁଣାମୟୀ, ଆଶିଷ ପ୍ରଦାୟିନୀ ମା ! ଛଆର ଶେଷ ହେଲା ଅଚଲାଚଳ ଚପଳ ମା,—ସେହି ଝେଉଁଥିରୁ ଲୋକଙ୍କ ପ୍ରାଣରୁ ଚପୁଡ଼ି ହୋଇ ବହି ଆସିବ ଲୁହର ଧାର ମା !"

ତା'ପରେ କାହାର ଗୋଟାଏ କୋଟକୁ କାନ୍ଧରେ ପକାଇ ଗ୍ଲଲିଯାଇଥିଲା ବାହାରକୁ—ମଦଖଟିକୁ, ଟୋକାଟାକଳଅଚଳ ହସି ଉଠିଥିଲେ ହୋ—ହୋ ହୋଇ, ସିଟି ମାରିଥିଲେ ମୁହେଁ ମୁହେଁ । ସେମାନଙ୍କଠୁ ବସ୍ତ୍ରସ ବଳିପଡ଼ିଥିଲା ସେଇମାନଙ୍କର ନିଃଶ୍ୱାସ ପରେ ନିଃଶ୍ୱାସ ଗ୍ଲଡ଼ିଥିଲେ ଈର୍ଷାରେ । ପୀତାନଭ କଳ୍ପୁ ଆଗେଇ ଯାଇଥିଲା ଚଉପଟ ପାଖକୁ । ପରିଖି ନଇଖି ଦେଖି ଲଗିଥିଲା ଆମୂଚଚୂଳ-ସେଇଟି । ଆଉ ଶୁଣେଇ ଥିଲା :

"ହଁ, ସତ ପିଇ ପିଇ ମାତାଲ ହୋଇଯିବ ସେ । ପିଇ ପିଇ ମାତାଲ ହୋଇଯିବ—ତାର ଚଇଟା ତା'ପାଖରୁ ଗ୍ଲଲିଯିବ ବୋଲି ଦୁଃଖରେ—ଆଘାତପାଇ ଅଃ, ନା, ସମସ୍ତେ କଣ ବୁଝି ପାରିବେ ତାର ବ୍ୟଥା-ତାର ବେଦନା!..."

ହିଂଖାରେଭର ମାତଲାମିଟା ପ୍ରାୟ ସବୁ ସମୟରେ ଆରମ୍ଭ ହେଉଥାଏ ଶନିବାର ଦିନ । ମଦ ପ୍ରତି ଅନୁରକ୍ତ ଶ୍ରମିକ ସାଧାରଣ ମାତଲାମି—ମଦ ପିଆପିଇର ଆଡମ୍ବରଯ୍ୟ ନ ଥାଏ ସେଇଟି । ଆରମ୍ଭ ହେଉଥାଏ ଏମିତ—ସକାଳୁ ସକାଳୁ ଚଠି ଖଣ୍ଡେ ଲେଖି ସେ ଆଗ ପଠାଇ ଦେଉଥାଏ ପାଭେଲ ପାଖକୁ । ତା'ପରେ ଠିକ୍ ଦ' ପହରଆ ଖିଆପିଆ ସମୟ ଆଗରୁ କହୁଥାଏ ଲୁଇଜନକରକୁ ।

"ଆଜି ଗ୍ଲଲିଲି ମୁଁ ଗାଧୁଆ ଘରକୁ ।"

"ବେଶି ଲମ୍ବା ସମୟ ପାଇଁ ?"

"ନା, ଏ, ନା'ଏ ଏବେ"

"ଦେଖ, ମଙ୍ଗଳବାରଠୁ ବଳି ଲମ୍ବି ନ ଯାଏ ଯେମିତ !"

ଟାଙ୍ଗର ମୁଣ୍ଡଟିକୁ ଟୁଙ୍ଗାରୁଥାଏ ହିଂଖାରେଭ—ଥରି ଉଠୁଥାଏ ନାଚ ନାଚନ୍ତା ତାର ଭୁରୁ ହଳକ ।

ଗାଧୁଆ ଘରୁ ବାହାରି ବେଶ ହେଉଥାଏ 'ଫୁଲବାବୁ' ଭଳି, ପିନ୍ଧୁଥାଏ କାମିଜର ଆଗ ଗ୍ଲଉପଟ ଫାଲକ, ବେକରେ ଗୁଡ଼େଇ ହେଉଥାଏ ବଡ଼ ରୁମାଲ କ ଚଉଲିଆ ଭଳି ଗ୍ଲଦର ଖଣ୍ଡେ ଆଉ ତାର ସିଲକ୍ ଭେଷ୍ଟ ପ୍ୟାଣ୍ଟ ଉପରେ ଗ୍ଲଉ ପିନ୍ଧା ଫତେଇ ଉପରେ ଝୁଲୁଥାଏ ଲମ୍ବା ରୁପା ଚେନ୍ । ତା'ପରେ ବାହାରି ପଡ଼ୁଥାଏ ପ୍ୟାଭେଲକୁ ଆଉ ମତେ ଗାଳି ଦେଇ ଦେଇ ।

"ଭଲକରି ପାଣ୍ଟୁ ପର୍ଯ୍ୟନ୍ତ କଷ୍ଟକରି ସଫା କରିବ କାରଖାନାକୁ ଆଜି ଏଇ ସନ୍ଧ୍ୟାବେଳେ । ଧୋଇଧାଇ ଦେବ ଲମ୍ବା ଟେବୁଲଟାକୁ—ଆଉ ଘଂଷିଚଂଷି ବାହାର କରିଦେବ ତା ଉପରୁ ଯାହା ଥିବ ସବୁ ଅଳିଆ ମଳିଆ ।"

ଆଉ ଦେଖ, ସନ୍ଧୁଁ ସନ୍ଧୁଁ ସମସ୍ତଙ୍କର ଫୁଟି ପଡ଼ୁଥିଲା ଲୁଟିଦିଆଁଆ ମଉଗଉ । ଚାକରମାନେ ସଜେଇ ଲଗଉଥିଲେ ଟେବୁଲଗୁଡ଼ାକୁ, ଧାଉଁଥିଲେ ରାଧୁଆଘରକୁ ଆଉ ତରବରରେ ସାଣ ଦେଉଥିଲେ ଘଉଷିଆଟା । ଆଉ ଘଉ-ଷିଆ ପରେ ପରେ ଆସି ମୂର୍ତ୍ତିମନ୍ତ ରୂପେ ହାଜର ହୋଇ ଯାଉଥିଲେ ଝିଙ୍ଗାସେଭ ମଦମାଂସ ଆଉ ଖାଇବା ଜିନଷମାନ ୧ଶ । ଆଉ ତା' ପଛେ ପଛେ ଆସି ଉଭା ହୋଇଯାଉଥିଲା ମାଇପିଟାଏ, ଏତକ ବିଶାଳକାୟ ଯେ ପ୍ରକୃତର ଉଦ୍ଭଟ ସୃଷ୍ଟି ବ୍ୟଙ୍ଗ ଯେମିତ । ଉଚ୍ଚରେ ଛଅଫୁଟ ପାଞ୍ଚ ଇଞ୍ଚ, ତା ଆଗରେ ଆମର ସବୁ ଚୌକି, ଟୁଲ, ଟେବୁଲ ଦିଶ ଯାଉଥାଏ ଖେଳଣା—ଏମିତକ ଆମର ଢେଙ୍ଗା ସୀତାନଭ ତା ତୁଳନାରେ ଲଗୁଥାଏ ପିଲାଟିଏ ବା ! ବେଶ୍ ସୁବଳିତ ଟାଣୁଆ ଗଢ଼ଣର ହୃଷ୍ଟପୁଷ୍ଟ, ତାର ସ୍ତନ ଦୁଇଟା ଗୋଲେଇ ହୋଇ ଛୁଞ୍ଚା ହୋଇଥାଏ—ଟେକ ହୋଇ ଲାଗି ଯାଇଥାଏ ତଳ ଓଠରେ-ଚିବୁକରେ । ତାର ଚାଲିଚଳନ ଥାଏ ଯେମିତ ଧୀରମନ୍ଥର ସେମିତ ଦପାଣ୍ଡୁଆ । ଚାଳିଶ ବର୍ଷରୁ ଟପି ଯାଇଥାଏ ତାର ବୟସଟା ସତ, ହେଲେ ଗୋଲଗାଲ ହାବଭାବପୂର୍ଣ୍ଣ ମୁହଁଟା—ଘୋଡ଼ା ଆଖି ଭଳି ବଡ଼ ବଡ଼ ଆଖି ଦିଶୁଥାଏ ସଜ ଚହଟ ଚକ୍‌ଚକିଆ ଆଉ ଟିକି ପାଟିଟି ତାର ଶସ୍ତା କଣ୍ଢେଇର ପାଟି ଭଳି ସୁରଙ୍ଗିମ ହୋଇଥାଏ ବେଶ୍ । ହସିହସିକା ଉଷ୍ମ ପ୍ରଶସ୍ତ ଅନୁରାଗପ୍ରବଣ ହାତ ପାପୁଲି ସେ ବଢ଼ାଇ ଦେଉଥାଏ ସମସ୍ତଙ୍କ ଆଡ଼କୁ ଆଉ ଅନାବଶ୍ୟକ ଭାବରେ ମନ୍ତବ୍ୟ ଦେଉଥାଏ :

"କେମିତ ଅଛ ? ବେଶ୍ ଭଲ, ନା ? ଭାରି ଅଣ୍ଡା ପଡ଼ୁଛି ଆଜି-ଇସ୍ କେମିତ ଗନ୍ଧଉଚ ସେ ବାର୍‌ଟା-ରଙ୍ଗଗୁଡ଼ାକ ଯୋଗୁଁ ନିଷ୍ଟୟ—କେମିତ ଅଛ ମ ?"

ଖାସା, ବେଶ୍ ପ୍ରୀତକର ଲାଗୁଥାଏ ତାକୁ ଚାହିଁବାକୁ, ଏଭଳି ବଳଶାଳିନୀ ସୁଢ଼ଳ ଦେହା ପ୍ରସନ୍ନତାମୟୀ ଥିଲା ସେ, ଉଦାର ପ୍ରଶସ୍ତତାରେ ବନ୍ଧୁର ଉଥିବା ସ୍ରୋତସ୍ୱିନୀଟିଏ ପରି କିନ୍ତୁ କହିଲାବେଳେ କିଛି ଏମିତ ଭାରକ୍ରାନ୍ତ ମନେହେଉଥାଏ, ପୁଣି ସବୁବେଳେ ଘୋରତେଇ ହେଉଥାଏ ଯେ ସେ କହୁଥାଉ ଅନାବଶ୍ୟକ ନିର୍ଜୀବ କଥାଗୁଡ଼ାକୁ । ପ୍ରାଞ୍ଜଳ ଭାବରେ ଉଚ୍ଚାରଣ କରିବା ପୂର୍ବରୁ ଶବ୍ଦଟିଏ ପବନ ପୁରାଇ ଦେଇ ଫୁଲେଇ ଦେଉଥାଏ ସୁରଙ୍ଗିମ ଗାଲ ଦୁଇଟିକୁ ତାହାର ଆହୁରି ବର୍ତ୍ତୁଳ କରି ଦେଉଥାଏ ମୁହଁଟିକୁ ନିଜର ।

କୁରୁର୍ କୁରୁର୍ ହେଉଥାନ୍ତି ଟୋକାଟାକଳିଆ ଯେତେକ—ଟୁପ୍‌ଟାପ ହେଉଥାନ୍ତି ନିଜ ନିଜ ଭିତରେ :

"ତୋ ପାଇଁ ଅସଲ ଖାପଖାଇଲା ଗାଲିଚିଏରେ ମାଇପିଟିଏ !"

"ହୁଁ ଗୋଳଆ ଗିର୍ଜାର ଚୂଳ ନାହିଁ !"

ଓଠ ଦୁଇଟିରୁ ଚକ୍ଷିଲା ଭଳି ଚପି ଚପି ନେଇ ହାତ ଯୋଡ଼ିକ ଛନ୍ଦହୋଇ ସ୍ତନଯୁଗଳର ତଳେ ତଳେ ବସିପଡ଼ିଲା ସେ ଷାମୋଷ୍ଟର (ହଠାତ୍ ଚାଲିର) ପଛପଟ ଟେବୁଲ ପାଖରେ ଜଣକ ପରେ ଜଣକୁ ଯାଚେଇ ଲାଗିଲା ତାର ମଧୁରିଆ ଭଲ ପ୍ରକୃତିର ଘୋଡ଼ାଳିଆ ସ୍ୱହାଣିରେ ।

ମାନଥାନ ଦେଖାଇ ସମ୍ଭ୍ରମର ସହିତ ବ୍ୟବହାର କଲେ ସମସ୍ତେ ତା ପ୍ରତି— ଏମିତିକି ଭେଣ୍ଡିଆମାନେ ଛୁଆଁ ହୋଇ ରହିଲେ ତା ସାମନାରେ ଶଙ୍କିତ ସଙ୍କୁଚିତ ହୋଇ, ତେବେ ବେଳେବେଳେ ଟୋଁକାଟିଏ ବା ଗିଳିଦେଲା ଭଳି ତାକୁ ଗୋଟାପୁଣି ଲୋଭାତୁର ହୋଇ ସୃଷ୍ଟି ଚକ୍ଷୁ ନ ଥାଏ ତାର ବିପୁଳ ଦେହଟାକୁ ଅପଲକ ଆଖିରେ ନୁହେଁ କିନ୍ତୁ ଯଦି ଦୈବାତ ସେହି ଅଖି—ତା ଆଖି ହାବୁଡ଼ ଯାଉଥାଏ ବିଶ୍ୱବ୍ୟାପିନୀ ସ୍ୱହାଣିକୁ ମାଇପିଟିର ଲଜେଇ ଯାଇ ଭେଣ୍ଡିଆଟି ନୁଆଁଇ ନେଉଥାଏ ମଥାକୁ । ଝିଅମାନେ ବି କମ ସମ୍ଭ୍ରମ ଦେଖାଉ ନ ଥାଏ । ତାକୁ ସମ୍ବୋଧନ କରୁଥାଏ ଆନୁଷ୍ଠାନିକ ସ୍ୱରରେ 'ପଡ଼ୋଶିନୀ' ବୋଲି । ଟେବୁଲ ଉପରୁ କିଛି ଯାଚିଲାବେଳେ ତାକୁ ନଇଁପଡ଼ୁଥାଏ ଶିଷ୍ଟତାରେ ।

"ନା-ମ-ନା,—ନା—ନା—ମୋ ପାଇଁ ଏତେ ହଇରାଣ ହୁ ! ଅଲସେଇ ଅଲସେଇ ସ୍ୱରକୁ ଟାଣି ନେଉଥାଏ" ଛିଃ, ଛିଃ— ଇଏ କଣ ମ ! ମୋ ପାଇଁ ଇଏ କି ହଇରାଣ ହେଉଛ, ସତେ !"

ଠିକଏ ଭଲ କାହିଁକି ତରବରିଆ ହେଉଥାନ୍ତା ସେ ! ଅଣ୍ଟା ପାଖରେ କଙ୍କାଳକୁ ଲଚି ଶକ୍ତ କରି ରଖିଥାଏ କହୁଣୀ ଦୁଇଟିକୁ, କହୁଣୀ ପାଖରୁ ଏଣୁ ଯାହା ହଲଚଲ ହେଉଥାଏ, ସ୍ୱଲୁଥାଏ ହାତ ଦୁଇଟି । ବିଶାଳ ବପୁଟିରୁ ତାର ମଉଳିଆ ବାସନା ଫିଟି ପଡ଼ୁଥାଏ ସଜ ସେକା ପାଉଁରୁଟିର ।

ବୁଢ଼ା ଗୋଖୋଲେଭ ଉଲ୍ଲାସରେ ପାଟି ଖନ ମାଉଥାଉଥାଏ, ତାର କି ଅସରନ୍ତି ସୌଜନ୍ୟ ଅଜାଡ଼ି ଦେଉଥାଏ ତା ପାଖରେ—କଥାରେ କଥାରେ ସେ କି ପ୍ରଶସ୍ତି ଗାଉଥାଏ ତାର, ଶୁଣୁଥାଏ ସେ, ମାଇପିଟି— ମୁଣ୍ଡଟିକୁ ଟଳେଇ ଦେଇ ବଙ୍କେଇ ଦେଇ ଶ୍ରଦ୍ଧାରେ ସଭକ୍ତିରେ ସତେ ଯେମିତି ଗୋଖୋଲେଭ ହିଁ ଚ ପାହାଡ଼ର ପାଦ୍ରୀ, ସ୍ତୋତ୍ର ପଢ଼ୁଥାଏ ବାଇବଲରୁ । ଯେତେବେଳେ ଗୋଖୋଲେଭ ଗୁଡ଼େଇ ତୁଡ଼େଇ ହୋଇ ଛନ୍ଦ ହୋଇ ଯାଉଥାଏ ନିଜର କଥାଗୁଡ଼ାକରେ ବିଶାଳିନୀ ତାକୁ ମୁକୁଳେଇବା ପାଇଁ କି କଣ, ଯୋଗେଇ ଦେଉଥାଏ ନିଜ ପକ୍ଷରୁ :

"ନା, ମ, ପିଲାଦିନେ ଆଦୌ ସୁନ୍ଦରୀ ନ ଥିଲି ମୁଁ—ସୁନ୍ଦରପଣ ଆସିଲା ମୋର ମାଆ ହେଲି ଯେତେବେଳେ-ମାତୃତ୍ୱର ଅଭିଜ୍ଞତାରୁ ! ତିରିଶ ପଚିଶ ବର୍ଷ ବେଳକୁ ମୋର ରୂପରେ ଟାଣି ଆଣି ପାରିଲି ସମସ୍ତଙ୍କ ଆଖିକୁ ଯେ—ଧୀର

ଶାନ୍ତ ଲୋକଗୁଡ଼ିକ, ଭଦ୍ରଲୋକ ସବୁ, ନା ଆଖି ଫେରାଇ ନେଇ ପାରିଲେ ନାହିଁ ମୋ ଉପରୁ, ଏତେ ଲଖିଗଲି ସେମାନଙ୍କ ଦୃଷ୍ଟିରେ । ଜଣେ ବଜ୍ରଡ଼ା ସାମନ୍ତ ଶ୍ରେଣୀର ଲୋକ ମତେ ଯାଚ ବସିଲା ଘୋଡ଼ାଗାଡ଼ି ଗୋଟାଏ ଆଉ ହସିଲେ···।"

ଏତକ କହିଲା ବେଳକୁ କ'ଣେ କାପେନ୍ଦ୍ରଦୁଃଖୀଙ୍କ ସ୍ୱଭାବର ଚେତା ଚୈତନ୍ୟ ହରାଇ ସାରିଥାଏ । ଟଳଟଳ ହେଉଥାଏ ଗୋଟାଏ ବୈଶାଖୀ କୋପକ୍ ଟୀମା ଚମକେଇ ତା ଉପରକୁ କହି ଉଠିଲା ରୂକ୍ଷ ଭାବରେ :

"କଣ ବଦଳରେ, କାହା ବଦଳରେ ?"

"ମୋ ପ୍ରୀତି ପୀରତି ବଦଳରେ—ଏ ତ ସରଳ କଥାଟା !" ବୁଝେଇ ଦେଲା ସେ—ଆମର ଅତିଥି !

"ପୀରତି" ଲଲେଇ ଗୁଣୁ ଗୁଣୁ ହେଲା କାପେନଦୁଃଖୀନ ଗୋଟାଏ ଅନ୍ଧାରରେ ପଡ଼ି । ମାନେ ପୀରତି—କଣ, ମାନେ କଣ ? କଣ ବୁଝ ତମେ ?"

"ତମଭଳି ସୁନ୍ଦର ପୁରୁଷକୁ କଣ ମାଲୁମ୍ ନ ଥିବ ପୀରତି କଣ । ମାଲୁମ୍ ଥିବା ତ ଉଚିତ ।" ଜବାବ ଦେଲା ମାଇପିଟି ସହଜ ସରଳ ଭାବରେ ।

କାରଖାନାଟା କମ୍ପି ଉଠିଲା ହୋ ହୋ ହସରେ । ସୀତାନଭ ଥଙ୍ଗ ଥଙ୍ଗ ହୋଇ କହିଲା ଅସ୍ପଷ୍ଟଭାବେ କାପେନଦୁଃଖୀନକୁ ।

ବୁଦ୍ଧିଶୁଦ୍ଧି ନାହିଁ ତାର—ବୋକାଟାଏ ବା ତାଠୁ ବଳି ଆହୁରି କିଛୁ ଖରାପ ! କି ଭୟଙ୍କର ଯନ୍ତ୍ରଣା ଭୋଗିବାକୁ ତମେ ପ୍ରେମରେ ପଡ଼ିବ ତା'ଭଳି ମାଇପିଟାର ଏତ ସାଫ୍ ସାଫ୍ କ କଷ୍ଟ ପାଇବାକୁ ପୀରତି କରିବ ତା ସାଙ୍ଗରେ ।"

ମଦପିଅ‌ାରେ ଶେତା ପଡ଼ିଯାଇଥିଲା ତାର—ସୀତାନଭର ମୁହଁ ବୋଟାକ, କପାଳରେ କାନ ପାଖରେ ଝୁଲି ଉଠୁଥିଲା ଟୋପାକୁ ଟୋପା ଝାଳ, ଗୁମ୍ଫା ମାଳିଭଳି ଓହଳିଥିଲା ଯେମିତି । ତେଲର ଆଖି ଦୁଇଟିରେ ମଦ ଜଳେଇ ଦେଇଥିଲା ସତର୍କତାର ସାବଧାନତାର ଅଗ୍ନି । କୁଞ୍ଚିତ ନାକଟାକୁ ବୁଲେଇ ଝୁଙ୍କେଇ ଦେଇ ନଜର, ମଦରେ ଝାପସା ଝାପସା ଢଳଢଳ ଆଖି କଣ ପୋଛିଦେଇ ଆଙ୍ଗୁଠିରେ ପଚାରିଲା ଗୋଖୋଲେଭ :

"କେ - ଟା ତୁଆ ଜନ୍ମ କରିଚ, କେଇଟା ?"

"ଗୋଟିଏ ବୋଲି ତ ପିଲା···"

ଟେବୁଲ ଉପରେ ଝୁଲୁଥିଲା ବତୀଟାଏ । ଆଉ ଗୋଟାଏ ଓହଳି ପଡ଼ିଥିଲା ଚୁଲି ପାଖରୁ ଦୂରରେ-ଘରକଣରେ । ନାଆଁକୁ ମାତ୍ର ଆଲୁଅରେ ବାଟ ଖୋଜି ଦେଉଥିଲା ଅନ୍ଧାରିଆ ଅନ୍ଧାରିଆ ଗାଢ଼ ଗୁଡ଼ଗୁଡ଼ିକୁ ଭଗ୍ନିକର ରଖିବାକୁ କାରଖାନାଟାଯାକ । ତା ଭିତରୁ ଉଙ୍କି ମାରୁଥିଲା ମୁହଁହୀନ ରୂପଗୁଡ଼ାଏ ।

ହାତ ମୁହଁ ଜାଗାରେ ଖାଲି ଖାଲି ପାଉଁଶିଆ ପାଉଁଶିଆ ଦାଗସବୁ । ମେଞ୍ଚାକୁ ମେଞ୍ଚା ଭୂତପ୍ରେତର କଳ୍ପନା ଆଣିଦେଉଥିଲା ମନକୁ, ଲାଗୁଥିଲା ଆଗ ଦିନ ଅପେକ୍ଷା ଆହୁରି ବେଶି ମାତ୍ରାରେ ଲାଗୁଥିଲା, ସାଧୁସନ୍ଥଙ୍କର ଦେବପୁରୁଷଙ୍କ ଦେହସବୁ ରହସ୍ୟଜନକ ଭାବରେ ଉଭାନ ହୋଇଯାଇ ଗୁଡ଼ି ଯାଇଥିଲା ସେମାନଙ୍କର ଚଜ-ବଚଜ ପୋଷାକକୁ ସବୁ ଅନ୍ଧାରିଆ ବଖୁରିଗୁଡ଼ିକରେ କାଚ ବାଳସବୁ ଟେକାଯାଇ ହୁକ୍‌ରେ ଝୁଲାଇ ଦିଆଗଲା ଗୁଡ଼ିକରୁ । ଧୂଆଁ ପଟଳ ଭିତରେ ସେଗୁଡ଼ିକ ଝଲମଲ କରି ଉଠିଲା ନେଳିଆସିଆ ରଙ୍ଗରେ ।

ଅଥସ୍ଥ ଭାବରେ ଘୂରି ବୁଲୁଥାଏ ଝିଙ୍ଖାରେଭ୍ ଟେବୁଲ ଚାରିପାଖ । ଆତିଥେୟତା ଦେଖାଉଥାଏ ପ୍ରତ୍ୟେକଙ୍କୁ—ଚନ୍ଦା ଖପୁରିଟା ତା'ର କେତେବେଳେ ଅଣ୍ଡେଇ ହୋଇ ଚାହୁଁଥାଏ ଜଣକ ଆଡ଼କୁ କେତେବେଳେ ଆଉ ଜଣକ ଆଡ଼କୁ, ନେସ୍ତକୋର୍ଦ୍ଧ ତାର ଆଗୁଂଳିଗୁଡ଼ିକ ବୁଲୁଥାଏ ଅବିରାମ ଭାବରେ । କେମିତି କେଉଁଦିନୁ ଝଡ଼ି ଝଡ଼ି ଯାଇ ଧଡ଼ିଆ ହୋଇଯାଇଥାଏ ସେ । ଆହୁରି ତୀକ୍ଷ୍ଣହୋଇ ଆସିଥାଏ ତାର ଛଞ୍ଚାଣ ନାକଟା । ଆଲୁଅକୁ ଆଡ଼କରି ଟିକିଏ ଛିଡ଼ା ହୋଇଥିଲା ବେଳେ ଦେଖି ନାକର କଳାଛାଇଟା ଆସି ଆଡ଼ ବାଗରେ ପଡ଼ୁଥାଏ ଗାଲ ଉପରେ ।

"ପେଟ ପୂରେଇ ଖାଅ, ପିଅ—ମନଇଚ୍ଛା ବଂଧୁଏ !" କହୁ ହେଉଥାଏ ସେ ତାର ଧୂନ୍ନସ୍ୱ ସପ୍ତମରେ ।

ଆଉ ମାଇପିଟା ମନ୍ତ୍ର ବୋଲୁଥାଏ ଗୁଞ୍ଜନ କରି ସତେ ଯେମିତି ଖାଇବା ଟେବୁଲର ମାଲିକାଣୀ ସେ :

"ମ, ମ, ପଡ଼ୋଶୀ ମ ! ତମେ, ତମେ କାହିଁକି ଏମିତି ଉଚ୍ଛାକୁ ହେଉଚ ମ—ହଇଗ୍ରଣ ହେଉଚ !

"କାହାର ଭଲ ହାତ ନାହିଁ, ପେଟରେ ଭୋକ ନାହିଁ—ଖାଇବାକୁ ଇଚ୍ଛା ନାହିଁ—କହୁଲ ! ଯା'ହାର ଯାହା ଅଛି—ଯା'ହାର ଯା ଇଚ୍ଛା ତା'ଠୁ କଣ ବଳେଇ ଖାଇ ପାରିବ ସେ ?"

"ମଉଜ କର, ମନ ମଜେଇ ମଉଜ କର ଖୁସିରେ ଭାଇଏ !" ଉତ୍ତେଜିତ ହୋଇ ମାତିଯାଇ କହୁଲା ଝିଙ୍ଖାରେଭ "ସମସ୍ତେ ଆମେ ସେବକ—ସମସ୍ତେ ଆମେ ଦାସ ଭଗବାନଙ୍କର—ଭାଇଏ ! ଅସ ଖାଇବା, ଆସ ସମସ୍ତେ—ଜୟ ଜୟ ଭଗବାନ ଜପିବା ଅସ, ସେଇ ନାମକୁ ତାଙ୍କର ।"

ବୁଆଡ଼େ କାହିଁ ମାଡ଼ିଗଲା—ପୂରାପୂରି ଉଣ୍ଟୁରି ହୋଇଗଲା ବ୍ୟର୍ଥ ହୋଇଗଲା ଗୀତ ବୋଲାବୋଲି, ଖାଇପିଇ, ଭୋଦକା ପିଇ ସମସ୍ତେ ହୋଇ ଉଠିଲେ ଉଚ୍ଛୁଚ୍ଛୁ, ଅଧାଅଧି ମରୁଥାଇ । କାପେନଦୁଃଖୀନ କେତେବେଳୁ

ଧଋଥାଏ ବଜାଉଥାଏ ଆକର୍ଡ଼ିଆନ । ସେକ ଟୋକାଟି ଭକଟର ସାଲଉଡନ ଡାମଗ୍ରାକାଉ ଭଳି ଗମ୍ଭୀର ଆଉ କଳା କଟିକଟି ଝୁମ୍ ଝୁମ୍ କରୁଥାଏ ଦାଗ (ବଡ଼ ଟେଷ୍ଟିଣିଙ୍କୁ) ଯେଉଁଥିରୁ ବହାରୁଥାଏ ଘଡ଼ଘଡ଼ିଆ ଗାଉଁଗଉଁଆ ଧ୍ୱନିଟା ଧାରରେ ଲଗା ମୁଦଆଗୁଡ଼ାକର ଝୁନୁଝୁନିଆ ଶବ୍ଦ ସାଙ୍ଗରେ ମିଶି ।

'ରୁପୀସ୍ୱ ପାଦ ପଡ଼ୁ, ରୁପୀସ୍ୱ ନାଚରେ" ହାଙ୍କିଲି ଝିଅସେଭ । "ଟିକଏ କୃପା ହେଉ, ଟିକଏ ଦୟା ହେଉ ପଡ଼ୋଶିନୀ !"

ସେ, ସେ ମାଇପିଟି ଆଗେଇଗଲା ଘର ମଝିକୁ । ଛୁଡ଼ା ହୋଇଗଲା କେଉଁ ଗଡ଼ର ନଦୀ ସରପଟ ଜଗୁଆଳ ଘର ପର, ପିନ୍ଧିଥାଏ ସେ ଚଉଡ଼ା ଢିଲା ଧୂସରିଆ କେଶରିଆ ରଂଗର ଘାଗରା ସ୍କାର୍ଟ, କଟୀରେ ଥାଏ ତାର ସବୁ ଝୀନ ପଶମର କମରପଟିଆ ଅଣଓସାରିଆ କନା ଖଣ୍ଡିଏ ଆଉ ମୁଣ୍ଡରେ ଗୁଡ଼ାଇ ହୋଇଥାଏ ସେ ଲାଲ ରୁମାଲ ।

ଆକର୍ଡ଼ିଅନ୍‌ରେ ଝଙ୍କାର ଉଠିଲା ରକ୍ତ ଟୋ ପୁରଟାଏ—ମଧୁର ମୂର୍ଚ୍ଛନା ତାର—ଆଦ୍ୟର ରୁଣୁଝୁଣୁ କଲା ତାଲ ପକେଇ ସେଥିରେ ଗ୍ଲେଟ ଗ୍ଲେଟ ଘଣ୍ଟିଘାଗୁଡ଼ ଗୁଡ଼ିଏ । ଦାଗଟା ରହି ରହି ଭାରି ଭାରି ନିଶ୍ୱାସ ଗ୍ରହଲା ଯେମିତି ଧଇଁ ପେଲା ଭଳି ହୋଇ—ଏଡ଼ିକ ଅସୁଖିଆ ଲାଗିଲା ଶୁଣିବାକୁ ସତେ ଯେମିତି ପାଗଳଟାଏ କହିଁ କହିଁ ଘୁରି ଘୁରି ହୋଇ ଲାଗିଲା କେଉଁଠି—ମୁଣ୍ଡ ପିଟି ଲାଗି ଲାଗିଲା କାନ୍ଥ ଦେହରେ କଡ଼ କଡ଼ ।

ନାଚଫାଟ ମାଲୁମ ନ ଥାଏ ଝିଖାରେଭକୁ । ଜାଣି ନ ଥାଏ ସେ କିଛୁ । ଖାଲି ପାଦ ଚେକ ପକାଇ କଗୁଡ଼ିଲା ଏପଟ ସେପଟ, ଝୁଲୁଝୁଲିଆ ଚକ୍ ଚକ୍ ବୁଟ୍‌ର ଗୋଇଠିରେ ଟପ ଟପ୍ କରି ଚଟୀଟାକୁ ନଇଲେ ବା ଛେଳିଭଳି ଡେଇଁ ଡେଇଁକା ଏକାବେଳକେ ବେତାଳିଆ ଗ୍ରଡରେ, ମନେହେଲା ତା'ପାଦ ଦୁଇଟ', ତା' ଗୋଡ ଦୁଇଟା ଯେମିତି ଆଉ ତାର ହୋଇ ନ ଥାଏ । ଦେହଟାକୁ ଏମିତି ମୋଡ଼ ମୋଡ଼ ଲଗିଲା—ବରକଟିଆ ଭଙ୍ଗୀରେ ସତେ ଯେମିତି ଭଅଁରଟାଏ ଛଟହେଉ ଘାଟଥାଏ ବୁଢ଼ିଆଣୀ ଜାଲ ତନ୍ତୁରେ, କି ମାଛଟ ଏ ଯେମିତି ପଡ଼ିଥାଏ ଜାଲରେ । ଭାରି କରୁଣ ହୋଇ ଉଠିଲା ଦୃଶ୍ୟଟା ବାସ୍ତବିକ, କିନ୍ତୁ ପ୍ରତ୍ୟେକ ସେଠି ଏମିତିକ ପିଇ ପିଇ ଚେତା ନ ଥିଲା ଯେଉଁମାନଙ୍କର ସେମାନେ ବି ତାର ସେଇ ବାଙ୍କମରା ମୋଡ଼ମୋଡ଼ିକା କମ୍ପିଲା ଦେହର ଗତିକୁ ନକଲ କରି ଲାଗିଲେ ମନଧ୍ୟାନ ଦେଇ ; ଆଖିଗୁଡ଼ାକୁ ଲଖେଇ ଦେଇ ତା ମୁହଁରେ, ତା ହାତର ଭଙ୍ଗୀରେ । ଲକ୍ଷ୍ୟ କରୁଥାଏ ମୁଁ ଝିଖାରେଭର ମୁହଁର ହାବଭାବ ବଦଳି ଯାଉଥାଏ ଅଦ୍‌ଭୁତ ଭାବରେ, କେତେବେଳେ ହୋଇଯାଉଥାଏ ଶାନ୍ତ ମଧୁର ସରମିଆ, କେତେବେଳେ ଗର୍ବୀ-ହଇତ ନିଷ୍ଠୁର, କ୍ରୋଧରେ ଜର୍ଜର, ଫଅଁ ଫଇଁଆ । ହଠାତ୍ ଯେମିତି କଣ

ତାକୁ ଚକିତ ସ୍ତମ୍ଭିତ କରିଦେଉଥାଏ, ସେଥିରେ ସେ ଚମକିପଡ଼ି ଚକ୍ଷୁ ର କରି ଉଠୁଥାଏ, ବନ୍ଦୀର ବୈଭବଥାଏ ଆଖି ହଳକୁ । ଯେତେବେଳେ ଖୋଲୁଥାଏ ସନ୍ତର୍ପଣରେ କେମିତି ଗୋଟାଏ ବିଷଣ୍ଣତାରେ ଆଚ୍ଛନ୍ନ ହୋଇ ବିହ୍ୱଳ ହୋଇ ରହୁଥାଏ ସେ ! ହାତ ଦୁଇଟାକୁ ମୁଠା ମୁଠା କରି ଜୋରରେ ଲଟେଇ ଯାଉଥାଏ ସେ ଡରିଳଟା ଅଡ଼କୁ, ଡରିଲି ପାଖକୁ । ହଠାତ୍ ପାଦ ଦୁଇଟାକୁ ଘୁଞ୍ଚି ବାଡ଼େଇ ଦେଇ ପାଣ୍ଡୁ ମାଡ଼ି ବସି ପଡ଼ୁଥାଏ ଡରିଳଟା ସାମନାରେ—ଓସାରେଇ ମେଲେଇ ଦେଉଥାଏ ସଙ୍ଗେ ସଙ୍ଗେ ହାତ ଦୁଇଟକୁ ତା' ଉପରକୁ ଆକୁତିଭରି ହସ ଫୁଲାଏ ଗ୍ରୀବ ଦେଇ ଦେଇ ଟେକି ନେଉଥାଏ ଭୂରୁ ହଳକୁ, ତାକୁ ଅନଉଥାଏ ଡରିଲଟି । ଚରିତାର୍ଥ ହେଲି ଖୁସିରେ ପ୍ରଶସ୍ତ ଦେଲି ଠାଣିରେ ହସିଦେଇ ଟିକିଏ ଟିକିଏ ଆହୁ ତାର ଧୀର ଅବିଚଳିତ ଗତିରେ ଡିଆଁଉଥାଏ—ସତର୍କ କରିଦେଇ ଝିଙ୍ଖାରେଇକୁ ।

"ସ, ସ-ଦେଖ୍ ଦେଖ୍-ଦେହଟା ଖଂଗି ପଡ଼ିବ ।

ଉଜୁଡ଼ି ଯିବ—ଯେ ପଡ଼ୋଣି !"

ଅନୁକମ୍ପାରେ, ପ୍ରତ୍ୟନୁକମ୍ପାରେ ଚେଷ୍ଟା କରୁଥାଏ ସେତେବେଳେ ମୁଦ ମୁଦ ନେବାକୁ ଆଖିଯୋଡ଼ାକ ତାର-ଡଳକୁପେକ୍ (ଡଳପଇସୀ)ଭଳି ଡ଼ମା ଡ଼ମା ଆଖି ଯୋଡ଼ିକୁ ମାନୁ ନ ଥାଏ କିନ୍ତୁ ମୁଦ ହେବା ପାଇଁ, ଫଳରେ, କୁଞ୍ଚି କୁଞ୍ଚି ହୋଇ ଉଠୁଥାଏ ଯେଉଁଥିରେ ଏମିତି କୁଞ୍ଚିତ ଦିଶୁଥାଏ ସେ, ତା ଅଡ଼କୁ ଅନେଇ ହେଉ ନ ଥାଏ ଆଦୌ ।

ସେ ଡରିଲଟି ନାଚ ଜାଣି ନ ଥାଏ ବି ଭଲକରି, ବିଶାଳବପୁଟାକୁ ତା'ର ଅସ୍ତେ ଆସ୍ତେ ହଲେଇ ଝୁଙ୍କେଇ ପାରୁଥାଏ କଷ୍ଟରେ । କାଂଶଢରେ ଘୂଞ୍ଚେଇ ନେଉଥାଏ ଗୋଟିଏ ଥାନରୁ ଆଉ ଗୋଟିଏ ଥାନକୁ । ବାଆଁ ହାତରେ ଧରିଥାଏ ରୁମାଲ···ତାକୁ ଅଳସ ବିହ୍ୱଳତାରେ ହଲଉଥାଏ ଥରେ ଥରେ । ଡାହାଣ ହାତଟି ଖୋସିଥାଏ ଅଣ୍ଟାରେ ଗୁନ୍ଧିଦେଲେ ମନେ ହେଉଥାଏ କଡ଼ପଟୁ ହାତଲଗା ଗୋଟାଏ ବଗଟ ପୁରେଇ ଭଳି ।

ଏଇ ଅଚନ୍ତ ଜଡ଼ ମୂର୍ତ୍ତିଟାର ଘୂରପଟେ ଚକି କାଟିଲାବେଳେ ଝିଙ୍ଖାରେଇ ପରସ୍ପର ବିରୋଧୀ ଲଦାଲଦିଆ କେତେ ଭାବଧାରା ଚମକିଯାଉଥାଏ, ଉଭିଁ ଉଭେଇ ଯାଉଥାଏ ତା' (ଝିଙ୍ଖାରେଇ) ମୁହଁରେ । ସତେ ଯେମିତି ନାଚୁ ନ ଥାଏ ସେ ଗୋଟିଏ ବୋଲି ମଣିଷ, ନାଚୁଥାନ୍ତି ଦଶ ଦଶଟା—ପ୍ରତ୍ୟେକ ପ୍ରତ୍ୟେକଙ୍କଠାରୁ ଅଲଗା ଗୋଟିଏ ଲାଜକୁଳା, ଧୀର ଶାନ୍ତ ନମ୍ର, ଆଉ ଗୋଟିଏ କୁକ୍ଷୀଣଳି କାଙ୍କଣିଳି କଙ୍କଡ଼ା ଭଳି, ଜବରଦସ୍ତ ମଣ୍ଡ ମାଡ଼ି ବସୁଥାଏ । ତୃତୀୟଟି ସେ କାଳେ ଯାହା ଉପରେ ମାଡ଼ ବସୁଥାଏ ଆଉଟି, ଦ୍ୱିତୀୟଟି ଯିଏ ଥରି ଥରି ଥରି ଚଳେଇ

ଉଠୁଥାଏ ଯେତେବେଳେ ଋଷି ମୁକୁଳ ଆସୁଥାଏ—ଦୂରେଇ ଯାଉଥାଏ ରାକ୍ଷସୁଣୀ, ବିଶାଳଦେହା - ଦେଖିଲି ମାଡେ ଅରୁଚିକର ଢଗଲଠୁ । ହଠାତ୍ ପୁଣି ଥାଏ ଥାଏ ପ୍ରକଟି ଉଠୁଥାଏ ଆଉ ଗୋଟାଏ ଆହ୍ୱତ କୁତ୍ସାଭଳି ଦାନ୍ତ ଦଂପାଟି ଦେଖାଇ, ଭଡ଼ମୋଡ଼ ହୋଇ । ସେଇ କୁତ୍ସିତ କଦର୍ଯ୍ୟ ନାଚ ଦେଖି ଓକାର ଉଠି ଆସିଲା ମୋର, ରୁଦ୍ଧ ହୋଇଗଲା ପ୍ରାଣଟା—ମନରେ ମୋର ଚେଇଁ ଉଠିଲା ସେଇ ଖରାପ ସ୍ମୃତିଗୁଡ଼ାକ—ଦୃଶ୍ୟଗୁଡ଼ାକ । ସୈନିକ, ରାଜକୁଣିଆ ଆଉ ଲୁଗାକଗୁଳ ମାଇକିନିଆଁଙ୍କର ଆଉ କୁତ୍ସା-କୁତ୍ସିଙ୍କ ପ୍ରେମର—

ସିଦୋରୋଭର ଶାନ୍ତ-ମଧୁର ଶବ୍ଦ କେତୋଟି ପୁଣି ଯେମିତି ବାଜିଲା ସ୍ମୃତିପଟରେ :

"କିଏ ବା ମିଛ ନ କହେ ! ସମସ୍ତେ ମିଛ କହନ୍ତି । ଏହିଭଳି ଏସବୁ ବିଷୟରେ—ଲଜପରମରେ ସଢ଼ନ୍ତି ସେମାନେ । କାରଣ କେହି ତାଙ୍କ ଭିତରୁ ପ୍ରେମ କଣ ଜାଣି ନ ଥାନ୍ତି—ପ୍ରେମରେ ପଡ଼ି ନ ଥାନ୍ତି ଆଦୌ—ଯାହା କରନ୍ତି, ଦେଖାନ୍ତି ଖାଲି ପ୍ରହସନ—କୌତୁକ ।"

ମୋର କିନ୍ତୁ ମନ ମାନୁ ନ ଥାଏ ବିଶ୍ୱାସ କରିବାକୁ ! "ସମସ୍ତେ ମିଛ କହନ୍ତି ଏହିଭଳି ସବୁ ବିଷୟରେ ।" ଗ୍ରାଣୀ ମାର୍ଗଟ କଥା କଣ ସେ ? ଆଉ ଏଇଟା ନିଶ୍ଚିତ, ମିଛ କହି ନ ଥିଲା ଝିଖାରେଭ । ଜାଣିଥାଏ ମୁଁ, ସୀତାନଭ ଭଲ ପାଉଥିଲା ଗୋଟାଏ ବାରନାରୀକୁ —ରାସ୍ତାରେ ବୁଲି ବୁଲି ଗରାଖ ଗୋଟାଏ ଯିଏ—ଆଉ ସେ ସୀତାନଭକୁ ଦେଇଥିଲା ଗୋଟାଏ ଲଜ୍ଜାକର ରୋଗ, କିନ୍ତୁ ସେଥିପାଇଁ ସୀତାନଭ ତ ପିଟାପିଟି କରି ନ ଥିଲା ତାକୁ, ଯଦିଓ ତା ସାଥୀମାନେ ତାକୁ ପରାମର୍ଶ ଦେଇ ମତାଇଥିଲେ ତାହା ହିଁ କରିବାକୁ । ଓଲଟି ସେ—ସୀତାନଭ ତାକୁ ନେଇ ରଖିଥିଲା ଗୋଟାଏ ଭଡ଼ାଘରେ । ଭଡ଼ା ଟଙ୍କା ଦେଉଥିଲା ନିଜେ, ତାକୁ ନେଇ ଦେଖାଇଥିଲା ଡାକ୍ତରଙ୍କୁ, ଚିକିତ୍ସା କରାଇଥିଲା ତାର । ଆଉ ତା ସମ୍ପର୍କରେ କହୁଥିଲା ଯେତେବେଳେ କିଛୁ—କହୁଥିଲା ସର୍ବଶେଷ କୋମଳତାରେ ସଙ୍କୋଚରେ ସମ୍ଭ୍ରମରେ ଗୁଙ୍କିଗୁଙ୍କି ହୋଇ ।

ସେଇ ବିଶାଳକାୟ, ଝୁଲିବାକୁ ଲାଗିଥାଏ ସେମିତି—ଖଣ୍ଡା ହସଟିକି ଥାଏ ମୁହଁରେ—ରୁମାଲ ଖଣ୍ଡିକ ହଲୁଥାଏ ନାଚ ନାଚିକା ସେମିତି ତା ହାତରେ ! ଝିଖାରେଭ ନାଚ କୁନ୍ଦ ହେଉଥାଏ କମ୍ପି ଆସିଲା ଭଳି ତା ଶରୀରଟେ; ତାଙ୍କୁ ଅନେଇ ଅନେଇ ଭାବୁଥାଏ ମୁଁ— ଭଗବାନଙ୍କୁ ଭଲେଇ ମୋହି ଦେଇଥିଲା ଯେଉଁ 'ଇଭ୍' ଆଦମାନଙ୍କୀ, ସେ କ'ଣ ଥିଲା ସମାନ ଠିକ୍ ଏଇ ଅଶ୍ୱିନୀଟା ପରି ? ଘୃଣା ଆସିଲା ମନରେ ।

ମୁହଁ ନ ଥିବା ଟଳପଟଗୁଡ଼ାକ ଅନ୍ଧାରଆ କାନ୍ଥଗୁଡ଼ାକରୁ ଏକ ଲୟରେ ଦେଖୁଥିଲେ ଯେମିତ ! ଝରକା କାଚ ପାନଅରେ ଲୁଚି ହୋଇ ନେସି ହୋଇ ଯାଇଥିଲା ଗାଢ଼ ଅନ୍ଧାର । ନାଃଶ୍ୱାସରୋଧୀ କାରଖାନାଟା ଭିତରେ ମିଣ୍ଟି ମିଣ୍ଟି ହୋଇ ଜଳୁଥିଲା କୌଣସିମତେ ବତୀ କେତୁଟା । ପାଦ କଡ଼ଡ଼ାର ଠକ୍‌ଠାକ୍ ଆଉ ଗୁଡ଼ାଏ ସ୍ୱରର ଝୁଁ ଖାଁ ଉଁ ଆଁ ଶବ୍ଦକୁ ହେଲା ଧରିପାରୁଥାଏ ମୁଁ । ଟମ୍ବା ପିତ୍ତଳର ହାତଧୁଆ କୁଣ୍ଡରୁ ମଇଳା ପାଣି ବାଲ୍‌ଟିକୁ ପ୍ରଖର ବେଗରେ ପଡ଼ୁଥିବା ପାଣିର ଶବ୍ଦ—ଟୁପ୍—ଟୁପ୍—ଟୁପ୍ ।

ବନ୍ଧରେ ଯେଉଁ ଜୀବନ ତା ସାଥୀରେ କେଡ଼େ ଅମେଳର ଏ ସେଇ ଜୀବନ—ନ ବଟାଳିଟିଆ ଭାବରେ ଅଲଗା ଏକାବେଳକେ ! ଗୁହ୍ନ ଗୁହ୍ନ ବରକ୍ତ ହୋଇଗଲେ, ଉତ୍ସାହ ହରେଇ ଚଡ଼ଚଡ଼ା ହୋଇ ଉଠିଲେ ସମସ୍ତେ । କାପେଲ୍‌ଦ୍ୟୁଏଟୀନ ଆଜଡ଼ଆନ୍‌ଟାକୁ ସେଇ ଭଲ୍ଭ କଣଦେଲା ସଲଉଡନ୍ ହାତରେ—ଜବରଦସ୍ତ ଧରେଇଦେଲା ତାକୁ—ଆଉ ପାଟିକଣ ଉଠିଲା—

"ଆସ ରେ ସମସ୍ତେ—ଆସ ରେ କାଠ ଆସବାବଗୁଡ଼ାକୁ— ତଳ୍ପୋଥ ଟେବୁଲ ଫେକୁଲରୁ ଧୂଆଁ ବାହାର କରିଦେବା ଆସ ।"

ନାଚ ଲଗିଲା ସେ, ଖଙ୍କା ଡସିଗାନୋକ୍ ପରେ—ସତେ ଯେମିତ ଉଡ଼ ଉଡ଼ ହ୍ଲାଲ୍ ପବନରେ ! ପ୍ୟାରେଲ ଓଦନ୍‌ତସଭ ଆଉ ସୋଗ୍ରେନନ୍, ତା'ପରେ ଦ୍ରୁତ ତାଳରେ ପ୍ରଖରରୁ ପ୍ରଖର ବେଗରେ ପାଦ ପକେଇ ଏମିତକ ଧଇଁଆ ଯକ୍ଷାରୋଗୀଟା ତାଉଡ଼ଉ । ଆଉବାଗରେ ଚଟାଣର ପାଦ ଘୋଷାରି ଲାଗିଲା କାଶିକାଶିକା ଧୂଳ ଅଉ ଧୂଆଁରେ ଝେଦକାର ଅଉ ବାମ୍‌ଦଆ ମାଂସପୂରର ପିଠା ସନ୍ଦେସ୍‌ର ଉଲଟ ଗନ୍ଧରେ—ଯେଉଁଠାରୁ ଠିକ୍ ବାହାରୁଥିଲା ଚମଡ଼ାକଷାର ବାସନାଟା ।

ନାଚଗୀତ ପାଟିରୁଣ୍ଡ ଧୁମ୍‌ଧାମ୍ କେନେଇଲେ ସେମାନେ ସମସ୍ତେ, ଚଳେଇଲେ ସତ, ଲାଗୁଥାଏ କନ୍ତୁ ଦେଖେଇ ହେଉଥାନ୍ତି ଯେମିତ—ସମସ୍ତେ କଟାଉଛନ୍ତି ମନକଟେ—ଅଉ କଏ କେବେ ହସଂଖୁସି ନାଚତାମସାରେ କେତେବେଳ ଯାଏ ରହି ପାରୁଛୁ, ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଠେଲ ଲାଗିଥାନ୍ତି ଏଇ ପରୀକ୍ଷା ଭିତରକୁ—ପରୀକ୍ଷା କରି ହେଉଥାନ୍ତି ନିଜ ନିଜର ଧୈର୍ଯ୍ୟ ।

ସୀତାନଭର ଅଉ ସୋର ନ ଥାଏ, ଜଣକ ପାଖରୁ ଆଉ ଜଣକ ପାଖକୁ ଯାଉଥାଏ—ରୁଣ୍ଡ ଲଖି ଲଖି ଯାଉଥିବା ମାତାଲ ସ୍ୱରରେ ପଗ୍ଗୃଣ ପଗ୍ଗୃଣ ।

'ଏମିତକା ମାଇକନଅକୁ କେମିତ ଭଲ ପାଇଲ ସେ ଯେ କେମିତ ? ଏ ?"

ଲକ୍ଷ୍ମୀନାଥ୍ ହାଡ଼ୁଆ କାନ୍ଧ ଦୁଇଟାକୁ ଟେକିଦେଇ ଚାକିନେଇ ଟିକିଏ ଉତ୍ତର ଦେଲା :

'ଆଉ କେତେକଙ୍କଠୁଁ ସେ ଖରାପ କେଉଁ ଗୁଣରେ ? ତା ଛଡ଼ା ତୋର ସେଥିରେ ଯାଏ ଆସେ କ'ଣ ?''

ଗୃହସ୍ଥ ଗୃହସ୍ଥ କିନ୍ତୁ ଯେଉଁ ଯୋଡ଼ିକ ବୟସ୍କରେ କଥା ହେଉଥିଲେ ସେମାନେ ଉତ୍ସାହ ହୋଇଗଲେ କୁଆଡ଼େ—

"ଆରେ ଗୃହଗଲେ କିରେ ସେମାନେ !"

ପଶ୍ଚରିଲା ସୀତାନାଥ୍, ତାର ବିପକ୍ଷ ନୀଳ ଧୂସର ଆଖିଯୋଡ଼ାକୁ ବୁଲାଇ ନେଇ ଘର ଗୋଟାକରେ ।

ପ୍ରକୃତରେ ଗୃହଯାଇଥିଲେ ସେମାନେ ଆଉ ଜାଣିଥାଏ ମୁଁ ଝିଖାରେଭ ଫେରିବ ଯାଇ କାରଖାନାକୁ ଦ ଦିନ ଦିନ ପରେ । ତା' ଆଗରୁ ନୁହେଁ । ତା'ପରେ ଗାଧୁଆଘରକୁ ଯାଇ ଧୋଇଧାଇ ହୋଇ ଆସି ବସିବ କାରଖାନାର ଗୋଟାଏ କଣରେ । ଚୁପ୍‌ଚାପ୍ ଦ ସପ୍ତାହ କାଳ ଗୁରୁତ୍ୱପୂର୍ଣ୍ଣ ଭଙ୍ଗୀରେ ଅଲଗା ରହି ସମସ୍ତଙ୍କଠୁ—

ସୀତାନାଥର ମୁହଁଟି ବୁଢ଼ାଳିଆ, ସୁନ୍ଦର ନୁହେଁ ଆଦୌ । କିନ୍ତୁ ଆଖି ଯୋଡ଼ିକ ସ୍ୱଚ୍ଛ ସୁକୁମାର ଢଳଢଳ କରୁଣାର୍ଦ୍ର ।

ମୋ ପ୍ରତି ମମତା ଥାଏ ତାର । ଏଥିପାଇଁ ମୋ ଟିପାଖାତାକୁ ଧନ୍ୟବାଦ ଦେବ, କାରଣ ସେଇଟି ପୂର ଉଠିଥାଏ ପଦ୍ୟରେ । ଭଗବାନଙ୍କଠି ବିଶ୍ୱାସ ନ ଥାଏ ତାର, ନିର୍ଣ୍ଣୟ କରିବା ବି କଷ୍ଟକର ଥାଏ । ଲକ୍ଷ୍ମୀନାଥ୍ ଛଡ଼ା ଆଉ କାହାର କି ବିଶ୍ୱାସ ଥାଏ ଭଗବାନଙ୍କଠି—କିଏ ବା ଆଉ ଭଲ ପାଉଥାଏ ଭଗବାନଙ୍କୁ ! ପ୍ରତ୍ୟେକେ ଭଗବାନଙ୍କ କଥା କହିଲାବେଳେ କହୁଥାନ୍ତି ବିଦ୍ରୂପରେ ବ୍ୟଙ୍ଗର ରଙ୍ଗ ଚଢ଼ାଇ—ଶ୍ରମିକମାନେ ଯେମିତି କହନ୍ତି ମାଲିକମାନଙ୍କ ସମ୍ପର୍କରେ, ତଥାପି ପ୍ରତ୍ୟେକେ ସେମାନେ ଦିପହରିଆ କି ରାତିଭୋଜନରେ ବସିଲାବେଳେ କ୍ରୁଶଚିହ୍ନ ଆଙ୍କି ଦେଉଥାନ୍ତି ନିଜ ନିଜ ଛାତିରେ—ଆଉ ଶୋଇବାକୁ ଗଲାବେଳେ ବିଛଣା ଛୁଉଁ ଛୁଉଁ ଡାକୁଥାନ୍ତି, ପ୍ରାର୍ଥନା କରୁଥାନ୍ତି ଭଗବାନଙ୍କୁ । ଆଉ ପ୍ରତ୍ୟେକେ ସେମାନେ ଗୀର୍ଜାକୁ ଯାଉଥାନ୍ତି ରବିବାର ଦିନ ।

ଏଥିରୁ କେଉଁ ଗୋଟିକ ହେଲେ କରୁ ନ ଥାଏ ସୀତାନାଥ । ଏଣୁ ସମସ୍ତେ, ସମସ୍ତେ ତାକୁ ବିଗୃରୁଥାନ୍ତି—ନାସ୍ତିକଟାଏ ।

"ଭଗବାନ ଫଗବାନ ନାହାନ୍ତି"—ଜୋର ସହିତ କହୁଥାଏ ସେ ।

"ତାହାହେଲେ ଏସବୁ ଆସିଲା କେଉଁଠୁଁ—କେଉଁଠୁ ଉତ୍ପତ୍ତି ?"

"ଜାଣେ ନା !"

ଅରେ ମୁଁ କହିଲି ତାକୁ— ।

"ଭଗବାନ ନାହାନ୍ତି—ଏ କେମିତି କଥା ? ଏ କଣ ହୋଇପାରେ !"

"ଆରେ ବୁଝିପାରୁନୁ ଏତିକି—ଭଗବାନ କହିଲେ ଉଚିତା ସର୍ବୋଚ୍ଚରେ ଏହା ହିଁ ବୁଝାଏ ।" ଜଣେଇଲା ସେ ମତେ ଉତ୍ତର ଦେଇ—ଲମ୍ବା ଲମ୍ବା ହାତ ଦୁଇଟାକୁ ମୁଣ୍ଡ ଉପରକୁ ଟେକି, ମେଲେଇ ଦେଇ, ତା'ପରେ ତଳକୁ କରି ଘର ଚଟାଣକୁ ଦେଖେଇ—

"ମଣିଷ କହିଲେ ବୁଝାଏ ତଳ ପାତାଳ, ଖୁବ୍ ଗଭୀର, ଏଇଆ ନା, ନୁହେଁ ?

କିନ୍ତୁ ଆମେ ଶୁଣୁ କ'ଣ, କୁହାଯାଏ କଣ ?

'ଭଗବାନ ନିଜ ରୂପରେ ଗଢ଼ିଛନ୍ତି ମଣିଷକୁ ।' ଗୋଗୋଲେଭ ଭଲି କାହା ରୂପରେ ଗଢ଼ା ?"

ଏଥିକୁ ଆଉ ବୁଦ୍ଧିବିଦ୍ୟା ପାଇଲି ନାହିଁ ମୋର । ମଥା ଭରମି ଗଲି ବା—ହିଁ ତ । ଏତେ ବୟସ ହେଲେ କ'ଣ ହେବ—ମଇଳା ମେଲେଛା ମାତାଲ ଗୋଗୋଲେଭ ଯେ 'ଓନାନ୍' ପାପରେ ଦୋଷୀ, ଅପରାଧୀ । ମନେପଡ଼ିଲେ ଗୋଟି ଗୋଟି ହୋଇ—ଆଇମା'ର ଭଉଣୀ, ଭ୍ୟାଢକାର ସୈନ୍ୟଟା ସ୍ୱେର୍ମୋଙ୍କୀନ୍ କି ଐଶ୍ୱରିକ ଚିହ୍ନ ବା ମିଳିଥାନ୍ତା ଦେଖିବାକୁ ଏଇ ଲୋକଗୁଡ଼ାକଠି ?

'ଘୃଷୁରି ଘୃଷୁରି ହେଉଛନ୍ତି ଲୋକଗୁଡ଼ାକ—" କହିଲା ସୀତାନଭ । କିନ୍ତୁ ସଙ୍ଗେ ସଙ୍ଗେ ଆଶ୍ୱାସନା ଦେଲା—

"ଚିନ୍ତା ଫିକ୍ରା କରନା ଏତେ—ମଥା ବିଗାଡ଼ ନା ।

ତା ସାଥୀରେ ସହଜରେ ଅବାଧରେ ମିଶିପାରୁଥାଏ, ଚଳିପାରୁଥାଏ, ମୁଁ । ସେ ଯଦି ଜାଣି ନ ଥାଏ କିଛୁ କୌଣସି ଗୋଟିଏ କଥା—ମାନି ଯାଉଥାଏ ଖୋଲାଖୋଲି ।

"ମାଲୁମ ନାହିଁ ମତେ", କହୁଥାଏ ଅସଙ୍କୋଚରେ—

"କେବେ କାହିଁ ଭାବିନି ଏ ବିଷୟରେ କିଛୁ ।"

ଏଭଳି ତାର ବାଢିଟି ଥାଏ ଅସ୍ୱାଭାବିକ, ଅଉ ଯେତେ ଯାହାଙ୍କୁ ଦେଖିଥାଏ ମୁଁ ସମସ୍ତେ କହୁଥାନ୍ତି, ସବୁକଥା ଜାଣିଥାନ୍ତି—ସେମାନେ ଆଉ ଯେ କୌଣସି ବିଷୟରେ ଦୃଢ଼ଭାବରେ କହିବା ପାଇଁ କୁଣ୍ଠିତ ହେଉ ନ ଥାନ୍ତି କେବେହେଲେ ।

ଅଦ୍‌ଭୁତ ଲାଗୁଥାଏ ମତେ, ତାର ଫିପାଖାତାରେ ସୁନ୍ଦର ସୁନ୍ଦର ହୃଦୟ-ଉନ୍ମାଦୀ କବିତାର ପଦଗୁଡ଼ିକ ଛଡ଼ା ଏମିତିକି କେତେ ମଧୁର ଯତିପାତମୂଳକ ଅଧିକା ଛନ୍ଦୋମୟ ପଦ ଭର୍ତ୍ତି ହୋଇ ରହିଥାଏ ଯେ ତାକୁ ସବୁ ପଢ଼ିଦେଲକ୍ଷଣି ଲାଜ ସରମରେ ଜଳି ଉଠୁଥାଏ ଗାଲ ଦୁଇଟା । ଥରେ ଯେତେବେଳେ କେବେ ଉଠୁ ନ ଥାଏ ମୁଁ ତା ଆଗରେ ପୁଷ୍କିନଙ୍କ ବିଷୟରେ—ତେ 'ଗ୍ୟାଭ୍ରିଲିଆଦା'କୁ—ଯାହାକୁ ସେ ଉତ୍ସାଇ ରଖିଥାଏ—ଦେଖେଇ ଦେଇ କହୁଥାଏ—

'ପୁଷ୍କିନ ?—ଆଃ ପୁଷ୍କିନ୍ ! ତାକୁ ଏବେ ଗୁରୁତ୍ୱ ଦେଇପାରେ ନା ମୁଁ—ଏମିତି କିଛି କହନ୍ତି ସେ ! କିନ୍ତୁ ବେନେଦିକ୍‌ଟଭ—ଜଣେ ବୋଲି ଜଣେ ସେ, ଯାହାଙ୍କୁ ମନଧ୍ୟାନ ଦେଇ ଦେଖିବାକୁ ହେବ —ବୁଝିଲୁ ମାକ୍‌ସିମିଚ ।"

ଆଖି ଯୋଡ଼ିକ ମୁଦି ମୁଦି ଦେଇ ଥରି ଥରି ଆବୃତ୍ତି କରୁଥାଏ କୋମଳ ଭାବରେ—

ଦେଖ ଦେଖ ଅପୂର୍ବ ଏଇ ଚମତ୍କାର ସ୍ତନଯୁଗଳକୁ—ହେଇ ଏଇ ରୂପସୀର ଲାବଣ୍ୟମୟୀ—

କେତେକ କାରଣରୁ—ବିଶେଷ ଭାବରେ ସେ ଗୁରୁତ୍ୱ ଦେଉଥାଏ ଧାଡ଼ି ଉପରେ—ବିହ୍ୱଳିତ ଗର୍ବରେ ମୁଗ୍‌ଧ ହୋଇ ଆବୃତ୍ତି କରୁଥାଏ ସେ ।

ନାହିଁ ନାହିଁ ଭେଦ କରି ପାରେ ନାହିଁ । କିନ୍ତୁ ବାଲ୍ୟସମ (ଉଲ୍ଲସମ) ଚକ୍ଷୁ ତାର-ଈଗଲ୍‌ର ଚକ୍ଷୁଭଳି-ହୃଦୟ ତପନକାନ୍ତି-ତୋରଣଟି-ପ୍ରବେଶପଥ—

ଦେଖିବାକୁ ଥରୁଟିଏ ମୁନିଭୃତ ମର୍ମର ମହାଳତାର—

'ବୁଝିଲୁ' ?

ଲାଜ ଲାଗୁଥାଏ ମତେ ସ୍ୱୀକାର କରିବାକୁ କିନ୍ତୁ—କିଛି ମୁଁ ବୁଝିପାରୁ ନ ଥାଏ—କରି ଏତେ ପ୍ରୀତିକର, ଏତେ ହୃଦୟହାରୀ ମିଳୁଥାଏ ତମକୁ ସେଥିରୁ !

## ଚତୁର୍ଦ୍ଦଶ

କାରଖାନା କାମରେ ଏମିତି କିଛି ବୁଦ୍ଧି ରହିବାକୁ ହେଉ ନ ଥାଏ ମତେ—ଏମିତି କିଛି ଜଟିଳ ଜାବୁଡ଼ି ଧରି ରଖିଲଭଳି ନ ଥାଏ ମୋ କାମର । ସକାଳୁ ସକାଳୁ କଏ କେଉଁଠି ବିଛଣା ଛାଡ଼ିଲା ଆଗରୁ ଟିଏନାରଗୁଡ଼ାକ ପାଇଁ ମତେ ଜଳାଇବାକୁ ହେଉଥାଏ ସାମୋଭରଟା, ଉଠାଚୁଲ୍ଲୀଟା । ସେମାନେ ଉଠି ରୋଷେଇ-ଶାଳରେ ଚାହା ପିଇ ପିଉ ମତେ ଆଉ ପ୍ୟାଭେଲକୁ ଘର ଓଳେଇବାକୁ ହେଉଥାଏ

ଆଗ । ତା ପରେ ଆମେ ଅଣ୍ଡାଗୁଡ଼ାକରୁ କେଶରକୁ ସବୁ ଅଲଗା କରୁଥାଉ ଗ୍ଲାସରୁ । ସେ ସବୁ କେଶର ଲେଡ଼ା ହେଉଥାଏ ରଙ୍ଗରେ ମିଶାଇବା ପାଇଁ । ଏତକ ସରିଲା ପରେ ମୁଁ ବାହାର ପଡ଼ୁଥାଏ ବଜାରକୁ ପଣ୍ୟବାଣ୍ଟିବାକୁ । ସଂଜରେ ମତେ ଫେରିଲେଇ ମିଶେଇବାକୁ ହେଉଥାଏ ରଙ୍ଗ ଆଉ "ଲକ୍ଷ୍ୟ" କରିବାକୁ ହେଉଥାଏ "ଓସ୍ତାଦ" ଚିତ୍ରକରଙ୍କ କାମ । ପ୍ରଥମେ ପ୍ରଥମେ ଭାରି ଆଗ୍ରହରେ ଲକ୍ଷ୍ୟ କରୁଥିଲି ମୁଁ—ପରେ କିନ୍ତୁ ଖୁବ୍ ଶୀଘ୍ର ଜାଣିପାରିଲି - ସେମାନଙ୍କ ଭିତରୁ ଅଧିକାଂଶଙ୍କୁ ଭଲ ଲାଗୁ ନ ଥାଏ ଟୁକୁଡ଼ା ଟୁକୁଡ଼ା କାମ । ଅସହ୍ୟ ବିରକ୍ତିରେ, ଉଦ୍ବେଗରେ ସଢ଼ୁଥାନ୍ତି, ଯନ୍ତ୍ରଣା ପାଉଥାନ୍ତି ସେମାନେ ।

କାମ ତ ଅଳ୍ପ, ସମୟଗୁଡ଼ାକ କଟାଉଥାଏ ଚିତ୍ରକରମାନଙ୍କୁ ଜାହାଜୀ ଜୀବନ କଥା ଶୁଣାଇ ନଇଲେ ବା ବହିରୁ ଗଳ୍ପ ଶୁଣେଇ । ଲକ୍ଷ୍ୟ କରିପାରି ନ ଥାଏ ମୁଁ ଅଜାଣତରେ ମୋର କାରଖାନାରେ ଅଧିକାର କରି ସାରିଥାଏ ଗୋଟାଏ ବିଶେଷ ଆସନ ପାଠକର ଆଉ କଥକର ।

ଖୁବ୍ ଶୀଘ୍ର ବୁଝିପାରିଲି ସେହି ଲୋକଗୁଡ଼ାକଙ୍କ ମଧ୍ୟରୁ ଜଣେ ହେଲେ କେହି ଜାଣି ନ ଥାଏ କି ଦେଖି ନ ଥାଏ, ଯେତକ ମୁଁ ଜାଣିଥାଏ, ଦେଖିଥାଏ, ସେତକ ଅନ୍ତତଃ । ହେଉ ହେଉ ନ ହେଉଣୁ ଅତି ପିଲାଦିନରୁ ଅଧିକାଂଶ ସେମାନେ ନିଜ ନିଜର ଧନ୍ଦାର ଛୋଟ ଅତି ସଂକୀର୍ଣ୍ଣ ପଞ୍ଜୁରିରେ ଆସି ବନ୍ଦୀ ହୋଇଥାନ୍ତି ଆଉ ସେହି ସମୟରୁ ଆବଦ୍ଧ ହୋଇ ରହିଥାନ୍ତି ସେହିଥିରେ । କାରଖାନାର ସମସ୍ତଙ୍କ ଭିତରେ ଏକା ଝିଖାରେଭ କେବଳ ଏକା ଯାଇଥାଏ ମସ୍କୋକୁ ଆଉ ସବୁବେଳେ ସେ ମନରେ ଗଭୀର ପ୍ରଭାବ ପକାଇଲାଭଳି ଗମ୍ଭୀରିଆ ଫଣଫଣିଆ ମୁହଁରେ ଘୋରତେଇ ହୋଇ ଗାଇ ହେଉଥାଏ ସେ କଥାଟା ।

ଲୁହରେ ବୁଝି ହେବ ନାହିଁ ଧରି ହେବ ନାହିଁ ସତେ ମସ୍କୋକୁ ! ସେଠି ଆଖିଗୁଡ଼ାକ ମେଲା ରଖିବାକୁ ହେବ ତମର ।'

ଅନ୍ୟମାନଙ୍କ ଭିତରୁ 'ଶୁସ୍ତା' କି ଭ୍ଲାଦିମିର ଟପି ଯାଇ ନ ଥାନ୍ତି କୁଆଡ଼େ, କାଜାନ୍ ନାଆଁ ପଡ଼ିଲେ 'କେତେବେଳେ' ପଚାରି ହେଉଥାନ୍ତି—

"ସେଠି କ'ଣ ରୁଷୀୟ ଅଛନ୍ତି ବହୁତ ? ଆଉ ଗୀର୍ଜାମାନ ଅଛି ତ ?"

ତାଙ୍କ ଆଗରେ 'ପର୍ମ'ଟା ସାଇବେରିଆ କେବେହେଲେ ବିଶ୍ୱାସ କରିପାରୁ ନ ଥାନ୍ତି—ଉରାଲକୁ ଟପିଲେ ଯାଇ ସାଇବେରିଆ ।

ସେମାନେ କଣ ଉରାଲ ପର୍ବତ ଆଉ ଷ୍ଟର୍ଜନ ମାଛ ଆଣନ୍ତି ନାହିଁ ସେଠୁ— କ୍ୟାସ୍ପିଆନ ସାଗରରୁ ? ଏହାର ମାନେ କଣ ? ମାନେ ଉରାଲ ନିଶ୍ଚୟ ସମୁଦ୍ର କୂଳରେ ।

ବେଳେବେଳେ ଭାବୁଥାଏ ମୁଁ — ସେମାନେ ଯେତେବେଳେ କହୁଥାନ୍ତି ସମୁଦ୍ର ଆର ପାରିରେ ଇଂଲଣ୍ଡ ଆଉ ବୋନାପାର୍ଟ ଜନ୍ମିଥିଲେ 'କାଲୁଗା' ସାମନ୍ତ ବଂଶରେ ।

କେତେକ କହୁଛନ୍ତି, ଟାପରି କରୁଛନ୍ତି ମତେ । ପୁଣି ଯେତେବେଳେ କହୁଥାଏ ମୁଁ ସ୍ୱଚକ୍ଷୁରେ ଦେଖିଛି ସବୁ—କ୍ୱଚିତ୍ ବିଶ୍ୱାସ କରୁଥାନ୍ତି ସେମାନେ ମୋ କଥାକୁ, କିନ୍ତୁ ଶୁଣିବାକୁ ଭଲ ପାଉଥାନ୍ତି ପ୍ରେମ-ଟାଙ୍କର କାହାଣୀ ଅଥବା ଜଟିଳ ଘଟଣା-ବିନ୍ୟାସର ଗପସବୁ, ଏମିତିକି ବୟସ୍କମାନେ ବୁଢ଼ା ବୁଢ଼ୀ ଯେତେକ ସତଠୁ ବଳି ପସନ୍ଦ କରୁଥିଲେ । ଏସୁ ଆଗ୍ରହ ଦେଖାଉଥିଲେ ମିଛ ଗାଲ୍‌ଗଲ୍ପକୁ ଦେଖିପାରୁଥିଲି ବେଶ୍ ଯେତେ ଟଣାଓଟରି ଦୂରଦୂରାନ୍ତ କଳ୍ପନା ଅଣା ଥିଲା, ଯେତେ ଅଧିକ ଅବିଶ୍ୱାସ ଥିଲା ଘଟଣାସବୁ ସେତେ ମନଯୋଗ ଦେଇ ଶୁଣୁଥିଲେ ସେମାନେ । ସାଧାରଣ ବାସ୍ତବତା ପ୍ରତି ଆଗ୍ରହ ନ ଥିଲା ସେମାନଙ୍କର । ସେ କି ଅଭାବେ, ସେ କି କାମନାରେ ଗୃହୁଥିଲେ ଭବିଷ୍ୟତକୁ, ବର୍ତ୍ତମାନର ସମସ୍ତ କୁତ୍ସିତତା, ସମସ୍ତ ଦାରିଦ୍ର୍ୟର ଚିହ୍ନବର୍ଣ୍ଣ ମୂଳପୋଛି କରି ନେବା ଲାଗି ସେ କି ଆକୁଳତାରେ ସତେ ।

ଏହା ହିଁ ବେଶି ବିସ୍ମୟରେ ବୁଡ଼ାଇ ଦେଉଥିଲା ମତେ, କାହିଁକି ନା ସେତେବେଳକୁ ସ୍ପଷ୍ଟବୋଧ ଶକ୍ତିଟା ଉଦ୍ରେକ ହୋଇସାରିଥିଲା ମୋର ସତ ଅଥବା ମିଛ ମଧ୍ୟରେ ପରସ୍ପର ବିରୋଧିତା ଦେଖି । ହେଇ ମୋ ସାମ୍ନାରେ ବଢ଼ୁଥିଲା ମୁଁ ଦେହମାଂସର ପ୍ରକୃତ ବାସ୍ତବ ଯେଉଁମାନେ ଜଣେ ଭଲ କାହିଁକି ହୋଇଥାନ୍ତା ମଣିଷ ଭଳି ।

ନା ସ୍ୱର ନୁହନ୍ତି—କୋଇଲି ହଷ୍ଟାଳ ସ୍ୱୀକୋଭସବୁ ନୁହନ୍ତି—ଆଲେକଜାଣ୍ଡର ଶିଙ୍ଖାରେଭ କି ନାଟାଲ୍ୟା ଭଳି ପାଇଟିଅଣୀ ଲେକକ ନୁହନ୍ତି ।

ଡାଉଡ଼ଉର ଟ୍ରଙ୍କରେ ଥାଏ କେତୋଟି ସଙ୍କଳନ ଗୋଲ୍‌ଡସିନ୍‌ଙ୍କର, ଆଇଭାନ୍ ଭଝିଗୀନ୍ ବୁଲଗାରନଙ୍କର ଅଥବା ବ୍ୟାରନ୍ ବ୍ରାମବ୍ୟୁସଙ୍କର ଅଥବା ଏମିତି ବହୁ ସବୁ ଛିଣ୍ଡାମିଣ୍ଡା ଧୋତରା । ଏ ସବୁ ପଢ଼ି ଶୁଣାଇଥାଏ ମୁଁ ଚାକରାରମାନଙ୍କୁ କି ଆନନ୍ଦ ସେମାନଙ୍କର—ଏମିତି ପୁଣି ଉପଭୋଗ କରୁଥାନ୍ତି ସେମାନେ !

"ବହୁ ପଢ଼ା ବହୁ ଶୁଣା—ଓଲେଇ ସଫା କରିଦେଏ କଳଙ୍କିତ ବୋଲି କୋଳାହଳ ଭୁଗ୍ଣ ପାଟିରୁଣ୍ଡକୁ—ଏଇଟି ଖାର ବଢ଼ିଆ କଥା — ମହାମତ୍ତ ଦେଲା ଲିଭେଇନାକ୍ ଥରେ ।

ବହୁ ଖୋଜାଖୋଜି ଯୋଗାଡ଼ଯୋଗାଡ଼ ଆରମ୍ଭ କରିଦେଲି ମୁଁ ଯାହା ଯେଉଁଠି ପାଇଲି ଆଣି ପଢ଼ି ଶୁଣେଇଲି ଲୋକଗୁଡ଼ିକୁ । ସ ହେଇ ସବୁଗୁଡ଼ିକ ବାସ୍ତବିକ ପାସୋର ଯିବ ନାହିଁ ମନରୁ—ଏତେ ସ୍ମରଣୀୟ ସେଗୁଡ଼ିକ । କାରଖାନାଟି ଅନ୍ତିଛନ୍ନ ହୋଇଯାଉଥିଲା ଏହା ଫଳରେ । ମଧ୍ୟରାତିର ନୀରବତାରେ ଏଣ୍ଡି, ତାରିପୁତ୍ରାଏ ଜିଷ୍ଟ ମଥା ଉପରେ ଆମର ଝୁଲୁଥିଲା କାଚ-ବଲ୍ ଲଣ୍ଠାନ୍ତ) । ସେଗୁଡ଼ିକର କ୍ଷୀଣ ରଶ୍ମିରେ ଆଲୋକିତ ହେଉଥିଲା ଟେବୁଲ ଉପରେ ନଇଁ ପଡ଼ୁଥାଏ ଯେଉଁ ଚନ୍ଦା ଚନ୍ଦା ପୁଣି କୁଞ୍ଚୁକୁଞ୍ଚୁଆ ମେଞ୍ଚି ମେଞ୍ଚି ବାଳର ମୁଣ୍ଡଗୁଡ଼ିକ ।

ଦେଖୁଥାଏ ମୋ ସାମନାରେ କେତେ ଶାନ୍ତ, କେତେ ଭାବଗମ୍ଭୀର ମୁହଁସବୁ—ବେଳେବେଳେ କଏ ଜଣେ ବାହବା ବାହବା—ସାବାସ୍ ସାବାସ୍ କରୁଥାଏ ଲେଖକଙ୍କୁ, ନଇଲେ ବା ଗଳ୍ପର ନାୟକ ନାୟିକାଙ୍କୁ, ଏହି ଖାରୁ ଖାରୁ ଏତେ ମନୋଯୋଗୀ ଲୋକଗୁଡ଼ିକର ଚିନ୍ତାଏ ହେଲେ ସାମଞ୍ଜସ୍ୟ ଥାଆନ୍ତା ! ଦିନବେଳର ସେମାନଙ୍କର ନିଜ ନିଜ ସହିତ, ସେଭଳି ମୁହୂର୍ତ୍ତରେ ମୋ ହୃଦୟ ପୂରି ଉଠୁଥିଲା ସେମାନଙ୍କପ୍ରତି ଶ୍ରଦ୍ଧାରେ ଅନୁରାଗରେ । ଲାଗୁଥିଲା ସେମାନେ ଯେମିତି ଅନୁଭବ କରୁଥିଲେ ମୋ ଆଡ଼କୁ ଟାଣିହୋଇ ଆସୁଥିଲେ, ସତେ ଯେମିତି ମନେ କରୁଥିଲି ମୁଁ—ପ୍ରକୃତ ସ୍ଥାନଟି ମୋର ମିଳିଯାଇଥାଏ ମୋତେ ।

"ଏହି ବହିଗୁଡ଼ିକ ପାଖରେ, ଏହିଗୁଡ଼ିକ ସାଥୀରେ ସତେ ଯେମିତି ବସନ୍ତକାଳ ଆସିଥାଏ । ତମେ ଝରକାଗୁଡ଼ିକୁ ଖୋଲିଦିଅ ପ୍ରଥମଥର ପାଇଁ ପାଉଛିଟି ଆଣ ମଳୟ ସଜ ପବନକୁ—ଦିନେ ଟିପଣୀଟିଏ ଦେଲି ସୀତାନାଭ ମୋହାନ୍ତିଙ୍କ ମନରେ ।

କେଉଁଠି କେଉଁ ଲାଇବ୍ରେରିର ସଭ୍ୟ ହେବା କାହାରି ମୁଣ୍ଡକୁ ଆସି ନ ଥାଏ ଆମର । ଏଣୁ ଲାଇବ୍ରେରିକୁ ନ ଯିବା ହେତୁରୁ ବହି ପାଇବା କାଠିଗର ପାଠ ହେଉଥାଏ ମୋ ପାଇଁ । ଭିକାରୀ ଭଳି ମୁଁ ଖାଲି ଯାହାକୁ ଇଚ୍ଛା ତାହାକୁ ମାଗି ମାଗି ବୁଲୁଥାଏ ବହି । ଦିନେ 'ଲରମନ୍ତଭ'ଙ୍କର ଖଣ୍ଡେ ବହି ମତେ ଦେଲେ 'ନୂଆଁ ଝଙ୍କଳ' ଦଳର ମୁଖିଆ । ଏହି ବହି ଖଣ୍ଡିକ ମତେ ଦେଖେଇଦେଲା ଅତି ଉଜ୍ଜଳ-ପ୍ରାଞ୍ଜଳଭାବରେ କାବ୍ୟ କବିତାର ଶକ୍ତି କଣ ଆଉ ମନୁଷ୍ୟ ମନରେ କି ବିପୁଳ କି ପ୍ରବଳ ପ୍ରଭାବ ତାର ।

ମନେପଡ଼ୁଛି 'ଦି ଡେମନ' ନାମକ ବହିଟିକୁ ପଢିବାକୁ ମୁଁ ଆରମ୍ଭ କରିଥାଏ କି ନାହିଁ ସୀତାନାଭ ଆଖି ବୁଲେଇନେଲା ବହିଟି ଉପରେ । ତା ପରେ ଚାହିଁଲା ମୋ ମୁହଁକୁ ତଣ୍ଟିନଳୀଟାକୁ ଯୋଡ଼ି ଦେଇ ଲମ୍ବା ଲମ୍ବା ହାତ ଦୁଇଟାକୁ ଭିଡ଼ି କରିଦେଲା ନିଜର ଦୁ' ଆଣ୍ଠୁ ସନ୍ଧରେ । ଆଗକୁ ପଛକୁ ଝୁଲିବାକୁ ଲାଗିଲା । ଚୌକିଟା କେଁ କେଁ କରୁଥାଏ ପଛେ କିନ୍ତୁ ସେ କି ହସର ରେଖାଟିଏ ଉଙ୍କୁଟି ଉଠୁଥାଏ ସେତେବେଳେ ।

"ଚୁପ୍, ଚୁନି ହୁଅ ଭାଇସବୁ" ଲରଓନକ୍ କହି ଉଠିଲା ଥରକେନା । ତା କାମକୁ ଆଡ଼େଇ ଦେଇ ସୀତାନାଭଙ୍କ ଟେବୁଲ ପାଖରେ ବହି ପଢୁଥିଲି ମୁଁ, ସେଠିକି ଚାଲିଆସି ଖୁସ୍‌କନା । ସେ କି ତୀବ୍ର ବେଦନାମୟ ଉଲ୍ଲାସରେ ପୂରି ଉଠିଲା

ମୋର—କବିତାରେ ରୁଦ୍ଧ ହୋଇ ଆସିଲା ସ୍ୱର ମୋର, ଆଗେଇ ପାରିଲି ନାହିଁ ଆଉ, ଏମିତି ଲୁହରେ ଚଳଚ୍ଛଳ ହୋଇଉଠିଲା ଆଖି ଦିଶି ବି ଦିଶିଲା ନାହିଁ ଧାଡ଼ିଗୁଡ଼ିକ । କିନ୍ତୁ ଆହୁରି ବେଶି ଆନନ୍ଦରେ ବାହୁଳ ହୋଇଗଲି ମୁଁ ଘରଟିରେ ଯେଉଁ ଚୁନି ଚୁନି ଚପାଚପା ସତର୍କତାରେ ସନ୍ତର୍ପଣରେ ଚାଲିଲା

ଗଢ଼ବାଧିଗୁଡ଼ିକ, ବା ଯେତେ ଯାହା ଥିଲା ମୋ ଗୃହପଟେ—ଘନ ଘନ ନିଃଶ୍ୱାସ ଗ୍ରୁଡ଼ି ଫୁଲି ଫୁଲି ଉଠିଲା ସତେ ଯେମିତି—ଯେତେବେଳେ ଶକ୍ତିଶାଳୀ ଚୁମ୍ବକଟାଏ ବା ଟାଣି ଆଣିଲା ସେମାନଙ୍କୁ ମୋ ପାଖକୁ । ପ୍ରଥମ ଖଣ୍ଡ ପଢ଼ିସାରିଥାଏ କି ନାହିଁ ଦେଖିଲି ଚିତ୍ରକାରଯାକ ସମସ୍ତେ ପ୍ରାୟ ମୁହାମୁଡ଼େଇ ଲଦି ହୋଇ ପଡ଼ିଛନ୍ତି ଟେବୁଲ ଉପରେ, ହସ ହସ ଫାଶୁ ଫାଶୁ ମୁହଁ,—ବେକଗୁଡ଼ିକୁ ଭିଡ଼ି ଯାକ ଧରିଛନ୍ତି ବାହୁଗୁଡ଼ିକରେ ।

"ପଢ଼ରେ ପଢ଼-ପଢ଼ିଯା", ମୁଣ୍ଡଟିକୁ ମୋର ଧରି ମାଡ଼ିଦେଇ ବହିରେ କହି ଉଠିଲା ଝିଙ୍କାରେଭ ।

ସମୁଦାୟ ବହିଟି ପଢ଼ି ସାରିଲାକ୍ଷଣି, ଝାମ୍ପି ନେଲା ସୀତାନେଭ୍ ବହିଟି ମୋ ହାତରୁ । ତା ଶିରୋନାମା (ନାଆଁ ଟା) ପଢ଼ି କହି କହିକା ଜାକିନେଲା କାଖରେ ।

"ଆଉଥରେ ପଢ଼ିବାକୁ ହେବ ତତେ !—ବୁଝିଲୁ, କାଲି, ବହିଟାକୁ ଯତ୍ନରେ ରଖିବା ଭାର ମୋ ଉପରେ ।"

ଚାଲିଗଲା ସେଠୁ, ତା ଟେବୁଲ ଡ୍ରଅରେ ରଖି ବହିଟିକୁ ଚାବି ପକେଇ-ଦେଲା । ଅନେଇଥାଏ ମୁଁ—ବସିପଡ଼ିଲା କାମରେ । ଗୋଟାଏ ନିସ୍ତବ୍ଧତା ଘୋଟିଗଲା କାରଖାନାରେ । ଚୁପ୍‌ଚାପ୍ ଶାନ୍ତଭାବରେ ଯିଏ ଯାହାର ଆସନ ଧଇଲେ । ସୀତାନଭ ଝିଙ୍କା ପାଖକୁ ଆଗେଇ ଯାଇ ନିଶ୍ଚଳଭାବେ ଛିଡ଼ାହୋଇ ରହିଲା ମୁଣ୍ଡଟିକୁ ଚାପିଦେଇ କାଚ ପାନିଆରେ । ଆଉ ଝିଙ୍କାରେଭ୍ ଠିକ୍ ସେତିକିବେଳେ ଆଉ ଥରେ ଥୋଇ ଦେଇ ତୁଳୀଟାକୁ କହି ଉଠିଲା କଠୋରଭାବରେ ।

"ଏହି ହେଉଛି ବଂଚିବା—ଏହାକୁ କହେ ମୁଁ ଜୀବନ । ଭଗବାନଙ୍କ ଦାସସବୁ—ହିଁ—ଏହିଆ ଏହିଆ, ପ୍ରକୃତରେ ।"

କାନ୍ଧଟାକୁ ଜାକିନେଲା ନଚେଇ ଟିକିଏ ନୁଆଁଇ ଦେଲା ମୁଣ୍ଡଟିକୁ, କହି ଚାଲିଲା—

"ମୁଁ ବି ଚିତ୍ର କରି ପାରିଥାନ୍ତି 'ରାକ୍ଷସଟାଏ ।' କଳା କଟିକଟି ବାଳବାଳୁଆ ଦେହ, ନିଆଁ ରଙ୍ଗର ଡେଣା, ଲାଲ୍ ସୀସାର ବା-ହାତଗୋଡ, ମୁହଁ—ଫିକା ଫିକା ନେଳି, ଜହ୍ନ ରାତିରେ ବରଫପରି ।

ରାତି ଭୋଜନବେଳ ହେବା ଯାଏ ରାତିଭୋଜନରେ ବସିବା ଯାଏ ଟୁଲ ଉପରେ ଅପ୍ରତ୍ୟାଶିତ ଭାବରେ ଅଥୟ ହୋଇ ଉଡ଼ମୋଡ଼ ହେବାକୁ ଲାଗିଲା—ଆଙ୍ଗୁଠିରେ ଆଙ୍ଗୁଠି ଫୁଟ୍‌କ୍ରମରେ ବାଜା ବଜେଇ ବଜେଇ ଥରି ଥରି, କେହି ଧରି ନ ପାରିଲାଭଳି ଅସ୍ପଷ୍ଟ ସ୍ୱରରେ ଭୁଟୁରୁ ଭୁଟୁରୁ ହେଲା ରାକ୍ଷସଟା ସମ୍ପର୍କରେ । ଆଦି ନାରୀ ଇଭ୍—ଆଉ ନାରୀ ଜାତି ଆଉ ସ୍ୱର୍ଗବୈକୁଣ୍ଠ ସମ୍ପର୍କରେ—ପୁଣି ସାଧୁସନ୍ଥ, ଋଷି-ମହର୍ଷିମାନେ କେମିତି ପାପ କରିଛନ୍ତି ସେହି ବିଷୟରେ !

ସତ, ସବୁ ସତ ! ଜୋର ସହିତ କହିହେଲ—ସାଧୁସନ୍ଥମାନେ ଯଦି ପାପିଙ୍କ-ଗୁଡ଼ାକଙ୍କ ସଙ୍ଗରେ ମିଶି ପାପ କାମ କରନ୍ତି, ରାକ୍ଷସଟାଏ ଅସୁରଟାଏ ବା କାହିଁକି ପବିତ୍ର ଆତ୍ମାକୁ ଲେଭେଇ ଭଳେଇ ଝଟ କରିବ ନାହିଁ ଯେ—

କେହି କିଛି ଉତ୍ତର ଦେଉ ନ ଥାନ୍ତି ତାକୁ ମୋଭଳି ବୋଧହୁଏ କାହାର ଇଚ୍ଛା ହେଉ ନ ଥାଏ ପାଟି ଖୋଲିବାକୁ । ଅମଙ୍ଗ ଅମଙ୍ଗ ହୋଇ କାମ କରୁଥାନ୍ତି ସମସ୍ତେ, ପ୍ରତ୍ୟେକଙ୍କର ଗୋଟାଏ ଗୋଟାଏ ଆଖି ଥାଏ କାନ୍ଥଘଣ୍ଟା ଉପରେ । ନ'ଟା ବାଜିବା ମାତ୍ରେ ଠକ୍‌କିନା ହାତ ବନ୍ଦ କରିଦେଲେ ସମସ୍ତେ ।

ସୀତାକାନ୍ତ ଆଉ ଝିଖାରେଭ୍ ବାହାରିଗଲେ ପଦାକୁ ଅଗଣାକୁ—ମୁଁ ଯାଇ ମିଶିଲି ସେମାନଙ୍କ ସାଥିରେ । ତାରାଗୁଡ଼ିକୁ ଅନେଇ ନେଇ ସେଠି ସୀତାକାନ୍ତ ଗାଇଲା :

ଲକ୍ଷ୍ୟହୀନଭାବେ ବୁଲେ
ବୁଲେ ମରୁଯାତ୍ରୀ ଦଳ (ବୁଲେ କାରାଭାନ୍)
ନୀହାରିକାମୟ ଯେତେ ଅସ୍ପଷ୍ଟ କୁହେଳିମୟ
ମହାକାଶ ପରେ
ବୁଲେ ଅବିରତେ ।

"ଭାବିଲ ଦେଖି, ଏମିତିଗୁଡ଼ାଏ ଶବ୍ଦ ଏମିତି ଗୁଡ଼ାଏ କଥା ପାଇବା ?

"ଶବ୍ଦ ଫବ୍ଦ ମୋର କିଛି ମନେ ନାହିଁ, ନା, ମନେ ନାହିଁ ।" ଲୁଣ୍ଠି ଭଳି ଗଲା ଯାଉ୍ଥାଏ ହେମାଲଟା ଦେହରେ ଥରି ଥରି ଟିପ୍‌ପଣୀ ଦେଲା ଝିଖାରେଭ୍— "ନା ମୋର ମନେ ନାହିଁ କିଛି, କିନ୍ତୁ ଦେଖି ପାରୁଛି, ସବୁ ଦେଖି ପାରୁଛି ମୁଁ । ଅଦ୍ଭୁତ କଥା—ମାନବଟାଏ କହିବ ତମକୁ ସଇତାନ ପ୍ରତି ଦୟା ଦେଖାଇବା ପାଇଁ— ଆରେ, ତମେ ତ ଦୟା ଆଖିରେ ଦେଖ ତାକୁ, ସଇତାନ୍‌କୁ ଦେଖ, ନା ନାହିଁ ?"

"ହଁ ଦେଖ ତମେ ।" ଏକମତ ହେଲା ସୀତାକାନ୍ତ ।

ବୁଝି ଏଥିରୁ, ମଣିଷଟି ହେବାର ମର୍ମ କଣ ? ପାଟିକରି ଉଠିଲା ଝିଖାରେଭ ଏମିତି—ପୁଣି ଯାହାକୁ ଭୁଲି ହୁଅନ୍ତା ନାହିଁ କେବେହେଲେ ।

ବାଟଘରକୁ ଫେରି ଆସିଲା ମାତ୍ରେ ମତେ ସାବଧାନ କରିଦେଲା ସେ ।

"ବନ୍ଦ କରିସୁରେ କାରଖାନାରେ କାହାକୁ କିଛି କହିବୁ ନାହିଁଟି ମ୍ୟାକ୍‌ସିମ୍‌ଚ୍ ! ନିଶ୍ଚୟ ଗୋଟାଏ ବେଆଇନ୍, ନିଷିଦ୍ଧ ବହି ହୋଇଥିବ !"

ଆନନ୍ଦରେ ହୃଦୟଟା ଉଚ୍ଛୁଳି ପଡ଼ିଲା ମୋର । ଏହିଭଳି କହି କଥା ତା' ହେଲେ ପଚାରୁଥିଲି ମତେ ପାଦ୍ରୀଟା, 'ପାପ ସ୍ୱୀକାର' (କନ୍‌ଫେଶନ) ସମୟରେ ।

ରାତଭୋଜନଟା ଚାଲିଲା ଉଦାସ ଅବସନ୍ନ ଭାବରେ—କୁଆଡ଼େ ଗଲା ସାଧାରଣିଆ ଜନ୍ମଦିନିଆ ପାର୍ଟିଭୁଣ୍ଡ—ଘୋଷା--ଗପସପ- ସତେ ଯେ ପ୍ରକାଣ୍ଡ ଗୋଟାଏ ବଜ୍ରସ୍ତମ୍ଭକର ଘଟଣାଟାଏ କ'ଣ ଘଟିଯାଇଥାଏ, ସମସ୍ତେ ଚିନ୍ତାରେ ଘାରି ହେଉଥାନ୍ତି ସେଥିରେ, ଭାବି ହେଉଥାନ୍ତି ସେ କଥା ! ରାତଭୋଜନ ପରେ ଯିଏ ଯାହା ବାଟ ଧରିଲା ପରେ ବାଛଣାରୁ ଝିଂଖାରେଭ୍ କାଢ଼ିଲି ବହିଖଣ୍ଡିକ—ଡାକିଲା ମତେ—

"ହୋଇ ନେ, ପଢ଼ ଆଉ ଥରେ ! ଧୀରେ ଧୀରେ, ତରବର ନାହିଁ କିଛି !"

କେତେଜଣ ଚୁପ୍‌ଚାପ୍ ଉଠିଆସିଲେ ବାଛଣାରୁ ସବୁ ଟେବୁଲ ପାଖକୁ । ପୋଷାକପତ୍ର ନ ଥାଏ ଦେହରେ—ଚକାପକାଇ ବସି ପଡ଼ିଲେ ଅନଉ ଅନଉ ।

ଆଉ ଥରେ ବହିଟିକୁ ପଢ଼ି ସାରିଲା ପରେ ମୁଁ ଝିଂଖାରେଭ୍ ଆଙ୍ଗୁଠିରେ ଟପ୍ ଟପ୍ କଲି ଟେବୁଲଟାକୁ ଏବଂ କହିଲି—

"ଏଇ ଯେ ବଣ୍ଡବାଟା— ଏଇ ଯେ ଅସୁର—ଅସୁର ରାକ୍ଷସ ! କେମିତି ଯେ ଏମିତି ଘଟଣାଟା ଘଟିଲା ତୋ ଭାଗ୍ୟରେ, ଭାଇ !"

ସୀତାନୋଭ୍ ଆସି ଓହଳି ପଡ଼ିଲା ମୋ କାନ୍ଧ ଉପରେ । କେତୋଟି ଧାଡ଼ି ପଢ଼ିବା ପାଇଁ, ଯେଉଁ କେତୋଟି ଧାଡ଼ି ପଢ଼ିଲି ମାନେ ପୁଲକ ଉଠି ମନ୍ତବ୍ୟଟା ଦେଲା ହସିହସିକା :

"ମୋ ଟିପାଖାତାରେ । ବୁଝିଲୁ ଉତ୍ତର ନେବ ସବୁ ..."

ଝିଂଖାରେଭ୍ ଉଠି ପଡ଼ି ବହିଟି ନେଇ ଚାଲିଲା ତା ଟେବୁଲ ପାଖକୁ । ହଠାତ୍ କିନ୍ତୁ ଅଟକିଯାଇ କ୍ଷୁବ୍ଧ ଆହତ ବିଚଳିତ ସ୍ୱରରେ କହିଲା—

ଆଖି ନ ଫିଟିଥିବା କୁକୁର ଛୁଆଙ୍କ ଭଳି ବଞ୍ଚିଚୁ ଆମେ କାହିଁକି ? କେଉଁଥି ପାଇଁ ? ଜାଣୁନା, କେହି ଜାଣୁନା – ଅଲେଡ଼ାସବୁ ଅଦରକାରୀ ଭଗବାନଙ୍କ ପାଖରେ, ଆଉ ରାକ୍ଷସ ତମ ପାଖରେ । ତମେ ଆମକୁ କହୁଛ ଭଗବାନଙ୍କ କିଙ୍କର, ନାଇଁ ? ଯବ୍ (job) ବି ଥିଲା କିଙ୍କର, ଦାସ । କିନ୍ତୁ ଭଗବାନ ସିଧ ସଳଖ କଥାବାର୍ତ୍ତା ହେଉଥିଲେ ତା ସାଥିରେ ଆଉ ମଜେସଙ୍କ ସାଥିରେ ବି । କିନ୍ତୁ ଆମେ ସବୁ କିଏ—କାହାର ଆମେ ?"

ବହିଟାକୁ ପୁଣି ତାଲାବନ୍ଦ କରି ରଖିଦେଲେ ତ୍ରଅରେ—ପୋଷାକପତ୍ର ପିନ୍ଧିଲା ସୀତାନଭକୁ ଡାକି ଡାକି—

' କରେ ଆସୁଛୁ କି, ଆସୁଛୁ ତ ଖଟିକି ?"

"ମୁଁ ଯାଉଛି, ଭେଟିବି ତାକୁ—ମୋଟା ଝିଅଟିକୁ-ପ୍ରିୟାକୁ", ଶାନ୍ତଭାବରେ ଉତ୍ତରଦେଲା ସୀତାନଭ ।

ସେମାନେ ଗ୍ଲକଗଲେ—ଲମ୍ବ ହୋଇ ଗଡ଼ପଡ଼ଲି ମୁଁ ଚଟାଣରେ, ଦ୍ୱାର ମୁହଁରେ ପ୍ୟାଭେଲ୍ ଓଡ଼ନ୍‌ତ୍ସଭ ପାଖରେ—ଶୁଣିଲି କଚ୍ଛ ସମୟ ଯାଏ ମୁଁ ଛଟପଟ ହେଉଛୁ ଗଡ଼ୁଛୁ ଏପଟ ସେପଟ, ଥିଲି ଥିଲି ହଠାତ୍ ଥର ଥର କାନ୍ଦ ଉଠିଲି ।

"କରେ କ'ଣ ରେ, କଥା କ'ଣ ?"

"ଏତେ କଷ୍ଟ ହେଉଛୁ, ଦୁଃଖ ଆସୁଛୁ ସେମାନଙ୍କ ପାଇଁ," କହିଲି ସେ । "ସ୍ତ୍ରବର୍ଷ ହେଲ ପ୍ରାୟ ରହିଲଣି ମୁଁ ସେମାନଙ୍କ ସଙ୍ଗରେ । ଗୋଟି ଗୋଟି କର ଜାଣେ ମୁଁ ସେମାନଙ୍କୁ ।"

ମୋ ମନଟା ବ ଭର ରହୁଥାଏ ଅନୁକମ୍ପାରେ କାରୁଣ୍ୟରେ ସେମାନଙ୍କ ପାଇଁ । ଅନେକ ବେଳ ଯାଏ ଚେଇଁରହିଲୁ—ନିଦ ହେଉ ନ ଥାଏ ଆଦୌ । ଭୁନ ଭୁନ ଫୁସ୍‌ଫୁସ୍ ସ୍ୱରରେ ଆଲୋଚନା କଲୁ ସବୁ—ମନେ ପକାଇ ସେମାନଙ୍କଠି ପ୍ରତ୍ୟେକଠି କେମିତ ଦସା ବାନ୍ଧିଥାଏ ମଧୁର ପ୍ରକୃତ, ଭଲ ଭଦ୍ରତା—ନିର୍ମଳ ସାଧୁତା, ଉଦାରତା, ସ୍ନେହ ଆଉ ସହାନୁଭୂତ—ଆଉ ଆଲୋଚନା—ଆଲୋଚନାରେ ଆବିଷ୍କାର କଲୁ ଏମିତ କେତେଗୁଡ଼ାଏ ଭଲଗୁଣ ସେମାନଙ୍କର, ଯେଉଁଥିରେ ଆମର ଶିଶୁସୁଲଭ ପ୍ରାଣରେ କାରୁଣ୍ୟ, ସେମାନଙ୍କ ପାଇଁ ଗଭୀରରୁ ଗଭୀର ହୋଇଉଠିଲି—

ଆମେ ଦୁହେଁ—ପ୍ୟାଭେଲ୍ ଓଡ଼ନ୍‌ତ୍ସର ଓ ମୁଁ ଘନିଷ୍ଠ ବନ୍ଧୁ ହୋଇ ଉଠିଲି ପରେ ଅବଶ୍ୟ ସେ ପହିଲି ନମ୍ବର 'ମାଲିକ' ପାଲଟିଗଲି ; କିନ୍ତୁ ବେଶିଦନ ତା କାମରେ କାମ୍ରକାମରେ ଲାଗିଲି ନାହିଁ । ତାକୁ ତରଶ ବର୍ଷ ହେଲବେଳକୁ ପୂରା ଦସ୍ତୁର 'ଜଣାଶୁଣା' ମାତାଲ ହୋଇଗଲି । କିଛୁଦନ ପରେ ତାକୁ ହାବୁଡ଼ ଯାଇଥିଲି ମସ୍କୋରେ ଖିତ୍ରୋଭ ମାର୍କେଟ୍‌ରେ—ସେତେବେଳକୁ ଅଘୋରୀ ବାରବୁଲି ସେ—ତା ପରେ ବେଶି ଡେରର ନୁହେଁ, ଶୁଣିଥିଲି 'ଟାଇଫସ' ରୋଗରେ କାଳ ହୋଇଯାଇଥିଲି ତାର ! କେଡ଼େ ଦାରୁଣ ଦୁଃଖର କେଡ଼େ ହୃଦ୍‌କମ୍ପନକାରୀ ସତେ ସବୁ ଲେ । ମନେପଡ଼ଯାଏ ଯେତେବେଳେ କେତେ ଚମକ୍ରାର ଲୋକଗୁଡ଼ାକ ଅକାରଣରେ କୌଣସି ହେଲେ ଭଲ ଉଦ୍ଦେଶ୍ୟରେ ନୁହେଁ—ଧ୍ୱଂସ ପାଇଥିଲେ ମୋ ଜୀବନ କାଳରେ । ଯୁଆଡ଼େ ଗୁହିଁବ ସେତେବେଳେ କେଉଁଠି ବା ଶୁଖି ଶୁଖି କଙ୍କାଳସାର ହୋଇ ଝଡ଼ି ପଡ଼ୁଥିଲେ-ଟଳି ପଡ଼ୁଥିଲେ ଲୋକଗୁଡ଼ାକ—ହଁ ସ୍ୱାଭାବିକ ଥିଲି ବା ସେଇଟା, କିନ୍ତୁ ଏବେ ଶୀଘ୍ର ଏମିତ ଅଜ୍ଞାନରେ ଅକାରଣରେ ଅଜ କେଉଁଠି କଏ ଶୁଖି ଶୁଖି ଝଡ଼ି ପଡ଼ୁ ନ ଥିଲେ ପଡ଼ୁଥିଲେ ଯେମିତ ରୁଷରେ ।

ସେତେବେଳେ ପ୍ୟାଭେଲ୍ ଥିଲି ଗୋଲଗାଲ୍ ମୁହଁର ଟୋକାଟିଏ । ମୋଠୁ ଦୁ' ବର୍ଷ ଖଣ୍ଡେ ବଡ଼ । ସେ ଯେ ଖାଲି ଗ୍ଲକ ଚତୁର, ସଚ୍ଚୋଟ ଥିଲି, ନୁହେଁ, ଥିଲି କାରୁକଳା କାର୍ଯ୍ୟରେ ଧୁରନ୍ଧର, ପ୍ରତଭାବାନ୍ । କେଡ଼େ କୁଶଳତାରେ ଆଙ୍କି ଦେଉଥିଲି ଜୀବଜନ୍ତୁ କେତେ—ବିରାଡ଼ି, କୁକୁର, ଚଢ଼େଇ,

ଆଉ କ ଅଙ୍କିଲଥା ମନୋରମ ଢଙ୍ଗରେ କରୁଥିଲ (କାର୍ଟୁନ୍) ବ୍ୟଙ୍ଗଚିତ୍ର ସବୁ ଚିତ୍ରକାରଗୁଡ଼ିକଙ୍କର ସଞ୍ଜବେଳେ ତାଙ୍କୁ ଦେଖାଉଥିଲା ସରଳଗା ଜେଣାଲଟା ଜୀବ, ପକ୍ଷୀଗୁଡ଼ିଏ ! ମୀତାନଭକୁ ଆଙ୍କି ଦେଉଥିଲ ବଡ଼ କାଠକୁକୁଡ଼ା ପରି ଛୁଙ୍କା ହୋଇଛୁ ଗୋଟିଏ ଗୋଡ଼ରେ । ହିଂଗାଦେଉ ଗୋଟାଏ ହଂସଟାଏ ଟାଆଁଶିଆ ଦନ୍ତଡ଼ା ପାନଆରେ କୁଣ୍ଡାଇ ଦେଉଥାଏ ଚନ୍ଦା ମୁଣ୍ଡକୁ ତା'ର । ଅଉ ଦେଗୀଟା ଡାଉଡ଼ଭ ଗୋଟାଏ ଷ୍ଟପଣ୍ଣ ଅସହାୟ କଜଲପାଞ୍ଚ କ ପାତଣ୍ଟଆ ! ସବୁଠୁଁ ବଢ଼ିଆ କାର୍ଟୁନ ଆଙ୍କିଥାଏ ଗୋଗୋଲେଭର । ଓସ୍ତାଦ ବୃଦ୍ଧ ଶିକାରୀ ଗୋଗୋଲେଭ—ତାକୁ କରିଥାଏ ବାଦୁଡ଼ିଟାଏ, ତାର ଲମ୍ବା ଲମ୍ବା କାନ, ଅଦ୍ଭୁତ ଗୋଟାଏ ଅସୁରିଆ ନାକ କିନ୍ତୁ ଅତି ଛୋଟ ଛୋଟ ପାଦ, ସେଥିରେ ପୁଣି ପ୍ରତ୍ୟେକଟିରେ ଛଅଟିଅଟା ବାଘନଖ ଭଳି ନଖ ଅଛି ପଞ୍ଝା । ପ୍ୟାଭେଲର ଗୋଲଗାଲ ଗାଲ ଭବଗମ୍ଭୀର ମୁହଁଟାରୁ ବାହାରି ପଡ଼ି ଚମକ ସୃଷ୍ଟି ଦେଉଥାଏ ଧଳା ଧଳା ବୃଦ୍ଧ ଦୁଇଟି, ଅଖି ଡୋଳା ଦୁଇଟି ମସୁର ଦାନାପରି ଗୋଟା ଗୋଟା ଠିଆ ଠିଆ ଏତକ ଚେହେର ଥାଏ ଦେଉଥାଏ ଗୋଟାଏ ସବୁବେଳେ ଜଗତଆରିଆ କିନ୍ତୁ ଯେମିତ ବନ୍ୟାପିଆ ଭାବ ।

କାର୍ଟୁନ୍‌ଗୁଡ଼ିକ ଦେଖି ଚିତ୍ରକାରମାନେ ଚିଡ଼ୁଯାଉ ନ ଥାନ୍ତି, ତାଙ୍କୁ ସେଗୁଡ଼ିକ ଅପମାନିତ ଲାଗୁ ନ ଥାଏ । କିନ୍ତୁ ପ୍ରତ୍ୟେକେ ସେମାନେ ନାକ ଟେକୁଥାନ୍ତି ଗୋଗୋଲେଭର ବ୍ୟଙ୍ଗଚିତ୍ରଟି ଦେଖିଲାକ୍ଷଣି । ଘୃଣାରେ ମୁହଁ ବୁଲାଇ ନେଉଥାନ୍ତି । ଗମ୍ଭୀର ଆନ୍ତରିକତାର ସହିତ କହୁଥାନ୍ତି ବ୍ୟଙ୍ଗଚିତ୍ରକାର (ପ୍ୟାଭେଲ)କୁ

"ବୁଝିଲୁ, ଟେଲ୍ଗର ଫିଙ୍ଗି ଦେ ସ୍ଟାକୁ, ଭଲ ହେବ—ନଇଲେ ବୁଢ଼ା ଆଖିରେ ପଡ଼ିବ ଯଦି ଅଠାଠିକ୍ କରିଦେବ ତୋ ଅବସ୍ଥା ।"

ବୁଢ଼ାଟା ଥାଏ ପ୍ରକୃତରେ ମେଲେରୁ ଗନ୍ଧଆ । ସବୁବେଳେ ମାତାଲ ଅତି ଚକଟା, ନକୁଟିଆ, ନେହେଟ୍ଟିଆ ପ୍ରକୃତର ଧର୍ମପୁରୁଷ ପୁଣି ଗୋଟାକଯାକ ଏକାବେଳକେ ଅଡ୍ଡୁଡ଼ ଅକ୍ଳାନ୍ତ ଭାବରେ ଚେଉଁସ୍ଥାନ ଅପଣ୍ଡ୍, ଦୋକାନ ସହକାରୀର ସେବାରେ, ସବୁବେଳେ କାନରେ ଫୋଡ଼ୁଥାଏ ତାର ସବୁକଥା—ଟିଂ ମଞ୍ଚ କହୁଥାଏ—ଦୋକାନ ସହକାରୀଟାକୁ ମାଲିକାଣୀ ଡାକିଆକୁ ବାହାକରି ଦେବାକୁ ଗୁହୁଁଥାଏ ବୋଲି ସେ—ସେହେତୁର ଧରିକୁ ସବ ମଣି ବସ୍ତିବୁଥାଏ ସମ୍ପ୍ରଦାୟ ପ୍ରତିଷ୍ଠାନର ବ୍ୟବସାୟୀର କାରଖାନାର ଅଛି ସବୁ ଲୋକଙ୍କ ଉପରେ ମାଲିକ ! କଏ ଯେ ତାକୁ ଡରୁ ନ ଥାଏ । ତା ଗ୍ରାଇ ପଡ଼ିଲେ ନାକ ଟେକୁ ନ ଥାଏ, ନୁହେଁ—ସେଇଥିପାଇଁ ସମସ୍ତେ ଡରୁଥାନ୍ତି ଗୋଗୋଲେଭକୁ ବି ।

ସେଇ ମାଇପିପଣା, ମାଇପଙ୍କ ପଛରେ ଗୋଡ଼ାଣିଆ ଗୋଗୋଲେଭକୁ ଲାଗିପଡ଼ି ହାଲପଟା କରୁଥାଏ ପ୍ୟାଭେଲ—ସତେ ଯେମିତି ପ୍ୟାଭେଲର ଲକ୍ଷ୍ୟ ଥାଏ,

ମତଲବ୍ ଥାଏ ତାକୁ, ସେଇ ଗୋଗୋଲେଭଙ୍କୁ ମୁହୂର୍ତ୍ତେ ସୁଦ୍ଧା ବସେଇ ଉଠେଇ ଦେବ ନାହିଁ, ନିଶ୍ୱାସ ମାରିବାକୁ ଫୁରୁସତ୍ ଦେବ ନାହିଁ । ଏ କାମରେ ତାର ମତେ ପାଇଥାଏ ସେ ତାର ଯୋଗ୍ୟ କାରପଟଦାର ସାର୍ଗିରିଅ ଭାବରେ ଆଉ ସମସ୍ତଙ୍କର ଗ୍ରହଚଳଣ ଦୃଷ୍ଟି ଫୁର୍ତ୍ତି ବ ଅନ୍ୟ ଅଙ୍କୁ ଗଢ କରୁଥାଏ ଆମର ଚକାନ୍ତରେ, ଦେହମନକୁ କାଟିଲାଭଳି କେମିତକା ସ୍ଥୂଳ ଆଉ ରୂଢ଼ ଚେଷ୍ଟାରେ । ଛବକାରମାନେ କହୁଥାନ୍ତି କିନ୍ତୁ—

"ଦେଖିରଖି, ସାବଧାନରେ—ସାବଧାନରେ କର ଯାହା କରୁଛ, ରଃ, ଧଣବ ଯେ କାମୁଡ଼ା ଟାଏ ଦେବ—କୁଜମା ଜୋକ—ଗୋବର ପୋକଟା ।"

'କୁଜମା ଜୋକ' ତାକ ନାଆଁ ଥାଏ ଦୋକାନ ସହକାରୀଙ୍କ କାରଖାନାରେ ।

ଟିକିଏ ହେଲେ ଭଲ ଆମେ କାହିଁକି ଶୁଣୁଥାନ୍ତି ତାଙ୍କର ଏଇ ଓଆଳିଆ ବାଣୀକୁ । ଅନେକ ସମୟରେ ମାଇପି ଗୋଡ଼ାଣିଆଟା ଶୋଇଥାଏ ଯେତେବେଳେ ତା ମୁହଁରେ ବେ କଳଦେଇ ଆସୁଥାଏ ରଙ୍ଗ ଫୁଲାଏ ଫୁଲାଏ । ଥରେ ସେ ମାତାଲ ହୋଇ ଢୁଳାଉଥାଏ ତନ୍ଦ୍ରାରେ—ତା 'ଷ୍ଟଣ୍ଟ ଭଳି ନାକରେ ନେସିଦେଇ' ଆସିଲୁ ସୁନେଲ ରଙ୍ଗ । ଓଡ଼ଦନ କାଳ ନାକପୁଡ଼ା ଭିତରୁ ପୋଛୁପାଛୁ ଛଡ଼େଇ ପାରିଲା ନାହିଁ ସେଇ ରଙ୍ଗକୁ । କିନ୍ତୁ ଗୋଟିଏ କଥା ଯେତେବେଳେ ଆମେ ତା ସାଙ୍ଗରେ ଲାଗି ତାକୁ ରଗେଇ ଦେଉଥାଉ, ସେ ପାଗଳଙ୍କ ପରି ହୋଇ ଉଠୁଥାଏ ରାଗରେ, ସେତେବେଳେ ମୋର ମନେପଡ଼ ଯାଉଥାଏ ଜାହାଜ ଘଣ୍ଟଣାଗୁଡ଼ାକ । ଓ୍ୟାର୍ଡ଼କାର ସେଇ ଛୋଟିଆ ସୈନିକଟିକୁ । ଆଉ ମନ ମୋର ଅଶାନ୍ତ ହୋଇ ଉଠୁଥାଏ ସ୍ୱବେକଟା ଅଧୀର ହୋଇ ଉଠୁଥାଏ । ଏତେ ବୟସ ହୋଇଯାଇଥାଏ ଗୋଗେଲେଭର ତଥାପି ଆମେ ତାକୁ ପାରୁ ନ ଥାଉ । ଆମେ ତାର ସମକକ୍ଷ ହୋଇ ପାରୁ ନ ଥାଉ ଆଦୌ—ଅଧିକାଂଶ ସମୟରେ ଆମକୁ ଅଜାଣତରେ ଯେତେବେଳେ ସତର୍କ ନଥାଉ ଆମେ ଧର ପକାଉଥାଏ ଆଉ ଆଚ୍ଛାକରି ଛେଗ୍ରୁଟାଏ ଦେଉଥାଏ । ଆଉ ଆମକୁ ଛେଚଣାଟା ଦେଇଯାଇ ହାଜର ହୋଇଯାଥାଏ ମାଲିକାଣୀ ପାଖରେ—ତୁହାଏ ଅଭିଯୋଗ ଗାଉଥାଏ ଆମ ବିରୁଦ୍ଧରେ ।

ଏମିତ କେତେବେଳେ ନ ଥାଏ ଯେତେବେଳେ ମାତାଲ ହୋଇ ରହୁ ନ ଥାଏ ମାଲିକାଣୀ—ସବୁବେଳେ ଢୁଳୁ ଢୁଳୁ ଟୁଳୁ ଟୁଳୁ ହେଉଥାଏ, ଅଭ୍ୟାସରେ ପଡ଼ିଯାଇଥାଏ ତାର ସ୍ୱଭଟା । ଆଉ ସେଥିପାଇଁ ହସଖୁସିଆ ମିଜାଜର ଭଲ ମଧୁର ପ୍ରକୃତର ହୋଇ ରହୁଥାଏ ସେ । ସେ ଆମକୁ ଡରେଇ ଘଉଡ଼େଇବାକୁ ଚେଷ୍ଟା କରୁଥାଏ ଟେବୁଲ୍ ବାଡ଼େଇ ତାର ଫୁଲିଲା ଫୁଲିଲା ହାତରେ ହୁଡ଼ାଣିଆ ଢଙ୍ଗରେ, ଆମ ଉପରେ ପାଟି କର କର । ଥରେ କହିଲା ସେମିତ ପାଟିକରି ।

"ପୁଣି ବଦମାସି ବାହାରିଲାଣି, ପୁଣି ଚଗଲାମି, ଏ ବଦମାସ, ଛତର ବୁଢା ମଣିଷଟାଏ ସେ—ତାକୁ ମାନଥାନ ଦେଖାଇବା କଥା ତମର ! ତା କରିବ କଣ କିଏ, କିଏ ତା ମଦ ଗିଲାସରେ କାଳି ଭର୍ତ୍ତି କରିଛୁ କିଏ ?"

"ଆମେ !"

ଆଖି ମିଟିମିଟି କଲା ମାଲକାଣୀ ।

"ହେ ଭଗବାନ । ଏଗୁଡ଼ାକ ମାନିଯାଉଛନ୍ତି ପୁଣି ବକଟେ ବକଟେ ନାକୁ ବଦମାସଗୁଡ଼ାକ । ଏଁ କରେ କଣ ଜାଣ ନାହିଁ ଭକ୍ତି କରିବାକୁ ହେବ, ସମ୍ମାନ କରିବାକୁ ହେବ ବଡ଼ ବଡ଼ଙ୍କୁ !"

ଶୁଛ ଶୁ— କରି ଘଉଡ଼େଇ ଦେଲା ଆମକୁ । ଆଉ ଦୋକାନ ସହକାରୀ କାନରେ ପକେଇଦେଲା ଅଭିଯୋଗଟା ।

"ଏସବୁ କଣ ?" କଠୋର ସ୍ୱରରେ ଶୁଣେଇଲା ମତେ ଦୋକାନ ସହକାରୀ, "ତୁ ବନ୍ଧୁପତ୍ର ପଢୁ, ଏମିତି କି ବାଇବଲ ପଢୁ, ଆଉ ସବୁବେଳେ କେମିତି କିଛି ହେଲେ କିଛି କାରବାରରେ ଲାଗିଚୁ ? ଦେଖ୍ ଏଣିକି ସାବଧାନ ରହି !"

ଅତି ନିଃସଙ୍ଗ ପ୍ରାଣୀର ଥିଲା ମାଲକାଣୀ ବଡ଼ ବିଷର୍ଣ୍ଣ, ବଡ଼ କରୁଣ ଆତ୍ମାର । ବେଳେବେଳେ ବହୁତ ପିଇଦେଇ ଝରକା ପାଖରେ ଯାଇ ବସିପଡ଼ୁଥାଏ ଗାଉଥାଏ :—

କେହି ତ ବୁଝେ ନା ମୋ ହୃଦବେଦନା
କେହି ତ ଜାଣେ ନା ଯେତେ ମୋ ବିଷାଦ ମରମ ବ୍ୟଥା
କାହିଁ କା ଆଦର ସୋହାଗ ମୋ ପାଇଁ
କେହି କି ଡାକ ରେ ଢଳେ କରୁଣାରେ
ହୃଦ ଉଚ୍ଛ୍ୱାସିଆ ସେନେହ କଥା !

ସୁଉଁ ସୁଉଁ ହୋଇ, କଇଁ କଇଁ ହୋଇ କାନ୍ଦୁଥାଏ ସେ । ବସ୍ତୁସ ହେତୁରୁ ଭଙ୍ଗା ଭଙ୍ଗା ସ୍ଖଳିତ ସ୍ୱରରେ ଉଃ··· ଉଃ··· ଉଁ··· ଉଁ··· ଉଃ··· ।

ଦିନେ ଦେଖିଲି ଦୁଧ ଘଡ଼ାଏ ଧରି ଓହ୍ଲାଇବାକୁ ବାହାରିଚି ତଳକୁ ପାହାଚରେ, ହଠାତ୍ ତା'ର ଆଣ୍ଠୁ ଦିଟା ବଙ୍କେଇ ଗଲା । ଖଜିପଡ଼ିଲା ସେ ଗୋଟାକଯାକ, ନାଥୁ ନାଥୁ ହୋଇ ଝସି ଝସି ଗଡ଼ି ଗଡ଼ି ଗଲିଲା ପାହାଚକୁ ପାହାଚ, ମେଲି ହୋଇଚାଲେ ହାତ ଦିଟା କିନ୍ତୁ ଦୁଧ ଘଡ଼ିଟାରେ ଜାବ ଥାଏ ଠିକ୍ । ଦୁଧରେ ଓଦା ହୋଇ ଯାଉଥାଏ ପୋଷାକପଟା, ସେମିଜ୍ ବ୍ଲାଉସ୍ । ସେ ଝଟେଇ ବଗୁଲେଇ ହୋଇ ପାଟିକରି କହି ହେଉଥାଏ କିନ୍ତୁ—

"ଇସ୍ ! ଦେଖିରେ କ ବଦ୍‌ମାସ୍ ଚୋର—କେମିତ ଇନ୍ଦ୍ରି ହୋଇ ଯାଉଛ୍ରେ ରୁ ?"

ମୋଟ ନ ଥିଲି ସେ । କନ୍ତୁ କେମିତ ନରମା ନେସମା ମାଉଁସିଆ ଫୁଲିଲା ଫୁଲିଲି ଦେହର ବୁଢ଼ୀବଲେଇ ପରି ଯାହାର ମୁଷା ଧରିବାଟା ସରିଯାଇଥିଲା ବହୁତ ଦନରୁ, ରହିଯାଇଥିଲା ବା ଅଟାତର ଗଟଣାଟାଏ ହୋଇ ।

ପିଏ ଖାଇପିଇ ଅଟିଲା ଶୋଇ ଶୋଇ ଘୁମୁରୁ ଘୁମୁରୁ ହେଉଥିଲା କେଜାଣି କେତେ ଭୋକ ମଉଷ୍ଟ୍ରକ ଶୀକାରର ଜସ୍ୱ ଭଜନ୍ୟର ମଧୁରିଆ ମଧୁରିଆ ସ୍ୱପ୍ନରେ ।

"ହୁଏ" ସୀତାନାଥ ଭଲା ହେଉଥାଏ ମନକୁ ମନ—ମୁହଁଟାକୁ ଫୁଲେଇ ଖାଉଁ ଖାଉଁ ହୋଇ ।" ଦନ ଥିଲା ଯେତେବେଳେ ଗୋଟାଏ ବଡ଼ ମସ୍ତବଡ଼ ବ୍ୟବସାୟ ଥିଲା ଏଇଟା—ଥିଲା ଗୋଟାଏ ଏଇଟା ଚମତ୍କାର କାରଖାନା ମାଲିକ ହୋଇ ବସିଥିଲା ଏସବୁରେ-ଗୁଲିକ୍ ଚରୁର ଲୋକଟାଏ । କନ୍ତୁ ଆଜ—କନ୍ତୁ ଏବେ - ସବୁ ଯାଇଛି—ସବୁ ସରିଚ—ନଷ୍ଟ ହୋଇଯାଇଛି ଯେତେ ଯାହା ଲାଭ ପୁରସ୍କାର କାମରେ ସବୁ ଅକାଳ ହୋଇ ପଡ଼ୁଛି । ଗୋବର ଯୋକ କୁଜ୍‌ମା କୋଲରେ । ଯେତେବେଳେ ସେ କ କାମ କରୁଥିଲୁ ଆମେ, କେମିତ ଖଟୁଥିଲୁ ! ଖଟୁଥିଲୁ ସବୁ ତାରି ପାଇଁ—ସେଇ ଲୋକଟା ପାଇଁ—ଜଣାପଡ଼ୁ ଯାଉଥିଲା ବାହୁରୁଥିଲା ଆମର ବଲବହପ । ଏଇ କଥା ଭାବିଦେଲେ—ମନେପଡ଼ିଗଲେ ଯେମିତ କଣ ଗୋଟାଏ ଛୁଡ଼ିଯାଇ କ ତନ୍ତୁ କ ଶିରା ତମ ଭିତରେ ଇଚ୍ଛା ହୁଏ ଖାଲି କାମଫାଶ ପକେଇ ଦେଇ ଚଢ଼ି ଯାଆନ୍ତୁ କ ଗ୍ରୁଟ ଉପରରୁ ଖିରା ଦନ ବସନ୍ତକାଳଟାଯାକ ଖାଲି ଏକ ଲକ୍ଷ୍ୟରେ ଅପଲକ ଆଖିରେ ଅନାଇ ରହନ୍ତୁ ଉପରକୁ ଆକାଶକୁ !"

ପ୍ୟାଭେଲ ଓ ଦନତ୍‌ସଭ ମନରେ ଫଟମିଗଲା ସୀତାନାଥ ଭାବନାର ରୋଗଗୁଡ଼ାକ ! ବଡ଼ ମଣିଷଙ୍କପରି ଫୁଲ ଫୁଲ ସିଗାରେଟ ଟାଣି ସେ ଆରମ୍ଭ କରିଦେଲା ଦର୍ଶନ ତତ୍ତ୍ୱମାନ, ଝାଡ଼ ଲଗିଲା ଦଅଁ ଦେବତା ଭଗବାନ ମଦପିଆ ମାତାଲମି, କାମିକା ଭମିକା କାରବାର ଆଉ ରୁଚ୍ଛା ଗୁଡ଼ାଏ ଗୁଡ଼ାଏ ଖଟିବା ପରିଶ୍ରମ କରିବାର ଅଲୀକତା ବ୍ୟର୍ଥତା ଉପରେ ଏଇ ଯେମିତ କେତେ ଲୋକ ଅଛନ୍ତି । ଖାଲି ଛଆର କରିବାରେ ଗଢ଼ିବାରେ ଲଗିଛନ୍ତି କେତେ କଣ ଆଉ ସେସବୁର ମୂଲ୍ୟ ନ ବୁଝି ତାକୁ ପସନ୍ଦ ନ କରି, ଗ୍ରହଣ ନ କରି ଭାଙ୍ଗିରୁଜ ଧ୍ୱଂସ କରିଛନ୍ତି ଅଉ ସମସ୍ତେ ଅଉ ଯେତେ ପିଏ ଯେଉଁଠି—

ଏମିତକ ମୁହୂର୍ତ୍ତରେ ଏଇ ଦର୍ଶନତତ୍ତ୍ୱ ଆଉଡ଼ାଇବା ସମୟରେ ତାର ଖାଖ ଗୁରୁଚକ୍‌କଣ ବୁଦ୍ଧିମନ୍ତ ମୁହଁଟା ପଶି ପଶି ଯାଉଥିଲା ଦଶୁଥିଲା ବୁଢ଼ାଳିଆ ଲୁଖୁ ଲୁଖୁଆ—ଅନେକ ସମୟରେ ଏଇ ଚନ୍ତା, ଏଇ ଭାବନା ଘାରୁଥିଲା ତାକୁ

ଯେତେବେଳେ ସେ ଆଣ୍ଠୁ ଦି'ଟାକୁ ଜାକି ଛନ୍ଦିଦେଇ ହାତରେ ବସି ରହୁଥିଲି ବିଛଣାରେ । ଆଖି ଦି'ଟା ଲଖି ରହୁଥିଲା ଝରକାର ନୀଳ ନୀଳ ଚଉକୋଣିଆ କାଚବାଟରେ ଯାଇ ଶୀତଦିନିଆ ଆକାଶର ତାରାଗୁଡ଼ିକୁ ଆଉ ବରଫର ଓଜନରେ ନଇଁ ନଇଁ ଯାଇଥିବା, ଓହଳି ପଡୁଥିବା କାରଖାନା-ଖୁଆଡ଼ର ଛାତକୁ ।

ଶ୍ରମିକମାନେ ଘୁଙ୍ଗୁଡ଼ି ମାରୁଥିଲେ ସେତେବେଳେ ଟୁପୁ ଟୁପୁ-ଭୁଟୁ ଭୁଟୁ ହେଉଥିଲେ ନିଦରେ । କିଏ ଜଣେ ଚମକିପଡ଼ି ଅଜଣା କେଉଁ ଭୟରେ କଣଗୁଡ଼ାଏ କହୁଥିଲା ଖନେଇ ଖନେଇ ଚିତ୍‌ଚିଡ଼ା ଶବ୍ଦରେ—ଆଉ ଯେତିକି ଜୀବନ ବାକି ଥିଲା ତାଭିତରୁ, ସେତକ ସେ ଖର୍ଚ୍ଚ କରି ଦେଉଥିଲା, ଉଡ଼ାଇ ଦେଉଥିଲା କାଶି କାଶି ଉପର ଖଟିଆରେ, ବଙ୍କ୍‌ରେ କଣରେ ଗୋଟାଏ ଖଟି ଉପରେ, ପୁଣି "ଭଗବାନଙ୍କ କିଙ୍କର" କାପେନ୍ ଦ୍ୟୁଝୀନ, ସୋଭେନ୍, ପର୍ଶିନ୍ ପାଖାପାଖି ଗଡୁଥିଲେ ନିଦ ଆଉ ମଦର ଶିକୁଳିରେ ବନ୍ଧାହୋଇ ସବୁ । ତଳେ କାନ୍ଥଗୁଡ଼ାକୁ ଲାଗି ଗୁନ୍ଧି ରହିଥିଲେ ଚାପଟଗୁଡ଼ାକ, ମୂର୍ତ୍ତିଗୁଡ଼ାକ—ମୁହଁ ହୀନ, ହାତହୀନ, ପାଦହୀନ—ଚଟାଣର ଫାଟରେ ଫାଟରେ ପଲୁ ଅଣ୍ଡା, ତେଲ ଆଉ ରଙ୍ଗଫଙ୍ଗର ମଇଳା ଫଇଲାରେ । ନାକ ଫାଟିପଡୁଥିଲା ଦୁର୍ଗନ୍ଧରେ—ନିଃଶ୍ୱାସ ମାରି ହେଉଥାନ୍ତା ବା କେମିତି !

"ଦେଖିଲେ ଏଗୁଡ଼ାଙ୍କୁ, ଦୟା ଆସୁଚି ମନରେ, କି ଦୁଃଖ !" ରୁନ ରୁନ ଫୁସ୍ ଫୁସ୍ ହେଉଥିଲା ପ୍ୟାଭେଲ୍ । "ହେ ଭଗବାନ !"

ମୁଁ ବି ବେଳକୁବେଳ ଦିନକୁ ଦିନ ବ୍ୟସ୍ତ ହୋଇ ଉଠୁଥିଲି । ଉତ୍ପୀଡ଼ିତ ହେଉଥିଲି ଏମିତି ଏଇ 'ଦୟା'ର ଭାବରେ । ଦିହିଁଙ୍କ ଦିହେଁ ଆମେ, ଯାହା କହୁଚି ଆଗରୁ, ଲକ୍ଷ୍ୟ କରିଥିଲୁ, ହୃଦୟଙ୍ଗମ କରିଥିଲୁ, ଅତି ସୁନ୍ଦର ଭଲ ମଣିଷଗୁଡ଼ାଏ ଥିଲେ ସେମାନେ—ସେଇ ଲୋକସବୁ, କିନ୍ତୁ କି ଜୀବନ ଥିଲା ସେମାନଙ୍କର, କି କଦର୍ଯ୍ୟ ହୀନଅବସ୍ଥାରେ ସେ ବିତାଉଥିଲେ ଜୀବନଟାକୁ, କେଉଁ ଦିଗରୁ ବା ସଙ୍ଗତ ଥିଲା ଯୋଗ୍ୟ ଥିଲା ସେ ଜୀବନ ସେମାନଙ୍କ ପାଇଁ—ଅତି ଅସହ୍ୟ ଭାବରେ ଅଚଳ-ମାନ୍ଦା ! ଯେତେବେଳେ 'ଲେଶ୍ନନ' ଗୀର୍ଜାର ଘଣ୍ଟା ବାଜି ଉଠୁଥିଲା ମଧୁର ଭାବରେ ଟୁଂଟାଂ ଟୁଂଟାଂ ସାଂଗୀତିକ ଲୟରେ, କିନ୍ତୁ ଅତି କରୁଣ ବିଷର୍ଣ୍ଣତାରେ, ନିର୍ମମ ନିଃସଙ୍ଗତାରେ—ତୁଷାର ଝଡ଼ ବହୁଥିଲା ଅବିରାମ । ଘରଦ୍ୱାର, ଗଛବୃଛ ଯେତେ ଯାହା ଧରିତ୍ରୀ ଉପରେ ପ୍ରତ୍ୟେକଟିକୁ ଥରାଇ ଥରାଇ—ସେ କି ବିକଳରେ ବିଳପୁଥିଲା କାଇଁ କାଇଁ ସାଇଁ ସାଇଁ ହୋଇ ! ସେ କି ତମସାମୟ, ବିଷାଦମୟ, ସେ କି ହାହାତଶା ଭାବ ସତେ ! ସୀସା କି ଦସ୍ତାର ଘଟାଟୋପ ଭଳି ମେଲହୋଇ ଢାଙ୍କି ଦେଉଥିଲା ସମୁଦାୟ କାରଖାନାକୁ ଅଣନିଃଶ୍ୱାସୀ କରି ଶ୍ରମିକଗୁଡ଼ିକଙ୍କୁ, ଚାପି ରୁନ୍ଧି ନିଃଶେଷ କରିଦେଇ ସେମାନଙ୍କର ଟିକିଏ ଟିକିଏ ଜୀବନକୁ, ଅଡ଼େଇ ନେଇ ଠେଲିନେଇ ସେମାନଙ୍କୁ ମଦଖଟି ଭିତରକୁ ନଇଲେ ବା ମାଇକିନିଆଙ୍କର, ବାରବନିତାଙ୍କର ବାହୁ-ବନ୍ଧନକୁ—ଯିଏ ଠିକ୍ ଭୋଦ୍‌କା ପରି ସାହା ଭରସା ହେଉଥିଲେ ସେମାନଙ୍କର, ଭୁଲିଯିବା ପାଇଁ ପାସୋରିଦେବା ପାଇଁ ସବୁ—ସବୁ !

ଏଭଳି ସନ୍ଧଗୁଡ଼ିକରେ, ଏଭଳି ରାତିଗୁଡ଼ିକରେ ପଡ଼ିପାରୁ ନ ଥିଲୁ ଧାଡ଼ିଏ । ପ୍ୟାଭେଲ୍ ଆଉ ମୁଁ ଧରୁଥିଲୁ ଅନ୍ୟ ବାଟ, ଅନ୍ୟ ଉପାୟ—ମୁହଁରେ ରଙ୍ଗ ଆଉ ବୋଇଲ୍ କଳା ବୋଳି ହୋଇ, ଛଣପଟର ବାଲମୁହ ଲଗାଇ ନିଜେ ନିଜେ ରଚନା କରି ଫାଉଁଫାଉଁ ଆରମ୍ଭକରି ଦେଉଥିଲୁ ମିଳାମିଶା ସୁଆଙ୍ଗମାନ, ଖାରକ୍ଷର ସହିତ ଲଢ଼େଇ କରି ସେହି ଧମାଧୋଟ ହିତାଶା ଆଉ ବଞ୍ଚାଦ ବନ୍ଧୁଙ୍କରେ—ଜବରଦସ୍ତ ହସିବାକୁ ବାଧ୍ୟକରି ସେହି ଲୋକଗୁଡ଼ିକଙ୍କୁ । ମୋର ମନେଥାଏ, 'ସୈନକଟିଏ ଉଦ୍ଧାର କଲା ମହାନ୍ ପିଟରଙ୍କୁ କେମିତି' ଆଖ୍ୟାନଟି, ତାକୁଇ ମୁଁ ରୂପ ଦେଇଥାଏ ଗୀତିନାଟ୍ୟକରେ, ସଲାପ ଯୋଡ଼ିଦେଇ ସେଥିରେ—ସୁଆଙ୍ଗରେ ଅଭିନୟ କରିବା ପାଇଁ ସେତେବେଳେ ଆମେ ଚଢ଼ି ଯାଉଥାଉ ଡାଭିଡ଼ଭର ବନ୍ଧ ଉପରକୁ, ତେଇଠି ଅବଲମ୍ବ କରି ଅଭିନୟ କରୁଥାଉ, ଅକ୍ଳେଶରେ ଆନନ୍ଦରେ କାଲ୍ପନିକ "ସ୍ୱିଡ଼େସ" (ସ୍ୱିଡ଼େନ୍‌ର ଲୋକଙ୍କର) ଗୋଟାକୁ ଗୋଟା ମୁଣ୍ଡ କାଟ କରି କରି ! ଆଉ ସେ କି ହୋ ହୋ ହସରେ (ତାକୁ ଦେଖି) ଗଡ଼ି ଯାଉଥାନ୍ତି ଏକକ ଉପରେ ଆରେକ ଉଲ୍ଲାସରେ !!

ଚରିତ୍ରକାରଗୁଡ଼ିକ କିନ୍ତୁ ବିଶେଷ ଭାବରେ ଉପଭୋଗ କରୁଥାନ୍ତି ଚୀନା ସଇତାନ ଚସିଙ୍ଗ୍ ୟୁଓଙ୍ଗ୍ ଉପାଖ୍ୟାନର ସୁଆଙ୍ଗଟା—ଧାରିକା (ପ୍ୟାଭେଲ୍) ଅଭିନୟ କରୁଥାଏ ଅଭାଗା ସଇତାନର ଭୂମିକାରେ—ସେଇ ସଇତାନ୍‌ଟା ଯିଏ ସବୁବେଳେ ମନେ ମନେ ପାଞ୍ଚୁଥାଏ, ହୃଦୟରେ ପୋଷଣ କରିଥାଏ, ଦୁନିଆରେ ସମସ୍ତଙ୍କର ମଙ୍ଗଳ କରିବ ବୋଲି, ମଙ୍ଗଳକର 'ଧାରଣା'ଗୁଡ଼ିକ—ଆଉ ମୁଁ ଅଭିନୟ କରୁଥାଏ ଆଉ ସବୁ ଭୂମିକାରେ, କି ନାରୀ କି ପୁରୁଷ, କି ମଠର ଜିନିଷପତ୍ର ଉପକରଣ କି ଧର୍ମାତ୍ମାପୁରୁଷ ପ୍ରତ୍ୟେକ ଭୂମିକାରେ ରୂପରେ, ଏମିତିକି ମଙ୍ଗଳ କରିବା ପାଇଁ ବାହାରି ବାରମ୍ବାର ଅସଫଳ ହୋଇ ବ୍ୟର୍ଥ ହୋଇ ଚୀନା ସଇତାନ ହତୋତ୍ସାହରେ ପାଗଳଙ୍କ ପରି ହା ହୁତାଶରେ ବସୁଥାଏ ଯେଉଁ ପଥରଖଣ୍ଡ ଉପରେ, ସେହି ପଥର ଖଣ୍ଡ ରୂପରେ, ସେ ପଥର ଭୂମିକାରେ—

ଦେଖଣାହାରୀଏ ହସୁଥାନ୍ତି, ଗଡ଼ୁଥାନ୍ତି ଆନନ୍ଦରେ, କିନ୍ତୁ ସେ କି ଯନ୍ତ୍ରଣାରେ, ବସ୍ତୁସ୍ଥର ସହିତ ଅବିଶ୍ୱାସ କରି ଅନୁଭବ କରୁଥାଏ ମୁଁ—ଆଃ, କେତେ ସହଜରେ, ସେଇ ସରଳପ୍ରାଣ ଲୋକଗୁଡ଼ିକ ଖୁସି ହୋଇ ଯାଉଥାନ୍ତି ସତେ !

"ହା-ହା-ରେ ରଙ୍ଗିଆ, ନବକିଆ ରହସିଆରେ ତମେ ଢଙ୍ଗ୍ ଢଙ୍ଗ୍ ନାଚବାଲା ପଦ୍ମିଙ୍କି ଦହେଁ ।" ସେମାନେ ହସି ହସି ପାଟିକରି କହୁଥାନ୍ତି ଆମକୁ ଲକ୍ଷ୍ୟକରି—

କିନ୍ତୁ ଆମେ ଯେତେ ଅଭିନୟ କରୁଥାଉ ସେତେ ଆମ ମନରେ ଜବରଦସ୍ତ ମାଡ଼ି ବସୁଥାଏ ଭାବନାଟା—ସେହି ଲୋକଙ୍କ ପ୍ରାଣରେ ଆନନ୍ଦ ଅପେକ୍ଷା ଦୁଃଖର ଗଭୀରତା ଯେ କେତେ ବେଶି, କେତେ ସହଜର !

ଆମର ହସ ଖେଲ, ନାଚ ତାମସା, ଆନନ୍ଦ ଉତ୍ସବ—ଯାହା କହ—ଶୁଭୁଥାଏ କେତେ ଦିନ କେତେ ସମସ୍ତ ବା ? ନା—ବଂଚୁ ନଥାଏ କହୁଦିନ—ଦୀର୍ଘ ଅବା ହୁଅନ୍ତା ବା କେମିତି ? ହସଖେଲର ମୂଲ୍ୟ ହସଖେଲରେ, ନାଚ ତାମସାର ମୂଲ୍ୟ ନାଚତାମସାରେ—ଏ ଭାବରେ ଆମେ ଦେଖୁଥାଉଁ—ଉପଭୋଗ କରୁଥାଉଁ ବା କେତେଜଣ ? ହସଖେଲ ନାଚ ତାମସାକୁ କଷ୍ଟେ ମଷ୍ଟେ ଚେଷ୍ଟା କରି ଟାଣି ଓଟାରି ଭିଡ଼ି ଆଣୁଥାଉ—ଭୂମିସ୍ଥ ପ୍ରାଣର ଦୁଃଖର ବେଦନାର ଅସୀମ ଯନ୍ତ୍ରଣା ଭଳି ବ୍ୟାଧିର ବିଷବିନାଶୀ ପ୍ରତିଷେଧକ ଭାବରେ, ଔଷଧ ଭାବରେ, କେଉଁଠି ବା କେତେବେଳେ କେଉଁ ଆନନ୍ଦରେ, କେଉଁ ନାଚ ତାମସାରେ ଆସ୍ଥା ଆସେ,ପ୍ରତ୍ୟୟ ଥାଏ ଯେଉଁଥିରେ ପ୍ରାଣ ନ ଥାଏ ନିଜସ୍ୱ ବୋଲି ତାର, ସେହି ହସଖେଲର ଆମୋଦପ୍ରମୋଦର ଯେଉଁଥିରେ ପୁଣି ଆଶା ପ୍ରେରଣା ଆଉ ଅଭିଳାଷ ନ ଥାଏ ବଞ୍ଚିବାର । ଯାହା ଦେଖା ଦେଉଥାଏ ଖାଲି ଆସୁଥାଏ ବିଷାଦମୟ ଦୁଃଖର ନିଃସଙ୍ଗତାର ଦିନଗୁଡ଼ିକୁ ହାଲୁକା କରିଦେବା ପାଇଁ ଟିକିଏ—ଖଣ୍ଡେ ଲାଗି ।

ଆଉ, ଅନେକ ସମୟରେ ଭୂମିସ୍ଥ ନାଚଖେଲ ଆମୋଦ ପ୍ରମୋଦ । ଏଣୁ ଅପ୍ରତ୍ୟାଶିତ ଭାବରେ ଅଲକ୍ଷ୍ୟରେ ମନ ଅଙ୍କୁଆଁ ଭିତରେ ପାଳଟି ଯାଉଥାଏ କରୁଣ-କରୁଣ ନାଟକରେ, ନୃତ୍ୟ ଗୀତ ଭିତରେ ଲାଗୁଥାଏ ନର୍ତ୍ତକ ଯେତେବେଳେ ନିଜର ସମସ୍ତ ବନ୍ଧନ ତୁଟାଇ ମୁକ୍ତ ଆସି ସେଥିରୁ ନିଜକୁ ଖୋଲି ମେଲେଇ ଦେଇ ଲୁଗା-କପଡ଼ା ଚିରିଲି ଭଳି ପୁଣି ଚିରିବାକୁ ବାହାରୁଥାଏ—ଅର୍ଥାତ୍ ପ୍ରକାଶ କରିବାକୁ ଚାହୁଁଥାଏ ପୂର୍ଣ୍ଣଭାବରେ, ସେତିକବେଳେ ଠିକ୍ ହଠାତ୍ ଖୁଣ୍ଟି ଉପାଡ଼ି, ଶିକୁଳି ଛିଡ଼ାଇ ଯେମିତି ଦାନ୍ତପାଟି ଦେଖାଇ ବାହାରି ଆସୁଥାଏ ତା' ଭିତରର ଜାନୋଆରଟା ନିଜକୁ ନେଇ ସେ କ୍ରୋଧରେ ଗର୍ଜିଗର୍ଜି, ବୋବାଳି ଗୁଡ଼ି ପିଟି ଦେଉଥାଏ ଯାହା ପାଉଥାଏ ସାମନାରେ, ଯାହାକୁ ହାବୁଡ଼ୁଥାଏ ଆଗରେ, ସେସବୁ ଦେହରେ ପିଟି ଦେଉଥାଏ ସେ କ ଜାନୋଆର ବେଦନାରେ, ଯନ୍ତ୍ରଣାରେ ବିକଳ ହୋଇ ଚୂରମାର କରି, ଛିନ୍ନଛିନ୍ନ କରି ସେସବୁକୁ ପୁଣି—

ସେହି ଟଣାଓଟରା, ଜବରଦସ୍ତି ହସ ଖେଲ ନାଚ ତାମସା, ଯାହା ଚେଇଁ ଉଠୁଥାଏ ବାହାର କେଞ୍ଚାକେଞ୍ଚିରେ, ପ୍ରେରଣାରେ—ଏମିତି ଦେହ ଚଢ଼େଇ ଦେଉଥାଏ ମୋର—ବିରକ୍ତ କରିଦେଉଥାଏ ମତେ—ଏତେଦୂର ପୁଣି, ଆତ୍ମବସ୍ତୁ ତରେ ଉନ୍ମତ୍ତତାରେ ଭାବଦେଇ ମନେପକାଇ ଅଭିନୟ କରୁଥାଏ ମୁଁ, ଯେତେବେଳେ ଯେଉଁ ମୁହୂର୍ତ୍ତରେ କଳ୍ପନାରେ ମୋର ଆସିଯାଉଥାଏ ଯାହା, ଅବାଧରେ, ମୁକ୍ତ ପ୍ରାଣରେ—ସ୍ୱତଃପ୍ରବୃତ୍ତ ଆନନ୍ଦଟିକ ଚେଇଁ ଉଠିବ ଆବେଗରେ ଯେପରି ସେହି ଲୋକଗୁଡ଼ିଙ୍କ ପ୍ରାଣରେ, ସେଥିପାଇଁ ସେ କ ହତାଶିଆ ଭିତର ପ୍ରବଳ ବାସନା ଜାଗି ଉଠୁଥାଏ ମନରେ ମୋର, ଆଉ ମୋର ଆସ୍ୱାସଗୁଡ଼ା ସେ ପୁରାପୁରି

ସଫଳ ହେଉ ନ ଥାଏ ନୁହେଁ, ଶବ୍ଦକାରମାନେ ପ୍ରଶଂସା କରୁଥାନ୍ତି ଶତମୁଖ ହୋଇ – ବିସ୍ମିତ ହୋଇଯାଉଥାନ୍ତି କ୍ଷଣକୁ କ୍ଷଣ, କିନ୍ତୁ ଯେଉଁ ବିଷାଦ ସେମାନଙ୍କର ଛୁଉଥାଏ ମୁଁ ଭିଙ୍ଗି ଫେଲେଇଦେଲି, ଉଡ଼େଇନେଲି ବୋଲି, ଦେଖୁଥାଏ ଯାଙ୍ଗେ ଯାଙ୍ଗେ ଗୋଟା ବାନ୍ଧ ଆସୁଥାଏ ପୁଣି ବହଲରୁ ବିହ୍ୱଳ ହୋଇ ଅ.ୀ ପରି ଧୂଳୁ ଭାରରେ ଗୁପି ଗୁପି ଦେଇ ସେମାନଙ୍କୁ !

ମୂଷାମୁହଁ, ମୂଷା ଚରିତ୍ରର ଲରେଓନାକ୍ ଆରକ୍ତନ କହୁଥାଏ ସେତେବେଳେ—

"କେଡ଼େ ବଗୁଲିଆ ଦୁଃଷ୍ଟ ଟୋକାଟା ରେ, ତୁ ! ଆଇସ ଦଅନ୍ତୁ ଭଗବାନ, ଆଇସ ଦେଇଥାନ୍ତୁ ତତେ !"

"ଓହୋ—କି ଉଶ୍ୱାପିଆ କେଡ଼େ ଶୀତଳିଆ ।" ଦୃଢ଼ କରୁଥାଏ ଲରେଓ-ନାକ୍‌ର କଥାକୁ ହିଁଖାରେଭ !

"ଯାଉନୁ କାହିଁକ ରେ, ପଶୁନୁ କାହିଁକ କେଉଁ ସର୍କସ କ ଥିଏଟରରେ ? ବଢ଼ିଆ, ରଙ୍ଗିଆ ଦୁଆସ୍ୱାଟାଏ, ନବକଳିଆ—ବିଦୂଷକଟାଏ ହେବୁ ତୁ !"

କାରଖାନାର ସମସ୍ତଙ୍କ ଭିତରୁ କାପେନ୍‌ଦ୍ୟଙ୍କୀନ ଓ ସୀତାନଭ କେବଳ ଯାହା ଯାଉଥାନ୍ତି ଥିଏଟର ଦେଖି—ତାହା ପୁଣି 'ଧୁନ୍ଦେଟାଇଡ଼୍' ଓ 'ଡ୍ରୋଭେଟାଇଡ଼' ଉତ୍ସବ ଦିନରେ । ବୁଢ଼ା ବୁଢ଼ା ଓସ୍ତାଦମାନେ ସେମାନଙ୍କୁ ସେଥିପାଇଁ ଘଥାର ଉପଦେଶ ଦେଉଥାନ୍ତି ଜୋର୍ଡ଼ାନକୁ ଯାଇ ବରଫ ଭିତରେ ଡୁବନ ଖାତରେ ପଶି ଡୁବନ ପକାଇ ପାପର ପ୍ରାୟଶ୍ଚିତ କରିବା ପାଇଁ ! ସୀତାନର ସବୁବେଳେ ପ୍ରାପ୍ତ କହୁଥାଏ ମତେ ।

"ଛାଡ଼ ଦେ ରେ ! ଛାଡ଼ ଏସବୁ—ଯା ଅଭିନେତା ହୁଅ ଯା ।"

ଆଉ ଶୁଣାଉଥାଏ ମତେ ହୃଦୟସ୍ପର୍ଶୀ ବିବରଣୀ ଅଭିନେତା ୟାକୋଭ-ଲେଭର ଦୁଃଖମୟ ଜୀବନର !

"ତୋତେ ବି ସେମିତ ଜୀବନ ବିତେଇବାକୁ ପଡ଼ିପାରେ !"

ଗପୁଥାଏ ସେ ମ୍ୟାର ଷ୍ଟୁଆର୍ଟ ବିଷୟ । ତାକୁ ନାଆଁ ଦେଇ କହୁଥାଏ—ଚରିତ୍ରୀ ମାଇ କୋକଶିଲିଟାଏ--ଅତି ଖରାପ ମିସ୍ତ୍ରାପୀଟା । କିନ୍ତୁ ତାର ଉତ୍ସାହଟା ଫୁଟିପଡ଼ୁଥାଏ ବିଶେଷ ଭାବରେ, ' ଷ୍ଟେନ୍‌କାସ୍ଥ ସାମନ୍ତ ''ଙ୍କ କଥାରେ ।

"ମାକ୍‌ସିମିଚ୍ ଜାଣିଲୁ ନା—ସମସ୍ତଙ୍କ ଭିତରେ ସାମନ୍ତଟାଏ ଥିଲି ଡନ୍ ସିଜାରେ ଦ୍ୟ ବାଜାଁ । ପ୍ରକୃତରେ ନାହିଁ ନ ଥିବା ଲୋକଟାଏ—ଅସାଧାରଣିଆ !"

ତା' ଠି—ସୀତାନଭଟି ଥାଏ, ଷ୍ଟେନ୍‌କାସ୍ଥ ସାଅନ୍ତର କଛୁ—ଷ୍ଟେନ୍‌କାସ୍ଥ ସାଆନ୍ତର ଘୁଣରୁ । ଦିନେ ନାଆଁ ଜଲାଲ ଉଦ୍ଦନଜଣ ଗୋଟାଏ ବଡ଼ ଗୁଷୀ ମୁଷ୍ଟିକ୍ ଧରି

ପିନ୍ଧୁଥାନ୍ତି ଛକଟା ଉପରେ—ଜଗୁଆଳି ଘର ସାମନାରେ । ଗୁଳିଏ ଜଣ ଖଣ୍ଡେ ଲୋକ ରୁଣ୍ଡ ହୋଇ ଚିହ୍ନାଇ ଲଗିଥାନ୍ତି, ଉଧାଉଥାନ୍ତି, ମଡାଉଥାନ୍ତି ସେମାନଙ୍କୁ । କେଉଁଠି ଥିଲା, ଧାଇଁଗଲା ସୀତାନାଥ—ଲମ୍ବା ହାତରେ ତାର ବଧା ଗୁପ୍ତି କଷି ଠେଲି ଘଉଡ଼େଇ ସେମାନଙ୍କୁ ଟେକିନେଲା ମୁଁଟିଟିକଟାକୁ ଲୋକ ପଲଙ୍କ ଭିତରକୁ, ଠେଲି ନେଇ ପାଟିକରି ଉଠିଲା—

"ନଅ, ନଅ ନେଇଯା ରେ ସ୍ୱାକୁ ।" ଆଉ ନଜେ ସେ ରହିଲା, ଏକୁଟିଆ ଲଢ଼ିବା ପାଇଁ ସେମାନଙ୍କ ସଙ୍ଗରେ—ଜଣେ ସିଏ ଚାରିଜଣଙ୍କ ସାଙ୍ଗରେ ।

ନାଆଁ ଘରଟା ଥିଲା ସେଠୁ ବାର ପାହୁଣ୍ଡ ଦୂରରେ—ନାଆଁ ଜଲାଲମାନେ ଗୁହିଁଥିଲେ ଅକ୍ଳେଶରେ ଡାକ ପକେଇ ପାରିଥାନ୍ତେ ସାହାଯ୍ୟ ପାଇଁ । ପାଇଥାନ୍ତେ ବ । ଆଉ ସୀତାନାଥଙ୍କୁ ଦେଇଥାନ୍ତେ 'ଶିକ୍ଷାଟା'ଏ । ସ୍ୱେପା ଛଡ଼େଇ ଦେଇଥାନ୍ତେ ତା ଦେହରୁ । କିନ୍ତୁ ତା ଭାଗ୍ୟ ଗୁଟିପିଟି ହୋଇ ଦୌଡ଼ିଲେ, ପଳେଇଲେ ସେମାନେ ସେଠୁ ।

"କୁତ୍ତା ଛୁଆଗୁଡ଼ାକ । ଅଣ୍ଡିରପୁଅଏ ।" ସୀତାନାଥ ଡାକ ଛାଡ଼ିଲେ ସେମାନଙ୍କ ପଛେ ପଛେ !

ରବିବାର ଦିନ ଟୋକାଟୋକାଏ ସବୁ ବାହାରି ପଡ଼ୁଥାନ୍ତି କାଠଗୋଲା ଅଗଣାକୁ । ପିଟର ଆଉ ପଲ କବରଖାନା ଟପି ଦୂରକୁ ଚିକିଏ ଯାଉଥାନ୍ତି ସେମାନେ, ସେଠିକୁ ସଫେଇ ଦଳ (ସାନଫେର ବ୍ରିଗେଡ଼)ର ଆଉ ଆଖପାଖ ଗାଆଁର ଗୁଣ୍ଡା-ମାନଙ୍କ ସାଙ୍ଗରେ ମୁଷ୍ଟିଯୁଦ୍ଧରେ ମାତିବା ପାଇଁ । ସଫେଇ ଦଳ ଛଡ଼ା କରୁଥାନ୍ତି ମୋରେଡ଼ୋଭିଆର ଗୋଟାଏ ରାକ୍ଷସ ଭଳି ଲୋକକୁ । ତା' ମୁଣ୍ଡଟି ଥାଏ ପିନ୍ଧିକଣ୍ଠାର ମୁଣ୍ଡଟି ପରି ସବୁ ଆଉ ଗ୍ରେଟ ଆଖିରେ କଣ ରୋଗ । ତା ଦଳର ସମର୍ଥକଙ୍କ ଆଗରେ ଛିଡ଼ାହୋଇ ଯାଉଥାଏ ସେ । ଗୋଡ଼ ଦୁଇଟାକୁ ଫରକଟା କରି, ଭଲ ମଧୁରିଆ ଢଙ୍ଗରେ ଡାକୁଥାଏ ସେ ସହଜ ଲୋକଗୁଡ଼ାକୁ, ସେଇ ଟୋକାମାନଙ୍କୁ—ମଇଳା କାମିଜ ଅସ୍ତିନରେ ନେତ୍ତରୁ ପାଣି ନଗିଡ଼ ପଡ଼ୁଥିବା ଆଖିକୁ ପୋଛୁ ପୋଛୁ ।

"ଆସିବ ଯଦ ଆସ, ବାହାରିପଡ଼, ମତେ ଥଣ୍ଡା ଧରିବା ଆଗରୁ ବାହାରି-ପଡ଼ !"

ଆମ ପଟରୁ କାପେନ୍‌ଦ୍ୟୁଖୀନ ଲଢୁଥାଏ ତା ସଙ୍ଗରେ । କିନ୍ତୁ ମୋରେ-ଡାଭିଆ ଲୋକଟା ସବୁଥର ହଟେଇ ଦେଉଥାଏ ତାକୁ । ନେଉଥାଏ କଟା ପଟଟା ।

'ମୋର କ ମୂଲ୍ୟରେ ଯଦ ସାବାଡ଼୍ କରି ନ ପାରେ, ଗଡ଼େଇ ଡଡ଼େଇ ହଟେଇ ନ ଦିଏ ତମକୁ । ହୁଙ୍କାରୁଥାଏ କାପେନ୍‌ଦ୍ୟୁଖୀନ୍ । ଧଇଁସଇଁ ହୋଇ ଲହୁ ଲୁହାଣ ହୋଇ ।

ସତକୁ ସତ ଶେଷରେ ଏହା ହିଁ ଲକ୍ଷ୍ୟ ହୋଇଉଠିଲା ତା' ଜୀବନରେ । ଆରମ୍ଭ କରିଦେଲା ସେଥିପାଇଁ କଠୋର ସାଧନା ତାଲିମ୍ ହେଲା ମାଲକୁସ୍ତି ଲଢ଼େଇରେ— ଛାଡ଼ିଛୁଡ଼ି ଦେଲା ମଦ ପିଆପେଇ ଚଳିଲା ଖାଲି ମୋଟ ଉପରେ ମାଂସ ଖାଇ ଆଉ ପ୍ରତ୍ୟେକ ରାତିରେ ଶୋଇବାକୁ ଯିବା ପୂର୍ବରୁ ବରଫ ବୋଳି ହୋଇ ଦେହରେ ଘଷିହେଲା ସେଥିରେ । ମାଂସପେଶୀଗୁଡ଼ାକୁ ବଳୁଆ ଟାଣୁଆ କରି ବଢ଼ାଇବା ପାଇଁ ଟେକି ଲାଗିଲା ଦ' ଦ' ମହଣିଆ ଓଜନର ଲୁହା । ଛକି କାଟିଲା ତାକୁ ଟେକି ଛାତି ପାଖରେ ଦୁଇ ହାତକୁ ଆଡ଼ ବାଗରେ ଏପାଖ ସେପାଖ କରି ଛନ୍ଦ ଦେଇ ଦେଇ । କିଛୁଦିନ ପରେ ପୁଣି ଦସ୍ତାନାରେ ସିଲେଇ କରି ଖଞ୍ଜିଲା ସୀସା ଖଣ୍ଡଟିମାନ । ସୀତାନାଥ ଆଗରେ ଛାତି ଫୁଲେଇ ବଢ଼େଇ କାଢ଼ିହେଲା :

"ଏଇ ଦେଖ୍, ଏଇଥର ଶେଷ । ମୋରେସ୍ତୋଭିଆ ଲୋକଟାର । ଏଇଆ ଠିକ ଆଣିଦେବ— ।"

"ବାହାର କର, କାଢ଼ ସେଗୁଡ଼ାକ ଦସ୍ତାନରୁ ! ନଇଲେ ମାଲକୁସ୍ତି ଆଗରୁ, ଲଢ଼େଇ ଆଗରୁ ପଦାରେ ପକାଇ ଦେବି—ଧରେଇ ଦେବି ତତେ !" କଠୋର ଭାବରେ ସତର୍କ କରିଦେଲା ତାକୁ ସୀତାନାଥ ।

କାପେନଦ୍ୟୁଙ୍ଖୀନ ବିଶ୍ୱାସ କରି ନ ଥାଏ ଯେ ପ୍ରକୃତରେ ସୀତାନାଥ ଜଣେଇଦେବ ଏ କଥାଟା । ଲଢ଼ାଲଢ଼ିଟା ଆରମ୍ଭ ହୋଇଯିବା ଆଗରୁ ହଠାତ୍ ସୀତାନାଥ ଡାକ ଛାଡ଼ିଲା, କହିଲା ମୋରେସ୍ତୋଭିଆ ଲୋକଟିକୁ ।

ରଃ ଟିକିଏ, ସମାଳ ଭ୍ୟାସିଲ୍ ଇଭାନୋଭିଚ ? ଆଗ ଲଢ଼ିବ ମୁଁ—ଲଢ଼ିବ କାପେନ୍ଦ୍ୟୁଙ୍ଖୀନ ସାଙ୍ଗରେ ।

କଶାକ୍ ଜାତର କାପେନ୍ଦ୍ୟୁଙ୍ଖୀନ ଲାଜ ପଡ଼ିଗଲା ଗୋଟିସୁଦ୍ଧା । ପାଟିକରି ଉଠିଲା ।

"ନା, ନା, ମୁଁ ଲଢ଼ିବି ନାହିଁ ତୋ ସାଥିରେ । ଯା ବାହାରି ଏଠୁ !"

"ଲଢ଼ିବୁ—ଅଲବତ୍ ଲଢ଼ିବୁ," ଆଗେଇ ଯାଉ ଯାଉ ଜବରଦସ୍ତି ବାଧ୍ୟ କଲା ଗ୍ରହାଣି ହାଣି ତା' ଉପରେ । ଜବାବ ଦେଲା ସୀତାନାଥ । ମିନିଟିଏ ଖଣ୍ଡେ କଣ କରିବ ଦୋଦୋପାଞ୍ଚିଆ ହେଲା କାପେନ୍ ଦ୍ୟୁଖୀନ୍ ଦସ୍ତାନାକୁ ଭିଡ଼ି, ଚିରିଦେଇ ଛାତି ପକେଟରେ ପୂରେଇ ଆଖି ପିଛୁଳାକେ ଚାଲିଗଲା ସେଠୁ ତୀର ଭଳି ।

ଘଟଣାଟା ଦିଶିଲା ଅଡ଼ୁଆ—ଅପ୍ରୀତିକର, ବିସ୍ମୟଜନକ ଦିଶିଲା ଦ' ପକ୍ଷକୁ । ଜଣେ ମାନ୍ୟଗଣ୍ୟ ଚେହେରାର ଭଦ୍ରଲୋକ ରାଗିଯାଇ କହିଲେ ସୀତାନାଥଙ୍କୁ ।

"କେଉଁ ନିୟମର କଥା ଏ, ଏଁ ନିୟମ ବିରୋଧରେ ଭଲ ଲୋକଟାଏ ତ ! ତମ ଭିତର ବାହାନାର ରାଗରୋଷ ତୁଟେଇବ ନା କଣ, ସର୍ବସାଧାରଣ ଖେଳ ପଡ଼ିଆରେ ଲଢ଼ାଲଢ଼ିରେ—ଏଁ !"

ସବୁଆଡ଼ୁ ହୋ ହୋ ପାଟିକରି ଉଠିଲେ ସମସ୍ତେ ସୀତାନାଥ ଉପରେ ! ଅନେକ ସମୟ ଚୁପ୍ ହୋଇ ରହିଲା ସେ । ତା' ପରେ ଭଦ୍ର ଚେହେରାର ଲୋକଟି ଆଡ଼କୁ ଗୁହିଁ କହିଲା ।

' ଖୁନ୍ କରିବାଟା, ନରହତ୍ୟାଟା ବନ୍ଦ କଲି ତ କଣ ହେଲା ?''

ମାନ୍ୟଗଣ୍ୟ ଲୋକଟି ବୁଝିଗଲେ ସଙ୍ଗେ ସଙ୍ଗେ । ଏମିତକ ଚୋପିଟାକୁ ଛୁଇଁ ଛୁଇଁ କହିଲା :

''ତା ଯଦ—ଆମ ପଟରୁ ଧନ୍ୟବାଦ ! ଏ ଧନ୍ୟବାଦଟା ନଅ ।''

''ଖାଲି ଏ ବଦସ୍ତରେ ଅଢ଼ ଦସ୍ୟୁକର ଗାଇ ଦୁଅ ନାହିଁ, ଗମ ଦୁଅ ନାହିଁ କେଉଁଠି ।''

''ନା, ନା । ତା କରିବ କାହିଁକି ? ନାପେନ୍ତ୍ୟାଧୀନ ଭଲ ମାନ୍ଟାଏ, ଲଢ଼ୁଆଟାଏ ତ ଶହେକେ ଗୋଟିଏ ମିଳିବେ କି ନାହିଁ—ଏମିତ ଦୁଷ୍ପ୍ରାପ୍ୟ । ସବୁବେଳେ ଶତ୍ରୁପଟାଙ୍କ ହେଲେ କଏ ବା କେତେ ବରଦାସ୍ତ କରିବ । ଗୁଗିଯିବ ନାହିଁ, ବୁଝୁଁଚୁ ଆମେ, ବେଶ୍ ବୁଝୁଁଚୁ, ଏଣିକି ଲଢ଼ାଲଢ଼ି ଭଡ଼ାଭଡ଼ିଟା ଆଗରୁ ତା ଦସ୍ତାନାକୁ ଦେଖି ପରଖି ନେବୁ ଠିକ୍ !''

''ସେଇଟା ତମ କାମ, ତମ କଥା !''

ଭଦ୍ର ମାନ୍ୟଗଣିଆ ଲୋକଟି ଗୁଲଗଲା ପରେ ଆମ ପଟର ସମସ୍ତେ ଅଲ୍ଗାଳକି ଗାଲଗୁଲଜ କରି ଘୋରଡେଇ ଲଗିଲେ ସୀତାନାଥ ସାଙ୍ଗରେ ।

' କାହିଁକି ରେ କାହିଁକି ସ୍ପା କଲୁ । ବୋକାଟା କସାକ୍ଟା ଏଥର ତାକୁ ପାନେ ଦେଇଥାନ୍ତା ଅଚ୍ଛା କରି ! କାହିଁକି, କାହିଁକି ବଗାଡ଼ିଲୁ ତୁ—ଏବେ ଆମେଇ ସବୁ ମାଡ଼କୁ ମାଡ଼ ଖାଇ ମାଟି କାମୁଡ଼ି ରହିଲୁ ।''

ଅନେକ ବେଳଯାଏ ସମସ୍ତେ ଆମେ ଲଜିପଡ଼ି ଚେଢ଼େଇଲୁ, ଚଟେଇଲୁ ତାକୁ ନୂସିରେ । ମଜା ଲଗିଲା ଖୁବ !

ସୀତାନାଥ କନ୍ତୁ ଚହଲୁ ନ ଥାଏ ଅଦୌ । ଦାନ୍ତ ନିଶ୍ୱାସଟିମାନ ଧଡକେଇ ପକେଇ ଶୁଣୁଥାଏ—କହିଲା :

''ଏଃ, ରେ ନଉନଥା, ନଉକୁଣା, ଚୁଛା···''

ତା ପରେ ସମସ୍ତଙ୍କ ଆଖିରେ ଚମକ ଆଣି ହଠାତ୍ ସେ ଲଢ଼ିବାକୁ ଅହ୍ୱାନ କଲା ମୋରୋଡ଼ୋଭିଆର ଲୋକକୁ । ଛଅଣ ହୋଇଗଲେ । ଅହ୍ୱାନ ନେଲା ମୋରୋଡ଼ୋଭିଆ ଲୋକ । ହାତ ମୁଠାକରି ନଚେଇ ନଚେଇ ଅଟାକିଆ ସ୍ୱରରେ ଡାକିଲା—

"ହଁ ହେଇଯାଉ, ଟିକଏ ଗ୍ରେଟଖାଟିଆ ଭଡ଼ାଭଡ଼ିଟା ହୋଇଯାଉ, ଏମିତ ଟିକେ ଉତ୍ସୁମ ଆଣିବା ପାଇଁ ଦେହରେ ।"

ଦେଖଣାହାରୀଙ୍କ ଭିତରୁ କେତେକ ହାତକୁ ହାତ ଛନ୍ଦାଛନ୍ଦ ହୋଇଯାଇ ଯାଙ୍ଗେ ଯାଙ୍ଗେ ଲୋକଙ୍କୁ ପଛ ଠେଲି ଲାଗିଲେ । ଆଖଡ଼ା ଜାଗାର ଗୋଲେଇଟାକୁ ଅନ୍ତର ଫର୍ଚ୍ଚା କରିଦେବା ପାଇଁ ।

ଲଢ଼ୁଆ ଦ' ଜଣ ବୁଲି ବୁଲି ଲାଗିଲେ, ବର୍ଚ୍ଚି କାଟି କାଟି । ଦୁହିଁଙ୍କ ଆଖି ଦୁହିଁଙ୍କ ମୁହଁରେ ଲାଗି ରହିଲା ଅଠାରେ ଲାଗିଲାଭଳି । ଡ଼ାହାଣ ହାତ ମୁଠା ଲମ୍ବିଗଲା ଆଗକୁ, ବାଆଁ ହାତ ମୁଠାହୋଇ ରହିଲା ଗ୍ରୀବା ଉପରେ ଦୁହିଁଙ୍କର । ଅନ୍ଧଙ୍କ ଓସ୍ତାଦ ଦେଖଣାହାରୀଏ ଠିକ୍ ଲକ୍ଷ୍ୟ କରିନେଲେ ମୁହୂର୍ତ୍ତିକେ । ମୋଟ୍ରେଡ଼ୋଭିଆ ଲୋକର ହାତଠୁ ଥିଲା ସୀତାନଭିର ହାତ ବେଶ୍ ଲମ୍ବା । ସ୍ଥିରଆଡ଼ ରୁନ୍ ଗାନ୍ ହୋଇଗଲା ମୁହୂର୍ତ୍ତିକରେ । ଖାଲି ଲଢ଼ୁଆ ଦ'ଜଣଙ୍କ ପାଦ ତଳରେ ମଶ୍ ମଶ୍ ହେଲା ବରଫ ! କିଏ ଜଣେ ଆଉ ସହି ନ ପାରି ଅପେକ୍ଷା କରିବାର ଚପଟଟା—ଆଗୁରିଆ ଅଭିଯୋଗରେ ଭୁଟ୍ ଭୁଟ୍ ହେଲା—

"ସମସ୍ତ ହୋଇଗଲା, ଆଉ କେତେବେଳେ ଯେ ଦୁହେଁ ଦୁହିଁଙ୍କ ଉପରକୁ କୁଦିପଡ଼ିବା ଉଚିତ !"

ଡାହାଣ ହାତ ଉଞ୍ଚେଇ ଝିଙ୍କି ହଲେଇ ଦେଇ ମାଡ଼ଟା ଚଢ଼େଇବାକୁ ବାହାରିଲା ଗୃହୁଁ ଗୃହୁଁ । ମୋଟ୍ରେଡ଼ୋଭିଆ ଲୋକ ଆତ୍ମରକ୍ଷା କରିବାକୁ ଚେଷ୍ଟା କଲା ବାଆଁ ହାତ ଟେକି, କିନ୍ତୁ ସିଧାସଳଖ ସୀତାନଭିର ବାଆଁ ହାତର ବଧା ପ୍ରହାରଟା ବାଜିଲା ତା ତଳପେଟରେ, ନାଭିମୂଣ୍ଡାରେ ଯାଇ ! ଗାଁଉଁକିନା ହୋଇ ପଛକୁ ଘୁଂଚିଗଲା ସେ—ସାବାସ୍ ଜଣାଇ ।

"ନା, ନା, ନିହାତି ବୋକା ନୋହୁଁ—ଚୋକାଟାଏ ହେଲେ କଣ ହେଲା—ନାଁ । ନାଁ । ।"

ତା'ପରେ ଦୁହିଁଙ୍କି ଦୁହେଁ ମାଡିଗଲେ ମୁଷ୍ଟିଯୁଦ୍ଧରେ । ପରସ୍ପର ଗ୍ରୀବାକୁ ଲକ୍ଷ୍ୟକରି ଦୃଢ଼ କଠୋର ଭାବରେ—କେତୋଟି ମିନଟ୍ ଯାଇଥାଏ କି ନାହିଁ, ଦୁଇ ପକ୍ଷର ଲୋକେ ପାଟିକରି ଲାଗିଲେ ଉତ୍ତେଜିତ ଭାବରେ—

"ଏଃ-ଏଃ-ତାକୁ-ତାକୁ-ଦେ' ପାନେ । କୁଦି ପଡ଼ ତା ଉପରେ—ହେଏ, ଚନ୍ଦାଳର ପୁଅ ରୁ । ଦାଆଁଦେବତାଙ୍କ ଚନ୍ଦକାର ରୁ ! ସଜେଇ ଦେ, ଚର୍ଚ୍ଚି ଦେ ଅନ୍ଧାକରି ଦେହଟାକୁ ତାର !"

ସୀତାନଭିକୁ ବହୁତ ବେଶୀ ବଳୁଆ ଥାଏ ମୋଟ୍ରେଡ଼ୋଭିଆ ଲୋକଟା କିନ୍ତୁ ଫୁର୍ତ୍ତିରେ ଝଟଝଟ ପ୍ରାଣରେ କ୍ଷିପ୍ରତାରେ ଥାଏ ଅନେକ ଗୁଣ ଉଣା

ପାରୁ ନ ଥାଏ ଚଟାପଟ୍ ଭୁଲପତ୍ର ଦୂରେଇବାକୁ ଗୋଟିଏ ଘୁଷି ମାରିଲାବେଳେ ସିଏ ପାଉଥାଏ ଦୁଇ ତିନିଟା । କିନ୍ତୁ ଯେତେ ଘୁଷି ବିଧା, ଯେତେ ପ୍ରହାର ବାଜୁଥାଏ ପଛେ ତା' ଦେହରେ ଆଖି ଆଣୁ ନ ଥାଏ ଟିକିଏ ହେଲେ—ଖାତିର କରୁ ନ ଥାଏ ସେଗୁଡ଼ାକୁ ସେ । ସେ ହସିହସିକା ଅଟ୍ଟାତାମସା କରି କରି ବିପକ୍ଷ ଲଢୁଆକୁ ଗର୍ଜନ ଶୁଣଉଥାଏ ତୁହାକୁ ତୁହା । ତା'ପରେ ଥିଲି ଥିଲି ହଠାତ୍ ହାତଟା ଉଞ୍ଚେଇ ଏମିତି ଗୋଟାଏ ଉପରୁ ପାହାରଟାଏ ହାଣିଲି ଯେ, ସୀତାନଭର ଡାହାଣ ବାହୁଟା ଖସିଆସିଲି କାଖ ତଳକୁ ।

"ଆରେ ଛଡ଼େଇ ଦିଅ, ଛଡ଼େଇ ଦିଅ ରେ ସେମାନଙ୍କୁ । ଅଲଗା ଅଲଗା କରିଦିଅ । ସମାନ ସମାନ ହେଲେ ଲଢ଼ନ୍ତିରେ । ନିଷ୍ପତ୍ତି ହେଲା ନାହିଁ କିଛି । ଏକ ସମୟରେ ସମସ୍ୱରରେ କହି ଉଠିଲେ ଅନେକେ । ଧାଇଁଗଲେ ଦେଖଣାହାରିଏ ଅଲଗା କରିଦେଲେ ସେମାନଙ୍କୁ—ସେ ଦୁହିଙ୍କୁ ।"

"ବଳୁଆ ନୁହେଁ ସେ, ଦିଅଁ ଦେବତା ଚିଏକାବିଟା, କିନ୍ତୁ କେତେ ଝଟ୍‌ପଟିଆ କେଡ଼େ କ୍ଷିପ୍ର ।" ଧୀର ପ୍ରକୃତିର ମୋରେଡେଭିଆ ଲୋକଟି କହିଲା ମଧୁର ଭାବରେ । "ଚମତ୍କାର ମାଲଟାଏ ଲଢୁଆଟାଏ ହେବ ସେ ନା—ଏ କଥା କହିବାକୁ କୁଣ୍ଠା ନାହିଁ । ଅପମାନ ଲାଗୁ ନାହିଁ ।"

ଟୋକା-ଟୋକାଗୁଡ଼ିକ ସେଠି ଲଢ଼େଇ ଦେଖୁଥିଲେ ଯେଉଁମାନେ—ଆରମ୍ଭ କରିଦେଲେ ଅବାଧରେ ଆପଣା ଆପଣା ଭିତରେ ଲଢ଼େଇ ଘୁଷି ମରାମରି । ମୁଁ ସୀତାନଭକୁ ନେଇ ଗଲିଲି ହାଡ଼ ଝଙ୍କାଳ ପାଖକୁ, ଯାହା ସେ ହାସଲ କରିଥାଏ, ଯେଉଁ କରାମତି ଦେଖାଉଥାଏ—ସେଥିରେ ସେ ନିଜକୁ ଯେମିତି ମୋ ଆଗରେ ମୋ କଳନାରେ ଉଠେଇ ନେଇଥାଏ ଉପରକୁ ବଢ଼େଇ ଦେଉଥାଏ ତା ପ୍ରତି ମୋର ସ୍ନେହ-ଶ୍ରଦ୍ଧା ସମ୍ମାନଟିକ !

ଯେମିତି ସତ ଯେମିତି ସଚ୍ଚୋଟ୍ ସେମିତି ନ୍ୟାୟପରାୟଣ ଥାଏ ସେ । ମନରେ ଧରି ନେଇଥାଏ ସେ ଯାହା କରୁଥାଏ, କରିଥାଏ କର୍ତ୍ତବ୍ୟ ଭାବରେ କିନ୍ତୁ ଲଢ଼େଇଖୋର କାପେନ୍‌ଦ୍ୟୁଖୀନ୍ ଆରମ୍ଭ କରି ଦେଇଥାଏ ତାକୁ ଉପହାସ କରିବାକୁ—

"ଏଃ, ଏଃ ସବୁବେଳେ ଫୁଲି ଫୁଲି ଉଠୁଚୁ ରେ କଣ ସୀତାନଭ ।" କହୁଥାଏ ସେ, କାପେନ୍ ଦ୍ୟୁଖୀନ୍ ତୋ ଆତ୍ମାଟାକୁ, ତୋ ପ୍ରାଣଟାକୁ ତ ଘଷିମାଜି ଚକ୍‌ଚକ୍ କରିଦେଇଚୁ ସାମୋଭାର ଭଳି ଯେ ? ଦେଖେଇ ହେଉଚୁ ନିଜକୁ, ବୁକୁଟୁ ବଢ଼େଇ କାହିଁ ? ଅନା ମତେ ଅନା କେମିତି ଝଲସୁଚି ମୁଁ—ଜୀ ଅଲୁଅ ଜୀ ମୋର ! ତୋ ପ୍ରାଣଟା, ତୋ ଆତ୍ମାଟା ପିତ୍ତଳର, ଥୁଃ ଭାଉବଟା କାରିଗରରେ ସାବଧାନରେ ବୁଝିଲୁ କଣାଫୁଟା ବାସନଟାଏ, ବିରକ୍ତିକର ଜିନିଷଟାଏ ।"

ଗୀତାନଭ କାନ ନ ଦେଇ ଏ କଥାକୁ କାମ କରି ଯାଉଥାଏ—ନଇଲେ ଉତ୍ତ୍ରାଧବାରେ ଲଗୁଥାଏ ଲରମଣ୍ଡଭଙ୍କ ନବତାଗୁଡ଼ିକ ଟିପାଖାତରେ ତାର । ଫୁରୁସତ୍ ସମସ୍ତଙ୍କ ବଚେଇ ନେଉଥାଏ ଏହି ଉତ୍ତ୍ରାରିବା କାମରେ । ଥରେ ତାକୁ କହିଲି ମୁଁ :

"ତୋର ତ ଟଙ୍କା ପଇସା ଅଛୁ, କହି ଖଣ୍ଡିଏ କଣ୍ଠି ନୁ କାହିଁକ ?"

"ନାଁ, ନିଜ ହାତରେ ଉତ୍ତ୍ରାରିବାଟା ଭଲ, କାମର ଖୁବ୍ ।" ଉତ୍ତର ଦେଇଥିଲେ ସେ ।

ଅନେକ ସମୟରେ ତାର ଯେଉଁ ଗୋଲଗୋଲ ମାଛମଞ୍ଜିଆ ଅକ୍ଷର, ସେଥିରେ ଉତ୍ତ୍ରାରି ସାରିଲା ପରେ ପୃଷ୍ଠାଏ ଖଣ୍ଡେ ସେ ଯେତେବେଳେ ଅପେକ୍ଷା କରୁଥାଏ 'କାଳି' ଶୁଖିବା ଯାଏ, ସେତେବେଳେ ଥିରି ଥିରି ହୋଇ ପଢୁଥାଏ ସେ—

ନ ଶୋଚ ନ ଭାଳ ମରମେ ଭ୍ରମର
ଫେରାଅ ମୁହଁ ହେ
ବୁଲିଯାଅ ଧରଣୀରୁ ଅପସରି
ଚଞ୍ଚଳ ଚଳ ନାହିଁ ମୁଖ ଗ୍ରୀଣି
ସୁଷମା ସକଳ ଦନୁଟିଏ ଲଗି
ନମିଷକେ ଆସି ନମିଷକେ ଯାଏ ଝରି !

"ସତ, ଏଇ ହେଉଛି ସତ—" ଅଖି ଯୋଡ଼ିକ ମୋଡ଼ି ମୋଡ଼ି ନେଇ ସେଟ୍‌କଶ ଭଳି ଟିପ୍‌ପଣୀ ଦେଉଥାଏ ସେ, ଏଃ, କେଡ଼େ ଚମତ୍କାର ଭାବରେ ଏଇଟି ଏଇ, ସତକୁ ଦେଖି ପାରିଛୁ ଏଇ କବି !"

କାପେନ୍‌ଦ୍ର୍ୟୁଖୀନ ପ୍ରତି ତାର ବ୍ୟବହାର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଉଥାଏ ମୁଁ । ଯେତେବେଳେ ମାତାଲ ହୋଇ ଉଠୁଥାଏ କାପେନ୍‌ଦ୍ର୍ୟୁଖୀନ୍ ଝଗଡ଼ା କରି ଲଢ଼ିବାକୁ ବାହାରୁଥାଏ ଗୀତାନଭ ସାଙ୍ଗରେ, ଗୀତାନଭ କିନ୍ତୁ ଧୈର୍ଯ୍ୟଧରି ତାକୁ ବୁଝେଇ ସୁଝେଇ ନବର୍ତ୍ତେଇବାକୁ ଚେଷ୍ଟା କରୁଥାଏ ସେତେବେଳେ ବି—

"ଯା, ଯା ପାଖକୁ ଆସନା ମୋର, ଛୁଇଁ ନା ମତେ !"

ଶେଷରେ କିନ୍ତୁ ଅସମ୍ଭାଳ ହୋଇ ନିର୍ଦ୍ଦୟ ଭାବରେ ପିଟୁଥାଏ ମାତାଲଟିକୁ ପିଟୁଥାଏ ଏମିତ ନିଷ୍ଠୁର ଭାବରେ ଯେ ପ୍ରକୃତରେ କହିଲେ ଅନ୍ୟ ଚାଷକାରମାନେ ସାଧାରଣତଃ ଯେଉଁମାନେ ଲଢ଼େଇଟା ଦେଖିବାକୁ ଗୃହୁଁଥାନ୍ତି ଖୁବ୍ ସେମାନେ ବି ଦୁଇ ବନ୍ଧୁଙ୍କ ମଝିରେ ପଶି ଅଲଗା କରି ଦେଉଥାନ୍ତି ସେ ଦୁହିଁଙ୍କୁ ।

ତମେ ଯଦି ଠିକ୍ ସମୟରେ ଛଡ଼େଇ ନ ଦେବ ନ ରୋକିବ ସୀତାନଭକୁ ସେ ଫିଟି ଫିଟି ମାରିଦେବ ତାକୁ—କାପେନ୍‌ଦ୍ରୁୟଖୀନ—ନିଜକଥା ବି ଭାବିବ ନାହିଁ, ନିଜକୁ ଗୃହିଁବ ନାହିଁ ।" କହୁଥାନ୍ତି ସେମାନେ ସେହି ଚଉକାରସବୁ ।

ଏମିତି ଏ କାପେନ୍‌ଦ୍ରୁୟଖୀନର ମିଜାଜ ଶାନ୍ତ ଶୀତଳ ସଂଯତ ଥାଏ ଯେତେବେଳେ, ସୀତାନଭକୁ ସେତେବେଳେ ବି ଖୁଞ୍ଚାଦେଇ କେହି ଅଥେଇ ନଥେଇ କରୁଥାଏ ତାର କବିତା ପ୍ରୀତିକୁ, ତାର ଦୁର୍ଭାଗ୍ୟର ପ୍ରେମ-ପ୍ରଣୟ କାରବାରକୁ ଟାହିଟାପରା କରି, ତା'ମନରେ ଈର୍ଷା ଜନ୍ମେଇବା ପାଇଁ ଅତି କଦର୍ଯ୍ୟ ଗାଳିମାଳିଆ କିନ୍ତୁ ଅସଫଳ ଉଦ୍ୟମ କରି । ସୀତାନଭ କିନ୍ତୁ ସେଇ ନିସ୍ତାକ ଦେହପୋଡ଼ା କଥାଗୁଡ଼ିକୁ ଶୁଣୁଥାଏ କିଛି ଜବାବ୍ ନ ଦେଇ କି ରାଗରୋଷ କି ଅପମାନ ନ ଯେନି ଏମିତିକି ବେଳେବେଳେ କାପେନ୍‌ଦ୍ରୁୟଖୀନ୍ ସାଙ୍ଗରେ ହୋ ହୋ ହୋଇ ହସି ହସି ।

ସେମାନେ ଶୋଉଥାନ୍ତି ପାଖାପାଖି ଲଗାଲଗି ହୋଇ ଆଉ ଅନେକ ସମୟ—ଅନେକ ରାତି ଯାଏ । ପାହାନ୍ତିଆ ଯାଏ ଫୁସୁରୁ ଫୁସୁରୁ କଥାବାର୍ତ୍ତା ହେଉଥାନ୍ତି ଗୁନ ଗୁନ ।

ସେମାନଙ୍କର ନୈଶ ଆଲାପଟା ଭାରି ରହସ୍ୟଜନକ ଲାଗୁଥାଏ ମତେ । ବୁଝିପାରୁ ନ ଥାଏ ଦୁଇଟା ଲୋକ ପୂରାପୂରି ପୃଥକ୍ ଧରଣର କଣସବୁ ଗପୁଥାନ୍ତି କଣ ବା ପାଉଥାନ୍ତି ଗପିବାକୁ । ଏମିତି ମେଳାପିଆ ମନମତାଣିଆ ଢଙ୍ଗରେ । କିନ୍ତୁ ଏ ବିଷୟ ଜାଣିବା ପାଇଁ ବାଆଁରେଇ ହୋଇ ଯେତେବେଳେ ଘୂଞ୍ଚି ଯାଉଥାଏ ସେମାନଙ୍କ ପାଖକୁ କଷାକ୍‌ଟା କହୁଥାଏ :—

"କଣ ରେ ? କଣ କରୁଛୁ ଏଠି ?"

ସୀତାନଭ ମୋ ଆଡ଼କୁ ଗୃହୁଁ ନ ଥାଏ ଯେମିତି ମୋର ଅସ୍ତିତ୍ୱ ନ ଥାଏ ତା ଆଗରେ—ଏମିତି ଅବହେଳା କରୁଥାଏ ।

ଥରେ କିନ୍ତୁ ସେମାନେ ଡାକିଲେ ମତେ ପାଖକୁ "ମାକ୍‌ସିମିଚ୍" କହିଲା କଷାକ—"ତୋତେ ଯଦି ଗୁଡ଼ାଏ ରୁବ୍‌ଲ୍ ମିଳେ ଗୁଡ଼ାଏ ଟଙ୍କା କଣ କରିବୁ ତୁ ସେଥିରେ ?"

"ବହି କିଣିବି ।"

"ତା ଛଡ଼ା—ଆଉ—।"

"ଜାଣେ ନା ।"

"ଏଃ ।" ନିଶ୍ୱାସଟିଏ ପକାଇଲା ହତାଶ ହୋଇ କାପେନ୍‌ଦ୍ରୁୟଖୀନ୍ ମୁହଁ ବୁଲାଇ ନେଇ ମୋ ଆଡ଼ୁ ।

"ଦେଖ୍," ଶାନ୍ତଭାବରେ କହିଲା ସୀତାନାଥ, କେହି କିଛି ପାଇବ ନାହିଁ ବୁଢ଼ା ହେଉ କି ଟୋକା ହେଉ । କିଛି ରହୁଚି ତଳେ ଧନରତ୍ନଗୁଡ଼ାକର କିଛି ଅର୍ଥ ନାହିଁ, ମୂଲ୍ୟ ନାହିଁ । ସେ ସବୁ ସାଥିରେ ଯାହା, ଯାଏ ଯାହା ମିଳେ ସେସବୁ ବଦଳରେ ।

"କଣ ସବୁ ଗପୁଚ ତମେ—କଥା ଭାଷା ହେଉଚ" ? ପଚାରିଲି ମୁଁ ।

"ବେଶୀ କିଛି ନୁହେଁ । ଏମିତି ସମୟ କଟେଇବା ନିଦ ହେଉନି ଶୋଇ ପାରୁନି ।" ଉତ୍ତର ଦେଲା କପାଳ୍ । ପରେ କିନ୍ତୁ ସେମାନେ ଅନୁମତି ଦେଲେ ମତେ ତାଙ୍କ କଥାଭାଷା ଶୁଣିବା ପାଇଁ ଆଉ ମୁଁ ଆବିଷ୍କାର କଲି ସେଥିରୁ ତାଙ୍କ ଗପସପରୁ ଲୋକେ ଦିନବେଳେ ଯାହା ଆଲୋଚନା କରନ୍ତି ଠିକ୍ ସେହିଆ ଆଲୋଚନା କରି କରି ରାତି ବିତାଉଥାନ୍ତି ସେମାନେ—ସେଇ ସମାନ ଏକ କଥା । ଭଗବାନ, ନ୍ୟାୟ, ସୁଖଦୁଃଖ—ତଳଲୋକଗୁଡ଼ାଙ୍କର ଗୁଲାମି ଚରିତ୍ରତା ଧୂର୍ତ୍ତତା ଆଉ ମୂର୍ଖତା ଆଉ ନିର୍ବୋଧତା—ଧନୀଗୁଡ଼ାଙ୍କର ବିଶ୍ୱଗ୍ରାସ ଲୋଭଲାଳସା ଆଉ ସେଇ ତଥ୍ୟଟି ସାଧାରଣ ଭାବେ ଜୀବନଟା ଗୋଟାଏ ଅବୋଧ୍ୟ ଗଣ୍ଡଗୋଳିଆ କିଛି ବିଭ୍ରାଟ ଗୋଟାଏ ।

ସବୁବେଳେ ମୁଁ ଥାଏ ଅତି ଆଗ୍ରହୀ ଶ୍ରୋତା । ସେମାନଙ୍କର କଥାବାର୍ତ୍ତା ଗମ୍ଭୀର ଭାବରେ ଆଲୋଡ଼ିତ କରୁଥାଏ ହୃଦୟକୁ ମୋର—ତେବେ ସୁଖ ଲାଗୁଥାଏ । ସେମାନେ ଏକମତ ହେଉଥାନ୍ତି ମୋ ସାଥିରେ । ଅତି ହୀନମାନିଆ ଦୁଃଖର ଏଣୁ ଦୁଃସହ ଥାଏ ଜୀବନଟା । ସୁଧୁରିବା, ଭଲ ହେବା ଉନ୍ନତ ହେବା ଉଚିତ, କିନ୍ତୁ ସେଥି ସଙ୍ଗେ ସଙ୍ଗେ ବୁଝିପାରୁଥାଏ ମୁଁ—ଜୀବନକୁ ସୁଧୁରେଇ ଭଲ କରିବାକୁ ଆଭିଳାଷଟା ପୋଷିଲେ ମନରେ କି କହିହେଲେ ଯେ ସେଥି ସମ୍ପର୍କରେ କାହା ଉପରେ କିଛି ଦାୟିତ୍ୱ ଆସି ଯାଉଥାଏ ନୁହେଁ, କି ସେହି ଅଭିଳାଷଟା, ସେହି ବାସନାଟା ଯୋଗୁଁ କାରଖାନାରେ ଜୀବନ ପ୍ରଣାଳୀ ବା ଶ୍ରମିକମାନଙ୍କ ମଧ୍ୟରେ ପରସ୍ପର ସହିତ ସମ୍ପର୍କଟା ବଦଳି ଯାଉଥାଏ, ନୁହେଁ ! ସେଇସବୁ କଥାବାର୍ତ୍ତା ଆଲୋଚନା ମତେ ଜୀବନଟାକୁ ଟାଳେଇ ଦେଖିବା ପାଇଁ କ୍ଷମତା ବା ଅନ୍ତର୍ଦୃଷ୍ଟି ଟିକି ଦେବା ସଙ୍ଗେ ସଙ୍ଗେ—କିନ୍ତୁ ସ୍ପଷ୍ଟ ପ୍ରକାଶକରି ଦେଉଥାଏ ମୋ ଆଗରେ. ଜୀବନଟା ଗୋଟାଏ ସାଥୀହୀନ ସହାନୁଭୂତିହୀନ ମରୁର ଶୂନ୍ୟତା ହିଁ ଖାଲି—ଭୀଷଣ ଅସହ୍ୟ ସେହି ଶୂନ୍ୟ ତାରେ—ଝଡ଼ା ସହିଁରା ପବନଦୋହଲା ପୋଖରୀରେ ପାଚିଲା ଶୁଖିଲା ପତ୍ରଗୁଡ଼ିକ ଭଳି ଭାସୁଥାନ୍ତି ଏବିଳି ତେଣିକି ଏପଟ ସେପଟ ହୋଇ ଲୋକଗୁଡ଼ାକ । ଗୋଟିକଠୁ ସମସ୍ତେ ଲକ୍ଷ୍ୟହୀନ ଉଦ୍ଦେଶ୍ୟହୀନ ସବୁ—ନିଜେ ନିଜେ ସେମାନେ ପୂର୍ଣ୍ଣ କ୍ରୋଧରେ ଜଳି, ତୁଚ୍ଛ ତାଚ୍ଛଲ୍ୟକରି, ନିନ୍ଦାକରି, ଦୂଷଣୀୟ ବୋଲି କହି କହି ସେମାନଙ୍କର ନିଜ ନିଜର ନିରୁଦ୍ଦେଶ୍ୟ ଭାବରେ ନିର୍ଲକ୍ଷ୍ୟ ଭାବରେ ଭାସି ଭାସି ଯାଇଥିବାର ଗତିବିଧିକୁ ।

ଚାକରଗୁଡ଼ିକ ସବୁବେଳେ ପ୍ରାୟ ବଡ଼େଇ ଦେଖେଇ ଅଟୋପ କାଢୁଥାନ୍ତି ନଇଲେ ବା ଅନୁତାପରେ, ଅନୁଶୋଚନାରେ ବୁଡ଼ିଯାଉଥାନ୍ତି—ପୁଣି କାହାକୁ ହେଲେ ନିନ୍ଦୁଥାନ୍ତି, ଗାଳିଗୁଲଜ ଦେଉଥାନ୍ତି ଅଥବା ଅତି ଶ୍ରେଷ୍ଠ ନାଲିନଆ ଘଟଣାରେ କି କଥାରେ, କଳିକଜିଆରେ କାମୁଡ଼ାକାମୁଡ଼ି ହୋଇ ସତେ ବା ପରସ୍ପରକୁ ଆଘାତ ଦେଉଥାନ୍ତି—ସମସ୍ତେ କହୁଥାନ୍ତି କଳ୍ପନାକର କଣ ସବୁ ଘଟିବ, ପରଲୋକରେ ସ୍ୱର୍ଗରେ—କଣ ଅଛି ଭାଗ୍ୟରେ । ଅଥଚ ଡେଣେ ଦ୍ୱାରମୁହଁରେ ମଇଳା ପାଣିକୁଣ୍ଡ ପାଖରେ ଚଟାଣପଟାରୁ ଖଣ୍ଡେ ସଢ଼ି ଯାଇଥାଏ କଣାଟାଏ ହୋଇ, ସେଇ ବାଟରେ ନେମାଳିଆ କାଳୁଆ ପବନ ଫିମ୍ପି ମାରି ଭିଜାମାଟିରୁ ଉଠି ଆମ ପାଦଗୁଡ଼ାକୁ କୋଳମଗ୍ନରେ କେମିତି କେମିତି ଅଚଳ କରି ଦେଉଥାଏ ପଛେ । ପ୍ୟାଭେଲ ଆଉ ମୁଁ କଣାଟାକୁ ବନ୍ଦକରି ଦେଲୁ, ସେଥିରେ କୁଟାଫୁଟା ଚିରା କନାଫନାକୁ ବିଣ୍ଡାକରି ମାରି । ଅଧିକାଂଶ ସମୟରେ ଲୋକଗୁଡ଼ାକ କହି ହେଉଥାନ୍ତି ନୂଆ ପଟା ଖଣ୍ଡେ ଲଗେଇବେ ଚଟାଣରେ କିନ୍ତୁ କଣାଟା ମେଲ୍ ମେଲ ବଡ଼ ହୋଇଯାଉଥାଏ ଦିନକୁ ଦିନ । ଝଡ଼ ବତାସ ଦିନରେ ଗୋଟାଏ ଭୂତ ଭଳି ଗର୍ଜନ କରି ପଶି ଆସୁଥାଏ ହୁ ହୁ ପବନ—ସେଥିରେ କାଶ ସରଦି ଘୋଟିଯାଉଥାଏ ଆମ ସମସ୍ତଙ୍କୁ । ଅଳୁଅ ପବନ ଯା ଆସ ପାଇଁ ଶ୍ରେଷ୍ଠ ଖିଡ଼ିକରେ ଲଗିଥାଏ ଧାତୁ ତିଆରି ବଡ଼ ଚକଡିଟାଏ । ସେଇଟା କେଁ କେଁ କଟ୍ କଟ୍ ହେଉଥାଏ ଏମିତି ଭୟଙ୍କରିଆ ଭାବରେ ଯେ ଲୋକେ ଅତି କଦର୍ଯ୍ୟ ଅକଥ୍ୟ ଭାଷାରେ ତାକୁ ବହେ ବହେ କାଟୁଥାନ୍ତି—ସମ୍ପୁଥାନ୍ତି ଖାଲି । ଟିକିଏ ହେଲେ ହଲଚଲ ହେଉ ନ ଥାନ୍ତି କିଛି କେଉଁ ଦିଗକୁ । ମୁଁ ଦିନେ ଯେତେବେଳେ ସେହି ଚକଡିଟାରେ ତେଲ ଦେଲି, ସିଖାରେଭ କାନ ଦ'ଟାକୁ ଖାଡ଼ା କରିଦେଇ କହିଲା :

"ଆଃ, କେଉଁ କେଉଁ ନ ଥିବାରୁ ଆହୁରି ଭୀଷଣ ଖରାପ ଲାଗୁଛି—କେମିତି ନିଃସଙ୍ଗିଆଟା···"

ସେଇ ଲୋକଗୁଡ଼ିକ ଧୂଆଧୋଇ ହୋଇ ଗାଧୁଆସରୁ ହାକାସିଆ ହୋଇ ଚଳପଡ଼ୁଥାନ୍ତି ମଇଳା କୋଟଟା ବନ୍ଧଣାରେ । ଧୂଳି ବାଲି ଅସନା ମସନା କାହା ନଜରକୁ ଆସୁ ନ ଥାଏ, ଅନ୍ତଚକଟା ଦୁର୍ଗନ୍ଧଟା ବାଜୁ ନ ଥାଏ କାହା ନାକରେ । ଅସଂଖ୍ୟ ଶ୍ରେଷ୍ଠ ଶ୍ରେଷ୍ଠ କଥା ଥାଏ, ଘଟଣା ଥାଏ । ଜୀବନକୁ ଦୁଃଖମୟ କାଳିମାମୟ କରିଦେଉଥାଏ ଯେଉଁଗୁଡ଼ାକ ଅକ୍ଳେଶରେ ସେଗୁଡ଼ିକ ଦୂର ହୋଇ ପାରୁଥାନ୍ତା, କିନ୍ତୁ କେହି ହେଲେ ଟିକିଏ ଚେଷ୍ଟା କରୁ ନ ଥାନ୍ତି, ଚାହୁଁ ନ ଥାନ୍ତି ସେ ଆଡ଼କୁ, ସେଇ କଥାକୁ ସବୁ । ଅନେକ ସମୟରେ କୁହାକୁହି ହେଉଥାନ୍ତି—

"ଲୋକଙ୍କ ଆଡ଼କୁ ଅନାନ୍ତା ଭଳି କିଏ ? କିଏ କାହାର ବା ଦୟା ହେଉଛି କୋଉଠି ? ନା—କାହାର ନାହିଁ—ଦୟାମାୟା—କାହାର ନାହିଁ—ଏମିତିକି ଭଗବାନଙ୍କର ।"

ମରଣମୁହଁରେ ଆସି ପହଞ୍ଚିଗଲା ତାଭେଡ଼ଭ । ତାର ସେହି ମୁମୂର୍ଷ ଅବସ୍ଥା ବେଳେ ତାକୁ ବେଢିଯାଉଥାନ୍ତି ଉକୁଣି, ଗ୍ରୁରପୋକ, ଜଦା, ପିଂପୁଡ଼ି । କି ଯନ୍ତ୍ରଣାରେ କାତର ହେଉଥାଏ ସେ ! ପ୍ୟାଭେଲ ଆଉ ମୁଁ ମିଶି ଯେତେବେଳେ ପୋଛୁପୋଛୁ, ଧୂଆଧୋଇ କରୁଥାଉ, ଆମକୁ ଥଟ୍ଟା କରୁଥାନ୍ତି ସେମାନେ—ସେହି ଲୋକଗୁଡ଼ିକ । ଆମେ ହସ ତାମସାର ଉପଲକ୍ଷ୍ୟ ହୋଇଥାଉ ସେମାନଙ୍କର । ଆମକୁ ଡାକୁଥାନ୍ତି ଗୋଡ଼ଧୂଆ ଗାଧୂଆ ଗୁକର ! ବଢ଼େଇ ଦେଉଥାନ୍ତି ନିଜ ନିଜର କାମିଜଟିମାନ ସେଥିରୁ ଉକୁଣି ଗ୍ରୁରପୋକ ବାଛି ବାହାର କରିବା ପାଇଁ । ମୋଟ ଉପରେ ହସୁଥାନ୍ତି ଆମ କାମକୁ ଦେଖି, ପରିହାସ କରୁଥାନ୍ତି ! ଆମେ ଯେମିତି ସ୍ୱୀନ ନିର୍ଲଜିଆ ପୁଣି ଅତି ଅଦ୍‌ଭୁତ କୌତୁକିଆ କାମଟାଏ କରୁଥାଉ ।

ବଡ଼ଦିନରୁ ଆରମ୍ଭ କରି 'ଲେଣ୍ଟ' ପର୍ଯ୍ୟନ୍ତ ତାଭେଡ଼ଭ ପଡ଼ିରହିଥାଏ ଖାଡ଼ି ପଟାଟି ଉପରେ, କାଶି କାଶି ଅନବରତ ଲେଟିଯାଉଥାଏ ଅଣନିଃଶ୍ୱାସୀ ହୋଇ—ଛେପ ଖଙ୍କାରରେ ମିଶି ବାହାରୁଥାଏ ମେଞ୍ଚାକୁ ମେଞ୍ଚା ରକ୍ତ ଆଉ ନାଲ । ମଇଳା ପାଣି କୁଣ୍ଡରେ ନ ପଡ଼ି ଅନେକ ସମୟରେ ପଡ଼ୁଥାଏ ଚଟାଣ ଉପରେ । ରାତିରେ ବାଉଳା ଗୁଉଳା ହୋଇ ପାଟିକରି ଉଠୁଥାଏ—ତାର ଆତୁରିଆ ଚିତ୍କାରରେ ନିଦ ଭାଙ୍ଗି ଯାଉଥାଏ ଆମର ।

କିନ୍ତୁ ପ୍ରାୟ ପ୍ରତ୍ୟେକ ଦିନ କହୁଥାନ୍ତି ସେମାନେ :

"ତାକୁ ଡାକ୍ତରଖାନାକୁ ନେବାକୁ ହେବ, ଯେମିତି ହେଉ ।"

କିନ୍ତୁ ଜଣାପଡ଼ି ଯାଉଥାଏ ସେ ତାଭେଡ଼ଭର ପାସପୋର୍ଟ ବା ଦେଶ ପ୍ରବେଶ ଅନୁମତି ସାନି ନ ହେଲେ ଡାକ୍ତରଖାନାରେ ଭର୍ତ୍ତି ହୋଇପାରିବ ନାହିଁ ସେ । ଟିକିଏ ତାକୁ ଭଲ ଲାଗିଲା ବା ଟିକିଏ ସୁସ୍ଥ ହୋଇଉଠିଲା ଯେମିତି ତା' ଦେଖି ଶେଷରେ ସେମାନେ କହି ହେଲେ—

"କଣ ବା ଯାଏ ଆସେ ଆଉ ? ଡାକ୍ତରଖାନାକୁ ଗଲେ କେତେ ନ ଗଲେ କେତେ ! ଆଉ କେତେ ଦିନ ଯେ – ମରିବାଟା ନିଶ୍ଚିତ, ଶୀଘ୍ର ତ ।"

"ହଁ ଶୀଘ୍ର, ଖୁବ୍ ଶୀଘ୍ର" ସେମାନଙ୍କ କଥା ଦେଲାଭଳି କହିଲା ରୁଗ୍‌ଣ ମୁମୂର୍ଷୁ ମଣିଷଟି ନିଜେ ।

ଚୁପ୍‌ଗୁପ୍, ରହସିଆ ଲୋକଟିଏ ସେ—କାରଖାନାର ବସ୍ତ୍ରଖଣ୍ଡତାକୁ ଖେଳେଇ ଉଡ଼େଇ ନେବାକୁ ପାରୁ ପର୍ଯ୍ୟନ୍ତ ଗ୍ରହିଁଥାଏ—ଚେଷ୍ଟା କରି ଅସିଥାଏ ସେ । ବିରକ୍ତିଆ କଳା ମୁର୍ଦ୍ଦାରିଆ ମୁହଁଟିକୁ ଓହଳେଇ ନେଇ ଖାଡ଼ି ପଟାର ଧାରକୁ ଘଁ ଘଁଇଆ, ଚପା ଚପା ସ୍ୱରରେ ଘୋଷଣା କରୁଥାଏ :

"ଶୁଣ ରେ ଶୁଣ, ତାର ବାଣୀ—ଯିଏ ଉଠିଛି ଆଜି ଊର୍ଦ୍ଧ୍ୱକୁ । ଶୁଣରେ ପୃଥ୍ୱୀର ଲୋକଗୁଡ଼ିକ, ଭଲ ମଣିଷଗୁଡ଼ିକ ଦୁନିଆର ।"

ତା' ପରେ ଗମ୍ଭୀର ସ୍ୱରରେ ଅଭିନୟ କରୁଥାଏ, ଅନ୍ତୃପ୍ତି କରୁଥାଏ ରକ୍ତ ଶୀତଳିଆ, ଭୟଙ୍କରିଆ ଅର୍ଥହୀନ ଗୀତରେ ।

ଏଠି ମୁଁ ବସିଛି ଗ୍ରହପରେ ମୋର
ଚଢ଼େଇଛି ପଣ ଅଗ୍ନି ତାଳରେ,
କେହୁ ଗୋଳମାଳ କରୁନ କାହିଁ ମୁଁ
ଶୋଇଲେ ଚେଇଁଲେ ଯଦ ବା ସେଗୁଡ଼ା
ଯେତେ ଅଯଥା
ସ୍ୱେବାଲ୍ଟ ମୋ ଦେହ ମାଉଁସ ପୁଲାକ
ଏହି କାଳରେ !

"ନା, ନା ଦମ୍ଭ ହୁଏଉନ, ଦବ ଯାଉନ, ଛୁଟୁଛ ।" ଶ୍ରୋତାଏ ତାକୁ ବାହାବା ଜଣାଇଲା ଭଳି କହୁଥାନ୍ତି ଖୁସି ।

ବେଳେବେଳେ ପ୍ୟାଭେଲ୍ ଆଉ ମୁଁ ଚଢ଼ିଯାଉଥାଉ ତା ସ୍କନ୍ଧ ଉପରକୁ ଟଣାଓଟରା ଖୁସିରେ, ଆମୋଦଆ ସ୍ୱରରେ । ଆମକୁ ଅଭିବାଦନଟା ଜଣାଇ କହୁଥାଏ ସେ—

"କଣ ଦେଇ ଚର୍ଚ୍ଚା କରିବ ରେ ତମର ? ବନ୍ଧୁ ତୁହେଁ, ସ୍ନେହର ସାଥୀ ତୁହେଁ ମୋର ! କେମିତି ଲାଗିବ ତମକୁ ? ଭଲ ଲାଗିବ ନା—ଚମତ୍କାର ଚଟକା ଝିଟିପିଟିଟାଏ !"

ଧୀରେ ଧୀରେ ଅତି ଧୀରେ ଧୀରେ, ମନ୍ଥର ଗତିରେ ଆସୁଥାଏ ମୃତ୍ୟୁ— ଏହା ହିଁ କୋଣ୍ କୋଣ୍ ଖାଇଯାଉଥାଏ ତାକୁ । ଅସ୍ତବ୍ୟସ୍ତ ହୋଇଯାଉଥାଏ ତାର ଶିରାଗୁଡ଼ାକ ।

"ଲାଗୁ ଛୁ, ମରିବ ନାହିଁ ମୁଁ ! ମରଣ ନାହିଁ ମୋର !" ଅଭି ଛଳନା କରି ଖୋଲାଖୋଲି ସ୍ୱରରେ କହି ଉଠୁଥାଏ ସେ ।"

ସାମନାରେ ମୃତ୍ୟୁ ! କେଡ଼େ ନିର୍ଭୟରେ ଥାଏ ସେ । ତାର ନିର୍ଲଜ୍ଜତା ହିଁ ଭୟାତୁର କରିଦେଇଥାଏ ପ୍ୟାଭେଲ୍‌କୁ । ଶୁଷ୍କ ଅଧରେ ଚେଇଁ ଉଠି ଫୁସ୍ ଫୁସ୍ ହୋଇ କହୁଥାଏ ସେ ମୋତେ ।

"ମ୍ୟାକ୍‌ସିମିର୍" ! ସ୍ୱଳିଲେ ବୋଧେ ସେ । ଏମିତି ଗୋଟିଏ ସ୍ୱରରେ ସ୍ୱଳିଯିବ ନିଶ୍ଚୟ । ଆମେ ଶୋଇଥିବା ଏଠି, ଏମିତି । ହେ ଭଗବାନ ! ମଲା ମଣିଷକୁ ମୋର କି ଡର ଯେ କାହିଁକି !

ନଇଲେ ବା ଶୁଣାଉଥାଏ ଗୁନ ଗୁନ !

"କାହିଁକି ଯେ ବଞ୍ଚି ରହିଲା ସେ । ବଞ୍ଚି ରହିବାକୁ ହେଲା ସତେ । କୋଡ଼ିଏ ନ ପୂରୁଣୁ ମରିବାକୁ ହେଲା ଯଦ !"

ଦିନେ ଜ୍ୱର ଘୋରରେ ମତେ ହଲେଇ ଉଠେଇ ଦେଲା ସେ ପ୍ୟାଭେଲ । ଉତ୍ସବେ ଡୋଳା ଦି'ଟା ବାହାରି ପଡ଼ୁଥାଏ ଯେମିତି ତା ଆଖିରୁ ।

"ଶୁଣ୍ ! କାନ ପାତ,—ଶୁଣ୍" ।

ଶୁଭୁଥାଏ, ଛାତ ଉପରେ ଡାଭଡ଼ଭର ସ୍ୱର ପଡ଼ ପଡ଼ ଆସିଥାଏ । ସଅଁ ସଅଁ ନିଃଶ୍ୱାସ ପେଲି ହେଉଥାଏ—କିନ୍ତୁ ଶୀଘ୍ର ଶୀଘ୍ର ଭୁକ୍ତୁ ଭୁକ୍ତୁ ହେଉଥାଏ କେତେ ଦୁଷ୍ଟ ସ୍ୱରରେ ।

"ହେ ଏଇଠି ଏଇଠି ମିତ୍ର ଆମକୁ ! ଏଇଠି ଦଅ ହେ ।"

ତା ପରେ ହୁକ୍କା ଉଠିଲା ତା'ର ।

"ଘୁଲିଗଲା ସେ, ଯିବା ଉପରେ ଯତ, ଭଗବାନଙ୍କ ଗୁଣ ଦେଖିବୁ ରଃ ।" ଅସମ୍ଭାଳ ଉତ୍ତେଜନାରେ ଥରକିନ କହିଲା ପ୍ୟାଭେଲ ।

ସେଦିନ ଦିନଟାଯାକ ଆମ ଅଗଣାରୁ ଗଡ଼ିଆକୁ ଗାଡ଼ିକୁ 'ଗାଡ଼ି ବରଫ ଗଦାକୁ ଗଦା ବୁହାହୁଥାଏ ମୁଁ । ଦେହମୁଣ୍ଡ ଭିଜି ପଡ଼ୁଥାଏ ମୋର କ୍ଳାନ୍ତିରେ । ନିଦ ଛଡ଼ା ଆଉ କିଛି ବୁଝୁଁ ନ ଥାଏ ମୁଁ ।

ତଟେ, ତଟେ ଯୀଶୁଙ୍କ ଦ୍ୱାହି । ଯୀଶୁଙ୍କ ଗୁଣରେ—ଶୁଅନା ଭଲା । କାକୁତି ମିନତି ହୋଇ କହିଲା ପ୍ୟାଭେଲ "ଶୁଅନା ଭଲା ।"

ହଠାତ୍ ତେଲିପଡ଼ା ପାଗଳଙ୍କ ପରି ପାଟି କରି ଉଠିଲା !

"ଉଠ୍—ଉଠ୍ ! ଘୁଲିଗଲା ଡାଭଡ଼ଭ୍ ! ଘୁଲିଗଲା ରେ !"

କେତେ ଜଣ ଉଠିବସିଲେ, କେହି କେହି ବିଛଣାରୁ ଓହ୍ଲାଇଲେ ଚଡ଼ମିଡ଼ ହୋଇ ପଚାରିଲେ କଣ ହେଲା ! କଣ ଘଟିଲା ।

ଖଟ ଉପରକୁ ଚଢ଼ିଗଲା କାପେନଦ୍ୟୁଖିନ । ବିମୂଢ଼ ହୋଇ ଆଶ୍ଚର୍ଯ୍ୟରେ କହି ଉଠିଲା !

"ଆରେ ସତେ ତ ! ଲାଗୁ ଚ ମରିଗଲା ପରି ! ଯଦିଓ ଉଷ୍ମ ଟିକିଏ ଅଛି ଦେହରେ ଏବେ ବି ।"

ଚୁପ ପଡ଼ିଗଲେ ସମସ୍ତେ । ଝିଙ୍ଗାରେଭ କ୍ରୁଶ ଚିହ୍ନ ଆଙ୍କିଲାଗିଲା ଛାତିରେ, କମ୍ବଳଟାକୁ ଘୋଡ଼େଇ ହୋଇ ପଡ଼ିଲା—ଚାଣିଚୁଣି କହିଲା—

"ହେ । ଶାନ୍ତି ପାଉ ! ଶାନ୍ତିରେ ରହୁ ଆତ୍ମାଟି ତାର !"

"ଆରେ ଭଲ ହେବ, ବାଟ ଘରକୁ ବୋହି ନେଇଯିବାଟା ତାକୁ !" କିଏ ଜଣେ ପ୍ରସ୍ତାବ ଦେଲା ।

ତଳକୁ ଓହ୍ଲାଇ ଆସି କାପେନ୍‌ଦ୍ୟୁଂଶୀନ ଝିଙ୍କଳ ବାଟେ ଗ୍ଲଡ଼ିଲ ପଦାକୁ – କହିଲ.:

"ସକାଳ ହେଉ, ସକାଳ ଯାଏ ରହୁ ଯେ ସେଇଠି—ବସିଥିଲ ବେଳେ କେବେ ଯେ ବାଟ ରୋକନ୍ତ—ବାଧା ହୋଇ ଯିବାଆସିବା ବାଟରେ ।"

ତଳଆଟେରେ ମୁହଁ ମାଡ଼ିଦେଲ ପ୍ୟାଭେଲ । ଶୁଭିଲ ଯୁଁଉ ଯୁଁଉ କାନ୍ଦଣା ତାର ।

ଏମିତ ଉଠିଲ ନାହିଁ ସେ, ସୀନାନଭର ନଦ ଖ୍ରଂକିଲ ନାହିଁ, କନ୍ତୁ ।

# ପନ୍ଦର

ବରଫ ତରଳଲ ·ବଲବାଡ଼ି ପଡ଼ାଆରେ—ତରଳ ତରଳ ଶୀତ ରତୁ ଆକାଶର ମେଘ ଝଣବାକୁ ଲାଗିଲ । ଓଦା ଓଦା ତୁଷାର ଆଉ ବର୍ଷା ଆକାରରେ ଟୋପିଟୋପି ହୋଇପଡ଼ିଲ ଭୂଇଁ ଉପରେ । ଆନ୍ତ୍ରିକ ଚଲାବୁଲା କରିବା ପାଇଁ ସୂର୍ଯ୍ୟ ଅଧିକା ସମୟ ନେଲ । ଉଷୁମୁକଆ ହୋଇଆସିଲ ପବନ । ମନେହେଲ ଆସି-ଯାଇଛି ବସନ୍ତ (ଗ୍ରୀଷ୍ମ) କନ୍ତୁ ଖେଳଖେଳକା ଟୂପ୍‌ଟୁପ୍ ଦେହଲୁଚ୍ଚ ଦେଇଚ ସହରରୁ ଦୂରରେ—ବାହାରେ କ୍ଷେତବାଣ ପଡ଼ାଆରେ, ଛପି ଛପି ସ୍ତୁହୁଁଚ—ପ୍ରବଳ ବେଗରେ ଡେଇଁ ଡେଇଁକା ଧାଇଁ ଆସିବା ଆଗରୁ । ଗଳ ରାସ୍ତାଗୁଡ଼ାକ ଢାଙ୍କି ହୋଇଗଲ ଲାଲ-ବାଦାମୀ କାଦୁଅରେ—ଟିକ ଟିକ ପାଣି ଧାରୁଟିମାନ ·ସୁରୁସୁରୁ ହୋଇ ଗ୍ଲଲ ରାସ୍ତା ଗୁଡ଼ିକରେ କରେ କରେ । ଘରଚଟିଆ ଚଢ଼େଇସବୁ କ ଆନନ୍ଦରେ ଡେଇଁ ଡେଇଁ ଉଡ଼ିଲେ । ଆରେସ୍ତାନ୍ ସ୍କୋୟା ଛକରେ ବରଫ ବଗଲଡ ଜାଗାଗୁଡ଼ିକ ମନ୍ଦା ମନ୍ଦା ଠାଆକୁଠାଆ ଚଞ୍ଚଳ ହୋଇଉଠିଲେ । ଅଥସ୍ତ ହେଲେ ଲୋକେ ଘରଚଟିଆଗୁଡ଼ିକ ପଣ । ବସନ୍ତର ମର୍ମର ଧ୍ୱନକୁ ବୁଡ଼ାଇ ଦୂରରେ ବ କାହିଁ ବାଜଉଠିଲ ଚେଣ୍ଟେନ ଉତ୍ସବର ଘଣ୍ଟା—ବାଜଉଠିଲ ବାଧାହୀନ ଭାବରେ ଥରେ ହେଲେ ତୁନ ନ ପଡ଼ି । ଭୋରରୁ ରାତଅଧ ଯାଏ, ହୃଦସ୍ପଗୁଡ଼ିକ ଥରାଇ ଥରାଇ ମୃଦୁ କମ୍ପରେ ଆଘାତରେ, ଗୁଞ୍ଜନରେ ଘଣ୍ଟାଗୁଡ଼ିକର ବୁଢ଼ାବୁଢ଼ୀଙ୍କର ସ୍ୱର ଭଳ ଠିକ୍ କଥାଭଳ—ଛପି ଛପି ରହିଥିଲ ଗୋଟାଏ ବ୍ୟଥା, ଗୋଟିଏ ଆଘାତ—ଯତେ ଯେମିତ ଘଣ୍ଟାଗୁଡ଼ିକ କହୁ କହୁ ବାଜୁଥିଲେ ଅବଶ୍ରାମ—ଉଦାସ ବଷଣ୍ଣତାରେ କରୁଣ ବଷାଦରେ ।

"ଅ ···ଅ···ଅନେକ—ଅନେକ ଯୁଗ ଆଗେ ଅ ··ଅ···ଅନେକ···"

ମୋର ନାମକରଣ (ଜନ୍ମଦନ) ଦନ କାରଖାନା ମତେ ଉପହାର ଦେଇଥିଲ ଶ୍ରେଷ୍ଠ ଗୋଟିଏ ପଟଛବ । ମନୋରମ ଭାବରେ ଚଚ୍ଚିତ ହୋଇଥାଏ ପଟଚଣ୍ଡିକ—ଭଗବତ ପୁରୁଷ ଆଲେକ୍‌ସିଙ୍କର । ଉପହାର ଦଆଗଲବେଳେ

ଝିଖାରେଭ ଗମ୍ଭୀର ଭାବରେ ଦେଇଥିଲା ଦୀଘ ବକ୍ତୃତାଟିଏ— ଯାହାକୁ କେବେହେଲେ ପାସୋରିପାରି ନାହିଁ, ପାସୋରି ପାରିବ ନାହିଁ ।

"କିଏ ସେ ତୁ ? କେଉଁଠିଏରେ ତୁ ?" ଭ୍ରୂକୁ ଉପରକୁ ଟେକି ଟେକି ଦେଇ କହିଲା ସେ ଝିଖାରେଭ ଟେବୁଲଟିକୁ ଠୁକ୍ ଠୁକ୍ କରି ଅଙ୍ଗୁଳିରେ । "ଏମିତି ଟିକିଏ ଗୁଣ୍ଡେ ବୋଲି ପିଲାଟିଏ—ଛେଉଣ୍ଡ଼ିଟିଏ ତେର ବର୍ଷର—ଆଉ ମୁଁ ? ମୋ ବୟସ ତ ଚାରିଗୁଣ ତୋ ବୟସର । ମୋର ସ୍ନେହ ନିଅ ଜଣାଉଛି ତୋ ପ୍ରତି ଜଣାଉଛି ସମସ୍ତଙ୍କୁ ! ଦାୟିତ୍ୱବାନ୍ ତୁ । ପ୍ରଶଂସାଟିକ ମୋର ତୋ ପାଇଁ, ଜୀବନଆଡ଼ୁ ମୁହଁ ଫେରାଇ ନେଉନୁ ତୁ (ବିମୁଖ ହେଉନୁ ଜୀବନ ପ୍ରତି), ସିଧାସଳଖ ସାମ୍ନା କରୁଚୁ ତାକୁ, ଜୀବନକୁ । ଏହିଆ ଏହିଆ ହିଁ ପନ୍ଥା—ସବୁବେଳେ ସାମ୍ନା କର ଜୀବନକୁ— ସାମ୍ନା କର ସିଧାସଳଖ ।

କହିଲାଗିଲା ସେ ଭଗବାନଙ୍କ ଦାସ ଆଉ ତାଙ୍କ ସେବକମାନଙ୍କ ସମ୍ପର୍କରେ । କିନ୍ତୁ ଟିକିଏ ହେଲେ ବା କାହିଁକି ବୁଝିପାରିଥାନ୍ତି ଦାସ ଆଉ ସେବକ ମଧ୍ୟରେ ତଫାତ୍‌ଟା ଥିଲା କେଉଁଠି । ସମ୍ଭବତଃ ସେ ନିଜେ ବି ଜାଣି ନ ଥିଲା ବୁଝି ନ ଥିଲା ତଫାତ୍‌ଟା କଣ ! ବଡ଼ ମାଜା—ବଡ଼ ନିଷ୍ପ୍ରାଣ ଥିଲା ବକ୍ତୃତାଟା । ତାକୁ ଥଟ୍ଟା କରି ଲଗିଲେ ସମସ୍ତେ ସେଠି—ଆଉ ମୁଁ ? ମୁଁ ଛିଡ଼ାହୋଇ ରହିଥାଏ ପଟି ଛବିଟିକୁ ଧରି ଗଭୀର ଭାବରେ ଆବେଗ ଆନ୍ଦୋଳିତ ହୃଦୟରେ । କେମିତି ଗୋଟାଏ ଅଡ଼ୁଆ ଅଡ଼ୁଆ ଅବସ୍ଥାରେ ପଡ଼ି, କଣ କରିବି କିଛି ଜାଣି ନ ପାରି ଠଉରେଇ ନ ପାରି । ଶେଷରେ ଧୈର୍ଯ୍ୟ ହରାଇ ଉତ୍ତ୍ୟକ୍ତ ହୋଇ ପାଟିକରି ଉଠିଲା କାପେନ୍‌ଦ୍ୟୁଖୀନ— ପାଟିକରି ଉଠିଲା ସେଇ ବାଗ୍ମୀ ଲୋକଟା ଉପରେ !

"ଶ୍ରାଦ୍ଧରେ ମନ୍ତ୍ରପଢ଼ା ଚାଲିଚି ନା କଣ ? ଶୁଭୁଚି ଯେମିତି କିଏ ମରିଯାଇଛି, ପ୍ରାର୍ଥନାଟା ଜମିଚି ବେଶ୍ । ବନ୍ଦକର, କହୁଚି ବନ୍ଦକର । ଦେଖ୍ କାନ ଦି'ଟା ନେଳି ପଡ଼ି ଗଲାଣି ତାର ।"

ଆଉ ତା ପରେ, ସେ ନିଜେ ହିଁ ମୋର କାନ୍ଧକୁ ଆପୁଡ଼େଇ ଆପୁଡ଼େଇ ପ୍ରଶଂସା କରିଲାଗିଲା ମତେ ।

"ସବୁଠୁ ବଳି ଭଲ ଗୁଣଟି ତୋର—ଭଲ କଥା । ସମସ୍ତଙ୍କର ଆପଣାର ତୁ । ସମସ୍ତଙ୍କର, କିନ୍ତୁ ସମସ୍ତଙ୍କର କୃତ୍ୟାତ୍ମ୍ବର୍। ଏଇଟି ହିଁ ସବୁଠୁ ବେଶି ମନକୁ ପାଏ ମୋର, ଭଲଲାଗେ ମତେ । ହାତ ଉଠେ ନି ତୋ ଦେହରେ ଟିପ ଛୁଆଁଇବାକୁ, ମାରିବାକୁ, ମାରିବାକୁ ତତେ । ତୁଣ୍ଡ ଫିଟେ ନି ଗାଳିଦେବାକୁ, ଧଥ୍କାରିବାକୁ, ଏମିତିକି ଯେତେବେଳେ ମାଡ଼ ଖାଇବାଟା, ଗାଳି ଖାଇବାଟା କାମର ତୁ, ପାଉଣା ହୁଏ ତୋର ସେତେବେଳେ ବି ।"

ପ୍ରତ୍ୟେକଙ୍କର ଚକଚକ ଉଜ୍ଜ୍ୱଳ ଆଖିଗୁଡ଼ିକ ବୁଲିପଡ଼ିଲା ମୋ ଆଡ଼କୁ, ସେ ଉଜ୍ଜ୍ୱଳତାରେ, ସେ ଦୀପ୍ତିରେ ବୁଝିଲେ ସେମାନେ ମତେ କେଡ଼େ ଅନ୍ଦରରେ ସ୍ନେହରେ—ଅଙ୍କାକର ଲଗିଲେ ମୋର ଅଜୁଆ ଅଜୁଆ ଭାବଟାକୁ । ଉତ୍ସବଟା—ସେଇ ଉତ୍ସବଟା ଯଦି ଚାଲିଥାନ୍ତା ଆଉ କିଛି ସମୟ ଖୁବ୍ ସମ୍ଭବ ! କେବଳ କାନ୍ଦ ଉଠିଥା'ନ୍ତି, କାନ୍ଦ ଉଠଥାନ୍ତି ଆନନ୍ଦରେ—ଆନନ୍ଦରେ ଅନୁଭବ କରି—ଆରେ, ଏଇ ଲୋକଗୁଡ଼ିକ ପାଖରେ ମୋର ଯେ କିଛି ଅର୍ଥ ଅଛି, ମୂଲ୍ୟ ଅଛି ! ଅଥଚ ସେଦିନ— ସେଇ ଉତ୍ସବ ଦିନ ସକାଳେ ହିଁ ଦୋକାନ ସହକାରୀଟା କହୁଥାଏ ପିଓନ ଭାଇଲିୟେଭକୁ ମତେ ଦେଖେଇ ଦେଖେଇ ମୁଣ୍ଡ ହଲେଇ ହଲେଇ ମୋ ଆଡ଼କୁ ।

"ଖରାପ, ଅତି ଖରାପ ଟୋକାଟା, ନକମା ଟା ! କାମକୁ ନୁହେଁ, କୌଣସି କାମକୁ ନୁହେଁ ।"

ସେଦିନ ସକାଳେ ମୋର ସାଧାରଣିଆ ନିତିଦିନିଆ ଭାବରେ ମୋର ଯାଇଥାଏ ଦୋକାନଗୁଡ଼ାକୁ ବିଜ୍ଞାପନୀବାଣ୍ଟିକୁ । ଉପରବେଳା ହେଉ ନ ହେଉଣୁ ଖରା ମଳଣ ପଡ଼ିଆସିଥାଏ କି ନାହିଁ ସେହି ଦୋକାନ ସହକାରୀ କହୁଥାଏ ମତେ :

"ଯା ଘରକୁ ଯା—ଖମାର ଘର ଛାତ ଉପରୁ ଫାଉଡ଼ାରେ ବରଫଗୁଡ଼ାକୁ କାଢ଼ ଯା—ଭର୍ତ୍ତି କର ଯା ଶୀତଳ ଭଣ୍ଡାର କୋଠରୀଟାରେ ।"

ଜାଣି ନ ଥାଏ ସେ, ସେଦିନଟି ଥିଲା ମୋର 'ନାଆଁ ଦିଆର' ଦିନ, ଜନ୍ମର ଦିନ – ଭାବିଥିଲି ଜାଣି ନ ଥିଲେ କେହି ବୋଲି କେହି ।

ଶେଷ ହୋଇଯିବା ପରେ ଅଭିନନ୍ଦନ ଉତ୍ସବଟା—ଅଭିନନ୍ଦନ ବୃଷ୍ଟି ମୋ ଉପରେ କାରଖାନାଟିରେ—ପୋଷାକପତ୍ର ଉତ୍ତାରି ବଦଳାଇ ଧାଇଁଗଲି ଅଗଣାକୁ, ଚଢ଼ିଗଲି ଖମାର ଘର ଛାତ ଉପରକୁ ।

ସେ ବର୍ଷ ଜାଡ଼ଦିନରେ ଏତେ ପରିମାଣରେ ବରଫ ପଡ଼ିଥିଲା ଯେ ସେଗୁଡ଼ାକୁ ଫାଉଡ଼ାରେ ଖୋଳି ବାହାରକୁ ଫିଙ୍ଗିଦେବା ପାଇଁ, କିନ୍ତୁ ଏଡ଼େ ଉତ୍ତେଜିତ ହୋଇ ରହିଥିଲି ମୁଁ, ଭୁଲିଗଲି ଛାତ ଉପର ଚୁଙ୍ଗି ଦ୍ୱାରଟା ଖୋଲିବା ପାଇଁ । ଫଳରେ ଫାଉଡ଼ାରେ ଖୋଳି ଫିଙ୍ଗି ଲାଗିଲି ଯେଉଁ ବରଫଟିକେ—ସେଥିରେ ହିଁ ପୋତିହୋଇ ପଡ଼ିଲା କବର । ପାଇଗଲି ସେ ଚୁଙ୍ଗି ଟା ! ଧରିପାରିଲି ଯେତେ-ବେଳେ ଭୁଲଟାଏ କରିଛି ମୁଁ, ସଙ୍ଗେ ସଙ୍ଗେ ବରଫକୁ ଖୋଳି ବାହାର କରିବାକୁ ଲାଗିଗଲି ଚୁଙ୍ଗି ଦ୍ୱାରଟାକୁ । କିନ୍ତୁ ବରଫ ଏତେ ଓଦା ଏମିତି ଶକ୍ତଭାବରେ ଜମାଟ ବାନ୍ଧିଥାଏ—କାଠ ଫାଉଡ଼ାରେ ଖୋଳୁଥାଏ ମୁଁ ଲୁହା ଫାଉଡ଼ା ନ ଥାଏ ପାଖରେ । ଭାଙ୍ଗିଗଲା ସେଇଟା ବରଫ ଓଜନରେ । ସେତିକିବେଳେ ଠିକ୍ ଅଫି

ହାବୁଡ଼ିଗଲା ଦୋକାନ ସହକାରୀଟା । ଋଷୀୟ ଜଗଟାର ମର୍ମକୁ ଆହୁରି ଦୃଢ଼ଭାବରେ ପ୍ରତିପାଦନ କରି ଯେମିତି ସୁଖ ପଛେ ପଛେ ଲାଗିଥାଏ ଦୁଃଖ ।"

"ହୁଁ !" ରାଗରେ ଗର୍ଜି ଉଠିଲା ଦୋକାନ ସହକାରୀଟା ମୋ ସାମନାକୁ ମାଡ଼ିଆସି । "ଚମତ୍କାର କାମିକାଟାଏ ନା ତୁ । ଯା ବେ ଯମ ମୁହଁକୁ ଯା । ତୋର ଏ ପାଗଳା ମଥାର ଖପୁରିଟାକୁ ଯଦି ଫଟେଇ ନ ଦେଇଛି—ଉଡେଇ ନ ଦେଇଛି ମୁଁ ।"

ଫାଉଡ଼ାର ଭଙ୍ଗା ବେଣ୍ଟଟାକୁ ଉଠେଇ ନେଇ ତଳୁ ବୁଲେଇଲା ଉପରକୁ ! ଅଡ଼େଇ ଖସିଯାଇ, ରାଗରେ କହିଉଠିଲି ମୁଁ …

"ତୋର ଅଗଣା ସଫାଳି ହୋଇ ଆସିନି ମୁଁ, ନିଜକୁ 'ଭଡ଼ା' ଲଗେଇନି ମୁଁ ବୁଝିଲୁ ।"

ଛାଡ଼ିଲି ସେ ଭଙ୍ଗା ବେଣ୍ଟଟାକୁ ମୋ ଗୋଡ଼କୁ ଲକ୍ଷ୍ୟକରି, ଗୋଡ଼ରେ ବରଫ ପୁଲାଏ ଧରି ସିଧାସଳଖ, ଛୁଟିଦେଲି ତା ମୁହଁକୁ । ଥୁଉ ଥୁଉ କରି ଦୌଡ଼ି ପଳେଇଲା ସେ । ଆଉ ମୁଁ ? ଆଉ କଣ କାମରେ ମନ ଲାଗନ୍ତା ମୋର । କାମଫାମ ଛାଡ଼ି ଦେଇ ଫେରିଗଲି କାରଖାନା ଭିତରକୁ । ମିନିଟ୍ କେତୋଟି ଯାଇଥାଏ କି ନାହିଁ, ଦୋକାନ-ସହକାରୀ-ବାଗଦତ୍ତା-ପ୍ରେୟସୀ—ତୁରତୁର ଅଧୀର ଅଧୀର ଯୁବତୀଟାଏ । କେମିତିକା ନିରସିଆ ନିସ୍ତେଜିଆ ମୁହଁରେ ବାଳଗୁଡ଼ାକ ଯାଲୁଯାଲୁ ତାର, ଉପର ମହଲରୁ ଧାଇଁଆସିଲା ପାହାଚଗୁଡ଼ାକୁ ଡେଇଁ ଡେଇଁ ।

"ମ୍ୟାକ୍ସିମିର୍ ! ଡାକର୍ ତୋତେ, ଡାକର୍ ଉପରେ ମହଲକୁ—ଆ—ଶୀଘ୍ର ।

ନା, ଯିବ ନାହିଁ ମୁଁ । କହି ଜବାବ୍ ଦେଲି ତାକୁ ।

"କଣ କହିଲୁ—ଯିବୁ ନାହିଁ ତୁ ?" ଚୁପ୍‌ଚାପ୍ ଧୀର ସ୍ୱରରେ ପଚାରିଲା ଲରଓନିକ୍ ।

କହିଲି ତାକୁ, ଯାହା ସବୁ ଘଟିଥିଲା । ବିବ୍ରତ ହୋଇ ମୁହଁ ଖାଖି ଖାଖି କରି ନିଜେ ସେ ଉଠିଗଲା ଉପର ମହଲକୁ । ମତେ ଥରଥର ତୁନ୍‌ତାନ୍ ଗଳାରେ କହି କହି—

"ବେଶୀ ଟିକିଏ ସାହସ କଲୁ ରେ ପୁଅ—ବେଶୀ ଟିକେ ।"

କାରଖାନାଟା ଗଣଗଣ କରି ଉଠିଲା, ଦୋକାନ ସହକାରୀଟା ଉଦ୍ଦେଶ୍ୟରେ ଲୋକଙ୍କର ମାଉଁସଛଡ଼ା ଚୌଦପୁରୁଷ ଉଦ୍ଧାରିଆ କଟାହମାରେ ଅଭିଶାପରେ ।

"ଏଥର ନଷ୍ଟେ ନକାଲଦେବେ ତତେ । ଗୁହ୍ଣିବେ କେମିତ ରକ୍ଷା ପାଇବେ ସେଠୁ ।" କହିଲ କାପେନଦୁ୍ୟଶୀନ ।

ଏହା ଘଟିବ, ଏ କଥା କିନ୍ତୁ—ଏ ଭାବନା କିନ୍ତୁ ଡରେଇ ଦବେଇ ପାରିଲ ନାହିଁ ମତେ । ଦୋକାନ ସହକାରୀଟା ସହିତ ମୋ ସମ୍ପର୍କଟା ଏମିତ ଟାଣହୋଇ ଯାଇଥାଏ, ଆସିଥାଏ ଏକାବେଳକେ ଛିଡ଼ିଲ ଭୁଜିଲ ଅବସ୍ଥାକୁ । ସେ ଯେମିତ ଏକାଳଧଆ ନାଗ୍ରେଡ଼ବନ୍ଧା ସ୍ୱରେ ବଢ଼ି ବଢ଼ି ଯାଉଥିବା ଘୃଣାରେ ନାକ ଟେକୁଥାଏ ମତେ ଦେଖିଲେ । ସେମିତ ମୁଁ ସେଇ ଭାବରେ ପ୍ରତିଶୋଧ ନେବାପାଇଁ ବା ଘଣା କରୁଥାଏ, ନାକ ଛୁଆଡ଼ୁଥାଏ ତା ଗୁଇ ପଡ଼ିଲେ ମୋ ଆଗରେ । କିନ୍ତୁ ସେ ଯେଉଁ ଅଦ୍ଭୁତ ଭାବରେ ବ୍ୟବହାର କରୁଥାଏ ମୋ ପ୍ରତି ତାର ଅଳକୂଳ ପାଉ ନ ଥାଏ ମୁଁ ବୁଦ୍ଧି ବୃତ୍ତି ବଣା ହୋଇଯାଉଥାଏ ମୋର ।

ଜାଣିଶୁଣି ଭାବଚକ୍ର ସେ ପଇସା (ରୁବ୍ଲ) ଗୁଡ଼ାଏ ଏଣେତେଣେ ଛୁଆଡ଼ ବାଆଡ଼ ଦେଉଥାଏ ଚଟାଣ ଉପରେ—ଯେମିତକି ଘର ଓଳେଇଲ ବେଳେ ଦେଖିପାରିବ ମୁଁ ସେଗୁଡ଼ାକୁ । ସବୁବେଳେ ପ୍ରାୟ ଦେଖିଲ ମାତ୍ରେ ମୁଦ୍ରାଗୁଡ଼ାକୁ ଗୋଟେଇ ନେଇ ପକେଇ ଦେଉଥାଏ ଦୋକାନ ପଟା ଉପରେ ଭିଖାରିଙ୍କ ଲାଗି ରଖାହୋଇଥିବା କପ୍‌ରେ । ଶେଷରେ ଦିନ ଅନୁମାନ କରିପାରିଲ କାହିଁକି ସେ ଯେମିତ ଏଣେତେଣେ ଘରଟାରେ ଗ୍ରୁଟି ଛୁଟି ଦେଉଥାଏ ମୁଦ୍ରାଗୁଡ଼ାକୁ, କହିଲ ତାକୁ –

"ମୋ ଆଗରେ ପଇସାଗୁଡ଼ାକୁ ବିଞ୍ଚିଦେଇ କିଛି ପାଇବୁ ନୁ ରୁ ।"

ହଠାତ୍ ଭାବ ନ ଥିଲ—ତଆର ନ ଥିଲ । ଧରାପଡ଼ିଗଲେ କଥାଟା—ଲାଲ ପଡ଼ିଗଲା ମୁହଁଟା ତାର ! ପାଟିକରି ଉଠିଲ ମୋ ଉପରେ ।

"କେତେ ବଡ଼ପରେ ତୋର—ବାହାରଚୁ ମତେ ପାଠ ପଢ଼େଇବୁ ବୋଲି, ଏଁ । ନା ଜାଣେ ମୁଁ, କଣ କରୁଚ ଜାଣେ ।" କିନ୍ତୁ ସଙ୍ଗେ ସଙ୍ଗେ ସେ ଏ କଥା ପଦକରେ ତାର ମିଶେଇଦେଲ, କାହିଁକି ଭାବୁଚୁ ଯେ ମୁଁ ଜାଣିଶୁଣି ଗୋଟାଏ କିଛି ମତଲବ ରଖି ଏହା କରୁଚ ? ସେଗୁଡ଼ାକ ତ ଏମିତ ଗଳିପଡ଼େ ପଟଣାକମେ, ପଡେ ଚଟାଣ ଉପରେ ।

ଦୋକାନରେ ବହି ପଢ଼ିବାକୁ ମନା କରିଦେଲ ମତେ । କହିଲ—

"ତୋ ଭଳିଆଙ୍କ ପାଇଁ ସେଇଟା ନୁହେଁ—ବହି ପଢ଼ାଟା ! ମନେମନେ ହୁଏତ ଧରିନେଇଚୁ ଗୋଟାଏ ଧର୍ମଜ୍ଞ ପଣ୍ଡିତଟାଏ ହେବୁ, ନାଇଁ ? ଏଃ ପରପୋଷା —ପର ଖଲଚଟା—ଶୋଷାଟା ।"

ପଇସାପଇ ଗ୍ରେଶରେ ପକେଇବ, ଧରିବ ମନେ । ଏ ଚକ୍ରାନ୍ତ, ଏ ଚେଷ୍ଟା ଚଲେଇଲ ସେ ଅନବରତ—ବୁଝିପାରିଲ କୋଡ଼ିଏ ପଇଁଚିଶ ଯେ ଦେ ୯ଳ ଛଳେ

ବେଳେ ମୁଁ ଗଡ଼ାଗଡ଼ି ଯାଇ ପଶିଯାଏ କେଉଁଠି କେଉଁ ଫାଟ ବା କଣାରେ—ଚଟାଣଟାରେ—ସେ ଅଭିଯୋଗଟା ଆଣିବ । ମୁଁ ଖୋଜୁଥିଲି କୋଡ଼ିଏ ପଇସିଟାକୁ । ଆଉ ଥରେ ତାକୁ ସୂଚେଇଦେଲି—"ଛାଡ଼ ଯେଉଁ ଖେଳ ଖେଳୁଛୁ ମୋ ସାଥିରେ ।" କିନ୍ତୁ ଯେଉଁଦିନ କହିଲି ତାକୁ ଏତକ, ସେହିଦିନ ଠିକ୍—ମଧ୍ୟଖଟିଟିରୁ ତତଲା ପାଣିଭର୍ତ୍ତି ଚାହା କେଟଲି ନେଇ ଫେରୁଥାଏ—କାନରେ ଆସି ବାଜିଲା – କହୁଥାଏ ସେ ଆମ ପଡ଼ୋଶୀ ଦୋକାନ ମାଲିକର ସହକାରୀଟାକୁ ।

"ଦେଖ-ଏମିତି କର—ଯେମିତି ଜଣାପିବ ସେ ଖୋରେଇଚ ବାଇବଲର ସ୍ତୋତ୍ର ବହିଟା । ଖୁବ୍ ଶୀଘ୍ର ଆସିଯାଇଚ ନୂଆ ସ୍ତୋତ୍ର ବହିଗୁଡ଼ିଏ—ବୁଝିଲ—ସୁବିଧା ଛନପେଟି ।"

"ଧରିପାରିଲି ସେ ଦୁହେଁ କଥା ହେଉଥିଲେ ମୋରି ସମ୍ପର୍କରେ କାହିଁକି ନା ମୁଁ ଘରକୁ ପଶିପିବା ମାତ୍ରେ ଦେଖିଲି କେମିତି ବିବ୍ରତିଆ ଅଡୁଆରେ ପଡ଼ିଲି ସ୍ୱବଟାର ସଙ୍କେତ ଫୁଟିଉଠିଲା ତାଙ୍କ ଗତିବିଧିରୁ ।"

ପଡ଼ୋଶୀର ସେ ସହକାରୀଟା 'ଦୁର୍ବଳିଆ—ଶୁଖିଲା ଧଡ଼ିଆ ଜୀବଟାଏ । ଚଗୁରିଆ ଆଖି—ବେଳେବେଳେ ଯାହା ନମୁଦ ହେଉଥିଲା କାମରେ । ଭଲ ସହକାରୀଟାଏ ବୋଲି ଯେଜା ହେଲିବେଲକୁ ପାଳିଟି ଯାଉଥିଲା ମାତାଲି । ଏଣୁ 'ମାତଲାମି' ଆରମ୍ଭ କରିଦେବା ମାତ୍ରେ ମାଲିକ ନିକାଲି ଦେଉଥିଲା ତାକୁ—ନୌକରିରୁ । ଅବଶ୍ୟ ପୁଣି ତାକୁ ଫେରାଇ ନେବା ପାଇଁ, ନିଯୁକ୍ତ କରିବା ପାଇଁ କାମରେ । ବାହାରକୁ ଗୋଟିକଯାକ ବିନମ୍ର ଅବତାର—ମାଲିକର ମନ ଜଗିବାକୁ ତିଆର । ସେ ପାଟି ନ ଖୋଲିଲା ଆଗରୁ ତା ଇଚ୍ଛାଟା ଜାଣି ବାରିନେଇ ପୂରା କରିବାକୁ ବସେ କିନ୍ତୁ ଓଠକଣରେ ଛପେଇ ରଖିଥାଏ ନାକଟେକା ହସର ରେଖା—ଖାଖା ଖାଖା ଖ୍ୱେଖା ଖ୍ୱେଖା ମନ୍ତବ୍ୟ ଝାଡ଼ିବାକୁ ଛାଡ଼େ ନାହିଁ । ଭଲପାଏ ତାହା ହିଁ କରିବାକୁ । ପୋକଖିଆ ରୋଗା ଦାନ୍ତର ଲୋକଙ୍କ ପାଟିରୁ ଦୁର୍ଗନ୍ଧ ବାହାରିଲା ଭଳି ନିଃଶ୍ୱାସଟା ଗନ୍ଧଉଥାଏ ତାର—ଯଦିଓ ତାର ଦାନ୍ତଗୁଡ଼ାକ ଥାଏ ହାଡ଼ପରି ଧଳା ଆଉ ଶକ୍ତ ।

କିଛି ଦିନ ଆଗରୁ ମୋର ଗୋଟାଏ ଅଭିଜ୍ଞତା ହୋଇଥାଏ ତା ସେନି, ତା ସହିତ କାରବାରରେ । ସେଥିରୁ ଅଧିକା କାରଣଟିଏ ମିଳିଯାଇଥାଏ ଆମ ଦୋକାନ ସହକାରୀଙ୍କ ସଙ୍ଗରେ ମିଶି ମୋ ବିରୋଧରେ ଚକ୍ରାନ୍ତ କରିବା ସମ୍ପର୍କରେ ସନ୍ଦେହ କରିବାକୁ ତାକୁ । ଦିନକର ଘଟଣା—ସେ ଆସି ପହଞ୍ଚି ହାଜର ହୋଇଗଲା ମୋ ପାଖରେ—କଣ କହିବାକୁ ଯେମିତି । ହେହେବୋଲା ହସହସ ମୁହଁରେ ହଠାତ୍ ଟେଇ ପକାଇଲା ମୋ ଟୋପିଟାକୁ କିଛି ନ କହି—ଆଉ ଧରି ପକାଇଲା ମୋ ମୁଣ୍ଡର ବାଳକୁ, ପୁଳାଏ । ଭିଡ଼ା ଓଟରି ଲଢ଼େଇ ଲାଗିଗଲା ଆମ ଦୁହିଙ୍କର ।

ହଟେଇ ଦେଇ ସେ ଠେଲି ନେଇଚଲେ ମତେ ଗ୍ୟାଲେରି ପାଖକୁ—ଦୋକାନ ଭିତରକୁ । ସେଠି ଠେଲି ପିଟିଦେବାକୁ ବାହାରିଲି ମତେ ଚଟାଣରେ ଡେରି ଗୋଟାଏ ବଡ଼ ପଟଛବିଟାରେ । ସଫଳ ହୋଇଥାନ୍ତା ଯଦି ସିଏ, ନିଃଶ୍ୱାସରେ ନିର୍ଣ୍ଣିତ ଗ୍ଲଦରେ ପିଟିହୋଇ ଚୂନା ଚୂନା କରି ଦେଇଥାନ୍ତା—ଛବିର କାଚକୁ, ଗୁଣ୍ଡାଗୁଣ୍ଡା କରି ଦେଇଥାନ୍ତା କମକ୍ରୂଟ ଅଂଶତକ, ନଷ୍ଟକରି ଦେଇଥାନ୍ତା ମୂଲ୍ୟବାନ ଆଉ କେତୋଟି ଚିତ୍ରପଟ ବି । କିନ୍ତୁ ତାର ବଳତ କମ୍ । ସହଜରେ ହଟେଇ ଦେଲି ମୁଁ ଆଉ ଚାଟକା ହୋଇଗଲି ଦେଖିଲି ଯେତେବେଳେ ଏଡ଼େବଡ଼ ଦାଢିଆ ଲୋକଟା—ଚଳଚଳ ବୋହିଗଲା ଲୁହ ତା ଆଖିରୁ । କାନ୍ଦିଲାଗିଲା ଚଟାଣରେ ବସିପଡ଼ି ମାଡ଼ଖିଆ ଅବହେଳିତ ନାକଟାକୁ ଆଉଁସି ଅଉଁସି ।

ତହିଁଆର ଦିନ ସକାଳେ ଅମେ ଦୁହେଁ ଥାଉ ଦୋକାନ ପ'ଟିରେ ଦୁହିଙ୍କ ମାଲିକ ଗ୍ଲଲଯାଉଥାନ୍ତା ଆସି ଆପୋଷି ମେଲାପି ବନ୍ଧୁଭଳି ସ୍ୱରରେ କହିଲା ମତେ ନାକଦଣ୍ଡା ଅଭ ଆଖିତଳ ଫୁଲକୁ ପଷିପାଷି ଦାବଦ୍ୱବ ଦେଉ ଦେଉ—

"ତୁ କଣ ଭାବୁଚୁ, ଗୁଏଁ ଗୁଏଁ ମୋ ମନକୁ ଲାଗିଥିଲା ତୋ ସାଙ୍ଗରେ ? ଏଡ଼େ ବୋକା କଣ ମୁଁ ? ଜାଣିଥିଲି ତତେ ପାରିବ ନାହିଁ ମୁଁ, ହଟେଇ ଦେବୁ ତୁ ମତେ । ଦୁବଳାଆଟାଏ ମୁଁ, ସେଥିରେ ପୁଣି ମଦୁଆ । ମାଲିକ ପରା କହିଥିଲା ମତେ—ତା କରିବା ପାଇଁ ।" "ଅଚ୍ଛାକରି ପାହାର ଚଢ଼ା ତା ଉପରେ" କହିଥିଲା— "ଅଉ ଦେଖ୍ ଯେତେ ପାରେ ସେତେ ଭଙ୍ଗାରୁଜା କରୁ ତାଙ୍କ ଦୋକାନର । ବେଶ୍ ଛଡଟା ହେବ ତାହାହେଲେ ତାଙ୍କର । ମୁଁ କାହିଁକି ତା କରିଥାନ୍ତେ— କେବେହେଲେ ଗୁଏଁ କରି ନ ଥାନ୍ତି ସେମିତି । ଦେଖିଲୁ କି ରୂପଟା କରିଦେଇଚୁ ମୋର !"

ଅବିଶ୍ୱାସ କଲି ନାହିଁ ଯାହା କହିଲା ସେ—ତା ପାଇଁ ଦୁଃଖ ଅସିଲା ମନରେ । ଜାଣିଥାଏ ଓଳିଏ ଖାଇଲେ ଓଳିଏ ଉପାସ ରହୁଥାଏ ସେ । ଅଉ ଥାଏ ଗୋଟିଏ ମାଇକିନିଆ ସାଙ୍ଗରେ, ଯିଏ ପିଟୁଥାଏ ତାକୁ । ତଥାପି ପଚାରି ବସିଲି—

"ତତେ ଯଦି କହନ୍ତି ସେମାନେ—କାହାକୁ ବାଡ ଦେବା ପାଇଁ କରିବୁ ତ ?"

"କରେଇ ନେବ ସେ ମୋ ଦେଇ" ଥରକିନା ଉତ୍ତର ଦେଲା ଅତି କରୁଣ ହସଟିଏ ହସି—"ହେଁ ଅଛି ସେ ସାମରଥ କରେଇ ଦେବାକୁ ।"

ଆଉ ଥରେ କେବେ ସେ କହୁଥାଏ ମତେ—

"କପେନ୍ଟି-ପଇସାଟିଏ ବୋଲି ନାହିଁ କେଉଁଠି ମୋ ମୋ ନାଆଁରେ ଛାଞ୍ଚ ନାହିଁ କେଉଁଠି—ଘରେ ଦାନା ରୁଅଏ ନାହିଁ ଖାଇବାକୁ । ଅଉ ମୋର ସେ

ବୁଢ଼ୀଟା, ମରୁବେଳେ ଜଳେଇ ପୋଡ଼ି ଖାଉଚି ମତେ । ତମ ଭଣ୍ଡାରଘରୁ ଯେଉଁ ଅସଲ୍ କଶ୍ମୀରଙ୍କର ଖଣ୍ଡେ ପଡ଼ିଛି ତାକୁ ବିକାବିକି ଦେଇ—ହଁ ଟିକିଏ ଦୟା ହେବ କି ତୋର ମୋ ପାଇଁ । ନଇଲେ ବା ଷ୍ଟୋଳ ବନ୍ଧ ଖଣ୍ଡେ ।”

ଜୋତା ଦୋକାନ ଘଟଣା—ଆଉ ଗୀର୍ଜା ଜଗୁଆଳ କଥା ମନେ ପଡ଼ିଗଲା ମୋତେ । ଭାବିଲି ମନକୁ ମନ—ଇଏ ମୋ ଜୀବନ ନାଟକର ଦୃଶ୍ୟ । ଭାବିଲି ସିନା—ତ୍ରୁଟି ପଡ଼ିଗଲି ନାହିଁ ନାହିଁ କରି ଦେବାକୁ । ପଟମୂର୍ତ୍ତି ଗୋଟିଏ ଆଣି ଦେଇଦେଲି ତାକୁ—କେତେ କାରଣରୁ ଲାଗିଲା ଷ୍ଟୋଳ ବନ୍ଧଟିଏ ଫେରେଇବା—ଗୁଡ଼ାଏ ରୁବଲ ମୂଲ୍ୟର, ଦାମିକା-ଅପରାଧ ହେବ, ଘୋର ଅପରାଧ । ହଁ, ମନେ ହୋଇପାରେ ଅଦ୍ଭୁତ, କିନ୍ତୁ ଏଇଟା କଣ ନୁହେଁ—ଆମର ସବୁ ନୈତିକତାର ମୂଳ ଭିଆହୋଇଛି ବ୍ୟବସାୟୀ କାରବାରର, ହିସାବପତ୍ରର । ଉପରକୁ କେତେ ସରଳିଆ ଆମ ଦଣ୍ଡବିଧି ଆଇନର ପବିତ୍ରପଣିଆ, କିନ୍ତୁ ସେଇଥିରୁ ହିଁ ଫୁଟିପଡ଼େ ସେଇ ଗୁପ୍ତ କଥାଟିକ—ସେଇ ଯାହାର ଆଢୁଆଳରେ ଯାହାର ପଛପଟରେ ଛପି ଛପି ରହି ଉଙ୍କିମାରୁଛି ବିରାଟ ଏକ ଅପରାଧ, ବ୍ୟକ୍ତିଗତ ସମ୍ପତ୍ତି ।

ମୋର ସେଇ ଶ୍ଳେଷ କଥାଟା ମନକୁ ଆସିଗଲା, ଶୁଣିଲି ଯେତେବେଳେ ଆମ ଦୋକାନ ସହକାରୀଟା ଘୋରତେଇ ହୋଇ ମତେଇ ବାଧ୍ୟ କରିବାକୁ ଚେଷ୍ଟିତ ଦସ୍ୟୁର ପାଦଟିକୁ କେମିତି ହେଲେ ମତେ ପ୍ରବର୍ତ୍ତିତ ସେ ଷ୍ଟୋଳବନ୍ଧ ଚୋରିକରିବା ପାଇଁ—କରେଇ ନେଇ ଷ୍ଟେଶଟା ମୋ ହାତରେ । ଚମକି ପଡ଼ିଲି ଡରିଗଲି ମୁଁ । ସ୍ପଷ୍ଟ ଜାଣିପାରିଲି ଆମ ଦୋକାନ ସହକାରୀକୁ ମାଲୁମ୍ ହୋଇଯାଇଛି, ତା' ମୁଣ୍ଡରେ ହାତଟା ବୁଲାଇ ଦୟା ଅଉ ଉଦାରତା ଦେଖେଇ ହୋଇଛି ମୁଁ । ଅନ୍ୟ କଥାରେ କହିଲେ—ପଡ଼ୋଶୀର ଲୋକଟା ବିପଦରେ ପକେଇ ଦେଇଚି ମତେ ।

ଅନ୍ୟ କାହା ମୁଣ୍ଡରେ ହାତ ବୁଲାଇ ଉଦାରତା ଦେଖେଇବାର ଶସ୍ତା ପଣିଆଟା ଆଉ ତାଙ୍କ ଚନ୍ଦାନ୍ତର ଗ୍ରେଟଲୋକଟା ମନରେ ମୋର କ୍ରୋଧ ଆଣିଦେଲା ଯେମିତି । ମୋ ନିଜ ପତି ଆଉ ଦୋକାନ ସମସ୍ତଙ୍କ ପ୍ରତି କେମିତି ଗୋଟାଏ ଘୃଣାଭାବ ସୃଷ୍ଟି କରିଦେଲା ମନରେ ମୋର । ନୂଆ ବନ୍ଧଗୁଡ଼ାକ ଆସି ପହଞ୍ଚିବା ଯାଏ ଖାଲି ସନ୍ତୁଳିହୋଇ ଛଟପଟ ହେଉଥାଏ । ଶେଷରେ ଅବଶ୍ୟ ପହଞ୍ଚିଗଲା ସେଗୁଡ଼ାକ । ଭଣ୍ଡାରଘରେ ଗାଣ୍ଠିରି ଖୋଲୁଥାଏ ସେଇ ବନ୍ଧଗୁଡ଼ାକର । କେଉଁଠୁ ଆସି ଜୁଟିଗଲା ପଡ଼ୋଶୀର ଲୋକଟା । ମାଗିନେଲା ସେଥିରୁ ସେଇ ଷ୍ଟୋଳ ବନ୍ଧଗୁଡ଼ାକରୁ ଖଣ୍ଡେ ।

“କିରେ—ମୋ ମାଲିକକୁ କହିଚ, ନା ତୁ ସେ ପଟିଛିବ କଥା ?” ପଚାରିଦେଲି ଗ୍ରେକ୍ଟୋକ୍ ।

"ହଁ କହୁଚ ।" ଅତି ନଉଦ୍‌ବୁଣିଆ ଭଙ୍ଗୀରେ ମାନିଲି ସେ—"ମୋ ପେଟରେ ତ ଲୁଣ ମିଳାଏ ନା, ଭାଇ ।"

ଗୋଡ଼ହାତ ଚଳିଲି ନାହିଁ, ସ୍ତବ୍ଧ ହୋଇଗଲି ମୁଁ । ବସିପଡ଼ିଲି ତକ୍ତାରେ । ଗୁହିଁ ରହିଲି ତା ଆଡ଼କୁ ଅପଲକ ଆଖିରେ । ଛେପ ଢୋକ ଢୋକ ତରତରରେ ଭୁଟୁରୁ ଭୁଟୁରୁ ହେଲି ସେ । ସେତେବେଳକୁ କଳା ପଡ଼ିଯାଇଥାଏ ଦଶୁଥାଏ ପାଗଳଟାଏପରି—ହା ହତାଶରେ ଏମିତି ବସ୍ତ୍ରଣ ; ଦସ୍ତା ଆସିଯାଇଥାନ୍ତା, ଯିଏ ଦେଖିଥାନ୍ତା ତାକୁ :

"ତୋ ମାଲିକଟା ଠଉରେଇ ନେଲି—ଏ, ନା-ନା ମୋ ମାଲିକଟା କହିଲା ସେ ତୋ ମାଲିକକୁ···"

ସରିଗଲି ଗୋ କଥା ସରିଗଲି—ଯେମିତି ଅନୁଭବ କରି ମୁଁ । ଏ ଲୋକ-ଗୁଡ଼ାକ ଯନ୍ତ୍ରାରେ ପକେଇଦେଲେ ମତେ । ଏବେ ମତେ ପଠେଇଦେବ ନିଶ୍ଚୟ । ନାବାଳକ ଦୋଷୀ ଅପରାଧୀଙ୍କ କଲୋନିକୁ-ଦୂରକୁ । ଏହା ହିଁ ଯଦି ହେବ ଆଉ କେଉଁଥିରେ ଯାଏ ଆସେ କଣ । ଯଦି ବୁଡ଼ି ମରିବାକୁ ହୁଏ ବୁଡ଼ମରିବ ନ ବା କାହିଁକି ଅତଳ ଅଥଳ ପାଣିରେ ! ଦୋକାନ ସହକାରୀ ହାତରେ ଗୁଞ୍ଜିଦେଲି ସ୍ତୋନ ବହିଟାଏ । ଲୁଚେଇ ନେଇ ସେ କୋଟ ପକେଟରେ ବାହାରିଗଲି ଡଗ ଡଗ ହୋଇ କିନ୍ତୁ ସଙ୍ଗେ ସଙ୍ଗେ ଫେରିପଡ଼ିଲି, ସ୍ତୋନ ବହିଟା ଝସିପଡ଼ିଲି ମୋ ପାଦ ପାଖରେ ।

"ନା, ନା—ମୁଁ ନେଇପାରିବ ନାହିଁ—ନେଇ ପାରିବ ନାହିଁ । ମୋର ସବୁ ଧ୍ୱଂସର କାରଣ ହେଉଛୁ ତୁ—"

ଧରିପାରିଲି ନାହିଁ ତା କଥାର ମର୍ମ—ତା ଧ୍ୱଂସର, ତା ବିନାଶର କାରଣ ହେବ ମୁଁ—ହେବ କେମିତି ? କିନ୍ତୁ ଭାରି-ଉସ୍ତସିଆ ଲଗିଲି—ଭଲ ଲଗିଲି, ବହିଟା ନେଲି ନାହିଁ ସେ । ଏହା ପରେ-ଏହି ଘଟଣା ପରେ ଆମର ଗ୍ରେଟିଆ ଦୋକାନର ସହକାରୀଟା ମତେ ଦେଖିଲି ଆହୁରି ଭଗାରିଆ ଆଖିରେ ଆହୁରି ସନ୍ଦେହରେ ।

ଏହିସବୁ ଜାଣି ହୋଇଗଲି—ଫେରି ଆସିଲି ଯେମିତି ମୋ ପାଖକୁ । ଲିଓନିଚ୍ ଚଢ଼ିବାକୁ ଆରମ୍ଭ କରିଦେଲି ପାହାଚଗୁଡ଼ାକୁ । ସଙ୍ଗେ ସଙ୍ଗେ ଫେରି ଆସିଲି ସେ—ଆହୁରି ମୁହଁ ଭାରି ଭାରି କରି—ଟ୍ରପ୍‌ଗ୍ରପ୍ ଆହୁରି ଅନ୍ଧାରିଆ ଆଖିରେ । ଆଉ ସେ ରାତରେ ଖାଇ ବସିବା ଆଗରୁ ମୁଁ ଏକା ଥିଲିବେଳେ କହିଲି ମତେ—

"ଚେଷ୍ଟା କଲି ମନେଇ ସେମାନଙ୍କୁ ଚଟେ ଖଲାସ କରି ଆଣିବ ଦୋକାନ-ପଣ କାମରୁ । ରଖେଇବ କାରଖାନାରେ । କିନ୍ତୁ ନା, ପାରିଲି ନାହିଁ, ଭଣ୍ଡୁରୁ ହୋଇଗଲି । କୁଜ୍‌ମା କାନ ଦେଲି ନାହିଁ ମୋ କଥାକୁ । ଏମିତି ତୋ ବହୁଛରେ ସେ—ମଲି ଯାଏ ଯେମିତି ନିଜେ—"

ଆଉ ଜଣେ ଶତ୍ରୁ ଥିଲା ମୋର ସେ ଘରେ—ଦୋକାନସହକାରୀର ପ୍ରିୟ-ବାଗ୍‌ଦତ୍ତା । କେଳିକେଳିଆ ଚପଳା ତରୁଣୀ କୁମାରୀଟିଏ । କାରଖାନାରେ ଏମିତି କୋଉ ଟୋକା ନ ଥିଲା ଯିଏ କେଳି କରୁ ନ ଥିଲା ତା'ସାଥିରେ, ଲଗଉ ନ ଥିଲା ତା ସାଥିରେ । ଟୋକାଯାକ ଅନେଇ ଛକି ରହୁଥିଲେ ତାକୁ ବାଟଘର ପାଖରେ, ଅସ୍ତବ୍ୟସ୍ତ କରି ଦେଉଥିଲେ ସେଇଠି । ସେଥିରେ ବିଗିଡ଼ି ଯାଉ ନ ଥିଲା—ଅପମାନିଆ ମନେ କରୁ ନ ଥିଲା ନିଜକୁ, ରାଗୁ ନ ଥିଲା ଟିକିଏ ହେଲେ । ଥରେ ଥରେ ଫୁଲୁ ଫୁଲୁ ହୋଇ କୁକୁର ଛୁଆପରି କୁଇଁ କୁଇଁ ହେଉଥିଲା ଖାଲି । ସକାଳୁ ରାତି ଅଧ ଯାଏ ଚୁପ୍ ଥିଲା, ଚୋବାଉଥିଲା ଟିକି ଟିକି ପିଠା ନଇଲେ ବା ଲଜେନ୍‌ସ୍ । ଆଉ ସେଥିରୁ ସବୁ ଭର୍ତ୍ତି ହୋଇ ରହୁ ଫାଟି ପଡ଼ୁଥିଲା ତାର ପକେଟ ସବୁବେଳେ । ତାର ନିରକ୍ତିଆ ଶୁଖିଲା ମୁହଁଟିର ଚଳଚଞ୍ଚଳ ପାଉଁଶିଆ ଆଖି—ସୁନ୍ଦରିଆ ନ ଥିଲା—ଥିଲା ଅସୁଖିଆ ଅସୁଖିଆ । ମତେ ଆଉ ପ୍ୟାଭେଲ୍‌କୁ ଦେଖିଲେ ସବୁବେଳେ ପଚାରୁଥିଲା ଫିଟେଇବା ପାଇଁ 'ପହଲି'ଗୁଡ଼ିକ—ଠାରଗୁଡ଼ିକ ଯେଉଁଥିରେ ଥିଲା ଉତ୍ତରର ସଙ୍କେତ ସବୁ ଖିଏ ଖିଏ—ନଇଲେ ବା ଦାନ୍ତଭଙ୍ଗା ଜିଭ ନ ଲେଉଟା ଶବ୍ଦଗୁଡ଼ାଏ ଶୁଣାଉଥିଲା, ଯେଉଁଗୁଡ଼ିକ ଯୋଡ଼ାଯାଡ଼ି ହୋଇଗଲେ ବୁଝାଉଥିଲା ଅଶ୍ଳୀଳ କଥା ।

ବୟସ୍କ ଚଟକାରମାନଙ୍କ ମଧ୍ୟରୁ ଜଣେ ଥରେ କହିଲା ତାକୁ—

"କେଡ଼େ ନିଲଠି, ଅଲଜୁକୀ ଟୋକୀ ଲୋ ତୁ!"

ଖେଳାଳିଆ ହସଖୁସିଆ ସ୍ୱରରେ ଲେଉଟେଇ ଯାଇ ଜବାବ ଦେଉଥିଲା ସେ ଗୋଟିଏ ଅଶ୍ଳୀଳ ଗୀତରୁ ପଦେ ଗାଇଦେଇ—

ଯଦି ଅଛି ଲାଜକୁଳୀ କୁଆଁରୀ ବାଳି
ଆଉଡ଼େଇ ଯିବେ ତ ଟୋକାଏ ସକଳେ
ଚାହିଁବେନି ଥରେ ନୟନ ଟାଳି ।

ଏମିତିକା ଝିଅଟିଏ ଆଗରୁ ଦେଖି ନ ଥିଲି କେବେ । ଦେଖିଦେଲେ ବିରାଗ ଆସୁଥିଲା । ଏଡ଼େ ଘୃଣା ଆସୁଥିଲା ମନରେ-ଆଉ ତାର ହାବଭାବ ଠାଣିମାଣି—ପଢ଼ିହେବା ପାଇଁ କାହା ହୃଦୟରେ ଦେଖିଦେଲେ ଲୁଚି ଥରି ଉଠୁଥିଲା ମୋର ଭୟରେ । ବୁଝିପାରିଲା ଯେତେବେଳେ ମୁଁ ଦୂରରେ ରହିବାକୁ ଚାହୁଁଚି ସେସବୁଥିରୁ—ମତେ ଘୃଣା ଲାଗୁଚି ସେଗୁଡ଼ାକ । ସେ ବେଳକୁ ବେଳ ବେଶି ଦେଖେଇ ଦେଲା ସେସବୁ ଜବରଦସ୍ତ ଭାବରେ ।

ଥରେ ପ୍ୟାଭେଲ ଆଉ ମୁଁ ତାକୁ ଆଗୁର ହାଣ୍ଡି ଟେକେଇବାରେ (ଛାତ ଉପର ଟାଙ୍ଗିରେ) ସାହାଯ୍ୟ କରୁଥାଉ ଭଣ୍ଡାରଘରେ ।

"ଜରେ ପିଲାଏ, କେମିତି ଚୁମା ଦେବାକୁ ହୁଏ ଶିଖେଇ ଦେବି କି ? ଭଲ ଲାଗିବ ମ ।"

"ତୋଠୁ ଭଲ ଜାଣେ ମୁଁ କେମିତି," ମୁରୁକେଇ ହସି ଉତ୍ତର ଦେଲା ପ୍ୟାଭେଲ। ଆଉ ମୁଁ ପରାମର୍ଶ ଦେଲି ସେ ଟୋକାକୁ—ବିଶେଷ ଉଦ୍ଦେଶ୍ୟରେ ନୁହେଁ, ଯାଇ ନୃମ୍ନିବା ପାଇଁ ତା' ନିଜ ପ୍ରେମିକ ଟୋକାକୁ—ଏହା ତାକୁ ରଗେଇ ଦେଲା।

"ଛିଃ ରେ ଅଭଦ୍ର ଟା! ଖୁସି ଆଖିରେ ଚାହିଁଲେ ତତେ—ଏଇ କଣ ଫଳ ପାଏ ଝିଅଟାଏ। ତୋ ପ୍ରତି ଭଦ୍ର ହେଲେ ତୁ ଓଲଟି ନାକ ଟେକ ହେଉ ତା ଉପରେ?" ଆଙ୍ଗୁଠି ହଲେଇ ପୁଣି ମିଶେଇଲା ଏଇ କଥାରେ ତାର—"ରହ ଯେ ରହ—ମୁଁ କଣ ଏହା ଭୁଲିଯିବ, ପାସୋଶ ଦେବ ସ୍ୱବତ୍?"

ପ୍ୟାଭେଲ୍ ମୋ ପକ୍ଷରୁ ମୋତେ ସମର୍ଥନ କରି ଯୋଡ଼ିଦେଲା—

'ଦେବା ଯେ ଦେବ, ଚୋର ସେ ଟୋକାଟା -- ସେ ଭେଣ୍ଡିଆଟା ଦେବ ଯେ ଆଲ୍ଲାଙ୍କର ପାନେ ତତେ! ଶୁଣିବ ଯଦି କି ତରୁଣୀ ପଣରେ କି କଲବୁଲ ଲଗେଇଛ, ଏଣେ-କି କାମ ଚଳେଇଛ ସବୁ।"

ବ୍ରଣମସ୍ତ ମୁହଁଟାକୁ ଲୋଟେଇ ବୋଟେଇ ନେଲା, ନାକଛୁଟଡ଼ା ଭୁରୁଟେକା ଗଙ୍ଗରେ ରୁକ୍ଷ ନାଁଛଳିଆ ସ୍ୱର ଦେଖାଇ କହିଲା ସେ।

"ମଲା ମୋର' ମୁଁ କଣ-ତାକୁ ଡରୁଛି ନା କଣ! ମୋ ଭଳିଆ—ଯୌବନରେ ଗଣ୍ଡା ଗଣ୍ଡା ଗିରସ୍ତ ପାଇବି ମୁଁ—ଶହ ଶହ ଗୁଣ ବଢ଼ିଆ ତାଠୁ। ବାଉଁଥ ପାଣି ପଢ଼ିବା ଯାଏ ଝିଅଟାଏ ସିନା। ହସଖୁସିଆ ଚଗଲମିଟା ଚଳେଇବାକୁ ଟିକିଏ ସୁଯୋଗ ପାଏ।

ପ୍ୟାଭେଲ୍ ସାଙ୍ଗରେ ପ୍ରୀତି ଖେଳ ଖେଳିବାକୁ ଆରମ୍ଭ କରିଦେଲା ସେହିଦିନୁ, ସେହି ଦିନରୁ ଆଉ ଗପେ ଲାଗିଲା ମୋ ସମ୍ପର୍କରେ, ମୋ ବିରୁଦ୍ଧରେ।

ବେଳକୁ ବେଳ ବିରକ୍ତିକର ହୋଇଉଠିଲା ଦୋକାନ ଅଞ୍ଚଳରେ କାମ କରିବାଟା। ପଢ଼ା ସାରିଥାଏ ମୁଁ ସେତେବେଳକୁ ଯେତେ ଯେଉଁ ଧର୍ମପୁସ୍ତକ ପାଇଥାଏ। କ୍ଳାନ୍ତ ଆସିଥାଏ, ଧର୍ମାନ୍ଧମାନଙ୍କର ସେହି ଯୁକ୍ତିଗୁଡ଼ାକର—ସବୁବେଳେ ଘୋରାଡ଼େଇ ପୋରଡ଼େଇ ଓଲଟପାଲଟ କରି ସେଇ ଗୋଟିଏ ବୋଲି କଥା ବାଢ଼ନ୍ତି ସେମାନେ। ମୋ ପାଇଁ ଏକମାତ୍ର ଆକର୍ଷଣ ହୋଇ ରହିଥାଏ ପିଓଟ୍ ଭ୍ୟାସିଲ୍ୟେଭ୍—ମନୁଷ୍ୟ ଜୀବନର ତମିସ୍ରମୟ ଗଭୀର ପ୍ରବାହ ସମ୍ପର୍କରେ ତାର ଜ୍ଞାନ ଆଉ ତାର ସେଇ ହୃଦୟସ୍ପର୍ଶୀ ଆବେଗପୂର୍ଣ୍ଣ ଆନ୍ତରିକତାର ସହିତ ତାକୁ ପ୍ରକାଶ କରିବାରେ ସାମର୍ଥ୍ୟ ମତେ ଆକୃଷ୍ଟ କରି ରଖିଥାଏ। ଅନେକ ସମୟରେ କଳ୍ପନା କରୁଥାଏ ମୁଁ ପଯ୍ଗମ୍ବର 'ଏଲାଇଜା' ଏମିତି ଧୂର ବୁଲିଥିବେ ଦିନେ ପୃଥିବୀ ପୃଷ୍ଠରେ ସହାୟହୀନ ସଙ୍ଗହୀନ ହୋଇ ପ୍ରତିହିଂସା ପୋଷଣକରି ହୃଦୟରେ।

ଯେତେବେଳେ ମୁଁ ସେହି ବୁଢ଼ା ଭ୍ୟାସିଲ୍ୟେଭକୁ କହୁଥିଲି, ଯାହାସବୁ ଝୁରୁଥିଲି—ମୋର ଚିନ୍ତା ମୋର ଧ୍ୟାନ ଧାରଣା ବିଷୟ ଜମା ଯାହା ଲକ୍ଷ୍ୟ କରୁଥିଲି ଲୋକଙ୍କଠି, ଲୋକଙ୍କ ସମ୍ପର୍କରେ, ସେତେବେଳେ ଆଗ୍ରହ ସହକାରେ

ଶୁଣୁଥିଲି ସବୁ ଗୋଟି - ଗୋଟି କରି, ଆଉ ପରେ ବର୍ଣ୍ଣନା କରୁଥିଲି ଦୋକାନ ସହକାରୀଟା ଆଗରେ—ଯିଏ ପୁଣି ଶୁଣି ତାଠୁ ଶୋଧୁଥିଲା ମତେ ନଇଲେ ବା ବିଦ୍ରୂପ କରୁଥିଲା – ଥଟ୍ଟା କରୁଥିଲା ମତେ !

ଦିନେ ବୁଢ଼ାକୁ ଖବରଟାଏ ଦେଲି— ବେଳେବେଳେ ମୁଁ ଲେଖି ରଖୁଥାଏ ଟିପ.ଖାତାରେ—ଯେଉଁଥିରେ ମୁଁ ଉତାରୁଥାଏ କବିତା କ ବହିଗୁଡ଼ିକରୁ 'ଉଦ୍ଧୃତି' ସବୁ—ଯାହାସବୁ କହୁଥାଏ ସେ । ଏଥିକରେ ଭୟ ପଶିଗଲା ତା ମନରେ—ଆଖି ପିଞ୍ଛୁଡ଼ାକେ ମୋ ଆଡ଼କୁ ଉଲପଡ଼ ପଚାରି ଲାଗିଲା ଆତଙ୍କିତ ହୋଇ—

"କାହିଁକି ରେ କାହିଁକି ଏହା କରୁଚୁ ତୁ ? ଏ ତ ଠିକ୍ ନୁହେଁ ରେ ପୁଅ । କଣ ମନେ ରଖିବାକୁ ସବୁ ? ଆରେ ନା, ନା, ଏମିତି କରିବୁ ନାହିଁଟି ଆଉ··· ଯା କରିବା ଉଚିତ ନୁହେଁ । କେତେ ଟିକି ଦୁଷ୍ଟଟାଏ—ଚଗଲଟାଏରେ ତୁ । ମତେ ତୁ ଦେଇଦେବୁ ସେ ଟିପାଟିପିଗୁଡ଼ିକ, ଦେବୁ ତ ? ଏଃ କଣ କହୁଚ ଯେ !"

ବହୁତ ବେଳ ଯାଏ ଆନବରତ ଲଗେଇଲା ସେ—ଗୁହାରି ନାହିଁ, ତାକୁ ଟିପାଖାତାଟା ଦେଇ ଦେବାକୁ ନଇଲେ ଅନ୍ତତଃ ପୋଡ଼ି ପକେଇବାକୁ । ତା'ପରେ ଉତ୍ତେଜିତ ଭାବରେ ଫୁସ୍ ଫୁସ୍ ହେଲା ଦୋକାନ ସହକାରୀ ପାଖରେ ।

ଘର ଲେଉଟାଣି ବାଟରେ ଦୋକାନ ସହକାରୀ କହିଲା ମତେ—

"ଶୁଣୁଚ କଣସବୁ ଟିପାଟିପି କରି ରଖୁଚୁ—ଦେଖ୍, ଗୁଡ଼ ଏ କାରବାର—ବନ୍ଦକର ଏଣିକି, ଶୁଣୁଚ ? ଏମିତି କାମ କରନ୍ତି ଗୁଇନ୍ଦାମାନେ କେବଳ ବୁଝିଲୁ ?"

"କିନ୍ତୁ ସୀତାନଭ କଥା କଣ ?" ଅସାବଧାନରେ ଜାଗିଉଠିଆର ନ ରହି କହି ପକାଇଲି ହଠାତ୍— 'ସେ ତ ଟିପିଟାପି ରଖେ'' ।

"ସେ ବି ? ସେ ଧଡ଼ିଆ ମେଡ଼ିଆ ବୋକାଟା ! ଏଁ !"

ଚୁପ୍ ରହି ଅନେକ ସମୟ—ତା'ର ମଥଗଥ ବିରୋଧ ଏକାବେଳକେ ଅସ୍ୱାଭାବିକ ଶାନ୍ତ ଭଦ୍ରପଣରେ ପ୍ରସ୍ତାବଟା ଦେଲା ସେ—

"ହେଇ, ଶୁଣ ! ତୋ ଟିପାଖାତାଟା ଆଉ ସୀତାନଭର ବି, ଆଣ୍—ଦେଖା ମତେ ! ଅଧରୁବେଲ (ଅଧ୍ଲିଟାଏ) ଦେବି ତତେ ! ଖାଲି ଚୁପ୍‌ଚାପରେ କର—ସୀତାନଭ ଯେମିତି ନ ଜାଣେ ।"

ଜଣା ପଡ଼ିଲା ସଫା, ସେ ଯେମିତି ନିଶ୍ଚିତ ହୋଇ ଯାଇଥାଏ– ତା ଅନୁରୋଧଟା ରଖିବ—ପୁରାକରିବ ମୁଁ । କାହିଁକି ନା ଆଉ ପଦେହେଲେ କିଛି ନ କହି ଗ୍ରେଟ ଗ୍ରେଟ ବାଣୁଗ ଗୋଡ଼ ବଢ଼ାଇ ଚାଲିଗଲା ସେ—ଅନନ୍ତ ଅନନ୍ତ !

ଘରକୁ ଫେରିଯାଇ କହିଲି ସୀତାନଭକୁ—ଦୋକାନ ସହକାରୀଟା ଯାହା କହିଥିଲା, ଯେଉଁ ପ୍ରସ୍ତାବଟା ଥୋଇଥିଲା ; ମୁହଁ ଭାରିକରି ଗାଉଁ ଗାଉଁ ହେଲା ସୀତାନଭ !

"କାହିଁକି ତାକୁ କହିଲୁ ତୁ ? ଏଇକ୍ଷଣି କାହାକୁ ଲଗେଇ ଘେରେଇ ନେବ ଆମ ଟିପାଖାତା—ତୋର ଆଉ ମୋର ବାପାଙ୍କର । ଦେ, ମତେ, ଦେ ତୋ'ଟା ଲୁଚେଇଦିଏ ମୁଁ । ତୋତେ ବିଦାକରି ଦେବ ଚଞ୍ଚଳ—ନିକାଲି ଦେବ, ଦେଖିବୁ !"

ତଲେ ମାତ୍ର ସନ୍ଦେହ ନ ଥିଲା ଏଥିରେ—ମୋର । ସ୍ଥିର କରିନେଲି ଆଇମା ଫେରିବା ମାତ୍ରେ ସହରକୁ, ଛାଡ଼ିଦେବ ଚାକିରିଟା ! ଶୀତ ଦିନମାନେ କଟେଇ ଥାଏ ସେ ବାଲିଖାନାରେ—କାହା ଝିଅଗୁଡ଼ିକୁ ଲେସ୍ ବୁଣାବୁଣି ଶିଖାଇବା ପାଇଁ ନିମନ୍ତ୍ରଣ ପାଇ ଯାଇଥାଏ ସେଠିକି । ଅଜା ବି ପୁଣି ଯାଇ ରହିଥାନ୍ତି କନୋଭିନୋରେ । ମୁଁ କେବେ ଯାଇ ନ ଥାଏ ତାଙ୍କ ପାଖକୁ—ସେ ବି ଖୁବ୍ କମ୍ ଘଟଣାରେ ସହରକୁ ଆସିଲାବେଳେ ଆସି ନ ଥାନ୍ତି ମୋ ପାଖକୁ । ଦିନେ ତାଙ୍କୁ ହାବୁଡ଼ିଗଲି ରାସ୍ତାରେ—ଚାଲିଥାନ୍ତି ସେ ତାଙ୍କର ପ୍ରକାଣ୍ଡ 'ରେକୁନ' (ଭାଲୁଆ) କୋଟ୍ ମଡ଼େଇ—ପାଦ୍ରି ଭଳି ଧୀରଗମ୍ଭୀର ଗୁରୁତ୍ୱପୂର୍ଣ୍ଣ ଗତିରେ । ତାଙ୍କୁ ନମସ୍କାର କଲି ମାତ୍ରେ ଗୋଟିଏ ହାତ ଟେକି ଆଖି ଘୋଡ଼େଇବା ପାଇଁ କହିଲେ ଅନ୍ୟମନସ୍କ ଭାବରେ—

"ଆରେ, ତୁ ତା ହେଲେ ! ହଁ—ହଁ—ଦଅଁ ଦେବତା—ଚାକର ହୋଇ ଉଠିଲୁଣି ତୁ ନା, ଲାଗୁଛ ସେମିତି, ବେଶ୍—ବେଶ୍—ଲାଗଥା—ଲାଗି ସେ କାମରେ ଆଗେଇ ଯା—

ଠେଲି ଆଡ଼େଇଦେଇ ମତେ ଆଗପରି ଗୁରୁଗମ୍ଭୀର ଗତିରେ ଚାଲିବାଟା ଆରମ୍ଭ କରିଦେଲେ ପୁଣି—

କ୍ୱଚିତ ଏବେ ମୋର ଭେଟ ହେଉଥିଲା ଆଇମା' ସାଙ୍ଗରେ—ଅବଶ୍ରାନ୍ତ ଖଟୁଥିଲା ସେ—ପୋଷୁଥିଲା ଅଜାଙ୍କୁ । ବୟସ ହେଲାରୁ ନରମ ହୋଇଆସିଥିଲା ଅବଶ୍ୟ ତାଙ୍କ ମିଜାସଟା—ପୋଷୁଥିଲା ପାଳୁଥିଲା ତା' ପୁଅମାନଙ୍କର ପିଲାପିଲାଙ୍କୁ । ମିଖାଇଲର ପୁଅ ସାଶା—ଡଉଲଡାଉଲ ସୁନ୍ଦର ଟୋକାଟିଏ—ସ୍ୱପ୍ନରେ କଳ୍ପନାରେ ଭାସେ ସେ—ବହି ଅନୁରାଗୀ, ବହି ଧରି ବସିଥାଏ—ବିଶେଷ ଭାବରେ ଆଇମା'ର ଉଦବେଗ ସୃଷ୍ଟି କରୁଥାଏ ସେ ! କାମ କରୁଥାଏ ସେ 'ରଙ୍ଗ' ପ୍ରତିଷ୍ଠାନ-ଗୁଡ଼ିକରେ ଗୋଟିକରୁ ଆଉ ଗୋଟିକୁ ହେଉଥାଏ ଥରକୁ ଥର ଅନେକ ସମୟରେ, ମଝିରେ ମଝିରେ କୌଣସି ପ୍ରତିଷ୍ଠାନକୁ ନ ଯାଇଥିଲାବେଳେ ବୋଝ ହେଉଥାଏ ଆଇମା' ଉପରେ—ଅପେକ୍ଷା କରୁଥାଏ ଶାନ୍ତଭାବରେ ଆଇମା' ନୂଆ ନିଯୁକ୍ତି କେଉଁଠି ଯୋଗାଡ଼ କରିଦେବା ଯାଏ । ସାଶାର ଭଉଣୀ ବା କୋଉ କମ୍ ବୋଝ ଥିଲା ତା' ଉପରେ—ସେ ବାହା ହୋଇଥାଏ ଦୁର୍ଭାଗ୍ୟକୁ ଗୋଟାଏ ମାତାଲ ଶ୍ରମିକକୁ, ଯିଏ ତାକୁ ପିଟି ପିଟି ବାହାର କରିଦେଇଥାଏ ଘରୁ !

ଯେତେବେଳେ ମୋର ଭେଟ ହେଉଥିଲା ଆଉ ମା' ସାଙ୍ଗରେ ସେତେବେଳେ ତା' ହୃଦୟର, ତା ନିର୍ମଳ ଚେତନାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଯାଉଥିଲି, ଦିନକୁ ଦିନ ଅଧିକରୁ ଅଧିକ ବିମୋହିତ ହୋଇଯାଉଥିଲି, କିନ୍ତୁ ଚେତନାରେ ମୋର ବାଧି ଧରି ପାରୁଥିଲି ଆଗରୁ—ତାର ଏହି ହୃଦୟର ଅପୂର୍ବ ବିଭବ ଜୀବନ୍ତ ରହେ କେବଳ ପରୀ ଗଳ୍ପର ଜଗତରେ । ଏହା ହିଁ ତାକୁ ଅନ୍ଧ କରି ରଖିଥାଏ ତାର ଚତୁଃପାର୍ଶ୍ୱରୁ ଉତ୍କଟ ବାସ୍ତବତା ପ୍ରତି । ଏଣୁ ତା ପ୍ରାଣରେ ପହଞ୍ଚିପାରୁ ନ ଥାଏ ସେହି ଭୟ, ସେହି ଆତଙ୍କ—ଯାହା ଆଚ୍ଛନ୍ନ କରି ଦେଉଥାଏ ମତେ—ବିଚଳିତ କରୁଥାଏ ମୋ ପ୍ରାଣକୁ ।

"ସହିବାକୁ ହେବ, ସବୁ ସହିବାକୁ ହେବ, ଆଲିଓଶା !" ଏତିକ ମାତ୍ର, ଏତିକ ମାତ୍ର ସେ କହିପାରୁ ଥାଏ ମତେ ମୁଁ ଯେତେବେଳେ ବର୍ଣ୍ଣନା କରୁଥାଏ ତା' ଆଗରେ ଜୀବନର କୁତ୍ସିତତା—ନିଃସଙ୍ଗତାରେ ହତାଶା ଆଉ ବିଷାଦତାର ଉତ୍ତାପହୀନତା ; ପୁଣି ଦାରୁଣ ଦୁଃଖ ଦୁର୍ଦ୍ଦଶା ଯେତେ ଲୋକଙ୍କର—ଏମିତି କେତେ କେତେ ଘଟଣା ଯାହା ବିରୁଦ୍ଧରେ ତୀବ୍ରଭାବରେ ଅଭିଯୋଗ କରୁଥାଏ ମୁଁ ।

ସହନଶୀଳତା ପାଇଁ ଗଢ଼ା ହୋଇ ନ ଥିଲି ମୁଁ—ଗଢ଼ାହୋଇ ନ ଥିଲି ଉଦାରତା ପାଇଁ—ଗୋରୁଗାଈ କାଠ ପଥରର ଏହି ମୂଲ୍ୟବାନ ସଦ୍‌ଗୁଣଟା ବେଳେ-ବେଳେ ଯଦିବା ପ୍ରଦର୍ଶାଉଥିଲି—ପ୍ରଦର୍ଶାଉଥିଲି ନିଜକୁ ପରୀକ୍ଷା କରିବା ପାଇଁ । ପରୀକ୍ଷା କରିବା ପାଇଁ ପୁଣି ଧରଣୀପୃଷ୍ଠରେ ଛିଡ଼ା ହୋଇଥିଲି ଅଟଳ ଭାବରେ—ଯେଉଁ ବଳ ଓ ଦୃଢ଼ତାରେ ତାହା କହେ । ବେଳେବେଳେ ଯୁବା ବୟସରେ ଅନେକେ ଅପରିପକ୍ୱତାର ନିର୍ବୋଧତାରେ, ମୂର୍ଖତାରେ -କଇଲେ ବା ଅଧିକ ବୟସର ଲୋକଙ୍କ ବଳ ପ୍ରତି ଇର୍ଷାରେ ହିଂସାରେ ପ୍ରାଣପଣେ ଚେଷ୍ଟା କରନ୍ତି ।

ସଫଳ ସେ ନ ହୁଅନ୍ତି, ନୁହେଁ । ଉଠାଇବା ପାଇଁ ସେଭଳି ଭାର (ଓଜନଥିବା ପଦାର୍ଥ) ଯେଉଁଥିରେ କଟକଟ ଡାକେ ଅଧିକା ଚାପ ଯୋଗୁଁ ହାଡ଼ ଆଉ ମାଂସପେଶୀ ସବୁ—ପ୍ରକୃତରେ ଗୁଣ୍ଡ ଅଟୋପରେ ଗର୍ବରେ ଟେକ ଆଡ଼ବାଗରେ ବୁଲୁ ସାମନାରେ ଧରନ୍ତି ଦୁଇ ମହଣିଆ ଓଜନର ଲୁହା, ଓସ୍ତାଦ—କସରତ୍‌ବାଲା ମଲ୍ଲ ଖେଳାଳିଙ୍କ ପରି ।

ମୁଁ ଯେ ଏହା କରୁ ନ ଥିଲି—ଏମିତି ନୁହେଁ । ଆକ୍ଷରିକ ଓ ଅଳଙ୍କାରିକ ରୂପକ ଭାବରେ ଦେଖିଲେ କ ଭୌତିକ, ଆଧିଭୌତିକ ବା ଆଧ୍ୟାତ୍ମିକ ସମସ୍ତ ଦିଗରୁ ମୁଁ ଏହା ହିଁ କରୁଥିଲି - କେବଳ ମୋର ଭାଗ୍ୟ—ମତେ ଯାହା ସାଙ୍ଘାତିକ ରୂପେ ଆହତ କରି ଦେଇ ନ ଥିଲା କି ଜୀବନଯାକ ପାଇଁ ଖଣ୍ଡି କରି ଛାଡିଦେଇ ନ ଥିଲା । କାରଣ ଲୋକଙ୍କୁ ସେଭଳି ଅନ୍ୟ କିଛି ଖଣ୍ଡ ଅଚଳ କରିଦିଏ ନାହିଁ, ଯେଭଳି ଅତି ଭୟଙ୍କର ଭାବରେ କରେ 'ସହନଶୀଳତା'—ଘଟନାଶକ୍ତିଗୁଡ଼ିକ ପାଖରେ ବିନମ୍ର ବଶ୍ୟତା ସ୍ୱୀକାର ।

ଆଉ ଯଦି ଅନ୍ତିମକାଳରେ ମୋର, ଜନନୀ ଧରିତ୍ରୀର କୋଳକୁ ଫେରିଯାଏ ମୁଁ ଖଞ୍ଜ ହୋଇ ପଙ୍ଗୁ ହୋଇ—ଗର୍ବରେ ନୁହେଁ କହିପାରିବି ମୁଁ, କହିବାକୁ ସକ୍ଷମ ହେବି ମୁଁ, ଚାଳିଶ ବର୍ଷ ହେଲା ପ୍ରାୟ ଅବାଧ୍ୟ ଭାବରେ ଅବଚେତନ ରହି ଛିଡ଼ା ହୋଇଛି ମୋର ଆତ୍ମାକୁ ମୋଡ଼ାମକଟ ଦେବାଲାଗି ଏକଜିଦିଆ ନିର୍ଲଜ୍ଜବନ୍ଧା ଉଦ୍ୟମ ବିରୁଦ୍ଧରେ ଭଲ ଭଲ ମଣିଷଗୁଡ଼ାକର—ଭଲ ଭଲ ଚରିତ୍ରର ମଣିଷଙ୍କର ।

ଦିନକୁ ଦିନ ଅଧିକରୁ ଅଧିକ ଅନେକ ସମୟରେ ପ୍ରବଳଭାବରେ ଅଦମ୍ୟ ଇଚ୍ଛା ହେଉଥାଏ ମୋର ହସଖୁସିରେ ସରସ ଖେଳକୌତୁକରେ ମଜ୍ଜିଯିବା ପାଇଁ—ଲୋକଙ୍କୁ ଆମୋଦ ଯୋଗାଇ ମଜାଇ ସେମାନଙ୍କ ମୁହଁରେ ହସ ଫୁଟାଇବା ପାଇଁ—ତାଙ୍କ ହୋ ହୋ ହସରେ ହସରେ ଲୋଟାଇ ଦେବାପାଇଁ । ଏଥିରେ ସଫଳ ହେଉଥାଏ, ହାତ ଦେଖାଉଥାଏ ବି । ତଳ ବଜାରର ବେପାରୀ ଦୋକାନୀଙ୍କ ଗୁଣଗ୍ରାମ ଚାଲିଚଳଣିକୁ ଅନୁକରଣ କରି ଚର୍ବଣ କରି ବର୍ଣ୍ଣନା କରିବାରେ ପ୍ରକୃତିଗତ କୌଶଳଟା ଥାଏ ମୋର—ଦେଖୁଥାଏ ଗାଆଁ ଗହଳର ଚାଷୀ ଆଉ ତାଙ୍କ ମାଇପେ ସବୁ କିଣୁଥାନ୍ତି ବିକୁଥାନ୍ତି ପଟଚିତ୍ର, ମୂର୍ତ୍ତିଗୁଡ଼ାକ, କେମିତି କେଉଁ ଚତୁର ପଣିଆରେ ଡାକୁଥାଏ ସେମାନଙ୍କୁ ଦୋକାନ ସହକାରୀଟା, ଧର୍ମାନ୍ଧ ଲୋକଗୁଡ଼ାକ ପୁଣି କି ଅଚ୍ଛିଣ୍ଡା ଯୁକ୍ତି କରୁଥାନ୍ତି—ଛାଡ଼ୁ ନ ଥାନ୍ତି ଆଦୌ—ଶେଷ କରୁ ନ ଥାନ୍ତି କେବେହେଲେ ।

କାରଖାନାର ଲୋକଗୁଡ଼ାକ ମୋ ଅଭିନୟ ଦେଖି ହୋ ହୋ ହୋଇ ହସି ଉଠୁଥାନ୍ତି—କମ୍ପେଇ ଦେଉଥାନ୍ତି କାରଖାନାକୁ ହସରେ । ଅନେକ ସମୟରେ ମୋ ଅଭିନୟ ଦେଖିବା ଲାଗି ରୁଲିଫୁଲ ଛାଡ଼ି ଦେଉଥାନ୍ତି ମସଗୁଲ ମନରେ । ଅଭିନୟ ସରିଗଲେ ଲିଓନର୍ଡ୍ କହୁଥାଏ :

"ଭାତଖିଆ ପରେ ତୋ ହାତ ଦେଖା, ତୋ କଳା କୌଶଳ ଦେଖା—ତା ହେଲେ କାମଦାମରେ ବାଧା ଆସିବ ନାହିଁ, ବୁଝିଲୁ ।

ପ୍ରତି ଥର ଏମିତି ଏମିତି ଅଭିନୟ ପରେ ମତେ ଭାରି ହଶ୍ୱାସିଆ ଲାଗୁଥାଏ, ମତେ ଯେମିତି ଗୋଟାଏ ବୋଝ ଖସିପଡ଼ୁଥାଏ । ଘଣ୍ଟାଏ ଖଣ୍ଡେ ମୋ ମଙ୍ଗଳପାଇଁ ବା ଖାଲି, ଫାଙ୍କା ହୋଇ ଯାଉଥାଏ ମୁଣ୍ଡଟା, ତାପରେ ପୁଣି ଭର୍ତ୍ତି ହୋଇ ଯାଉଥାଏ ମୁନିଆଁ ମୁନିଆଁ ଟିକି ଟିକି ଲୁହାକଣ୍ଟାରେ ଫୋଡ଼ି ଫୋଡ଼ି ଦେଉଥାଏ ବ୍ୟତିବ୍ୟସ୍ତ କରି, କଷ୍ଟ ଦେଇ ।

ଭିତରଆଡ଼ରେ ଯେମିତି ମୋତେ ଘେରି ଟକମକ ଫୁଟୁଥାଏ ଗନ୍ଧିଆ 'ଜାଉ' । ଲାଗୁଥାଏ ଜଳେ ମୁଁ ସେଥିରେ ପଡ଼ି ସିଝୁଥାଏ ଯେମିତି—ପୋଡ଼ି ପୋଡ଼ି ହୋଇ ଯାଉଥାଏ ।

"ମୋ ଜୀବନଟା—ସାରା ଜୀବନଟା, କଣ ଏମିତି କଟିବ ? ଏ'ସ୍ଥା କଣ ସମ୍ଭବ—ଏହା ହିଁ ହେବ" । ଭାବୁଥାଏ ମୁଁ "ଏଇ ଲୋକଗୁଡ଼ିକ ପରି ବଞ୍ଚି ରହିବ—ଚଳିବ ମୁଁ ଖାଲି—ଆଉ କିଛି ଭଲ ଆଉ କିଛି ସୁନ୍ଦର କେବେ କଣ ନ ଜାଣି, କେବେ କଣ ଦେଖିବାକୁ ନ ପାଇ ?"

"ଚଢ଼ଚଢ଼ା, କାମୁଡ଼ା କେଁ କେଁଣ୍ଡିଆ ହୋଇ ଉଠନ୍ତୁ, ମ୍ୟାକ୍‌ସିମିଚ୍" ଯୈଷାଗ୍ରେଭ କହିଲା ଦିନେ ମନଧ୍ୟାନ ଦେଇ ଲକ୍ଷ୍ୟ କରି କରି ମତେ ।

କଣ ହେଲା ରେ, କୋଉଠି କଣ ବିଗିଡ଼ିଲା ?" ସୀତାନଭ ବି ବେଳେବେଳେ ପଗ୍ଗୁରି ବସିଲା ।

କି ଉତ୍ତର ଦେବି ଜାଣି ନ ଥାଏ ମୁଁ—

ଲଗିପଡ଼ି ଭୁରି ପରିହାସରେ ଜୀବନଟା ମୋ ଆତ୍ମାରୁ ମୋ ପ୍ରାଣରୁ ପୋଛି ଲିଭେଇ ଦେଉଥାଏ ତା ନିଜର ଅନ୍ଧଲିପିଗୁଡ଼ିକ ମଧ୍ୟରୁ ଯେଉଁଗୁଡ଼ିକ ଶୋଭନ ସୁମହିତ—ଅସ୍ୱସ୍ତିରେ ଈର୍ଷାରେ । ସେ ସବୁର ପରିବର୍ତ୍ତେ ଆଣି ଭର୍ତ୍ତି କରି ଦେଉଥାଏ ଅତି କୁତ୍ସିତ ନିରର୍ଥକ ବାଜବାଜା ନାରଆଗାରେଇଗୁଡ଼ାଏ । କ୍ରୋଧରେ ଶକ୍ତ ଜିଦ୍‌ରେ ଅଟଳ ହେଇ ମୁଁ ପ୍ରତିରୋଧ କଲି ତାର ଧ୍ୱଂସକ୍ରିୟାକୁ । ମୁଁ ବି ଭାସି ଭାସି ଚାଲିଥାଏ ସେଇ ଏକା ନଈରେ ଭାସି ଭାସି ଯାଉଥାଏ ସୁଅରେ ସମସ୍ତଙ୍କ ପରି, ସମସ୍ତଙ୍କ ସାଥିରେ । କିନ୍ତୁ ମୋ ପାଇଁ ପାଣିଟା ଜାଳକର, ଥଣ୍ଡାକର—ସେମିତି ସେତେ ଉଚ୍ଛୁଳି—ଆନନ୍ଦ ଉଚ୍ଛୁଳି ନ ଥାଏ—ବେଳେବେଳେ ମନେ ହେଉଥାଏ ମୁଁ ଯେମିତି ବୁଡ଼ିଯାଉଛି ତଳକୁ ତଳକୁ ଅତଳକୁ ।

ତଥାପି ଲୋକେ, କାରଖାନାର ଲୋକେ ଭଲ ବ୍ୟବହାର କରିବାକୁ ଆରମ୍ଭ କରିଦେଇଥାନ୍ତି ମୋ ପ୍ରତି । ପାଟିତୁଣ୍ଡ କରୁ ନ ଥାନ୍ତି ମୋ ଉପରେ ପ୍ୟାଭେଲ ଉପରେ କଲାପରି । କି ମତେ ବୋଲ କରିବାକୁ ଡାକ ଗୁଡ଼ୁ ନ ଥାନ୍ତି, 'ହୁକୁମ' ଦେଉ ନ ଥାନ୍ତି—ମତେ ଡାକୁଥାନ୍ତି ମୋର ବଣ—ସଂଜ୍ଞାରେ, ଗୋଟେ ସ୍ନେହଶ୍ରଦ୍ଧା ଚକ୍ଷୁରେ ଦେଖୁଥାନ୍ତି—ଏହା ଗୁରୁତ୍ୱ ସହ ଜଣେଇବା ପାଇଁ ! ଏସବୁ ମନକୁ ପାଉଥାଏ ମୋର, ଆମୋଦଥା ଲାଗୁଥାଏ—କିନ୍ତୁ ଦୁଃଖ ହେଉଥାଏ—କଷ୍ଟ ହେଉଥାଏ ମନରେ, ଦେଖୁଥାଏ ଯେତେବେଳେ—କେତେ କେତେ ଲୋକ ଭୁଡ଼ିରହୁଥାନ୍ତି ଭ୍ରୋବକାତେ—ମ ତାଲ ଅବସ୍ଥାରେ କି କଦାକାର ଚରିତ୍ର ହେଉଥାନ୍ତି ସେମାନେ—ପାଟରେ ପଶି ହେଉ ନ ଥାଏ ସେମାନଙ୍କର—ସ୍ତ୍ରୀ ଲୋକଙ୍କ ସହିତ ସେମାନଙ୍କର ସମ୍ପର୍କ ଅସ୍ୱାସ୍ଥ୍ୟକର । କି କଦର୍ଯ୍ୟ ଆଏ ସତେ—ଯଦିଓ ଉପଲବ୍ଧି କରିଥାଏ 'ସୁରା ଓ ନାରୀ' ହିଁ କେବଳ ଯାହା ଜୀବନ 'ଦାନ' କରୁଥାଏ ସେମାନଙ୍କୁ ଚିତ୍ତ ବିନୋଦନ କରି ଭୁଲିଯିବା ପାଇଁ ।

'ଗଣ୍ଟିର ଦୁଃଖରେ ସ୍ପୃଷ୍ଟରେ ଆସି ଯାଉଥାଏ—ନାଡାଲ୍ୟା କେଜ୍ଳେସ୍କେ-ସ୍କାଫ୍ଟା—କେତେ ଜାଣିବାର ଶୁଣିବାର, କେତେ ବିଚକ୍ଷଣା— କର୍ଣ୍ଣିକା—କେତେ ସାହସିନୀ—କିନ୍ତୁ ହେଲେ କଣ ହେବ ସେ ବି ଭାବୁଥାଏ ଧରି ନେଇଥାଏ । ନାରୀ କେବଳ ଆମୋଦ ପାଇଁ, ପ୍ରମୋଦ ପାଇଁ—ମନ ଭୁଲାଇବା ପାଇଁ !

କିନ୍ତୁ ଆଇମା ? ରାଣୀ ମାର୍ଗଟ ? ଏମାନଙ୍କ କଥା—

ଉପ୍ସ ଆଉ ସଭ୍ରମର ଅନୁଭୂତିରୁ ମନେପଡ଼ିଗଲା ରାଣୀ ମାର୍ଗଟ ! ସମସ୍ତଙ୍କଠୁ, ସବୁ ଘଟଣାଠୁ—ଏତେ ଅଲଗା—ଏଭଳି ସ୍ୱତନ୍ତ୍ର ଥିବାରୁ ସେ—ଲାଗିଲା କେବେ କେଉଁ କାଳରେ ତାକୁ ଭେଟିଥିଲି ଯେମିତି ସ୍ୱପ୍ନରେ—ସ୍ୱପ୍ନଦେଶରେ !

ଯେଉଁଠି ଅନ୍ୟମାନେ ଛୁଟିଦିନଗୁଡ଼ିକ କଟାଉଥାନ୍ତି ଆମୋଦରେ ପ୍ରମୋଦିନୀଙ୍କ ଗହଣରେ, ସେଠି ମୋର ଆଗିଲା କାମ-ନଷ୍ଟ ଦିନ କଟେଇବାର ସମ୍ଭାବନା କେମିତି କଣ ଥାଏ କେତେଦୂର ବିସ୍ତୃତ ବିସ୍ତୃତ ଅନେକ ଥର ଆରମ୍ଭ କରିଦେଲି ବହୁତ ବେଶୀ ଭାବିବାକୁ ସ୍ତ୍ରୀଲୋକଙ୍କ ସମ୍ପର୍କରେ, କୌଣସି ଦୈହିକ ମିଳନ ଆଶାରେ କାମ ଲାଲସାରେ ନୁହେଁ କିନ୍ତୁ । ସତେଜ ସ୍ୱାସ୍ଥ୍ୟବାନ ଥାଏ ମୁଁ, ଭୂତ ପ୍ରେତ ଭକ୍ତ ସ୍ୱଭାବର । ତେବେ ବେଳେବେଳେ ପ୍ରବଳ ହୋଇ ଉଠୁଥାଏ ଆକୁଳ କରି ଦେଇ, ଅଧୀର, ଅସହିଷ୍ଣୁ ବାସନାଟା ପ୍ରାଣରେ—ସ୍ନେହମୟୀ ଲାବଣ୍ୟମୟୀ ସୁକୁମାରୀଟିଏ ଖୋଜୁଥାଏ ମୁଁ ମତେ ବୁଝିବାକୁ ସମଝିବାକୁ ହୃଦୟବନ୍ତୀଟିଏ ମିଳନ୍ତା କି ? ଟାଣି ନଅନ୍ତି ବୁକୁ ଉପରକୁ ଚିପି ଧରନ୍ତି ଆଲିଙ୍ଗନରେ. ଆଲିଙ୍ଗନରେ—ସେଭଳି ତରୁଣୀଟିଏ, ନାରୀଟିଏ କେହି ଯାହା ପାଖରେ ହୃଦୟଖୋଲି ଅଜାଡ଼ି ହୋଇପାରନ୍ତି ମୋ ମର୍ମର ଯେତେ ଯନ୍ତ୍ରଣା, ଯେତେ ବେଦନା ଅଜାଡ଼ି ଦେଇପାରନ୍ତି ଶିଶୁଟିଏ ପରି ଜନନୀର ପାଖରେ ।

ପ୍ୟାଭେଲକୁ ଈର୍ଷା ହେଉଥାଏ ମୋର । ଦିନେ ରାତିରେ ଶୋଇଥାଉ ପାଖାପାଖି । ବିଶ୍ୱାସରେ ସେ କହୁଥାଏ ମତେ ତା ପ୍ରଣୟ କାରବାର ବିଷୟରେ, ଯାହା ଚଳାଇଥାଏ ସେ ରାସ୍ତା ଆରପାଖର ଗ୍ରାହକରାଣୀଟି ସଙ୍ଗରେ !

"ଆରେ କଣ କହିବ ରେ, ଅଦ୍ଭୁତରେ ଭାଇ– ଏଇ ମାସକ ତଳେ—ହଁ, ମାସେ ଖଣ୍ଡେ ହେବ । ତା ଉପରେ ବରଫଫୁଲା—ଫିଙ୍ଗୁଥିଲି ମୁଁ—କାହିଁକି ଟିକେ ଅନାନ୍ତି ବା ତାକୁ । କି କାମରେ ବା ଆସିଥାନ୍ତା ମୋର ! କିନ୍ତୁ ଏବେ ଯେତେବେଳେ ସେଠି ସେଇ ବେଞ୍ଚ ଉପରେ ଆସି ବସେ ମୋ ଦେହକୁ ଲାଗି—ଅନୁଭବ କରେ ମୁଁ ବସିଛ ସେ—ମିଶିଯାଇଛ ମୋ ସାଥିରେ—ଆରେ, ସେତେବେଳେ କଏ ଆଉ ହେବ ତା ପରି, କେହି ଲାଗନ୍ତି ଅଛି ତା ସମାନ··· ।"

"କଣ ସବୁ ଗପୁ ତୁ ତା ଆଗରେ ?"

"ସବୁ ଝିକନଝି ଯେତେ ଯାହାସବୁ । ସେ କହେ ତା ନିଜ କଥା, ନିଜ ବିଷୟରେ । ଆଉ ମୁଁ କହେ ମୋର—ତାପରେ ଚୁମା ଦିଆଦେଇ···ସେଇ କେବଳ କେତେ ସହଜ, ସରଳ, ସଚ୍ଛୋଟ, ନିଷ୍କପଟ—କଳ୍ପନା କରିପାରିବୁ ନାହିଁ କେତେ ଭଲ ସେ···। ଆରେ ରୁତ ପିକା ଟାଣୁଚୁ ଧୂଆଁ ଗୁଡ଼ୁ ସୈନିକଟାଏ ପରି ।"

ଅତିଶସ୍ତ ପିକା ଟାଣୁଥାଏ ମୁଁ ତମାଖୁ ପଣି ରହୁଥାଏ ମୋ 'ମଥାରେ'—ମୋର ହୃଦବେଗମୟ ଭାବନାଗୁଡ଼ିକୁ, କଳ୍ପନାଗୁଡ଼ିକୁ ମାନ୍ଦା ମାନ୍ଦା ନିର୍ଜୀବ ଜଡ଼ କରିଦେଇ । ଭାଗ୍ୟ ଭଲ ମୋର—ଭୋଦକାର ସ୍ୱାଦୁ କି ଗନ୍ଧ କେଉଁଟି ହେଲେ ସହିପାରୁ ନ ଥାଏ ମୁଁ । ନାକରେ ହାତ ଦେଇ ଦୂରେଇ ରହୁଥାଏ ତା'ଠୁ । କିନ୍ତୁ ପ୍ୟାଭେଲଟି, ପିଉଥାଏ ବହୁତ । ପିଇ ପିଇ ମରୁଆଲ ହେଲେ ଅତି କରୁଣଭାବରେ ବାହୁନି ଲଗୁଥାଏ ।

"ଘରକୁ ଯିବି ରେ, ଘର କାହିଁ, ଘର ନାହିଁ ମୋର । ନେଇ ଯାରେ ମତେ ଘରକୁ । ଗ୍ରିଙ୍କ ମତେ ଯାଏଁ ମୁଁ ଘରକୁ ଯାଏଁ ।

ୟୁକ୍ରେଉଣ୍ଟିଏ ସେ । ଅନେକ ଦିନୁ କାଳ ହୋଇଥାଏ ତା ବାପା ମା'ଆ ଦିହେଁଙ୍କର । ଭାଇଟିଏ କି ଭଉଣୀଟିଏ ନ ଥାଏ ତା'ର । ଆଠବର୍ଷ ବୟସରୁ ଅଜଣା ଲୋକଙ୍କ ସାଥିରେ ଚାଲି ଆସୁଥାଏ ସେ ।

ଏହିଭଳି ଅଧୀର ଅଧୀର 'ଖିଟିଖିଟିଆ' ଅଥୟ ମତିଗତି ମୋର ଯେତେବେଳେ ମୁହଁ କାଢ଼ିଲା ବସନ୍ତଟା ଧୀରେ ଧୀରେ ତାର ମାୟାରେ ମୋହରେ ପଡ଼ି ଆହୁରି ବଢ଼ିଗଲା, ଖାଡ୍ ହୋଇ ଉଠିଲା ମୋର ସେଇ ଅବାଧ ମନଟା । ସ୍ଥିର କରି ନେଲି ଆଉ ଥରେ ଯାଇ ଜାହାଜରେ କାମ ଖୋଜିବି ଯେମିତି କି ଆସ୍ତାଖାନରେ ପହଞ୍ଚିଲା ପରେ ପଳେଇ ଯାଇ ପାରିବି ପାରସ୍ୟକୁ ।

ମନେ ପଡ଼ୁ ନାହିଁ କାହିଁକି ପସନ୍ଦ କଲି ମୁଁ ପାରସ୍ୟକୁ, ବାଛିଲି ସେଇଟିକୁ ସେଠିକି ପଳେଇଯିବି, ବୋଧହୁଏ ନିଝ୍‌ନି ନୋଭୋଗୋରୋଡ୍ ମେଳାରେ ପାରସ୍ୟର ଯେଉଁ ବଣିକମାନଙ୍କୁ ଦେଖିଥାଏ ସେମାନଙ୍କ ପ୍ରତି ଆକୃଷ୍ଟ ହୋଇଥାଏ ଖୁବ୍ ମୁଁ । ଖରାରେ ବସି ଖରା ପୋଉଁ ଖୁସିରେ କେତେ ଧୀରଶାନ୍ତଭାବରେ ହୁକା ଟାଣୁଥିଲେ ସେମାନେ—ପାଷାଣର ମୂର୍ତ୍ତି ଗୁଡ଼ିଏ, ସୁରଙ୍ଗିମ ଦାଢ଼ି, ବଡ଼ ବଡ଼ କଳା କଳା ଗମ୍ଭୀରିଆ ସବଳ ଆଖି ସେମାନଙ୍କର ଏଇସବୁ ।

ହୁଏତ ମୁଁ ପଳେଇ ଯାଇଥାନ୍ତି, ଯଦି ଇଷ୍ଟର ଉତ୍ସବ ସପ୍ତାହଟିରେ ଯେତେବେଳେ ଚଡ଼ଦାରମାନଙ୍କ ମଧ୍ୟରୁ କେତେକ ଚାଲିଯାଇଥିଲେ ନିଜ ନିଜ ଗାଁକୁ, ଆଉ ଯେତେ ଜଣ ଥିଲେ ମାତିଥିଲେ ମଦପିଆ ମଉଜରେ ଭେଟି ନ ଥା'ନ୍ତି ମୋର ପୂର୍ବର ମାଲିକ ସେଇ । ଆଇମା'ର ପୁତୁରାଙ୍କୁ ଓକା ନଦୀ ଉପରକୁ ସୂର୍ଯ୍ୟକିରଣରେ ଚକ୍ ଚକ୍ ପଡ଼ିଆରେ ଧୀରେ ବୁଲୁଥିଲାବେଳେ ସେ । ହାଲୁକା

ପାଉଁଶିଆ ରଙ୍ଗର କୋଟ୍ ଦେହରେ ଝୁଲୁଥିଲେ ଝୁଲି ଝୁଲି ଧୀରେ ଧୀରେ । ହାତ ଦୁଇଟି ପ୍ୟାଣ୍ଟ ପକେଟରେ, ଦାନ୍ତ ଦ'ପାଟି ମଝିରେ ସିଗାରେଟ, ଟୋପିଟି ଆମୋଦିଆ ଭାବରେ ତଳ ରହୁଥାଏ ମୁଣ୍ଡ ପଛପଟକୁ ବେକ ଉପରକୁ । ତାଙ୍କ ପାଖରେ ପହଞ୍ଚିଲା ମାତ୍ରେ ବନ୍ଧୁଭଳି ଗୁହ୍ଣି ହସିଲେ ଟିକିଏ । ମଉଜିଆ ଝୁପିବାସିଆ ଖୋଲା ମନରେ ମୃତ୍ପ୍ରିୟ ଲୋକର ହୃଦୟଜଣା ହାବଭାବ ପ୍ରକୃତିଟି ତାଙ୍କର । ସେ ଆଉ ମୁଁ ଦୁହେଁ—ଆମେ ସେତେବେଳେ ସେଠି ଆଉ କେହି ନ ଥିଲେ କୁଆଡ଼େ ।

"ଆରେ ପେଶକଭ ଯେ ! ଅଭ୍ୟୁଦୟ ହେଲାଣି ଖ୍ରୀଷ୍ଟଙ୍କର !"

ଇଷ୍ଟର ଉତ୍ସବ ଉପଲକ୍ଷେ ପରସ୍ପରକୁ ଚୁମ୍ବନ ଦିଆଦେଇ ଶେଷ ହେଲା ପରେ ପଚାରିଲେ ସେ, କେମିତି କଣ ସବୁ ଚାଲିଚରେ ତୋର । ଖୋଲିଖୋଲି କହିଲି ଆଉ ଭଲ ଲାଗୁନ କାରଖାନା, ଏ ସହରର ସାଧାରଣଭାବେ ସବୁ କଥା । କେମିତି ଉତ୍ପୀଡ଼ିତ ହୋଇ ଉଠୁଚ ପ୍ରାଣଟା । ସ୍ଥିରକରି ସାରିଚ ଚାଲିଯିବ ପାରସ୍ୟକୁ ।

"ଆରେ ସେ କଣ ? ଛାଡ଼ ସେ କଥା ପୁରୁଣା ମୁଣ୍ଡରେ ଆଉ । ଗୁରୁତ୍ୱର ସହିତ ଗମ୍ଭୀର ଭାବେ କହିଲେ ସେ ।" ଯାଉ ନରକକୁ ଯାଉ ପାରସ୍ୟ । ଜାଣେରେ ଭାଇ, ତୋ ବୟସରେ ମୁଁ ବି ଦିନେ ଭାବିଥିଲି ପଳେଇବି ପଳେଇଥାନ୍ତି କୁଆଡ଼କୁ କୋଉଠିକି ସଇତାନକୁ ହିଁ ମାଲୁମ ଥିବ ।

ଭଲ ଲାଗିଲା ସେ ଯେଉଁ ବେପରୁଆ ବେଖାତିର ଭାବରେ ଧାଉଁକାନ୍ତି ଉପରକୁ ଏଣିକି ତେଣିକି ଫିଙ୍ଗିଫୋପାଡ଼ି କରୁଛନ୍ତି ସଇତାନଟାକୁ । ତାଙ୍କ ଭାବଗତିରେ ଥିଲା କେମିତି ଗୋଟାଏ ମହତ୍ତ୍ୱ, କେମିତି ଗୋଟାଏ ବାସନ୍ତିକତା ବସନ୍ତର ବିଳାସ । ତାଙ୍କର ପ୍ରତ୍ୟେକଟି ଭାବଭଙ୍ଗୀ ପ୍ରତ୍ୟେକଟି ଘଟନା ତାଙ୍କୁ ଦେଉଥିଲା ଖୋଲି ଖୋଲି ବଡ଼ଲୋକ ଗୁରୁଙ୍ଗରେ ଚଞ୍ଚଳ ।

"ସିଗାରେଟ୍ ଟାଣ୍ଡୁ ?" ରୁପାର ସିଗାରେଟ୍ କେସ୍ ଆଗକୁ ଭର୍ତ୍ତି ସିଗାରେଟ୍‌ରେ ମୋ ଆଡ଼କୁ ବଢ଼ାଇ ଦେଇ ପଚାରିଲେ ସେ ।

ଏତିକ ହିଁ ମତେ ଜିଣିନେଲା, ପୁରାପୁରି ତାଙ୍କର କରିନେଲା ମୁହୂର୍ତ୍ତକରେ ।

ଦେଖ୍ ପେଶ୍‌କଭ୍ ; କଣ ବରୁଚୁ ଫେରିଆସି ମୋ ପାଖରେ ମୋ ପାଇଁ କାମ କରିବାକୁ ? ଏ ବର୍ଷ ମେଲାରେ ମୁଁ କଣ୍ଟ୍ରାକ୍ଟ ପାଇଛି ପ୍ରାୟ ଚାଳିଶି ହଜାର ରୁବଲ୍ । ତତେ ମୁଁ ବାହାରେ ରଖିବି ମେଳା ପଡ଼ିଆରେ ମେଲା ଯେଉଁଠି ବସୁଚ, ସେଇଠି ଏକପ୍ରକାର ଓଭରସିଅର ହେବୁ ତୁ । ଅଣାଅଣି କରିବୁ, ରଖାରଖି କରିବୁ ଠିକ୍ ସମୟରେ ଠିକ୍ ସ୍ଥାନରେ ସେ ସବୁ ପହଞ୍ଚେଇ ହେବ ଯେମିତି ଡେଲିଭରି ଦେଇ ହେବ । ଆଉ ନଜର ରଖିବୁ ଯେମିତି କିଛି ଚୋରଫୋର ନ

କରନ୍ତି ମୁଣ୍ଡଆଁଗୁଡ଼ାକ । କଣ କହୁଚୁ—ଏ କାମ ପାଇବ ନାହିଁ ଟଜେ ? ଦଶଜମା ମାସକୁ ପାଞ୍ଚ ରୁବଲ ଆଉ ପାଞ୍ଚ କୁପେକ୍ ଖାଇବା ପାଇଁ ପ୍ରଚ୍ଛଦନ । ମୋ ପିଲା ମାଇପଙ୍କ ସଙ୍ଗରେ କିଛି ସମ୍ପର୍କ ରହିବ ନାହିଁ ତୋର—କିଛି କରିବାକୁ ହେବ ନାହିଁ ତାଙ୍କ ପାଇଁ, ସେହି ମାଇପି ଲୋକଙ୍କ ପାଇଁ । ସକାଳୁ ଘର ଛାଡ଼ିବୁ ଯେ ଛାଡ଼ିବୁ ସଞ୍ଜ ହେବା ଯାଏ । ଫେରିବୁ ସଞ୍ଜକୁ । ମାଇପିଗୁଡ଼ାଙ୍କ କଥା ଉଠିବ ଅଉ କେଉଁଠୁ ? କୋଉଠୁ ବା ଆସିବେ ନାହିଁ 'ଚକ ଭିତରକୁ । ଖାଲି କହିବୁ ନାହିଁ ତାଙ୍କୁ—ଆମର ଭେଟ ହୋଇଚ ବୋଲି । ଏମିତି ସେଣ୍ଟଥମାସଙ୍କ ରବିବାର ଦିନ ନ ଜାଣିଲା ପରି କିଛି ଆଉ ଘରକୁ ତା' ପରେ ତ ସେଇଠ ।

ଦୁହେଁ ଦୁହିଁଙ୍କଠୁ ବିଦାୟ ନେଲୁ ଗଭୀର ସୌହାର୍ଦ୍ଦ୍ୟରେ । ଯିବା ପୂର୍ବରୁ ମୋ ହାତରେ ହାତ ମିଳାଇଲେ ସେ—ଏମିତକ କିଛି ଦୂର ଗଲା ପରେ ଟୋପିଟିକୁ କାଢ଼ି ହଲାଇଲେ ।

ଯେତେବେଳେ କାରଖାନାକୁ ଫେରିଯାଇ ଚକକାରମାନଙ୍କୁ କହିଲି ଯାଉଚ, ବିଦାୟ ନେଇ ଯାଉଚ, ଅଧିକାଂଶ ସେମାନଙ୍କ ଭିତରୁ ମନରେ ଦୁଃଖ ପ୍ରକାଶ କଲେ, ନିଜକୁ ଧନ୍ୟ ମଣି ନ ଥାନ୍ତି ବା କେମିତି ସେଥିରେ ? ପ୍ୟାଭେଲ୍ କିନ୍ତୁ ସମ୍ଭାଳି ହେଲା ନାହିଁ, ରାଗିଗଲା ।

"ହୁଁ ଯିବୁ ଯା, ଆମକୁ ଛାଡ଼ି ଯିବୁ ସେହି ଗୃହିଣୀଗୁଡ଼ାଙ୍କ ସାଗରେ ଚଳିବା ପାଇଁ ।" ବିଦ୍ରୂପକର ଛାବ୍ଭାବରେ ଭର୍ତ୍ସନାକରି କହିଲା ସେ । "ବଢ଼େଇଗୁଡ଼ାକ କାଗଜ ଟଙ୍କାଳଗୁଡ଼ାକ ଛୁଃ-ଫୁଃ ! ଏଇ କାମକୁ କହନ୍ତି ବିଶପ ପାଦ୍ରୀଆରୁ ଉଠି ଶ୍ରେଷ୍ଠ ପାଦ୍ରୀ ହେବା ।"

ଭ୍ରୂଟୁ ଭ୍ରୂଟୁ ହେଲା ଝିଖାରେଭ ।

ମାଛ ଗଣ୍ଡିରତା ଖୋଜି ହେଲା ଭଲ ଟୋକା-ଭେଣ୍ଡିଆ ସବୁ ଖୋଜନ୍ତି ତାକ ହୁଅନ୍ତି ଗଣ୍ଡଗୋଳ ।

ଚକକାରମାନେ ମତେ ବିଦାୟ ସମ୍ବର୍ଦ୍ଧନା ଜଣାଇଲେ, ମାନ୍ଦା ମାନ୍ଦା ଶୁଖିଲା ଶୁଖିଲା ଉଦାସିଆ ।

ସତ କହିଲେ ତତେ ଏଇଟିରେ ଚେଷ୍ଟା କରିବାକୁ ହେବ ଏବଂ ସେଇଠାରେ ବି ମଦ ପିଇ ପିଇ ସବୁଜ ସ୍ୱପ୍ନରେ ବଞ୍ଚେର ବା ଖୁସି ମିଷ୍ଟାସରେ କହିଲା ଝିକାରେଭ—"କିନ୍ତୁ ଭଲ ହେବ କଣ ଜାଣୁ" ଆଦ୍ୟରୁ ଠିକ୍ ଗୋଟାଏ କଥା ଗୋଟାଏ କାମକୁ ଜୋରରେ ମୁଠେଇ ଧରିବା । ଆଉ ସେଥିରେ ହିଁ ଲାଗି ରହିବା ଯା ହେଉ ପଛେ ।"

"ଭଲ ପାଇଁ ମନ୍ଦ ପାଇଁ ଧୀର ସ୍ୱରରେ ଯୋଗକଲା ଲାରିଓନିଖ୍ ।

ଅନୁଭବ କରୁଥାଏ—ବାଧକଣ ନଳ ନଳକୁ—ଯେମ ନେ ଏସବୁ କହୁଅ'ନ୍ତି କର୍ତ୍ତବ୍ୟର ଖାତରରେ । ଯେଉଁ ଭୋଗରେ—ଯେଉଁ ସ୍ୱାଦରେ ବନ୍ଧା ହୋଇଥିଲି, କେମିତ ନେଉଁ କାରଣରୁ ସଢ଼ି ପଡଯାଇଥାଏ - ଗ୍ଲୁତ୍ତଗଲି ଅଖି ମିଛୁଲା ନ ପଡ଼ୁ ।

ମାତାଲ ଗୋଖୋଲେଭ—ଦ୍ୱପର ଖ୍ଲତ୍ତରେ ଶୋଇ ଗଡ଼ୁଥାଏ ଏପଟ ସେପଟ—ବସିଲି ବସିଲି ସ୍ୱରରେ ଚୂପୁଚୂପୁ ହେଲ :

"ଯଦ୍ଧ ଗ୍ବଦ୍ଧେଁ—ତମ ସମସ୍ତଙ୍କୁ ନେଇ ପୁଟେଇ ଦେବ କେଲରେ ! ମାଲୁମ୍ ମତେ ଗୋଟାଏ ଗୁପ୍ତକଥା ମାଲୁମ୍ । ଜଣେ ମୁଁ ଦେଖୁ କେଖୁ ତମେ ବଶ୍ୱାସ କରନା ଭଗବାନଙ୍କୁ—ଆହା—ହା !"

ମୁହଁ ନ ଥିବା, ପୁରପୁର ଅଙ୍କା ସଣ ନ ଥିବା ଚଦପଟ—ମୂର୍ତ୍ତିଗୁଡ଼ାକ ତେବେ ବ ଛୁଡ଼ା ହୋଇଥାନ୍ତି କାନ୍ଥଗୁଡ଼ାକୁ ଅଉଳି ସେମିତ—ଯାଗପର । ଅଦ୍ଧ କାଚ ହାଣ୍ଡିଗୁଡ଼ାକ ଲଖି ରହୁଥାଏ ଘର ଭିତରେ ପଡ଼ୁ ଛୁତତଲେ । କଚ୍ଛୁଦନ ହେବ ସେତେବେଳକୁ, ଶନା କୃତ୍ରିମ ଅଲୁଅରେ କାମ କରୁଥାଉ ଆମେ, ତେଣୁ ଦରକାର ହେଉ ନ ଥାଏ ଗ୍ଲତରେ ଝୁଲି କାଚହଣ୍ଡାଗୁଡ଼ାକ— ସେଥିରେ ବସିଯାଇଥାଏ ପାଉଁଶିଆ ପାଉଁଶିଆ ଧୂଳ ଅଦ୍ଧ ଅଳନ୍ଧୁ । ପ୍ରତ୍ୟେକଟି ଜନଷ, ପ୍ରତ୍ୟେକଟି ଘଟଣା—ସେ କାରଖାନା ଘରର ଏମିତ ନଳ ନଳକୁ ଗଭୀର ଖ୍ଲବରେ ଆଙ୍କି ଗ୍ଲୁପିଦେଲେ ମୋ ମନରେ । ଏବେ ବ ଖାଲି ଆଖି ଯୋଡ଼କୁ ବୁଜିବାକୁ ପଡ଼ବ ଦେଖିବାପାଇଁ ସେହ ଅନ୍ଧାର ଘରକୁ—ସେଥିରେ ଥିବା ଟେବୁଲଗୁଡ଼ାକୁ—ଝରନା କାଚ ଉପର ରଙ୍ଗ ଟିଣଗୁଡ଼ାକ—ଗୋଲ୍ଲକୁ ଗୋଲ୍ଲ ରଙ୍ଗ ବୋଲିବା ପାଇଁ ବ୍ରୁରୁଶ, ଚିତ୍ରପଟଗୁଡ଼ାକ, ମୂର୍ତ୍ତି ସବୁ. ମଇଳା ପାଣି ଢାଳିଟିଏ ଘର କଣରେ ନଆଁ ଲଗିଲର ଲୁହ ଟୋପି ଅକୃତର ତମ୍ବା ପାଣିକୁଣ୍ଡ ତଳେ. ଅଉ ଗୋଖୋଲେଭର ଖାଲି ଖୋଲ ଗୋଡ଼ଟା—ମୁରଦାରରେ ଗୋଡ଼ପଶ ନେଳପଡ଼ ଝୁଲୁଚ ଭିଡ଼ ଧାରରୁ ।

ଉଚ୍ଛନ୍ନ ହେଉଥାଏ ମୁଁ ଖସି ଆସିବା ପାଇଁ କାରଣ ବୁଝୀସ୍ବର ପ୍ରକୃତ ହେଉଛି—ଦୁଃଖର ବଷାଦର ମୁହୂର୍ତ୍ତଗୁଡ଼କୁ ଲମ୍ବେଇ ଲମ୍ବେଇ ଓଟୋ କରଦେବା । ଏଣୁ ସାଧାରଣ ବଦାଯ୍ଭ ସଭା ପାଲଟିଯାଏ ସମ୍ପୂର୍ଣତାବକ ଶୁଦ୍ଧିଶ୍ରାଦ୍ଧ ସଭାରେ ।

ମୁହଁ ଫଣଫଣ କର—ଗରଗର କର ଝିଙ୍କାରେଉ କହଲ ମତେ—

"ଦେଖ୍, ମୁଁ ତତେ ଫେରାଇ ଦେଇ ପାରବ ନାହିଁ କହୁଟା 'ଗ୍ରାହସ'— ଯଦ୍ଧ ଗ୍ବହୁଁ ବହୁଟା ପାଇଁ କୋଡ଼ଏ କପେକ୍ ଦେଇପାରେ?"

ଲମର୍ଣ୍ଣଭଙ୍କ ବହୁଟିକୁ ଗ୍ଲୁଣ୍ଡଦେଇ ଅସିବା—କଠିଣ ଥିଲା. ଦୁଃଖର ଅଳ୍ପ ମୋ ପାଇଁ—ବଶେଷରେ ଯେହେତୁରୁ ସେଇଟି ଥିଲା ବୁଢ଼ା ନଆଁ ଲଗିଲ ମୁଖିଆ

ମିଳିଥିବା ଉପହାର କିନ୍ତୁ ଯେତେବେଳେ ଧୈର୍ଯ୍ୟ ହରାଇ କହିଲେ ତନେ—ମନା କରିଦେଇ ପଇସାପତ୍ର ନେବାକୁ ବସ୍ତ୍ର ବଦଳରେ—ଝିଙ୍ଗାରେଇ ବେଶ୍ ଅବିଚଳିତ ସ୍ୱରରେ ଯେଉଁ କପେକ୍ଟର ଧରିଥିଲା ପୁଣି ପୂରେଇଦେଲା ଗାଣ୍ଠିଆରେ—ଟିକିଏ ହେଲେ ବିଚଳିତ ନ ହୋଇ ଘୋଷଣା କଲା—

"ଯେମିତି ତୋ ଇଚ୍ଛା—କିନ୍ତୁ ଏଇଟା ସତ—ମୁଁ ବସ୍ତ୍ରଟା ଦେବ ନାହିଁ, ଛାଡ଼ିବ ନାହିଁ, ସେ ବସ୍ତ୍ର ତୋ ପାଇଁ ନୁହେଁ । ଯେମିତିଆ ବସ୍ତ୍ର ଯୋଗୁଁ ଆଖି ପିଛୁଳାକେ ତୁ ନିଜକୁ ମୁସ୍କିଲରେ ପକାଇଦେବୁ—ବିପଦରେ ପକାଇ ଦେବୁ ।"

"କିନ୍ତୁ ସେ ବସ୍ତ୍ର ତ ପୁଣି ବିକ୍ରି ହେଉଛି ବସ୍ତ୍ର ଦୋକାନରେ । କେତେ ଦେଖିଛି ମୁଁ ଲୋକେ ବିକ୍ରି କରୁଛନ୍ତି ।"

"କଣ ହେଲା ସେଥିରୁ ? ଦୋକାନରେ କଣ ପିସ୍ତଲ ବିକ୍ରି କରନ୍ତି ନାହିଁ ସେମାନେ ?" ଯୁକ୍ତି ଦର୍ଶାଇ ଦୃଢ଼ବିଶ୍ୱାସ ଜନ୍ମେଇ ଉତ୍ତର ଦେଲା ସେ—

ଆଉ କେବେହେଲେ ଫେରାଇଲା ନାହିଁ ବସ୍ତ୍ରଟି ।

ଉପର ମହଲାକୁ ପାହାଚ ଚଢ଼ି ସୁଲ୍ଲି ଯେତେବେଳେ ମାଲିକର ବିଧବା ସ୍ତ୍ରୀକୁ ଭଡ଼ା ବଢ଼ାଇ ନେବା ପାଇଁ ତାଠୁଁ—ବାଟ ଘର ମଝିରେ ହାବୁଡ଼ିଗଲା ତା ହିସାବକୁ ।

"କଣ ସମସ୍ତେ କହୁଛନ୍ତି ସୁଲ୍ଲିଯାଉଚୁ ତୁ—ଘାଣ୍ଟିଯାଉଚୁ ଆମକୁ ?" କହିଲା ସେ—

"ହଁ ଯାଉଚି ।"

"ଭଲ ହେଲା, ଯାଉଚୁ ସୁଲ୍ଲି । ନଇଲେ ସେମାନେ ତଡ଼ି ଦେଇଥାନ୍ତେ ତତେ ।" ପ୍ରକାଶ କଲା ସେ—ଏମିତି କିଛି ଭଦ୍ରସ୍ୱରରେ ନୁହେଁ—କିନ୍ତୁ ଅନ୍ୟବିକତାର ସହିତ—ସଫେଇ ।

ମାତାଲି ମାଲିକାଣୀଟା କହିଲା :

"ବେଶ୍ ବିଦାୟ, ଭଗବାନ ଭଲ କରନ୍ତୁ, ଆଉ ଆନ୍ତୁ ସଙ୍ଗେ ସଙ୍ଗେ ତୋର । ଖରାପ ପିଲାଟାଏ ତୁ—ଉଦ୍ଧତ ଅବାଧ୍ୟ । ତୋର ଖରାପ ଦଗଟା ଚରିତ୍ର କେବେ ଦେଖାଇନୁ ମତେ—କିନ୍ତୁ ସମସ୍ତେ କହୁଛନ୍ତି ଭଲ ନୋହୁ, କୌଣସି କାମକୁ ଯୋଗ୍ୟ ନୋହୁଁ ।"

ହଠାତ୍ କାନ୍ଦିବାକୁ ଆରମ୍ଭ କରିଦେଲା ସେ ମାଲିକାଣୀ—ଫୁଲି ଫୁଲି ଭିତରେ ଟୁପ୍ଟାପ୍ ହୋଇ କହୁ—

"ମୋ ଗିରସ୍ତଟା ହେଲେ ବଞ୍ଚିଥାଆନ୍ତା ରେ—କେଡ଼େ ପୁଣ୍ୟ ପବିତ୍ର ଅଡ଼ାର ଲୋକଟି ସେ ଦେଖିଥାନ୍ତୁ କାନକୁ ଟିକେ ମୋଡ଼ି ଦେଇଥାନ୍ତା ତୋର—ହାତମାରିଥାନ୍ତା ଥପ୍ ଥପ୍—ତୋ ମୁଣ୍ଡରେ—କିନ୍ତୁ ସେ ରଖିଥାନ୍ତା

ଡକେ ଏଠି—ଗୁଡ଼ା ନ ଆନ୍ତା, ବାହାର କରି ଦେଇ ନ ଥାନ୍ତା ରେ ! ସବୁ ତ ଏବେ ଅଲଗା ହୋଇଯାଇଚ ଓଲଟା ହୋଇଯାଇଛୁ—କିଛୁ କେଉଁଠି ହଗିଡ଼ି ଯାଉ ନ ଯାଉଣୁ, ଏତେ ଶୀଘ୍ର—ଦେଖ୍ ବାହାର ଯାଉଚୁ ରୁ ! ଆହା ଲେ ମୁଁ ! କଣ ହେବଟିରେ ଚୋର—କଣ ଘଟିବ—ଆହା ଲେ ମା, ଆହା ପୁଅରେ, ମୋ ଧନରେ !"

## ଷୋହଳ

ମୋ ମାଲିକ ଓ ମୁଁ କୌଣସି ମତେ ବାଟ କରି କଣ ଯାଉଥାଉ ଗୋଟିଏ ନାହାରେ, ଗଳି ରାସ୍ତାର ଭଲ ଜାଗା ଉପରେ ଦୁଇକଡ଼ରେ ଉଞ୍ଚା ଉଞ୍ଚା ପଥର ଘରଗୁଡ଼ାକ ଛିଡ଼ା ହୋଇଥାଏ, ଦ୍ୱିପ୍ରସ୍ଥ ମହଲ ଯାଏ ବୃକ୍ଷ ରହି ବଢିପାଣିରେ ବସନ୍ତ-କାଳୀନ ନଦୀର । ଅନ୍ଧୁଲ ପକାଉଥାଏ ମୁଁ ଅଉ ମାଲିକ ମୋର ବସିଥାନ୍ତି ସଙ୍ଗରେ, ସଂଗ ମୋଡ଼ୁଥାନ୍ତି (ଏଣିକତେଣିକ) ଅଖାଡ଼ୁଆଭାବରେ ଗୋଟାଏ ଅନ୍ଧୁଲକୁ ସଂଗଧରି କରି । ନାହାଟା ନାକ ପୂରେଇ ପୂରେଇ ବୁଲୁଥାଏ ଉଠାଣି ଗୋଟିଏ ଚଳିରାସ୍ତାରେ ତ ଗଡ଼ାଣି ଆଉ ଗୋଟିକରେ—ବୁଲୁଥାଏ ଥିର କିନ୍ତୁ ପଙ୍କ ଗୋଳିଆ ଘତେ ବା ଚଲାକୁଳ ପାଣିରେ ।—

"କେତେ ଉଷ୍ମକୁ ଉଠିଚରେ ପାଣି ଏଥର, ଏଇ ବସନ୍ତରେ । ମଇଡାନ ଖାଉ ନେଉ ସ୍ୱାଙ୍କୁ । ଆମ କାମକୁ ସେ ଅଟକେଇ ଦେବ, ଉଚ୍ଛର କରେଇ ଗୁଡ଼ାବ ଏ ।" ଚୁରୁଟ (ସିଗାର)ଟିଏ ଲଗାଇ ଖଉଁ ଖୁଉଁ ହେଲେ ମାଲିକ—ପୋଡ଼ା ଅଖାର ଗନ୍ଧ ଭଲି ଚୁରୁଟ୍ ଧୂଆଁର ଗନ୍ଧ ଭିତରେ ।

"ସାବଧାନ !" ଭୟରେ ଚମକ ପାଟିକରି ଉଠିଲେ ସେ—"ଆରେ ଅମେ ଯେ ମୁହାଁଇଚୁ ବଗିଖୁଣ୍ଟା ଅଡ଼କୁ !"

ସଂଗଟି ମୋଡ଼ି ଠିକ କରି ନେଇ କହିଲେ—

"ଅଚ୍ଛା ନାହାଟାଏ ଦେଇଛନ୍ତି ଶଳାଏ, ଜାରଜଗୁଡ଼ାକ !" ସେ ଯେଉଁ ଜାଗାଟାକୁ ଦେଖାଇଦେଲେ ଆଙ୍ଗୁଠି ବଢ଼ାଇ, ପାଣି ଗୁଡ଼ ପଡ଼ିଲେ ଯେଉଁଠି ଦୋକାନଗୁଡ଼ିକର ମରାମତି କାମ ଆରମ୍ଭ କରିବାକୁ ହେବ ; ଟିକିଏ ହେଲେ ଜଳି ସେ କାହିଁ ବଣୁଥାନ୍ତେ କାନଡ଼ରଟି ଭଳି, ଚକଣ ଖିଅରମୁହଁ ଗ୍ରେଟଗ୍ରେଟକଟା ନଣ, ଦ'ପାଟି ଦାନ୍ତ ମଝିରେ ଚୁରୁଟ୍, ଏଥିରେ ତାଙ୍କ ରୂପର ମେଳ ଥାଆନ୍ତା ବା କେମିତି କାନଡ଼ରଙ୍କ ରୂପ ସାଥିରେ ! ପିନ୍ଧିଥାନ୍ତି ସେ ଚମଡ଼ାର ଜାକେଟ କୁର୍ତ୍ତା) । ଆଉ ଆଣ୍ଠୁ ଯାଏ ବୁଟ ଜୋତା, କାନ୍ଧରେ ଶୀକାର ମୁଣି, ଗୋଡ ପାଖରେ

ପାଦ ଛୁଇଁ ପଡ଼ୁଥାଏ ଅଥଚ ଡାମିକା ଦୁଇନଳୀ "ଲେବେଲ" ବନ୍ଧୁକ । ଅଡ଼ୁଆ ଲାଗୁଥାଏ କି କଣ ଚମଡ଼ା ଟୋପିଟାକୁ ଝୁଙ୍କେଇ ଝୁଙ୍କେଇ ଟାଣି ଖସାଇ ଦେଉଥାନ୍ତି ଆଖି ଉପରକୁ, ଓଠଯୋଡ଼ିକୁ ଫୁଲେଇ ଫୁଲେଇ ଉଦବଗ୍ନଭାବରେ ଚାହୁଁଥାନ୍ତି ନିଜ ଚାରିଆଡ଼କୁ ଆଉ ଟୋପିଟାକୁ ପୁଣି ଟେକି ଖସେଇ ଦେଇ ପଛପଟକୁ ମୁଣ୍ଡାକୁ, ଟୋକ ଟାଏ ପାଲଟି ଯାଇ ଯେମିତି ହସୁଥାନ୍ତି ଭିନ ଭିନ ଝଣହଲକ ଭିତରେ କଣ ସବୁ ମଧୁର କଳ୍ପନାରେ ହଜିଯାଇ । ଏହିଭଳି ଭାବନାର ସୁଅରେ ଭାସନ୍ତ ଚନ୍ଦ୍ରବାବୁ ରହିତ ଭାବନାରେ ଭାସି ଭାସି ଚାଲିଥାନ୍ତି ସେ, ଟିକଏ ହେଲେ ଆଭାସ ମିଳୁ ନ ଥାଏ ଆକାର ଇଙ୍ଗିତରୁ କାମର ଚାପ ଥାଏ ତାଙ୍କ ଉପରେ କି ସେ ଚଳନ୍ତା ହୋଇ ପଡ଼ୁଥାନ୍ତି ଧୀରେ ଧୀରେ (ଖସୁଥିବାରୁ) ଗୁଡ଼ୁଥିବାରୁ ପଣି !

ମୋ ଆଡ଼ୁ ଦେଖିଲେ, ମୁଁ କିନ୍ତୁ ମନମୁଖୀ ହୋଇଯାଇଥାଏ—ଉଦାସ ହୋଇ ରହୁଥାଏ, ନିଷ୍ଫଳ ଏକ ମୃଦୁଳ ବିସ୍ମୟର ଅନୁଭୂତିରେ, କେଡ଼େ ଅଦ୍ଭୁତ ଲାଗୁଥାଏ ମତେ ଦେଖିବାକୁ ସେଇ ମଳଗଲା ପାଣିରେ ଉବେଇଟୁବେଇ ନଗଗ୍ରାଟି, ଧାଡ଼ିକଧାଡ଼ି ଝରକାଖିନ କୋଠାଘରଗୁଡ଼ାକ ଚୁପଚାପ, ଭାସି ଭାସି ଚାଲୁଥାନ୍ତି ପଛକୁ ପଛକୁ ଅମ ନାହାଟିକୁ ଡେଇଁ ଡେଇଁ ଯେମିତି ।

ଆକାଶଟାଏ ଦିଶୁଥାଏ ପାଂଶୁଳ, ଆଉ ଧୂସର—ସୂର୍ଯ୍ୟ ଛନ୍ଦହୋଇ ପଡ଼ୁଥାଏ ଜଳଦ ଜାଲରେ—ସେହି ଜଳଦ ପଟଳ ଭିତରୁ ବେଳେବେଳେ ମୁହଁ କାଢ଼ି ଚାହିଁ ଚାହିଁ ଦେଉଥାଏ ସୂର୍ଯ୍ୟ ବିରାଟ ଗୋଟାଏ ବୁପେଲ୍ଲି ଶୀତକାଳୀନ ଗ୍ରୀସ ଖେଳାଳିଙ୍କ ଚନ୍ଦ' (ଡ୍ରସ୍ମ) !

ପାଣି ବି ଦିଶୁଥାଏ ପାଂଶୁଳ, ହେମ ଳ ହୋଇଥାଏ ପୁଣି ଅଡ଼ଶସ୍ତଭାବରେ ସୁଅ ସେଥିରେ ପ୍ରସ୍ଥ ବାର ହେଉ ନ ଥାଏ କହିଲେ ଚଳେ, ଜମାଟ ବାନ୍ଧି ଜାକିଜୁକି ହୋଇ ଶୋଇପଡ଼ିଥାଏ ଯେମିତି ଜନଶୂନ୍ୟ କୋଠାଘର ଆଉ ଧୂଳିମାଟିରେ ମଇଳାରେ ହଳଦିଆ ହଳଦିଆ ଧାଡ଼ିକି ଧାଡ଼ି ଦୋକାନଗୁଡ଼ିକ କରେ କରେ' ଧଳା-ଆସିଆ ସୂର୍ଯ୍ୟଟା ଉଙ୍କି ମାରିଲା ଯେତେବେଳେ ମେଘ ମଣ୍ଡଳ ଭିତରୁ ଅସ୍ପଷ୍ଟଭାବରେ ଉଜ୍ଜଳ ହୋଇଉଠିଲା ଚତୁର୍ଦ୍ଦିଗ—ପାଣିରେ ପ୍ରତିଫଳି ଉଠିଲା ଆକାଶର ଧୂସର ପାଂଶୁ 'କପଡ଼ା' । ଆମର ନାହାଟି ସତେ ଯେମିତି ଝୁଲି ରହିଲା ଶୂନ୍ୟରେ ଦୁଇଟି ଆକାଶ ମଝିରେ । ପଥର ଘରଗୁଡ଼ାକ ମୁଣ୍ଡଟେକି ଟେକି ଉଠିଲା ଉପରକୁ ଆକାଶକୁ ଆଉ ତଳିଦଇଁଗଲା ଚୁପଚାପ ଅଧରୁ ଅଦେଖା ଭାସି ଭାସି ଚାଲିଚ ଭଲଗା ଆଉ ଓଳା ନଇ ଆଡ଼କୁ । ଭଂଗାରୁଜା ପିମ୍ପାସବୁ, ପେଡ଼ିପେଟରା ବାକ୍ସ ସିନ୍ଦୁକ ଝୁଡ଼ିଟୋକେଇ ସବୁ କାଠକୁଟା କେତେ କଣ ନାଚୁଚ ପାଣି ଉପରେ, ଗଛକୁ ଗଛ କାଠସବୁ ଖୁଣ୍ଟିସବୁ ମଲା ମଲା ସାପଭଳି ଭାସି ଭାସି ଯାଉଚ ଆମର ପଛକୁ ଆମର ବିପରୀତ ଦିଗକୁ ।

ଏଠି ସେଠି, ଇଁ ଇଁ କେଉଁଠି କେମିତି ଗୋଟାଏ ଅଧେ ଝରକା ଖୋଲା ରହିଚ, ଦୋକାନ ଘର, ଲମ୍ବା ଗ୍ରୀଲ ଉପରେ ଲୁଗାପଟା ପୋଷାକପତ୍ର ଶୁଖୁଛି—କେଉଁଠି ଗୋଟାଏ ଝରକା ଲୁହାଛଡ଼ (ରେଲିଙ୍ଗ) ଗୁଡ଼ିକ ଭିତରୁ ମୁହଁ ବାହାରକରି ଶୁଖୁଛି ପଶମୀ ବୁଟ୍ ଜୋତା—ମାଇପିଟିଏ ବସିଚି ଝରକା ଉପରେ, ଏକାଗ୍ରତାରେ ଚାହିଁ ରହିଚି ଧୂସର ପାଣିକୁ, 'ଗ୍ୟାଲେରି'କୁ ଡବଦେଇ ରଖିବା ପାଇଁ ଛୋଟା ଲମ୍ବା ଖୁଣ୍ଟ ଉପରମୁଣ୍ଡରେ ବଂଧା ନାହାଟିଏ ତାହାର ଲାଲ ଲାଲ କାଠ ଦ'ଟର ଚେଲିଆ ଚେଲିଆ ମାଂଉସ ରଂଗର ଗ୍ରୁଲି ପଡ଼ିଚି ପାଣି ଉପରେ ।

ଜୀବନର ଏହି ଚିହ୍ନ, ଏହି ଫନୋଚଗୁଡ଼ିକ ପ୍ରତି ମୁଣ୍ଡ ଟୁଙ୍ଗାରି ଟୁଙ୍ଗାରି ମାଲିକ ମୋର ବୁଝାଇ ବସିଲେ :

''ହୋଇ ସେଠି ରହେ ଖେଳପଡ଼ିଆରେ 'ପହରି'—ଜଗୁଆଳ । ସେ ଝଲକା ବାଟେ ଚଢ଼େ ଗ୍ରୀଲ ଉପରେ, ପଶେ ଡଙ୍ଗା ଭିତରେ ଆଉ 'ଗ୍ଲେର' ଧରିବା ପାଇଁ ଗ୍ଲେ ଡଙ୍ଗା ଭିତରେ ଆହୁଲା ପକେଇ ପକେଇ । ଯଦି ଗ୍ଲେରଫୋର କାହାକୁ ନ ଦେଖେ, ତେବେ ନଜେ ଗ୍ଲେର କାମଟି କରିଦିଏ ।''

କହିଲେ ସେ ଅଳସ ନିର୍ଲିପ୍ତତାରେ, ମନ ଥିଲା ଦୂରରେ କେଉଁଠି, ଅନ୍ୟ କେଉଁଠିରେ । ନୀରବ ସବୁ, ଶୂନ୍ୟ ସବୁ, ଲାଗୁଥାଏ ଅବଶ୍ୱାସ୍ୟ ସବୁ, ସ୍ୱପ୍ନରେ ଯେମିତି । ଭଲଗା ଆଉ ଓଦା ମିଶିଯାଇ ସୃଷ୍ଟି କରି ଦେଉଥା'ନ୍ତି ବିଶାଳ ଗୋଟାଏ ହ୍ରଦ । ଗଛଲତାରେ ବୀଭତ୍ସ, ସତେ ଯେମିତି ଲେମନ ପାହାଡ଼ ଉପରୁ ଦୂରରେ ତଫାତରେ ସହରଟି ଉଠି ଛିଡ଼ା ହୋଇଛି ! ସେଇ ତୋଟାବଗିଚା ମାଳରେ ତାଙ୍କି ହୋଇ ଯେଉଁଗୁଡ଼ିକ ଏବ ଯାଏଁ ନବଡ଼ ଭାବରେ ଅନ୍ଧାରିଆ ଝଡରେ ଢାଙ୍କିଛି ଅଫଳନ୍ତି, କନ୍ତୁ ଉଦ୍ଭି ହୋଇଯାଇଛି ମୁକୁଳରେ—ଯାହାଯୋଗୁ ଗଛଲତା-ଗୁଡ଼ିକ ବେଢ଼େଇ ଘୋଡ଼େଇ ରଖିଛି ଘର ଆଉ ଗୀର୍ଜାଙ୍କୁ ସବୁଜ ପହରଣରେ । ପାଣି ଉପରେ ଖେଳି ଖେଳି ଆସୁଛି (ଇଷ୍ଟର ଟାଇଡ଼) ଇଷ୍ଟର ଉତ୍ସବ ଘଣ୍ଟା-ଗୁଡ଼ିକର ବିପୁଳ ପ୍ରାଣମୟୀ ଗୁଞ୍ଜନ । ଆମେ ଧରିପାରୁଥାଉଁ ଦୂରରୁ ସହରର ଗହଗହ ଶବ୍ଦଟିକ—କନ୍ତୁ ଏଠି ସେଠି ଯେଉଁଠି ଆମେ ବୁଲୁଥାଉଁ ନାହାରେ ଚତୁର୍ଦ୍ଦିଗରେ ସବୁ ନୀରବ, ମୂର୍ଚ୍ଛିତ, ପରିତ୍ୟକ୍ତ ଗୀର୍ଜାର ଅଗଣା ଭଳି ! ପ୍ରଧାନ ରାସ୍ତାରେ ପୁରୁଣା ଗୀର୍ଜାଅଡ଼କୁ ବାଟ କଟେଇ ଚାଲିବେବେଳେ ନାହା ଅମର ହ'ଧାଡ଼ ଘଞ୍ଚାଳିଆ ଗହଳିଆ ଗଛ ମଝିରେ ମୋଡ଼ ବୁଲି ବୁଲି ଗତି ବଦଳାଇ ବଦଳାଇ ଗ୍ଲୁଥାଏ—ମୋ ମାଲିକଙ୍କର ଚୁରୁଟ୍ ଧୂଆଁ ତାଙ୍କ ଆଖିରେ ପଶି ପଶି ଯାଉଥାଏ—ନାହାଟା ଯାଇଁ ଗଛଗୁଡ଼ିକର ଗଣ୍ଡି ଦେହରେ ବାଡ଼େଇ ହେଉଥାଏ—ଏ ଅବସ୍ଥା ଏମିତି ହେଲା ଯେ ବ୍ୟତିବ୍ୟସ୍ତ ହୋଇ ହତାଶା ଆଉ ବିରକ୍ତିରେ କାତର ହୋଇ ପାଟିକରି ଉଠିଲେ !''

"ଧୂଳିଡେରିକ ନାହାଁ !"

"ମଙ୍ଗ ମୋଡ଼ିବା ବନ୍ଦ କରନ୍ତୁ ।"

"ବନ୍ଦ କରିବି ବା କେମିତି ?" ଆପତ୍ତି କଲେ ଚଢ଼ା ଚଢ଼ା ହୋଇ ସେ । "ନାହାରେ ଯେତେବେଳେ ଅଛୁ ଦୁ' ଜଣ, ଜଣେ ଆହୁଲା ମାରୁଛୁ, ଆଉ ଜଣେ ମଙ୍ଗ ଧରିଛୁ । ଆରେ ଦେଖ୍ ଦେଖ୍, ହେଇ ସେଠି ଚନା ଗ୍ରାମଟା ।"

ମେଲାପଡ଼ିଆର 'ଅନ୍ଧସନ୍ଧ' ଯେଉଁଠି ଯାହାସବୁ ମାଲୁମ ଥିଲା ମତେ, ଦେଖିଲା ମାତ୍ରେ ହସ ରୋକ ହେବ ନାହିଁ, ଏମିତି ସେହି ଅପୂର୍ବ ଗ୍ରାମ'ଟା —ବେଶ୍ ଭଲଭାବେ ପରିଚିତ ଥିଲା ମୋର; ସେହି ଗ୍ରାମର ଘରଗୁଡ଼ାକର ଅଦ୍ଭୁତ ଅଦ୍ଭୁତ ଛାତସବୁ—ସେହି ଛାତଗୁଡ଼ାକର କଣଗୁଡ଼ାକରେ ଥାଏ ଚୀନା ଲୋକଙ୍କର 'ଚକାମେଲିପକା'ଚୂନ ପଲସ୍ତରା ମୂର୍ତ୍ତିସବୁ—ମୋ ଖେଳସାଥିସବୁ ଆଉ ମୁଁ ଦିନେ ଚେଲିପଥର ଫୋପାଡ଼ି ଥିଲୁ ସେଗୁଡ଼ାକ ଉପରକୁ । ଦିନେ ମୁଁ ସେଇ 'ଚୀନା ଲୋକ' ମୂର୍ତ୍ତିଙ୍କର ଭିତରୁ କେତୋଟିର ହାତଗୋଡ଼ ମୁଣ୍ଡଗଣ୍ଡି ଅଲଗା ଅଲଗା କରିଦେଇଥିଲି, କେଉଁଟିକୁ ହାତରୁ ଓ କେଉଁଟିକୁ ମୁଣ୍ଡରୁ ବଞ୍ଚିତ କରିଥିଲି, କିନ୍ତୁ ସେଭଳି କାମ ପାଇଁ ତ ଆଉ ଗର୍ବଫର୍ବ ନ ଥାଏ ।

'କୁଡ଼ିଆଗୁଡ଼ାକ ଯେତ୍ତାତା ଭାବରେ ତିଆରି !' କୋଠାଘର ଗୁଡ଼ାକୁ ଦେଖାଇ ମତାମତଟା ଦେଲେ ମାଲିକ—"ଯିଏ ଦେଇଥାନ୍ତେ କି ମତେ, କହୁଥାନ୍ତେ କି ସେଗୁଡ଼ାକ ତିଆରି କରିବାକୁ ।"

ସିଟିମାରି ଟୋପିଟିକୁ ଠେଲି ଦେଲେ ମୁଣ୍ଡ ପଛପଟକୁ ।

କିନ୍ତୁ କେଜାଣି କେଉଁ କାରଣରୁ ଅନୁଭବ କଲି ମୁଁ, ସେ ମଧ୍ୟ ତିଆରି କରିଥାନ୍ତେ ସେଗୁଡ଼ାକୁ ସେମିତି ଅସୁନ୍ଦରିଆ ଏବଂ କଦାକାର କରି, ଆଉ ଠିକ୍ ଯେଉଁ ସ୍ଥାନରେ ଥିଲା ସେଗୁଡ଼ାକ ସେଇଠି ବି, ଏତେ ନିଚା ଖାଲୁଆ ସେ ସ୍ଥାନଟା ଯେ କେଉଁ ବର୍ଷ ବସନ୍ତ ଋତୁରେ ଦୁ'ଟା ନଈ ପାଣି ବଢ଼ିରେ ବୁଡ଼ିଯାଉ ନ ଥାଏ ନୁହେଁ ।

ମଙ୍ଗ ଉପରୁ ଛାତି ଫିଙ୍ଗିଦେଇ ଚୁରୁଟ୍‌ଟାକୁ, ଘୃଣାମିଶା ବିରକ୍ତିରେ ଛେପଲଣ୍ଡାଏ ପକାଇ ସେ କହିଲେ ;

'ଛିଃ, କି ଏକଚାଗିଆ ବିରକ୍ତିକର ଜୀବନଟା ପେଶ୍‌କଲ ! କି ବିରକ୍ତିକର ସତେ ! କେଉଁଠି ହେଲେ ପାଠପଢ଼ୁଆ ଶିକ୍ଷିତଟିଏ ବି ନାହିଁ—କାହା ସଙ୍ଗେ ପଦେ କଥାଭାଷା ହେବାକୁ ; ଛିଃ, ବେଳେବେଳେ ତମର ମନେ ହେବ ଟିକିଏ ବଢ଼େଇ କିଛି ଦେଖେଇ ହେବାକୁ—କିନ୍ତୁ କିଏ ଅଛୁ, କାହା ଆଗରେ ବଢ଼େଇ କାଢ଼ିବ ? ନାଁ ନାହିଁ, ଜଣେ ହେଲେ ନାହିଁ ; ଖାଲି ଯୁଆଡ଼େ ଗ୍ଲୁହଁ ଦେଖିବ ବଢ଼େଇ, ଧଥୁଗ୍ଗିଆ, ଗୃଷୀ, ଗ୍ଲେର,······ମାଲିକୁ ମାଲ ·····"

ଡାହାଣ ପଟକୁ ବୁଲି ଚାହିଁଦେଇ, ଡାହାଣ ପଟେ ଯେଉଁଠି ବଢ଼ି ପାଣିରେ ବୁଡ଼ିଥିବା ପଦ୍ମଡ଼ କରରୁ ଧୀରେ ଧୀରେ ସୁନ୍ଦର ସୁକୁମାର ଢଙ୍ଗରେ ପ୍ରକାଶି ଆସୁଥିଲା ମଯଜ୍ଞନ୍ଦଟିଏ, କହିଚାଲିଲେ ସେ ଅନର୍ଗଳ ; କଣ ଗୋଟାଏ କଷ୍ଟ ବସ୍ତୁକୁ ମନେ ପକାଇ ପକାଇ :

“ବସ୍ତ୍ରପିଆ ଓ ନ୍ୟୁଟଟଣା ଆରମ୍ଭ କରିଦେଇଛୁ ମୁଁ ଜର୍ମାନ ଝିଅଙ୍କ ଭଳି. ଗ୍ରଟିଲ୍, ଚମତ୍କାର ବ୍ୟବସାୟୀ ସେମାନେ—ଜର୍ମାନ ଲୋକସବୁ । ଏମିତି ମସ୍ତଭେଣ୍ଟି ଆଗ୍ରହାନ୍ବିତ, ଏମିତି ଯୌବନରେ ତାଙ୍କର ସ୍ୱାଦ ! ବସ୍ତ୍ରପିଆ ମଜେଦାର ଖେଳ, ମଜେଦାର ସ୍ୱାଦ, କିନ୍ତୁ କେଜାଣି କାହିଁକି ନ୍ୟୁରଟଟଣାଟା ସମ୍ଭାଳିଧରି ରଖିପାରୁ ନାହିଁ ! ଯେତେବେଳେ ଟିକିଏ ଟାଣିବାକୁ ବସିବ, ସ୍ୱରକାଠା ମୋର ଅଭିଯୋଗ କରିବ, ପାଟିକରି ଉଠିବ, ‘ଇସ୍ କ’ଣ ଏ, କାହିଁକି ଏମିତି ଗନ୍ଧହୁଡ, ଚମଡ଼ା ଝଙ୍କାଳ, ଜନ୍ ବଜାଳପରି !’ କାହିଁକି ସେ ଜୀବନଟାକୁ ଟିକିଏ ମନକୁ ପାଇଲାଭଳି ଉପଭୋଗ କରିବା ପାଇଁ ଯେତେ ଯାହା କରୁ ପଛକେ !··· ହେଇ···ନେ ଧର—ନାହା ଚଳାଇ ଲାଗ ରୁ—ନେ ଧର ମଙ୍ଗ ।”

ଆସ୍ତୁଲଟିକୁ ଥୋଇଦେଇ ନାହା କରରେ, ବନ୍ଦୁକଟି ଉଠାଇ ନେଇ ସେ ଛର୍‌ରା ମାରିଲେ ସ୍ତୁତ ଉପର ଗୋଟିଏ ମୂର୍ତ୍ତିକୁ । କିଛି କ୍ଷତ ହେଲା ନାହିଁ ଚୀନା ଲୋକଟିର, ଖଣ୍ଡିଆ ଖାବରା ହେଲା ନାହିଁ ସେ—କେବଳ ସ୍ତୁତ ଉପରେ ବାଜିହୋଇ ପଡ଼ିଲା, ଅଧାକାନ୍ଥି ଉପରେ ବାଜିଲା ଛର୍‌ରା - ଧୂଳିପଟଳ ସୃଷ୍ଟି କରି ଦେଲା ଯାହା !

“ନା, ଲକ୍ଷ ହେଲା ନାହିଁ ଠିକ୍ !” ବନ୍ଦୁକରେ ପୁଣି ଗୁଳି ଭର୍ତ୍ତି କରୁ କରୁ ଉପର ସ୍ୱରରେ ମାନିଲେ ମାଲିକ ।

‘‘କମିତିରେ, ଝିଅଗୁଡ଼ାକଙ୍କ ସାଙ୍ଗରେ ସମ୍ପର୍କଟା କମିତି ତୋର ? କାରବାରଟା କମିତି ? ତୋ ଉପାସଟା ଭାଙ୍ଗିଲୁଣି ତ ଏବେ ନା, ନାଇଁ ? ତେର ବର୍ଷରେ ପ୍ରେମରେ ପଡ଼ିଥିଲି ମୁଁ, ଆରମ୍ଭ କରିଥିଲି ।”

ସତେ ଯେମିତି ସ୍ୱପ୍ନଟିଏ ମନେପକାଇ ବର୍ଣ୍ଣନା କରି ଲାଗିଲେ ତାଙ୍କର ପହିଲି ପ୍ରେୟସୀ କଥା । ସେ ଯେଉଁ ସ୍ଥପତି ପାଖରେ ଶିକ୍ଷାନବୀଶ ହୋଇଥିଲେ ସେଇ ସ୍ଥପତି ପାଖରେ ନିଯୁକ୍ତ ଥିଲା ସିଏ—ତାଙ୍କର ନୌକରାଣୀ । ତାଙ୍କର କାହାଣୀଟି ସ ଥିରେ ଚାଲପକାଉଥାଏ କୋଠାଘରଗୁଡ଼ିକର କ’ଣରେ ପାଣିର ଥିରି ଥିରି କଲ କଲ ଶବ୍ଦ—ଗୀର୍ଜାକୁ ଟପି ଦୂରରେ ଚକମକ କରୁଥାଏ ବିପୁଳ ଏକ ବିଶାଳ ଏକ ଜଳମଗ୍ନ ବସ୍ତୁତ—ଏଠି ସେଠି ସେଥିରେ ଦିଶୁଥାଏ ଉଇଲୋ ବାଡ଼ସବୁ ।

ପଚ୍ଛିବ କାରଖାନାରେ ଚଙ୍ଗକରମାନେ ଅନେକ ରକମରେ ଗାଉଥିଲେ ପିଲଙ୍କର—ଗୁହଗୁହଙ୍କର ଗୀତ—

ଏ ନୀଳ ସାଗରେ, ଏ ନୀଳ ସାଗରେ
ଏ କ ନୀଳମାରେ—
ଝଡ଼ର ସାଗରେ, ଝଡ଼ର ସାଗରେ—
(ଏ କ ମହୁମାରେ)

କେତେ କସ୍ମାଣ କବୋଧ ହୋଇ ନ ଥିବଟି—ସେଇ ନୀଳ ନୀଳ ସାଗରଟା—।

"ଶୋଇପାରୁ ନ ଥାଏ ଘରେ—ଘର ଘର ବନ୍ଧ ଯାଉଥାଏ ଅନ୍ଧାରେ",
କହୁବାକୁ ଲଗିଥାନ୍ତି ମାଲକ ମୋର—"ହଠିପଡ଼ି ବିଛଣାରୁ ପଦ୍ମଣ୍ଡୋଇ ଛୁଡ଼ା ହେଉଥାଏ, ଅରୁଥାଏ ତା ଦୁଆରମୁହଁରେ କୁକୁର ଛୁଆଟିପରି—ଘରଟା ଯେହେତୁରୁ ପୂରି ରହୁଥାଏ ପବନରେ, ଖୋଲାପବନରେ—ତା ମାଲକଟା ଅନେକ ଘରରେ ଆସୁଥାଏ ତା ପାଖକୁ - କଟାଉଥାଏ ଘରଟା, ସହଜରେ ଧଣପକେଇ ଥା'ନ୍ତା ମତେ କନ୍ତୁ ମୋର କ'ଣ ଡରଭୟ ଥିଲି ସେଥିକୁ—ଟିକଏ ଭଲା କାହିଁକ ଥା'ନ୍ତା !"

ଗ୍ରବଚନ୍ଦ୍ର ଗ୍ରବନାରୁ ଉଠି ଯେମିତ କହୁଥାନ୍ତି ସେ ସତେ ବା ପରଖି ଦେଖୁଥାନ୍ତି, ଝାଡ଼ି ଝଡ଼ି ଖେଳେଇ ପୂରୁଣା ଲୁଗାପଟା ପୁଣି ସେଗୁଡ଼ିକ ପିନ୍ଧହେବ କ ନାହିଁ ।

"ଜାଣିପାରଲି, ଦେଖିପାରଲି ସେ—ଦସ୍ୟୁର ଆଖିରେ ଗ୍ରହିଁଲି ମତେ; ଇମିତ କ ଦନେ ଦ୍ୱାର ଖୋଲି ଦେଲି ଡାକଲି ମତେ, "ଆ, ଆରେ ଚଗଲି, ଆ ଭିତରକୁ ଆ ।"

ଏଭଳି କାହାଣୀ, ଏଭଳି ବର୍ଣ୍ଣନା ଏତେ ଶୁଣିଥାଏ ଯେ ମୁଁ ଚଟାଧରି ଯାଇଥାଏ ମନରେ ମୋର—ଯଦର୍ଓ ଏଭଳି ସବୁ କାହାଣୀ ଗୋଟିଏ ସାଧାରଣ ଭଲ କଥା—ସମସ୍ତେ ପ୍ରଥମ ପ୍ରେମର ଅଦ୍ଭିଜ୍ଞତା ବର୍ଣ୍ଣନା କରୁଥାନ୍ତି ଆଦୌ ଚଢ଼ିମା ଫଢ଼ିମା ନ ଦେଖାଇ—ତାକୁ ଅଶ୍ଳୀଳ ନ ଭାବ, ସେଥିରେ ଅଶ୍ଳୀଳତାର ସ୍ପର୍ଶ ନ ଆଣି, ପୁଣି ଏମିତ ସ୍ନେହାତୁର ଅନୁଶୋଚନାରେ ଯେ ହୃଦୟଙ୍ଗମ କରଥାଏ ମୁଁ—ସେମାନଙ୍କର ପ୍ରତ୍ୟେକଙ୍କ ଜୀବନରେ ପ୍ରଥମ ପ୍ରଣୟର, ସେହି ମୁହୂର୍ତ୍ତିଟି ଥାଏ ସବୁଠୁ ବଳି ସୁନ୍ଦର, ପବିତ୍ର । ପ୍ରକୃତରେ କହୁଲେ, ଅନେକଙ୍କ ପାଇଁ ସେହି ମୁହୂର୍ତ୍ତିଟି ଛଡ଼ା ଆଉ କୌଣସି ମୁହୂର୍ତ୍ତ ଆସି ନ ଥାଏ ଏତେ କମନୀୟ, ସୁମହତ ରୂପରେ—ଅନ୍ତତଃ ସେହି ମୁହୂର୍ତ୍ତିଟିକୁ ହିଁ ଜାଣିଥାନ୍ତି ସେମାନେ-ସବୁଠୁ ବଳି ସୁନ୍ଦର ଶ୍ରେଷ୍ଠ ବୋଲି ।

ହସି ହସି ମୁଣ୍ଡ ହଲେଇ ହଲେଇ ମାଲିକ ମୋର ବଡ଼ ପାଟିରେ କହି ଉଠିଲେ ପୁଣି—ଆଶ୍ଚର୍ଯ୍ୟ ହୋଇ ଚମକି ପଡ଼େ ସେ ।

"କିନ୍ତୁ ମୋ ଖଣଜାକୁ କ'ଣ ସ୍ତ୍ରୀ କହନ୍ତି । ନାଁ ନାଁ । କ'ଣ କେବେ ହେଲେ ସାହସ କରନ୍ତି ଏକଥା କହିବାକୁ ତା' ଆଗରେ—ଆରେ, ନାଁ, ନାଁ ! ଏଥିରେ ଯେ ଏମିତି କିଛି ଭୁଲ ଦୋଷ ଲେଖିଥାନ୍ତି ଭୁଲ ହୋଇଯାଇଥାନ୍ତା ନାଁ । ନାଁ. ତା ନୁହେଁ ଯେ ତଥାପି "ସାହସ ହୋଇ ନ କହିବାକୁ ତାକୁ, ଏଇ…"

ମୋତେ ଯେ ସେ ଏ କାହାଣୀ ଶୁଣାଉଥିଲେ, ମୋ ଆଗରେ ବର୍ଣ୍ଣନା କରୁଥିଲେ ଏହା ନୁହେଁ, ଶୁଣାଉଥିଲେ ନିଜକୁ, ବର୍ଣ୍ଣନା କରୁଥିଲେ ନିଜ ଆଗରେ ସେ ନୀରବ ରହିଥିଲେ, ମୁଁ ହୁଏତ କିଛି କହିଥା'ନ୍ତି, କିନ୍ତୁ ସେହି ନୀରବତା, ନିସ୍ତବ୍ଧତା ଭିତରେ, ସେହି ଶୂନ୍ୟତା ଭିତରେ କଥା କହିବା, କାହାଣୀ ମେଲିବା, ଗୀତ ଗାଇବା ଆକର୍ଣ୍ଣ ଆନ ଚଳାଇବା ଥିଲା ନିହାତି ଦରକାର ନଚେତ୍ ସେ ମୃତ ନଗରୀଟାରେ ହେମାଳ ପାଂଶୁଳ ପାଣିରେ ବୁଡ଼ି ଉବେଇ ଟୁବେଇ ମୃତ ନଗରୀଟାରେ ଭିଜିଥାନ୍ତା—ମହାନିଦ୍ରା ଭିଜିଥା'ନ୍ତା ଯେ କେହି ।

"କଥାଟା ହେଉଛି, ପ୍ରଥମ କଥା ଅଳ୍ପ ବୟସରୁ ବଖ ହେବୁ ନାହିଁ !" ଉତ୍ସାହିତ କଲେ ସେ ମୋତେ ଆହୁରି କହି । ବଖଘରଟା ବୁଝିଲୁ ଭାଇ, ଅତି ଗୁରୁତ୍ୱପୂର୍ଣ୍ଣ—ଭୀଷଣ ଗୁରୁତ୍ୱପୂର୍ଣ୍ଣ" ! ଯେଉଁଠି ଇଚ୍ଛା, ଯେମିତି ଇଚ୍ଛା ରହି ପଡ଼େ, ଚଳାଚଳ ହୁଅ ପଛେ—ପାରସ୍ୟରେ ମୁସଲମାନ ଭାବରେ ହେଉ କି ମସ୍କୋରେ ପୁଲିସବାଲା ଭାବରେ ହେଉ, ଲୁଗାପଟା ବୁଣାବୁଣି କାମରେ ଲାଗି ହେଉ, କି ବେଶ୍ୟା କରି ହେଉ ଯିମିତି ପ୍ରକାରେ ରହି ପଛେ—ଯେ କୌଣସି ସମୟରେ ପରୁଟେଲେ କହିଲେ ହୁଏ, ଲୁଚକ ନ ପାଇଲେ ଯେ କୌଣସି ଜିନିଷପତ୍ର ବଦଳାଇ ପାରିବୁ— କିନ୍ତୁ ଖଣଜା ? ଖଣଜାଟିକୁ ତୋର କେବେହେଲେ ବଦଳାଇ ପାରିବୁ ନାହିଁ ! ତୋ ଖଣଜାଟା ହେବ ପାଣିପାଗ ଭଳି ଠିକ୍, ଜାଣିଲୁ ଭାଇ—ନା ଉପାୟ ନାହିଁ, ରକ୍ଷା ନାହିଁ, ଖାଣଜାଟା ତ ଆଉ ବୁଟ ଯୋତା ନୁହେଁ ; ଇଚ୍ଛା କଲେ କାଢ଼ି ପକାଇବୁ, ଆଡ଼େଇ ଥୋଇ ଦେବୁ ।"

ଗ୍ଲାଇଟିଏ ଖେଳିଗଲା, ଭାସିଗଲା ତାଙ୍କ ମୁହଁ ଉପରେ—ପାଂଶୁଳିଆ ପଣିକୁ ଅନାଇ ରହିଲେ ସେ—କୁଞ୍ଚି କୁଞ୍ଚି ଭୁରୁ ତଳରୁ କୁଜାଳିଆ ନାକଟାକୁ ଘଷି ଘଷି ଗୋଟାଏ ଆଙ୍ଗୁଠିରେ କହିହେଲେ ଟୁପ୍ ଟୁପ୍ ।

"ହଁରେ ଭାଇ…ହଁ…ଖାଖା ଚୋଖା ହଣିବୁ ଯେମିତି ଚଟାପଟ ସ୍ତ୍ରୀଆଡ଼କୁ ଆଖି ପକାଇପାରିବୁ ପୁଣି ଯେମିତି । ହୁଏତ ବୁ ସେମିତି ଗୋଟାଏ, ସେଇ ଧାତୁରେ, ଯିଏ ଝଡ଼ ବତାସରେ ନଇଁ ଯିବ ସିଧା ସିନା ଉପୁଡ଼ି ଯିବ ନାହିଁ ।

ଲକ୍ଷ ଲକ୍ଷର ଲୋକ ଭାଗ ମଝିରେ । କିନ୍ତୁ ମୋତେ ଯାହା ହେଲେ ବି କାହା ପାଇଁ ବା ଯନ୍ତ୍ରା ନାହିଁ, ପ୍ରତ୍ୟେକଙ୍କ ପାଇଁ ଅପେକ୍ଷା କରି ରହିଛି ତାଙ୍କୁ ପାଇବାର ଭଲ ଯନ୍ତ୍ରା ।''

ପଶିଲୁ ଆମେ ନାହା ଚଲାଇ ବୁଦୁବୁଦିଆ ବଣ ଭିତରେ, ମେଘ ଟେଭଗ୍ଲୋଏ ହ୍ରଦରେ—ସେ ଯେଉଁ ହ୍ରଦଟି ମିଶି ଏକାକାର ହୋଇ ଯାଇଛି ଜଲ୍‌ଗା ସାଥିରେ ।

''ଧୀରେ ଧୀରେ ଆହୁଲା ପକାରେ, ଧୀରେ ଚଲା''—ଭୂନ ଭୂନ ଫିସ ଫିସ କରି କହିଲେ ମୋ ମାଲିକ ବୁଦାଗୁଡ଼ିକ ଭିତରକୁ ଲକ୍ଷ୍ୟକରି ବନ୍ଧୁକଟିକୁ ।

ଧଳିଆ ଧଳିଆ ହଂସଗୁଡ଼ିକ କେତୋଟିକୁ ଲକ୍ଷ୍ୟ ସାରିଲା ପରେ କହିଲେ ସେ—

'ମୁହାଁ, ମୁହାଁ କୁନାଭିନୋ ଆଡ଼କୁ, ସେଠି ରହିବି ମୁଁ ସନ୍ଧ୍ୟା ଯାଏ—ଘରେ କହିଦେବୁ ଜଣେ କାନ୍‌ଟ୍ରାକ୍ଟ ସହି କାମ ଅଛି ମୋର—''

ତାଙ୍କୁ ଛାଡ଼ିଦେଇ ଅସିଲି ବନ୍ଦି ଟାର ଗୋଟାଏ ଗଳିରେ—ସେଇଟା ବି ବୁଡ଼ିଥାଏ ପାଣିରେ । ମେଲାପଡ଼ିଆ ବାଟେ ଫେରିଲି ଷ୍ଟ୍ରୋଲକାକୁ, ସେଠି ବାନ୍ଧି ଦେଇ ନାଆକୁ, ବସି ଅପେଇ ଦେଖି ଲାଗିଲି ନଦୀ ଦୁଇଟିର ମିଶାମିଶିକୁ, ସଯୋଗ ସ୍ଥାନକୁ—ସହରଟିକୁ, ଡଙ୍ଗା ପଟ୍ଟନ ଷ୍ଟିମରକୁ ଆଉ ଆଉ ଉପରେ ଆକାଶକୁ । ଫୁଲାଫୁଲା ଚଢ଼େଇ ପରଭଳି ଧଳା ମେଘରେ ବଢ଼େଇ ହୋଇଥାଏ ଆକାଶର ବିଶାଳ ବକ୍ଷରେ—ପକ୍ଷୀର ଡେଣାଭଳି ଦିଶୁଥାଏ ! ଠାଆକୁ ଠାଆ ମେଘ ଭିତରୁ ନେଳ ନେଳ ଖୋଳ ଭିତରୁ ମୁହଁ କାଢି ଚାହିଁ ଚାହିଁ ଦେଉଥାଏ ସୁନେଲି ସୂର୍ଯ୍ୟ—ସୁନେଲି—ଯାହାର ଗୋଟିଏ ବୋଲ୍ ଧାର ରଶ୍ମି ଯଥେଷ୍ଟ ଥାଏ ବଦଳାଇ ଦେଇ ରୂପାନ୍ତର ଆଣିବାକୁ ସମୁଦାୟ ଜଗତର । ଦୁଃଖଆଡ଼େ ମୋର ଯେତେ ଯାହା ଥାଏ, ସେ କି ଚଞ୍ଚଳ, ସେ କି ଗତିଶୀଳ ହୋଇ ଉଠିଥାଏ ସତେ—ସୁଅରେ ସୁଅରେ ସେ କି ପ୍ରକାର ବେଗରେ ଭାସି ଭାସି ଚାଲିଥାଏ ମାଲକୁ ମାଲ ଭେଳା ଶେଷ ଥାଏ କେଉଁଠି ବା ? ଭେଳାଗୁଡ଼ିକ ଉପରେ ଛିଡ଼ା ହୋଇଥାନ୍ତି ବଳୁଆ ବଳୁଆ ଶକ୍ତ ଦେହର ଚାଷୀ ମ୍ୟୁଝିକ୍‌ସବୁ—କୌଶଳରେ ପକାଉଥାନ୍ତି ଲମ୍ବା ଲମ୍ବା କାତଗୁଡ଼ିକୁ, ବଡ ପାଟିରେ ଡକାଡ଼କି ହେଉଥାନ୍ତି ନିଜନିଜ ଭିତରେ, ତାକି ଛାଡ଼ୁଥାନ୍ତି ବାଟ କଟେଇ ଯାଉଥିବା ଷ୍ଟିମରକୁ । ଷ୍ଟିମରଟି, ଗ୍ରେଟ ଷ୍ଟିମରଟି, ଧୂଅ ଠେଲି ଠେଲି ଉଠୁଥାଏ ଖାଲି ପଟ୍ଟନକୁ ଟାଣିଟାଣି । ନଦୀଟା ଯେତେବେଳେ ଦୋହଲେଇ ଏଣିକି ତେଣିକି ଟଳେଇ ନଚେଇ ଦେଉଥାଏ ତାକୁ, ଖଣ୍ଡାମୁହଁ (ଶାର୍କ) ମାଛପରି ନାକଟାକୁ ତା'ର ଏକର ସେକର ବୁଲେଇ ବୁଲେଇ—ଖର ନିଶ୍ୱାସ ଛାଡ଼ି ଛାଡ଼ି ଧଇଁ ସଇଁ ହୋଇ କରେଇ କରେଇ ଧୀରେ ଧୀରେ ଚାଲିଥାଏ, ଚାଲିଥାଏ ଯେତେବେଳେ ନଦୀ ସ୍ରୋତରେ

ତା ଉପରେ ଲଦି ହୋଇ ପଡ଼ିଥିବା ଲମ୍ବାଡ଼ିଙ୍ଗୁ, ପାଣିକୁ ଭେଦି, ଅଁଟେଇବା ପାଇଁ ପ୍ରାଣପଣେ ଏକଜିଦିଆ ଗତିରେ ଠେଲି ଲାଗିଥାଏ ତା ନିଜର ଚକଗୁଡ଼ିକୁ । ଗୃହେସ୍ତି ଗୃହିଣୀ ଦେହକୁ ଦେହ କାନ୍ଧକୁ କାନ୍ଧକୁ ଲଗାଲଗି ହୋଇ ବସିଥାନ୍ତି ପଟ୍ଟନଟା ଉପରେ—ଗୋଡ଼ଗୁଡ଼ିକ ତାଙ୍କର ଝୁଲିପଡ଼ିଥାଏ ପଟ୍ଟନ ଧାରେ ପାଣିକୁ । ତାଙ୍କ ଭିତରୁ ପିନ୍ଧିଥାଏ ଜଣେ ନାଲି ରଙ୍ଗର କାମିଜ ଅଉ ସମସ୍ତେ ସ୍ୱର ମେଳାଇ ଦେଉଥା'ନ୍ତି ସେମାନେ—ଗୀତଟାର ଶବ୍ଦଗୁଡ଼ାକ ବାରି ହେଉ-ନ ଥାଏ, କିନ୍ତୁ ଜାଣିଥାଏ ମୁଁ ଗୀତଟିକୁ ।

ମତେ ଲାଗୁଥାଏ—ସେଠି ସେଇ ନଈରେ, ନଈକୂଳରେ ପ୍ରତ୍ୟେକଟି ଜିନିଷ, ପ୍ରତ୍ୟେକଟି ଘଟଣା ଅତି ପରିଚିତ, ଅତି ଘନିଷ୍ଠ ଭାବରେ ଜଣାଶୁଣା ଥିଲା ମୋର—ଆଗରୁ ବହୁତ ଆଗରୁ ସେମିତି । ଆଉ ପ୍ରତ୍ୟେକଟି ଥିଲା ସହଜରେ ଉପଲଭ୍ୟ, ସୁବୋଧ, କିନ୍ତୁ ପଛଆଡ଼କୁ ମୋର ବଢ଼ି ପାଣିରେ ମଗ୍ନ ସହରଟା—ଲାଗୁଥାଏ ଗୋଟାଏ ଦୁଃସ୍ୱପ୍ନ ଭଳି—ମୋ ମାଲିକଙ୍କର ଉଦ୍ଭାବନ ଅବୋଧ, ଅବୋଧ ଠିକ୍ ସେମିତି—ସେ ନିଜେ ଯେପରି ।

ଉପଭୋଗ କରି ସାରିଲା ପରେ ଆକଣ୍ଠ ନଈର ଓ ନଈକୂଳର ସେ ଦୃଶ୍ୟକୁ ଦେଖି ଫେରିଲି ମୁଁ ଘରକୁ—ଫେରିଲି ଗୋଟାଏ ଅନୁଭୂତି ନେଇ । ପୁରାପୁରି ବଡ଼ ମର୍ଦ୍ଦଟାଏ ହୋଇଗଲିଣି ମୁଁ । ଯେକୌଣସି କାମ କରିବାକୁ ମୁଁ ସମର୍ଥ ଏବେ ଯେକୌଣସି ମରଦ ସାଙ୍ଗରେ ସମାନ ହୋଇ । ଫେରିଲି ବାଟରେ ଯେମଲିନ ପାହାଡ଼ ଉପରେ ଅଟକିଗଲି ଟିକିଏ—ଶେଷଥର ପାଇଁ ଦେଖିନେବା ଲାଗି ଭଲଗାକୁ । ସେହି ପାହାଡ଼ ଉପରେ, ସେତିକି ଉଞ୍ଚରେ ଥାଇ ଲାଗିଲା, ସୀମାହୀନ ଏ ଧରିତ୍ରୀ—କେତେ ଆଶା, ଅଭିଳାଷ ଓ ପ୍ରତିଶ୍ରୁତିରେ ପୂର୍ଣ୍ଣ ।

ଘରକୁ ଫେରି ପଢ଼ାପଢ଼ି କରୁଥାଏ—ବହିଧରି ବସି ପଢ଼ୁଥାଏ । ରାଣୀମାର୍ଗିଟ ବଡ଼ଘରଟାକୁ ଏବେ ଦଖଲ କରିଥାଏ ଗୋଟାଏ ବଡ଼ ପରିବାର, ବିରାଟ ପରିବାର—ଗର୍ବରେ ଫୁଲି ଉଠୁଥାଏ ଯେଉଁ ପରିବାରଟି, ଗୋଟିକଠୁଁ ଆରକଟି ରୂପସୀ, ପାଞ୍ଚଟି ତରୁଣୀ—ଅଉ "ଜିମ୍ନାସିୟମ"ର ଦୁଇଟି ଯୁବକ ଛାତ୍ରଙ୍କୁ ନେଇ ! ଏଇ ଯୁବତୀ ଯୁବକ ସବୁ ମତେ ଯୋଗାଇ ଦେଉଥାନ୍ତି ବହି । ଲୋଭାତୁର ହୋଇ ଆକୁଳ ପ୍ରାଣରେ ମତେ ଯେପରି ଗିଳିଦେଇଗଲି ତୁର୍ଗେନେଭଙ୍କ (ତାଙ୍କ ରଚନାବଳୀ)— ଚମତ୍କୃତ ହୋଇ ସରଳତାରେ ସାବଲୀଳତାରେ, ତାଙ୍କ ଶୈଳୀରେ ମତେଯେପରି ଶାରଦୀୟ ସମୀରଣ ପରି, ବିମୋହିତ ହୋଇଗଲି ସ୍ୱଚ୍ଛତାରେ, ପବିତ୍ରତାରେ ତାଙ୍କ ଚରିତ୍ର ଗୁଡ଼ିକରେ—ବିହ୍ୱଳ ହୋଇଗଲି—

ସୌନ୍ଦର୍ଯ୍ୟରେ ମାଧୁର୍ଯ୍ୟରେ ପ୍ରତ୍ୟେକ ଘଟଣାର, ପ୍ରତ୍ୟେକ କଥାର ଯାହାର ପଛରେ ଏଭଳି ସୁରୁଚି ସଂଯମତାରେ, ଏଭଳି ବିନମ୍ରତାରେ ସମର୍ଥନ କରୁଥିଲେ ଶତମୁଖରେ ସେ ।

ପଢ଼ିଲି ପୋମିଷ୍ଟା ଲେଭସ୍କିଙ୍କର 'ଦ ସେମିନାରି'' ଶିକ୍ଷ ସ୍ୱତନ—ବର୍ଣ୍ଣିତ ସ୍କୋଇରଲି ପୁଣି ଦେଖିଲି, ଆବିଷ୍କାର କଲି ଯେତେବେଳେ କି ଅଦ୍ଭୁତ ଭାବରେ ସେଥିର କଥାବସ୍ତୁ ଅଉ ବର୍ଣ୍ଣନା ପ୍ରତ୍ୟେକର ମେଳ ଥିଲି, ସାମଞ୍ଜସ୍ୟ ଥିଲି, ଚିତପଟ କାରଖାନାର ଜୀବନ ଆଉ ଘଟଣାବଳୀ ସାଙ୍ଗରେ । ବୁଝିଲି, ଭଲରୂପେ ବୁଝିଲି— ଜଗଣ ନାସହାସ୍ୟ ପ୍ରାଣର ବିରକ୍ତ—କେମିତି ଅଶ୍ୱାସନା ଖୋଜେ, ଅଶ୍ୱାସ ପାଏ ଜନ୍ଦର୍ଯ୍ୟ, ଅଞ୍ଚା, ରହସ୍ୟ, ପରିହାସରେ ।

ତୃତୀୟ ବହିପତ୍ରା ହତର ଆଏ ମୋ ପାଇଁ—ସେଥିରୁ ସବୁବେଳେ ଅନୁଭବରେ ଆଣି ଧରିପାରୁଥିଲି ଅଜଣା କିଛି ଯାହା ବିଷ ଦମସ୍ତ—ପୁଣି ଜଣା ଖୁବ୍, ଅତି ପରିଚିତବି ମୋର ! ସତେ ଯେପରି "ଲେଣ୍ଟେନ" ଉପବାସ କାଳର କରୁଣ ଘଣ୍ଟାଧ୍ୱନି ପ୍ରାଣର ଗୁଞ୍ଜନଗୁଡ଼ିକ ଅଟକି ହୋଇ ରହିଥିଲି । ପ୍ରତି ବହିର ପୃଷ୍ଠା-ଗୁଡ଼ିକରେ—ଖାଲି ଯାହା ଖୋଲି ଦେବାକୁ ଥିଲି ପ୍ରଚ୍ଛଦ ପୃଷ୍ଠା, ଆବରଣଗୁଡ଼ିକ, ମୁକ୍ତ କରିଦେବା ପାଇଁ ମୃଦୁ ମଧୁର ଅସ୍ପଷ୍ଟ କରୁଣତାର ସଙ୍ଗୀତକୁ ।

ମନ ହେଉ ନ ଥାଏ, ଅନିଚ୍ଛାରେ ପଢ଼ିଲି, "ଦ ଡେଡ୍ ସୋଲ୍" (ମୃତ ଆତ୍ମାଗୁଡ଼ିକ) ବହିଟିକୁ—ପଢ଼ିଲି ବି ସେମିତି ନାରାଜ, ନାରାଜ ହୋଇ । "ନୋଟସ୍ ଫ୍ରମ ଏ ଡେଡ୍ ହାଉସ", "ମୃତ ଘରର ବିବରଣୀ"– ମୃତଆତ୍ମା, ମୃତଘର, ମୃତ୍ୟୁ ଢକୋଟି ମୃତ୍ୟୁ ,"ଜୀବନ୍ତ ମର୍ମ" ଏହି ବସ୍ତୁନାମାଗୁଡ଼ିକରେ ଭିତରେ ସାମଞ୍ଜସ୍ୟ ଲକ୍ଷ୍ୟ କରିହୋଇ ନ ଥାନ୍ତା ବା କମିତି—ଆଖିରେ ପଡ଼ିଲି ଠିକ୍ ବହିଗୁଡ଼ାକପ୍ରତି ଅସ୍ପଷ୍ଟ ବିରୋଧଭାବ, ସହାନୁଭୂତିଶୂନ୍ୟତା ଜଣାଇଦେଲି ମନରେ, ଭଲ ବି ଲାଗିଲି ନ ମତେ—ସାଇନସ ଅଫ ଦ ଟାଇମସ ( ଯୁଗର ସଂକେତ ), ଷ୍ଟେପ ବାଇ ଷ୍ଟେପ (ପାହାଚକୁ ପାହାଚ), 'ହ୍ୱାଟ ଇଜ୍ ଟୁ ବି ଡନ୍' (କଣ କରିବାକୁ ହେବ) ? ଚନକ୍ଲ ଅଫ୍ ଦ ହାମଲେଟ୍ ଅଫ୍ ସ୍କୁରିନ (ସ୍କୁରିନ୍ ପଲ୍ଲିର କାହାଣୀ), ଆଉ ସେଇଭଳି ଧରଣର ଯେତେ ବହି ।

ଡିକେନ୍ସ ଓ ଓ୍ୱାଲଟରସ୍କଟଙ୍କ ପ୍ରତି ମୋର ଗଭୀର ଅନୁରାଗ ଜନ୍ମିଥାଏ । ଦୁଇ ତିନ ଥର ଲେଖାଏଁ ପଢ଼ି ସାରିଥାଏ, ସେମାନଙ୍କ ବହିଗୁଡ଼ିକୁ, ପଢ଼ି ସାରିଥାଏ ମହା ଆନନ୍ଦରେ—ଓ୍ୱାଲଟରସ୍କଟଙ୍କର ବହି ମୋର ମନେ ପକାଇ ଦେଉଥାଏ ଛୁଟି ଦିନ—ଚମତ୍କାର ଏକ ଗୀର୍ଜାରେ ଚାଲିଛି, ଖ୍ରୀଷ୍ଟଙ୍କ ନୈଶଭୋଜନ ପର୍ବ ଉପଲକ୍ଷେ ଭଜନ—ଦୀର୍ଘ ସମସ୍ତ ଧରି କ୍ଲାନ୍ତିକର ବି କିନ୍ତୁ ଉଲ୍ଲାସ ଆନନ୍ଦମୟ ଉତ୍ସବରେ । ଡିକେନ୍ସ ଏଭଳି ଏକ ଲେଖକ, ଯାହାଙ୍କୁ ଏବେ ମଧ୍ୟ ମୁଁ ଦେଖେ

ଗମ୍ଭୀର ଶ୍ରଦ୍ଧାରେ, ସ୍ରଷ୍ଟା ସେ, ମହାନ ରଚୟିତା ସେ—ଯେ ଚରମ କୃତିତ୍ୱ ହାସଲ କରିଥିଲେ ସବୁଠୁଁ ବଳି କଠିନ କଳା-କୃତିରେ, ଜନସାଧାରଣଙ୍କୁ ପ୍ରାଣଦେଇ ଭଲ ପାଇବା, ଏହି କଳା କୌଶଳରେ ।

ସଞ୍ଜ ହେଲେ ଦଳେ ଆମେ ସୌଧଟିର ତୋରଣ ତଳେ ଆସି ଠୁଳ ହେଉଥାଉ, ରାଣୀ ମାର୍ଗଟପ୍ଲାଟର ଝାଇଭଉଣୀ ସବୁ । ଭ୍ୟାଚେସ୍ଲାଭ ସେମାସ୍କୋ, ଚେପ୍ଟାନାକା ଗ୍ରୁନ୍‌ଟି ଓ ଆଉ ଏମିତି କେତେଜଣ । ବେଳେବେଳେ ଆମ ଦଳରେ ଆସି ମିଶୁଥାଏ ପିଟିସନ ବୋଲି ଜଣେ ଗୁରୁତ୍ୱପୂର୍ଣ୍ଣ ବଡ଼ପାହ୍ୟା ଅଫିସରଙ୍କ ଝିଅ । ଆମେ ଆଲୋଚନା କରୁଥାଉଁ ବହିଗୁଡ଼ିକ ସମ୍ପର୍କରେ, କାବ୍ୟକବିତା ଯେତନ— ସେହିସବୁ ବିଷୟ ଯେଉଁଗୁଡ଼ିକ ପ୍ରତି ମୋର ଅତି ଆଗ୍ରହ ଥାଏ, ଆକର୍ଷଣ ଥାଏ, ଆଉ ଯେଉଁଗୁଡ଼ିକ ମୋ ପାଖରେ ଥାଏ ସହଜବୋଧ୍ୟ—ମୁଁ ଯେ ବହୁତ ବେଶି ପଢ଼ିଥାଏ ସେମାନଙ୍କ ଭିତରୁ ଯେ କୌଣସି ଯୁବକ ଯୁବତୀଙ୍କଠୁଁ । କିନ୍ତୁ ଅଧିକାଂଶ ସମୟରେ ମୋ ସାଙ୍ଗସାଥୀମାନେ କଥାବାର୍ତ୍ତା ହେଉଥାନ୍ତି ସେମାନଙ୍କ ସ୍କୁଲ ସମ୍ପର୍କରେ, ସମାଲୋଚନା କରୁଥାନ୍ତି ସେମାନଙ୍କର ଶିକ୍ଷକମାନଙ୍କୁ, ଅଭିଯୋଗ କରୁଥାନ୍ତି ଶିକ୍ଷକମାନଙ୍କ ବିରୁଦ୍ଧରେ । ସେମାନଙ୍କ କଥା ଶୁଣି ଶୁଣି ମୋର ମନକୁ ଆସୁଥାଏ ସେମାନଙ୍କ ତୁଳନାରେ ଅଧିକ ସ୍ୱାଧୀନତା ଥାଏ ମୋର, ଅଧିକ ସ୍ୱାଧୀନତା ମୁଁ ଉପଭୋଗ କରୁଥାଏ । ମତେ ଆଶ୍ଚର୍ଯ୍ୟ ଲାଗୁଥାଏ ସେମାନେ ଧୈର୍ଯ୍ୟ ଧରି ଯାହା ସବୁ ବରଦାସ୍ତ କରୁଛନ୍ତି, ତଥାପି ସେମାନଙ୍କ ପ୍ରତି ଈର୍ଷା ହେଉଥାଏ ମୋର— ସେମାନେ ପଢ଼ୁଥାନ୍ତି, ପଢ଼ିବାକୁ ସୁବିଧା ପାଉଥାନ୍ତି ବୋଲି ।

ବୟସରେ ମୋର ସାଙ୍ଗସାଥୀମାନେ ଥିଲେ ମୋ ଠାରୁ ବଡ଼, ବହୁତ ବଡ଼, କିନ୍ତୁ ଜାଣିଥାଏ ମୁଁ—ମୁଁ ଥିଲି ସେମାନଙ୍କଠୁଁ ଅଧିକ ପୋଖତ, ଅଧିକ ଅଭିଜ୍ଞ । କିନ୍ତୁ ଏଇଟି ହିଁ ଅଧିକ ବିଚଳିତ କରି ଦେଉଥାଏ ମତେ—ଚାହୁଁଥାଏ ସେମାନଙ୍କ ସହିତ ଘନିଷ୍ଠ ହେବି କେମିତି । ମୁଁ ଘରକୁ ଫେରୁଥାଏ ରାତିରେ ଉଚ୍ଛୁରରେ, ତାକୁଠୁଁ ତଳପା ଯାଏ ଧୂଳିମାଟିରେ ସରସର ହୋଇଥାଉ, ସେମାନଙ୍କ ରାଜ୍ୟଠୁଁ, ବ୍ୟବସ୍ଥାପନ, ଅନୁଷ୍ଠାନଠୁଁ ଏକାବେଳକେ ଅଲଗା ଏକ ରାଜ୍ୟର ଛବ-ଛାୟାରେ ସମ୍ପୂର୍ଣ୍ଣ ରୂପ ଆଚ୍ଛନ୍ନ ରହି, ନିମଗ୍ନ ହୋଇ ସେଥିରେ । କିନ୍ତୁ ଅସଲ ସାର କଥାଟି ଦେଖିଲେ ସେମାନଙ୍କର ଅଭିଜ୍ଞତା ଯେ ମୋ ଅଭିଜ୍ଞତାଠାରୁ ଅଲଗା ଥାଏ ନୁହେଁ, ପ୍ରାୟ ସମାନ ଥାଏ ମୋ ଅଭିଜ୍ଞତା ସହିତ । ଗୁଡ଼ାଏ ଗୁଡ଼ାଏ ଗପୁଥାନ୍ତି ସେମାନେ, ଆଲୋଚନା କରୁଥାନ୍ତି ଝିଅମାନଙ୍କ ସମ୍ପର୍କରେ—କେମିତି ପ୍ରେମରେ ପଡ଼ୁଥାନ୍ତି ପହିଲେ ଜଣକର, ତା' ପରେ ଆଉ ଜଣକର—ଆଉ ଚେଷ୍ଟା କରୁଥାନ୍ତି ସମସ୍ତେ କେମିତି କବିତା ଲେଖିବାକୁ । ଅନେକ ସମୟରେ ମୋର ସାହାଯ୍ୟ ଲୋଡ଼ୁଥାନ୍ତି, ସେଥିଲାଗି ମିଳିତ ହୋଇ ଅନୁରୋଧ କରୁଥାନ୍ତି ମୋତେ । ଆନନ୍ଦରେ ବେଶ୍ ହାତ ଦେଲି, ଲାଗିଗଲି କବିତା ରଚନାରେ, ପଦଗୁଡ଼ିକ ସହଜରେ ଆସିଗଲା

ମନକୁ ମନ, ଘଉପାତ କଠିନ ହେଲ ନାହିଁ ଆଦୌ—କନ୍ତୁ କାହିଁକ କେଜାଣି କେତେକ କାରଣରୁ ସବୁବେଳେ ମୋର କବିତାଗୁଡ଼ିକ ହେଲ ଅଚଳଆ, ରହସିଆ । ସବୁବେଳେ ପୁଣି ତୁଲନା କଲ ପିଟିସନ ଝିଅଟିକୁ, ଯାହାକୁ ଅଧିକାଂଶ ସମୟରେ ଉତ୍ସର୍ଗ କରୁଥିଲ କବିତାଗୁଡ଼ିକୁ—ଗୋଟାଏ କଚ୍ଛ ପନପରିବା ସାଧାରଣତଃ 'ପିଆଜ' ସାଙ୍ଗରେ ।

ସେମାପ୍ଲୋ ମୋତେ ଦିନେ କହିଲ :

"ତମେ ସେ ପଦଗୁଡ଼ାକୁ କହୁଚ କବିତା ? ସେଗୁଡ଼ାକ ତ କୋଚା ସାଁଆଁଲ (ମୋଚ)ର କଣ୍ଟା, ଲୁହା କଣ୍ଟା !"

ଅନ୍ୟମାନଙ୍କ ସହ ସମାନସ୍ପନ୍ଦ ହୋଇ ପାଦ ମିଳାଇ ଗ୍ଲଲବା ପାଇଁ ମୁଁ ବି ପ୍ରେମରେ ପଡ଼ିଲ ପିଟିସନ କୁମାରୀର—ଭାବ କରିବାକୁ ବାହାରିଲ—ଆଉ ଏବେ ମନେ ନାହିଁ ମୋର କେମିତ ଜଣେଇଥିଲ ମୋ ଭାବଟିକ, ଭାବନାଟିକ, କନ୍ତୁ କାରବାରଟିର ଏବେ ଆଉ କ'ଣ ମନେଅଛି ମୋର କେମିତ ମୋ ମନର ଭାବଟିକୁ ପ୍ରକାଶ କରିଥିଲ ତା' ଆଗରେ, କନ୍ତୁ ମନେଅଛି ମୋର ଏ କାରବାରଟାର ସମାପ୍ତି ଘଟିଥିଲ ବଡ଼ ବିଷାଦରେ, ବଡ଼ କରୁଣ ଭାବରେ । ଦିନେ ମୁଁ ପ୍ରସ୍ତାବ କରିଥିଲ କ୍ରେଜବଦନ ଗାଡ଼ିଆରେ ଯୁଥ ନାହିଁ, ଥିର ପାଣି—ପଟାଟିଏ ପଡ଼ିଛି, ଭାସୁଛି, ସେଥିରେ ଚଢ଼ି ଭେଲାଭସାଣି ଖେଳିବା । ମୋ କଥାରେ ରାଜି ହୋଇଗଲ ସେ—ପଟାଟିକୁ ଆଣି କୂଳରେ ଲଗାଇଲ, ତା' ଉପରେ ଛିଡ଼ା ହୋଇଥାଏ, ମୋ ଓଜନଟା ସମ୍ଭାଳିବାକୁ ବେଶ୍ ଦମ୍ଭିଲ ଆଏ ପଟାଟି—କନ୍ତୁ ସେ କୁମାରୀଟି କମକ୍ରଟ ପୋଷାକରେ ଲେସ୍ ଆଉ ରିବନରେ ମଣ୍ଡି ହୋଇଥାଏ, ଯେତେବେଳେ ସେ ସୁଲଳିତ ଭଙ୍ଗୀରେ ଚଢ଼ିଗଲ ଯିମିତ ପଟାଟିର ଆର ମୁଣ୍ଡରେ—କ ଦୁର୍ଯୋଗରେ, କ ଅଭିଶାପରେ କାହାର କେଜାଣି ପଟାଟି ଖସିଗଲ ଯଡ଼୍‌କନ ତା' ପାଦ ତଳରୁ—ହାଁ ହାଁ କହୁଁ କହୁଁ ମୁଁ ଓଲଟି ପଡ଼ିଲ ଗଡ଼ିଆ ପାଣିରେ—ନାସ୍ତି ଜାଥ ଆଗରେ ବୀରତ୍ୱ ଦେଖାଇ ଠିକ୍ ଡେଇଁପଡ଼ିଲ ସଙ୍ଗେ ସଙ୍ଗେ—ଆଖି ପିଚ୍ଛୁଳାକେ ଟାଣିଆଣିଲ କୂଳ ଉପରକୁ ବନ୍ଧୁକୁ ! କନ୍ତୁ ସେତେବେଳକୁ ମୁହୂର୍ତ୍ତିଟିରେ ଭୟ ପଶିଯାଇଥାଏ ତା' ଗ୍ଭିତରେ—ପଙ୍କ କାଦୁଅ, ସଢ଼ାପଚଲଟି, ମଇଳା ଫଇଲା ଲଗିଯାଇ ତା' ଦେହରେ—ସୁକୁମାରୀ ସେଇ ସୁନ୍ଦରୀ କୁମାରୀଟିର ସୌନ୍ଦର୍ଯ୍ୟକୁ ନଷ୍ଟଭ୍ରଷ୍ଟ କରି ଦେଇଥାଏ ଅବର୍ଣ୍ଣନୀୟ ଭାବରେ ।

ପାଣି ସରସର ହାତମୁଠାକୁ ଉଞ୍ଚେଇ ମତେ ସେ ପାଟିକରି ଉଠିଲ :

"ଜାଣିଶୁଣି ବୁଡ଼େଇ ଦେଇଛୁ ତୁ ମତେ !"

ଯେତେ ବୁଝେଇ ଶୁଝେଇ କ୍ଷମା ମାଗିଲ ନଇଁଗ୍ଭଳ ହୋଇ—ସେ କାନ ଦେଲ ନ ମୋ କଥାକୁ—ସେହିଦିନଠୁଁ ସେ ହେଲ ମୋର ଶତ୍ରୁ, ଘୋର ଶତ୍ରୁ ! ମାରସ୍ତକ ଭାବରେ କହିଲେ ଚଲେ ।

ସହର ଜୀବନଟା ଇମିତ କିଛୁ ମନକୁ ପାଇଲା ଭଳି ନ ଥାଏ, ବିଶେଷ ଭାବରେ ପୁରୁଣା ମାଲିକାଣୀଙ୍କର ନାହିଁ ତେଉଁଥାଏ ମୋ ସ୍ଥାଇ ପଡ଼ିଲେ, ମତେ ଦେଖିଲେ ନାକ ଟେକୁଥାଏ ସେ ଘୃଣାରେ । ଆଉ ଯୁବତୀ ମାଲିକାଣୀ ମୋତେ ଦେଖୁଥାଏ କମିତି ଗୋଟାଏ ସନ୍ଦେହଚକ୍ଷୁରେ । ଆଗ ଅପେକ୍ଷା ଆହୁରି ବୃନ୍ଦରେ ଚଳ ବଚନରେ ମୁହଁରେ ଭିଙ୍କିର, ଦ୍ୱିପ୍ରହର ପରି ଘଣ୍ ଘଣ ହେଉଥାଏ ଯାହାକୁ ଦେଖୁଥାଏ ଆଗରେ—ମନରେ କ'ଣ ଗୋଟାଏ ଚିନ୍ତା, ବଦ୍ଧମୂଳ ଧାରଣା, ଅହଲ୍ୟା ବହି ସରୁଦେଲେ ।

ମାଲିକଙ୍କୁ ମୋର ଏବେ ନକ୍‌ସା ଅଙ୍କନ କରିବାକୁ ପଡ଼ୁଥିଲା ଯେ ସେ ଓ ତାଙ୍କ ଭାଇ ଦୁହେଁ ମିଶି ନକ୍‌ସା ଅଙ୍କା ତୁଲେଇ ପାରୁ ନ ଥିଲେ । ଏଣୁ ଦିନେ ମାଲିକ ମୋର ସାବତବାପାଙ୍କୁ ସାହାଯ୍ୟ ପାଇବା ପାଇଁ ଡାକ ପଠାଇଲେ ।

ଦିନେ ମେଲାପଡ଼ିଆରୁ ସଅଳ ସଅଳ ଫେରିଆସି ଖାଇବାଘର ଭିତରେ ପଶିଥାଏ କି ନାହିଁ, ଦେଖିଲି ସେହି ଲୋକଟି, ପାସୋର ଯାଇଥାଏ ଯିଏ ମୋ ମନରୁ—ମୋ ମାଲିକ ପାଖରେ ବସିଥାଏ ଗୁହା ଟେବୁଲ କଡରେ, ସେ ହାତ ବଢ଼ାଇଦେଲା ମୋ ଆଡ଼କୁ ହାତରେ ହାତ ମିଳାଇବା ପାଇଁ—

"କେମିତି ଅଛ ରେ ?" ପଚାରିଲେ ସେ ମତେ ।

ଏଭଳି ମୁହାଁମୁହିଁ ଭେଟାଭେଟି ତା' ସାଥିରେ, ଏତେ ଅପ୍ରତ୍ୟାଶିତ ଭାବରେ, ସ୍ତବ୍ଧ ଓ ନିଶ୍ଚଳ ହୋଇଗଲି ମୁଁ । ଅତୀତଟା ଜଳିଉଠିଲା ହୁତ୍‌କାର, ଶିଖା ଟେକି ହୃଦୟକୁ ଜାଳିପୋଡ଼ି ଦେଇ ମୁହୂର୍ତ୍ତିକରେ ।

"କ'ଣ ତାକୁ ଡରେଇଦେଲ ଯେ ତମେ ?" ଲକ୍ଷ୍ୟକରି ମତ ଦେଲେ ମାଲିକ ମୋର ।

ସାବତବାପା ନଷ୍ଟଭ୍ରଷ୍ଟ ଶୀର୍ଣ୍ଣ ମୁହଁ ଉପରେ ହସ ଫୁଟାଇ ଟିକିଏ ଅନେଇ ରହିଲେ ମୋ ଆଡ଼କୁ, କଳା କଳା ଆଖି ଦି'ଟା ତାଙ୍କର ଆହୁରି ମେଲି ହୋଇଯାଇଥାଏ ଆଗ ତୁଳନାରେ, ସେ ଭୀଷଣ ଭାବରେ ଜୀର୍ଣ୍ଣ ଦିଶୁଥା'ନ୍ତି, ସେ ଭାଙ୍ଗି ପଡ଼ିଥାନ୍ତି ଚୂର୍ଣ୍ଣିଭୂତ ହୋଇଥାନ୍ତି ଯେମିତି । ହାତଟି ମୋର ଭର୍ତ୍ତି କରିଦେଲି ପତଳା ଚାଉଳି ମୁଠା ଭିତରେ ତାଙ୍କର ।

'ପୁଣି ଆମର ଦେଖାସାକ୍ଷାତଟା ହେଲା ତା' ହେଲେ, ନାହିଁ ?" କାଶି କାଶିକା କହିଲେ ସେ ।

ମୁଁ ଦାହାଣଗଲି ପଦାକୁ, ଏତେ ଦୁର୍ବଳ ଲାଗୁଥାଏ ମତେ ସତେ ଯେମିତି ଗୁଡ଼ାଏ ମାଡ଼ିବସିଥାଏ ମୋ ଉପରେ ।

ଆମର ସମ୍ପର୍କଟା ଜଗିରଖି ଟଣାଓଟରରେ ଚାଲିଲା । ସେ ମତେ ମୋ ପୈତୃକ ସଙ୍କରେ ପୁଣି ନିଜ ପ୍ରଥମ ନାଆଁ ଧରି ଡାକୁଥାନ୍ତି, ମୋତେ ସମାନସ୍ତର ଭାବରେ ଗ୍ରହଣ କରି ନେଇଥାନ୍ତି ।

"ଷ୍ଟୋରକୁ (ଭଣ୍ଡାରକୁ) ଗଲାବେଳେ ଦୟାକରି ଟିକିଏ ମୋ ପାଇଁ କିଣି ଆଣିବ କି 'ଲା ଫର୍ମା' ଚମାଖିରୁ ଚାଉଠ ପାଉଣ୍ଡ୍, ଗହେ ଇକ୍ଟରସନ ସିଗାରେଟ ବଲା କାଗଜ, ପାଉଣ୍ଡେ ଖଣ୍ଡେ ସିଝା 'ସସେଜ' (ମାଂସପୂରିଦିଆ ପିଠା) !"

ସେ ଯେଉଁ ପରିସ୍ଥିତି ବଢ଼ାଇଦେଲେ ମତେ ତାଙ୍କ ଜିନିଷପତ୍ର ଖରିଦ ପାଇଁ ସବୁବେଳେ କିମିତି ଅସୁଖିଆ ଭାବରେ ଛପ୍ପନ ଛପ୍ପନ ଲାଗୁଥାଏ···ସେଥିରୁ ହିଁ ଜଣାପଡୁଥାଏ···ଯକ୍ଷ୍ମା ଧରିସାରିଥାଏ—ଆଉ ବେଶିଦିନ ନ ଥାଏ ଆୟୁଷ ! ସେ ଯେ ଏହା ଜାଣି ନ ଥାନ୍ତି ନୁହେଁ, ସେଥିପାଇଁ ବୋଧହୁଏ ସେ ଶାନ୍ତ ଅବିକମ୍ପିତ ଗମ୍ଭୀର ସ୍ୱରରେ ବେଳେବେଳେ ମତାମତ ଦେଉଥାନ୍ତି—ଛେଳି ଦାଢ଼ି ଭଳି କଳା ଦାଢ଼ିର ଅଗକୁ ମୋଡ଼ି ମୋଡ଼ି ମନ୍ତବ୍ୟ ଦେଉଥାନ୍ତି :

"ମୋ ରୋଗଟା ଭଲ ହେବାର କିଛି ଉପାୟ ନାହିଁ । ପ୍ରକୃତରେ ଯଦିଓ ବହେ ବହେ ମାଂସ ଖାଇଲେ ହୁଏତ କିଏ କେବେ ଭଲ ହୋଇପାରେ—ତେବେ କିଏ ଜାଣେ, ଇମିତି ବୋଧହୁଏ ଏ ବର୍ତ୍ତି ଯାଇପାରେ ଏ ରୋଗରୁ ।"

ଆଖି ଖୋସି ହୋଇଯିବ, କହିଲେ ବିଶ୍ୱାସ କରିବେ ନାହିଁ କେହି ସେ ଯେତେ ପରିମାଣରେ ଖାଉଥାନ୍ତି, ଖାଉଥାନ୍ତି ଆଉ ସିଗାରେଟ ଟାଣୁଥାନ୍ତି—ଏଇ ସିଗାରେଟଟା ଓଠ ଦ'ଟା ଭିତରୁ କାଢ଼ୁଥାନ୍ତି ପାଟିରେ ପୂଳାଏ ଖାଇବା ଜିନିଷ ପୁରେଇବା ପାଇଁ—ପ୍ରତିଦିନ ମୁଁ କିଣି ଆଣୁଥାଏ ତାଙ୍କ ପାଇଁ ସସେଜ ମାଂସ ସିଙ୍ଗଡ଼ା, ହ୍ୟାମ (ଘୁଷୁରି ପଛଫଡ଼ିଆର ମାଂସ), ସର୍ଟିନ କୋକଲ ମାଛ । ଆଉ ମା'ର ଭଉଣୀଟା 'ଘୋଷଣା' କରିବସିଲେ ଦିନେ—ସେ କି ଅହେତୁ ସନ୍ତୋଷରେ, କି ତୃଷ୍ଣାନ୍ତ ଭାବରେ ପୁଣି ।

"ଯମକୁ ଏଣ୍ଡେତେଣ୍ଡେ ଏଥିରୁ ଟିକେ ସେଥିରୁ ଟିକେ ଦେଇ ଚର୍ଚ୍ଚା କରିବ ? ତାକୁ ବୋକା ବନେଇବ ? ନାଁ ତା ହୁଏ ନାହିଁ, ହେବ ନାହିଁ ।"

ମାଇପେଗୁଡ଼ାକ ମୋ ସାବତବାପାଙ୍କ ଉପରେ ଦେହ ଚଡ଼େଇଲା ଭାବରେ ଦୃଷ୍ଟି ରଖିଥାନ୍ତି, ତାଙ୍କ ଖବର ଅନ୍ତର ବୁଝୁଥାନ୍ତି, ସବୁବେଳେ ଜଗିର କରୁଥାନ୍ତି ନୂଆ ଔଷଧପତ୍ର କିଛି ଖାଆନ୍ତୁ ଭଲ ହୋଇଯିବେ—ଅଥଚ ତେଣେ ତାଙ୍କ ପଛରେ ସେମାନେ ତାକୁ ପରିହାସରେ ଉଡ଼ାଉଥାନ୍ତି କଥା କଥାକେ ।

"ସାଆନ୍ତ ଲୋ ମାଆ ସାଆନ୍ତ ! ସାଆନ୍ତରୁ ଊଣା ନୁହନ୍ତି ।" କହିଲେ ଦିନେ ତରୁଣୀ ମାଳିକାଣୀ । "କ'ଣ କରୁଛନ୍ତି ପୁଣି ସେ—ଆହୁରି ଥରକୁ ଥର

ଲୁଟି ଟୁକୁରା ଅଇଁଠା ପଇଁଠା ପୋଛି ସଫା କରିଦେବ, କୁକୁର, ବାଇଗଣ ନା ଭଲେଇ ହେଉଛନ୍ତି ସେ ଅଇଁଠା ପଇଁଠା ମାଛିଙ୍କୁ ଡାକିଆଣେ ।''

''ହଁ ମ, ସାଆନ୍ତ ଭଳି ସାଆନ୍ତ ପ୍ରକୃତିଟା !'' ଛିଗୁଲେଇ ଝିଙ୍କାର ଉଠିଲେ ବଡ଼ ମାଲିକାଣୀ—''ଅନା ଲୋ ନୋଟବୁ ସ୍କ୍ରୁ ଫ୍ରୁ ଉଲୁର ଗଲାଣି ପଛେ ଭୁଚ୍ଛାଟାରେ ଚକ୍ ଚକ୍ କରୁଚି—ଆଉ ସେ ତାକୁଇ ବସି ବୁରୁଶ କରୁଛନ୍ତି, ଝାଡ଼ିଲାଗିଛନ୍ତି ଠିକ୍—କି ନିଉଚ୍ଛୁଣା କୃଚ୍ଛୁ କୃଚ୍ଛିଆ ଜୀବଟାଏ ମ—କମାରୁ ମଳିଧୂଳି ନାହିଁ—ରହିବ ବ ।''

'ଆରେ ସତାର ଟିକେ, କଟିଯାଉ କେଇଟା ଦିନ, ହାଇହାଉ କାଳନ୍‌ନେଇ, ଗୁଡ଼ ପଡ଼ିଲ କୁକୁଟୀଗୁଡ଼ାକ ତମେ—ସେ ତ ଗ୍ଲଲିଯିବ—ଖୁବ୍ ଶୀଘ୍ର ଗ୍ଲଲିଯିବ ସଂସାରରୁ ।''

ସତେ ଯିମିତି ଆଶ୍ୱାସନା ଦେଇ କହିଲେ ମାଲିକ !

ବୁଦ୍ଧିଜୀବୀଙ୍କ ପ୍ରତି ଅଜ୍ଞ, ସହରର ଲୋକଗୁଡ଼ାଙ୍କର ନିରର୍ଥକ, ନିର୍ବୋଧ, ବୈରଭାବମତେ ସାବତବାପାଙ୍କ ପକ୍ଷ ସମର୍ଥନ କରିବାକୁ ପ୍ରବର୍ତ୍ତାଇଲା । କେତେଗୁଡ଼ାଏ ଛତୁ, କାଠଛତୁ ବିଷାକ୍ତ ହୋଇପାରେ—ଦେଖିବାକୁ ତ ସୁନ୍ଦର ଅନ୍ତତଃ ।

ତାଙ୍କଠି, ସାବତବାପାଙ୍କଠି ମୋର, ଏମିତି କେତେଗୁଡ଼ାଏ ଗୁଣର ଆଭାସ ପାଇ ପାରିଲି—ଏମିତି କେତେ କଥା ଆବିଷ୍କାର କଲି, ଯେଉଁଗୁଡ଼ିକର ସାମଞ୍ଜସ୍ୟ ଥିଲା, ''ବଢ଼ିଆ ସେଇଠି'' ଲୋକଟିର ଗୁଣଗୁଡ଼ିକ ସହିତ—ସେହି ଯେଉଁ ଲୋକଟିକୁ କେବେହେଲେ ପାସୋରି ପାରିବି ନାହିଁ ଜୀବନରେ । ମୋର ମନକୁ ଘଷିମାଜି ଝକ୍ ଝକ୍ କରିଦେଲି, ସଜେଇ ସୁନ୍ଦର କରିଦେଲି ''ବଢ଼ିଆ ସେଇଠି'' ରେ ଆଉ ଗ୍ରଣୀମାର୍ଗଟ ଯେନ ସୁମଧୁର ସ୍ମୃତିଗୁଡ଼ିକର—ମୋ ବହି ପଢ଼ାରୁ ସଂଗ୍ରହ କରି ଆଣି ସକଳ ପ୍ରକାର ସୌନ୍ଦର୍ଯ୍ୟ, ସକଳ ପ୍ରକାର ମାଧୁର୍ଯ୍ୟ ସେମାନଙ୍କ ଉପରେ ଅଜାଡ଼ି ଦେଲି । ଯେତେ ଯାହା ସବୁଠୁ ବଳି କମନୀୟ, ସବୁଠୁ ବଳି ରମଣୀୟ ଥିଲା, ନିହିତ ଥିଲା ମୋ ପ୍ରାଣରେ. ମୋ ମର୍ମରେ ଯେତେ ଯେଉଁ ସୁଲଳିତ କଳ୍ପନାର ଜନ୍ମ ପାଇଥିଲା ମୋର ପଢ଼ାପଢ଼ିରୁ—ମୋ ସାବତବାପା ଥିଲେ ''ବଢ଼ିଆ ସେଇଠି'' ଭଳି ଠିକ୍ ନିର୍ଲିପ୍ତ, ନିର୍ବିକାର, କେମିତି ସ୍ୱତନ୍ତ୍ର ଦୂରଛଡ଼ା—ଆଉ ସମସ୍ତଙ୍କ ସ୍ନେହ ପ୍ରୀତିରୁ ବଞ୍ଚିତ—ସମସ୍ତଙ୍କ ସ୍ନେହ ଦୃଷ୍ଟିରୁ ଅନଭିଳଷିତ—ଆମ ଘରେ କିନ୍ତୁ ସମସ୍ତଙ୍କ ପ୍ରତି ସମାନ ବ୍ୟବହାର, ସମାନ ଦୃଷ୍ଟି ଥିଲା ତାଙ୍କର । କେବେହେଲେ ଆଗେ ବଢ଼ି ପ୍ରଥମେ କଥା ପଦେ କହୁ ନ ଥିଲେ ସେ—ଉଚ୍ଚାରଣ କରୁ ନ ଥିଲେ ପ୍ରଥମେ ଶବ୍ଦଟିଏ ସେ—ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେଉଥିଲେ ସେ ଅତି ସଂକ୍ଷେପରେ, ଆକର୍ଷଣ କଲାଭଳି ଭଦ୍ରତାର ଅଉ ଶିଷ୍ଟତାର ସହିତ—ବିଶେଷ ଭାବରେ ତା' ମନକୁ ପାଉଥିଲା ମୋର—ଉପଭୋଗ କରୁଥିଲି, ଶୁଣୁଥିଲି ଯେତେବେଳେ ମାଲିକଙ୍କଠୁଁ—ବତେଇ ଦେଉଥିଲେ କେତେ କଥା, ଶିକ୍ଷା ଦେଉଥିଲେ ଏକପ୍ରକାରେ । ଟେବୁଲ ପାଖରେ ଛିଡ଼ା ହେଉଥିଲେ ଏକାବେଳେକେ ଭାଙ୍ଗି ପଡ଼ି, ବଙ୍କେଇ ଯାଇ ଅଣ୍ଟାରୁ,

ଲମ୍ବାଳିଆ ନଖରେ ବଢ଼ିଲାଆ କାଗଜକୁ ଟପ୍ ଟପ୍ କରି ଧୀର ଶାନ୍ତ ଭାବରେ ବୁଝାଇ ଦେଉଥିଲେ ।

"ଏଇଠି, ଏଇ ଜାଗାରେ, ବରଗାକୁ ଗୋଟାଏ ଯୋଡ଼େଇରେ ବାନ୍ଧି-ରଖିବାକୁ ହେବ । ଏହାହେଲେ 'ସ୍ପର୍ଶ'ଟା ସୁଭିଆଡ଼କୁ ଫେଲେଇ ହୋଇଯିବ । ଏଇଟି କରିବା ନିହାତ ଦରକାର, ନଇଲେ ବରଗା କାନ୍ଥ ଭିତରକୁ ପଶିଯିବ, କାନ୍ଥ ଭୁଷିଡ଼ି ପଡ଼ିବ ।"

"ହଁ ସତକଥା, ସତ ପ୍ରକୃତରେ—ଧ୍ରୁତେଶନ ।" ମାଲିକ ମୋର ଭୁଣ୍ଟ୍ ଭୁଣ୍ଟ୍ ହେଉଥିଲେ, ଆଉ ଖୁଣଯା ତାଙ୍କର କହି ବସୁଥିଲା—ମୋର ସାବତବାପା ଗୁଲିଗଲା ପରେ ସେଠକୁ ।

"ଇଏ କ'ଣ ? ଏଇ କେମିତିଆ କଥା ? ତମକୁ ଶିଖେଇବାକୁ ସେ କିଏ ? ତାକୁ ଏ ସୁବିଧାଟା ଦେଉଛ କାହିଁକି ଯେ ?"

କାହିଁକି କେଜାଣି ସେ, ମାଲିକ ଖୁଣଯା ସହିପାରୁ ନ ଥାଏ, ଚଢ଼ି ଉଠୁଥାଏ—ମୋ ସାବତବାପ'ଙ୍କର ଗୋଟିଏ ନିଚିଦଣିଆ ଅଭ୍ୟାସଟାକୁ ଦେଖିଲେ—ସାବତ-ବାପାଙ୍କର ସେଇ ଅଭ୍ୟାସଟି ଥିଲା ସ୍ଥିତରେ ଖାଇସାରିଲା ପରେ ସେ ଦାନ୍ତକୁ ସଫା କରୁଥାନ୍ତି କଲକଲ କରି କୁଳୁକୁଳିଆ କରୁଥାନ୍ତି, ବେକ ପଛକୁ ଏମିତ ଭାବରେ ମୁଣ୍ଡକୁ ଭଙ୍ଗିଦେଇ ଯେ ତାଙ୍କ ଆଖିପୁଅ ଦି'ଟା ଢଳ ଢଳ ହୋଇ ସତେ ଯେମିତ ବାହାରି ପଡ଼ୁଥାଏ ଆଗକୁ ।

ମୋ ମନେହେଉଛୁ ସ୍ନେଭଗୋକ ଭ୍ରପିଲିସ୍ନେଭିଚ ସେମିତ ଆହୁଜ ପଡ଼ିବାଟା ନିଶ୍ଚୟ କ୍ଷତିକାରକ ହେଉଛୁ ତମ ପାଇଁ—ଦିନେ ସେ ମାଲିକକୁ କହିଲା ଅମ୍ଭିଲିଆ ସ୍ୱରରେ ।

ମୋ ସାବତବାପା କନ୍ଥୁ ମୁରୁକେଇ ହସିଲେ ଟିକିଏ ଆଉ କହିଲେ ଅତି ସନ୍ତ୍ରମରେ :

"ଏମିତ କାହିଁକି ଭାବୁଛନ୍ତି ଆପଣ ।"

"ଏଁ ବା ଇମିତ, ଏ କାରଣଟା ଇମିତ ।"

ସାବତବାପା ଆଉ କିଛି ନ କହି ଦାନ୍ତଖୁଣ୍ଟାଟିଏ ନେଇ ତାଙ୍କର ନେଳି-ଆସିଆ ନଖଗୁଡ଼ିକୁ ସଫା କରିବାକୁ ଲାଗିଲେ ।

"ଦେଖ ଲେ ମାଆ ! ସେ ପୁଣି ସଫା କରୁଛନ୍ତି ନଖଗୁଡ଼ାକ !" ପାଟିକରି ମତାମତ ଝାଡ଼ିଦେଲେ ମାଲିକାଣୀ—ସାବତବାପା ସେଠାରୁ ଗୁଲିଗଲା ମାତ୍ରେ କହିଲେ, 'ଗୋଟାଏ ପାଦ ପଛେ ମଶାଣିରେ, କବରଟା ଭିତରେ—ତଥାପି ପୁଣି !'

"ଏଖ" ! ନିଶ୍ୱାସଟିଏ ପକାଇଲେ ମାଲିକ ଥିଇକିନ—"କେତେ ନିବୋଧ ତମେ ସବୁ ଗର୍ଜିଲେ କୁକୁଡ଼ୀଗୁଡ଼ାକ" ।

“କାହିଁକି ତମେ ସବୁବେଳେ ଇମିତି କରୁଛ, ଏ ସଂସାରରେ ଇମିତି କରୁଛି ?’ ଆପତ୍ତି କଲା ମାଲିକାଣୀ—ତାଙ୍କ ସ୍ତ୍ରୀ ।

ରାତିହେଲେ ବୟସ୍କା ପ୍ରାୟ ବୁଢ଼ୀ ଅତି ଭକ୍ତ ଭାବରେ ଅଭିଯୋଗ ବାଢ଼ିଲା ଭଗବାନଙ୍କ ପାଖରେ ।

“ସେମାନେ ଆଣି ଲଦି ଦେଇଛନ୍ତି ମୋ ଉପରେ ପୂଜାପାଣିଆ ଘାଘାଉଡ଼ିଆ ଜୀବଟାକୁ ଭିକ୍ଟରକୁ ଠେଲି ଦେଲେଣି ପଛକୁ, କୁଆଡ଼େ କେଉଁଠି ରହିଲଣି ଯାଇ ସେ ।”

ଭିକ୍ଟର ସେତେବେଳକୁ ଆରମ୍ଭ କରି ଦେଇଥାଏ ମୋ ସାବତବାପାଙ୍କ ଗତିବିଧିକୁ ଅବିକଳ ଅନୁକରଣ କରିବା—ସାବତବାପାଙ୍କର ସେଇ ଧୀର ଚାଲି, ତାଙ୍କର ସାଆଁନ୍ତିଆ, ଅଭିଜାତ ହାତଗୁଡ଼ିକ ନିର୍ଦ୍ଦିଷ୍ଟ ଚଳାଚଳ ‘ଗଳାବନ୍ଧ’ରେ ଗଣ୍ଠି ପକାଇବାର କୌଶଳଟା ଆଉ ଓଠ ନ ଫିଟି ଖାଇବାର ରୀତିଟି—ଇମିତି କେତେଗୁଡ଼ିଏ ରୀତି··· ଆଉ ସେ ଭିକ୍ଟର ପ୍ରାୟ ସବୁବେଳେ ଅତିରୂଢ଼ ଭାବରେ ପଚାରି ହେଉଥାଏ ସାବତବାପାଙ୍କୁ—

“ଫ୍ରେଞ୍ଚରେ (ଫରାସୀ ଭାଷାରେ) ଆଣ୍ଟୁକୁ କ’ଣ କହନ୍ତି ମାକ୍ସିମଭ ?”

“ମୋ ନାଁ ଆ ସ୍ଟେଭଗେନ ଭାସିଲ୍ସ୍ଟେଭିଚ୍” ଥରେ ସଂଶୋଧନ କରି ବତାଇଦେଲେ ସାବତବାପା ।

“ଓଃ, ଆଚ୍ଛା, ଆଚ୍ଛା, ଆଉ ଗ୍ଲାସକୁ—ଗ୍ଲାସକୁ କ’ଣ କହନ୍ତି ?”

“ରାତିରେ ଖାଇ ବସିଲାବେଳେ ଟେବୁଲ ପାଖରେ ଭିକ୍ଟର ତା’ର ମାଆକୁ ଫରାସୀ ଭାଷାରେ ଆଦେଶ ଦିଅନ୍ତି ।”

“ମ, କି ଫରାସୀ ଲୋକଟାଏ ହେଲୁଣି ଯେ ରୁ !” କୌତୁକରେ ବୁଢ଼ୀ ମାଲିକାଣୀ କହି ଉଠିଲେ ।

ସାବତବାପା କିନ୍ତୁ ଥିଲେ ହେଲେ କିଛି ନ ଭାବି, ବିଚଳିତ ନ ହୋଇ ଚୋବେଇ ଲାଗିଥାନ୍ତି ମାଂସ, କାହାକୁ କିଛି ନ କହି, କୁଆଡ଼କୁ ନ ଚାହିଁ, ସତେ ଯିମିତି ପାଲଟି ଯାଇଥାନ୍ତି ମୂକ-ବଧିର ସେ—

ଦିନେ ଭିକ୍ଟରର ବଡ଼ଭାଇ କହିଲା ତାକୁ :

“କରେ ଫରାସୀ ଭାଷାରେ କହିବାଟା ତ ହାସଲ କଲୁଣି—ଏଥର ଗୋଟାଏ ଘରଣୀ ଆଣ ।”

ଏତିକରେ ସାବତବାପା ଖିରିକିନା ହସିଦେଲେ ଟିକିଏ—ଆଉ ସେଇ ଗୋଟିଏ ଥର ହିଁ ମନେ ପଡ଼ୁଛି ଯେତେଦୂର ଦେଖିଥିଲି ହସ ଟିକକ ତାଙ୍କ ମୁହଁରେ ।

ମୋ ମାଲିକଙ୍କ ସ୍ତ୍ରୀ କିନ୍ତୁ ରାଗିଯାଇ ଏଥିରେ ଫିଙ୍ଗି ଦେଲେ ଚମ୍ପୁଟାକୁ- ପାଟିକରି ଉଠିଲେ ତା' ଗେରସ୍ତ ଉପରେ ।

"ଲାଜ ନାହିଁ, ସରମ ନାହିଁ, ଏମିତିକା ଛାଲ୍‌ଜିଆ ଛାଲ୍‌ଠା କଥା କହିବାକୁ କମିତି ତମର ସାହସ ହେଉଛି ମୋ ଆଗରେ—ମୁଁ ଥିବାବେଳେ ?"

ବେଳେବେଳେ ସାବତବାପା ଆସି ବସୁଥାନ୍ତି ମୋ ପାଖରେ, ମିଳୁଥାନ୍ତି ମୋ ସାଥିରେ ପଛପଟ ବାଟଘରେ ଯେଉଁଠି ମୁଁ ଝିଙ୍କି ଘରର ପାହାଚ ତଳେ ଶୋଉଥାଏ, ସେଇଠି ପାହାଚ ଝରକା ଉପରେ ବସି ପଢ଼ାପଢ଼ି କରୁଥାଏ ମୁଁ ···

"ପଢ଼ୁଛ" ? ଥରେ ସେ ପଚାରିଦେଲେ ମୋତେ—କେତେଗୁଡ଼ାଏ ଧୂଆଁ ଟାଣି ପେଟକୁ ନେଇ ତାଙ୍କ ଗ୍ରନ୍ଥି ଭିତରେ କ'ଣ ଯେପରି ଜଳି ସେଁ ସେଁ ହେଲା କାଠ ଜଳିଲା ପରି ଠିକ୍ ! "କ'ଣ ସେ, ସେଇ ବହିଟି କି ବହି ?"

ଦେଖେଇଲି ବହିଟି ତାଙ୍କୁ ।

"ଓଃ" ବହି ଉପରି ଶିରୋନାମାଟି ଉପରେ ଆଖି ବୁଲାଇ ନେଇ କହିଲେ ସେ—"ଲାଗୁଛି, ପଢିଛି ଏଇଟି । ଟାଣିବ ସିଗାରେଟ ?"

ନୁହେଁ ସିଗାରେଟ୍ ଟାଣି ଲାଗିଲୁ,—ଝରକାବାଟେ ବାହାରକୁ ଅସନା ଅଗଣାଟା ଭିତରକୁ ଅନାଇ ।

"ପଢ଼ି ପାରୁନୁ, ବଡ଼ ଦୁଃଖର କଥା କହିଲେ ସେ" ଅଥଚ ମନ ଅଛି ଶକ୍ତି ଅଛି ତେ ର··· ।

"କିନ୍ତୁ ମନଧ୍ୟାନ ଦେଇ ପଢ଼ୁଛି ତ ମୁଁ ·· ପଢ଼ୁଛି ଶୁଣ ଏବେ···"

"ସେତିକ ନୁହେଁ, ଯଥେଷ୍ଟ ନୁହେଁ ସ୍କୁଲରେ ପାଠପଢ଼ା ପ୍ରଣାଳୀରେ ପଢ଼ିବା ତ ଦରକାର ।"

କହିବାକୁ ଇଚ୍ଛା ହେଲା, "ତମେ ତ ସ୍କୁଲରେ ପଢିଛ, ଶିକ୍ଷା ପ୍ରଣାଳୀରେ ତାଲିମ ହୋଇଛ—ହେ ମୋର ଚମତ୍କାର ଶିକ୍ଷିତ ଭଦ୍ରଲୋକଟି, ମହାନୁଭବ, କି ମଙ୍ଗଳଟା କରୁଛି ସେ ଶିକ୍ଷା ତମର ? କି କାମରେ ଆସିଛି ତମର ?"

କଣ ଭାବୁଛି ଲକ୍ଷ୍ୟକରି ମୋ ଚନ୍ଦ୍ରାଟାକୁ ସତେ ଯିମିତି ପଢି ସେ ଯୋଗ- କଲେ କଥାରେ ନଜର—

"ଲକ୍ଷ୍ୟ ଯଦି ସ୍ଥିର ଥାଏ, ଉଦ୍ଦେଶ୍ୟରେ ଯଦି ଦୃଢ଼ ଥାଏ କିଏ, ତେବେ ସ୍କୁଲରେ ଭଲ ତାଲିମ ପାଏ ସେ—ସ୍କୁଲପଢ଼ା ତା କାମରେ ଲାଗେ । ଶିକ୍ଷିତ ଲୋକ ହିଁ କେବଳ ଏ ଜୀବନକୁ ଦୋହଲେଇ ଘୂଞ୍ଚେଇ ଦେଇପାରନ୍ତି ହଲଚଲ କରି ପାରନ୍ତି !"

ଥରକରୁ ବେଶି ସେ କହୁଥାନ୍ତି ମତେ

"ଭଲ ହେବ ତୋ ପକ୍ଷରେ ଏଠୁଁ ଗ୍ଲଲିଯିବା—ଏଠି ରହିବାର ଅର୍ଥଟା ଯେ କ'ଣ ବୁଝି ପାରୁନ – ସୁବିଧା ବା କମତ ହେଉଛୁ ।"

"କିନ୍ତୁ ଭଲପାଏ ମୁଁ ଶ୍ରମଜୀବୀ ଲୋକଗୁଡ଼ାକୁ ।"

"ସେମାନଙ୍କଠି କ'ଣ ଇମିତ ଭଲ ପାଇବାର ଦେଖୁ ଯେ ?"

"ମାନ୍ଦା ନୁହନ୍ତି ସେମାନେ ।"

"ହୁଏ ତ..."

ଥରେ ମତ ଦେଲେ ସେ :

"ଅସଲ କଥାଟାକୁ ଆସିଲେ—କ ଜନ୍ତୁ କ ଜାନୁଆର ସେମାନେ—ଆମ ମାଲିକଗୁଡ଼ାକ, କ ବର୍ବର ପଶୁ ସବୁ ସେମାନେ...!"

ମନେ ପଡ଼ିଗଲା କେଉଁ ଘଟଣାରେ, କେଉଁ ପରିସ୍ଥିତିରେ ମା' ମୋର ଯେତେବେଳେ ଠିକ୍ ଏଇଆ କହିଥିଲା, ଏଇ ଶବ୍ଦ ବ୍ୟବହାର କରିଥିଲା—ଚମକପଡ଼ିଲି ଭୟରେ ବିରକ୍ତିରେ—ପଛକୁ ହଟି ଯାଇ ପୁଣି ଆଗକୁ ମାଡ଼ି ଆସିଲି ବା !

"କଣ ମାନୁନୁ, ଏକମତ ହେଉନାହୁଁ ଏଥିରେ, ଏ କଥାରେ !" ପଚ୍ଚାରିଲେ ସେ ହସିଦେଇ ଟିକଏ ।"

"ମାନୁଛୁ, ଏକମତ ହେଉଛୁ ।"

"ହଁ, ହେଉଚୁ—ବୁଝି ପାରୁଚ ମୁଁ ।"

"ତଥାପି ମୋ ମାଲିକକୁ ଭଲ ପାଏ ମୁଁ, ଶ୍ରଦ୍ଧା କରେ ତାଙ୍କୁ !"

"ହଁ, ପ୍ରକୃତରେ କହିଲେ ଭଲ ଧୀର ପ୍ରକୃତିର ସ୍ବପ୍ନୀ ଗାଭିଲିଟାଏ, ମ୍ୟୁଝିକ୍ ! କିନ୍ତୁ ବଡ଼ ଭେସଡ଼ା, ଦେଖିଲେ ହସମାଡ଼େ ମଣିଷକୁ ।"

ତାଙ୍କ ସାଥିରେ ବହିପତ୍ର ବିଷୟରେ ଆଲୋଚନା କରିବାକୁ ଗ୍ରହୁଁଥାଏ ମୁଁ—କିନ୍ତୁ ସ୍ପଷ୍ଟ ବାରି ହେଉଥାଏ ବହିପତ୍ରର କିଛି ଆବଶ୍ୟକତା ନ ଥାଏ ତାଙ୍କ ପାଖରେ ।

"ସେଗୁଡ଼ିକ ଯେତିକି ଅତି ବେଶି ମାତ୍ରାରେ ସମସ୍ତ କଟା ନା !" ଅନେକ ଥର କହୁଥାନ୍ତି ସେ "ବହିଗୁଡ଼ାକରେ ସବୁ ବିଷୟ ଅତିରଞ୍ଜିତ ହୋଇଥାଏ, ବିକୃତ ହୋଇଥାଏ, ଏ ଦିଗକୁ ହେଉ ବା ସେ ଦିଗକୁ ହେଉ ! ଅଧିକାଂଶ ଲେଖକ ଏଠି ଆମ ମାଲିକଙ୍କ ଭଳି, ଛୋଟଲୋକ, ଛୋଟନଜରିଆ !"

ଦେଖିଲି ମୁଁ ଏମିତି ମତାମତ ପ୍ରକାଶ କମ୍ ସାହସର ନ ଥାଏ, ତାଙ୍କ ପ୍ରତି ଚେଣ୍ଡ ଶ୍ରଦ୍ଧା ଆସିଲା ମୋ ମନରେ ।

"ପଢ଼ିଚ୍ ଗନସ୍ୱେଭଙ୍କ ଲେଖା ?"

ଧନେ ସେ ମୋଠାରୁ ଜାଣିବାକୁ ଗ୍ଚହିଁଲେ ।

"ଦ ଙ୍ ବୋଟ ପାଲଡ଼ା (ଗ୍ରେଟ ଜାହାଜ ପାଲଡ଼ା)"—ମୁଁ ଉତ୍ତରରେ ଜଣାଇଦେଲି ତାଙ୍କୁ ।

"ନର୍ଗବ ବଡ଼, ମାତ୍ରା ସେ ବହିଟା—କିନ୍ତୁ ମୋଟାମୋଟି ସାଧାରଣ ଭାବେ ଦେଖିଲେ ରୁଷରେ ଅତି ବୁଦ୍ଧିମାନ ସମଜଦାର ଲେଖକ ସେ । ମୋ ପରାମର୍ଶ ଶୁଣ, ପଢ଼ ତାଙ୍କର ଓବ୍ଲୋମୋଭ ବହିଟା, ତାଙ୍କର ସବୁ ବହି ଭିତରେ ନର୍ଭିକ ଦୁଃସାହସୀ ଆଉ ସତ୍ୟାଶ୍ରୟୀ ସାଧାରଣଭାବେ ଏହା ହେଉଛି ରୁଷୀୟ ସାହିତ୍ୟର ଶ୍ରେଷ୍ଠ ଅବଦାନ ।"

ଢ଼କେନ୍‌ଙ୍କ ସମ୍ବନ୍ଧରେ କହିଲେ ସେ:—

"ବାଜେ, ବାଜେ, ନହାତି ବାଜେ, ନିଶ୍ଚିତ ଭାବେ କହିପାରେ ମୁଁ ଦେଖୁଚ୍, ମୋ କଥା ସତ କ ନୁହେଁ—କିନ୍ତୁ ନ୍ୟୁ ଟାଇମସ କାଗଜର ଯୋଡ଼-ପତ୍ରରେ ସେଣ୍ଟ ଆନ୍ଥନଙ୍କ ପ୍ରଲୋଭନ ( ଦ ଟେମ୍ପଟେସନ ) ବୋଲି ଗୋଟିଏ ଚିତ୍ତାକର୍ଷକ କଥା ଛପାଯାଇଛି, ତୋର ପଢ଼ିବା ଉଚିତ ସେଇଟି । ଲଗିଛି ଗୀର୍ଜା ଫିର୍ଜା ଆଉ ସେଇ ସମ୍ପର୍କୀୟ ଧର୍ମକର୍ମ ବିଷୟ, ତତ୍ତ୍ୱଫତ୍ତ୍ୱ ଆଲୋଚନା କରିବାକୁ ତମେ ଭଲପାଅ—ଭଲ ହେବ (ଟେମ୍ପଟେସନ) 'ପ୍ରଲୋଭନ' ବହିଟି ପଢ଼ିଲେ ।"

ସେହି ସଂଖ୍ୟାର ଯୋଡ଼ପତ୍ରରୁ ଗଦାଏ କିଣିଆଣି ଦେଲେ ମୋତେ, ପ୍ଲୁବର୍ଟଙ୍କ ତୀକ୍ଷ୍ଣ ବର୍ଣ୍ଣନାମୟ ବିଚକ୍ଷଣତାସମ୍ପନ୍ନ ଲେଖାସବୁ ବାହାରିଥାଏ ସେଥିରେ । ପଢ଼ିଲି ମୁଁ ସେଗୁଡ଼ିକ । ମନେ ପଡ଼ିଗଲା ସାଧୁସନ୍ଥଙ୍କର ଯେଉଁ ଅସଂଖ୍ୟ ଜୀବନ ଚରିତ ଆଉ ଧର୍ମାନ୍ଧମାନଙ୍କର କୁହା ଯେଉଁ କେତୋଟି ଗଳ୍ପ ପଢ଼ିଥିଲି, ସେ ସବୁ ! କିନ୍ତୁ ମୋ ମନରେ ସେଗୁଡ଼ିକ କିଛି ହେଲେ ପ୍ରଭାବ ପକାଇଲା ନାହିଁ, ବରଂ ବେଶ୍ ଆନନ୍ଦ ପାଇଲି ଯୋଡ଼ପତ୍ରରେ ପ୍ରକାଶ ପାଇଥିବା ଭାଷିଲ ଓ ଟାଇମାଲିକଙ୍କ 'ଜୀବନ ସ୍ମୃତି କଥା' 'ପଶୁ ଚାଲାମ୍‌କାର' ବିଷୟ ପଢ଼ି ।

ଯେତେବେଳେ ସାବତବାପାଙ୍କ ନିକଟରେ ମୁଁ ଏହା ସ୍ୱୀକାର କଲି ସେ ଧୀରସ୍ଥିର ଭାବରେ ମତାମତ ଦେଲେ :

"ଏହାର ଅର୍ଥ ସେଭଳି ବିଷୟ ପଢ଼ିବା ପାଇଁ ତୋର ବୟସ ହୋଇ ନାହିଁ, ଏବେ ମଧ୍ୟ ତୁ ପିଲା, କିନ୍ତୁ ସେ ବହିଟିକୁ କେବେ ଭୁଲି ଯିବୁ ନାହିଁ ।"

ବେଳେବେଳେ ସେ ମୋ ପାଖରେ ବସୁଥିଲେ— ବହୁତ ସମୟ ଧରି ବସୁଥିଲେ—କଥା ବି ପଦେ କହୁ ନ ଥିଲେ, ଖାଲି କାଶୁଥିଲେ—ଆଉ ଧୂଆଁର କୁଣ୍ଡଳ ସୃଷ୍ଟି କରୁଥିଲେ ନିଶ୍ୱାସରେ—କେତେ ସୁନ୍ଦର ଆଖି ଯୋଡ଼ିକରେ ଙ୍କୁ

ଉଠୁଥିଲା, ଝଲସି ଉଠୁଥିଲା, ସେ କି ଉସ୍ତୁଙ୍କର ସାର୍ଥି । ଚୂପ୍‌ଚୁପ୍ ବସି ଅନାଇ ରହୁଥିଲି ତାଙ୍କୁ—ଭୁଲି ଯାଉଥିଲି ଏଇ ଲୋକଟିକୁ ସହଜ ସରଳ ଭାବରେ ମରୁଛୁ ଯିଏ—ମରିବାକୁ ଯାଉଛୁ ବିନା ଆପତ୍ତି ଅଭିଯୋଗରେ । ଦିନେ ସେ ଏତେ ଆପଣାର ଥିଲା ମୋ ମାଆର, ଏତେ ଘନିଷ୍ଠ ଥିଲା ମୋ ମାଆ ସାଥିରେ, ଆଉ ତା'ପ୍ରତି ଏତେ ନିଷ୍ଠୁର ହୋଇଥିଲା ବି । ମୁଁ ଜାଣିଥିଲି ସେ ଏବେ ରହୁଥାନ୍ତି ଗୋଟାଏ ରଙ୍ଗୁକାରିଆଣୀ ଦରଜିଆଣୀ ପାଖରେ, ଆଉ ମୁଁ ଆଶ୍ଚର୍ଯ୍ୟ ହୋଇ ଦସ୍ତାବନ୍ଧ ମନରେ ଭାବୁଥାଏ ତା' କଥା—ସେ ମାଇପିଟି କଥା । କେମିତି ସେ ତାଙ୍କର ସେହି ଲମ୍ବା ଲମ୍ବା ହାଡ଼ୁଆ ଦେହକୁ ହାତଗୁଡ଼ିକୁ ବାହୁ ପାଶରେ ବାନ୍ଧୁଥାଏ, ଆଲିଙ୍ଗନ କରୁଥାଏ, ଚୁମ୍ବନ ଦେଉଥାଏ, ସେତେ ଦୂଷଣ, ସେତେ ଦୁର୍ଗନ୍ଧ ଓ କଳୁଷିତା ଦାହାରୁଥିବା ମୁହଁକୁ ତାଙ୍କର !

"ବଢ଼ିଆ ସେଇଟି", ଭଲ ସାବତବାପା ମୋର ଅତି ଅପ୍ରତ୍ୟାଶିତ ଭାବରେ ଇମିତି ସବୁ ମନ୍ତବ୍ୟ କରୁଥାନ୍ତି ଯେଉଁଥିରେ ପ୍ରକାଶ ପାଉଥାଏ ଉଚ୍ଚ-କୋଟୀର ମୌଳିକତା ।

"ଶୀକାରୀ କୁକୁରକୁ ଭଲ ପାଏ ମୁଁ,—ବୋକା ନିର୍ବୁଦ୍ଧିଆ ସେ ଗୁଡ଼ାକ—କିନ୍ତୁ ଯାହାହେଉ ପଛକେ ମୁଁ ଭଲପାଏ ସେଗୁଡ଼ାକୁ— ଦେଖିବାକୁ ଭାରି ସୁନ୍ଦର, ସୁନ୍ଦରୀ ମାଇକିନିଆ ଅଧିକାଂଶ ପ୍ରାୟ ନିର୍ବୁଦ୍ଧିଆ, ବୋକା !"

ମନେ ମନେ ଭାବୁଥାଏ ମୁଁ, ନିହାତି ଗର୍ବ ନ କରି ନୁହେଁ ।

"ରାଣୀ ମାର୍ଗଟକୁ ଜାଣିଥାନ୍ତି କି ତମେ, ଜାଣିବା ଉଚିତ ଥିଲା ତମର ।"

"ଲୋକ ବହୁତ ଦିନ ଏକାଠି ରହିଲେ ଏକାଠି ଚଳପ୍ରଚଳ ହେଲେ କ୍ରମେ ସେମାନେ ସ୍ୱଭାବରେ ସମାନ ହୋଇଯାଆନ୍ତି, ସମାନ ଦେଖାଯାନ୍ତି ।" ଦିନେ କହିବସିଲେ ସେ. ମୋ ଟିପା ଖାତାରେ ଲେଖିରଖିଲି ତାଙ୍କର ଏଇ ଉକ୍ତିଟି ।

ସ୍ୱର୍ଗୀୟ ଆଶିଷ ସ୍ୱର୍ଗୀୟ ସୁଖ ଆନନ୍ଦ ବସ୍ତୁର ବୃଦ୍ଧି ରହୁଥାଏ ଅପେକ୍ଷା କରୁଥାଏ ତାଙ୍କର ନୀତିବାଣୀଗୁଡ଼ିକ, ତାଙ୍କର ଅନୁମାନ ମୋ ପାଇଁ ଆନନ୍ଦମୟ ଓ ସୁଖକର ଥାଏ, ମୌଳିକ ଉକ୍ତିଗୁଡ଼ିଏ, କଥାଗୁଡ଼ିଏ ଶୁଣିବା ସେଭଳି ସେଭଳି ଏକ ଘରେ ଯେଉଁଠି ପ୍ରତ୍ୟେକଙ୍କ ଗୁଣରେ ଥାଏ ବର୍ଣ୍ଣହୀନ ଭାଷା—ନିର୍ଜୀବ ଗୋଟାଏ ଜଗନ୍ନାଥଙ୍କର ଏସୁଣିଆ ଆଧାରରେ ଜଗାଟ ବାନ୍ଧି ।

କେବେହେଲେ ସାବତବାପା ଉଠାଇ ନ ଥାନ୍ତି ମୋ ମାଆ କଥା, ଏମିତିକି ଭାବୁଛୁ, କେବେହେଲେ ଭୁଲରେ ଧରି ନାହାନ୍ତି ତା' ନାଁଆ ମୋ ଆଗରେ । ଏଇଟି ଭଲ ଲାଗୁଥାଏ ମୋତେ—ତାଙ୍କ ପ୍ରତି ଗୋଟାଏ ପ୍ରକାର ଶ୍ରଦ୍ଧା ଆଣିଦେଇଥାଏ ମୋ ମନ ଭିତରେ ।

ଏବେ ତାଙ୍କୁ ଭଗବାନଙ୍କ ବିଷୟରେ ପଚାରିଲି—ମୋର ମନେ ପଡ଼ୁନାହିଁ କେଉଁ ଘଟଣା ଓ ପରିସ୍ଥିତିରେ ମୁଁ ତାଙ୍କୁ ପଚାରିଥିଲି । ଏଥିରେ ସେ ମୋ ଆଡ଼କୁ ଚାହିଁଲେ, ଟିକିଏ ଆଖି ବୁଲେଇନେଲେ ମୋ ଉପରେ, ଉତ୍ତରଦେଲେ ତାଙ୍କର ସ୍ୱାଭାବିକ ଧୀରସ୍ଥିର ସ୍ୱରରେ ।

"ଜାଣେ ନାଁ, ମୁଁ ବିଶ୍ୱାସ କରେ ନାହିଁ ଭଗବାନଙ୍କୁ ।"

ସୀତାନାଥ କଥା ମୋ ମନେ ପଡ଼ିଲା, ମୁଁ ସାବିତ୍ରୀବାପାଙ୍କୁ ତା ବିଷୟରେ ସବୁ ବସି କହିଲି, କିନ୍ତୁ ପ୍ରାୟ କହିସାରିଥାଏ କି ନାହିଁ ସେ ଧୀର ଭାବରେ ସେମିତି ଟିପ୍‌ପଣୀଟିଏ ଦେଲେ ।

"ସେ ସବୁ ବିଷୟ ଟିକିନିଖି ବିଚାର କରି ଦେଖେ, ସେଗୁଡ଼ିକର ମୂଳ-କାରଣ ଖୋଜେ, ଯେଉଁମାନେ ସବୁକଥା ବିଚାରିବାରେ, ସେ ସବୁର ହେତୁ ବାହାର କରିବାରେ ଲାଗନ୍ତି, ସେମାନେ ସବୁବେଳେ ଏଇଟି ହେଉ କି ସେଇଟି ହେଉ, ଏମିତି ଗୋଟାଏ କିଛିରେ ବିଶ୍ୱାସ କରନ୍ତି—ମୋର କିନ୍ତୁ ବିଶ୍ୱାସ ଫିଶ୍ୱାସ ନାହିଁ କେଉଁଥିରେ ।"

"କିନ୍ତୁ, ଏ ତ ବଡ଼ ଅସମ୍ଭବ କଥା ।"

"କାହିଁକି ? ତୁ ନିଜେ ଦେଖିପାରୁ, ମୋର ବିଶ୍ୱାସ ନାହିଁ କେଉଁଥିରେ ।"

ମୁଁ ଦେଖିପାରୁଥାଏ କେବଳ ଗୋଟିଏ ବୋଲି କଥା—ତାହା ହେଉଛି ସେ ମୃତ୍ୟୁମୁଖକୁ ଚାଲିଥାନ୍ତି—କ୍ୱଚିତ କୁହାଯାଇ ପାରିଥାନ୍ତା, ମୁଁ ତାଙ୍କୁ ଦୟାର ଦୃଷ୍ଟିରେ ଦେଖୁଥିଲି—କିନ୍ତୁ ଏଇଟି କହିପାରେ ଏହା ପ୍ରଥମେ ମୋ ହୃଦୟକୁ ଗଭୀର ଭାବେ ସ୍ପର୍ଶ କରିଥିଲା ଜଣେ ମୋ ଭଳି ଲୋକର ସହସ୍ରାଧିକ ମୃତ୍ୟୁ ଘଟଣା—ଆଉ ମୃତ୍ୟୁର ରହସ୍ୟମୟତା !

ହେଇ ବସିଛି ଏଠି ଲୋକଟି, ତାର ଆଣ୍ଠୁ ଛୁଉଁଚି ମୋ ଆଣ୍ଠୁକୁ—କେଡ଼େ ସଚେତନ, ସୁଜ୍ଞାନୀ, ସମ୍ବେଦୀ, ବୁଦ୍ଧିମାନ, ସେ ଦେଖୁଛି ଅଉସବୁ ଲୋକଙ୍କୁ ତା' ସହିତ ସେମାନଙ୍କ ସମ୍ପର୍କ ଅନୁରୂପରେ, ଆଲୋଚନା କରୁଛି ସେମାନଙ୍କ ସହିତ—ପ୍ରତ୍ୟେକ ବିଷୟ ଠିକ୍ ଯେ କୌଣସି ଲୋକପରି ବୁଝିବିଚାରି ରାୟ ଦେବାର, ସିଦ୍ଧାନ୍ତ ଦେବାର ଅଧିକାରରେ - ମୋ ପାଇଁ ଅତି ପ୍ରୟୋଜନୀୟ ଯାହା, ସେଥିରେ ସୁସଂପନ୍ନ ହୋଇ ଅନ୍ତତଃ ପକ୍ଷେ ମୋ ପକ୍ଷରେ ଅସାର ଯାହା ତାହାକୁ ହିଁ ଓଲଟି ପ୍ରକଟାଇ ବସିଛି । ସେ ଜୀବନଟିଏ ଅନିର୍ବଚନୀୟ ଭାବରେ ଜଟିଳ—ଚିନ୍ତାର ଓ କଳ୍ପନାର ଆଗ୍ନେୟଗିରି ସେ—ଅଗ୍ନିଉଦ୍‌ଗୀରଣରେ ମୂର୍ତ୍ତି ପ୍ରତୀକ । ଯାହା ଇଚ୍ଛା ତାହା ହେଉ ପଛେ ମୋର ମନୋଭାବ, ମୋର ହୃଦ୍‌ଗତ ଧାରଣା ତା' ପ୍ରତି—ସେ ପ୍ରକାଶ କରୁଛି, ପ୍ରତିନିଧିତ୍ୱ କରୁଛି ମୋର ନିଜର ଅଂଶ

ବିଶେଷିର—ନିଗୂଢ଼ରେ ଅଛି, ମର୍ମର ଗୁହାରେ ମୋର କେଉଁଠି ନିବସତି ସେ ଆତ୍ମସ୍ୱରୂପ ସତ୍ତା ମୋର—ଲଗୁଚ ମତେ ତାହା ଅସ୍ପଷ୍ଟ ଗ୍ରସ୍ତ ଯେପରି ଆତ୍ମାର ଉପରେ ମୋର ! ଆଗାମୀକାଲି ଉଭେଇଯିବ ସେ । ଉଭେଇ ଯିବ ସେ ଗୋଟିକିଯାକ, ସ୍ମୃତିସ୍ମୃତି ଉଭେଇଯିବ ଯାହା ମୋ'ର ମସ୍ତିଷ୍କରେ, ହୃଦ୍‌ଦେଶରେ ରହିଛି—ଉଚ୍ଛୁର ଉଚ୍ଛୁର କରି ବିଲମ୍ବିତ ସ୍ୱରରେ—ଯାହା ସବୁ ତା'ର କମନୀୟ କେତେ, ନୟନ ଦର୍ପଣରେ ପଡ଼ିଯାଉଛି ମୁଁ ଲକ୍ଷ୍ୟ କରୁଛି—ସେ ସବୁ ସହିତ ଉଭେଇଯିବ ସେ, ସଙ୍ଗେ ସଙ୍ଗେ ତାର ମତେ ଧରି ରଖିଛି ବାନ୍ଧି ରଖିଛି ଯେଉଁ ଡୋରଟି ଯସାରର, ଯିବ ଛିନ୍ନ ହୋଇଯିବ ସେହିଟି—ରହିଯିବ ସ୍ମୃତିଟିଏ ଖାଲି ଅସ୍ପଷ୍ଟ ହୃତିକ, ସ୍ଥିତିଟିକ ଯେଉଁ ସେହି ସ୍ମୃତିର ଥିବ—ଖାଲି ଥିବ ମୋଠାରେ, ଅନ୍ତରରେ ମୋର—ଅଖଣ୍ଡ, ଅଭିନ୍ନ, ଅପରିବର୍ତ୍ତିତ, ଯେତେବେଳେ ନ ଥିବ ଆଉ ନଥିବ, ଜୀବନ୍ତ ସେହି ପରିବର୍ତ୍ତନଶୀଳ ମଣିଷଟି— !

କେବଳ କେତେଗୁଡ଼ିଏ ଭାବନା କେତେଗୁଡ଼ିଏ କଳ୍ପନା ସବୁ, କାହିଁ କେଉଁଠି ଅତିକ୍ରମ କରି ଏଗୁଡ଼ିକୁ ଅଛି ତ ଅଜ୍ଞେୟ, ଅନିର୍ଦ୍ଦେଶ୍ୟ କିଛି—ଯାହା ପୁଣି ସୃଷ୍ଟି କରେ, ଧାରଣ କରେ, ପୋଷଣ କରେ ଭାବନାକୁ, କଳ୍ପନାକୁ ସେହି ଯାହା ଅବର୍ଣ୍ଣନୀୟ କିଛି । ବାଧକରେ ସେ ବଳ ପ୍ରୟୋଗରେ ବା ଜାହିର କରି କର୍ତ୍ତୃତ୍ୱର ଆଦେଶ—ଗଭୀର ଭାବରେ ଚିନ୍ତାକରିବା ପାଇଁ ଜୀବନ ପ୍ରପଞ୍ଚକୁ ଆଉ ଜିଜ୍ଞାସୁ ହେବାପାଇଁ ଉତ୍ତର ଖୋଜି ଉତ୍ତର ଦାବୀକରି ସେହି ଏକ ପ୍ରଶ୍ନର "କାହିଁକି" ? କାହିଁକି, କେଉଁ କାରଣରୁ ?

"ଆଶଙ୍କା ହେଉଛି, ଶୀଘ୍ର ବିଛଣା ଧରିବି ମୁଁ ।" ଦିନେ ମେଘବର୍ଷା କାଳରେ କହିଲେ ସେ ସାବିତବାପା—ଏଃ କି ନିର୍ବୋଧ ଦୁର୍ବଳତା ସତେ ! ଇଚ୍ଛା ନାହିଁ, ସ୍ପୃହା ନାହିଁ କୌଣସି ଗୋଟିଏ କାମକୁ କୌଣସି ଗୋଟିଏ କାମ କରିବାକୁ ।"

ଅପରବେଳା ଚହିଁଆରଦିନ ଗ୍ଲାହାପିଆ ସମୟରେ ଟେବୁଲ୍ ଆଉ ନିଜ ଆଣ୍ଠୁ ଓ ଜଙ୍ଘ ଉପରେ ଝାଡ଼ିଲେ ରୁଟିର ଟୁକୁରିଗୁଡ଼ିକ ବିଶେଷକରି ଅତିଶୟ ଶୁଚିମୟ ରୂପରେ, ଆଉ ହାତ ହଲେଇ ହଲେଇ—ଘହୁଡ଼େଇ ଉଡ଼ାଇ ଲଗିଲେ କଣ ସବୁ ଅଦୃଶ୍ୟ କିଛି—ବସ୍ୱୟସ୍କା ମାଇପିଟି (ମାଲିକାଣୀ) ଭୁରୁ ତଳରୁ ନୁଆଁଣିଆ ଭାବରେ ଅନାଇ ଦେଇ ତାଙ୍କୁ ଫୁସ୍ ଫୁସ୍ କରି କହିଲା ବୋହୂକୁ ତାର ।

"ଦେଖ ଲୋ ଦେଖ, ଚଢ଼େଇ ପରି ଜାକିଜୁକି ହେଉଛି, ପର ଝାଡ଼ିଝୁଡ଼ି ହେଉଛି, ନିଜକୁ ଠିକ୍ କରୁଛି, ନିଜେ ପ୍ରସ୍ତୁତ ହେଉଛି ।"

ଦୁ' ଦିନ ପରେ ସେ ଆଉ ଆସି ପା'ରଲେ ନାହିଁ କାମକୁ, ବଡ଼ମାଲିକାଣୀ ମୋ ହାତକୁ ଗୋଟାଏ ଧଳା ଲଫାଫା ବଢ଼ାଇ ଦେଉ ଦେଉ କହିଲେ !

"ହେଇ ସେ ଝିଅଟିଏ, କାଲି ପ୍ରାୟ ଦ' ପ୍ରହରବେଳେ ଆଣି ଦେଇଗଲା—ଭୁଲିଯାଇଥିଲି ତତେ ଦେବାକୁ, ନହାତ ଠିକ ଝିଅଟିଏ, ବୁଝିପାରୁ ନାହିଁ ସେ କାହିଁକି ଅଣୁଛୁ ତୋ ପାଖକୁ ଚଠି ସବୁ ।"

ଲଫାପା ଭିତରେ ଡାକ୍ତରଖାନା କାଗଜ ଉପରେ ଦେଖିଲି ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିଲା ଏଇ ଖବରଟି :

"ଘଣ୍ଟାଏ ଖଣ୍ଡେ ସମୟ ପାଉ ଯଦ କାମରୁ ମୁକୁଳିପାରୁ, ଆସିବୁ ଟିକେ ଦେଖିବା ପାଇଁ—ଅଛୁ ମୁଁ ମାର୍ତ୍ତିନୋଭସ୍କାୟ ହସପିଟାଲରେ ଓ୍ୱାଇ, ଏମ୍ ।"

ପରଦନ ସକାଳେ ବସିଥିଲି ଯାଇ ସାବତବାପାଙ୍କ ବଛଣାରେ, ପାଦ ପାଖରେ ତାଙ୍କର, ହସପିଟାଲ ଓ୍ୱାର୍ଡ଼ରେ ବଛଣାଠୁଁ ଲମ୍ବ ଦେହର ମଣିଷଟିଏ ସେ, ପାଦଦୁଇଟି ପାଉଁଶିଆ ମୋଜା ଭିତରେ କେଉଁଠି ଲୁଚ ଯାଇଥାଏ, ଖଟବାଡ଼ ସନ୍ଧରେ ଗଳିଯାଇ ଓହଳ ପଡ଼ିଥାଏ ବଙ୍କେଇ ହୋଇ, ସୁନ୍ଦର ଆଖିଯୋଡ଼ିକ ତାଙ୍କର ନରୁଦ୍ଦେଶ୍ୟ ଭାବରେ ଅର୍ଥହୀନ ଧାବରେ ଘୂରି ବୁଲୁଥାଏ ହଳଦିଆ କାନ୍ଥ ଦେହରେ ଅଟକିଯାଇ ବଶ୍ରାମ ନେଉଥାଏ ମୋ ମୁହଁ ଉପରେ ଆଉ ବଛଣାରେ ତାଙ୍କ ମୁଣ୍ଡ ପାଖକୁ ଷ୍ଟୁଲଟିରେ ବସିଥାଏ ଝିଅଟି ତା'ର ଗ୍ରେଟ ହାତ ଉପରେ । ତାଙ୍କର ମୁଣ୍ଡତଳ ତକିଆରେ ହାତ ରଖିଲି ଯେଣି ଝିଅଟି ସାବତବାପା ସେଥିରେ ଘଷି ହେଉଥାନ୍ତି ଗାଲଦୁଇଟିକୁ ଆଁ ଆଁ ହୋଇ ରହୁଥାଏ ପାଟିଟି ତାଙ୍କର—ଥାକୁଲି ଥାକୁଲି ଝିଅଟି ପିନ୍ଧିଥାଏ ଗାଢ଼ରଙ୍ଗର ସାଧାସିଧା ସେମିଜ, ଧୀରେ ଧୀରେ ଗଡ଼ି ପଡ଼ୁଥାଏ ଟୋପାକୁ ଟୋପା ଲୁହ ତା 'ଡମ୍ବାକୃତ' ଲମ୍ବଳିଆ ମୁହଁରୁ—ନୀଳ ନୀଳ ଆଖି ଦୁଇଟି ତା'ର ଅଚଳ, ସ୍ଥିର ହୋଇ ରହୁଥାଏ ସାବତବାପାଙ୍କର ମୁହଁଟିରେ—ଯେଉଁଥିରୁ ବାହାରି ପଡ଼ୁଥାଏ ହନୁହାଡ଼ ଦଉଟି—ମୋଡ଼ ହୋଇ, ସେମିତି ବଙ୍କେଇ ଯାଇଥାଏ ନାକଟି ଆଉ ବବର୍ଣ୍ଣିଆ ହୋଇଯାଇଥାଏ ଓଠ—

'ପାଦ୍ରୀଟିଏ (ପୁରୋହିତ) ଡାକିବାକୁ କହନ୍ତେ କ ?" ଫୁସ୍ ଫୁସ୍ ହୋଇ କହିଲି ଝିଅଟି । "ନାଁ ରାଜି ହେବେ ନ ସେ,—ସେ କ'ଣ ଆଉ ବୁଝୁଛନ୍ତି··· ?

ତକିଆ ଉପରୁ ହାତ ଦୁଇଟିକୁ କାଢ଼ି ସେଥିରେ ଘ୍ରିପିଧରିଲି ଗ୍ରୁଡକୁ ଝିଅଟି, ପ୍ରାର୍ଥନା କରବା ଭଙ୍ଗୀରେ, ସତେ ପ୍ରାର୍ଥନା କଲି ସେମିତ :

ମୁହୂର୍ତ୍ତକ ପାଇଁ ସଫା ହୋଇ ଆସିଲି ସାବତବାପାଙ୍କର ମସ୍ତିଷ୍କଟି, ଗ୍ୱହିଁଲେ ସେ ଗ୍ରୁଡକୁ ଗାରୁଗାରୁ କର ମୁହଁଟିକୁ, ସତେ ଯିମିତ ଚେଷ୍ଟା କଲେ କ'ଣ ସବୁ ମନେପକାଇବା ପାଇଁ, ତାପରେ ଶୁଖି ସେମଟା ହୋଇ ନାରଖାର ହାତଟିକୁ ଲମ୍ବେଇ ଦେଲେ ମୋ ଆଡ଼କୁ ।

"ତୁ ଆସିଛୁ ? ଧନ୍ୟବାଦ ! ·····"

'ବୁଝିଲୁ···ବେଶ୍ ଲାଗୁଛି···ଅନୁଭବ କରୁଛି, ନହାତ ବୋକାଳଆ କେମିତକା !''

ଏତକରେ ଏକାବେଳକେ କ୍ଳାନ୍ତ ହୋଇପଡ଼ିଲେ ଝାଙ୍ଗି ପଡ଼ିଲେ ସେ—ବୁଜି ହୋଇଗଲା ଆଖି ଯୋଡ଼ିକ, ଲମ୍ବା ଲମ୍ବା ହେମାଳିଆ ଆଙ୍ଗୁଠିଗୁଡ଼ିକରେ ନେଳିଆସିଆ ନଖ—ସେଗୁଡ଼ିକୁ ଧର ଆଉଁଷୁଥାଏ ମୁଁ—ରୁନ ରୁନ ଅନୁଯୋଗ ସ୍ୱରରେ କହିଲା ଅକୁଣ୍ଠ ଭାବରେ ହିଁ ଅଛି ;

"ସ୍ୱେଭଗେନବାସିଲ୍‌ସ୍ୱେଭର୍—ରାଜ ହୁଅ ଟିକଏ, ମତ ଦଅ ଟିକଏ ?''

"ମୋ ଇଚ୍ଛା, ଚନ୍ଦ୍ରିରଖ ହିଁ ଅଛିକୁ,'' କହିଲେ ସେ ଆଖିରେ ନଜର ଦେଖାଇ ଦେଇ ତାକୁ—ହିଁ ଅଛିକୁ । ବଡ଼-ଆଦରର······''

ରୁନ ପଡ଼ିଗଲେ ସେ—ପାଟିଟି ମେଲା ହୋଇଗଲା ଆହୁରି ତାଙ୍କର, ହଠାତ୍ ଘଡ଼୍‌ଘଡ଼୍ ଶବ୍ଦ ହେଲା—ଡାକିଲେ ଯେମିତି ଡାମରାକାଉ ଭଳି—ଛଟପଟ ହୋଇ ଗଡ଼ିଲେ ବିଛଣାରେ, କମ୍ବଳକୁ ଓଲଟାଇ ପାଲଟାଇ, ବିଛଣାଟାକୁ ମୁଠେଇ ପକାଇ ଥରକୁ ଥର, ହିଁ ଅଛି କାନ୍ଦି ଉଠିଲା କଇଁ କଇଁ ହୋଇ—ମୁଣ୍ଡଟିକୁ ମାଡ଼ିଦେଲା ଯନ୍ତ୍ରଣା-ମଥିତ ତକିଆରେ !

ଶୀଘ୍ର ଅତିଶୀଘ୍ର ଭୁଲିଗଲେ ଯାବତବାପା, ଶେଷ ନିଃଶ୍ୱାସ ଯିବା ସଙ୍ଗେ ସଙ୍ଗେ ତାଙ୍କର,—ନିମିଷକରେ ପବିତ୍ର ଏକ ସୌନ୍ଦର୍ଯ୍ୟ ଯେପରି ଫୁଟି ଉଠିଲା ତାଙ୍କର ମୁଖମଣ୍ଡଳରେ—ମୁହଁଟିରେ ।

ହସପିଟାଲରୁ ମୁଁ ବାହାରି ଆସିଲି ହିଁ ଅଛିକୁ ସାଙ୍ଗରେ ଧରି । କାନ୍ଦୁଥାଏ ସେ—ଅସମ୍ଭାଳ ହୋଇ କାନ୍ଦୁଥାଏ ସେ—ଟଳି ଟଳି ପଡ଼ୁଥାଏ କେଉଁ କାଳରୁ ବେଗରେ ପଡ଼ିଆଏ ଯେମିତି । ମୋଡ଼ି ମୋଡ଼ି ମେଞ୍ଚାଟିଏ କରି ରୁମାଲଟିକୁ ଜୋରରେ ମୁଠାଇ ଧରିଥାଏ ସେ—ଥରେ ଏ ଆଖିକୁ ତ ଥରେ ସେ ଆଖିରେ ମୋଡ଼ି ଲଗିଥାଏ ରୁମାଲଟିକୁ, ଆହୁରି ଶକ୍ତ କରି ଦେଖୁଥାଏ ତାକୁ ସତେ ଯେମିତି ସେଇଟି ତାର ଶେଷ ସମ୍ପତ୍ତି --ପ୍ରିୟତମ କନ୍ଥ !

ହଠାତ୍ ଛାଡ଼ା ହୋଇଗଲା ସେ, ଲାଗି ଆସିଲା ମୋ ଦେହକୁ, ଆଉଜି ପଡ଼ିଲା ମୋ ଉପରେ—ନିଜ ସ୍ୱରରେ ଭର୍ତ୍ସନାର ମୂର୍ଚ୍ଛନା ଆଣି କହିଲା :

"ରହିପାରିଲେ ନାହିଁ ଛିଃ ରହିପାରିଲେ ନାହିଁ ଶୀତଦିନଯାଏ—ହେ ଭଗବାନ, ହେ ଭଗବାନ ! ଏମିତି ଘଟିଲା କାହିଁକି ?''

ଲୁହଭିଜା ହାତଟିକୁ ତା'ପରେ ପ୍ରସାରି ଦେଲା ମୋ ଆଡ଼କୁ ।

"ଯାଉଛି ବିଦାୟ, ନମସ୍କାର, ସବୁବେଳେ ସେ ପ୍ରଶଂସା କରୁଥିଲେ ତମକୁ । ଆସନ୍ତୁ ଶୁଭକାଂକ୍ଷୀସ୍ତା······ଆସନ୍ତାକାଲି ।''

"ଘରେ ତମକୁ ଦେଖିବ କି ?"

ସୁଶାଆଁଙ୍କୁ ସେ ପୁଚ୍ଛିଲି ଥରେ ।

"କାହିଁକି ? ଦିନ ଅଛି ଯେ, ଦିନବେଳଟା ଯେ !"

ଗୋଟାଏ ସ୍ଥାନରେ କେଉଁଠି ଛିଡ଼ା ହୋଇ ଅନେଇ ରହିଲି, ଅନେଇ ରହିଥିଲି ଗଲିଟିକୁ ପାର ହେଉଥାଏ ସେ—ଯାଉଥାଏ ତରବର ନ ହୋଇ ଧୀରେ ଧୀରେ ସ୍ନେହସରିଗ ହରଇ ଜୀବନରୁ ଯାଏ ଯେମିତି କଏ କେବେ ।

ଏହା ଅଗଷ୍ଟ ମାସ ଥିଲା, ଶରତ ଆସି ନ ଥିଲା, ଗଛରୁ ପତ୍ରସବୁ ଝଡ଼ୁଥାଏ ।

ସାବତବାପାଙ୍କ ଶୁଭେଚ୍ଛାରେ ଯୋଗଦେବାକୁ ସମୟ ନ ଥିଲା ମୋର, ସମୟ ପାଇନ କେବେହେଲେ ଆଉ ଭେଟ ହୋଇନ ମୁଁ ଅଛି ସଙ୍ଗରେ—

## ସତର

ପ୍ରତିଦିନ ସକାଳ ଛ'ଟାରୁ ମୁଁ ବାହାରିଯାଉଥାଏ କାମକୁ, ମେଲା ପଡ଼ିଆକୁ । ସେଠି ମୋର ଭେଟ ହେଉଥାଏ ବେଶ୍ ମନକୁ ଟାଣିନେଲି ଭଲ ମଜାର ମଜାର ଲୋକଙ୍କ ସାଙ୍ଗରେ—ପାଗଳିବାଳିଆ ଖରଗୁଣ୍ଡିଆ ବଢ଼େଇ ଓସିପ, ସେଣ୍ଟ ନିକୋଲାସ ପର ଦିଶୁଥାଏ କୁଶଳୀ ଶ୍ରମଜୀବୀ ସେ, ଧାର୍ମିକ ପଥର ମିସ୍ତ୍ରୀ ମହାରଣା ପିଓଟର, ଚିନ୍ତାଶୀଳ ମତିଗତିର, ସାଧୁସନ୍ଥଙ୍କ ସହିତ ମେଳ ଥାଏ ତା'ର ଅନେକ ଗୁଣରେ—ଚମତ୍କାର ମନୋହର ଚେହେରାର ରାଜମିସ୍ତ୍ରୀ ଗ୍ରିଗୋରୀ ସିଶ୍‌ଲିନ୍ । ସୁନେଲି ସୁନେଲି ଶ୍ମଶ୍ରୁ, ନୀଳ ନୀଳ ଆଖି ବିକୀରୁଥାଏ ସୁମଧୁର କଲ୍ୟାଣ କାମନାର ଦୀପ୍ତି ।

ଏହି ଲୋକଗୁଡ଼ିକୁ ଜାଣିଥିଲି ଦ୍ୱିତୀୟ ଥର ଯୁବକଙ୍କ କଲାବେଳେ ଏହି ନକ୍‌ସା ଅଙ୍କନକାରୀ ପରିବାରରେ, ପ୍ରତ୍ୟେକ ରବିବାର ଦିନ ସେମାନେ ଆସି ମୁହଁ ଦେଖାଉଥାନ୍ତି ରୋଷେଇଘରେ । ଧୀର ସ୍ଥିର ସଯତ-ରୁଚିସମ୍ପନ୍ନ ମହତ୍ତ୍ୱପୂର୍ଣ୍ଣ ଭାବେ ଗମ୍ଭୀର ସଭ୍ରାନ୍ତ ସବୁ, ସେମାନଙ୍କର କଥାବାର୍ତ୍ତାର ଭଙ୍ଗୀ ଥାଏ ମନୋରମ, ସୁଖକର—ସେଥିରେ ଭର୍ତ୍ତି ହୋଇ ରହିଥାଏ ରସୁଆଳ ଶବ୍ଦଗୁଡ଼ାଏ କଥାଗୁଡ଼ାଏ, ସେଗୁଡ଼ିକ ନୂଆ ନୂଆ ଲାଗୁଥାଏ ମତେ—ସେହି ଓଜନଦାର ମ୍ୟାଜିକ୍, ଗୃହୀ ଶ୍ରେଣୀର ଲୋକଙ୍କୁ ସବୁ ଦେଖୁଥାଏ, ଏତେ ଭଲ ସେମାନେ, ପ୍ରତ୍ୟେକ ତାଙ୍କ ଭିତରୁ ନିଜସ୍ୱ ଯାତରେ ଥାନ୍ତି—ଏତେ ହୃଦୟହାରୀ—ସେମାନଙ୍କୁ ତୁଳନା କରି ହେଉ ନ ଥାଏ, ହେଲେ ସେମାନେ ଏମିତି ଅନୁକୂଳଭାବ ଆଣି ଦେଉଥାନ୍ତି

ମନରେ—'କୁନାଭନୋ'ରେ ଅତି ଜଘନ୍ୟ ଭାବରେ ସ୍ପୈଟଲୋକ ମାତାଲ ଗ୍ରେର-ଡପ୍ଟରରେ ଦୋରସ୍ତ ବେପାର ବ୍ୟବସାୟୀ ସଙ୍ଗରେ ।

ମୁଁ ମୋର ମନୋମତ ଆପଣାର ବୋଲି ବାଛି ନେଇଥାଏ ରାଜମିସ୍ତ୍ରୀ ଗିଶିଲନ୍‌କୁ, ଏପରିକ ତାଙ୍କୁ ମୁଁ କହିଥାଏ ମତେ ତାଙ୍କର 'ଶିକ୍ଷାନବୀସ' ଗ୍ରହଣ କରି ନେବା ପାଇଁ—କିନ୍ତୁ ଭଦ୍ରଭାବରେ ମନାକରି ଦେଇଥାନ୍ତି ସେ—ସୁନେଲି ଭୁରୁ-ଯୋଡ଼ିକୁ ଧଳା ଧଳା ଆଙ୍ଗୁଠିରେ କୁଣ୍ଡେଇ କୁଣ୍ଡେଇ ।

''ବୟସ ହୋଇନି ତୋର, ଏବେ ବି ପିଲାଟାଏ ତୁ, ଆମ କାମ ଏତେ ସହଜ ନୁହେଁରେ ବାବୁ—ରହ ରହ, ଆଉ ଗୋଟାଏ ଯୋଡ଼ାଏ ବର୍ଷ ଯାଉ ଅପେକ୍ଷା କର । ତା' ପରେ ପଛକୁ ଝାଙ୍କିନେଇ ସୁନ୍ଦର ମୁଣ୍ଡଟିକୁ ନଜର କହିଥାନ୍ତି ସେ ଆହୁରି— 'ହୁଏତ, ହୋଇପାରେ ଜୀବନଟା ଖୁବ୍ କଷ୍ଟରେ କଠିନରେ ଯାଉଛି ତୋର ନାଁ ? ସତ, ସତ, ନିଶ୍ଚୟ, କିନ୍ତୁ ସହିବାକୁ ଚେଷ୍ଟା କର—ଟାଣ ଧରି ରହିଲ, ଶକ୍ତ କରି ଧରି ନିଜର ମୁଠା ଭିତରେ ପାରିଯିବୁ, ଚଳିଯିବୁ ଠିକ୍ ।''

ଜାଣେନା, ତାଙ୍କର ସଦାସ୍ଥ ଉଦାର ଉପଦେଶରୁ କିଛି ଉପକାର ପାଇଥିଲି କି ନାହିଁ, —ତେବେ ସେ ଉପଦେଶ ମନେ ରଖିଥିଲି କୃତଜ୍ଞତାର ସହିତ ।

ଏବେ ମଧ୍ୟ ସେମାନେ ଆସୁଥାନ୍ତି ପ୍ରତି ରବିବାର ଦିନ ସକାଳୁ ମୋ ମାଲିକଙ୍କ ପାଖକୁ ବସୁଥାନ୍ତି ଆସି ରେସ୍ତରର ଟେବୁଲ ପାଖ ବେଞ୍ଚରେ, ତାଙ୍କ ପାଇଁ ଅପେକ୍ଷା କରୁ କରୁ କଥାଭାଷା, ଗପସପ କରୁଥାନ୍ତି ମନଟାଣି ନେବା ଭଳିରେ ଚମତ୍କାର ବିଷୟ ସବୁ ଯେଜି । ମାଲିକ ମୋର ଆସି କମିତି ଗୋଟାଏ ଦିଲ୍‌ଖୋଲା ଆନନ୍ଦ କୋଳାହଳରେ ସାଦର ସମ୍ଭାଷଣ ଜଣାଉଥାନ୍ତି ସେମାନଙ୍କୁ, ସେମାନଙ୍କ ଟାଣୁଆ ହାତ ସହିତ ହାତ ମିଳାଇ ବସି ପଡ଼ୁଥାନ୍ତି ଚଉପଠି ଥିବା କୋଣରେ । ତା'ପରେ ବାହାରୁ ଆସୁଥାଏ ଟଙ୍କାପଇସା ଆଉ ହିସାବପତ୍ର—ମ୍ୟୁଜିକ୍‌ମାନେ ସେ ଟେବୁଲ ଉପରେ ରଖୁଥାନ୍ତି ସେମାନଙ୍କର ବିଲ୍ ଆଉ ଚବି ମଇଳା ହିସାବ ଖ ତା-ଗୁଡ଼ିକୁ ; ଦେଣା ପାଉଣା କାରବାର ଲୁଟାଲୁଟି ହେଉଥାଏ ସପ୍ତାହଟିର ।

ବହୁତ ଥଟ୍ଟାତାମସା, ଟାହିଟାପରି କରି ମାଲିକ ଚେଷ୍ଟା କରୁଥାଏ ତାଙ୍କୁ ଠକିବା ପାଇଁ ଆଉ ସେମାନେ ମଧ୍ୟ ଠିକ୍ ତାହା ହିଁ କରୁଥାନ୍ତି, ଯଦିଓ ବେଳେବେଳେ ଟଣାଟଣି କଥା କଟାକଟି ଗୁରୁତର ହେଉଥାଏ, ତେବେ ସାଧାରଣତଃ ମିଳିମିଶି ସହୃଦୟତାରେ ହସୁଥାନ୍ତି, ହସିହସି ଗଡ଼ି ଯାଉଥାନ୍ତି ଆନନ୍ଦରେ ।

''ଆରେ ଦୋସ୍ତ, ଗୋଟାଏ ଅସଲ ପାଜି ହୋଇ ଜନ୍ମ ହୋଇଚ ତୁ !'' ମୁଜ୍‌ୟାକ୍‌ମାନେ କହୁଥାନ୍ତି ମୋ ମାଲିକକୁ ।

ସେ ନାହୁଲିଆ ହୋଇ ହସି ହସି 'ମେଣ୍ଢାଟିଏ ଭଳି' ଜବାବ ଦେଉଥାଏ ।

"ହୁଁ ତମେ ବା ସବୁ ନିଜ ନିଜକୁ ଶ୍ରେଷ୍ଠ କରିବାରେ କୋଉ କମ୍ ବଦ୍‌ମାସ୍—ଗର୍ଜିଲ୍ଲ କୁକୁଡ଼ାଗୁଡ଼ାକ ତମେ !"

"ହଁ ସତେ ସ୍ୱାଭାବିକ ତ !" ମାନିଯାଉଥାଏ ସ୍ଲେଫିମ୍ବସକା, ଗମ୍ଭୀରିଆ ପ୍ରକୃତିର ପିଓନ କିନ୍ତୁ କହୁଥାଏ ସଙ୍ଗେ ସଙ୍ଗେ, ସେତିକବେଳେ ।

"ଲୋକ ତ ବଞ୍ଚୁଛୁ, ଯାହା ଶ୍ରେଷ୍ଠ କରୁଛୁ ସେଥିରେ—ସର୍ବଶ୍ରେଷ୍ଠ ରୋଜଗାରତକ ତ ତାର ଯାଉଛୁ ଭଗବାନ, ନ ହେଲେ ଜାର୍ ପାଖକୁ ।"

'ସେଥିପାଇଁ ତ ତମକୁ ଟିକିଏ ଖିଅର କରି (ଲୁଟ୍‌କରି) ଛାଡ଼ିଦେବା ବିରୁଦ୍ଧରେ କିଛି କହିବାର ନାହିଁ ମୋର ।" କହି ହସି ଉଠୁଥାନ୍ତି ମୋ ମାଲିକ ।

ଭଲ ଭାବରେ ନେଉଥାନ୍ତି ସେମାନେ ତାଙ୍କ କଥାକୁ ।

"ମାନେ, ଅଲଗା କଥାରେ ଆମ ଚମ ଉତାରିବ ନାଁ ?"

"ଭଲେଇ, ଚଟାକାଟିବା ?"

ତ୍ରିଗୋଶ୍ୱା ଶିଶ୍‌ଲିନ ଛାଡ଼ିଯାଏ ଲମ୍ବି ରହିଥିବା ଗହଳିଆ ବୁଦୁବୁଦୁକିଆ ଦାଢ଼ିରେ ହାତରଖି ଗଣଗଣିଆ ସ୍ୱରରେ କହୁଥାଏ ।

"କ'ଣ ହେବ ଭାଇ, ଆମେ ଯଦି ଠକାଠକି ନ କରି ବ୍ୟବସାୟ କରୁ—ଆମେ ଯଦି ସର୍ବଶ୍ରେଷ୍ଠ ଭାବରେ ଚଳୁ, ଦେଖି ପାରୁନ କେତେ ବଢ଼ିଆ ହେବ, କେତେ ସହଜ ହେବ—ଏଃ ! କ'ଣ ତମ ମତ ସବୁ କ'ଣ ? ହଇ ହେ !"

ନୀଳ ଆଖି ଯୋଡ଼ିକ ତା'ର ଆର୍ଦ୍ର ଓ ଆଚ୍ଛନ୍ନ ହୋଇଯାଉଥାଏ ଏବଂ ଠିକ୍ ସେହି ମୁହୂର୍ତ୍ତରେ ଅତି ଅପୂର୍ବ ଭାବରେ କମନୀୟ ଓ ଲୋଭନୀୟ ଦିଶୁଥାନ୍ତି ସେ, ପ୍ରତ୍ୟେକେ ପ୍ରାୟ ତାଙ୍କ କଥାରେ, ତାଙ୍କ ପ୍ରସ୍ତାବରେ କେମିତି ଅଡ଼ୁଆରେ ପଡ଼ିଲା ପରି ମନେ କରୁଥାନ୍ତି ଯେମିତି—ମୁହଁ ସବୁ ଫେରାଇ ନେଇଥାନ୍ତି ଅସ୍ୱସ୍ତିରେ ।

"ମ୍ୟାଜିକଟାଏ କାହାକୁ ଇମିତି ବେଶି ଠିକ ପାରେନା ।" ଦୀର୍ଘ ନିଃଶ୍ୱାସଟିଏ ପକାଇ ଚୂପ୍‌ଚାପ ହୋଇ କହୁଥାନ୍ତି ସୁନ୍ଦର ଆକୃତିର ଓସିପ—ସତେ ଯେପରି ମ୍ୟାଜିକ ପ୍ରତି ଦୟା ଦେଖାଉଥାନ୍ତି ସେ !

ଗାଢ଼ବର୍ଣ୍ଣର ଗୋଲଗାଲ କାନ୍ଧର ପଥୁରିଆ ରାଜମିସ୍ତ୍ରୀ ଜଣକ ଟେବୁଲ ଉପରେ ନଇଁପଡ଼ି ମତାମତ ଦେଉଥାନ୍ତି ବହଳିଆ ବହଳିଆ ସ୍ୱରରେ ।

"ପାପାଚାରର ପରି ପଙ୍କୁଆ ପାଣିପାଟ ପରି ଯେତେଦୂରକୁ ଯାଉଥିବ ଆଗଉଥିବ, ସେତେ ଗଭୀରରୁ ଗଭୀରକୁ ପଶୁଥିବ, ବୁଡ଼ି ବୁଡ଼ି ଯାଉଥିବ ।"

ସେମାନଙ୍କ ସ୍ୱରଭଙ୍ଗୀଟାକୁ ଧରି ମାଲିକ ମୋର ଉତ୍ତର ଦେଉଥାନ୍ତି ।

"ମୋ କଥାଟାର ପ୍ରତିଧ୍ୱନିଟାକୁ ଯୋଡ଼ି ଠିକ କରିନିଏ, ରହି ତମର ହାଉଆ ହାଉଆ କଥା ।"

କିଛି ସମୟ ଇମିତି 'ତତ୍ତ୍ୱ' ଇମିତି 'ଦର୍ଶନ' ଆଉଡ଼ାଉଥାନ୍ତି ସେମାନେ—ପରସ୍ପରକୁ ହଟାଇ ଜିତାପଟ ନେବାକୁ ଚେଷ୍ଟା କରୁଥାନ୍ତି ସେମାନେ, ତାପରେ ହିସାବପତ୍ର ନିକାଶ ହୋଇ ଯାଉଥାଏ ଯେତେବେଳେ—ଉଠିପଡ଼ୁଥାନ୍ତି, କ୍ଲାନ୍ତ ହୋଇ ଜୁଡ଼ୁବୁଡ଼ୁ ହୋଇ ଟଣାଓଟରା ଗୃପରେ—ବାହାରିଯାଉଥାନ୍ତି ମଦ ଖଟି ଆଡ଼େ ଗୃହା ପିଇବା ପାଇଁ—ନିମନ୍ତ୍ରଣ କରୁଥାନ୍ତି ମାଲିକଙ୍କୁ ତାଙ୍କ ସଙ୍ଗରେ ଯିବାପାଇଁ ।

ମେଲା ପଡ଼ିଆରେ ମୋର କାମ ଥାଏ—ଆଖି ରଖିବା ଦେଖିବା ଏହି ଲୋକ ଗୁଡ଼ାକ ଲୁହାକଣ୍ଡା, ଇଟାପଥର କି କାଠପାଠ କିଛି ଚୋରାଉ ନାହାନ୍ତି—ପ୍ରକୃତରେ ପ୍ରତ୍ୟେକେ ସେମାନେ ମୋ ମାଲିକଙ୍କ ପାଇଁ କାମ କରିବା ଛଡ଼ା ନିଜ ନିଜର ଠିକା କାମ କିଛି କରୁଥାନ୍ତି, ନିଜ ନିଜର ବ୍ୟବହାର ପାଇଁ—ଏଣୁ ଜିନିଷପତ୍ର ଉପାଦାନ କିଛି ହାତ କରୁଥାନ୍ତି, ହରଣଚାଳ କରୁଥାନ୍ତି ।

ଥରେ ବେଶ୍ ବନ୍ଧୁ ଭାବରେ ସେମାନେ ମୋତେ ଆଦର କଲେ, କିଲ୍ଲ ଶିଶ୍‌କିନ କହିଲେ :

"ମନେପଡ଼ୁଛି ନାଁ । ଶିକ୍ଷାନବିଶ କରିନେବା ପାଇଁ ମତେ କିମିତି କହୁଥିଲୁ—ଏବେ ଦେଖ୍ କେତେ ଆଗେଇ ଯାଇଚୁ ତୁ—ଏତେ ଦୂର ଯେ ମୋର 'ଓଭରସିଅର' କାମ ତଦାରଖକାରୀ ହେଲୁଣି ତୁ—।"

"ଓଃ, ହିଁ ହିଁ, ତା' ଠିକ୍ ଯେ," ଅଟ୍ଟା କଲେ ଓସିପ୍ : "ମନଇଚ୍ଛା ଯେତେ ପାରୁ ସେତେ ଗୁଇନ୍ଦାଗିରି କର ଉକ୍ତିଆଙ୍କି ଦେଖ ।"

ପିଓତ୍ର କହିଲେ, କେତେକ ପରିମାଣରେ ଶତ୍ରୁତା ଦେଖାଇ, "ବୁଢ଼ା ବୁଢ଼ା ପୋଖତ ମୂଷାଙ୍କୁ ଜଗିବା ପାଇଁ ଛୁଆ ଟୋକା ବିଲେଇଟିକୁ ଲଗାଇ ଦେଇଛନ୍ତି କାହିଁକି ?"

ଗୋଟାଏ ନିଷ୍ଠୁର ଉପଦ୍ରବର ବୋଝ ହୋଇଥିଲା ମୋ ଉପରେ ମୋର କର୍ତ୍ତବ୍ୟ ମୋ କାମଗୁଡ଼ାକ ! ଏହି ଲୋକଗୁଡ଼ାକ ଆଗରେ କିମିତି ଲଜ୍ଜା ବୋଧ କରୁଥିଲି ମୁଁ । ସେମାନଙ୍କ ଭିତରେ ସମସ୍ତେ ପ୍ରାୟ ମନେ ହେଉଥିଲେ ମୋର ଏକମାତ୍ର ସେହିମାନଙ୍କୁ ହିଁ ଜଣା—ଉତ୍କୃଷ୍ଟ ଜ୍ଞାନର ଅଧିକାରୀ ଥିଲେ ସେମାନେ, ଥିଲେ ସୁଜ୍ଞାନୀ, ସୁକୌଶଳୀ ସବୁ—ଅଥଚ ମୁଁ, ମୁଁ ଥିଲି ପ୍ରହରୀ, ଜଗୁଆଳି—ଦୃଷ୍ଟି ରଖିଥିଲି ସେମାନଙ୍କ ଉପରେ ସତେ ଯେମିତି ଚୋର, ତସ୍କର, ଠକ ପ୍ରବଞ୍ଚକ ଥିଲେ ସେମାନେ

ପ୍ରଥମ ପ୍ରଥମ କେତୋଟି ଦିନ ଅତି କଷ୍ଟର, ଅତି ଯନ୍ତ୍ରଣାର ଥିଲା । ଓସିପ ଏହା ଲକ୍ଷ୍ୟକରି ପାରି ସିଧାସଳଖ ମୋ ଆଖିରେ ଆଖି ରଖି ମୋତେ କହିଥିଲା !

"ଦେଖ୍ ରେ ପିଲାଟାଏ ତୁ. କୋହଲଫୋହଲ ହୋଇ ମୁହଁ ଗାରୁ ଗାରୁ କରନା, ସେଥିରେ କିଛି ଅର୍ଥ ନାହିଁଟି, ବୁଝିଲୁ ?"

ମୁଁ ବୁଝି ପାରି ନ ଥିଲି ନିଶ୍ଚୟ, କିନ୍ତୁ ବାରିପାରିଥିଲି ସେ ବୁଢ଼ା ଲୋକଟି ଉପଲବ୍ଧି କରି ପାରିଥିଲେ ମୋର ପରିସ୍ଥିତିର ଅସଂଗତିଟା ଆଉ ଆମେ ଦୁହେଁ, ଏଣୁ ପରସ୍ପର ପାଖରେ ବେଶ୍ ହୃଦୟଖୋଲା ମନଖୋଲା ହୋଇ ଉଠିଥିଲୁ ।

ସେ ମୋତେ ଡାକି ନେଉଥାନ୍ତି ଦୂରକୁ ଟିକିଏ, କେଉଁଠି କେଉଁ କଣ ଆଡ଼କୁ ଆଉ ନିର୍ଦ୍ଦେଶ ଦେଲାଭଳି ଉପଦେଶ ଦେଉଥାନ୍ତି ମତେ ;

"ଆରେ, ଆମ ଭିତରେ ଅସଲ ଶ୍ରେଣୀର, ଯଦି ନହାତି ଜାଣିବାକୁ ଚାହୁଁଚୁ, ଜାଣ ତେବେ, ପଥୁରିଆ ସିଓନ—ଲୋଖିଟାଏ ବହୁକୁଟୁମ୍ବୀ—ଆଖି ରଖିବୁ ଯଦି ରଖ, କଡ଼ା ଆଖିରଖ ତା' ଉପରେ ଯେ କୌଣସି ଜିନିଷ ହଠାଇ ନେଇଯିବା ଯଥେଷ୍ଟ ଭଲ ତା ଆଗରେ, ପାଉଣ୍ଡଖଣ୍ଡେ ଲୁହାକଣ୍ଟା ଡଜନେ ଇଟା ବସ୍ତାଏ ଚୂନସୁର୍କି, କଣ, କ'ଣ ନ ପାଏ ଯେ ତା କାମକୁ—ମଣିଷଟି ଭଲ, ଧାର୍ମିକ ଯାହା ଭାବେ ଠିକ୍ ଠିକ୍ ଭାବେ, କରେ, ହଲଚଲ ହୁଏ ନାହିଁ । ଲେଖି ପଢ଼ି ଜାଣେ, କିନ୍ତୁ ହେଲେ କ'ଣ ହେବ ? ଗୋଟିଏ ବୋଲି ଦୁର୍ବଳତା ଅଛି ତା'ର—ସେ ଘୃଣା କରେ । ଆଉ ଷ୍ଟେଫିମୁସ୍କା—କାରବାର ତା'ର ବର୍ତ୍ତମାନ ମାଇକିନାଙ୍କ ସାଙ୍ଗରେ ଓ ସେମାନଙ୍କ ପାଇଁ ଯେମିତି ତା'ର ନରମା, ଧୀରସ୍ଥିର ; ଷଡ଼ଯନ୍ତ୍ର କରିବ ନାହିଁ ଅନ୍ତତଃ ପକ୍ଷେ, ତୋ ସମ୍ପର୍କରେ ତୁ ଯେଉଁଥିରେ ସମ୍ପୃକ୍ତ— ମୁଣ୍ଡଟି ତା'ର ବଡ଼ିଆ, କିନ୍ତୁ ଥୁଆ ହୋଇଚି ତା' କାନ୍ଧ ଉପରେ—ସବୁ କୁଜା-ପିଠିଆ, ଭାରି ଚଟାପଟ, ଖୁବ ଚଲାକ, ଆଉ ଗ୍ରୀଗୋରି ଶିଶ୍ଲିନ ଟିକିଏ ଗୋଲ-ମାଳିଆ, ଫାଙ୍କାଫାଙ୍କା ସ୍ୱଭାବ, ତା' ନଜର ଯାହା ସେଥିରେ ବି ଲାଗି ରହିପାରେ ନା—ଅନ୍ୟ ଲୋକଙ୍କର କ'ଣ କିଛି ଛୁଇଁବା ତ ଦୂରର କଥା, ଯିଏ ଇଚ୍ଛା ସେ ତାକୁ ବୋକା ବନାଇପାରେ, କିନ୍ତୁ ଜଣେ ହେଲେ କାହାକୁ ସେ ତା' କରିପାରିବ ନାହିଁ—ସେ ଯାହା କହେ ବା କରେ, କିଛି ଅର୍ଥ ନଥାଏ ସେଥିରେ ।"

"ଭଲ ମଣିଷଟିଏ ତ ?"

ଓସିପ୍ ମୋତେ ଲକ୍ଷ୍ୟ କଲେ, ଦେଖି ଦେଖି ପଢ଼ି ଲାଗିଲେ ଯେମିତି ମତେ ଦୂରରୁ, ତା'ପରେ ସେ କହିଲେ ଅବିସ୍ମରଣୀୟ କଥା କେତୋଟି ।

"ହଁ, ଭଲ ସେ ଅଛି । ଅଳସୁଆ ପକ୍ଷେ ଭଲ ହେବାଠୁଁ ଆଉ ସହଜ କଥା କ'ଣ ? ଆରେ ବାବୁ ଭଲ ପଣ ମଥା ଲୋଡ଼େ ନାଁ, ଭଲ ମସ୍ତିଷ୍କ ମଧ୍ୟ ଲୋଡ଼େ ନାହିଁ ନା ?"

"ଏତ ସବୁ ଠିକ୍, ଆଉ ତମ କଥା କ'ଣ ?" ମୁଁ ପଚାରିଲି ଓସିପ୍‌କୁ ।

ଅଳ୍ପ ହସିଦେଇ ସେ ଜବାବ ଦେଲେ :

"ମୁଁ ଅଟିଏ ଭଲଆ ମୁଁ—ଯେତେବେଳେ ବୁଢ଼ୀ ମା' ଅଭି ମା' ହେବାକୁ ପଡ଼େ ମତେ, କି ରୂପ ଧରେ ମୁଁ, କେମିତି ହୁଏ ମୁଁ କହିବ ଇଡ଼ ! କିନ୍ତୁ ଯେତେବେଳେ ଯାଏ ଅପେକ୍ଷା କରିବାକୁ ହେବ ତତେ—ବୁଝିଲୁ, ନ ହେଲେ ମଥାଫେଲା ନଜର, କ'ଣ ମୁଁ ଠିକ୍ କରିବା ପାଇଁ—କେମିତି ମୁଁ ଜାଣିବା ପାଇଁ, ଯା ବୁଝି ଚେଷ୍ଟା କର ।"

ତାଙ୍କ ସମ୍ପର୍କରେ ଆଉ ତାଙ୍କ ବନ୍ଧୁବାନ୍ଧବଙ୍କ ସମ୍ପର୍କରେ ସେ ଓଲଟାଇ-ଦେଲେ ମୋର ଧାରଣାକୁ—ଧାରଣାଗୁଡ଼ିକୁ—ସନ୍ଦେହ କରି ନ ଥିଲି ସେ କହିଗଲେ ଯାହାସବୁ—ମୁଁ ଦେଖିପାରିଲି ସ୍ମେଫିମୁଶ୍‌କା, ପିଓଟ ଆଉ ଗ୍ରିଗୋରି—ସୁନ୍ଦର ଚେହେରାର ପାଚିଲା ବୁଢ଼ାଲୋକଟିକୁ ବିଗୁରୁଥିଲେ ସେମାନଙ୍କଠୁଁ ବଳି ଅଧିକ ଚତୁର । ବାସ୍ତବ କ୍ଷେତ୍ରରେ କାମଦାମ ଘଟନାଘଟନାରେ ସେ ସେମାନଙ୍କଠୁଁ ଅଧିକ ବିଚକ୍ଷଣ ଓ ଅଧିକ ଜାଣନ୍ତି । ସେଥିପାଇଁ ପ୍ରତ୍ୟେକ କଥାରେ, ପ୍ରତ୍ୟେକ ବିଷୟରେ ସେମାନେ ଲୋଡ଼ୁଥାନ୍ତି ତାଙ୍କର ପରାମର୍ଶ । ମନଯୋଗ ଦେଇ ଶୁଣୁଥାନ୍ତି ସେ ଯାହା କହୁଥାନ୍ତି, ବତେଇ ଦେଉଥାନ୍ତି ଆଉ ତ୍ରୁଟି କରୁ ନ ଥାନ୍ତି ତାଙ୍କ ପ୍ରତି ମାନଥାନ, ସମ୍ମାନ ଦେଖାଇବାରେ ।

"ଦୟାକରି ତମ ପରାମର୍ଶଟା ଦିଅ"—ସେମାନେ ତାଙ୍କୁ କହୁଥାନ୍ତି । କିନ୍ତୁ ଥରେ ଏମିତି ସେମାନେ ତାଙ୍କୁ ନିବେଦନ କଲା ପରେ ଓସିପ୍ ଚାଲିଗଲେ ଯେତେବେଳେ ଟିକିଏ ସେମାନଙ୍କ ପାଖରୁ ପଥରମିସ୍ତ୍ରୀ ଚୁପ୍‌ଚୁପ୍ କରି କହିଲେ ଗ୍ରିଗୋରିକୁ ।

"ଧର୍ମଦ୍ରୋହୀ", "ଅବିଶ୍ୱାସୀ" ।

"ଖଣ୍ଡଟାଏ, ନବକଥା ଦୃଆଁସି !" ଗ୍ରିଗୋରି ଯୋଡ଼ିଦେଲେ ନାକରେ ଘୃଣିକାନ ହୋଇ ।

ଗ୍ରଜମିସ୍ତ୍ରୀ ସତର୍କ କରିଦେଲେ ମତେ ବନ୍ଧୁଭାବରେ ।

"ସେ ବୁଢ଼ାକୁ କମ ମଣିବୁ ନାହିଁ, ମାକ୍‌ସିମିଚ୍—ଅଖି ରଖିଥିବୁଟି, ଜଗିଥିବୁ ତାକୁ । ତା' ସାଥିରେ ସାବଧାନ ହୋଇ ଚଳିବୁ ନଇଲେ ଆଖି ପିଛୁଳାକେ ଲେକେ ସେ ତତେ କାଣି ଆଙ୍ଗୁଠିରେ "ସୂତା ଗୁଡ଼ାଇଲା ପରି" ଗୁଡ଼େଇ ନେବଟି । ତା' ଭଳି ବୁଢ଼ାଗୁଡ଼ାକ ଯେଉଁମାନଙ୍କ ଦାଢ଼ିଆଉଁଠ ସବୁବେଳେ ଟକ୍‌ଟକ୍ ହେଉଥାଏ, ଭଗବାନହିଁ ଜାଣନ୍ତି କ'ଣ ଯେ କ୍ଷତିସାଧନ ନ କରନ୍ତି ସେମାନେ !"

ମୁଣ୍ଡଗଣ୍ଡି କିଛୁ ଧରି ପାରିଲି ନାହିଁ କଥାଟିର ।

ମତେ ଲଗିଲି ସବୁଠୁଁ ବଳି ସଚ୍ଚୋଟ, ନ୍ୟାୟବାନ୍ , ଧାର୍ମିକ ଲୋକ ତାଙ୍କ ଭିତରେ ଥିଲେ ସିଓଜ ! ତାଙ୍କର ମନ୍ତବ୍ୟଗୁଡ଼ିକ ଥିଲି ସଂକ୍ଷିପ୍ତ, ଯଥେଷ୍ଟ ପ୍ରଭାବ-ଶାଳୀ—ତାଙ୍କର ଚମତ୍କାରପୂର୍ଣ୍ଣ କଥାଗୁଡ଼ିକୁ, ତାଙ୍କର ଧ୍ୟାନଧାରଣା ଥିଲି ଅନେକ ସମୟରେ ଭଗବାନ, ମୃତ୍ୟୁ ଆଉ ନରକଗର୍ଭ ପ୍ରଶ୍ନଗୁଡ଼ିକର ଅଭିମୁଖୀ !

‘ ଆରେ ଭାଇ ମଣିଷ ଯେତେ ଇଚ୍ଛା, ଯେତେ ପାରେ ଚେଷ୍ଟା କରୁ, ଯେତେ ପାରେ ଆଶା କରୁ, ଭରସା ରଖୁ—ଶେଷରେ ଯିବ ହିଁ ଯିବ କବରକୁ—ପଶିବ ହିଁ ପଶିବ କଫିନ୍ ରେ ।”

କ’ଣ ଗୋଟାଏ ପେଟ ରୋଗରେ କଷ୍ଟ ପାଉଥାନ୍ତି ସେ । ସମୟେ ସମୟେ ଦିନ ପରେ ଦିନ ବିତି ଯାଉଥାଏ କିଛୁ ଖାଇପାରୁ ନ ଥାନ୍ତି ସେ—ଇମିତି କି ବିକଟେନାକୁରୁ ରୁଟି ଟୁକୁରାରେ ଯନ୍ତ୍ରଣାରେ ଗଡ଼ି ଯାଉଥାଆନ୍ତି ସେ—ହାତଗୋଡ଼ ମୁଠା ମୁଠାକରି ଓକାରି ଉଠୁଥାଏ ତାଙ୍କର ।

ଲୁକପିଠିଆ ଶ୍ୱେଫିମୁସ୍କା ବି ଜଣାଯାଉଥାନ୍ତି ଉଦାର, ଦୟାଶୀଳ ଓ ସଚ୍ଚୋଟ—ଯଦିଓ ଭେସେଡ଼ାମି ଥାଏ ତାଙ୍କର, ଦେଖିଲେ ହସମାଡ଼ୁଥାଏ, ଆଉ ବେଳେବେଳେ ଏମିତି ସ୍ୱର୍ଗୀୟ ସୁଖାନୁଭୂତିର ଢଙ୍ଗରଙ୍ଗ କାଢ଼ନ୍ତି ଯେ ସେଥିରୁ ମନେ ହେଉଥାଏ ଅଧାବାଇଆ ବୋଲି—ସବୁବେଳେ ପ୍ରେମରେ ପଡ଼ୁଥାନ୍ତି ସେ—ଆଉ ପ୍ରତ୍ୟେକଟି ସ୍ତ୍ରୀକୁ ସେ ବର୍ଣ୍ଣନା କରୁଥାନ୍ତି—ସମାନ ଏକାପରି କଥାରେ ।

‘ହଁ ସିଧାସିଧା ସାଫ୍ ସାଫ୍ କହିବ, ନାଁ, ମାଇକିନିଆ ନୁହେଁ ସେ, ସବୁଏ ସରି ଲହୁଣୀରେ ଫୁଟିଲି ଫୁଲଟିଏ ସେ—ଫୁଟିଲି ଫୁଲଟିଏ ସେ—ବୁଝିଲୁ ।”

ଲୁନାଭିନୋର ଦେଖେଇ ଫୁଲେଇ ଚଉଗ୍ରା ମାଇପେ ଯେତେବେଳେ ଆସୁଥାନ୍ତି ମେଲାପଡ଼ିଆର ଦୋକାନଘରର ଚଟାଣଗୁଡ଼ାକ ଧୋଇବା ପାଇଁ, ଶ୍ୱେଫିସୁସ୍କା ଓହ୍ଲାଇ ଆସୁଥାଏ ଗ୍ରୀତ ଉପରୁ—ଯାଇ କଉଣଠିଆ ଜାଗା ଧରୁଥାଏ କେଉଁଠି ଗୋଟାଏ କଣରେ, ବଲେଇଭଳି ଘଡ଼ୁରୁ ଦଡ଼ୁରୁ ହେଉଥାଏ ସ୍ୱଳକ ଉଠି, ଚକ୍ ଚକ୍ ଉଜ୍ଜ୍ୱଳ ଧୂସର ଆଖି ଦୁଇଟି ମୋଡ଼ି ମୋଡ଼ି ହୋଇ, ଛଣହୋଇ ପେଁଚଭଳି କୁଞ୍ଚ କୁଞ୍ଚ ହୋଇଯାଇଥାଏ ଶକ୍ତଭାବରେ ଆଉ ପାଟିଟି ତାର ଲମ୍ବି ଯାଇଥାଏ ଏ କାନରୁ ସେ କାନ ପର୍ଯ୍ୟନ୍ତ ।

“ଓହୋ ହେ କି ରସୁଅଳିଆ ଜୀବ, ଭଗବାନ ଆଣି ଦେଇଛନ୍ତି ରେ, ପଠେଇ ଦେଇଛନ୍ତି ମୋ ବାଟରେ ଆଜ, ଓହୋ ହେ କି ଆନନ୍ଦରେ ଖେଳଖେଳ ଭାସିଆସିଲି ମୋ ହାତ ପାହାନ୍ତକୁ—ଦେଖ ଦେଖ କଉଳି ଫୁଟନ୍ତା ଫୁଲଟାଏ ରେ ସେ—ଓଃ କେମିତି ଭଗବାନଙ୍କୁ ଧନ୍ୟବାଦ ଦେବି ରେ ଏ ‘ଦାନ’ ପାଇଁ ତାର

ଏଃ—ଏମିତକା ସୌନ୍ଦର୍ଯ୍ୟରେ ଆରେ ଜଳିଯିବ ନାହିଁ ତ ମୁଁ—ଏଁ ଜଳି ଯାଆନ୍ତି କି !"

ପ୍ରଥମେ ପ୍ରଥମେ ମାଇପେ ସବୁ ତାଙ୍କୁ ଦେଖିଲେ ନିଜ ନିଜ ଭିତରେ ହସାହସି ହୋଇ କୁହାକୁହି ହେଉଥିଲେ :

"ଦେଖ ଲୋ ଦେଖ, କୁଜାପିଠିଆ ତରଳି ଯାଉଛି ।" ଗଳି ଦ'ଉଛି କେମିତି ! ଓ ମା'ଲୋ ମହାପ୍ରଭୁ !

"ସ୍ତୁତି ଚଢ଼ାଳକୁ ଛୁଇଁ ନ ଥିଲା ସେମାନଙ୍କର କୌତୁକିଆ ବିଦ୍ରୂପ, ଝିଙ୍କାସିଆ କଥା । କ୍ରମେ କ୍ରମେ ଉଚ ହନୁହାଡ଼ର ମୁହଁଟା କେମିତି ଚନ୍ଦ୍ରାତୁର ହୋଇଆସିଲା— ସେ କଥାବାର୍ତ୍ତା କଲେ ନାହିଁ, କେମିତି ବାଉଳଗୁଉଳ ହୋଇ ମରୁଆଳିଆ ମୁହଁରୁ ଯେମିତି ଉଚ୍ଛୁଳି ପଡ଼ିଲା ଶବ୍ଦଗୁଡ଼ାକ, କଥା ସବୁର ତାଙ୍କ ମୁହଁରୁ—ସ୍ପଷ୍ଟ ଜଣାପଡ଼ିଲା ନିଶାରେ ଘାଣ ଘାଣ ଦେଲା ସେଇ ମାଇପିଗୁଡ଼ାଙ୍କୁ—ଶେଷରେ ଦିନେ ତାଙ୍କ ଭିତରୁ ବୟସ୍କା ଜଣେ ଟିକଏ ବିସ୍ମୟରେ ଆଖି ଖୋସିଦେଇ କହିଲା :

"ମ୍ୟାଟ୍ରିକ୍ ଫୋକାଟାଏ ହୋଇଥିବ ନିଶ୍ଚୟ ଯେମିତି ଭାବରେ ବୁଲିଛି ସେ ।"

"ଚନ୍ଦ୍ରେଇଟିଏ ପରି ଗୀତ ଗାଉଛି ମ ।"

"ନାଁ ମ, ସ୍ତୁଖାଶଟି ପରି ଗୀର୍ଜା ଦ୍ୱାରରେ"—ଜୋର ଦେଇ କହିଲା ବୟସ୍କାଟି ।

କିନ୍ତୁ ସ୍ୱେଚ୍ଛିମୁସ୍କାର ତଳେ ହେଲେ ବା କାହିଁକି ସାମଞ୍ଜସ୍ୟ ଆଆନ୍ତା କେଉଁଥିରେ, କେଉଁ ଭିଖାରି ସାଙ୍ଗରେ ? ମାଟିରେ ଅତି ଦୃଢ଼ଭାବରେ ଚେରମାଡି ରହିଥିଲେ ସେ—ଉଭା ହୋଇ ରହିଥିଲେ ଉପରେ—ଆବଡ଼ାଖାବଡ଼ା କଣ୍ଟାଗଛର ମୂଳ ଗଣ୍ଠି ଭଳି—ଆଉ ଦେଲକୁ ଦେଲ ସ୍ୱର ତାଙ୍କର ହୋଇ ଉଠୁଥିଲା ଅଧିକରୁ ଅଧିକ ପ୍ରଲୋଭନମୟ—କଥାଗୁଡ଼ାକ ପୁଣି ଅଧିକରୁ ଅଧିକ ମନୋହାରଣୀ ରମଣୀ-ଗୁଡ଼ାକ ପାଇଁ—ସେମାନଙ୍କୁ ଗପସପ ବନ୍ଦକରି ଉତ୍କଣ୍ଠ ହୋଇ ଶୁଣିବା ଲାଗି ପ୍ରବର୍ତ୍ତେଇ, ସତେ ଯେପରି ମନ୍ତ୍ରବୋଲା କଥାରେ ସେ ବୁଣି ଲାଗିଥିଲେ ମନ୍ତ୍ରଜାଲ ।

ସେହି ରବିବାର ଦିନ ଗ୍ରଙ୍ଗବୋଜନକୁ ଫେରି ଆସିଲାବେଳେ କିମ୍ବା ସୋମବାର ଦିନ ସକାଳେ ଏ ସବୁର ସମାପ୍ତି ଘଟୁଥିଲା—ସେ ନିଜର ବିସ୍ତାଟ ଚଉକୋଣିଆ ମୁଣ୍ଡଟି ହଲାଇ ନିଜ ସାଙ୍ଗସାଥୀମାନଙ୍କୁ ସବିକତ ଭଙ୍ଗୀରେ ଉଚ-ପାଟିକରି ଶୁଣାଉଥିଲେ ।

"ଆଃ, କେଡ଼େ ମଧୁରିଆ ବଢ଼ିଆ ·ମାଇପିଟିଏ—କେଡ଼େ ପ୍ରିୟ ମ ସେ— ଜୀବନରେ ପହିଲେ ପାଇଲି ଏମିତି ଗୋଟାଏ ଏଁ !"

ବାଜସ୍ୱ କାହାଣୀଗୁଡ଼ିକ ବର୍ଣ୍ଣନା କରୁ କରୁ ନାଜର, ସ୍ୱେଫିମୁସ୍କା ଅନ୍ୟମାନଙ୍କ ଭଳି କେବେହେଲେ ଗର୍ବ ଦେଖାଇ ଫୁଲ୍ ଫୁଲ୍ ଯାଉ ନ ଥିଲେ କି ନାଜର ମାଇପି-ଗୁଡ଼ାଙ୍କ ସମ୍ପର୍କରେ ଅଳ୍ପ ତାମସା କରୁ ନ ଥିଲେ, ହସୁଥିଲେ ମୁରୁକେଇ ମୁରୁକେଇ, ଆଖିଯୋଡ଼ିକ ଓସରାଇ ଦେଇ ମୁହଁରେ ଆନନ୍ଦ ଆଉ ସନ୍ତୁଷ୍ଟଙ୍କ ବିସ୍ମୟ-ବହୁଳତାରେ ।

ଏତିକ ଶୁଣି ଓସିପ୍ ପାଭିକର ଉଠୁଥାନ୍ତି ମୁଣ୍ଡ ହଲାଇ ହଲାଇ ଜୋରରେ :

"କେବେ ସୁଧୁରବୁ ତୁ ରେ, କେବେ ଠିକ୍ ହେବୁ ତୁ—ଇମିତ ଅସାଧ୍ୟ ପୁରୁଷଟାଏ—ମରଦଟାଏ ତୁ ! କେତେ ବୟସ ହୋଇଥିଲା ତତେ, କେତେ କହିଲୁ ସେତେବେଳେ ?"

"ସ୍ନେଳଣ ଆଉ ସ୍ତର, କିନ୍ତୁ ତା' ମାନେ କ'ଣ, ତା' ମାନେ କିଛି ନୁହେଁ—ଏବେ ତ ମୁଁ ପାଞ୍ଚତର୍ଷର ଶ୍ରେଷ୍ଠ—ପାଞ୍ଚବର୍ଷ କଟିଯାଇଛି ବୟସଟା ମୋର—ଚଳନ୍ତା ଜୀବନ୍ତ ପାଣିରେ ବୁଡ଼ିପାର ଉଠିଚ—ଉଠିଛି ଉପରକୁ ଗୋଟିକଯାକ ପୁରାପୂର ଅଖଣ୍ଡ—ଓଃ କେଡ଼େ ଉଣ୍ଠାସିଆ କେଡ଼େ ଶାନ୍ତ ହୋଇଯାଇଛି ଗ୍ଭଟଟା, ହୃଦୟଟା ମୋର, ଆରେ, ହେ କେଡ଼େ ବଢ଼ିଆ ବଢ଼ିଆ ମାଇପେ ଅଛନ୍ତି ଆହାରେ ମୋର !"

ପଥର ମିସ୍ତ୍ରୀ କଠୋର ସ୍ୱରରେ କହୁଥିଲା ତାଙ୍କୁ !

"ସାବଧାନ, ଦେଖିଶୁଣି ଗ୍ଭଲ କହୁଛି, ତୋର ଏ ଲଙ୍ଗଳା ଫୁଙ୍ଗୁଲା ହୁଗୁଲା ଚଳଣି, ବୁଝିଲୁ, ଦେବ ଯେ ପିଟା କଣ ଗ୍ଭଣ୍ଡିଦେବ ତୋ ପାଟିକୁ, ସେତେବେଳେ ପସ୍ତଣ ମୁହଁ ଟିପିଯିବୁ ତୁ—ବୁଝିଲୁ ।"

"ନାଲଠା ବେହୁଆ ଜୀବଟାଏ ତୁ ସ୍ୱେଫିମୁସ୍କା"—ସଙ୍କୋଚରେ କହିଲେ ଗ୍ରିଗୋରୀ ଶିଶ୍ଲିନ୍ ।

କିନ୍ତୁ ମତେ ଲାଗୁଥାଏ ସୁନ୍ଦର ସୁପୁରୁଷ ତରୁଣଟିଏ ସେ ଈର୍ଷା କରୁଥାନ୍ତି କୁଜପିଠିଆଙ୍କୁ ତାଙ୍କର ବାଜସ୍ୱଗୁଡ଼ିକ ସକାଶେ ।

ଓସିପ୍ ଆଖି ବୁଲେଇ ନେଉଥାନ୍ତି ସମସ୍ତଙ୍କ ଉପରେ ମୋଡ଼ି ମୋଡ଼ିକିଆ ରୂପେଲି ଭୂରୁ ତଳରୁ ଏବଂ କହୁଥାନ୍ତି ହାଲଖୁସିଆ ଘାଉଁଘାଉଁଆ ସ୍ୱରରେ ମସଗୁଲ୍ ହୋଇ କହୁଥାନ୍ତି :

'ସବୁ ମାଇକିନିଆ ତୋର ଅଭଦ୍ର, ଅସଭ୍ୟ ଇତର ଲୋକଙ୍କ ପାଲରେ ପଡ଼ନ୍ତି, ତାଙ୍କୁଇ ଲୋଡ଼ନ୍ତି, କେତେ ସେଥିରୁ ଭଲ ଭଲ ସୁଆଦିଆ ମିଠା ଖିଆ-ଖେଚୁଡ଼ିରେ—କେତେକ ସୁନାରୁପା, ମୋତିମାଣିକରେ—କିନ୍ତୁ କ'ଣ ହେବ ରେ, ତୋର ମାଇପେଯାକ ତ ସବୁ ବୁଢ଼ୀମା' ହେବା ଉପରେ—ଶୀଘ୍ର ଗୋଟାଏ ଗୋଟାଏ ବୁଢ଼ୀ ଆଉ ମା' ହୋଇଯିବେ ।"

ଶିଶଲିନ ବାହ୍ୱା ହୋଇଥାନ୍ତି, କିନ୍ତୁ ଖ୍ରେଯା ତାଙ୍କର ଥାଏ ଗାଁଆଁରେ—ସେ ମଧ୍ୟ ଲାଳସାତୁରିଆ ଆଖି ପକାଉଥାଏ ଘଚ୍‌ଓଲେଇ 'ଖେରିକିଆଣୀ' ଉଶଲିଗୁଲ୍ଲିଙ୍କ ଉପରେ—ଆଉ ପ୍ରତ୍ୟେକେ ସେମାନେ ମିଳିପାରୁଥାନ୍ତି ଅକ୍ଲେଶରେ, ସହଜ ପନ୍ଥାରେ ଥାନ୍ତି ।"କିରଣିଆ" ହୋଇ କେଉଁଠି ଟିକିଏ କିଛି ଅଧିକା ରୋଜଗାର କରିବା ପାଇଁ—ଆଉ ସେଭଳି ରୋଜଗାର ପନ୍ଥାକୁ ବିଶ୍ବର କରାଯାଉଥାଏ ଧରି-ନିଆଯାଇଥାଏ ଯେ କୌଣସି ଅନ୍ୟ ଆୟ ଅର୍ଜନର ଉପାୟ ଭଳି ସତ, ସେହି ଦାରିଦ୍ର୍ୟ ପୀଡ଼ିତ ସମାଜରେ-ସଂସାରରେ ! କିନ୍ତୁ ଏହି କମନୀୟ କାନ୍ତି ମ୍ୟୁଟିକିଟି ଛୁଇଁ ନ ଥାଏ ଗୋଟାଏ ହେଲେ ମାଇପି ଲୋକର ଦେହେ—ସେ ଖାଲି ଦୂରରେ ରହି ଅନେଇ ରହୁଥାଏ ସେମାନଙ୍କୁ ଗୋଟାଏ ଅଦ୍ଭୁତ ଭାବ ପ୍ରକାଶ ଭାବରେ—ଯଦିଓ ସେମାନଙ୍କ ପାଇଁ ବା ନିଜ ପାଇଁ ଦୁଃଖ ଅସୁଥାଏ ତାର, ଯେତେବେଳେ ସେମାନେ, ସେଇ ମାଇପେ ସବୁ ନିଜେ ନିଜେ ଦେଖେଇ ହୋଇ, ପ୍ରେମକରି ଲଦି ହେବାକୁ ବାହାରିଲେ ତାଙ୍କ ଉପରେ—ଭଲେଇ ଭୁଲେଇ ଲୋଭେଇବାକୁ ଲାଗିଲେ ତାଙ୍କୁ—ଅଦ୍ଭୁତ ସେ କେମିତି-ବିବ୍ରତିଆ ହୋଇ ଅଡ଼ୁଆ ଅଡ଼ୁଆ ବୋଧକରି ହସିଦେଇ ଚାଲିଯାଉଥିଲେ ସେମାନଙ୍କ ପାଖରୁ—ଗଲାବେଳେ କହି କହି ଯାଉଥିଲେ, "ଆରେ ନା ନା, ଆଉ ଆଉ ଆରେ ନା ଥାଉ ଏବେ···"

"ମୁଣ୍ଡରେ ତୋର କିଛୁ ନାହିଁ କରେ, ଅଧା ବାଇଆଟା କ ରୁ ?" କିନ୍ତୁ ଭାବଗତିକୁ ଅବିଶ୍ୱାସ କରି ଟିପ୍‌ପଣୀ ଦେଉଥାନ୍ତି ସ୍ନେଫିମୁସ୍ତା,"ଏମିତିକା ସୁବିଧା କିଏ କ'ଣ ଛାଡ଼େ କେମିତି ସେ ଏ ସୁବିଧାକୁ ହାତରୁ ଖସିଯିବାକୁ ଦେଉଛୁ ?"

"ବାହ୍ୱା ହେଇଛୁ ମୁଁ"; ଗ୍ରିଗୋରି ମନେ ପକାଇ ଦେଉଥାନ୍ତି ତାଙ୍କୁ, ସ୍ନେଫିମୁସ୍ତାଙ୍କୁ ।

"ତୋ ଭାରିଯା କ'ଣ ଆସି ଦେଖି ଦେଉଛୁ—କେବେ ଜାଣି ପାରିବେ ଭଲା ?"

"ଭାରିଜା ସବୁବେଳେ, ସବୁବେଳେ ଧରି ପାରିବେ—ଜାଣି ପାରିବେ, ତା ଗିରସ୍ତ ସତ୍ପଥରେ ନାହିଁ, ଅସତ୍ପଥରେ ଚଲେ । ଭାରିଯାକୁ ସହଜରେ ବୋକା ବନେଇ ହୁଏ ନାଁରେ ଭାଇ !"

"କେମିତି ଜାଣିବ ଯେ ସେ ?"

"ତା ମୁଁ ଜାଣେ ନା, କହି ପାରିବ ନାହିଁ ମୁଁ— କିନ୍ତୁ ସେ ନିଜେ ଯଦି ସତ୍ପଥରେ ଚାଲୁଥିବ, ନିଶ୍ଚୟ ଧରି ପାରିବ—ଆଉ ମୁଁ ଯଦି ସତ୍ପଥରେ ଥିବ, ସେ ପାପ କରୁଥିବ, ଠିକ୍ ଜାଣି ପାରିବ, ଧରିପାରିବ ମୁଁ ।"

"କିପରି ?" ବଡ ପାଟିଟାଏ କରି ପଚାରିଲେ ସ୍ନେଫିମୁସ୍ତା—ଗ୍ରିଗୋରି କିନ୍ତୁ ଧୀର ଭାବରେ ପୁଣି ସେହି କଥା କହିଲେ :

"ଜାଣେ ନାଁ, କହିପାରିବି ନାହିଁ ।"

ହତାଶ ହୋଇ ଅସହାୟ ଭାବରେ ହାତଟାଏ ହଲେଇ ଲଗିଲେ ଛୁତଚଢ଼ାଳି—

"ଶୁଣ, କଥା ଶୁଣ, ଦେଖ, ହୁଁ 'ସନ୍ତୁରେ ଚଳ' 'ଜାଣେ ନାହିଁ' କି ! ମୁଣ୍ଡ କି ମଥାରେ ଅଛୁ ତୋର !"

ଶିଶ୍‌ଲିନ୍‌ର କାମଦାର ପାଇଟିଆଲ—ମୋଟରେ ସାତଜଣ ସେମାନେ, ସମସ୍ତେ ସହଜରେ ଅବାଧରେ ଚଳୁଥାନ୍ତି ତାଙ୍କ ସଙ୍ଗରେ—ସେ ଯେମିତି ତାଙ୍କର ସର୍ଦ୍ଦାର, ମାଲିକ ନ ଥାନ୍ତି । କିନ୍ତୁ ପଛରେ ତାଙ୍କୁ କହୁଥାନ୍ତି, ତାଙ୍କୁ ଡାକୁଥାନ୍ତି ବାଛୁରୀଟା, "ନିର୍ଧୂମ ବାଛୁରୀଟାଏ"। କାମବେଳେ ପହଂଚ ଯାଇ ସେ ସବୁ ଦେଖି ପକାଉଥାନ୍ତି, ହାତ ଅଳସେଇ କାମ କରୁଛନ୍ତି କି ହାଇ ମାରୁଛନ୍ତି ବସି ବସି ସେମାନେ—ସଂଗେ ସଂଗେ କରଣୀଟାଏ ଧରି ପ୍ରତିଶୋଧ ନେବା ଲାଗି ଯିମିତି ରାଗରେ ଲାଗି ଯାଉଥାନ୍ତି କାମରେ, ବନ୍ଧୁଭାବରେ କିନ୍ତୁ ଡାକି ଡାକି ସେମାନଙ୍କୁ ।

"ଆସ ରେ, ଆରେ ଆସ ରେ ସବୁ !"

ତେବେ ମୋ ଧୈର୍ଯ୍ୟହୀନ (ଅଧୀର ଅସ୍ଥିର) ମାଲିକଙ୍କ ଆଦେଶ ଅନୁସାରେ କାମ କରିବାକୁ ଯାଇ ମୁଁ କହିଲି ଗ୍ରିଗୋରୀକୁ :

"ତମର ଏଇ କାମଦାରଗୁଡ଼ିକ କୌଣସି କାମର ନୁହଁନ୍ତି, ଆଦୌ ଭଲ କାମ କରୁ ନାହାଁନ୍ତି ।"

"ସତେ ନା ?" ବଡ଼ପାଟିରେ କହିଲେ ସେ । ସତେ ଯିମିତି ଏମିତି ଏଇ ଧାରଣାଟା କେବେ ଆସି ନ ଥିଲା ତାଙ୍କ ମନକୁ !

"କାମଟା ଗତକାଲି ଦ' ପ୍ରହର ସୁଦ୍ଧା ସରି ଯାଇଥାନ୍ତା, ଆଜି ବି ତ ଏ କାମଟା ସରିପାରିବ ନାହିଁ ।"

"ସତ ! ସେମାନେ ପାରିବେ ନାହିଁ, ଚଲାଇ ପାରିବେ ନାହିଁ," ଏକମତ ହେଲେ ଅଲିଭ ଟିକିଏ ରହି କହିଲେ ଦୋ ଦୋପାଞ୍ଚ ହୋଇ :

"ଦେଖୁଛି ଅବଶ୍ୟ କ'ଣ ସବୁ ଚାଲିଛି, କିନ୍ତୁ ସେମାନଙ୍କୁ ବାହାର କରି ଦେବାକୁ ମନ ହେଉନି, ମାଡ଼ି ମାଡ଼ି ପଡ଼ୁଛି, ସେମାନେ ସମସ୍ତେ ଆମ ଲୋକ, ଆମ ଗାଆଁର ଲୋକ । ଭଗବାନଙ୍କ ନିୟମ ଜାରି କରିଛନ୍ତି, ନିଷ୍ପତ୍ତି କରି ଦେଇଛନ୍ତି, ମଣିଷ ତୁଣ୍ଡ ଝାଳ ମୁଣ୍ଡରେ ମାରି ନିଜ ଖାଇବା ମୁଠାକ ଅର୍ଜିବ ! ଏ ନିୟମଟା ଆମ ସମସ୍ତଙ୍କ ପାଇଁ ନୁହେଁ ନାଁ ?" ତୋ ମୋ ସମେତ ସମସ୍ତଙ୍କ ପାଇଁ କେମିତି ? କିନ୍ତୁ, ତୁ ଓ ମୁଁ—ଆମେ ତ ତାଙ୍କ ତୁଳନାରେ ଖଟୁଛୁ କମ୍, କମ୍ କାମ କରୁଛୁ, କ'ଣ ଏଇଥି ପାଇଁ ମତେ ଲାଜ ଲାଗୁଛି, ମାଡ଼ି ମାଡ଼ି ପଡ଼ୁଛି, ତାଙ୍କୁ—ସେମାନଙ୍କୁ ସବୁ ବାହାର କରି ଦେବା ପାଇଁ ।"

ଧ୍ୟାନମଗ୍ନ ହେବା ଅଭ୍ୟାସରେ ପଡ଼ିଯାଇଥାଏ—ବେଳେବେଳେ ମେଳା ପଡ଼ିଆର ଜନ'ନ ଗ୍ରସ୍ତା ଭିତରୁ ଗୋଟିକରେ ଯାଆନ୍ତି ସେ ଏବ୍‌ଗ୍ରୋଦନ କେନାଲ ଉପରେ ପୋଲ ପାଖରେ ପହଞ୍ଚିବା ଯାଏ ଚାଲିଥାନ୍ତି ଏକମୁହାଁ ହୋଇ—ସେଠିଯାଇ ପହଞ୍ଚି ଲୁହାବାଡ଼କୁ ଆଉଜି ଛିଡ଼ା ହୋଇ ଘଣ୍ଟାକୁ ଘଣ୍ଟା ଚାହିଁ ରହୁଥାନ୍ତି ଓକାନଇ ଜଳ ପ୍ରବାହକୁ, ଆକାଶକୁ—ଓକା ନଈ ଅତିକ୍ରମ କରି କାହିଁ କେଉଁ ଦୂରକୁ ବ୍ୟାପିଥିବ ବିଶାଳ ବସ୍ତିଗୁଡ଼ିକୁ ଉଗ୍‌ବାଲୟକୁ—ଯାଉଥିଲି ବେଳେ ସେ, ଯଦି କିଏ ପଛରୁ ଯାଇ ତାଙ୍କ ସଙ୍ଗରେ ଝପିଯିବା ଉପରେ ହୋଇ ପଚାରି ଦେଉଥାଏ : "କ'ଣ ତୁମେ କରୁଛ ଏଠି ?" ସେ ଚମକି ପଡ଼ୁଥାନ୍ତି ଆଉ ବିବ୍ରତ ଭାବରେ ହସିଦେଇ ଅଳ୍ପ କହୁଥାନ୍ତି, ଓଃ, ନା ଏମିତି ବିଶେଷ କିଛି ନୁହେଁ, ଏଇ ଟିକିଏ ଛିଡ଼ା ହୋଇଯାଇଛି, ନିଶ୍ୱାସ ମାରିବା ପାଇଁ ଆଖି ଖୋଲେଇ ନେଉଛି ଚାରିଆଡ଼େ ଟିକିଏ ।

"ଭଗବାନ ଗଢ଼ିଛନ୍ତି ସବୁ—ଯେମିତି ଯେଉଁଠି ହେବାର କଥା ହେବା ଠିକ୍ " ଅନେକ ସମୟରେ ମତାମତ ପ୍ରକାଶ କରୁଥାନ୍ତି ସେ—"ଏଇ ଆକାଶ, ଆଉ ଏଇ ପୃଥିବୀ ଯେଉଁଥିରେ ବହିଯାଉଛି ନଈଗୁଡ଼ିକ, ନାହାଗୁଡ଼ିକ ଧରି ତୁଳୁ ଉପରେ । ନାହାରେ ଚଢ଼ି ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାର ତୁମେ—ଇସ୍ତାନ୍‌ବୁଲ କିମ୍ବା ଶବାନସ୍କୁ ନଇଲେ ପର୍ମ କିମ୍ବା ଅଷ୍ଟ୍ରାଖାନାକୁ । ଥିଲି, କିଛିଦିନ ଥିଲି— ଥରେ ଇସ୍ତାନ୍‌ବୁଲରେ, ବଡ଼ ନଗ୍ରଟିଆ କମିତି ଗୋଟାଏ 'ନକ'ୀବ' ନଗଶ୍ରୋଟା— ନଢ଼ନନଭଗୋରଡ଼ଠୁଁ ବଳି 'ଭସ୍ୟାଙ୍କାଶଆ', ଆମ ନଢ଼ନଟି କଳ୍ପି ବଡ ଗୋଟିଏ ଖୁସୁବାସିଆ ଜାଗା, ଅସ୍ତ୍ରାଖାନାଟି ବି ନକ'ୀବା – ମୂଳକଥା ହେଉଛି ଅଷ୍ଟ୍ରାଖାନାରେ ଭର୍ତ୍ତି ହୋଇଛନ୍ତି "କାଲମୁକ୍" ଜାତିର ଲୋକ ସବୁ—ଆଉ କାହିଁକି କେଜାଣି ସେମାନଙ୍କୁ ସହି ପାରେ ନା ମୁଁ, ତମର ଯେତେ ମୋରଡେଭିଆର ଲୋକ, କାଲମୁକ, ପାରସ୍ୟର ଲୋକ, ଆଉ ଜର୍ମାନ ଆଉ ଯେତେ ବିଦେଶୀ ବାପ'-ମାଆଙ୍କର କେଜାଣି କାହିଁକି ସେମାନଙ୍କ ସହିତ ମୋର କିଛି ସଂପର୍କ ନାହିଁ, ଆବଶ୍ୟକତା କ'ଣ ବା ମୋର—କେଉଁ କାମରେ ବା ମୋର ଲାଗିବେ ସେମାନେ ?"

କହୁଥାନ୍ତି ଖୁବ୍ ଧୀରେ ଧୀରେ ସେ—କଥାଗୁଡ଼ିକ ତାଙ୍କର ଖୋଜା ହେଉଥାଏ ସାବଧାନରେ ଅତି ସେମିତି କାହାକୁ ଜଣେ, ଯିଏ ଏକମତ ହେବ ତାଙ୍କ ସଙ୍ଗରେ, ମାନିନେବ ତାଙ୍କୁ, ତାଙ୍କ କଥାକୁ— ପଥରମିସ୍ତ୍ରୀ ସାଧାରଣତଃ ଏହା ହିଁ କରୁଥିଲେ ।

"ସେମାନେ କେହି ବିଦେଶୀ ବାପମାଆଙ୍କର ବିଦେଶୀରେ ଜନ୍ମ ନୁହଁନ୍ତି— ସେମାନେ ବାହାରେ ଜନ୍ମ ।" ଜୋର ସହିତ କହୁଥାନ୍ତି ପିଓଚ, ଅତି ରୁକ୍ଷ ଉହନ୍ତାରେ, କ୍ରୋଧରେ—

"ବାହାରେ ଜନ୍ମ,—କୁଳର ବାହାରେ, ପରିଧି ବାହାରେ" 'ଖ୍ରୀଷ୍ଟ'ଙ୍କ ଗୁଡ଼ ବାହାରେ, ବାହାରେ ଖ୍ରୀଷ୍ଟଙ୍କ ଗୁଡ଼ ଚଳନ୍ତି ସେମାନେ—"

"ଗ୍ରିଗୋରିର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠୁଥାଏ।"

"ଯାହା ଇଚ୍ଛା ତାହା କହ, ମୋ କଥା କହିଲେ ମୁଁ ଗ୍ରହଣ କରିବି ବିଶୁଦ୍ଧ ଶିଏ, ଶୁଦ୍ଧ ଜନ୍ମ ଯାହାର, ଅର୍ଥାତ୍ ଋଷୀୟ, ସଲଖ ଦୃଷ୍ଟି ଯାହାର — ଋଷୀୟ ! ଇହୁଦୀଫିଯୁଦୀ ସ୍ପହେଁ ନାଁ ମୁଁ, ସେଗୁଡ଼ାକଙ୍କଠି କାମ ନାହିଁ ମୋର, ଜୀବନ ପଥରେ ବି ଦୃଷ୍ଟିପାରୁ ନାହିଁ ଭଗବାନ କାହିଁକି ଗୁଡ଼ାଏ ବିଦେଶୀ ସୃଷ୍ଟି କରିଛନ୍ତି ! ଗମ୍ଭୀର ତତ୍ତ୍ୱ ଏ-ନିଗୂଢ଼ ଜ୍ଞାନ କିଛି !"

ଗମ୍ଭୀର ହୋଇ କ୍ରୋଧରେ ଯୋଗକଲେ ପଥର ମିସ୍ତ୍ରୀ ।

"ହଁ ଗମ୍ଭୀର ହୋଇପାରେ, ନିଗୂଢ଼ ହୋଇପାରେ, କିନ୍ତୁ ସଂସାରରେ ଇମିତି ଅନେକ କିଛି ଅଛି ଯାହାସବୁ ବିନା ଚଳି ହେବ, ଚଳିପାରିବୁ ଆମେ ସମସ୍ତେ ।"

"ହଁ, ଅନେକ କିଛି ଅଛି, ଯାହା ବିନା ଆମେ ସବୁ ଚଳିପାରିବୁ ବେଶ୍ ।

"ଏପରିକି ତୁମର ମନ୍ତବ୍ୟଗୁଡ଼ାକ ମତାମତ ଗୁଡ଼ିକ ବିନା,ଉଦାହରଣ ସ୍ୱରୂପ କହିଲେ । ସବୁବେଳେ ସଂଘର୍ଷ, ଲଢ଼ାଲଢ଼ି ପାହାର ଉପରେ ପାହାର ପିଠିରେ, ଗଡ଼ାଗଡ଼ି ।"

ଓସିପ୍ ନିଜକୁ ରଖିଥାନ୍ତି ଅନ୍ୟମାନଙ୍କଠୁଁ ଦୂରଛଡ଼ା କରି, ଅଲଗା କରି— କେବେହେଲେ ସ୍ପଷ୍ଟ ନ ଥାନ୍ତି କାହା ସହିତ ଏକମତ କି ନୁହଁନ୍ତି, କାହା ସହିତ ମତର ଅମେଳ ଥାଏ ତାଙ୍କର । ବେଳେବେଳେ ଲାଗୁଥାଏ, ପ୍ରତ୍ୟେକଙ୍କର କଥା ସେ ମାନି ନେଉଥାନ୍ତି, ପ୍ରତ୍ୟେକଙ୍କ ସହିତ ମତ ମିଳୁଥାଏ ତାଙ୍କର, କିନ୍ତୁ ଅଧିକାଂଶ ସମୟ ଲକ୍ଷ୍ୟ କରି ହେଉଥାଏ, ପ୍ରତ୍ୟେକ କଥା ପ୍ରତି ବିତୃଷ୍ଣା ନିରାଶ ଆସି ଯାଉଥାଏ ତାଙ୍କର—ସମସ୍ତଙ୍କୁ ସେ ଦେଖୁଥାନ୍ତି, ମଣୁଥାନ୍ତି ବୋକା ନିର୍ବୋଧ ବୋଲି !

"ଏଃ, ଘପୁରି ଛୁଆଗୁଡ଼ା କି ତମେ ଏଃ !" ସେ ଏମିତି ଡାକୁଥାନ୍ତି ପିଓତ୍ର' ଗ୍ରିଗୋରି ଆଉ ସ୍କେଫିମୁସ୍କାକୁ ।"

"ସେମାନେ ଅଳ୍ପ ଅଳ୍ପ ହସି ଦେଉଥାନ୍ତି, ସେମିତି କିଛି ଖୁସିରେ ନୁହେଁ କି ଉତ୍ସାହରେ ନୁହେଁ, ତଥାପି ହସୁଥାନ୍ତି ସେମାନେ ।"

ମୋ ମାଲିକ ମତେ ଖାଇବା ପାଇଁ ଧନକୁ ଧରେଇ ଦେଉଥାନ୍ତି ପାଞ୍ଚ କପେକ୍—ଏମିତି ଅଣ୍ଟୁ ନ ଥାଏ, ଯଥେଷ୍ଟ ହୋଇ ନ ଥାଏ—ଅନେକ ସମୟରେ ଭୋକରେ ରହୁଥାଏ ମୁଁ—ଏହା ଦେଖିପାରିଲା ପରେ ଶ୍ରମିକମାନେ ମତେ ଡାକୁଥାନ୍ତି ସେମାନଙ୍କ ସଙ୍ଗରେ ଦିନରେ ଆଉ ରାତିରେ ଖାଇବା ପାଇଁ । କେମିତି କେବେ

କେବେ ଠିକାଦାରମାନେ ମୋତେ ସଙ୍ଗରେ ନେଇ ଯାଉଛନ୍ତି ମଦ ଖଟି, ଗୁହା ପିଆଇବା ପାଇଁ । ଆନନ୍ଦରେ ସହିତ ସେମାନଙ୍କ ନିମନ୍ତ୍ରଣ ଗ୍ରହଣ କରୁଥାଏ ମୁଁ, ସେମାନଙ୍କ ଡାକଘରେ ଯାଉଥାଏ ମୁଁ ! ସେମାନଙ୍କ ସଙ୍ଗରେ ବସିବା ପାଇଁ ସୁଖ ପାଉଥାଏ ମୁଁ, ଉପଭୋଗ କରୁଥାଏ ମୁଁ ଖୁବ୍; ବିଶେଷତରେ ସେମାନଙ୍କ ପାର୍ଟୀରେ ବସି ତାଙ୍କର ସବୁ ଗୁନ ଗୁନ କଥାବାର୍ତ୍ତା ଆଉ ଅଦ୍ଭୁତ ଗପ ଶୁଣିବାକୁ ଭଲ ଲାଗୁଥାଏ ମତେ—ସେମାନେ ବି ମୋର ଧର୍ମପୁସ୍ତକଗତ ଧର୍ମଜ୍ଞାନ ଦେଖି ମୁଗ୍ଧ ହେଉଥାନ୍ତି, ଖୁସି ହେଉଥାନ୍ତି ମୋ ଉପରେ ।

"ଊ ତ ବହିଗୁଡ଼ିକ ଗିଳିସାରିଲୁଣି ଗଲାଯାଏ ଘୋଷି ଘୋଷି ଏତେ ଭର୍ତ୍ତିକରି ସାରି ଚଢ଼େଇ ପେଟ, ଚଢ଼େଇ ପାକସ୍ଥଳୀଟା ତୋର, ଫାଟିବାକୁ ହେଲାଣି ସେଇଟା" ଓସିପ୍ କହିଲେ ମୋ ଉପରେ ତାଙ୍କର ନେଳିଆ ଆଖିଯୋଡ଼ିକ ଲଖେଇ ନେଇ, ସେହି ଆଖି ଦୁଇଟି ଯାହାର 'ସ୍ୱଚ୍ଛ' କଣ, ମର୍ମ କଣ ଧରିବା, ତାର ସନ୍ଧାଟି ବାହାର କରିବା ଥାଏ କଠିନ—ଆଖି ପୁଅଯୋଡ଼ିକ ଆଖିରେ ଲାଗିଥାଏ ତରଳ ଧଳା ଅଂଶରେ ମିଶି ଯାଉଥାଏ ଯିମିତି ।

"ସାଇତି ରଖ—ଗଣ୍ଠି ଧନ କରି ସାଇତି ରଖ ଜ୍ଞାନତକ—ଦିନେ ହେଲେ କାମରେ ଲାଗିଯିବ—ମିଳିଯିବ ହାତ ପାହାନ୍ତରେ, ବୟସ୍କ ହୋଇଗଲେ ହୁଏତ ଗୋଟିଏ ବାବାଜୀ ହୋଇ ପାରିବୁ, ପାଦ୍ରି ହୋଇ ପାରିବୁ—ଲୋକଙ୍କୁ ଆଶ୍ୱାସନା ଦେଇପାରିବୁ ସ୍ନେହର ଶାନ୍ତିର ବା କୃପାଳୁ ପଣିଆରେ ଦି'ପଦ କଥା କହି ନଇଲେ ବା ହୋଇ ପାରିବୁ କୋଟିପତି ଗୋଟାଏ ।"

"ଧର୍ମପତି କୋଟିପତି ନୁହେଁ, ଧର୍ମଯାଜକ"—ପଥର ମିସ୍ତ୍ରୀ ସଂଶୋଧନ କରିଦେଲେ ନିଜକୁ, କିନ୍ତୁ ଏଭଳି ଏକ ସ୍ୱରରେ କୌଣସି କାରଣରୁ ଯାହା ଶୁଭିଲା ଆହତ ହେଲା ପରି ।

"ଏ ?" ପଚାରିଲା ଓସିପ୍ ।

"ଧର୍ମପତି, ଧର୍ମଯାଜକ ଡକାଯାଏ ସେମାନଙ୍କୁ କହୁଛୁ, ତମେ କାଲି ହେଲଣି ନାଁ । କ'ଣ ?"

"ଆଚ୍ଛା, ହେଉ ପଛେ ହେଉ, ଧର୍ମପତି, ଧର୍ମଯାଜକ ଧର୍ମଦ୍ରୋହୀ ଅବିଶ୍ୱାସୀଙ୍କ ସଙ୍ଗରେ ତର୍କ କଲାବେଳେ କମ୍ପା ହୁଏତ ହୋଇପାରେ ରୁ ମିଶିପାରୁ ଯୋଗଦେଇ ପାରୁ—ଅବିଶ୍ୱାସୀଙ୍କ ସଙ୍ଗରେ—ସେଇଟି ଯେ ଇମିତି ଖସ୍ୱପ କଥାଟାଏ ହେବ ଯେ ତାର କିଛି ମୂଲ୍ୟ ସଂଲ୍ୟ ମିଳିବ ନାହିଁ, ଏହା ତ ନୁହେଁ ! ମଥାଟା ଖର୍ଚ୍ଚ କରୁ—ଠିକ୍ ବ୍ୟବହାର କରୁ ଯଦି···ଧର୍ମଦ୍ରୋହର ଅବିଶ୍ୱାସରୁ ଫାଇଦା ଉଠାଇ ଚାଲିଯାଇପାରିବୁ ଭଲରେ ।

ଗ୍ରିଗୋଶ୍କ କେମିତି ଅସ୍ୱସ୍ତିର ହସଟିକେ ହସିଲେ—ଆଉ ଦାଢ଼ି ଗହଳରେ ଟୁପ୍ ଟୁପ୍ ହେଲେ ପିଓଟ ।

"ଡାହାଣୀ, ଚିରଗୁଣୀ ଯେ ଖରାପ ଭାବରେ ଚଳନ୍ତି, ଜୀବନ କଟାନ୍ତି, ଏମିତି ତ ନୁହେଁ, ଅଉ ଯେତେ ଯିଏ ଭଗବାନ-ଅବଶ୍ୱାସୀ ଜୀବ ଅଛନ୍ତି ସେମାନେ ବି ।"

"ଡାହାଣୀ, ଚିରଗୁଣୀଗୁଡ଼ାକ ତ ଅଉ ପଣ୍ଡିତ ହୁଅନ୍ତି ନାହିଁ, ପଣ୍ଡିତ ନୁହନ୍ତି । ଡାହାଣୀ ଚିରଗୁଣୀଙ୍କର ବହି ପଢ଼ାର ଆବଶ୍ୟକତା କଣ ଥାଏ ?" ଅପତ୍ତି କଲେ ଓସିପ୍ ମୋ ·ଆଡକୁ ମୁହଁ ବୁଲାଇ "ହେଇ, ଶୁଣ ଯାହା କହୁଛି—ଏକ ସମୟରେ ଆମ ଅଞ୍ଚଳରେ (ଭୋଲୋଗ୍ଡା)ରେ ଥିଲା, ନହାତି ଗୋଟିଏ ନିଃସଙ୍ଗ ଏକୁଟିଆ ଲୋକଟିଏ, ନାଁ ଟା ରେ ତାର ରୁଶାନକଭ । ନକମା ନିରକ୍ଷଟାଏ । ଥାଏ, ଚଲୁଥାଏ ଚଢେଇ ପରଭଳି—ଏଠି ସେଠି ଯେଉଁ ଆଡ଼କୁ ପବନ ବହୁଥାଏ ଯେତେବେଳେ ସେ ଆଡ଼େ । ଶ୍ରମିକ ନୁହେଁ, କାମଦାମର ନୁହେଁ, ବାରବୁଲା ଛତର ମାଗନ୍ତା ନୁହେଁ । ଦିନେ ଆଉ କିଛି ଅଧିକା ଭଲ କାମ କରିବାକୁ ତ ପାଇଲା ନାହିଁ, ·ବାହାର ପଡ଼ିଲା ତୀର୍ଥ କରି । ଦି'ବର୍ଷ କାଳ, କୁଆଡ଼େ ଗଲା—ଅନ୍ତର୍ଦ୍ଧାନ ହୋଇଗଲା ତା'ପରେ ହଠାତ୍ ଦିନେ ଆସି ହାଜର ହୋଇଗଲା, ଅଲଗା ରୂପରେ ଅଲଗା ଧରଣର ପୋଷାକପତ୍ର ପିନ୍ଧି—କେଶକୁ କେଶ ବାଳ ଓହଳି ପଡ଼ୁଥାଏ କାନ୍ଧ ଉପରେ, ଖପୁରି ଉପରେ ଠିକ୍ ପାଦ୍ରି ଟୋପି—ପୁରୁଣା ଫିମ୍ପିମିଆ ରଙ୍ଗୀନ୍ ଆଲଖାଲ ଦେହରେ, ଭୀଷଣ ଦୃଷ୍ଟିରେ ଭ୍ରୁକ୍ଷି ଦେଉଥାଏ ଯେମିତି ଲୋକଙ୍କ ଗ୍ରୁଡିକୁ, କହି ହେଉଥାଏ ଚିତ୍କାର କରି ଅନବରତ—'ଅନୁତାପ କର ରେ ଅନୁତାପ କରସବୁ—ତିନି ତିଥର ନରକଯାତ୍ରୀ ସବୁ ଅନୁତାପ କର !' ଅନୁତାପ କରିବାକୁ କିଏ ନିବର୍ତ୍ତାଇ ପାରିବ ଲୋକଙ୍କୁ ବିଶେଷରେ ମାଇପିଲୋକଙ୍କୁ । ଚମତ୍କାର କାରବାର ଚଳାଇଲା ସେ ରୁସନକଭ । ଖାଇବାକୁ ପାଇଲା ପ୍ରଚୁର—ପିଇବାକୁ ପାଇଲା ସୁରା ବହୁତ । ଆଉ ରୁସନକଭ ଯେତେ ଯେଉଁ ମାଇକିନିଆଙ୍କୁ ପାଇଲା ଭୋଗ କରିବାକୁ ସମସ୍ତଙ୍କୁ ।"

"ଖିଆପିଆଟା ଧରାଯାଏ ନାହିଁ, ଗଣନାକୁ ଆସେ ନାହିଁ ।" ଓସିପ୍ କଥାରେ ବାଧାଦେଇ ରାଗରେ କହିଲେ ପଥରମିସ୍ତ୍ରୀ ।

"କେଉଁଟା ଆସେ, କେଉଟା ଆସେ ତମ ଗଣନାକୁ ଆଉ ?"

"କଥା, ଉକ୍ତି, ମୂଲ୍ୟ ବେଶି ତା'ର ।"

"ଅଚ୍ଛା, ଅଚ୍ଛା, ମୁଁ ତା' କଥାଗୁଡ଼ାକୁ ଦେଖି ନାହିଁ । ମୋର ବି ଅଧିକା କଥା ଅଛି, ମୋର ନିଜ ସମ୍ପର୍କରେ କ'ଣ କରିବାକୁ ହେବ ତା' ଜାଣିବା ପାଇଁ ।"

"ଆମେ ଜାଣୁ, ଚିହ୍ନୁ, ରୁସନକଭଙ୍କୁ, ତମିତ୍ରି ଭାସିଲିୟେଭିଚ୍ ତାର ନାମ, ତାର ବଂଶର ସାଙ୍ଗ ।" ଆହତ ସ୍ୱରରେ କହିଲେ ପିଓଟ ଆଉ ଗ୍ରିଗୋଟ ଚୁପ୍ଚାପ୍ ତଳକୁ କରିନେଲେ ଆଖି ଯୋଡ଼ିକ—ଗୁହାଳିରହିଥିଲା ତାଙ୍କ ସୁରା ଗିଲାସକୁ ।

"ଆରେ ନା ନା, ମୁଁ ମୂକ୍ତ ସଂକ୍ର କରିବାକୁ ବାହାରୁନ ।" ଆପୋଷ ମିଳାମିଶାଟା ଆଣିବା ଅଭିପ୍ରାୟରେ ଘୋଷଣା କଲେ ଓସିପ୍, "ମୁଁ—ଖାଲି ଯାଉଥିଲି ମ୍ୟାକ୍‌ସିମିଚକୁ ଦେଖେଇ ଦେବାଲାଗି ପ୍ରତିଦ୍ୱନ ଖାଇବା ମୁଠାକ କି କି ବଭିନ୍ନ ଉପାୟରେ, ପନ୍ଥାରେ ଅର୍ଜନ କରିହେବ ।"

"ସେଥିରୁ କେତେକ ପନ୍ଥା ଅବଲମ୍ବନରେ ପଥ ପଡ଼ିଛି କେଲକୁ ।"

"ହଁ, ଅନେକଗୁଡ଼ିଏ ପନ୍ଥା," ମାନିନେଲ ଓସିପ୍ । "ଅତି ସାମାନ୍ୟ କେତୋଟି ପଡ଼ିଛି ଧର୍ମଚର୍ଚ୍ଚାକୁ—ପାଦ୍ରି ପଣକୁ କେଉଁଠି କେମିତି ମୋଡ଼ ବୁଲିବାକୁ ହେବ, ତମକୁ ଜାଣିବାକୁ ହେବ ।"

ରାଜମିସ୍ତ୍ରୀ ଓ ପଥରମିସ୍ତ୍ରୀଙ୍କପରି ଲୋକଙ୍କ ସମ୍ପର୍କରେ ମତାମତ ଦେଉଥିବେଳେ ଶେଷୋକ୍ତ ପ୍ରକାଶ ପାଉଥିଲା, ହୁଏତ ସେ ସେମାନଙ୍କୁ ଭଲଚକ୍ଷୁରେ ଦେଖୁ ନ ଥିଲେ—ଭଲ ପାଉ ନ ଥିଲେ, କିନ୍ତୁ ବଡ ସତର୍କତାର ସହିତ ନିଜର ମନୋଭାବକୁ ସେ ଗୋପନ ରଖି ପାରୁଥିଲେ । ସାଧାରଣ ଭାବରେ ଦେଖିବାକୁ ଗଲେ ଲୋକଙ୍କପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀଟା ଠଉରାଇବା କାଠିକର ପାଠ ଥିଲା ।

ସ୍ମେଫିମୁସ୍‌କାଙ୍କ ପ୍ରତି ଅଧିକ ଉଦାର ଓ ସଦୟ ବ୍ୟବହାର ଥିଲା—ଅଧିକ ଭଦ୍ର ଓ ମଧୁର । ଗ୍ରୁଚଗଡ଼ାଲିଟି ଅଂଶ ଗ୍ରହଣ କରୁ ନ ଥିଲେ ଭଗବାନ, ନ୍ୟାୟାନ୍ୟାୟ, ଗୋଷ୍ଠୀ ସମ୍ପ୍ରଦାୟ ଅଥବା ମଣିଷର ଦୁଃଖ ଦୁର୍ଦ୍ଦଶା ସମ୍ପର୍କୀୟ ଆଲୋଚନାରେ, ସେହି ଯେଉଁ ବିଷୟଗୁଡ଼ିକ ଥିଲା ତାଙ୍କ ସାଥୀମାନଙ୍କର ଅତି ପ୍ରିୟ ଆଲୋଚ୍ୟ ବିଷୟ—ଚୌକିଟିକୁ କରିଆଡ଼ିଆ କରି ବସୁଥିଲେ ସେ ଯେମିତିକି କୁକଟା ସେଥିରେ ବାଜି ଘଷି ହେବ ନାହିଁ—ଦସିଦସି ଗିଲାସକ ପରେ ଗିଲାସେ ଗିଲାସେ ଚାହା ପିଉଥିଲେ ସେ ଶାନ୍ତଭାବରେ—କିନ୍ତୁ ଥାଇ ଥାଇ ହଠାତ ସତର୍କ ହୋଇ ଉଠୁଥିଲେ, ଧୂଆଁମୟ ଘରଟାରେ ଚାରିଆଡେ ଆଖି ବୁଲାଇ ନେଉଥିଲେ—ବିଚାର ସ୍ୱରଗହଳ, କୋଳାହଳ ଭିତରୁ କ'ଣ ଶୁଣୁଥିଲେ କାନପାରି, ଶେଷରେ ଭୂଷ୍‌କନ କୁଦା ମାରିଲା ଭଳି ଉଠପଡ଼ି ସେ ଉଭାଇ ଯାଉଥିଲେ ସେଠାରୁ, ତାହାର ଅର୍ଥ ତାଙ୍କର ମହାଜନଙ୍କ ଭିତରୁ ମହାଜନ ଥିଲେ ତାଙ୍କର ଉଜନେ ଉପର—ଜଣେ ଆସି ପାଦ ଦେଇଥିଲା ସେତେବେଳେ ମଦଖଟିରେ, ସେହି ମହାଜନଙ୍କ ଭିତରୁ କେତେକ ନିର୍ଧୁମ ପାହାର ବସାଇ ଋଣ ଆଦାୟ କରିବାର ପ୍ରବଣତା ଦେଖାଉଥିଲେ, ଏଣୁ ଗ୍ରୁଚଗଡ଼ାଲି ଡେଇଁପଡ଼ି ଖସିଯିବା ଛଡ଼ା କଣ ବା ପାରିଥାନ୍ତେ ଆଉ ।

"କିମିତି ମଜାର କୌତୁକିଆ ସେମାନେ, ଯିମିତି ବେଙ୍ଗରୁ ଡୁଗୁଲ ଛୁଟିକି ପଡ଼ନ୍ତି । ଟିକିଏ ଚକିତ ଚକିତ ଭାବରେ କହୁଥିଲେ ସେ, "ଖୁସିରେ ପୁର୍ବ ଦିଅନ୍ତି ମୁଁ ସେମାନଙ୍କୁ ନିଦ ଯଦିଷ୍ଠା କିଛି ସମ୍ବଳ ଥାଆନ୍ତା ମୋର ।"

"ଫୁଃ, ପୁଲାଏ ଖଣ୍ଡେନା," ତାଙ୍କ ପଛେ ପଛେ ଓସିପ୍ ଫୋପାଡ଼ୁଥିଲା କଥାଟା !"

ବେଲେବେଲେ ଷ୍ଟେଫେମୁସକ୍ ବସି ରହୁଥିଲେ ପୁରାପୁରି ହଜିଯାଇ, ବୁଡ଼ିଯାଇ ଭାବନାରେ—ଚନ୍ତାରେ—କିଛୁ କେଉଁଠି ଦେଖି ପାରୁ ନ ଥିଲେ, ଶୁଣି ପାରୁ ନ ଥିଲେ—ହାଡ଼ୁଆ ମୁହଁଟିରେ ତାଙ୍କର ଫୁଟି ଉଠୁଥିଲା, କଷ୍ଟିଷତା ଓ ଶୀଥିଳତାର ଭାବ—ସ୍ନିଗ୍‌ଧ ଉଦାର ଆଖି ଯୋଡ଼ିକରେ ଖେଳିଯାଉଥିଲା ଅଧିକ ଦସ୍ଥାଦ୍ର୍ରତାର ଛାୟା ।

"କଣ ସବୁ ଭାବୁଛ ରେ ଦୋସ୍ତ ?" ସେମାନେ ପଚାରୁଥିଲେ ତାଙ୍କୁ ।

"ଭାବୁଚ ମୁଁ ଧମାଟାଏ ହୋଇଥାନ୍ତି କ—ବଡ଼ଲୋକଟା ବାହା ହୁଅନ୍ତି ପ୍ରକୃତରେ 'ଖାଣ୍ଟି' ମହିଳାଟିଏ, ଭଦ୍ର ସଂଭ୍ରାନ୍ତ କୁଳର ସ୍ତ୍ରୀଲୋକ—ମୁଁ ଯିମିତ ଚକ୍ରୁଚ ତାକୁ ଖାପ ଖାଇଲାଭଳି—ସତ, ଗୋଟାଏ ସୈନ୍ୟାଧକ୍ଷର ଝିଅ—ଧର କଥାକୁ କହିଲେ ତାକୁ କଣ ମୁଁ ଭଲ ପାଆନ୍ତି ନାହିଁ—ତା' ସହିତ ପ୍ରୀତି କରନ୍ତି ନାହିଁ । ହେ ଭଗବାନ ! ତା' ପାଖେ ପାଖେ କେତେ ଶୀଘ୍ର, କେତେ ଚଞ୍ଚଳ ଜଳିଯାନ୍ତି ମୁଁ, ଭସ୍ମ ହୋଇଯାନ୍ତି ମୁଁ । କଥାଟା ଇମିତ ବୁଝିଲ ଭାଇଏ : ଥରେ ନୂଆ ଗ୍ରାମଟାଏ ଗଢ଼ୁଥାଏ ଗୋଟାଏ ପଲ୍ଲୀ ନିବାସର—ସେଇଟା ଥିଲା ଜଣେ ସୈନ୍ୟାଧକ୍ଷଙ୍କର (କର୍ଣ୍ଣେଲ)ଙ୍କର······"

"ଯାହାର ଥିଲା ବିଧବା ଝିଅଟିଏ । ଶୁଣିଛୁ, ସବୁ ଶୁଣିଛୁ ଆମେ !" କଥା ମଝିରେ ବାଧାଦେଇ ଚଡ଼େଇକର କହିଲା ପିଓନ ।

କିନ୍ତୁ ଷ୍ଟେଫେମୁସ୍‌କା ଟିକେ ବିଚଳିତ ନ ହୋଇ କହି ଲାଗିଲେ ପାପୁଲି ଦ'ଟାରେ ଆଣୁ ଦ'ଟାକୁ ଘଷି ଘଷି । ଆଗକୁ ପଛକୁ ଦୋହଲିଲା ବେଳେ ଭୁଜରେ ପାଖ ପବନକୁ ଦ' ଭାଗ କରି କରି ······

"ସେ ଝିଅଟିଏ ଆମୁଧାଏ ବଗିଚ୍ଛିଲା, ବାଗକୁ, ଏମିତ ତୋରା ତାରାପରି, ଭଲା ମେଞ୍ଚାଟାଏ ଯିମିତ—ଫୁଲୁ ଫୁଲୁ ଫୁଲୁ ଫୁଲୁ, ଗ୍ରାମ ଉପରେ ଥାଇ ତାକୁ ଅନାଇ ରହୁଥାଏ ମୁଁ, ଆଉ ଭାବ ହେଉଥାଏ ମନକୁ ମନ, ଆହାହା, ଏଇଠୁ ବିନା କ ଲୋଡ଼ା ଏ ସୂର୍ଯ୍ୟରେ, ଏତେ ଆଲୁଅରେ, ଏତେ ଉଷୁମରେ, କ ଲୋଡ଼ା ବା ଦୁନିଆଟାରେ । କପୋତଟିଏ ପ ରାଟିଏ ଭଳି ଗ୍ରାମ ଉପରୁ ଉଡ଼ିଯାଇଥାନ୍ତି କ ଲୋଟିଯା'ନ୍ତି ତା' ପାଦତଳରେ । ବାସ ଚହଟାଇ କ ଫୁଟିଲି ଫୁଲଟାଏ ଥିଲା ସେ—କ ହୃଦୟମନଲୋଭା କ ଫୁଲ ସତେ, ସତେ କ ସର ଲକ୍ଷଣୀ ସରାରେ ଆରେ ପିଲ୍ ରେ ! ଆରେ ! ତା'ପରି ମହିଳାଟାଏ, ମିତଣୀଟାଏ ପାଇଲେ ଜୀବନଟା ତ ପାଲଟିଯିବ ଗୋଟାଏ ଗୀତ, ସୁଦୀର୍ଘ ଗୀତ ।"

"ଆଜ୍ଞ ଖାଇବୁ ପିଇବୁ କଣ ? ଖାଇବା କଥାଟା ?" କଠୋର ସ୍ୱରେ ଜବରଦସ୍ତ କରି କହିଲେ ପିଓଟର । ଏଥିା ବି ଚଙ୍କେଇ ଡେଡେଇ ପାରିଲା ନାହିଁ ସ୍ନେଫିମୁସ୍କାଙ୍କୁ ।

"ହାୟ ଭଗବାନ !" ପାଟିକରି କହିଲା ଆଶ୍ଚର୍ଯ୍ୟ ହୋଇ ସ୍ନେଫିମୁସ୍କା ! "ତମେ କ'ଣ ଖାଇବାକୁ ଲୋଡ଼ୁଛ ଆଜ୍ଞ ? ପୁଣି ତା'ଭଲି ସୁରସରେ ଧମା ଥାଉଁ ଥାଉଁ ପାଖରେ ?"

ହସି ପକାଇଲା ଓସିପ୍ ।

"ଏଣ୍ଡକ କଷ୍ଟି ଆଟାରେ ରୁ ସ୍ନେଫିମୁସକା ! ଏଇ ଯେଉଁସବୁ କାରବାରରେ ମାତଚ୍ଛୁ ଭୁଇ ଯିବୁ ଯେ, ସେଇଥିରେ ଛୁଡ଼ହଡ଼ ସାଫ୍ ହୋଇଯିବୁ ।"

ଉଣିଲଙ୍କ କଥା ଛଡ଼ା ଆଉ କାହା ସମ୍ପର୍କରେ କ କେଉଁ ବିଷୟରେ ପଦେ ହେଲେ କିଛି ଶୁଣିବୁ ବାହାରୁ ନ ଥାଏ ସ୍ନେଫିମୁସ୍କାଙ୍କର । କାମରେ ବି ସେ ଧୀରସ୍ଥିର ଦୃଢ଼ଧରଣରେ ନ ଥିଲେ ଆଦୌ । ବେଳେବେଳେ କାମରେ ଲାଗି ପଡ଼ୁଥାନ୍ତି, କାମ କରୁଥାନ୍ତି ଶୀଘ୍ର ଶୀଘ୍ର, ଆଉ କେଡ଼େ ଚମତ୍କାର ଭାବରେ—ଅନ୍ୟ ବେଳେ ପୁଣି ନପଟ ନିକମାଗିରି ପ୍ରକାଶ ପାଉଥାଏ ତାଙ୍କଠି । କାଠ ମୁଗୁରଟାକୁ ଅନ୍ୟମନସ୍କ ଭାବରେ, ଅନ୍ୟମନସ୍କ ହୋଇ ବେକଜରିଆ ଭାବରେ ଅଯତ୍ନରେ ବ୍ୟବହାର କରୁଥାନ୍ତି ଏମିତି ଯେ ଯୋଡ଼ମୁହଁ ଗୁଡ଼ାକରେ ସନ୍ଧି ମରିବ କ'ଣ ଗୁଡ଼ହୋଇ ଯାଉଥାଏ ଫାଟଗୁଡ଼ାକ । ତାଙ୍କ ଦେହରୁ ବାହାରୁଥାଏ କାଠଫଟା ଯୋଡ଼େଇରେ ଲାଗୁଥିବା ତେଲର ଗନ୍ଧଟା, କିନ୍ତୁ ତାଙ୍କ ନଜର ଗୋଟାଏ ଚମତ୍କାର ମଧୁରିଆ, ପ୍ରୀତିକର ମହକ ଥାଏ—ବାହାରୁଥାଏ ଯାହା ତାଙ୍କ ଦେହରୁ ସଦ୍ୟକଟା କାଠ-ଗରର ବାସନା ପରି ।

ଯେ କୌଣସି ବିଷୟରେ ସେହି ବଢ଼େଇଟି ସଙ୍ଗରେ ଗପ କରିବା ଆଲୋଚନା କରିବା ଥାଏ ବେଶ ହୃଦୟଗ୍ରାହୀ— ହଁ, ହୃଦୟଗ୍ରାହୀ ସତ କିନ୍ତୁ ସେମିତି ବେଶି ପ୍ରୀତିକର ସୁଖକର ନୁହେଁ ତାଙ୍କ କଥାଗୁଡ଼ିକ, ପ୍ରାୟ ସବୁବେଳେ ଥାଏ ସେମିତି ବିଶୃଙ୍ଖଳିଆ, ଶୁଣିବାର ଇଚ୍ଛାଟାକୁ ହଟେଇ ଦେଉଥାଏ ଯିମିତି—କହିବା କଠିନ କାହିଁକି ଅସମ୍ଭବ ଥାଏ—କେତେବେଳେ ସେ ପରିହାସ କରୁଥାନ୍ତି ଆଉ କେତେବେଳେ ପୁଣି ପ୍ରକୃତ ଆନ୍ତରିକତା ଓ ଗୁରୁତ୍ୱର ସହିତ କିଛି କହୁଥାନ୍ତି ।

ଗ୍ରିଗୋରିଙ୍କ ଆଲାପ ଆଲୋଚନାରେ ପ୍ରିୟତମ ବିଷୟ ଥାଏ ଭଗବାନଙ୍କ ସମ୍ପର୍କରେ—ଭଗବାନଙ୍କଠାରେ ଥାଏ ତାଙ୍କର ଅଟଳ ବିଶ୍ୱାସ—ତାଙ୍କୁ ହିଁ ପ୍ରାଣପଣେ ଭଲ ପାଉଥାନ୍ତି ଭକ୍ତି କରୁଥାନ୍ତି ସେ ।

"ଗ୍ରି ଗୋଷ୍ଠି", ଅରେ କହିଲି ମୁଁ ତାଙ୍କୁ, "ଜାଣିନାଁ ଲୋକ ଅଛନ୍ତି ଯେଉଁ-ମାନଙ୍କର ବିଶ୍ୱାସ ନାହିଁ ଭଗବାନଙ୍କଠି ?

ଅତି ମୃଦୁ ସ୍ୱରରେ ଟିକିଏ ହସି କହିଲେ ସେ ।

"କେମିତି ଯେ ? କଣ କହୁଚ୍ଛ ତୁ ?"

"ସେମାନେ କହନ୍ତି, ଭଗବାନ ନାହାଁନ୍ତି ।"

"ଓଃ, ହଁ, ମୁଁ ଜାଣେ ।"

ଗୋଟାଏ ଅଦୃଶ୍ୟ ମାଛିକୁ ଘଉଡ଼େଇ ଦେଲାଭଳି ହାତଟି ତାଛଲ୍ୟ କରି କହିଲାଗିଲେ ସେ—

"ମନେପକା, ମନେଅଛି ନାଁ ରାଜା ଡ଼େଭିଡ୍ କେମିତି କହିଥିଲେ, "ବୋକା ଯିଏ ମନରେ ପାଞ୍ଚେ, କହିହୁଏ 'ଭଗବାନ ନାହାଁନ୍ତି ?" ସ୍ୱରଦେଖି କେତେଯୁଗ ବିତିଗଲାଣି, କାହିଁ କେବଠୁ ସେଭଳି ଅନ୍ଧ, ଅଜ୍ଞାନ, ଅଜ୍ଞ ଲୋକଙ୍କ ସମ୍ପର୍କରେ ଗପ୍ପ ଚିଆସରିଛି—ନା ନାଁ, ଭଗବାନଙ୍କୁ ଛାଡ଼ି, ଭଗବାନଙ୍କୁ ନ ମାନି ଚଳି ପାରିବ ନାହିଁ—ତିଷ୍ଠି ପାରିବ ନାହିଁ ତୁମେ ।"

ଆଉ ଓସିପ୍ ମନ୍ତବ୍ୟଟା ଦେଲି ସତେ ଯେମିତି ଏକମତ ହୋଇ ଗ୍ରି ଗୋଷ୍ଠିଙ୍କ ସହିତ :

"ଦେଖ୍ ଅରେ ଚେଷ୍ଟା କର, ପିଓସଙ୍କୁ ତାଙ୍କ ଭଗବତ୍ ବିଶ୍ୱାସ ଟଳେଇବା ପାଇଁ—ସେଥିରୁ ତାଙ୍କୁ ବଂଚିତ କରିବା ପାଇଁ, ଦେଖେଇଦେବେ, ଠିକ୍ ଦେଖେଇ ଦେବେ ଯେ ସେ ଅଚ୍ଛାକର ।"

ଗମ୍ଭୀର ହୋଇଗଲା ହଠାତ ସୁନ୍ଦର ମୁଖମଣ୍ଡଳ ଗିଶ୍ଲନଙ୍କର—ଯେଉଁ ଅଙ୍ଗୁଳିଗୁଡ଼ିକର ନଖରେ ଚୂନସୁର୍କି ବହି ଶୁଖି ଖୋଳପା ବାନ୍ଧିଯାଇଥାଏ, ସେହି ଆଙ୍ଗୁଳି କେତୋଟିରେ ଦାଢ଼ିକୁ ଆଉଁସି ଦେଇ ଟିକିଏ କହିଲେ ସେ, ରହସ୍ୟମୟ ସ୍ୱରରେ :

"କେଉଁଠି କାହାର ରକ୍ତମାଂସର ଦେହରେ ବା ନିବାସ ନୁହେଁ ଭଗବାନଙ୍କର ? ବିବେକ ବୋଲି କହୁଛ ଯାହାକୁ, ପୁଣି ଅତି ନିଗୂଢ଼ ସତ୍ୟ ଯାହା ସେ ସବୁତ ଭଗବାନଙ୍କର ଦାନ ।"

"ଆଉ ପାପ ?"

"ପାପ ? ପାପର ଜନ୍ମ ରକ୍ତମାଂସ ଦେହରେ—ସଇତାନଠୁ ପାପ ତ ବାହାରିଛି, ବସନ୍ତ ଚିହ୍ନଭଳି ଦେହରେ—ନାଁ, ଆଉ କିଛି ନୁହେଁ, ଅଧିକା କିଛି ନୁହେଁ ତାଠୁ—ସେହିଁ ସବୁଠାରୁ ବଳି ବେଶି ପାପୀ, ବେଶି ପାପ କରେ, ଯିଏ ବେଶି ଚିନ୍ତା କରେ ପାପ ବିଷୟରେ । ତମ ମନରେ ଯଦି ପାପ ନାହିଁ, ମନକୁ ଯଦି

ପାପ ନ ଛୁଏଁ ଅର୍ଥାତ ତମ ମନ ଯଦି ଆଡ଼େଇ ହୋଇ ଚଲେ ପାପଠୁଁ - ତେବେ ତମେ କେବେହେଲେ ପଶିବ ନାହିଁ ପାପରେ, ପାପ କରିବେ ନାହିଁ, ପାପ ଚକ୍ରାର ବୀଜ ବୁଣେ କିଏ ଜାଣ ? ବୁଣେ ସଇତାନ୍, ରକ୍ତମାଂସର ମାଲିକ ।''

''କେମିତି କେଜାଣି, ସେ ଯାହାହେଉ, ମୁଁ ଭାବୁନ ଏମିତି ନୁହେଁ ଠିକ୍......'' ପଥର ମିସ୍ତ୍ରୀ କହିଲେ ବେଶ୍ ସଂଶୟର ସହିତ ।

''ଠିକ୍ ଏମିତି, ଠିକ୍ ନିଷ୍ପାପ ନିଷ୍କଳୁଷ ହେଉଛନ୍ତି ଭଗବାନ—ମନୁଷ୍ୟ ହେଉଛି ତାଙ୍କର ପ୍ରତିକୃତି, ତାଙ୍କର ରୂପକଳ୍ପ—ତାଙ୍କର ସ୍ୱରୂପର, ତାଙ୍କ ଭଳି । ପାପ କରେ ତାଙ୍କର ପ୍ରତିକୃତି, ତାଙ୍କର ରୂପକଳ୍ପ, ଯାହା ରକ୍ତମାଂସର ଶରୀର ! ତାଙ୍କର ସ୍ୱରୂପ ଯାହା ପାପ କରିବାର ଶକ୍ତି ନାହିଁ ତାହାର ସାରୂପ୍ୟହିଁ ଚେତନା—ସାରୂପ୍ୟହିଁ ମର୍ମର ଭାବ, ଆତ୍ମା !''

ଭଜସ୍ୱ ଦର୍ପରେ ସେ କହିସାରି ହସିଲେ—କିନ୍ତୁ ଟୁପ୍‌ଟାପ୍ ହୋଇ ଗୁନ ଗୁନ କହିଲେ ପିଓନ ।

''ମତେ ଲାଗୁଚି—ଠିକ୍ ଏମିତି, ଠିକ୍, ନୁହେଁ—ଠିକ୍...''

''ତମ ମତରେ ତମ ଦୃଷ୍ଟିରେ, ଓସିପ ଉତ୍ତର ଦେଲେ, କହିଲେ ପଥର ମିସ୍ତ୍ରୀଙ୍କୁ; ''ଯଦି ପାପ ନାହିଁ, ତେବେ ନାହିଁ, ଅନୁତାପ ନାହିଁ, ଅନୁଶୋଚନା ନାହିଁ । ଅନୁତାପ ନାହିଁ ଯଦି ନିର୍ବାଣ ନାହିଁ । ନିର୍ବାଣର ମୋକ୍ଷର ପ୍ରଶ୍ନ ନାହିଁ ।''

''ପ୍ରକୃତ ତ ଠିକ୍ କଥା ଏ ! ସଇତାନ ଯଦି ଦୃଶ୍ୟରେ ନାହିଁ, ଭଗବାନ ତେବେ ମନରେ କାହିଁ ?'' ଏଇ ଯା ବୁଢ଼ା ବୁଢ଼ାମାନେ କହିଆସୁଛନ୍ତି ଅଭ୍ୟାସ ବଶରେ ।''

''ମଦ ପିଉ ନ ଥିବାରୁ ଗିଶଲିନ—ଦୁ' ଗ୍ଲାସ ମଦ ପିଇଲା ପରେ 'ମାତାଲ' ବେଚୈନ ହୋଇଯାଉଥିଲେ ସେ, ମୁହଁଟା ଲାଲ ପଡ଼ିଯାଇଥିଲା—ଦିଶୁଥିଲା ଟେଲପୀ—ଆଖିଗୁଡ଼ିକ ଚଂଚଳ ପିଲାଙ୍କ ଆଖିଭଳି କୌତୁକିଆ ଆଉ ସ୍ୱରଟି ଶୁଭୁଥିଲା ଛନ୍ଦୋମୟ ଲାଳିତ୍ୟମୟ ।''

''ଆରେ ଭାଇ, କେତେ ଚମତ୍କାର କେତେ ଅଦ୍‌ଭୁତ ଜୀବନ ଆମର—ଟିକିଏ ଟିକିଏନାକୁ କାମ କରୁଚୁ, ଖଟୁଚୁ, ଜାଣିଛୁ କି ଭୋକଉପାସ କଣ ? କୃପା ଅପାର କୃପା ଅପାର କରୁଣା ପ୍ରଭୁଙ୍କର ! କେଡ଼େ ଚମତ୍କାର ଅପୂର୍ବ ଜୀବନ ଆମର !'

''ଝରଝର ହୋଇ ଲୁହ ଗଡ଼ିପଡ଼ିଲା ଗଣ୍ଡଦେଶରେ ତାଙ୍କର । ପଶମ ଦାଢ଼ିରେ ତାଙ୍କର ଗୋଟିକି ଗୋଟିକି ମାଳିଭଳି ଚକଚକ୍ କଲା ଟୋପାକୁ ଟୋପା ଲୁହ—ସର ସର ହୋଇ ପୁଣି କାଚଭଳି ଚକଚକ୍ ଲୁହ ଟୋପା ଦେଖି ବିରକ୍ତିରେ ଫେରି ଆସିଲା ମନଟା ତାଙ୍କ ଆଡ଼ୁ—ଭାବୁଥିଲେ ସେ ଯେଉଁ ସ୍ତୁତି ଗାନ କରୁଥିଲେ ଜୀବନର, ସେହି ଘଟନାଟା ହିଁ ଆଣିଦେଲା ମନରେ କେମିତି ଗୋଟାଏ

ବିମୂର୍ତ୍ତସ୍ୱର—ଆତ୍ମା'ର ସ୍ତୁତିଗାନ, ତାର ଅହରହ ପ୍ରଶଂସାଷ୍ଟା ଜୀବନ ପ୍ରତି ଅଧିକ ମାତ୍ରାରେ ସରଳ ସ୍ୱଚ୍ଛ ନିଷ୍କପଟ ଆଉ କମ୍ କ୍ଲାନ୍ତିକର ।

ଏହିସବୁ ଆଲୋଚନା ମତେ ସବୁବେଳେ କିପରି ଗୋଟାଏ ଉତ୍ତେଜିତ କରି ରଖୁଥାଏ, କିଭଳି, କେତେପ୍ରକାର ଅସ୍ପଷ୍ଟ ଭୟ ସଞ୍ଚାର କରୁଥାଏ ମନରେ ମୋର—ମିଷ୍ଟିକ (ସୁଫୀ ଗ୍ରାମୀଣ)ଙ୍କ ସମ୍ପର୍କରେ ବହୁ ଗଳ୍ପ, ବହୁ କାହାଣୀ ପଢ଼ିଥାଏ, ଶୁଣିଥାଏ ମୁଁ—ପୋଥିର ମଣିଷ ସେହି ମିଷ୍ଟିକ ଆଉ ପ୍ରକୃତ ବାସ୍ତବ ମିଷ୍ଟିକଙ୍କ ଭିତରେ ଆଖିଦୃଶିଆ ଅନୁଭବନୀୟ ପାର୍ଥକ୍ୟ କ'ଣ ଜାଣିଥାଏ ବି ମୁଁ—ପୋଥିପତ୍ରର ମିଷ୍ଟିକ (ସୁଫୀ) ସବୁ ଦେଖିଥାଏ ମୁଁ, ଥାଆନ୍ତି ଅଭାବଗ୍ରସ୍ତ ଅଭାଗା ଜୀବଗୁଡ଼ିଏ, ଭଲ ହୁଅନ୍ତି, ମନ୍ଦ ହୁଅନ୍ତି, ସେମାନଙ୍କ ଭିତରୁ କାହାରିଠିଁ ନ ଥାଏ ସ୍ୱାଭାବିକ ଭାବରେ ପ୍ରକୃତି, ସଜୀବ ପ୍ରକୃତ ଦେହଧାରୀ ମିଷ୍ଟିକଙ୍କ ଭଳି ଭାବବିଭବ ଓ ବାକ୍‌ବିଭବର ପ୍ରାଚୁର୍ଯ୍ୟ । ପୋଥିପତ୍ରର ମିଷ୍ଟିକ ଖୁବ୍ କମ୍ ଚର୍ଚ୍ଚା କରୁଥାଏ ଭଗବାନଙ୍କ ବିଷୟରେ—ଧର୍ମଗୋଷ୍ଠୀ, ଧର୍ମ ସମ୍ପ୍ରଦାୟ ଗୀର୍ଜ୍ଜା ଓ ଉପାସନା ସମ୍ପର୍କରେ ଆଲୋଚନା କରୁଥାଏ, ବିଶେଷ ଭାବରେ ତାହାଠାରୁ ଯେଉଁମାନେ ଉଚ୍ଚ ଉନ୍ନତ ଅବସ୍ଥାରେ ଥାଆନ୍ତି ସେମାନଙ୍କ ବିଷୟରେ ଆଲୋଚନା କରୁଥାଏ—, ଜମିଦାରଙ୍କ ଜୀବନରେ ତା ପ୍ରତି ଅନ୍ୟାୟ ଓ ଦୁଃଖଦୁର୍ଦ୍ଦଶା ସମ୍ପର୍କରେ—ଅତି ଅଳ୍ପ କିଛି କହୁଥାଏ, ପ୍ରାୟ କିଛି ଆଲୋଚନା କରୁ ନ ଥାଏ ସ୍ତ୍ରୀଲୋକଙ୍କର ସମ୍ପର୍କରେ, ସେମାନଙ୍କ ପ୍ରତି ତାର ମନୋଭାବ, ତାର ଦୃଷ୍ଟିଭଙ୍ଗୀ ଥାଏ ସେଭଳି କିଛି ଅଶାଳୀନ ସ୍ଥୂଳ ନୁହେଁ, ବରଂ ସ୍ନିଗ୍ଧ ଶୋଭନ, ଉତ୍କର୍ଷ-ପ୍ରବଣ । ପ୍ରକୃତ ମିଷ୍ଟିକ ବା ସୁଫୀଟିଏ ପାଇଁ ନାରୀ ଥାଏ ଚିତ୍ତବିନୋଦନର, ଆମୋଦପ୍ରମୋଦ, ଅନ୍ୟ ଏକ କାର୍ଯ୍ୟରେ କିଛି ସମୟ ନିୟୋଗ ପାଇଁ ସାମଗ୍ରୀ—ସାମଗ୍ରୀ ପୁଣି ଅତି ବିପଦଜନକ । ନାରୀଟିଏ ସହିତ ବ୍ୟବହାରରେ ଧୂର୍ତ୍ତ ଚତୁର ହେବାକୁ ପଡ଼ୁଥାଏ ତାକୁ, ନଦେଲେ ନାରୀ ଯେ ତାକୁ ପରାଭୂତକରି ତା'ର ବଳ ହରଣକରି ଧ୍ୱଂସ କରି ଦେଇଥାନ୍ତା ତାର ଜୀବନକୁ—ପୋଥିପତ୍ରର ମିଷ୍ଟିକ (ସୁଫୀ)ହୁଏତ ଭଲ ବା ହୁଏତ ମନ୍ଦ ପ୍ରକୃତିର ଦେଖାଯାଉଥାଏ ସତ, କିନ୍ତୁ ତାର 'ସମୁଦାୟ'ଟି ଥାଏ ନିର୍ଭୁଲ, ଠିକ୍ ସେହି ପୋଥିପତ୍ରରେ—ଅଥଚ ପ୍ରକୃତ ବାସ୍ତବ ମିଷ୍ଟିକ ଭଲ କି ମନ୍ଦ କୌଣସିଟି ନ ଥାଏ—ଆଉ ଅତି ବ୍ୟାପକ ବିପୁଳ ପରିମାଣରେ ଥାଏ ଅବୋଧ୍ୟ ରହସ୍ୟ-କୁଟୀଳ । ଯେତେ ବାଉଳଙ୍କ ଭଳି ବକ ବକ୍ କରୁଥିଲେ ବି ପ୍ରକୃତ ଅସଲ ମିଷ୍ଟିକଟିଏ ପାଖରେ ତାର ସାମନାରେ ତାର ଅନୁଭୂତ ହେଉଥାଏ, କିନ୍ତୁ କିଛି କଣ ଯେପରି ନିହିତ ଥାଏ ତାହାଠିଁ—ଯାହା ଅନୁକ୍ତ ରହିଯାଉଥାଏ ସବୁବେଳେ ପ୍ରାୟ, ସେହି କଣ କିଛି ପୁଣି ଥାଏ ତା' ନିଜପାଇଁ ଉଦ୍ଦିଷ୍ଟ କେବଳ, ଆଉ ଅନୁକ୍ତ, ଅପ୍ରକାଶିତ ରହୁଥାଏ ଯାହା ତାହା ହିଁ ସୃଷ୍ଟିହୁଥାଏ ତାର ମୂଳ ମର୍ମ, ସାରସତ୍ତ୍ୱଟିକ !

ପୋଥିପତ୍ରର ସବୁ ମିଷ୍ଟିକ ଚରିତ୍ର ମଧ୍ୟରୁ ମତେ ସବୁଠୁଁ ଭଲ ଲାଗୁଥିଲେ "ବଢ଼େଇ ଗୋଷ୍ଠୀ" (ଦ କାର୍ପେଣ୍ଟରସ ଆରଟେଲ) ବହିଟିର 'ପିଓନ ଚରିଷଟି'

ସୃଷ୍ଟିଲା, ଯାଉଛୁ ବହିଟି, ଆଖ୍ୟାନଟି ପଢ଼ି ଶୁଣାଇବ ବନ୍ଧୁମାନଙ୍କୁ—ସେଥିପାଇଁ ବହିଟିକୁ ନେଇଗଲି ମୋ ସାଥୀରେ ଥରେ ମେଳାପଡ଼ିଆକୁ । ସେଠି ମୋର ଗପଗୁଡ଼ିକ ଭିତରୁ ଅଧିକାଂଶ କହେଇଲି ଗୋଟିଏ ହେଲେ ଗୋଟିଏ—ଏଇଟି ନ ହେଲେ ସେଇଟି—ଶ୍ରମିକମାନଙ୍କ ଗୋଷ୍ଠୀରେ—ଅନେକ ସମୟରେ ହୁଏତ ଦିନମାନ ଖଟଣି ଯୋଗୁଁ କ୍ଲାନ୍ତ ହୋଇ ପଡ଼ିଥିବାରୁ ଘରକୁ ବାହୁଡ଼ି ପାରୁ ନ ଥିବା ହେତୁରୁ ।

ଯେତେବେଳେ କହିଲି ସେମାନଙ୍କୁ ବଢ଼େଇମାନଙ୍କ ସମ୍ପର୍କରେ ପାଉଛି ବହିଟିଏ, କି ଆଗ୍ରହ ଫୁଟିଉଠିଲା ସେମାନଙ୍କ ମନରେ, ଆଚରଣରେ ସତେ, ବିଶେଷକରି ଓଝିପଙ୍କର । ବହିଟି ନେଇଯାଇ ମୋ ହାତରୁ ପନ୍ନ ପରେ ପନ୍ନ ଓଲଟାଇ ଲାଗିଲେ ସେ—ଓଲଟାଇ ଲାଗିଲେ ତାଙ୍କର ସାଧୁସନ୍ଥ ମୁଣ୍ଡଟିକୁ ସଂଶୟାକୁଳ ଭାବରେ ହଲେଇ ହଲେଇ ।

"ସତେ ଯେମିତି ଏଇଟି ଲେଖାହୋଇଛି ଆମ ସମ୍ପର୍କରେ । ଆଃ, ଖବଲ ଦେଖି—ଏବେ ଖବଲ୍ କିଏ ଲେଖିଥିବ ସ୍ୱାଁକୁ ? ଜଣେ କିଏ 'ସାଥିନ୍' ସମ୍ଭ୍ରାନ୍ତ ଲୋକ ତ ? ହୁଁ, ମୁଁ ଖବୁଚ ଅନ୍ତତଃ ଏଇଆ ସମ୍ଭ୍ରାନ୍ତ ଲୋକଗୁଡ଼ାକ—ଆଉ ସରକାରୀ କର୍ମଚାରୀଗୁଡ଼ାକ କେଉଁ କଥାରେ ହାତ ନ ଦେଇ ଛାଡ଼ନ୍ତି—ହେଲେ କେଉଁଥିରୁ କେଉଁଠି ହେଲେ ଅଟକି ଯା'ନ୍ତି ନାହିଁ—କେଉଁଥିରୁ ନିରସ୍ତ ହୁଅନ୍ତି ନାହିଁ । ଭଗବାନ ଯାହା ଛାଡ଼ିଯାଆନ୍ତି ସରକାରୀ କର୍ମଚାରୀ, ଅଫିସରମାନେ ତାହା ସବୁ ଭର୍ତ୍ତି କରି ଦିଅନ୍ତି, ସେଇଥିପାଇଁ ତ ଅଛନ୍ତି ସେମାନେ ।"

"ଭଗବାନଙ୍କ ସମ୍ପର୍କରେ କିଛି କହିଲାବେଳେ ଭକ୍ତିରେ ସମ୍ମାନ ଦେଖାଇ କଥାବାର୍ତ୍ତା କରନ୍ତୁ ତମେ ?" ମତାମତ ଦେଲେ ପିଣ୍ଟେ !

"ହୁଁ ଠିକ୍ ତା ଠିକ୍ ! ମହାପ୍ରଭୁଙ୍କ ପାଇଁ ମୋ କଥାଗୁଡ଼ାକ ମୋ 'ଚନ୍ଦା' ମୁଃରେ ତ ତୁଷାର କଣିକା ପରି—ସେମିତି ସେତିକି ପରିମାଣରେ ଚଳାଫେରା କ'ଣ ? ତମେ ମୁଁ ଭଗବାନଙ୍କ ଯାଏ ପହଞ୍ଚି ପାରିଲୁ ଯାଇପାରିଲୁ ସେତିକି ଦୂର—ଠିକ୍ !"

ହଠାତ୍ ସେ ଜଳିଉଠିଲା ରାଗରେ—ଖାଖ ଖାଖ ଧାରୁଆ ଧାରୁଆ କଥା-ଗୁଡ଼ାକ ନଚେଇ ନଚେଇ ଫିଙ୍ଗିବାକୁ ଆରମ୍ଭ କରିଦେଲା ସ୍ଫୁଲିଙ୍ଗପରି ଝକମକରୁ—ସିଧାସଳଖ ମୁହାଁଇ ସେଗୁଡ଼ିକୁ ଲକ୍ଷ୍ୟକରି ଯାହାକୁ ସବୁ ଘୃଣା କରୁଥିଲା ଫିଙ୍ଗି ଲାଗିଲା ତାହା ଉପରେ—ସେଦିନ ଭିତରେ ସେ କେଜାଣି କେତେ ଥର ପଗ୍ଳର ହେଲା :

"ଆମ ଆଗରେ କିଛି ପଢ଼, ପଢ଼ିବୁ ନାହିଁ ମ୍ୟାକ୍ସିମିଚ ? ଭଲ, ଖୁବ୍ ଭଲ ! ବଢ଼ିଆ କାମଟା ଚଳା କରିଛ, କରୁଛୁ ।"

"କାମ ଶେଷ ହୋଇଗଲା ପରେ ସେଦିନ—ଆମେ ସବୁ ଫେରି ଆସିଥାଉ ତା'ଦଳର—ଟିଂ କୁଡ଼ିଆକୁ, ରାତ୍ରି ଭୋଜନ ପାଇଁ ଖାଇପିଇ ସାରି ପିଓନ ତା ଶ୍ରମିକ ଆର୍ତ୍ତେଲିଅକୁ ଆଉ ଶିଶୁଲିନ 'ଫୋମା' ଗୋଟିଏ ଟୋକାକୁ ସଙ୍ଗରେ ଧରି ଆସି ପହଞ୍ଚିଲେ। କୁଡ଼ିଆରେ ସେଠି ଯେଉଁଠି ଶୋଉଥିଲେ ଶ୍ରମିକମାନେ ବତୀଟିଏ ଜଳାହେଲା ସେଠାରେ ଅଉ ପଢ଼ିବାକୁ ଆରମ୍ଭ କରିଦେଲୁ। ଟିକିଏ ହେଲେ ହଲଚଲ ନ ହୋଇ ଭିଁ ଚୁଁ ନ ହୋଇ ଶୁଣୁଥାନ୍ତି ସମସ୍ତେ। ସେତେବେଳେ ଆର୍ତ୍ତେଲିଅନ ସମ୍ଭାଳି ନହୋଇ ଵିରକ୍ତିରେ କହି ଉଠିଲା ପାଟି କରି।"

"ହେଲଣି, ବହୁତ ହେଲଣି ମୋର।"

"ବାହାରିଗଲା ସେ—ସମସ୍ତଙ୍କ ଭିତରୁ ଗ୍ରିଗୋରି ପହିଲେ ଶୋଇ ପଡ଼ିଲେ। ମୁହଁଟା ଓହଳି ପଡ଼ିଲା ତାଙ୍କର—ଫୁଟି ଉଠିଲା ସେଥିରେ ଗୋଟାଏ ବିସ୍ମୟର ଭାବ ! ଅଉ 'ବଢ଼େଇମାନେ' ତାଙ୍କର ପନ୍ଥା ଧରିଲେ—ଚାଲି ପଡ଼ିଲେ ଜଦରେ ଗୋଟିକ ଗୋଟି—ପିଓନ, ଓସିପ୍ ଆଉ ଫୋମା କେଲୁ ବେଢ଼ି ରହିଲେ ମୋତେ ମୋ ଦେହକୁ ଲଗି ଏବଂ ମନକଷ୍ଟ ଦେଇ ପ୍ରାଣପଣେ ଶୁଣି ଲଗିଲେ।

ପଢ଼ା ଶେଷ କଲା ମାତ୍ରେ ମୁଁ, ଓସିପ୍ ନଭେଇ ଦେଲା ବତୀଟିକୁ—ତାରା-ଗୁଡ଼ିକ ଆକାଶରେ ଜଳୁ ଜଳୁ ହୋଇ ଦେଖେଇ ଦେଲେ ପ୍ରାୟ ଦୁ' ପ୍ରହର ରାତି ଗଡ଼ିଗଲଣି—ପାହାନ୍ତିଆ ହେବା ଉପରେ।

ଅନ୍ଧାରରେ ପଚାରିଲେ ପିଓନ :

"ସେଭଲି ଗୋଟିଏ ବହିର ମର୍ମ କଣ ? ଉଦ୍ଦେଶ୍ୟ କଣ—କାହା ବିରୁଦ୍ଧରେ ସ୍ୱା' ?"

"ଆଃ, ଉଚ୍ଚୁର ହୋଇଗଲଣି, ଚାଲ, ଗଡ଼ି ପଡ଼ିବା ଟିକିଏ—ଯୋଡ଼ା ମଡ଼ାଇ ମଡ଼ାଇ କହିଲେ ଓସିପ୍।"

ଗୋଟିଏ କଡ଼କୁ ମାଡ଼ବରେ ଘୁଞ୍ଚିଗଲା ଫୋମା।

"ମୁଁ ପଚାରିଲି, କାହା ବିରୁଦ୍ଧରେ ଲେଖା ଏ, କାହା ବିରୁଦ୍ଧରେ, ପୁନରା-ବୃତ୍ତି କଲେ ପିଓନ ବାଧ୍ୟ କରେଇବାର ଭାବରେ ଜବରଦସ୍ତ।"

"ସେମାନଙ୍କ ଜଣା," ଗୋଟିଏ ଭାଙ୍ଗିଆ ଉପରେ ବିଛଣା ଖେଳଉ ଫେଲଉ ଉତ୍ତରଦେଲେ ଓସିପ୍।

"ସାବତ ମା' ମାଗୁଡ଼ାଙ୍କ ବିରୁଦ୍ଧରେ ଯଦି ଲେଖା ହୋଇଥାଏ ତାହାହେଲେ କିଛି ଅର୍ଥ ନାହିଁ ସେଥିରେ—ସେମିତିଆ ବହିଟା କ'ଣ ଦୁନିଆର ସାବତମାଆଙ୍କୁ ସୁଧୁରାଇ ପାରିବ ?" ପଥର ମହାରଣା ଜୋର ସହିତ କହିଲେ, ଆଉ ତା' ଯଦି

ସିଓନ ବଗିଚାରେ, ତା' ହେଲେ କିଛି ଅର୍ଥଫର୍ଥ ନାହିଁ ତା'ର—ଯାହା ଆସୁଛି ଖେଳିବାକୁ ହେବ ହିଁ ତାହା ! ସେଇଆ ସହିଛି, ଖେଳିଛି ସେ ।" ଅରେ ଗୋଟାଏ ଖୁନ୍ କରିଥିଲେ ସେ—ହେବାର କଥା, ହବାସନ ଖେଳିଲା ସାଇବେରିଆରେ—ନ୍ୟାୟର କଥା ଯଥେଷ୍ଟ, ସେଭଳି ଘଟଣାରେ, ତା' ଖେଳିଲା ଭଳି ଘଟଣାରେ—କି ସାହାଯ୍ୟ ଦେଇପାରେ ବନ୍ଧୁ, କି କାମକୁ ଆସିପାରେନା ପାରେନା, ପାରିବ ନାହିଁ ।"

ଓସିପ୍ ଉତ୍ତର ଦେଲେ ନାହିଁ କିଛି, ପଥର ମହାରଣା ତେଣୁ ଉପସଂହାର କଲେ ନିଜ କଥାର ।

"ଏ ଲେଖକଗୁଡ଼ାଙ୍କର କିଛି କାମ ନାହିଁ—ତାଙ୍କର ସବୁ ବ୍ୟସ୍ତ ରହିବା ପାଇଁ, ତେଣୁ ଅନ୍ୟ ଲୋକଙ୍କ ବ୍ୟବସାୟରେ ବିଷୟରେ ଆଙ୍ଗୁଠି ଗେଞ୍ଜୁଥାନ୍ତି, ଗେଞ୍ଜି ହେଉଥାନ୍ତି ସେମାନେ—ଠିକ ପଲେ ମାଇପେ ଏକାଠି ହେଲେ, ହୁଅନ୍ତି ନିଜ ନିଜ ଭିତରେ ଯେମିତି । ଆଚ୍ଛା, ନମସ୍ତେ, ଶୋଇଲାବେଳେ ହୋଇଗଲାଣି ।"

ମୁହୂର୍ତ୍ତେ ସେ ଛିଡ଼ାହେଲେ, ଦ୍ୱାରମୁହଁ ଜନ୍ତୁ କରଣରେ, ଝାଳ ଝାଳ ଦ୍ୱାରମୁହଁ ଛକରେ, ପଚାରିଲେ :

"କ'ଣ ତମେ କହୁଚ, କ'ଣ ଭାବୁଛି ଓସିପ୍ ।"

"ଏଃ ?" ଭ୍ରୂକୁ ଭ୍ରୂକୁ ସ୍ୱରରେ ଉତ୍ତରଦେଲେ ଓସିପ୍ ।

"ଓଃ ଆଚ୍ଛା, ଠିକ୍, ଯା ଯା ଶୋଇବ ଯା ।"

ଶିଶିଲନ୍ ଯେଉଁଠି ବସିଥିଲା, ସେଇଠି ଲମ୍ବା ହୋଇଗଲା । ଫୋମା ଗଡ଼ିପଡ଼ିଲା ମୋ ପାଖରେ ପାଲବିଛଣା ଉପରେ—ଶୋଇପଡ଼ିଲା ସମୁଦାୟ ବସ୍ତିଟା— ଦୂରରୁ ଭାସି ଆସିଲା ରହି ରହି ରେଲ ଇଞ୍ଜିନର ଡାକ, 'ହୁଇସିଲ' ଲୁହା ଚକଗୁଡ଼ାକର ଖସି ଖସି ଘଡ଼୍ ଘଡ଼୍, ତବାକୁ ତବାଟଣା ଶିକୁଳିର ଝନ୍ ଝନ୍ ଶବ୍ଦ, ଏଣେ ଶ୍ରମିକ ଖୁଆଡ଼ଟା ଭରି ଉଠିଲା ଭିନ୍ନ ଭିନ୍ନ ସ୍ୱରମାନ—ଲମ୍ବରେ ଧୁଙ୍ଗୁଡ଼ିରେ—ମନଟା ଭାଜି ଯାଉଥାଏ ମୋର, ନିରାଶ ହୋଇପଡ଼ୁଥାଏ ମୁଁ, ଆଶା କରିଥିଲି ଯାହା ପଢ଼ିଲି, ଯାହା ଶୁଣିଲେ ସେମାନେ ସେ ବିଷୟରେ କିଛି ଆଲୋଚନା ହେବ ନିଶ୍ଚୟ—କିନ୍ତୁ କାହିଁ, କେହି କିଛି ପଦେ ଅଧେ କଥା ଆରମ୍ଭ କରି ନ ଥାନ୍ତି ।

ଓସିପ୍ ହଠାତ୍ କହି ଉଠିଲେ ଅତି ଧୀର ଭାବରେ, କିନ୍ତୁ ବେଶ୍ ପ୍ରାଞ୍ଜଳ ସ୍ୱରରେ ।

''ଏସବୁ କଥା ମନରେ ଧରନା, ମନକୁ ଆଣନା, ପିଲେ, ପିଲାଏ ସବୁ ତମେ—ସାରାଜୀବନଟା ପଡ଼ିଛି ତମ ଆଗରେ—ସାଇତି ରଖ ମନରେ ଯାହା ସବୁ ଶିଖୁଚ ଏବେ, ଯାହା ସବୁଧାରଣା କରୁଚ, ନିଜର ଗୋଟିଏ 'ଚିନ୍ତା'ର ଗୋଟିଏ କଥାର ମୂଲ୍ୟ—ଧାର ଉଧାର ଚିନ୍ତାର—ମାଗିଅଣା କଥାର ଦ'ଗୁଣ, କରେ ଶୋଇ-ପଡ଼ିଲୁଣି କରେ ଫୋମା ?''

"ନାଁ, ନାଁ", ସଙ୍ଗେ ସଙ୍ଗେ ଉତ୍ତରଦେଲା ଫୋମା, ଉତ୍କଣ୍ଠାରେ—

"ଦୁହେଁ ତମେ ଜାଣ, ପଢ଼ି ଜାଣ, ପଢ଼ ଏଣୁ, ଯେତେ ପାର ଆଗେଇ ଯାଅ ପଢ଼ିବାରେ କିନ୍ତୁ ବେଶି ଭରସା ରଖନା ତା' ଉପରେ । ସେମାନେ ଗ୍ରନ୍ଥପତ୍ର, ଯାହା ଇଚ୍ଛା ତାହା ଯାହା ଭଲ ଲାଗେ ସେମାନଙ୍କୁ—କ୍ଷମତା ତ ତାଙ୍କର, ତାଙ୍କ ହାତରେ !''

ଖଡ଼ ଉପରୁ ଚଟରେ ଗୋଡ଼ ଗଳାଇ ଖସାଇ ଝୁଲାଇ ଦେଇ—ଜାବୁଡ଼ି ଧରିଲେ ଖଡ଼ର ଧାରକୁ ଓସିପ୍, ଟଳି ଆସିଲେ ଆମ ଆଡ଼କୁ, କହିଚାଲିଲେ ସେ ।

"ବହି ? ବହିଟାଏ କଣ ଯେ ? କ'ଣ ତାର ମାନେ ? ଖବର ଦିଏ, ବାର୍ତ୍ତା ଦିଏ, ବାର୍ତ୍ତାବହ—ଏଇଆ ତ ବହି । ଏଇ ଯେମିତି କହିଲି ସେଇଟି—ସେଇ ବହି । ଦେଖ ହେଇ ଦେଖ—ସାଧାରଣ ମଣିଷଟିଏ କ'ଣ କେମିତି, ଧର ସେମିତି ଆଉ କେହି—ଆଉ ହେଇ ଦେଖ, ଭଦ୍ର ସାଆନ୍ତ ଲୋକେ ସବୁ କେମିତି କଣ—ସତେ ଯିମିତି ସମସ୍ତଙ୍କଠୁଁ ସାଧାରଣ ଲୋକଠୁଁ ଅଲଗା—ବିନା ଅଭିପ୍ରାୟରେ ବିନା ଉଦ୍ଦେଶ୍ୟରେ ଲେଖାଯାଏ ନାହିଁ କୌଣସି ବହି—ଲେଖାଯାଏ, କାହାକୁ ହେଲେ କାହାକୁ ଧୋଡ଼େଇବା ପାଇଁ—ରକ୍ଷା କରିବା ପାଇଁ ।''

"ସେ (କଣ୍ଟ୍ରାକ୍ଟର) ଠିକାଦାରକୁ ମାରି ଠିକ୍ କରିଛନ୍ତି । ଉଚିତ କାମ କରିଛନ୍ତି ପିଓଜ ।'' ବହଳିଆ ବହଳିଆ ବସିଲା ସ୍ୱରରେ କହିଲା ଫୋମା ।

''ଏମିତି କାହିଁକି କହୁଚ ତୁ,'' ମଣିଷକୁ ହତ୍ୟାକରିବା କେବେହେଲେ ଉଚିତ, କେବେହେଲେ ଠିକ୍ ହୋଇ ନ ପାରେ । ମୁଁ ଜାଣେ ତୋର ତ୍ରିଗୋଷ୍ଠି ସାଙ୍ଗରେ ପଡ଼େ ନାହିଁ, ତୁ ତାକୁ ଭଲ ପାଉ ନାହୁଁ, କିନ୍ତୁ ସେଭଳି ଚିନ୍ତା ଦୂର-କରିବେ ମନରୁ—ଆମେ କେହି ଧନୀ ନୋହୁଁ—ଆମ ଭିତରୁ ଜଣେହେଲେ କେହି ଆଜି ମୁଁ ମାଲିକ, ପ୍ରଭୁ, କାଲିକି ମୁଁ କ'ଣ ? ପୁଣି ଗୋଟିଏ ଶ୍ରମିକ !''

"ମୁଁ ତମ କଥା କହୁଚ ଓସିପ୍ ଦାଦା !"

"ଏକା କଥା ।"

"ତୁମେ ନ୍ୟାୟବନ୍ତ, ଧର୍ମବନ୍ତ ଲୋକ ।"

"ରହ, ଶୁଣ କହୁଚ, କୋଉଥିପାଇଁ ଏ ବହି ?" ମୋ'ମାର କ୍ରୋଧମୟ କ୍ଷୁବ୍ଧ କଥାଗୁଡ଼ିକ ମଝିରେ ବାଧାଦେଇ କହିଲେ ଓସିପ୍, "ବେଶ୍ ସ୍ପଷ୍ଟକରେ ଲେଖା ଏ ବହିଟି, ଧୂର୍ତ୍ତ ପ୍ରକୃତରେ ଏ ବହିଟି. ହେଇ ଏଥିରେ ଏଠି ସାଆନ୍ତଟାଏ ଅଛୁ ତ ଚାଷୀ (ମ୍ୟୁଝିକ) ନାହିଁ, ପୁଣି ଚାଷୀଟିଏ (ମ୍ୟୁଝିକ) ଅଛୁ ତ ସାଆଁନ୍ତ ନାହିଁ । ତେଣୁ ଦେଖ, ବୁଝ, ସାଆନ୍ତର ଅବସ୍ଥା ଭଲ ନୁହେଁ, ବଡ଼ ଖରାପ, ଆଉ ମ୍ୟୁଝିକର ଅବସ୍ଥା ସାଆନ୍ତ ଅବସ୍ଥାଠୁଁ ଏମିତ କିଛୁ ବେଶି ଭଲ, ତା'ନୁହେଁ । ସାଆନ୍ତ ବଢ଼ି ବଢ଼ି ହେଉଚ ବୋକା, ନପଟ ବୋକା, ନିକମା ଆଉ ଦୁର୍ବଳ—ମ୍ୟୁଝିକ ପାଲଟି ଯାଉଛୁ ମଦ୍ୟପରେ ଆଉ ହୃଦୟରେ ସ୍ୱର୍ଗଶ୍ରେଷ୍ଠ, ଅହଲ୍ୟା ଖବରଖି ଉଦ୍ଧତ ଗର୍ବୀମଣିଷରେ—ଏଇଆ, ଏଇଆ, କହୁଚ ଗଳ୍ପଟି । ଏହା ଦେଖାଇବାକୁ ଚେଷ୍ଟା କରୁଚୁ—ଜମିଦାର, ଜମିମାଲିକ ପାଖରେ କଣାଦାସ ଭଳି ବନ୍ଧାଚାଷୀ ହେବା ଭଲ, ସାଆନ୍ତ ଲୁଚ ରହେ ଚାଷୀ (ମ୍ୟୁଝିକ) ଅଢୁଅଳରେ, ତା ପଛରେ—ଆଉ ମ୍ୟୁଝିକ (ଚାଷୀ)ରହେ ସାଆନ୍ତର ପଛରେ—ଆଉ ଇମିତ ଦୁଇଜଣ ଘେର-ଖାଆନ୍ତୁ—ଚକ୍ର କାଟି କାଟି ଜଣକ ପଛରେ ଜଣେ—ବେଶ୍ ଖାଇପିଇ ପୁରାପେଟରେ, ସନ୍ତୋଷରେ ଖୁବ୍ । ଓଃ, ନାଁ ମୁଁ ଅସ୍ୱୀକାର କରୁ ନାହିଁ—ବେଠିବେଗାରି ଅମଳରେ ଚାଷୀସବୁ କଣାଦାସ ହୋଇ ରହୁଥିବା ସମୟରେ ଜୀବନଟା ଥିଲା ଶାନ୍ତମୟ, ସାଆନ୍ତମାନେ ଦେଖୁଥିଲେ ଗରିବ ଚାଷୀଗୁଡ଼ିଏ ରଖି ଖାଇବା ନାହିଁ କିଛୁ—ଚାଷୀ, ମ୍ୟୁଝିକସବୁ ଖାଇପିଇ ଭଲରେ ରହନ୍ତୁ । ତାଙ୍କ ମଥାଗୁଡ଼ିକ ଫମ୍ପା ରହୁ, କାମ ନ କରୁ, ଏଇଆ ହିଁ ଚାହୁଁଥିଲେ ସେମାନେ । କହୁଚ, ଯାହା ଜାଣେ, ଯାହା ନଭେଇଚ ହେଇରେ କହୁଚ—ମୁଁ କଣ ପ୍ରାୟ ପ୍ଲଳଣଟା ବର୍ଷ ବନ୍ଧା ହୋଇ ପଡ଼ ନ ଥିଲି ସାଆନ୍ତଗୁଡ଼ାଙ୍କ ପାଖରେ—ସେମାନଙ୍କ କଣାଚାଷୀ ବେଠି ବେଗାରିରେ ଖଟି ଚାଷୀ ନ ଥିଲି ମୁଁ, ଥିଲି ମୁଁ ବହୁତ ଜ୍ଞାନ, ବହୁତ ଚାବୁକର ସପାସପ୍ ବେତ ବାଜିଚୁ ମୋର ବହିଲିଆ ଚମଡ଼ାରେ ।"

ମନେ ପଡ଼ିଗଲା, 'ଠେଲାଗାଡ଼ିବାଲା' ପିଓନ—ସେଇ ଯିଏ ନିଜ ଗଳାକାଟି ପକେଇଥିଲା, ଠିକ୍ ଏଇଭଳି ସାଆନ୍ତ ଭଦ୍ରଲୋକମାନଙ୍କ ସମ୍ବନ୍ଧରେ କହୁଥିଲା । ଓସିପ୍‌ଙ୍କ ଚିନ୍ତା ଓ କଥାର ସେହି ଖଳପ୍ରକୃତର ବୁଢ଼ା ପିଓନର ଚିନ୍ତା ଓ କଥା ସହିତ ଏ ଯେ ମେଳ ଅଛୁ, ଏହା ସହି ହେଲା ନାହିଁ—ଆଦୌ ଭଲ ଲାଗିଲା ନାହିଁ ।

ଓସିପ୍ କେତେବେଳେ ମୋ ଗୋଡ଼ ଉପରେ ହାତରଖି କହି ଯାଉଥାନ୍ତି :

"ବହି ଗୁଡ଼ାକରେ ଓ ଅନ୍ୟସବୁ ଲେଖାରେ ଯେଉଁ ମର୍ମ ଥାଏ, ତାହା ଭେଦ କରିବା ପାଇଁ ତମର ଦକ୍ଷତା, ତମର ଯୋଗ୍ୟତା ଥିବା ଉଚିତ—ବିନା ଉଦ୍ଦେଶ୍ୟରେ, ବିନା ଅଭିପ୍ରାୟରେ କେହି କିଛି କରେ ନାହିଁ—କରିବାକୁ ବାହାରେ ନାହିଁ—ଏମିତକି ସେହି ଉଦ୍ଦେଶ୍ୟ ବା ଅଭିପ୍ରାୟକୁ ଗୋପନ ରଖିବାକୁ ଚେଷ୍ଟା କଲାବେଳେ ମଧ୍ୟ ବହି ଲେଖାର ଗୋଟିଏ ଅଭିସନ୍ଧି ଥାଏ—ତମ ମସ୍ତିଷ୍କକୁ ଘୋଳି କରିଦେଇ ଗୋଳମାଳରେ, ବିଭ୍ରାଟରେ ପକେଇଦେବା, ମସ୍ତିଷ୍କ ନ ଯାଏ କୁଆଡ଼କୁ, ନ ପଶେ ବା କେଉଁଥିରେ—ଠିକ ଠିକ କରି କାଠ ହାଣିବାଠୁଁ ଯୋଡାରେ ତାଳ ପକାଇବା ପର୍ଯ୍ୟନ୍ତ ।"

ଅନେକ ସମୟ ଯାଏ ଗପି ଲାଗିଲେ ସେ—କେତେବେଳେ ବିଛଣାରେ ଲମ୍ବ ହୋଇଯାଇ, କେତେବେଳେ ଉଠିବସି, କେତେବେଳେ ପୁଣି ଡେଇଁପଡ଼ି ସେଠି ଅତି ମୃଦୁ ସ୍ୱରରେ, ସ୍ୱଚ୍ଛ ନିର୍ମଳ ବାଣୀଗୁଡ଼ିକ ବଞ୍ଚୁଡ଼ିବାକୁ ଲାଗୁଥାନ୍ତି ଅନ୍ଧକାର ଓ ନୀରବତାର ଭିତରକୁ ।

କୁହାଯାଏ ଜମିଦାର ଆଉ ଚାଷୀଙ୍କ ଭିତରେ ତଫାତ୍ ରହିଛି ଖୁବ୍ । ସତ ନୁହେଁ କିନ୍ତୁ କଥାଟା । ଦୁହେଁ ଆମେ ଏକ ଓ ସମାନ । ସେ ଜମିଦାର କେବଳ ଉପରେ । ପ୍ରକୃତରେ ନିଶ୍ଚିତ ଭାବରେ କହିବାକୁ ଗଲେ ସାଆନ୍ତ ଜମିଦାର ଶିଖେ ସବୁ ବହିଗୁଡ଼ାକରୁ ଆଉ ମୁଁ ଯେତେବେଳେ ଶିଖେ ପିଠିବୋଳାରୁ, ଖଣ୍ଡିଆ ଖାବରା ଆଣ୍ଠୁଡ଼ା ଆଞ୍ଚୁଡ଼ାରୁ—ତେବେ କଥା ହେଉଚି, ତା' ପିଠିଟା ଦିଶେ ବେଶି ଟିକେ ଧୋବଲା, ଏହା ବୋଲି ସେ ଯେ ବେଶି ତେଜା ବେଶି ଚକମକିଆ ସୀ' ନୁହେଁ । ଆରେ ନାଁ, ନାଁରେ ପିଲାଏ ! ସମୟ ହୋଇ ଆସିଲା, ସମୟ ଆସିଲା, ସମୟ ହେଲାଣି, ଦୁନିଆରେ ନୂଆ ବ୍ୟବସ୍ଥା ଆଣିବାକୁ ହେବ—ନୂଆ ଅବସ୍ଥା ସୃଷ୍ଟି କରିବାକୁ ହେବ, ଛାଡ଼ ସେ ବହିଗୁଡ଼ାକ, ଦିଅ ଫିଙ୍ଗି ଦିଅ ସେଗୁଡ଼ାକୁ । ଏବେ ପ୍ରତ୍ୟେକ ଲୋକ ପଚାରୁ, ପଚାରୁ ସେ ନିଜକୁ—"କିଏ ମୁଁ, ପ୍ରକୃତରେ ? ମଣିଷଟିଏ ମୁଁ, ମଣିଷଟିଏ ତ ? ଆଉ କିଏ ସେ, କ'ଣ ସେ ସାଆନ୍ତ, କ'ଣ ସେ ଜମିଦାର ? ସେ ବି ମଣିଷ, ମଣିଷଟାଏ । ତେବେ—ତଫାତ୍ କ'ଣ ? ତଫାତ୍ କେଉଁଠି ? କିମ୍ବା କୁଏତ ଭଗବାନ ମଗନ୍ତି ତାକୁ, ଗୁହାନ୍ତି ତାଠୁଁ ପାଞ୍ଚପଇସା ଅଧିକା ? ଆରେ ନା ମ, ନା—ଦିଆନିଆ କଥା ଉଠିଲା ବେଳକୁ—ଦିଆଦେଇ ବେଳକୁ, ବୁଝିଲ, ଆମେ ସମସ୍ତେ, ସମସ୍ତେ ଆମେ ସମାନ, ସମାନ ଏକା ଭଗବାନଙ୍କ ଆଖିରେ..."

ଶେଷରେ ସିନ୍ଦୂର ଫାଟିଆସିଲା, ଯେତେବେଳେ ତାରାଗୁଡ଼ିକ ନିଭେଇଦେଲା ପ୍ରତ୍ୟୁଷଟା, ଓସିପ୍ କହିଲେ ମୋତେ :

"ମୁଁ କଣ କହି ପାରିବି ନାହିଁ—ମନଖୋଲି କହିପାରିବି ନାହିଁ କିଛି ? ସେ ଅଧିକାର ଟିକକ କ'ଣ ନାହିଁ ମୋର ? ଅନେକ କଥା

କହିଗଲି ଗୀତରେ—ଆଗରୁ କେବେ ଶୁଣି ନାହିଁ, ଚିନ୍ତି ନାହିଁ, ଜୀବନରେ ଏଇ ମୋ ଜୀବନରେ ଘୁଞ୍ଚିଲୁ ? ଅରେ ପିଲାଏ ବଡ଼ ମନେ କରିବ ନାହିଁ, ମଣିବ ନାହିଁ ମତେ ବଡ଼ କରି, ଧରିବ ନାହିଁଟି ଗୁରୁଜି ଅଛୁ ବୋଲି ମୋର—ମନକୁ ମନ ପାହୁଗଲା ସେଗୁଡ଼ିକ କାହିଁକି ଯେ ନିଜେ ହେଲି ନ ହୋଇ ପାରିଲି ନାହିଁ—ଯା' ନୁହେଁ ଯେ ପ୍ରକୃତରେ ମନେ କରିଥିଲି ସେଗୁଡ଼ିକୁ କହିବ—ପାହୁଥିଲି ଆଗରୁ ଶୁଣେଇବି ବୋଲି, ତମେ ଯେତେବେଳେ ଲମ୍ବ ହୋଇଯାଅ ଏଠି, ଆଖିଗୁଡ଼ିକ ଖୋଲିରଖି ତମର—କେତେ କଥା କଳ୍ପନା କରିଯାଅ, ଉଦ୍ଭାବନ କରିଯାଅ ତମେ—ଏଇମିତି ଖାଲି ତମର ଖିଆଲ ଖୁସି—ତମର କୌତୁକ ପାଇଁ—ଏଇ ଏକ ସମୟରେ ଥିଲା କାଉଟିଏ, ଉଡ଼ି ବୁଲୁଥାଏ ବିଲବାଡ଼ି ପଡ଼ିଆରୁ ପାହାଡ଼କୁ, ମାଳ ଜାଗାକୁ, ଝଲାବାଡ଼ିରୁ ଝଲାବାଡ଼ିକୁ—ମୁହୂର୍ତ୍ତ ପରେ ମୁହୂର୍ତ୍ତ—ସମୟଟିକ ତାର ଜୀବନର ବିତାଇ ଦେଉଥାଏ ବାହାରେ ବାହାରେ-ଖାଲି, ବେଗରେ ବିରକ୍ତ ହୋଇ ପଡ଼ିଲି, ବେଗରେ ପଡ଼ିଲା, ଶେଷନିଶ୍ୱାସ ଗୁଡ଼ିଲା ତା'ପରେ ? ତା'ପରେ ସଢ଼ିପଚ ଶୁଖିଗଲା ତା' ଦେହଟି—ଏମିତିକା ଗୋଟାଏ କାହାଣୀର ଅର୍ଥ କ'ଣ ? ମାନେ କ'ଣ ? ନାଁ ନାହିଁ, କିଛି ନାହିଁ । ଅରେ ଧେଁ, ଧେଁ ଗୁଲଗୁଲ ଶୋଇବା ଟିକିଏ, ଉଠିବାକୁ ହେବ, ବିଛଣା ଗୁଡ଼ିବାକୁ ହେବ ଯେ ଚାଲ...''

## ଅଠର

ଇଙ୍କିନ୍‌ରେ କୋଇଲା ଭୂଷ୍ଟାଳ ପ୍ୟାକୋଭ ପର ପଦ୍ମଲ ପଦ୍ମଲ ଦିନର, ଓସିପ୍ ମୋ ଅଖିରେ ଏତେ ବଡ଼ ହୋଇ ଉଠିଲେ ଯେ ଗୋଟିଏ ମୁହୂର୍ତ୍ତ ଆସିଲା, ଯେତେବେଳେ ତା'ଛଡ଼ା ମୋତେ ଆଉ କେହି ଦିଶିଲେ ନାହିଁ, ସମସ୍ତଙ୍କ ରୂପକୁ ସେ ଆଚ୍ଛନ୍ନ କରିଦେଲେ, କାଟିଦେଲେ ମୋ ଦୃଷ୍ଟି ଆଗରୁ ଅନେକ କଥାରେ ତାର ସାମଞ୍ଜସ୍ୟ ଥିଲା କୋଇଲା ଭୂଷ୍ଟାଳ ସହିତ—ସମାନ ଥିଲା ଦୁହିଁଙ୍କର ରୂପର ଅନେକ ଅଂଶ କିନ୍ତୁ ଦେଖି ସଙ୍ଗେ ସଙ୍ଗେ ତାଙ୍କୁ ଦେଖିଲାଭଳି ମନେ ପଡ଼ିଯାଉଥିଲା ମୋ ଅଜା ଧର୍ମାନ୍ଧ ପିତୃହନ୍ତା ଭ୍ୟାସିଲିସ୍କେଭ ଏବଂ ବୋଷେୟା ସ୍ପୁର । ଏତେ ଗମ୍ଭୀରଭାବେ ଅଛନ୍ନ କରି ରଖିଥିଲେ ସ୍ମୃତିକୁ ମୋର ଏଭଳି ପ୍ରଭାବିତ କରିଥିଲେ ଯେ ଏମାନେ ମନକୁ ଆସି ନ ଥାନ୍ତେ ବା କିପରି ? କିନ୍ତୁ ଓସିପ୍ ଏମାନଙ୍କ ସ୍ମୃତିର ସଚେତନକୁ ଯେମିତି ଅସୁଥିଲେ ବି ସ୍ମୃତିରେ ହିଁ ନିଜ ଚରିତ୍ର ରୂପରେଖାର ଯାହା ତାଙ୍କା ଯାହା ପିତ୍ତଳରେ ଅମ୍ଳ (ଏସିଡ଼୍) ପରି ସ୍ମୃତିକୁ କାଟି କାଟି ଖୋଳି ଦେଉଥିଲେ ତହିଁରେ ନିଜର ରୂପଗୁଡ଼ିକ । ସ୍ପଷ୍ଟ ଦେଖିପାରୁଥାଏ ମୁଁ ଦୁଇଟି ଗାତ ଦୁଇଟି ଧାର ଥିଲା ତାଙ୍କ

ଭାବନାର ତାଙ୍କ ଚିନ୍ତନର—କାମ ଦିନରେ କାମ କରିବା ସମୟରେ ସରଳ କ୍ଷିପ୍ର ଦୃଷ୍ଟି ଆଉ ଚିନ୍ତା ତାଙ୍କର ଥିଲା ଅଧିକ ବାସ୍ତବ, ବୈଷୟିକ ସୁବୋଧ ରାଉତର ତୁଳନାରେ, ସେଇ ସେତେବେଳେ ସେ ଶୋଇ ପାରୁ ନ ଥିଲେ କମ୍ପା ସଜ୍ଞର ତୁଳନାରେ ଯେତେବେଳେ ସେ ଆଉ ମୁଁ ବୁଲି ବୁଲି ଯାଉଥିଲୁ ସହରକୁ ତାଙ୍କର ରକ୍ଷିତା (ପ୍ରଣୟିନୀ) ଚକୁଳିପିଠା ବିକାଳି ମାଇପିଟା ପାଖକୁ—ରାତିରେ ତାଙ୍କ ଭାବନାଟା ଥିଲା ବିଶେଷ ଧରଣର, ସେଗୁଡ଼ିକ ଦୀପ୍ତ ହୋଇ ଉଠୁଥିଲା ଲଣ୍ଠନର ଆଲୋକ ପରି—ମୁଁ କିନ୍ତୁ ଧରି ପାରୁ ନ ଥିଲି କେଉଁଟି ଥିଲା ପ୍ରକୃତ ସଠିକ ଦିଗ—ଆଉ କେଉଁଟି ପ୍ରତି ଦୃଷ୍ଟି ଥିଲା—ଆଗ୍ରହ ଥିଲା ତାଙ୍କର ଅନ୍ୟଗୁଡ଼ିକ ମଧ୍ୟରୁ ।

ମତେ ଲାଗୁଥିଲା ଯେତେ ଯାହାକୁ ଭେଟିଥିଲି ମୁଁ ଜୀବନରେ ସେମାନଙ୍କ ଅପେକ୍ଷା ସୀମାତୀତ ଭାବରେ ଅଧିକ ଚତୁର, ଅଧିକ ବିଚକ୍ଷଣ ଥିଲା ସେ । ଅଥଚ ମନରେ ତାଙ୍କ ଚାରିଆଡ଼ରେ ଘେର ଖାଇବାକୁ ଲାଗିଲି, ଠିକ ଯେମିତି ଘେର ଖାଉଥିଲି, ଘୂରି ଘୂରି ହେଉଥିଲି ନୋଇଲ ଭୁଲ୍‌ଭାଲ ସ୍ପାକୋଭର ବ୍ଲକପଟେ, ଘେର ଖାଇବାକୁ ଲାଗିଲି ସେଇ ମଣିଷଟିକୁ ଜାଣିବା ଲାଗି, ବୁଝିବା ପାଇଁ ବ୍ୟଗ୍ର ହୋଇ ଉତ୍କଣ୍ଠିତ ହୋଇ । ସେ କିନ୍ତୁ କୌଶଳରେ କୌଣସି ମୋଡ଼ମାଡ଼ି ହୋଇ ସାପ ପରି ସୁତସାତ୍ ଖସି ଯାଉଥିଲେ ଥରକୁ ଥର, ଧରା ଦେଉ ନ ଥିଲେ ମତେ ଥରକ ପାଇଁ ବି, ପ୍ରକୃତ ସତେ କ'ଣ କେଉଁଠି ଥିଲା, କେଉଁଥିରେ ତାଙ୍କ ସମ୍ପର୍କରେ, ଚରିତ୍ରର କେଉଁ ରୂପଟା କେଉଁ ବିଭବଟି ତାଙ୍କର ଗ୍ରହଣ କରିବା ଯଥାର୍ଥ ଥିଲା ମୋ ପକ୍ଷରେ ।

ସେ ହିଁ ତ କହୁଥିଲେ ମତେ, ମନେ ପଡ଼ିଗଲା ମୋର, "ମତେ ଧରିବା ପାଇଁ, ବୁଝିବା ପାଇଁ, ମସ୍ତିଷ୍କଟା ଖଟାଅ, ଟିକେ ଲାଗିପଡ଼, ଆଗେଇ ଯା ଚେଷ୍ଟା କର !"

ଭାଜି ଭାଜି ପଡ଼ିଥିଲା, ଆହତ ହୋଇଥିଲା ଗର୍ବଟିକ ମୋର, ଆହତ ଓ କ୍ଷୁଣ୍ଣ ହୋଇଥିଲା ପୁଣି ଗର୍ବଠୁଁ ବଳି ଆଉ କ'ଣ ଅଧିକ । ଜୀବନ-ସମସ୍ୟା ଭଳି ମୋ ଆଗରେ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା, ଯିମିତି ହେଉ ସମଝିବାକୁ ହେବ, ଏଇ ଲୋକଟିକୁ, ଏଇ ବୁଢ଼ାଟିକୁ ।

ସୁମନ୍ତ ଛାଡ଼ିଦେଇ ନିସିପିବାପଣିଆ ମଧ୍ୟରେ କିନ୍ତୁ ସେ ଥିଲେ ସ୍ଥିରଗତି ସ୍ଥିରମତିର ବ୍ୟକ୍ତି, ମନେହେଉଥିଲା, ଯଦି ସେ ବଞ୍ଚିପାରିଥାନ୍ତେ ଶହେ ବର୍ଷ ଆଉ ସେମିତି, ଅବିକଳ ସେମିତି ଯେମିତି ଥିଲେ ସେ, ରହିଥାନ୍ତେ ସେ ନିଜକୁ ଅପରି-ବର୍ତ୍ତିତ ଅପରିବର୍ତ୍ତନୀୟ ରୂପେ ସୁରକ୍ଷିତ କରି ସେଇସବୁ ଆଶ୍ଚର୍ଯ୍ୟଜନକ ଭାବରେ ପରିବର୍ତ୍ତନଶୀଳ ଲୋକଗୁଡ଼ିକ ମଧ୍ୟରେ । ଧର୍ମାନ୍ଧ ନକେ ମନରେ ମୋର ତ ଜଗାଇ ଦେଇଥିଲେ ସେଇ ଏକାଭଳି ସ୍ଥିରତାର ଭାବଗ୍ରସ୍ତ ସତ, କିନ୍ତୁ କାହିଁକି

କେଜାଣି ସୁଖକର ଲାଗୁ ନ ଥିଲା ସେହି ଭାବଗ୍ରସ୍ତତାର ଅନୁଭବ ଆଦୌ, ଓସିପଙ୍କର ସ୍ଥିରତା ସ୍ଥିରମତିତ୍ୱ ଥିଲା ଅନ୍ୟ ପ୍ରକାରର—ଅଧିକ ସ୍ପୃହଣୀୟ ।

ମାନସିକ ଅସ୍ଥିତି, ଅସ୍ଥିରତା ସବୁବେଳେ ପ୍ରାୟ ଅନୁଭବରେ ଆସୁଥିଲା ମୋର, ବିଚଳିତ, ବିବ୍ରତ କରି ଦେଉଥିଲା ମତେ—ଗୋଟିଏ ସ୍ଥିତିରୁ ଅନ୍ୟ ଗୋଟିଏ ସ୍ଥିତିକୁ, ଗୋଟିଏ ବ୍ୟବସ୍ଥାରୁ ଆଉ ଗୋଟିଏ ବ୍ୟବସ୍ଥାକୁ ଲୋକଗୁଡ଼ିକ ଯେଉଁ ଲମ୍ଫ ଦେଉଥିଲେ ଅପ୍ରତ୍ୟାଶିତ ଭାବରେ । କାହିଁକି ଯେ ସେ ଲମ୍ଫ ଦେଉଥିଲେ ସେମାନେ, କ'ଣ ବା ଥିଲା ସେଗୁଡ଼ିକର ମର୍ମ, ବିସ୍ମୟରେ ଭାବି ଭାବି ସେତେବେଳକୁ ଅବସନ୍ନ ହୋଇ ପଡ଼ୁଥିଲି ମୁଁ, ଆଉ ଲୋକଗୁଡ଼ିକଙ୍କ ପ୍ରତି ଯେଉଁ ସତେଜ ଆନନ୍ଦମୟ ଆଗ୍ରହଟିକ ଥିଲା ମନରେ କ୍ରମେ ହେମାଳେଇ ନିସ୍ତେଜ କରି ଦେଉଥିଲା ସେହି ଲମ୍ଫଂସବୁକୁ—ମୋର ସେମାନଙ୍କ ପ୍ରତି ସ୍ନେହ ସେମାନଙ୍କ ପ୍ରତି ଅନୁଭବକୁ ବିଭ୍ରାଟରେ ପକାଇ ।

ଜୁଲାଇ ମାସ ଆରମ୍ଭରେ ଦିନେ ଗୋଟାଏ ଧଡ଼ଧଡ଼ିଆ, ରୋଗଣା ହାଡ଼-କଙ୍କାଳିଆ ଘୋଡ଼ାଗାଡ଼ିଟାଏ ମାଡ଼ି ଆସିଲା ଜୋରରେ, ଆମେ ଯେଉଁଠି କାମ କରୁଥିଲୁ ସେହିଠାକୁ । ସଇସର ଆସନରେ ବସିଥାଏ ମାତାଲ ଇଜ୍‌ରୋଚକ୍, ମୁଣ୍ଡରେ ଟୋପି ଫୋପି କିଛି ନ ଥାଏ ତାର, ଓଠରୁ ଥୋପା ଥୋପା ପଡ଼ୁଥାଏ ରକ୍ତ, କାଶୁଥାଏ ଗୁହାକୁ ଗୁହା ବିଷଣ୍ଣ ଦାଢ଼ି ଭିତରକୁ । ପଛ ଆସନରେ ଗୁଡୁ ଗୁଡୁ ହୋଇ ଲୋଟି ପଡ଼ୁଥାଏ ଥରକୁ ଥର ମାତାଲ ଗ୍ରିଗୋରି ଶିଶ୍ଳିନ୍—ତାକୁ ଭାଗଦେଇ ଆଉଜେଇ ନେଇ ଧରିଥାଏ କୋଳକୁ ମୋଟୀଲିଲ ଗାଲବାଲା ଝିଅଟିଏ, ତା'ମୁଣ୍ଡରେ ଥାଏ କୁଟାର ଗୋଟିଏ ଟୋପି (ହ୍ୟାଟ୍) ଯାହାର ଧାରରେ ଲାଗିଥାଏ ଉଜ୍ଜଳଲାଲ ରଙ୍ଗର ଫିତା ଗଦନ ଆଉ କାଚର ଚେରିଫଳ ଗୁଚ୍ଛଏ—ଖୋଲା ଗୋଡ଼, ମୋଜା ନ ଥାଏ ସେଥିରେ—ପିନ୍ଧିଥାଏ 'ଗ୍ୟାଲୋସେ' ବର୍ଷାତି ବୁଟ୍ ହଲେ । ଗାଡ଼ିଟାର ଗତି ସଙ୍ଗରେ ସେ ଆଗକୁ ପଛକୁ ଝୁଙ୍କି ପଡ଼ୁଥାଏ, ଛଟପଟ୍ ହେଉଥାଏ, ଖାଲି ହାତରେ ଯେଉଁଥିରେ ଧରି ନ ଥାଏ କିଛି ହଲାଉଥାଏ ଢେଉଢେଉକା କରି ଟ୍ରୋଟ ଛତାଟିକୁ ତାର—ହସିହସିକା ପାଟି କରି କରି ।

"ମ, ମ, ଏ ସଇତାନଗୁଡ଼ାକ, ଫାଜିଲଗୁଡ଼ାକ ! ମେଳା ତ ସରିଗଲାଣି, ମେଳା ବନ୍ଦ ହୋଇଗଲା, ମେଳାଫେଳା ଆଉ କେଉଁଠି କିଛି ନାହିଁ—ଅନ୍ତ ଇଏ କ'ଣ ଲୋ, ମତେ ସେମାନେ ଘୋଷରି ଘୋଷାରି ଫେରୁଛନ୍ତି ମେଳାକୁ ! ଅରେ ମତେ ଘୋଷାରି ଟାଣି ଆଣୁଛ ଯେ !"

ମକଚୁମକଚ ହୋଇ. କାଚେଜ .କ ଲୁଗା ବିଣ୍ଡା ପରି ପିଟାପିଟି ଖାଇ ଗୁଣ୍ଡ ଗୁଣ୍ଡ ହେଲାଭଳି ଦେହରେ ଗ୍ରିଗୋରି ଗୁରୁଣ୍ଡି ଗୁରୁଣ୍ଡି ଘୋଷାରି ହୋଇ

ବାହାରିଲା ଘୋଡ଼ାଗାଡ଼ି ଭିତରୁ, ବର୍ଷିପଡ଼ିଲା ପଦାରେ—ମାଟି ଉପରେ, ଆଖି ଛଳ ଛଳ କରି ଲୁହରେ ବସ୍ତାନ କଲା ଘୋଷଣା କରି ଆମ ଆଗରେ ।

"ହେଇ, ଏଠି ମୁଁ, ଏଠି ଆଣ୍ଠେଇ ପଡ଼ିଛୁ—ନଇଁ ପଡ଼ିଛୁ । ପାପ କରିବ ପାପ, ବିପୁଳ ପରିମାଣର ପାପ !" ଷ୍ଟିବଚନ୍ଦ୍ର ବାହାରିଥିଲା କରିବାକୁ, କରିଛୁ ପାପ କରିଚ, କ'ଣ ହେଲା ଯେ କ'ଣ ହେଲା ସେଇଠୁ ? ସ୍ୱେଫିମୁସ୍‌କା କହୁଛୁ କ'ଣ ନା ଗ୍ରିଗୋରୀ—ଏ ଗ୍ରିଗୋରୀ, କହୁଚ କ'ଣ ନା··· ହଁ ସେ ଯାହା କହୁଚ ଠିକ୍ ସତ । କିନ୍ତୁ କ୍ଷମା କର ମୋତେ, ଦୟାକରି ମୋ ପ୍ରଭୁ—ମୁଁ ତମ ସମସ୍ତଙ୍କୁ—ତମ ଦଳଟା ଯାକଙ୍କୁ ଚର୍ଚ୍ଚା କରିବାକୁ ଗୁହେଁ । ହଁ, ହଁ, ସତ, ସେ ଯାହା' କହୁଚ— ଆମେ କିପରି ବଞ୍ଚୁ, ବଞ୍ଚିବୁ, ଥରୁଟିଏ ପାଇଁ—ନାଁ ନାଁ ଥରକରୁ ଅଧିକା ଟିକେ, ନାଁ ବଞ୍ଚିପାରିବୁ ନାହିଁ, ବଞ୍ଚିବୁ ନାହିଁ !"

ହୋ ହୋ ହୋଇ ହସି ଗଡ଼ିଗଲା ଝିଅଟା, କୁଦା ମାରି ମାରି ଡେଇଁବାକୁ ଲଗିଲା, କୁଅଡେ ଗଲା ଖସିଗଲା ତାର 'ଗାଲୋସ' ବର୍ଷାଋ ବୁଟ୍ ହାଲକ ଆଉ ସଇସ୍ ଟା ଇକ୍‌ଭୋଚକ୍' ପାଟିକରି ଲଗିଲେ ।

"ଅରେ, ଆସବେ ଆସ, ଆସ୍ ବାହାର ନାଁ, ଘୋଡ଼ାଟାକୁ ମୁଁ ଅଟକାଇ ପାରିବ ନାହିଁ, ରଖିପାରିବ ନାହିଁ—ଆସ ଆସ ଯିବା ।"

ଘୋଡ଼ାଟା, ଧଡ଼ିଆ ମେଛିଆ କୁହୁଣିଆ, ବୁଢ଼ା ଘୋଡ଼ାଟା, ଫେଣ ବାହାରୁଥାଏ ତା' ମୁହଁରୁ, ମନେହେଲା ଚେର ମାଡ଼ିଯାଇଥାଏ ଯେମିତି ସେଠି, ସେଇ ଜାଗାଟାରେ ! ମୁହୂର୍ତ୍ତିକରେ ଛୁଡ଼ା ହୋଇ ଯାଉଥାଏ ଖୁମ୍ବଟାଏ ପରି, ପୋପଟ୍ଟ ଅଉ ସମସ୍ତ ଦୃଶ୍ୟଟା ସେତେବେଳର, କୌତୁକିଆ ମଜାର ହୋଇ ଉଠୁଥାଏ ଇମିତି ଯେ ବର୍ଣ୍ଣନା କରିବା ହେଉଥାଏ ଅସମ୍ଭବ । ଗ୍ରିଗୋରୀର ଶ୍ରମିକ ମାନେ ହୋ ହୋ ହୋଇ ହସୁଥାନ୍ତି, ତାଙ୍କ ସର୍ଦ୍ଦାର, ତାଙ୍କ ସିଧାସଳଖ ମାଲିକ, ତାର ଝଲମଲ ଆଖିଯୋଡ଼ିକ, ଚମକ୍‌ଆ ଚମତ୍କାର ମଦ୍ଦଲାଟାକୁ ଗୁହିଁ, ଜାଲିକା ସଇସଟାକୁ ଅନେଇ ଅନେଇ ।

ଯଦ କେହି ହସୁ ନ ଥାଏ, ହସୁ ନ ଥାଏ କେବଳ ଫୋମା, ଦ୍ୱାରମୁହଁରେ ଛୁଡ଼ା ହୋଇଥାଏ, ଆସି ସେ ମୋ ପାଖରେ, ନ୍ତୃପୃଟ୍ପୁ ହେଉଥାଏ ।

"ଏ ତାହାହେଲେ ଫିଟିଗଲା, ଖ୍ରଣ୍ଡଉପାଡ଼ ଫିଟିଗଲା, ଦ୍ରୁଗୁଲା ମୁକୁଳା ହୋଇଚଲା । ଏଃ, ରେ ଘୃଷୁରିଟା, ଘରେ ଅଛୁ ଖରଯାଟା ଆଉ କେଡ଼େ ସୁନ୍ଦରୀ ସେ ! ଏଃ ।"

ସଇସଟା ଗନଗନ ଡାକ ଗୁଡ଼ୁଥାଏ, ଜୋର କରି କରି ସେମାନଙ୍କୁ ବାହାରିବା ପାଇଁ ଶୀଘ୍ର । ଝିଅଟା ଉଠି ଚଢ଼ିଗଲା ଗାଡ଼ି ଉପରକୁ—ଟାଣି

ଟେକନେଲି ଏକପ୍ରକାର ଗ୍ରିଗୋରିଙ୍କୁ ଗାଡ଼ି ଉପରକୁ, ଯେଉଁଠି ସେ ପଡ଼ି ରହିଲି ମିଥିର ପାଦତଳରେ । ତା’ପରେ ହଲେଇ ହଲେଇ ଝୁଲସେଇ ଚହଟଚଟ ସାନ ଛତାଟିକୁ ଡାକ ମାରିଲି :

‘ ଗ୍ଲାଲି, ଆମେ ଗ୍ଲାଲି ।”

ଫୋମା ବ୍ୟଥିତ ହୋଇ ହଠାତ୍ଥାଏ । ଗ୍ରିଗୋରୀ ସେମିତି ନିଜକୁ ବୋକା ବନେଇ ସାର ଦେଇଥାଏ ବୋଲି । ଆହତ ପ୍ରାଣରେ, କିନ୍ତୁ ବଡ଼ପାଟିରେ ଡାକ ଛାଡ଼ିଲି ଶ୍ରମିକମାନଙ୍କୁ କାମରେ ଲଗିବା ପାଇଁ । ଶ୍ରମିକମାନେ ସେମାନଙ୍କ ସରଦାରକୁ ଉପଲକ୍ଷ୍ୟ କରି ସରଦାର ଯୋଗାଇଥିବା ଘଟଣାକୁ ସମ୍ବଳ କରି ଟୀକାଟୀପ୍ପଣି ମନ୍ତବ୍ୟମାନ ଦେବାକୁ ଲଗିଲେ, ଭଲ ସହାନୁଭୂତିଶୀଳ ରୀତିରେ କାମକୁ ଫେରୁ ନିଜ ନିଜର । ସଫା ଜଣାଗଲା, ଧରିହେଲା କିନ୍ତୁ ସେମାନେ ସର୍ଦାର ଭାଗ୍ୟକୁ ହିଂସା କଲେ ଈର୍ଷା କଲେ ଯେମିତି !

“ସରଦାର, ମାଲିକ ବୋଲାଉଛୁ ନିଜକୁ, ଏଃ, ମାଲିକ ! ମ ମ ହୋଇ ଘୋଷିହେଲି ଫୋମା । ‘ ଆମ କାମଟା ସରିବାକୁ ଘରକୁ ବାହୁଡ଼ିବାକୁ ମାସକରୁ କମ୍ ସମୟ ଅଛି ପଛେ, ଆଉ ଏଇଟା ଅପେକ୍ଷା କରିପାରିଲି ନାହିଁ—ଛିଃ ଏଇଟା……”

ମତେ ମଧ୍ୟ ଖରାପ ଲଗୁଥାଏ, ମନଟା ତିକ୍ତ ହୋଇ ଉଠିଥାଏ ଗ୍ରିଗୋରୀ ଉପରେ । ‘କାଚ ଚେରୀ ଫଳ’ ଝୁଲେଇ ସେଇ ଝିଅଟା, ସୁନ୍ଦରୀଟା ଗ୍ରିଗୋରି ପାଖରେ ଥିଲି ବା କେଉଁଠି ? ଇମିତି ଅସଂଘଟିଆ ଦିଶୁଥିଲି ସବୁବିଗରୁ ।

ଅନେକ ସମୟରେ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲି ମୁଁ ତମ ପରେ ଗ୍ରିଗୋରି ଶିଶ୍ଲିନ୍ ବା କାହିଁକି ‘ସରଦାର’ ମାଲିକ ବୋଲାଉଥିଲା, ଆଉ କାହିଁକି ବା ସାଧାରଣିଆ ଶ୍ରମିକଟିଏ ଥିଲି ଫୋମା ଗୁଡ଼୍କଭ !

ବେଶ୍ ହୃଷ୍ଟପୁଷ୍ଟ ଶକ୍ତ ସବଳ ଗଢ଼ଣର, ସ୍ୱର୍ଣ୍ଣିମ ରଙ୍ଗର କୁଞ୍ଚିତ କେଶଗୁଚ୍ଛର ସୁନ୍ଦର ସୁପୁରୁଷ ଥିଲି ଫୋମା । ଶୁକ ଚଞ୍ଚୁ (ଈଗଲ ଚଞ୍ଚୁ) ଭଳି ନାସିକାଟି ତାର, ଦୀର୍ଘ ଆଉ ବଙ୍କ ତୀକ୍ଷ୍ଣଧୀ ଧୂସର ଆଖି ଯୋଡ଼ିକ ଯେନ ବର୍ତ୍ତୁଳାକାର ମୁଖମଣ୍ଡଳଟି । ନାଁ ତାର ଅଣୁ ମାତ୍ର ସାମଞ୍ଜସ୍ୟ ନ ଥିଲି ଚାଷୀ ବା ମୁଂଝି କଷ୍ଟିଏର ସହିତ । ବେଶ-ପରିପାଟୀ ଆଆନ୍ତା ଯଦି ତାର ପୋଷାକ ପରିଚ୍ଛଦରେ ସଜ୍ଜିତ ହୋଇଥାନ୍ତା ସେ, ଅକ୍ଳେଶରେ ଯେନା ଯାଇଥାନ୍ତା ଭଲି ବଂଶଜ, କୌଣସି ବଣିକ ବ୍ୟବସାୟୀର ସନ୍ତାନ ବୋଲି । ସେ ସବୁବେଳେ ଥିଲି ସତେ ବ୍ୟଥିତ ହୃଦୟ ବିଷର୍ଣ୍ଣ, ସ୍ୱଳ୍ପଭାଷୀ, ମୌନାବଲମ୍ବୀ ବା ଶୁଷ୍କ କଠୋର ବାସ୍ତବତାରେ ତଥ୍ୟମସ୍ତ । ଲେଖାପଢ଼ାରେ ଅଭିଜ୍ଞ ଥିଲି ସେ, ତେଣୁ କଣ୍ଟ୍ରାକ୍ଟରର ହିସାବପତ୍ର ଲେଖୁଥିଲି ସେ, ପ୍ରସ୍ତୁତ

କରୁଥିଲା ଖର୍ଚ୍ଚର ଅଟକଳ, ଆଉ ନିଜର ସାଥୀମାନଙ୍କୁ କାମରେ ଲଗାଉଥିଲା ସେ ଯଦିଓ କାମ ପ୍ରତି ଆଗ୍ରହ ଅନୁରାଗ ଅଳ୍ପାଳ୍ପି ତାଠି ପ୍ରକାଶ ପାଉଥିଲା କି ନାହିଁ ସନ୍ଦେହ !

"ସବୁ କାମ କରି ପାରିବ ନାହିଁ, ସବୁକଥା ହାସଲ କରିପାରିବ ନାହିଁ ଗୋଟିଏ ଜୀବନ କାଳରେ ତୁମର", ଧୀର ଶାନ୍ତ ସ୍ୱରରେ ସେ କହୁଥାଏ ବେଳେ-ବେଳେ । ବହିଗୁଡ଼ାକ ପ୍ରତି ଆଦର ନ ଥିଲା ତା'ର, ବରଂ ଥିଲା ଘୃଣା ଆଉ ତାଚ୍ଛଲ୍ୟ-ଭାବ । କ'ଣ ଛାପା ନ ହୁଏ ? ଯାହା ଇଚ୍ଛା ତାହା, ଯାହାର ବୋଲି ତାହାର ଛାପା ହୁଏ । ହେଇ ଯଦି ଚାହିଁ, ମୁଁ ବି ଗୋଟିଏ କାହାଣୀ ଗଢ଼ି ଦେବି, କଥା ତିଆରି କରିଦେବି ତମ ପାଇଁ— ଏମିତି କିଛି କଷ୍ଟର ନୁହେଁ !"

ସେ କିନ୍ତୁ ମନକଣ୍ଟି ଦେଇ ଶୁଣୁଥିଲା ଯାହା ଯେତେବେଳେ କୁହା ହେଉଥିଲା, ଯଦି କୌଣସି ଗୋଟିଏ କଥା ପ୍ରତି ଆଗ୍ରହ ଜନ୍ମୁଥିଲା, ଉପୁଜୁଥିଲା ଏକପ୍ରକାର ଜିଦ୍‌ଧରି ଗୁରୁତ୍ୱ ଦେଇ ଚାହୁଁଥିଲେ ସେ କଥାଟିର ଠିକଣାଟି ସବୁ ଜାଣିବା ପାଇଁ, ସେଥିରୁ ବାହାର କରି ନିଜର ସିଦ୍ଧାନ୍ତଗୁଡ଼ିକ, ନିଜର ପରିମାପରେ ମାପି ଓଜନ କରି ପ୍ରକୃତ ମର୍ମ କ'ଣ ବୁଝିବା ପାଇଁ ।

ଥରେ କହୁଥିଲି ତୋମାକୁ ଭଲ ହେବ, ଉଚିତ ହେବ ତା'ପକ୍ଷରେ ଯଦି କଣ୍ଟ୍ରାକ୍‌ଟର ହୁଏ ସେ—ଅଳସଭଙ୍ଗୀରେ ଉତ୍ତର ଦେଇଥିଲା ସେ ।

ଠିକ୍ ଆରମ୍ଭରୁ ହଜାର ହଜାର ରୁବଲ (ଟଙ୍କା) ଯଦି ଆସି ଜୁଟେଇ ହୋଇପଡ଼େ, ବରଷି ଯାଏ ମୋ ପାଖରେ ଏତେ ଅଛିଲ କଥାଟିଏ ହେବ ନାହିଁ କିନ୍ତୁ କାଣିକଉଡ଼ିଟାଏ ପାଇଁ, ଅଧ ନକୁଚୁଆ ନଇଦନିଆ କେତୋଟି କପେକ ପାଇଁ ନାଆଁକୁ ମାତ୍ର ଗୁଡ଼ାଏ ଶ୍ରମିକଙ୍କୁ ଖଟେଇ, ଚଳେଇବାର କାରବାରରେ ବ୍ୟସ୍ତତାରେ ଘାର୍ଣ୍ଣି ହେବା କ'ଣ ତା'ର ମାନେ ? କି ସ୍ୱାଦୁଟାଏ ବା ମିଳିବ ସେଥିରୁ । ନା, ନା, ସମସ୍ତ ଯାଉଛୁ ଯାଉ, ଅପେକ୍ଷା କରି କରି ଧନ କେରୁଟା କଟେଇଦେବି ତା'ପରେ ଓସ୍ତାଙ୍କାକୁ—ଗୋଟିଏ ମଠକୁ, ବେଶ୍ ଉଷ୍ମ ମୁଁ, ସୁଢ଼ଳ ସୁନ୍ଦର ବି—ହୁଏତ ହୋଇପାରେ କେବେ କେଉଁଠି କୌଣସି ଧନୀ ବ୍ୟବସାୟୀର ବିଧବାଟିଏ ପଡ଼ିଯାଇପାରେ ପ୍ରେମରେ ମୋର । ହଁ ରେ ଇମିତି ଘଟଣା ଘଟେ । ସର୍ବୋତର ଗୋଟାଏ ଲୋକ, ସମାନ ବଡ଼ିଆ ଯୋଡ଼ି ହୋଇପାରିଲା ଦ'ଟା ବରଷରେ— ତା ପୁଣି ସହସ୍ର ଲୋକଙ୍କ ଭିତରୁ ଗୋଟାଏ ଟୋକାର ! ତା' ଆଖି ପଡ଼ିଯାଇଥିଲା ସର୍ବୋଚ ଉପରେ ଯେତେବେଳେ ସେ ବହି ନେଇ ଯାଉଥିଲା, ପଟିଛିବ ଘରରୁ ଘରକୁ···।"

ଏହା ହିଁ ଥିଲା ତାର କଳ୍ପନା, ତାର ଯୋଜନା । ଶୁଣିଥାଏ ସେ ଅନେକ ଗଳ୍ପ, ଲୋକେ କପରି ଆଗେ ମଠଗୁଡ଼ାକରେ ପଶି ଦୀକ୍ଷା ପାଇ ଶିକ୍ଷାନବୀଶ ଭାବରେ

ଘୋଷାଡ଼ କରନ୍ତୁ, ହାସଲକର ନଅନ୍ତୁ ଅସୁସ୍ଥକଳାପର ଆମୋ'ଦପ୍ରମୋଦର ଜୀବନ । ସେଭଳି, ସେଭଳି ଗଳ୍ପ ପ୍ରତି କେମିତି ଗୋଟାଏ ବିଗ୍ରାଗ, କେମିତି ଗୋଟାଏ ଘୃଣା ଆଏ ମୋର । ପୁଣି ଫୋମା ଯାହା କହୁଥାଏ, ତାର ଗତିଗତି ଦେଖି ନିଶ୍ଚିତରୂପେ ମୁଁ ଜାଣିଥାଏ ପଶିବ ହିଁ ପଶିବ ସେ ଯାଇ ଗୋଟାଏ ମଠରେ ।

ଅଥଚ ମେଲା ଉଦ୍‌ଘାଟିତ ହେଲା ଦିନ, ବସ୍ତ୍ରସ୍ତୂରେ ଆଖିକୁ ଜଳକା କରିଦେଇ ସମସ୍ତଙ୍କର ଫୋମା ପ୍ରକଟି ଉଠିଲା ଗୋଟାଏ ମଦଖଟିର ପରସୁଣିଆ ରୂପରେ । କହି ନ ପାରେ ନୁହେଁ, କମ୍ ବସ୍ତ୍ରସ୍ତୂରେ ଏହା ବୁଢ଼ାଇ ଦେଇଥିଲା ତା'ର ସାଙ୍ଗସାଥୀମାନଙ୍କୁ ଅଛା ବଦ୍ରୂପ କରିବାକୁ ଆରମ୍ଭକରି ଦେଇଥିଲେ ସେମାନେ ଫୋମାକୁ, ରବିବାର ଦିନ ବା ଛୁଟି ଦିନ ଯେତେବେଳେ ବାହାରୁଥିଲେ ସେମାନେ ଏକାଠି ବସି ସୁରା ପିଇବାକୁ ଖଟିରେ, ହସି ହସି ସେମାନେ କୁହାକୁହି ହେଉଥିଲେ ନିଜ ନିଜ ଭିତରେ ।

"ଯସ ରେ, କହୁ କାରବାର ଜୁଟେଇଦେବା ଫୋମାକୁ ।"

ଖଟିରେ ପହଞ୍ଚିଲାକ୍ଷଣି ଡାକ ଶୁଭୁଥିଲେ ସଦର୍ପରେ, ହୁକୁମ ଝାଡ଼ିଲା ଭଙ୍ଗୀରେ ।

ଏଃ, ଏଃ. ପରସୁଣିଆ—ଏଃ ରେ କୁଞ୍ଚକୁଞ୍ଚିଆ ବାଳର, ଆ ତ ଏଠିକି ଆ ଓ ।

ସେ (ଫୋମା) ଅସୁଥାଏ ଓଠଟାକୁ ଟେକିଦେଇ ଶୂନ୍ୟକୁ, ପଗ୍ଗରୁଥାଏ :

"କ'ଣ, ଲୋଡ଼ା ତମର ?"

"କ'ଣ କରେ. ଚଞ୍ଚିପାରୁନୁ ପୁରୁଣା ସାଥୀଙ୍କୁ ସବୁ ?"

"ବହୁତ କାମ ପଡ଼ିଛି, ବ୍ୟସ୍ତ ମୁଁ ସବୁ ।"

ସେ କୁହି ହାରିଥାଏ, ତାର ସାଙ୍ଗସାଥୀମାନେ ତାକୁ ଗୁଛ ତାଛଲ୍ୟ ଦୃଷ୍ଟିରେ ଘୃଣାଚକ୍ଷୁରେ ଦେଖୁଥାନ୍ତି, ଝୁହୁଁଥାନ୍ତି ସବୁ ତାକୁ ଚିଡ଼େଇବା ପାଇଁ, ରଗେଇବା ପାଇଁ । ସେ ଅନାଉଥାଏ ସେମାନଙ୍କ ଆଡ଼କୁ ନିର୍ଜଳ ସନ୍ଦିଗ୍ଧଭାବରେ, ମୁହଁଟି ତାର ଜମାଟ ବାନ୍ଧିଯାଇଥାଏ ବରଫପରି ହେମାଳିଆ ସ୍ୱଭାବରେ. ସେଥିରୁ ତରଳି ଦିଟୋପା ବାହାରି ପଡ଼ୁଥାଏ ଯେପରି ।

"ଆଚ୍ଛା, ଶୀଘ୍ର, ଶୀଘ୍ର କହ ସାର୍ କ'ଣ କହୁଚ, ସାର କ'ଣ ?"

"ସବୁଚ, ବକ୍‌ସିସ୍ ଗୃହୁଚନା ?" କହୁଥାନ୍ତି ସେମାନେ. ପଇସାମୁଣିଗୁଡ଼ିକ ଖୋଲି ଭିଜ ଓଲଟାଇ ପାଲଟାଇ ଝାଡ଼ୁଝାଡ଼ୁ ଦେଖୁ ଦେଖୁ କହୁଥାନ୍ତି ସେମାନେ, ଆଉ ତାପରେ ଖୁଲ୍‌ଯାଉଥାନ୍ତି ପଇସାଟିଏ ନ ଦେଇ (କପେର୍‌ଟିଏ) ।

ପଚ୍ଛରିଲି ଫୋମାକୁ, କାହିଁକି ସେ ପରସୁଣିଆ ହେବିକ, ଯୋଜନା ସେ କରିଥିଲା ଯେତେବେଳେ ବାବାଜି ହେବ ବୋଲି !

''ନାହିଁ, କେବେହେଲେ ଯୋଜନା କରିନାହିଁ ବାବାଜି ହେବା ପାଇଁ,'' ଉତ୍ତର ଦେଇ ସେ—''ଆଉ ପରସ୍ତୁଣିଆ ହୋଇ ରହିବା ଦେଖିବନ ଇଚ୍ଛା ନୁହେଁ ରେ ମୋର ।''

କିଛି ବର୍ଷ ପରେ ତାକୁ ଭେଟିଥିଲି ଜେରୁଜେଲମରେ, ସେତେବେଳେ ବି ପରସ୍ତୁଣି ଥିଲେ ସେ । ଶେଷରେ ଦିନେ ପଢ଼ିଥିବି ଖବରକାଗଜରେ ଫୋମା ଗୁଲନଭ ଗିରଫ ହୋଇଛି ଯିଶୁ କରିବାକୁ ଚେଷ୍ଟା କରୁଥିବା ଅଭିଯୋଗରେ ।

ମନରେ ମୋର ବାରହେଲି ପରି, ଅନିର୍ଦ୍ଦିଷ୍ଟରୂପେ ପ୍ରଭାବ ପକାଇଥିଲି ପଥୁରିଆ (ପଥର ମହାରଣା) ଆଡ଼େ୍ଲିଅନ ଜୀବନ କାହାଣୀ ପିଓଟର ଶ୍ରମିକ, ବସ୍ତିରେ ସବୁଠୁଁ ବଳି ପୁରୁଣା ଆଉ ଶ୍ରେଷ୍ଠ ଶ୍ରମିକ ଥିଲେ ସେ । କଳାମୁଚମୁଚ, ଧଳଦାଢ଼ିର ହସଖୁସିଆ ସୁଲକ୍ଷଣବର୍ଷ ବସ୍ୟକର ମୂର୍ତ୍ତିକଟି ବି ମତେ ଚକିତ କରି ଦେଇଥିଲା, କାହିଁକି ସରଦାର ସେ ନ ହୋଇ ହୋଇଥିଲେ ପିଓଟ । କ୍ୱଚିତ କେବେ ଟୋପିଏ ପିଉଥିଲେ ନାହିଁ ମଦ, ପିଉଥିଲେ ଯେତେବେଳେ, ସେ ମାତାଲ ହୋଇ ଉଠ଼ନ ଥିଲେ ଆଦୌ । ନିଜ କାମରେ ଯେମିତି ଦକ୍ଷ ଥିଲେ ସେ ସେମିତି ଜଣେ ଥିଲେ ପ୍ରବଳ ଉତ୍ସାହରେ ତା' ହାତରେ ଇଟାଗୁଡ଼ାକ ଗାନ୍ଥିକ ଗଢ଼ାବେଳେ ସତେ ଯେମିତି ଉଡ଼ୁଥିଲେ ପା'ସୁଭଳି, ତା ପାଖରେ ଅମ୍ଳିମୂର୍ଦ୍ଧା ଗ୍ରେଗଣା ଲୁହାଣିଆ ପିଓଟର ତୁଳନା ଥିଲେ ବା କେଉଁଠି, ମୂଲ୍ୟ ନ ଥିଲେ ବା ଯେମିତି । ପଓଟର ମନକୁ ପାଉଥିଲି ଏଣୁ କହିବାକୁ ।

'ମୁଁ ଇଟା ଘରଗୁଡ଼ିକ ଅନ୍ୟମାନଙ୍କ ତିଆରି କରେ, ନିଜପାଇଁ ଡାଠ-କଫିନ (ଶବାଧାର) ତିଆରି କରିବାର ଉଦ୍ଦେଶ୍ୟରେ ।''

ଇଟାଗୁଡ଼ିକୁ ଉତ୍ସାହରେ ଅତି ଅତି ଆନନ୍ଦରେ ଖଞ୍ଜିଲବେଳେ ଆଡ଼େ୍ଲିଅନ ପାଟିକରି ଜୋରରେ କହୁଥାଏ :

''ଆରେ ଆସରେ ସବୁ ସଙ୍ଗୀଏ ଟିକଏ ସାହାଯ୍ୟ କର ମତେ ଭଗବାନଙ୍କ ମହିମାପାଇଁ, ଆସରେ ସବୁ ଆସ ।''

ଆଉ ସେ ସେମାନଙ୍କ ଆଗରେ ବର୍ଣ୍ଣନା କରୁଥାଏ, ସେ କେମିତି ଅସଲ୍ଭା ବସନ୍ତ (ଗ୍ରୀଷ୍ମ) ଋତୁରେ ଯିବାକୁ ଚାହୁଁଥାଏ ତୋମସ୍କକୁ-ସେଠି ତା ଶଳା ଠିକା ନେଇଥାଏ, ତତ୍ତ୍ୱରେ ସ୍ୱାକ୍ଷର କରିଥାଏ ଗୀର୍ଜାଟିଏ ଗଢ଼ିବାପାଇଁ, ଆଉ ତାକୁ ଆଡ଼େ୍ଲିଅନ ଯାଚିଥାଏ 'ଫୋରମ୍ୟାନ' ଦକ୍ଷ ଶ୍ରମିକ-ସରଦାର କାମ ।

''ଛୁଡ଼ି ଯା'ଇଛି, ସବୁକଥା ଛୁଡ଼ିଯାଇଛି, ଗୀର୍ଜା ଗଢ଼ା, ଗୀର୍ଜା ତୋଳା—କାମ ଗୋଟାଏ, ଭଲ ଲାଗେ ମତେ ଖୁବ୍, ଥରେ ସେ ମତେ କହିଲା, ମୋ ଆଡ଼କୁ ମୁହଁ ବୁଲେଇ କହିଲା ''ଆ, ଆରେ, ଆ, ତୁ ମୋ ସାଙ୍ଗରେ, ଲେଖିପଢ଼ି ଜାଣିଥିବା

ଲୋକପାଇଁ ଜୀବନଟା ତ ଖୁବ୍ ସହଜ, ଘୁରୁଘୁରୁରେ କଟିଯିବ ସାଇବେରିଆରେ, ପାଠପଢ଼ାର ଦର ସେଠି ବହୁତ ବେଶି, ବହୁତ ଉଚ୍ଚରେ ।"

ରାଜି ହୋଇଗଲି ମୁଁ ଯିବା ପାଇଁ ତା ସାଥିରେ, ଆଲେ଼କ୍‌ସିନର ସେ କି ଆନନ୍ଦ, ବିଜୟୀ ଦର୍ପରେ କହି ଉଠିଲା ସେ :

"ବଢ଼ିଆ ! ବଢ଼ିଆ ! ପ୍ରକୃତରେ କିନ୍ତୁ ଗମ୍ଭୀରିଆ ଭାବରେ କହିଥିଲ, ଅଛା ତାମସା ନୁହେଁ ।" ପିଓତ୍ର ଏବଂ ଗ୍ରୀଗୋରିଙ୍କ ପ୍ରତି ତାର ଦୃଷ୍ଟିଭଙ୍ଗୀଥିଲା ଭଲ ପ୍ରକୃତି ଲୋକଙ୍କର କୃପା ଅନୁକମ୍ପାର ଭାବ ଭଳି, ସହାନୁଭୂତିଶୀଳ ଦୟାଭାବପରି, ବଡ଼ ମଣିଷଙ୍କର ପିଲାଙ୍କ ପ୍ରତି ଭାବ ଭଳି ଓସିପକୁ କହିଲା ସେ :

"ଦେଖ, ବଢ଼େଇ ଦେଖ ଗର୍ବିଗୁଡ଼ାକ ? ପରସ୍ପରକୁ ଦେଖେଇ ହେଉଛନ୍ତି ନିଜ ନିଜ ମୁଣ୍ଡରେ ଯାହାସବୁ ଅଛି, ଠିକ ହାତରେ ତାଆସ ମୁଠାଭଳି ! ଜଣେ କହୁଛି ଅନ୍ୟକୁ ଦେଖ ମୋ ହାତରେ କ'ଣ ଅଛି, କି ଖେଳ, ଆଉଜଣେ କହୁଛି ରୁରୁଫ୍ ମୋର ଏ ଟୁରୁଟ ତାଆସ ଗୁଡ଼ାକୁ ଅନେଇ ଅଟେର ଜଣେଇ କରି ଉଇକମାଣ ।"

"କାହିଁକି ? ଦୋଷ କଣ, ଦେଖେଇ ହେବାରେ ?" "ହାସ୍ୟମୟ ଭାବରେ ପ୍ରହେଳିକାରେ ପଡ଼ିଲାପରି ହୋଇ ଉତ୍ତରଦେଲା ଓସିପ : "ଆରେ ବଢ଼େଇ କାଢ଼ିବା, ଦେଖେଇ ହେବା ତ ମନୁଷ୍ୟର ପ୍ରକୃତି—କେଉଁ ଯୁବତୀ ବା ସ୍ତନଗୁଡ଼ାକୁ ସାମନାରେ ଦେଖେଇ ନ ହୁଏ ?"

"ତାଙ୍କ ପାଖରେ ଏଇଟି ଭଗବାନ, ସେଇଟି ଭଗବାନ, ଏଇଟି ଭଗବାନଙ୍କର ସେଇଟି ଭଗବାନଙ୍କର । କିନ୍ତୁ ଟଙ୍କା ପଇସା ସବୁ ରଖୁଛନ୍ତି ଠିକ୍, ଅତି ଧୂରନ୍ଧର ଫନ୍ଦିବାରେ ।" ଶାନ୍ତ ସନ୍ତୁଷ୍ଟ ନ ହୋଇ କହିଲେ ଆଲେ଼କ୍‌ସିନ ।

"ନାଁ, ନାଁ । ତୁ କହି ପାରିବୁ ନାହିଁ—ଗ୍ରୀଗୋରି କିଛି ଫନ୍ଦି ସାଇତି ରଖିଛି ।"

"ମୁଁ କହୁଛି ଆଉଟା ସମ୍ପର୍କରେ, ଯାଉନ କାହିଁକି ସେ ଜଙ୍ଗଲକୁ, ହଜି ଯାଉନ ବନସ୍ତରେ, କିନ୍ତୁ ନାହିଁ ଯାଇ ସେଠି ଏକା ଏକା ଭଗବାନଙ୍କ ସାଥିରେ ? ହେ ମହାପ୍ରଭୁ ସବୁ ସବୁ ଏଠି ଚଟା ଲାଗୁଛି ମୋତେ ପିତା ଲାଗୁଛି ସବୁ, ଏଇ ଆସନ୍ତା ବସନ୍ତରେ ମୁଁ ଚାଲିଲି ଜାଣ ସାଇବେରିଆକୁ, ଏଠା ଛାଡ଼ି ।"

ଅନ୍ୟ ଯେତେ ଯିଏ ଶ୍ରମିକ ଥିଲେ ସେଠି ଆଲେ଼କ୍‌ସିନକୁ ଈର୍ଷା କରି କହିଲେ ସେମାନେ :

'ଆମର ଯଦି ତମ ଶଳା ପରି କେଉଁଠି କିଏ ଆଆଡ୍ରା ହୁକୁଭଳି ଟଙ୍ଗେଇ ଦେବାକୁ ନିଜକୁ ସବୁ ଆମକୁ ଡରମାଡନ୍ତା ନାହିଁ ବି ସାଇବେରିଆ ଯିବାକୁ, ସାଇବେରିଆଟା କଣ ଆମକୁ ଡରାନ୍ତା ?"

ଅଜୁ ଛାପରେ ଦେଖାଗଲା ଭଙ୍ଗନ ହୋଇଯାଇଛୁ ଆର୍ଢେଲିସ୍ଟନ । ଗୋଟାଏ ଦେଇଁ ରବିବାର ଥାଏ ସେଦନ, କାରଖାନା ଛାଡ଼ି ଗୁଲିଗଲା ସେ, କେହୁ ଜାଣିପାରିଲେ ନାହିଁ, କୁଆଡେ଼ ଗଲା ସେ । କିଛୁ ଖବର ଅଜୁର ମିଳନ୍ତି-ନାହିଁ ତାର ।

ଆତଙ୍କିତ ହୋଇ ଅନୁମାନକରି ଲାଗିଲେ ସମସ୍ତେ :

"ହୁଏତ ହୋଇପାରେ କେହୁ ତାକୁ ଖତମ୍ କରି ଦେଇଛୁ ।"

"ହୁଏତ ହୋଇପାରେ ନଈ ପହଁରି ଯାଉଥିଲା ବୁଡ଼ିମରିଛୁ ସେଠି ।"

ଶେଷରେ ଏଫିମସ୍କା ଆସି ଘୋଷଣା କଲା, କେତେକାଂଶରେ ଲଜ୍ଜିତ ହୋଇ ସଙ୍କୋଚରେ ।

"ଆର୍ଢେଲିଅନ ମଦ ଖାଇ ମାତାଲ ହୋଇ ଗଡ଼ୁଛୁ ଅନନ୍ଦରେ; ଲଗାମଛାଡ଼"

' ମିଛ, ମିଛ, ତାହାମିଛ କହିଉଠିଲା ପିଓତ ଅବିଶ୍ୱାସରେ ।"

"ହଁ, ହଁ, ଗଡ଼ୁଚ ମଦପିଇ, ପୁରାପୁରି ମାତାଲ ! ପାଲଟଦା, କୁଟାଗଦା ଭଳି ଜଳ ଧୂଆଁ ହୋଇ ଯାଇଚ ପାଉଁଶରେ— ଠିକ୍ କେନ୍ଦ୍ରରୁ ମର୍ମରୁ ତାର ! ସତେ ଯେମିତ ଏଇ ଏଇନେ ମରିଯାଇଛୁ ତାର ସ୍ତ୍ରୀ..."

"କେଉଁଦନରୁ ସେ'ତ ହରାଇଛୁ ସ୍ତ୍ରୀକୁ ତା'ର — ସେ ଯେ ବିପତ୍ନୀକ । କହ, କେଉଁଠି ସେ, କେଉଁଠି ଅଛୁ ସେ ଏବେ ?"

ଘରେ ବାହାରି ପଡ଼ିଲା ପିଓତ ଆର୍ଢେଲିଅନକୁ ଉଦ୍ଧାର କରିବା ପାଇଁ— କାନ୍ଦ ମାଡ଼ଟାଏ ଆଉ୍ଛା ମାଡ଼ଟାଏ ଖାଇଲା ତା'ଠୁଁ ।

ତା'ପରେ ଶକ୍ତ କରି ଓଠରେ ଓଠ ଚପି, ପକେଟର ଗଭୀରକୁ ହାତ ପୂରାଇ ମୁଁ ମୁଁ କରି ଘୋଷଣା କଲା ଓସିପ :

"ଯାଉଛୁ ମୁଁ, ଯାଏ ନଜେ, ଦେଖେ, ଦେଖେ କାରଣଟା କ'ଣ ? ଭଲ ଲୋକଟାଏ, ଖାସା ମଣିଷଟାଏତ ସେ ?"

ମୁଁ ଚାଲିଲି ତା' ସଙ୍ଗରେ ପିଓତର ପଛେ ପଛେ ।

"ଦେଖିଲ ଦେଖି ଏବେ," ଯାଉଁ ଯାଉଁ ବାଟରେ କହିଲା ଓସିପ, "ଲୋକଟା ବେଶ୍ ଚଳଚ୍ଛଳ ହେଉଛୁ ମାନଥାନ କରି, ମାନଥାନ ପାଇ, ଆଦବ କାଇଦାରେ, ଅଜୁ ହଠାତ୍ କ'ଣ ନା ଲଙ୍ଗୁଡ଼ ଟେକ ହୋଇ ଯାଉଛୁ ତାର, ଉଠି ଯାଉଛୁ ଆକାଶକୁ— ଆଉ ନା ସେ ଯାଇ ପଡ଼ୁଛୁ ଅଳିଆଗଦାରେ; ଏଃ, ଆଖି ମେଲି ରଖିଥାରେ ବାବୁ, ଆଖି ମେଲି ରଖ ମ୍ୟାକ୍‌ସିମିଚ, ଶିଖ ଏଥିରୁ, ଶିଖ ଗୋଟାଏ ପାଠ ଏଥିରୁ !"

ଆମେ ଯାଇ ପହଂଚିଲୁ ସବୁଠୁଁ ବଳି ଶସ୍ତା ଅସନା ମସନା ବେଶ୍ୟା ପଡ଼ାରେ, "ଆମୋଦ ପ୍ରମୋଦମସ୍ତ, ବିଳାସସ୍ଫୂର୍ତ୍ତିମସ୍ତ ଲୁନାଭିନୋ ସହରରେ" ସେଠି ଆମେ ହାବୁଡ଼ିଗଲୁ ଗ୍ରେରଣୀ ଗ୍ରେରଣୀ ଚେହେରା ଗୋଟାଏ ବୁଢ଼ୀକୁ, ଫୁସ୍ ଫୁସ୍ କରି ଓସିପ୍ କଣ ସବୁ କହିଲା ତା'କାନରେ, ଆଉ ସେ ଆମକୁ ବାଟ କଢ଼େଇ-ନେଲା ଗୋଟାଏ ଅଣଓସାର ଖାଲି ବଖରାକୁ, ଅନ୍ଧାରିଆ ଅସନା ଘୋଡ଼ାଶାଳ ପରି! ଖଟରେ ଗୋଟାଏ କଡ଼ ଲେଉଟାଇ ଏପଟ ସେପଟ ହୋଇ ଗଡ଼ୁଥିଲା ଗୋଟାଏ ଭୋଦ ମାଇକିନିଆଟା, ବୁଢ଼ୀ ତା' ପିଠିକୁ ଚମୁଟି ଦେଇ ଆଜ୍ଞା କରି କହିଲା :—

"ଯା' ଘର୍ ଏଠୁ ଶୁଭୁଚ—ଯା' ସଭ୍ ନେ ଭୋଟଆଟା।"

ଉପରେ ଡେଉଁ ପଡ଼ି ଛିଡ଼ା ହୋଇଗଲା ମାଇପିଟା, ମୁହଁଟାକୁ ନଜର ଘଷି ଘଷି କହୁ କହୁ!

"ହେ ମହାପ୍ରଭୁ, କ'ଣ ନେ ଏସବୁ ? କିଏ, ନେ ମା ଏ।"

"ଗୁଇନ୍ଦାମାନେ ଆସିଛନ୍ତି, ଗୁଇନ୍ଦା," ଗମ୍ଭୀରଭାବେ କହିଲା ଓସିପ୍। ହାଁ ଆ ନେ, ନିଶ୍ୱାସଟାଏ ଛାଡ଼ି ହାପଶି ଗଲା ଛାତରେ, ଲୁଚି ପଳେଇଲା ମାଇପିଟା, ଉଭାନ ହୋଇଗଲା କୁଆଡ଼େ ? ପଛେ ପଛେ ତା'ର ଛେପ ଲଣ୍ଡାଏ ପକାଇଦେଲା ଥୁଃ ଥୁଃ କରି ଓସିପ୍"

'ସଇତାନଠୁଁ ବଳି, ବୁଝିଲୁ, ଗୁଇନ୍ଦାଙ୍କ ଡର ଇଏ ଏଗୁଡ଼ାଙ୍କର ବେଶୀ, ନାଁ ଶୁଣିଲେ ଛାନିଆ"। ବୁଝେଇଦେଲା ମୋତେ ଓସିପ।

ବୁଢ଼ୀ ଛୋଟ ଦର୍ପଣଟିଏ କାଢ଼ି ନିଜ ଡାହାକୁ, କାଗଜକାଛ ଆବରଣଟା ଟେକି ଦେଲା ଟିକିଏ।

' ଅନା, ଏଇ ସେ ?"

କଣାବାଟେ ନିରେଖି ନିରେଖି ଭଙ୍ଗିମାରି ଦେଖିଲା ଓସିପ୍"।

'ହଁ ସେଇ ଏ!" ଦେଖ, ହଟାଇ ଦେ, ବାହାର କରିଦେ ଟୋକୀଟ'କୁ ସେଠାରୁ।"

ମୁଁ ବି ଦେଖିଲି କଣା ବାଟେ, ଛୋଟ ବଖରାଟିଏ, ଆଗେ ଯେଉଁ ଭଳି ବଖରାରେ ଠିଆ ହୋଇଥାଉ ଠିକ୍ ସେଇ ଭଳି, ଭରଦମିଆ ଗନ୍ଧିଆ ଅସନା ବଖରାଟି, ଝିଙ୍କ କେବୁଟା ବଂଦ ହୋଇ ରହିଥାଏ, ଅଳୁଅ—ପବନ ପଶି ନ ପାରିବ ଯେମିତ, ଶକ୍ତ ହୋଇ, ଝିଙ୍କର ପିଣ୍ଡି ଉପରେ ଜଳୁଥାଏ ଦପ୍ ଦପ୍ ହୋଇ ବତୀଟାଏ—ସେଇ ବତୀପାଖରେ ଛିଡ଼ା ହୋଇଥାଏ ନେଗ୍ର-ଆଖିର ଲଙ୍ଗୁଳା ଗୋଟାଏ, ଗୋଟାଏ ଟୋକୀ—ସିଲାଇ କରୁଥାଏ ଅନ୍ତର୍ବାସଟି (ସେମିଜ ତଳେ ପିନ୍ଧା ଅଙ୍ଗୀ) ପଛକୁ ତାର ଦିଶୁଥାଏ ଫୁଲିଲା ଫୁଲିଲା ମୁହଁ ଆର୍ତ୍ତେଲିଅନର, ମୁଣ୍ଡଟି ତାର

ରହୁଥାଏ ତକିଆ କେତୋଟି ଉପରେ ତେଲ ହୋଇ, ତାର କଳା କଳା ଝାଣ୍ଟିଆ ଝାଣ୍ଟିଆ ଖାଡ଼ାଖାଡ଼ା ଦାଢ଼ିର ବାଳଗୁଡ଼ାକ ଛନ୍ନଛତର ହୋଇ ପଡ଼ୁଥାଏ ସ୍କଶଅଣ୍ଡେ -- ଚମକି ପଡ଼ିଲା ସେହି ତାତର ଟୋକାଟା -- ତଳ ଅଣ୍ଟାଟାକୁ ଟାଣି ନେଲା -- ତରବରରେ ଗଡ଼ଗଡ଼ ହୋଇ ଗଲା ଘସିଲା ଖଟ ବିଛଣା ପାଖରୁ ଆଉ ହାଜର ହୋଇଗଲା ଆସି ଆମେ ଯେଉଁ ବଖରାଟିରେ ଥିଲୁ ସେଇ ବଖରାଟିରେ।

ଓସିପ୍ ଆଉ ଥରେ ଆଖି ବୁଲାଇ ଆଣିଲା ତା' ଉପରେ, ଛେପ ପୁଳାଏ ପକାଇ ଦେଲା ଥୁଃ କରି।

"ଫୁଃ, ଏଡ଼କ ବଳଶା, ବଳଠି ଟୋକାଟାଏ ଲେ ତୁ।" "ଏଡ଼କ ବର୍ଛିଆ ବୋକା ବୁଢ଼ାଟାରେ ତୁ" ଫଟେ ଫଟେ ଜବାବ ଦେଲା ହସି ହସି ଟୋକାଟା।

ଓସିପ୍ ବି ହସି ପକାଇଲା, ବୁଢ଼ା ଆଙ୍ଗୁଠି ଦେଖାଇ ତାକୁ ହଲାଇଲା ହସୁ ହସୁ।

ଆମେ ଗଲୁ ଆଗେ – ତାତାର ଟୋକାର ଘର ବଖରାକୁ ପଶିଲୁ ସେଇ ଗୁମ୍ଫାରେ—ଆଣ୍ଡ୍ରେଇଅନର ପାଦ ପାଖରେ ବସିପଡ଼ିଲା ଓସିପ୍। ଅନେକ ସମୟ ଧରି ଚେଷ୍ଟା କଲା ତାକୁ ଉଠାଇବା ପାଇଁ ଆଣ୍ଡ୍ରେଇଅନ କିନ୍ତୁ ଅନବରତ ଭୁଟ୍ରୁ ଭୁଟ୍ରୁ ହେଉଥାଏ।

ଓଃ, ଓଃ, ଠିକ୍ ଠିକ୍, ସାବାସ୍ ସାବାସ୍... ଟିକିଏ ମିଳିଟିଏ ରଃ ପିବା, ଆମେ ପିବା..."

ଶେଷରେ ଉଠି ବସିଲା, ପାଗଳଙ୍କ ପରି ଅନେଇ ରହିଲା ଓସିପ୍‌କୁ ଅଳ୍ପ ସମୟ, ଆଉ ତା ପରେ ଫୁଲିଲା ଫୁଲିଲା ଆଖି ଯୋଡ଼ିକୁ ମୁଦି ଦେଇ ଚୁପ୍ ଚୁପ୍ ହେଲା।

ଅଚ୍ଛା, "ହଁ ଅ"

' କ'ଣ ହେଲାରେ ଏମିତି ?" ଓସିପ୍ ଧୀର ଶାନ୍ତ ସ୍ୱରରେ ପଚାରିଲା, ଅଶାନ୍ତ ସ୍ୱରରେ କିନ୍ତୁ ଗାଳି ମନ୍ଦର ଅଂଶ ନ ଦେଇ।

"ବୁଢ଼ ଶୁଣ୍ଡି, ମୁଣ୍ଡଫୁଣ୍ଡ ହରାଇ ବସିଲି।" କୈଫିୟତ ଦେଲା ଓସିପ୍, ଶୁଖିଲା ଗାଳୁଗାଲୁଅ କାଶଟା କାଶି।

' କେମିତି ରେ ?"

"କାହିଁକି ? ସାଧା ସିଧା କଥାଟା।"

"ଲାଗୁଚି ଖୁବ୍ ଖରାପ ଲାଗୁ।"

' ଜାଣେ।"

ଠିପି ଖୋଲି ଭୋଦକା ବୋତଲଟାଏ ଉଠାଇ ନେଇ ଅର୍ଦ୍ଦେଲିଅନ ଟେବଲ ଉପରୁ, ଢକ ଢକ ହୋଇ ଢାଳି ଭରିଲେ ନିଜ ଗୋଟିରେ ତା ପରେ ବୋତଲଟିକୁ ଯାଚିଲା ଓସିପ୍‌କୁ ବଢ଼ାଇ ଦେଇ ତା' ଆଡ଼କୁ ।

"ହେଇ, ଟିକେ ? ଦରକାର ତ ? ହେବା ଉଚିତ ବି । କିଛି ଟିକେ ପାଟିରେ ଦେବା ଖାଇବା ବି ଏଠି !"

ବୁଢ଼ା ପିଇଲା ଢୋକେ କି ଦି' ଢୋକ, ବିକୃତ କରିଦେଲା ମୁହଁକୁ ନିଜର । ଜାଣି ଶୁଣି ଯେମିତି ଏକାବେଳକେ ମନଧ୍ୟାନ ଲଗାଇ ଚୋବେଇ ହେଲା ପାଉଁରୁଟି ଗଣ୍ଡେ, ସେତିକିବେଳେ ଏକସ୍ୱରିଆ ଓଟାରିଆ ସ୍ୱରରେ ଅଳସେଇ ଅଳସେଇ କହି ଲାଗିଲା ଆର୍ଦ୍ଦେଲିଅନ ।

"ବୁଝିଲୁ, ପଢ଼ୁଥିଲି ସେଦିନ ଡାକ୍ତର ଚିଠିଟା ପାଇଲେ ସବୁ, ସବୁ ମେଷି-ମୁଷିକାର କାରସାଦ, କହିଲା ସେ । ବଢ଼ିଆ ଚିଠିଟିଏ, ବୟସ ବେଶି ନୁହେଁ, ଛେଳିଶ୍ରିଟିଏ ଆସିଛି ଜାର୍ମାନୀରୁ—ଯୋଜନା କରି ଆସିଛି ମେଳାକୁ ଯିବ ବୋଲି ।"

ତାନ୍ଛୁ ଭେଦ ଟାଁଇ ଟାଁଇ ଆସିଲା ହଠାତ ଶବଦ୍ ବେଲୁଟା ଭଂଗା ଭଂଗା ସ୍ୱରରେ !

ସବୁଠୁଁ ଭଲ, ସବୁଠୁଁ ଅଚ୍ଛା, ସବୁଠୁଁ ବଢ଼ିଆ ଡାକ୍ତର, ରସୁଅଲିଆ ଖାନା ବୁଢ଼ାକୁ ଆପର, ଘଷ୍ଟେଇ ଦେ, ଘଷ୍ଟେଇ ଦେ, ବାପ ନୁହେଁ ସେ ବାପ ନୁହେଁ ତୋର ।

"ଏଇ ସେ ଯୁବତୀଟି ଏଇ !" ଭୁଟ୍ ଭୁଟ୍ ହେଲା ଅର୍ଦ୍ଦେଲିଅନ ମାନ୍ଦା-ଭାବରେ ଅନାଇ ରହି କାନ୍ଥକୁ ।

"ଦେଖିଲିଣି ତାକୁ", କହିଲା ଓସିପ୍ ।

ଅର୍ଦ୍ଦେଲିଅନ ମୁହଁ ଫେରାଇଲା ମୋ ଆଡ଼େ ।

"ଦେଖ୍‌ରେ ଭାଇ ଦେଖ୍, କ'ଣ କଲି ମୁଁ, ମୁଁ କଲି କ'ଣ ।"

ଭାବିଥିଲି, ଆଶଙ୍କା କରିଥିଲି ଓସିପ ଗାଳିଦେବା ଆରମ୍ଭ କରିଦେବ, ଠିଆରି କରିବ ଅର୍ଦ୍ଦେଲିଅନକୁ ଲମ୍ବା ବକ୍ତୃତାଟିଏ ଝାଡ଼ିବ ତା' ଉପରେ ଆଉ ସେ ଅପଦାର୍ଥ ପାପୀଟା ସେ, ଅର୍ଦ୍ଦେଲିଅନ ଲାଜରେ ଲେଉଟିଯାଇ ଅନୁତାପ କରିବ, ସଙ୍ଗେ ସଙ୍ଗେ କିନ୍ତୁ ଯେମିତି କିଛି ଘଟିଲା ନାହିଁ ସେଠି, ଦେହକୁ ଦେହ ଲଗାଲଗି ହୋଇ କାନ୍ଥକୁ ଡାହାଣ ଭିଡ଼ ବସି ରହିଲେ ସେ ଦୁହେଁ । ଶାନ୍ତଭାବରେ ଫକ୍ଷେପରେ ପଦେ ଅଧେ କଥାର ବିନିମୟ ଚାଲିଲା ତାଙ୍କ ଭିତରେ—ବଡ କରୁଣ ବଡ

କଷାଭମସ୍କୁ ଲାଗିଲା ସେମାନଙ୍କୁ ସେହିଭଳି ଅବସ୍ଥାରେ ଦେଖିବା ସେହି ଅନ୍ଧାରୁଆ ଅସନା ଜଘନ୍ୟ ଘରଟିରେ । ତାହାର ଝିଅଟି ଭ'ଙ୍ଗା ଭ'ଙ୍ଗା ରୁକ୍ଷ ସ୍ୱରରେ ବହି ଧୂଳିଆଏ ବ'ଣଗୁଡ଼ାଏ କାହିଁର ଜଣାଉଛି । ସେମାନେ କିଛୁ ଧ୍ୟାନ ଦେଇ ନ ଥାନ୍ତି ତା' କଥାକୁ । ଟେବୁଲ ଉପରୁ ଖୁଚୁରାଟାଏ ଉଠାଇ ନେଲା ଓସିପ୍ ମୁଠି ଭିତରେ ଚାପେଇ ଚାପେଇ ଝାଡ଼ିଲା ତାକୁ, ତା ପରେ କାନ୍ଥ ଉଡ଼ାଇ ଲାଗିଲା ସେଥିରୁ ।

"ସରିଗଲାଣି ତ ସବୁ ଟଙ୍କା ପଇସାତକ ଯାହା ଥିଲା ତୋର ?" ପଚାରିଲା ଓସିପ୍ ।

"ମୋଠୁଁ ଧାର କରିଛି କିଛି ପିଓଟର ।"

"ତେଣିକି ତୋର ତୋମସ୍କ ଚାଲିଯିବା ଉଚିତ । କ'ଣ ପାରିବୁ ତୁ କୌଣସିମତେ ଯିବା ପାଇଁ ବ୍ୟବସ୍ଥା କରି ।"

"ତୋମସ୍କ ଯେନ ମୁଁ ସେମିତି କିଛି ନିଶ୍ଚିତ ନୁହେଁ ।"

"କାହିଁକି ରେ ? କ'ଣ ମତଗତ ବଦଳାଇଲୁଣି ନାଁ କ'ଣ ?"

"ମୋତେ ଯଦି ବନ୍ଧୁବାନ୍ଧବ ନ ଡାକନ୍ତି, ନିମନ୍ତ୍ରଣ ନ କରନ୍ତି · ?"

"କ'ଣ ହେଲା ?"

"ମୋ ଭଉଣୀ ଆଉ ତା' ଗିରସ୍ତ···।"

"ଆଚ୍ଛା ?"

"ବନ୍ଧୁବାନ୍ଧବଙ୍କ ପାଖରେ ସେମାନଙ୍କ ପାଇଁ କାମ କରିବା ଖଟିବା ତ କୌତୁକଆ ନୁହେଁ ?"

'ସବୁ ମାଲିକ ସମାନ' ବନ୍ଧୁ ହୁଅନ୍ତୁ, ବା ବାନ୍ଧବ ହୁଅନ୍ତୁ ବା ନ ହୁଅନ୍ତୁ ।"

"ତଥାପି ତ ଧୃଷ୍ଟି···?"

ସେମାନେ କଥାବାର୍ତ୍ତା ହେବାକୁ ଲାଗିଲେ ଇମିତ ଗମ୍ଭୀରସ୍ୱରରେ ସହୃଦୟତାରେ ଯେ ତାହାର ଯୁବତୀ ସେମାନଙ୍କୁ ଟିହାଇ ଚଡ଼େଇବାକୁ ସାହାସ କଲା ନାହିଁ, ଚଡ଼େଇବା ବନ୍ଦ କରିଦେଲା ଥରକାକେ କେତେବେଳେ ଆସିଲା ସେହି ବଖରାଟି ଭିତରକୁ, କାନ୍ଥରେ କଣ୍ଟାରେ ଝୁଲୁଥିବା ସେମିଜ ବ୍ଲାଉଜ କାଢ଼ି ନେଇ 'ଅନ୍ତର୍ଦ୍ଧାନ' ହୋଇଗଲା ସେଠୁ ଚୁପଚାପ ।

"ବଯ୍ସର ଅଳ୍ପ ଟୋକାଟାର," କହିଲା ଓସିପ୍ ।

ଅର୍ଡେଲିଅନ ଅନାଇ ରହିଲା ଟିକଏ ଓସିପକୁ, କହିଲା ସହଜ ମଧୁର ସ୍ୱରବଳତାରେ :

"ଏ ସବୁ ସ୍ନେଫିମୁସଙ୍କାର କାମ, ତାଙ୍କ ହ୍ୱାସଲ୍ଲଭ—ସବୁ କହୁ ସବୁଆଏ ସେ ସବେ କେବଳ ମାଇକନଥାଙ୍କୁ ଦେଇ, ତାଙ୍କର ଯୁବ୍ବଗାଟି ଖାସା ଖ୍ୱସ୍ ମିଜାଜ ପ୍ରମୋଦମୀ ବେଶ । ସନ୍ଧାବେଳେ ଗପ, ଏଣ୍ଟ୍ରେଣ୍ଟ୍ ଅଦାମିକା କଥାଗୁଡ଼ାଏ ।"

"ଦେଖରେ ଆଖି ଖୋଲି ରଖିଆ, ସାବଧାନରେ ଚଲ ନଇଲେ ଚରଦନ ଲଗି ଲଖିଯିବୁଟି ।" ସତର୍କ କରଦେଲା ଫିପ୍ । ଶେଷଥର ପାରି ସ୍ଲେବେଇସାଗ ଶୁଖିଆ ଖଣ୍ଡି ଉଠିଲା, ବଦାସ୍ତ ନେଲା ତା ପାଖରୁ ।

ଫେରନ୍ତ ବାଟରେ କହିଲ ତାକୁ ;

"ତୁମେ ଯାଇଥିଲ କାହିଁକ ସେ ?"

"ଏମିତ ଦେଖିବାକୁ କଣ ପାରୁତ, ସେ ତ ସ୍ୱାଙ୍କଟାଏ ସାଥୀଟାଏ ମୋର । ଏମିତିଆ ଘଟଣା ବହୁତ ବହୁତ ଜାଣିଛୁ, ଦେଖିଛୁ ମୁଁ ଭଲ ମଣିଷଟିଏ ସୁରୁଖୁରୁରେ ଚଳୁଛୁ, କହୁ କେଉଁଠି ଏଣିକ ତେଣିକ ନାହିଁ । ଆଉ ଥିବ ଥିବ ହଠାତ୍ କୁହ ଦେବ କୋଉଠିକ ? ତୁହ ଦେବ ବନ୍ଦୀଶାଳାରୁ ଫିଫି ପଳାଇଲାପରି ।" କହିଲ ସେ ପୁଣି ନଜ କଥାକୁ ଦୋହରେଇ, "ରହ, ସ୍ନେଦକାରୁ ଦୂରେଇ ରହ ।"

ମିନଟକ ପରେ ମିଶାଇଲା ସେଇ କଥା ପଦକରେ ନକର :

'କନ୍ତୁ କେମିତ ମାଦା ନଜୀବା ତା' ବନା ।"

"ସ୍ନେଦ୍‌କା ବନା ?"

"ହଁରେ, ଥରେ ତୋକୁଟାଏ ପିଇଦେ ମର୍ତ୍ତ୍ୟ ସ୍ୱର୍ଗ ପରି ଲାଗିବ । ଲଡିବ ସଡେ ଯେମିତ ଆଉ ଗୋଟିଏ ଦୁନଆକୁ ଯାଇଗଲ୍ ।"

ପ୍ରକୃତରେ ଚଟଡାଳ ଲାଗି ଲଖିଗଲା ଅକ୍ଟୋବରଅନ କଟୁଡନ ପରେ କାମକୁ ଫେରଲା ସେ, ପୁଣି ଯୁହୁଁ ଯୁହୁଁ କେଇଟା ଦନରେ ଲୱାନ ହୋଇବଲା ଲୁଅଡ଼େ, ବହନ୍ତ ଆସିଲା ମନେ ଦେଖିଥିଲ ଦନେ, ତା' ସାଙ୍ଗରେ ଭେଟ ହୋଇଗଲା ଯେତେବେଳେ ଅସ୍ୱନକ, ଆଉ କେତେଜଣ ବାରବୁଲ ନାରଙ୍ଗଆ ଶ୍ରମିକଙ୍କ ସଙ୍ଗରେ କାହିଁକାଲରେ ଗୋଟିଏ ପଟଳନରୁ ବସିଯାଇଥିବା ବରଫ ଛେଡ ବାହାର କରୁଥ, ଦହଳ୍କ ଦହେ ଖସି ହୋଇଗଲ୍ ମୁହାମୁହିଁ ଭେଟାଭେଟି ହୋଇ ଯାଇଲୁ ଯାହା ଖଟିକୁ ।

"ମନେ ଅଛୁ ନା, କେମିତ କାମିକା ଶ୍ରମିକଟାଏ ଥିଲ ମୁଁ ?' ଯାହା ପିଉ ପିଉ ଗଟ ଦେଖାଇ କହିଲା ସେ "ନା, ମନାକର ହେବ ନାହିଁ, କେହି ନ ମାନବ, ଏମିତ ନୁହେଁ, ମୋ କାମରେ ଥିଲ ମୁଁ—ଗୋଟାଏ ସାହୁକାର ଗୁଣିଆ ! ପାଉଥାନ୍ତି ଯାହିଁଥିଲେ ପାଉଥାନ୍ତ ଶହ ଶହ ରୁବଲ ରୋଜଗାର ଦଶ ।"

'କନ୍ତୁ ମୁଁ ଦଲ ନାହିଁ ।"

"ହଁ, କଲ୍ୟାଣହିଁ କଲ୍ୟାଣହିଁ ସତ, ସ୍ୱର ଚଢ଼େଇ କହୁଲା ବଢ଼େଇ କାଠି, ସ୍ୱର କାମଟା ଯେ ଖାଉର କରଥାନ୍ତୁ ।" (ବୁଝାଖିଏ ବା ଭ୍ରମିର ଫଳଲକ୍ଷି ନୁହେଁ)।

ଏତେବେଳକୁ ବହୁ ବହୁ ଏମିତ ଦମ୍ଭରେ, ଗୋଟାଏ ଉପଭର ଠାଣି ଧରଥାଏ ସେ, ସ୍ୱହା ଶଟିରେ ଯେତେ ଯିଏ ଥିଲେ ତାଙ୍କ ଆଖିପଡ଼ିଲା ସେଥିରେ ।

"ମନେ ଅଛୁ ନା' ପିଓନ, ସେଇ ମନ୍ତ୍ରମୂର୍ତ୍ତିଁ। ସ୍ୱେରଟା କଣ କହୁଥାଏ କାମ ବନ୍ଦସ୍ୱରେ ? ଇଟା ପଥର ଘର ଅନ୍ୟମାନଙ୍କ ପାଇଁ ତମପାଇଁ—କାଠ କଫିନ ।" ଶୁଝିଲୁ ଏଥର, ଦେଖ ଏଇ ତମର କାମ ସେଠି ।

"ପିଓନ ତ ସ୍ୱେରିଣାଟା ସ୍ୱେଟରେ ସଡ଼ିସାଡ଼ି ବରକ୍ତ ସେ । "ଦୁର୍ବଳଥା" କହୁଲା ତାର ଡର ମରଣକୁ, କାଲେ କେତେବେଳେ ମରିଯିବ ସେ ।

"ମୁଁ ବରକ୍ତ, ମୋର ମନଟା ବ ପିତା ।" ପାଟିକରି ଉଠିଲା ଅର୍ଦ୍ଧେନ୍ଦୁଅନ "ଅମ୍ଳା ମୋର ସ୍ୱେଗ କବଳରେ ସ୍ୱେଗର ଗ୍ରାସରେ ।"

ବହୁବାର ହେଲେ ଅନେକ ସମୟରେ ସହରର କେନ୍ଦ୍ର, ଅଞ୍ଚଳଟା ଛାଡ଼ି ଚାଲିଯାଉଥାଏ "ଅବତରଣ" କରୁଥାଏ, କୋଟିପତ୍ର ଘଲନ୍ତେ, ଯେଉଁଠି ରହୁଥାନ୍ତି ଚଳପ୍ରଚଳ ହେଉଥାନ୍ତି ଦୁନିଆଁଟା ଯାକରେ ବାଉବୁଲା, ଅପଣ ! ଦେଖିଲା କେତେ ଚଞ୍ଚଳ ଅର୍ଦ୍ଧେନ୍ଦୁଅନ ସେହି କାଉଚାଟଙ୍କ ସଙ୍ଗେ ମିଶି ହଜିଗଲା, ସେମାନଙ୍କ ଭିତରୁ ଯେ କୌଣସିଟି ଭଲ ଜଣେ ହୋଇ ଉଠିଲା ୧ଅତ ବର୍ଷକ ଆଗରୁ ସେ ଥିଲା କେତେ ହସଖୁସିଆ, ଦଲଦାରିଆ, ମଧୁରିଆ ପୂର୍ଣ୍ଣ ଧୀର ସ୍ଥିର ମନର କେତେ କାମିକା ହୁମିଚ୍ଛ ଏ । ଏତେବେଳକୁ ତାର ସ୍ୱଭାବରେ ଆସିଯାଇଥିଲା ଅଶ୍ଳୀଳତା, ଅଭଦ୍ରତା, ଗ୍ୱଳଚଳଣରେ ଦେଖାଉର ବେପରୁଆସ୍ୱଭ, ସ୍ୱହାଣୀରେ ଦୁନିଆକୁ ଅମାନ୍ୟ କରିବା ଭଙ୍ଗୀ, ଅବାଧ୍ୟତା—ସବୁ ଯେମିତ ସଦାବେଳେ ସେ ସମସ୍ତଙ୍କୁ ଆହ୍ୱାନ ଦେଉଥିଲା ବାହାସ୍ତୋଟମାର କଲ କରିବାକୁ ତା' ସଙ୍ଗରେ ।

"ଦେଖ ଏବେ ଲୋକେ ମୋ କଥା କେତେ ଶୁଣୁଛନ୍ତି, ମୋ କଥା ମାନୁଛନ୍ତି—ଏଠି ମୁଁ ଏବେ ନେତା ।" ସେ ଛାତି ଫୁଲେଇ କହିଲା କେତେବେଳେ ।

ଖର୍ଚ୍ଚ କରିବାକୁ ପଇସା ଉଡ଼େଇ ଦେବାକୁ ଅକୁଣ୍ଠିତ ହୋଇ ସେ ଯେତେ ଯାହା ରୋଜଗାର କରୁଥିଲା, ଆନନ୍ଦରେ ଖର୍ଚ୍ଚ କରୁଥିଲା ସେହି ବାଉବୁଲାମାନଙ୍କ ପାଇଁ ଆଉ ସବୁବେଳେ ପଶୁଥିଲା ଯେଉଁଠି, କଳି ଲାଗିଲେ ସେମାନଙ୍କ ଭିତରେ ତାହା ତାହା ମଧ୍ୟରେ ହେଲେ କଳି ତକରାଳରେ ପଶୁଥିଲା, ଯିଏ ହାରୁଥିଲା ବା ହାରିବାକୁ ଯାଉଥିଲା ତା' ପକ୍ଷରେ । ଅନେକ ସମୟରେ କାନରେ ପଡ଼ୁଥାଏ ପାଟିକରି କହୁଥାଏ ସେ ।

"ଅନ୍ୟାୟ ସେଇଟା ଅନ୍ୟାୟ ଦୋଷ, ନ୍ୟାୟ ବାଟ ଧରିବା ଉଚିତ।"

ତେଣୁ ସେମାନେ ତା'ର ଡାକ ନାଁ ଦେଇଥିଲେ 'ନ୍ୟାୟବନ୍ତ' ଆଉ କେତେ ଖୁସି ହେଉ ନଥିଲେ ସେ, ସେଥିରେ, ସେଇ ଡାକ ନାଁଆରେ।

ବୁଝିବାକୁ ଚେଷ୍ଟା କରୁଥିଲି ସେଇ ଲୋକଗୁଡ଼ାକୁ କ୍ଷୁଦ୍ର ହୋଇଥିଲେ ଯେଉଁମାନେ ଅଳିଆ ଆବର୍ଜନାରେ, ଦୁର୍ଗନ୍ଧରେ ଭରିଭରି ମଇଳାଚିଆ ପୁରୁଣା ପଥର ବସ୍ତିଭଳି ଗଳି କନ୍ଦିରେ, ସେମାନେ ସମସ୍ତେ ଖସି ଆସିଥିଲେ ଜୀବନର ମୁଖ୍ୟଧାରରୁ, ମୁଖ୍ୟ ସ୍ରୋତରୁ। କିନ୍ତୁ ଲାଗୁଥିଲା, ସେମାନେ ସୃଷ୍ଟି କରିଥିଲେ ପୁଣି ସେଠି ନିଜ ନିଜର ଭିନ୍ନ ଜୀବନ-ଯେପରି ହୃଦୟ ଖୋଲା, ଆମୋଦ ପ୍ରମୋଦମୟ, ସେଇପରି ସ୍ୱତନ୍ତ୍ର, ସ୍ୱାଧୀନ। ହାହାକାରୀ ଆଉ ଜୀବନ ଜଞ୍ଜାଳରେ ଅବନ୍ଧା ମୁକ୍ତ ଚିନ୍ତିନ୍ତ ସେମାନେ। ତାଙ୍କୁ ଦେଖିଲେ ମୋର ମନେ ପଡ଼ିଯାଉଥିଲା ଅନେକଙ୍କର ସେଇ କାହାଣୀଗୁଡ଼ିକ ଶେରଉଡ଼ର ରବିନହୁଡ଼ମାନଙ୍କ ସମ୍ପର୍କରେ। ସେଇ ଯେଉଁମାନେ ସଉକରେ ମୁହୂର୍ତ୍ତକରେ ବଦଳିଯାଇ ପାରୁଥିଲେ ଚୋର, ତସ୍କରରେ ନଇଲେ ଅବା ଋଷି-ମହର୍ଷିରେ। କାମ ନଥିଲାବେଳେ ସେମାନଙ୍କର, ସେମାନେ କେବେ ଉତ୍ତେଜିତ ହେଉ ନଥିଲେ ଗ୍ରେଟ ଗ୍ରେଟ ଗ୍ରେଶ କରିବାକୁ ନାହିଁ ପଟେତନରୁ ଅବା କ୍ରିମର ଗୁଡ଼ାକରୁ, କିନ୍ତୁ ସେମାନଙ୍କର ସେଇ କାମ ଅଣ୍ଟ ମାତ୍ରାରେ ତଟସ୍ଥ କରି ଦେଉନଥିଲା ମତେ, ଦେଖିଥିଲି ଦେଖୁଥିଲି ଜୀବନଟାରେ ରଙ୍ଗ ଭରିରହିଛି, ଜୀବନଟାରେ ତାଳ ପଡ଼ୁଛି ପୁରୁଣା କୋଠରେ ପଶିଆସି ଦୁଆରେ, ହେଉ ସେଥିରେ କିନ୍ତୁ ଅଦ୍ଭୁତ ଦେଖିଥିଲି ଆଉ ବି, ବେଳେବେଳେ ଶିଶିର ଝରା ଲାଗିଗଲେ କି କେଉ ଭିତରୁ ଦରଜ ବାଡ଼ିବାଟ ଫିଟାଇବାକୁ ଗଲେ କମ୍ପା କନକପାଣି ଲଦାଲଦି ଜବରଦସ୍ତ ହୋଇପଡ଼ିଲେ ସେଇ ଲୋକଗୁଡ଼ାକ, ମାଡ଼ି ନାଉଣ ସବୁ ଲାଗିଯାଉଥିଲେ ପ୍ରାଣମୂର୍ଚ୍ଛା କାମରେ ବହୁଳ ଉତ୍ସାହରେ—ସେ କି ସ୍ୱାର୍ଥତ୍ୟାଗରେ ଦେଖି ନିଜ ନିଜର ସମସ୍ତ ଶକ୍ତି ସମସ୍ତ ବଳ ଖଟାଇବାରେ ଟିକେ ମାତ୍ର କୁଣ୍ଠିତ ନ ହୋଇ—ସେ କି ଆବେଗରେ: ଆଉ ମୋଟାମୋଟି ଭାବରେ ସେମାନେ ଥିଲେ ହସଖୁସିଆ, ମନ ଉଲ୍ଲାସିଆ ଅନ୍ୟ ସବୁ ଲୋକଙ୍କ ତୁଳନାରେ।

ଓସିପ୍ କିନ୍ତୁ କେତେବେଳେ ଲକ୍ଷ୍ୟକରି ଦେଖିଲା ଅର୍ଦ୍ଦେଲିଅନ ସହିତ ମୋ ବନ୍ଧୁତ୍ୱ ପିତୃସୁଲଭ ସ୍ୱରରେ କହିଲା ସେ ମତେ ଚେତେଇ ଦିଆର କହିଦେଇ— ।

"ଶୁଣ ବାବୁ! ଦେଖ, ତଳ ତଳର ସେଇ ଟକାଚିପଣ ଗୁଣ୍ଡାଙ୍କ ସଙ୍ଗରେ ମିଳାମିଶା, ବସା ଉଠାରେ ବନ୍ଧୁପଣିଆ ଟିକିଏ ବେଶି ହୋଇ ଯାଉନି କି? ଦେଖ, ପୁଅ, ତୋର ଯେମିତି କିଛି ନ କରନ୍ତି ସେମାନେ।"

ଯେତେଦୂର ପାରେ ସାଧ୍ୟମତେ ବୁଝାଇଲି ତାଙ୍କୁ । ସେଇ ଲୋକଗୁଡ଼ାକ ଭଲ ଲାଗୁଛନ୍ତି ମୋତେ, କେମିତି କେଡ଼େ ବେପରୁଆ ଭାବରେ ଚଳୁଛନ୍ତି ସେମାନେ, କାମଦାମ କିଛି ନ କରି ବି, ମୁକ୍ତ ପ୍ରାଣରେ—ଅବାଧରେ— ।

"ଅବାଧରେ, ଚଢ଼େଇଙ୍କ ପରି ମୁକ୍ତ ଭାବରେ ।" ମୋ କଥାରେ ବାଧା ଦେଇ ହସି ହସି କହିଲା ଓସିପ୍, "ତାର କାରଣଟା ଅଳସୁଆ ମଠୁଆ, ସେମାନେ ନିକମାଗୁଡ଼ାକ—ଯୋଗ୍ୟ ନୁହନ୍ତି କୌଣସି କାମକୁ, ତାଙ୍କ ପାଇଁ କାମ ଯେମିତି ଗୋଟାଏ ଦଣ୍ଡ, ଗୋଟାଏ ଶାସ୍ତି ।"

"କେହି ଭଲ ଖୁସି କାମକରି, କେହିଭଲ ସୁଖ ପାଉଛ, ଆନନ୍ଦ ଉପଭୋଗ କରୁଛ କାମରେ ।" କେହି କେବେ ସଚ୍ଚୋଟ ଶ୍ରମର ନିଜପାଇଁ ତୋଳିପାରି ନାହିଁ ପ୍ରାସାଦଟି ? ଯାହା କହନ୍ତି କଥାରେ ।"

ଅବଲୀଳା କ୍ରମେ ଉଚ୍ଚାର କରି କହିଦେଲି କଥା ପଦକ ମନରୁ, ଏମିତି ଏତେ ଅନେକ ସମୟରେ, ପ୍ରାୟ ସବୁବେଳେ । ଅନେକଥର ଶୁଣିଥାଏ ଯେଉଁଟି— ଆଉ ଯାହା ମୋତେ ଲାଗିଥାଏ ଅକାଟ୍ୟ ସତ୍ୟ ବୋଲି, କିନ୍ତୁ ଓସିପ୍ ଏଥିରେ ରାଗିଗଲା ଏବଂ ପାଟିକରି ଉଠିଲା :

"କଏ, କଏ କହେ ରେ ଏମିତି କଥା ସବୁ ? ବୋକା, ଧର୍ମ୍ମ ନିର୍ବୁଦ୍ଧିଆ, କପଟ ଅଳସୁଆଗୁଡ଼ାକ କହି ହୁଅନ୍ତି ଏମିତି, ବକଟେନାକୁ ଚୁ କୁକୁରଛୁଆ ଭଳି, ଉଚିତ ନୁହେଁ ତୋର କାନ ପତେଇବା ସେଥିକି, ଯେଉଁମାନେ ପରଶ୍ରୀ ଦେଖି ପାରନ୍ତି, ଈର୍ଷା, ହଂସୁକୁଟିଆ କିମ୍ବା ଯେଉଁମାନଙ୍କର ଆଉ କିଛି ଆଶା ଭରସା କୋଉଠି ନାହିଁ, ସବୁ କାମରେ ହାରି ହାରି ଆସୁଛନ୍ତି, ବିଫଳ ହେଉଛନ୍ତି, ସେହି ମାନେ ଘୋଷି ହୁଅନ୍ତି ଏମିତି ରୁକ୍ଷ, ଅଳଣା ନିରର୍ଥକ କଥାଗୁଡ଼ାକ । ଦେଖ୍, ଉଡ଼ିବା ପୂର୍ବରୁ ଭଲ ପରତକ ଲମ୍ବିପାଏ ବଢ଼ି ଉଠେ ଯଦି ତୋର ତା'ପରେ ଉଡ଼ିବୁ ପଛେ । ଆଉ ତୋର ଏହି ବଂଧୁତା, ତୋର ଏହି ସାଙ୍ଗସାଥୀ ପଣ ଯେକ, ଦେଖି, କହିବୁ ସବୁ, ତୋ ମାଲିକକୁ—ତେଣିକି ଆଉ ଦୋଷ ଦେବୁନୁ ମତେ, ଦୋଷ ଦେଇଥିବୁ ନିଜକୁ ।"

ଆଉ ପ୍ରକୃତରେ ସେ କହିଦେଲା ମୋ ମାଲିକଙ୍କୁ, ଓସିପ୍‌କୁ ଡ଼କାଇ ତା' ସାମନାରେ କହିଲେ ମତେ ମାଲିକ ।

"କୋଟିପତି ଗୁଡ଼ାଙ୍କୁ" ଛାଡ଼ ପେଶ୍‌କର୍, ସେଗୁଡ଼ାକ ସମସ୍ତେ ହେଉ ଗଳାର ଚୋର-ତସ୍କର, ବେଶ୍ୟା-ପଠଡା, ସେମାନଙ୍କ ପାଇଁ ସଳଖିବାଟ ପଡ଼ିଛି ଜେଲଖାନାକୁ ନଇଲେ ହସପିଟାଲକୁ, ଛାଡ଼ ସେମାନଙ୍କୁ ଛାଡ଼ ସେମାନଙ୍କ ସାଙ୍ଗ ।"

ଲୁଚେଇବାକୁ ଆରମ୍ଭ କରି ଦେଲି "କୋଟିପଡ଼" ଗଳାକୁ ଯା ଅସ ମୋର । କିନ୍ତୁ ଖୁବ୍ ଶୀଘ୍ର ବାଧ୍ୟ ହେଲି ତା' ବଂଦ କରିବାକୁ ଗୁଣ୍ଡିବାକୁ ସେ ସାତଟା ।

ଦିନେ ଆର୍ତ୍ତେଲିଅନ "କର୍ତ୍ତ" ଆଉ ମୁଁ ଗୋଟିଏ ଲଜଂହାଉସ ଅଗଣାରେ ଗୋଟିଏ ଶେଡ଼୍ର ଟିଣଛାତ ଉପରେ ବସିଥାଉ, କର୍ତ୍ତ ଆମକୁ ବର୍ଣ୍ଣନା କରି ଶୁଣାଉଥାଏ ମନହର୍ଷିଆ ବଦଭଣୀ ସବୁ— ସେ କିମିତି ମସ୍କୋରୁ ସେଣ୍ଟଭଙ୍କୁ ସ୍କଲ ସ୍କଲ ଆସିଥିଲି କାଠୁଦନ ତଳେ । ସେ ଥିଲି ଆଗେ ଜଣେ ସୈନିକ—ଏକ ଇଂଜିନିଅର ପଲଟନରେ— ପୁରସ୍କୃତ ହୋଇ ମଣ୍ଡିତ ହୋଇଥିଲି ସେଣ୍ଟଜର୍ଜ କ୍ରୁଶ୍ ପଦକରେ । ଆହତ ହୋଇଥିଲି ଆଣ୍ଠୁରେ, ଗୃହ ଯୁଦ୍ଧରେ, ସେଥିରେ ସେ ଖଂଜ ହୋଇ ଯାଇଥିଲି ଜୀବନଟାଯାକ ପାଇଁ, ବାଙ୍ଗର, ଟାଣୁଆ, ମୋଟାମୋଟି ପିଟା ପଟି ହୋଇଗଢ଼ା, ଦେହରେ ହାତଦୁଇଟାରେ କି ଅସୀମ ବଳ ଥିଲି, କିଂତୁ ତ'ଣ ହେବ ସେ ବଳ ଖର୍ଚ୍ଚ ହେବାପାଇଁ ନିଯୁକ୍ତ ହେବାର କୌଣସିରେ ଉପାୟ ନ ଥିଲି ! କାରଣ ଖଂଜପଣ ଅନ୍ତରାୟ ହୋଇଥିଲି ତା' କାମ କରିବାରେ, ଖଟଣିରେ । ତ'ଣ ଗୋଟାଏ କି ରୋଗ ହେଉ ଉପୁଡ଼ି ଯାଇଥିଲି ତା' ନିଶ ଦାଢ଼ି ଆଉ ମୁଣ୍ଡ ବାଳସବୁ । ତେଣୁ ତା' ମୁଣ୍ଡଟା ଚନ୍ଦା, ଟାଙ୍ଗରା ଦିଶୁଥିଲି କଅଁଳା ପିଲି ମୁଣ୍ଡ ପରି ।

ତାର ହଳଦିଆସିଆ ଚୈଳମ୍ପଟିକ ଭଳି ଆଖିରେ ଦ'ଟା ଝଲସି ଉଠୁଥାଏ, କହୁଥାଏ ସେ ।

"ଏମିତି ଆସି ପହଂଚିଗଲି ସେର ପୁଖଭରେ, ସେଠି ଦେଖିଲି ପାଦ୍ରୀଟାଏ ବସିଛି ବାଡ଼ି ଅଗଣାରେ ତା'ର । ତା' ପାଖକୁ ମାଡ଼ି ଯାଇ କହିଲି "ଗୃହ ଯୁଦ୍ଧରେ ଗୋଟିଏ ଲଢ଼ୁଆ ବୀର ମୂର୍ଦ୍ଧରେ ଟିକିଏନାକୁ କିଛି ଦେବାକୁ ମିଳିବ କି ? ଟିକିଏ କିଛି ଦୟା କରିବ ?"

ଆର୍ତ୍ତେଲିଅନ ମୁଣ୍ଡ ହଲାଇ କହିଲି :

"ଆରେ ହେ, କେଡ଼େ ମିଛୁଆ, କେଡ଼େ ମିଛୁଆ !"

"ମିଛୁଆ କାହିଁକି ?" ପଚାରିଲି କର୍ତ୍ତ ଡାଳେହେଲେ ଅପମାନିତ ବୋଧ ନ କରି । ଆର୍ତ୍ତେଲିଅନ କିନ୍ତୁ ଅଳସ ଭର୍ତ୍ସନାର ସ୍ୱରରେ କହି ଲାଗିଲି :

"ନାଁ ସତ ସଚୋଟ ସ୍ୱବରେ ଚଳିବା ଉଚିତ ତମର । ସତ କଥାଅଛି ସତ ପଦରେ କାମଟାଏ ସବୁ ଗ୍ରେଟା ଖଂଜ ଲୋକଙ୍କଭଳି ଯୋଗାଡ଼କରି ନିଅ, ଯୋଗାଡ଼କରି ନେବା ଠିକ୍ ହେବ, ବୁଝିଲ, ଅଥଚ ତମେ କଣ କରୁଚ ନା ଓଲଟି ନଣାଚରଭଳି ଶିକାର ଖୋଜ ବୁଲୁଛ, ଗପୁଛ ମିଛଗୁଡ଼ାଏ ।"

"ଆରେ ଭମିତି ମଜାରେ, ମଜାରେ କୌତୁହଳରେ କହୁଚ ନାଁ ସବୁ, ଲୋକଙ୍କୁ ହସେଇବା ପାଇଁ କହୁଚ ନାଁ ସବୁ ।"

"ଜଳେ ତମେ ହସୁନ କାହିଁକ ?"

ଖରାପାଗ ସେ ଦିନ, ଚକ୍‌ଚକ୍‌ କରୁଥାଏ ସୂର୍ଯ୍ୟଆଡ଼େ । ଏହା ସତ୍ତ୍ୱେ ଅନ୍ଧାରିଆ ଓ ଅସନା ହୋଇ ପଡ଼ିରହୁଥାଏ ଅଗଣାଟା । ସେଇ ଅଗଣା ଭିତରକୁ ପଶି ଆସିଲା ଚଢ଼େଇଟିଏ—ନିଜ ମୁଣ୍ଡ ଉପରେ କଣ ହଲେଇ ହଲେଇ ଡାକ ଛାଡ଼ିଲା ।

"ଅଲେ ଏ, କଏ ଅଛ ଲେ, ଟୋକା ଟୋକଣୀଏ—ମାଇପେ ସବୁ, କାହାର ଲୋଡ଼ା ସେମିଜ୍‌ଟା ?"

ଘରଗୁଡ଼ାକ ଫାଟ ଭିତରୁ କଣା କଣା ଗଳିବାଟ ଭିତରୁ ଗୁରୁଣ୍ଡି ଗୁରୁଣ୍ଡି ହାମୁଡ଼େଇ ହାମୁଡ଼େଇ ବାହାରି ଆସିଲେ ମାଇପେଗୁଡ଼ାଏ, ଦେଖିଲେ ସେଇ ଚଢ଼େଇଟିକୁ, ଫଟେ ଫଟେ ଚାହିଁ ପାରିଲେ ତାକୁ ନାଟାଳିଆ ସେଇ ଧୋବଣୀ, ଛାତ ଉପରୁ ଡେଇଁପଡ଼ିଲା ବେଳକୁ ମୁଁ, ସେ ବାହାରି ଯାଉଥାଏ ଅଗଣା ଛାଡ଼ି, ଅଗଣାରେ ବକସାର ସେମିଜଟାକୁ ପହିଲି ଜଣାଇ, ଦରକଣ୍ଠା ମାଇପିଟାକୁ ।

ପଛକୁ ଯାଇ ଫାଟକ ପାଖରେ ତା' ପାଖରେ ମନ ହରଷରେ ଡାକିଲି, ଅଲେ ଆଲେ ।

"ମ ଏଇଆ, ଏଇଆ କ'ଣ କହନ୍ତି ସେ ମ ଏମିତି ? ପକ୍ଷୀଟା ସେ ଅଖି କଣରୁ ଢଳେଇ ସୁହାଣୀଟାଏ ହାଣି ! ତା' ପରେ ହଠାତ୍‌ ଛୁଡ଼ା ହୋଇ ଘୂମୁଟିଏ ପରି କହିଲା ବଡ଼ ପାଟିରେ ସ୍ୱରରେ ଜର ଜର ହୋଇ ।"

"ଆଲେ ମା, ହେ ମହାପ୍ରଭୁ, ତୁ କ'ଣ କରୁଛୁ ଯେ, ଏଠି ?"

"ଚମକପଡ଼ି ସେ ଏଡ଼େ ଯେଉଁ ଚିତ୍କାର କରି ଉଠିଲା ସେଥିରେ ଯେତିକି ଅଭିଭୂତ ସେତିକି ବିବ୍ରତ ହୋଇଥିଲି ମୁଁ । ଭୟ ଆଉ ବିସ୍ମୟ ସ୍ପଷ୍ଟଭାବରେ ଲେଖିହୋଇ ଯାଇଥିଲା ତାର ବୁଦ୍ଧିଦୀପ୍ତ ମୁହଁରେ ଉପଲବ୍ଧି କଲି ସେ ଶଙ୍କିତା ହୋଇ ଉଠିଥିଲା ମୋ ସମ୍ପର୍କରେ । ବ୍ୟସ୍ତ ହୋଇ ତରବରରେ ବୁଝାଇଦେଲି ତାକୁ ସେ ଗଳାରେ ରହି ନ ଥିଲି ମୁଁ, କେମିତି ଦେବେକେବେ ଅସୁଥିଲି ଦେଖିବା ପାଇଁ ।"

"ଦେଖିବା ପାଇଁ, ମୋ କଥାଟାକୁ ଦୋହରାଇ ବିଦ୍ରୂପାତ୍ମକ କର୍କଶ ନୋଧରେ କହିଲା ସେ—ଦେଖିବା ପାଇଁ କେଉଁଠି କ'ଣ ? ବାଟୋଇଙ୍କ ପକେଟଗୁଡ଼ାକୁ ମାଇପିଗୁଡ଼ାକଙ୍କର ବାଂଚିଲା ତଳକୁ, ଏଇଆ ଏଇଆ ନା ?"

ଜୀର୍ଣ୍ଣଶୀର୍ଣ୍ଣ, ହୋଇଯାଇଥାଏ ମୁହଁଟି ତା'ର ଓହଳି ପଡ଼ୁଥାଏ ଓଠ ଦିଓଟି—ଆଖି ତଳେ ତଳେ ଦିଶୁଥାଏ କଳା କଳା ଦାଗ ଅଖି ଯୋଡ଼ିକୁ ମୁଣ୍ଡ ଲେଇ ସ୍ୱରପଟୁ ।

ଗୋଟିଏ ଖଟି ପାଖରେ ଛିଡ଼ା ହୋଇ ରହିଲା ସେ ଏବଂ କହିଲା :

“ଆ, ଆ ଭିତରକୁ ଆ, ସୁରା ଗିଲାସେ ପିଇବୁ—ଆ ଆ ବେଶ୍ ସଫାସୁତୁରା ପିନ୍ଧିଛୁ, ଏଇ ଲୋକଗୁଡ଼ାଙ୍କ ଭଳି ନୁହେଁ କିନ୍ତୁ କାହିଁକି କେଜାଣି ବିଶ୍ୱାସ କରିପାରୁନି ତତେ, ଯାହା କହୁଛୁ ତୁ ।”

କିନ୍ତୁ ଖଟି ଭିତରେ ପଶିସାରିଲା ପରେ ମନେହେଲା ତାର ବିଶ୍ୱାସ ଫେରି ଆସିଲା ମୋଠି, ମୋ କଥାକୁ ! ସୁରା ଢାଳି ଗିଲାସରେ ମାନ୍ଦା ମାନ୍ଦା ଝିଙ୍କେ ଗପିବାକୁ ଆରମ୍ଭ କରିଦେଲା କେମିତି ମାତ୍ର ଘଣ୍ଟାକ ଆଗରୁ ନିଦରୁ ଉଠିଥାଏ, ବିଛଣା ଛାଡ଼ିଥାଏ, ଆଉ ସେ ପର୍ଯ୍ୟନ୍ତ ତୁଣ୍ଡରେ ଦେଇ ନ ଥାଏ କିଛି ଖୁଂଫୁଟି ଟୁକୁରାଏ କି ପାଣିଫାଣି ଟୋପାଏ ବି ।

“କାଲି ରାତିରେ, ଜାଲିମ, ଏ ଯେଉଁ ସ୍ୱାଦଟା ପାଇଲି ପିଇ ପିଇ ଘୋଡ଼ା ସଇସପରି ବୁଝିଲୁ ଚେତା ହରାଇ ଗଡ଼ୁପଡ଼ୁଥିଲୁ, ବିଛଣାରେ ମଲା ମୋର ମନେ କଣ ଅଛି କେଉଁଠି ବସି ପିଉଥିଲି ଆଉ କାହା ସାଥୀରେ ।”

ମନରେ ଦୁଃଖ ଲାଗିଲା, ତା ପାଇଁ, କେମିତି ଅସ୍ୱସ୍ତିଆ ଅସ୍ୱସ୍ତିଆ ଲାଗିଲା ତା' ଆଗରେ ତା' ପାଖରେ ବସି ଆତୁର ହୋଇ ଜାଣିବାକୁ ଇଚ୍ଛା ହେଲା ତା' ଝିଅ ସଂପର୍କରେ । ସୁରା ଆଉ ଭୋଦକା ପିଇ ସାରିଲା ପରେ କଥା ଛୁଟିଲା ତା' ମୁହଁରୁ ତାର ସ୍ୱାଭାବିକ ତୁରତୁରିଆ ଖରଖରିଆ ସ୍ୱରରେ । ସେଇ ଦଳର ସବୁ ମାଇପି ଲୋକଙ୍କଠି ସାଧାରଣ ଯାହା ସମାନ ସେହି ଶାଳୀନତାହୀନ ସ୍ଥୂଳତାରେ ଅଶିଷ୍ଟତାରେ, କିନ୍ତୁ ତା ଝିଅ ବିଷୟ ପଚାରିଦେଲା ମାତ୍ରେ ମୁଁ, ହଠାତ୍ ସ୍ଥିର ହୋଇଗଲା, ମତଲବଟା ସଂଯତ ହେଲା, କହିଲା ସେ ଧୀର ହୋଇ :

“କାହିଁକି ପଚାରୁଚ୍ ସେ ? ନା'ରେ ପୁଅ ନାଁରେ ଧନ, ଯେତେହେଲେ ପହଂଚ ପାରିବୁ ନାହିଁ ତୁ ତା' ପାଖରେ ଏ ଜୀବନରେ, ଯେବେହେଲେ ନୁହେଁ, ଜୀବନରେ ବଞ୍ଚିଥିବା ପର୍ଯ୍ୟନ୍ତ ।

ଆଉ ଢୋକେ ଭୋଦକା ପିଇକରି ସୁଲିଲା ସେ ।

“ମୋ ଝିଅର ମୋଠି ଆଉ ବା କାମ କ'ଣ; ମୋ ସାଥୀରେ ବା କି ସମ୍ବନ୍ଧ, କିଏ ମୁଁ ? ଧୋବଣୀଟାଏ ? ତା'ଭଳି ଝିଅଟାଏ ଲାଗି କି ମା'ଅଟା ବା ମୁଁ କି ଧରଣରେ ମା' ? ପାଠ ପଢ଼ିଛି ସେ, ପାଠୋଇ ସେଇ ତ ବଡ଼ କଥାଟେ ଭାଇ ! ତେଣୁ ସେ ଛାଡ଼ି ଚାଲିଗଲା ମତେ ତାର ଜୋଉ ସଙ୍ଗୀ ପାଖରେ ରହିବାକୁ ମିଶିବାକୁ ତା' ସାଥୀରେ ବଡ଼ ଲୋକର ଧନୀ ଝିଅଟାକ ନାଁ । କୋଉଠି କାହା ଘର ଚଳାଇବା ପାଇଁ ଥବଧାନଆଣୀଟାଏ ହେବା ପାଇଁ ବୋଧେ ।”

ଟିକିଏ ରହି, କହିଲା ସେ ନରମସ୍ୱରରେ :

' କାହାର କ ଲେଡାରେ ଧୋବଣୀଟାଏ ଠିଁ, କ ତରକାର ଧୋବଣୀଟାଏ ? ନାଁ କାହାର କାମକୁ ନୁହେଁ ସେ—ହୁଏତ ଲେଡ଼ା ସେମାନଙ୍କର ସମସ୍ତଙ୍କର ଲେଡ଼ା ବାରବୁଲି ମାଇକିନିଆ, ବେଶ୍ୟାସବୁ ଏଃ ?”

ସେ ଯେ ବାରବୁଲି, ବାରନାରୀ ସଂଗେ ସଂଗେ ଅନୁମାନ କରନେଲି, କେଉଁ ମାଇପଟି ବା ସେହି ଗଳିରେ ବାରବୁଲି, ବାରନାରୀ ବେଶ୍ୟା ନ ଥିଲା ? ଥିଲେ ସମସ୍ତେ କିନ୍ତୁ ସେ ନିଜକୁ ନିଜେ ତାହାହିଁ କହିବ ନିଜଠି ସେହି ନାଆଁଟି ଲଗାଇବ । ଏଇ କଥାଟା ଗୋଟାଏ ପ୍ରଚଣ୍ଡ ଧକ୍କା ମୋ ମନରେ, ଲଜ୍ଜ୍ୟାର ଦସ୍ତାର ତଳୁ ଉଦ୍ଭାସିତ ହୋଇ ଉଠିଲା ମୋ ଆଖିରେ—ସେ କଥା ମୋତେ ସ୍ପଷ୍ଟଭାବରେ ବଖାଣିଦେଲା, ବାହାରିଲା ବୋଲି ନାଟାଲିଆଠାରୁ ସେହି ନାଟାଲିଆଠାରୁ ଯେ ଏଇ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରାପ୍ତ ଥିଲା ସାହାସିକା, ସ୍ୱଚତୁରା ସ୍ୱାଧୀନା ।

“ଏତକ ବୋକା ପିଲାଟାରେ ତୁ !” ଦୀର୍ଘନିଃଶ୍ୱାସଟିଏ ପକାଇ ମୋ ଆଡ଼କୁ ଅନାଇ ଦେଇ କହିଲା ସେ ଆହୁରି “ଯା ପଳାଇଯା ଏଠୁ ଏତେ କଣ କହୁଚି ନେତେ, ବୁଝେଇ ଶୁଝେଇ ପରାମର୍ଶ ଦେଇ କହୁଚି ଭଳେ, ହାତଯୋଡ଼ି ଧରି କହୁଚିରେ ଯା ଏଠୁ ଯା. ଆସିବୁ ନାହିଁ କେବେହେଲେ ଆଉ ଏଠିକି, ଯା ବାହାରି ଯା ଏଠୁ, ଆସିବୁ ଯଦି ସରିଯିବ ସବୁ—ତୋ କର୍ମ ଫାଟିଯିବ ବାବୁ, ସବୁ ସଣ ନେତ୍ର ନଷ୍ଟ ହୋଇଯିବରେ ।”

କ’ ପରେ ସେ ଟେବୁଲ ଉପରେ ଝୁଙ୍କି ପଡ଼ିଲା, ଭଗ୍ନ ହୋଇ ଆଉଜି ତା’ ଉପରେ ବାହା ‘ଟ୍ରେ’ ଉପରେ ଦଣ ସବୁ ଆଙ୍କି ଆଙ୍କି ଆଙ୍ଗୁଳିରେ ତାର, ପୁଣି କହିବାକୁ ଆରମ୍ଭକଲା ଖବ ଥିବ ଅସଂଲଗ୍ନ ଭାବରେ, କହିବ କି ଲାଗିଲା ସତେ ଯିମିତ ନିଜକୁ ହିଁ ।

“ଜାନୁ ରୁ ଢାଣ୍ଡିକ ବା ମାଦକୁ ମୋ କଥା ମୋ ଉପଦେଶ ? ମୋ ନିଜ ଝିଅ ଯଦି ମୋ କଥାକୁ ଧ୍ୟାନ ନ ଦେଲା ନ ଶୁଣିଲା,…କେତେ ଥର କହୁଥିବ ତାକୁ…କହୁଥାଏ ଲଗିପଡ଼ି ତୋ ମନ କନ୍ୟାକଲି ମାଆଟାକୁ ଛାଡ଼ି ନ ଯାବୁ ତୁ, ପଳାଇଯିବା କୋଉଠିକି ଠିକ୍ ହେବ ନାହିଁ ଲୋ, ନା, ନା, ଛାଡ଼ି ଯାଆନା ଲୋ ! ସେ କ’ଣ ଉତ୍ତର ଦେଉଥାଏ ଜାଣୁ ? କହୁଥାଏ ଯାଉଚି ମରିବ, ଆତ୍ମହତ୍ୟା କରିବ ; ତେଣୁ ସେ ବୁଲିଗଲା କାଜାନକୁ—ରହିବ, ସେଠି ଶିଖିବ ସେବା ଶୁଶ୍ରୂଷା କାମ (ନର୍ସିଂ); ଭଲ ହେଲା ଭଲ କଥା, କିନ୍ତୁ ମୋ କଥା କ’ଣ ? କିଏ ବୁଝିବ ମୋ କଥା ? ଆଉ ମୋ କଥା କହିଲେ ହେଲା ଏଠି ମୁଁ ଅଛି, କାହାକୁ ଆଶ୍ରା କରିକି ? ସେହି ମଣିଷଗୁଡ଼ାଙ୍କୁ, ସେଇ ମରଦଗୁଡ଼ାଙ୍କୁ ବୁଲୁଚନ୍ତି ଯିଏ ରହୁଛନ୍ତି ଯିଏ ଗଳିରେ ରାସ୍ତା ଉପରେ ।”

ବସି ରହିଲା ସେ ଚନ୍ଦ୍ର'ରେ ହଜିଯାଇ, ସ୍ୱପ୍ନାରେ ବୁଡ଼ିଯାଇ, କେବଳ ହଲଚଲ ହେଉଥାଏ ତାର ଓଠଯୋଡ଼ିଟି ଖାଲି—ଜଣାଯାଉଥାଏ ମୋ ଅବସ୍ଥିତିଟା ଆଉ ଜ୍ଞାତସାରରେ ନ ଥାଏ ତାର । ତଳ ଉପର ଓଠ ଯୋଡ଼ିଟି ତା'ର ପାଟିରୁ ଦି କଣ ପାଖରୁ ଝୁଲି ପଡ଼ୁଥାଏ, ପାଟିଟି ଦିଶୁଥାଏ ଅର୍ଦ୍ଧଚନ୍ଦ୍ର ପରି । କେମିତି ସୁଖ ଯନ୍ତ୍ରଣା ଆସୁଥାଏ ମନରେ, ତା'ର ଓଠ ଯୋଡ଼ିଟିରେ ଦ୍ରୁତ ମୃଦୁ କୁଂଚନ ଆଉ ବଳିରେଖାଗୁଡ଼ିକର ଘନ ଘନ କମ୍ପନ, କି ଏକ ନୀରବ ବାର୍ତ୍ତା, ନୀରବ କାହାଣୀ କହୁଯାଉଥାଏ ଦେଖିଲା ମାତ୍ରେ ।

ବାଳକେତେକ ଖସିଆସି ଓଢ଼ଣୀ ଶାଲ୍ ତଳରୁ ପଡ଼ୁଥାଏ କପାଳ ଉପରେ ତାର, ଗାଲ ଉପରେ ତାର, ପଛଆଡ଼ୁ ମୋଡ଼ିମାଡ଼ି ହୋଇ କାନ ପାଖକୁ । ଆଖିରୁ ଲୁହ ଟୋପାଏ ପଡ଼ିଲା ଅଣ୍ଡା ଗୁହା ଭର୍ତ୍ତି ଗେଲାସ ଉପରେ ପଡ଼ିଲା ନନେ ସେ ଦେଖିପାରି ଘୁଞ୍ଚାଇଦେଲା ଗ୍ଲାସଟିକୁ, ଆଖି ଯୋଡ଼ିକୁ ମୁଦିଦେଲା ଶକ୍ତକରି ଆଉ ଦି'ବୁନ୍ଦା ଲୁହକୁ ଜାକି ନେଇ ଆଖିରେ, ପୋଛିଲା ମୁହଁଟିକୁ ଶାଲ କାନିରେ ।

ଆଉ ସମ୍ଭାଳି ହୋଇପାରିଲି ନାହିଁ, ବେଶି ସମୟ ବସିବାକୁ ତା ସାଥୀରେ ତା ସାଙ୍ଗରେ—ଚୁପଚାପ ଉଠିଲି, ଛିଡ଼ା ହେଲି ।

"ନମସ୍କାର, ଯାଉଛି ।"

"ଏଃ ଯା, ଯା, ପଳା, ସଇତାନ ପାଖକୁ ଯା ।" କହିଲା ସେ ହାତ ହଲେଇ, ଦୂରେଇ ଯିବାକୁ ସଂକେତ ଦେଇ ଉପରକୁ ନ ଚାହିଁ ମୋ ଆଡ଼କୁ ହୁଏତ ଖୁବ୍ ସଂଭବ ଭୁଲିଯାଇ କଏ ମୁଁ ।

ଆର୍ଚ୍ଚେଲିଥନକୁ ଖୋଜିବା ଲାଗି ଗଲି ମୁଁ ଅଗଣାକୁ, ତା' ସାଙ୍ଗରେ ମାଛମାରି ଯିବାକୁ ମସୁଧା କରିଥାଏ ଆଗରୁ । ମନହେଲା ଏ ମାଇପିଟି ସମ୍ପର୍କରେ କିଛି କହନ୍ତା କି ତାକୁ, କିନ୍ତୁ ସେ ଆଉ କେଉଁ ଦୁହେଁଯାକ ଆଉ ବସି ନ ଥିଲେ ଖୁଣ୍ଟ ଉପରେ । ଏଣୁତେଣୁ ଭଙ୍ଗାରୁଜା ଜିନିଷପତ୍ର ଅଳିଆ ଫଳଥରେ ଭର୍ତ୍ତି ଅଗଣାରେ ଖୋଜିଲାବେଳେ ତାଙ୍କୁ ଶୁଣିଲି ନଢାଦନଥା ଗଳି ରାସ୍ତା ଉପରେ କଳକୋଳାହଳ ପାଟିତୁଣ୍ଡ !

ଫାଟକ ଟପି ବାହାରିଛି କି ନାହିଁ ମୁହାଁମୁହିଁ ବାଡେଇ ହୋଇଗଲି ନାଟାଲିଆ ଦେହରେ, ଅନ୍ଧୁଣୀଭଳି ଟଳଟଳ ଚାଲୁଥାଏ ସେ ରାସ୍ତାକଡ ଚଲାବାଟରେ, ଫୁଲି ଫୁଲି କାନ୍ଦରେ ଚାଲୁଥାଏ, ପଡ଼ୁଛି ତାର ଆଣ୍ଠୁଡ଼ା ଆଣ୍ଠୁଡ଼ ଦରିଝଣ୍ଡିଆ ମୁହଁଟିକୁ ପୋଛୁ ପୋଛୁ ଗୋଟିଏ ହାତରେ ଶାଲଟିରେ, ଆର ହାତରେ ଜଟ ହୋଇ ଯାଇଥିବା ଫୁଲାଫୁଲା ବାଳକୁ ଆଡ଼େଇ ଆଡ଼େଇ ଫିଙ୍ଗିଫିଙ୍ଗିକା ପଛକୁ ଚାଲିଆନ୍ତି ତା ପଛେ ପଛେ ଆର୍ଚ୍ଚେଲିଥନ୍ ଆଉ କେଉଁ ପାଷଣ୍ଡ ପଦେଇ ପଦେଇ ।

"ପୁଣି ଥରେ ଆହ୍ଲାଦିତ ତାକୁ—ପୁଣି ଥରେ ପାଉ ସେ, ଯା ଆଁ ଆଁ" ଡାକ ମାରିଲା କଡ଼୍ ।

ଆର୍ଡେ଼ଲିଅନ ଧାଇଁଗଲା, ବାଧା ଉପେକ୍ଷଇ ହଲାଇବାକୁ ଲାଗିଲା ନାଟାଲିଆ ସାମନାରେ, ଘିରକାନ ଘର ବୁଲିପଡିଲା ନାଟାଲିଆ, ମୁହଁଟା ବିରୂପ, ବିକୃତ ହୋଇଉଠିଲା, ଆଖିଯୋଡ଼ିକ ଜଳୁଥାଏ ଘୃଣାରେ, ରାଗରେ "ଆ ଆ, ମାର ମାର ମତେ, ପିଟ୍ ମତେ," ଚିତ୍କାର କରି ଉଠିଲା ନାଟାଲିଆ ।

ଜୋରରେ ଧକ୍କା ପକାଇଲା ଆର୍ଡେଲିଅନର ହାତଟାକୁ—ଚମକିପଡି ଆଶ୍ଚର୍ଯ୍ୟରେ ଚାହିଁ ରହିଲା ସେ ମତେ ।

"କରେ, ଏ କ'ଣ ? କଣ କାହିଁ ବିଗିଡ଼ି ଗଲାଣି କି ତୋର ?"

"ଛୁଅଁ ନା, ତାକୁ ଛୁଅଁ ନା," କ୍ଷୀଣ ସ୍ୱରରେ କହିଲି ମୁଁ, ହାଃ କରି ଉଚ୍ଚ କଣ୍ଠାସ୍ୱ ଛୁଡ଼ି ହସି ଉଠିଲା ଆର୍ଡେ଼ଲିଅନ ।

"କିଏ ରେ ସେ ତୋର ? ତୋ ଝିଅ ? ତୋ ରକ୍ଷିତା ? ଆଲୋ ହେ ନାଟାଲିଆ—ଏ ଖାନଙ୍କ ? ବାବାଜୀଟାକୁ, ଲୁଚଟାକୁ କି ପାଳରେ ପକାଇ ସାରିଲୁଣି ଭଲେଇକରି ।"

କଡ଼୍‌ଟା କି ହୋ ହୋ ହୋଇ ହସି ଉଠିଲା । ଜଙ୍ଘରେ ହାତ ବାଡ଼େଇ ବାଡ଼େଇ ତା'ପରେ ଦୁହେଁଯାକ ମତେ ଅତି କୁତ୍ସିତ ଭାଷାରେ ଗାଳିଗୁଲଜ ଦେଇ ବିଦ୍ରୂପ କରିବାକୁ ଲାଗିଲେ ମତେ, କିନ୍ତୁ ମେଢକିରେ ହିଁ ସମସ୍ତ ମିଳିଗଲା ନାଟେ-ଲିଆକୁ ଖସି ପଳାଇଯିବା ପାଇଁ କୌଣସି ମତେ, ଯେତେବେଳେ ଲାଗିଲା ମତେ ଆଉ ବରଦାସ୍ତ କରିପାରିବି ନାହିଁ—ଥିଲି ଥିଲି ସେତେବେଳେ କଡ଼୍‌ର ଗୁଡ଼ରେ ମୁଣ୍ଡି ଆଟାଏ ମାରି ଜୋରରେ ତଳେ ପକାଇଦେଇ ତାକୁ—ଦଉଡ଼ିଲି ଯେ, ଦଉଡ଼ି ପଳାଇ ଗଲି ସେ ଜାଗା ଛାଡ଼ି ।

ସେହି ଦିନଠାରୁ ପ୍ରାୟ ଅନେକ ଦିନ ଯାଏ ଆଉ ସୀମା ମାଡ଼ିଲି ନାହିଁ । "ଜୋଟିପଥ ଗଳିର", ଦୂରଛଡ଼ା ରହିଲି ସେଠାରୁ ମୁଁ, କିନ୍ତୁ ଆର୍ଡେଲିଅନ ସଙ୍ଗରେ ଆଉ ଥରେ ଭେଟ ହେଲା ମୋର, ଏଥର ଗୋଟିଏ ଘାଟଭଙ୍ଗାରେ ।

"ହ୍ୟାଲୋ", ଖୁସିରେ ବଡ ପାଟିରେ ଡାକିଲା ସେ, କ'ଣରେ ତୋର ଦେଖା ନାହିଁ କାହିଁକି ? କ'ଣ ହୋଇଛି ତୋର ?"

କହିଲି ଯେତେବେଳେ ତାକୁ, ଅପମାନିତ ହୋଇଥିଲି ମୁଁ ସେ ଯେଉଁଭଳି ଭାବରେ ମାଡ଼ ମାରିଥିଲା. ପିଟି ଥିଲା ନାଟାଲିଆକୁ, ଆଉ ଲାଞ୍ଛିତ କରିଥିଲା ମତେ, ଯେତେବେଳେ ସେ ଖିଲି ଖିଲି ହୋଇ ହସି ଉଠିଲା ସରଳ ନିଷ୍କପଟ ମନରେ !

''ତୁ କ'ଣ ଭାବୁଛୁ, ଆମର ମନରେ କିଛି ଥିଲା ନାଁ କଣ ? ଯାହା କରୁଥିଲୁ, କେବଳ ଖେଳ ବୋଲି ଠିକ୍ କରିଥିଲୁ, ତେବେ ଚଳୋଉଥିଲୁ ଉଡଉଥିଲୁ ଏମିତି ଖାଲି କୌତୁକ ଦେଖିବା ପାଇଁ । ଆଜି ତା କଥା ନାଟାଳିଆ କଥା କହିଲୁ ଯେ, ତାକୁ ଧରି ପାରି ନ ଥାନ୍ତୁ କାହିଁକି ? କ'ଣ ସେ ? ବାଉବୁଲା ବାଇନାଙ୍କଟାଏ, ଖାନଙ୍କା ଛତରଟାଏ, ରାସ୍ତା ଘାଟରେ ବୁଲି ବୁଲି ବେଡ଼ୁ ବକେ ଯେ ! ମଣିଷଟାଏ ଛେଉ ମାରି ପାରେ ପିଟିପାରେ ଯା'ର ହାତ ଧରିଥାଏ ତା' ଭାରଯାକୁ, ତା'ଭଳି ଛତର ବେଶ୍ୟାଟାକୁ ଗୁଡ଼ି ଦେଇଥାନ୍ତୁ କାହିଁକି ଯେ ! ଏକୁ ସତ କହିଲେ ତାକୁ ବୋକା ବନଉଥିଲୁ, ନଜେ ତୋନାମିରେ ମାତୁଥିଲୁ—ବୁଧା ଗୁପୁତା କିଛି ଶିଖାଏ ନାହିଁ କାହାକୁ, ଜାଣେ ବେଶ୍ କଣ ଜାଣେ ମୁଁ ?''

''କ'ଣ ତାକୁ ଶିଖାଇ ପାରିଥାନ୍ତ ଯେ, କଣ ଭାବୁଥିଲ ?'' ଭମେ ତାଠୁଁ କୋଉ ଗୁଣରେ କେତେ ଭଲ ।''

ମୋ କାନ୍ଧ ଉପରେ ହାତ ପକେଇ ଫଗେ ଫଗେ ହଲାଇ ଦେଲ ମୋତେ ।

''ଏଇଟାତ ଖରାପ କଥା, ଅସଲ୍ ବଦମାସିଆ, ସଇତାନଆ'', ଘୃଣି କଲା ହୋଇ ଘୃଣିର ଭଳି କହିଲା ସେ । ''କେଉ କାହାଠୁଁ ଭଲ ନୁହେଁ, ଅଧିକ ନୁହେଁ, କୋଉଗୁଣରେ, କୋଉ କାମରେ ! ବୁଝିଲୁ ସିଇ ସବୁ ଦେଖି ପାରୁଛୁ, ଜାଣି ପାରୁଛୁ, ଜାଣି ପାରୁଚ ସବୁ, ଭିତରେ ଅଛି ବାହାରେ । ମୁଁ ତ ତମ ଗାଁଗହଳର ଗାଉଁଲିଆ ଭିତରୁ ଗୋଟିଏ ନୁହେଁ !''

ପିଇଦେଇ ବହୁତ ମସ୍ଗୁଲିଆ ଅବସ୍ଥାରେ ଥାଏ ସେ । ହସ ଖୁସି ମିଜାଜରେ ଅନେଇ ରହିଲା ମତେ । ନବୋଧ ପିଲାକୁ ବୋହରାଇ ତାଲିମ କରୁଥିବା ହୃଦୟବାନ ସହୃଦ୍ୟ ଶିକ୍ଷକଟି ଭଳି, ସ୍ନେହମୟ, କୃପାପ୍ରବଣ, କ୍ଷମାମୟୀ ଦୃଷ୍ଟିରେ ।

କେମିତି କେବେ କେବେ ମୋର ଦେଖାହୁଏ ଓବନ୍ତ୍ରସଭ ସଙ୍ଗରେ, ଆଗ ଅପେକ୍ଷା ଅନ୍ତୁର ସରସ ସତେଜ ହୋଇ ଉଠିଥାଏ ସେ, ପୋଷାକପତ୍ରରେ ଏବେ ଏମିତି ପରିପାଟୀରେ ସଜେଇ ହେଉଥାଏ ଯେ, 'ଫୁଲ୍ ବାବୁଟାଏ' ଯିମିତି ! ମୋ ପ୍ରତି ସବୁବେଳେ ଟିକିଏ ମାତ୍ସ୍ୟାନମତା ଥାଏ ତାର । ଥରେ ମତେ ସେ ବିଷଣ୍ଣ ଗଳ୍ପ କଣ୍ଠାଗ୍ରବରେ କହିଲା :

''ତେବେ କିଏ ଜାଣିଲା ରେ ସେଇଁ କାମରେ ନମୁନ ହୋଇଛୁ ସେମିତି କାମରେ ପଶିବା ପାଇଁ । କିଛି କ୍ଷତି ହେବ ନାହିଁ ବୋଧ । ଏତ (ମ୍ୟୁନ୍ସିପ୍) ଷ୍ଟାଫିଗୁଡ଼ାଙ୍କ ସଙ୍ଗରେ ବହୁ କାମ କରୁଥିଲେ ତାଙ୍କ ସାଥିରେ ।''

ତା' ପରେ ବ୍ୟଥିତ ସ୍ୱରରେ ବର୍ଣ୍ଣନା କରିଥିଲା କାରଖାନାର ଖବରସବୁ ।

‘‘ଶିକାଗୋର ଏବେ ମଧ୍ୟ ସେ ଘୋଡ଼ାଟା ସାଙ୍ଗରେ, ତା' ସାଙ୍ଗ ଗ୍ଲୁଡ଼ି ପାଉଛନ୍ତି । ମନେହେଉଛି ସୀତାନାଥ୍ ବ୍ୟୁଶ ହେଉଛି ଦ'ଣ ଗୋଟାଏ ପାଠି, ଜାହା ପାଠି, ପିଉଚି ଯେ, ପିଉଚି ଏତେ, ଆଦୌ ଭଲ ନୁହେଁ ଯେତକ ତା ଦେହ ମୁଣ୍ଡ ପାଠି । ଅଭ୍ଚ ଗୋଟେଲେଭ ଖାଇଗଲେ ହେଟାବାଘ ଗୁଡ଼ାକ, ଘରକୁ ଯାଇଥିଲି ସେ ଖ୍ରୀଷ୍ଟଦିନ ପୂର୍ବ ଉତ୍ସବରେ ଏତେ ପିଇଥିଲି ଯେ, ବଟତା ହଜଗଲି—ଆଉ ହେଟା ଗୁଡ଼ାକ ଇମିତ ତାଙ୍କୁ ଖଣ୍ଡ ଖଣ୍ଡ କରି ଦେବାଇଗଲେ ।

ପ୍ୟାଂଭେଲ ହୋ ହୋ ହୋଇ ହସି ଉଠିଲା, ନିଜ କଥାରେ ନିଜ କଳ୍ପନାରେ ମଜ୍ଜିଯାଇ ନିଜେ ବେହୋଶ ହୋଇପଡ଼ିଲା ।

‘‘ଦୌଡ଼େଇ ପଳେଇଲେ, ଆଉ ନିଜେ ସେଗୁଡ଼ାକ ପିଇ ପିଇ ମାତାଲ ହୋଇଗଲେ, ପଛ ଗୋଡ଼ ଦ'ଟାରେ ଚାଲିବାକୁ ଲାଗିଲେ ଚଳି ଚଳି, ସର୍କସ କୁକୁର ଭଳି ଭୁକ ଭୁକ ନିଜ ଭୁକାରେ ନିଜ ମୁଣ୍ଡକୁ ସବୁ ହଡ଼ାଇଲେ, ତହିଁ ପରଦିନ ଠିକ୍, ଠିକ୍ ଗୋଟାକୁ ଗୋଟା ଗଡ଼ି ପଡ଼ିଲେ ମଶାଣିରେ !’’

ମୁଁ ବି ତା' ବର୍ଣ୍ଣନା ଶୁଣି ଶୁଣି ସମ୍ଭାଳି ପାରିଲି ନାହିଁ, ହସି ପକାଇଲି କିନ୍ତୁ ହୃଦୟର ଗଭୀରରେ, ମନର ଅତଳରେ ଉପଲବ୍ଧି କଲି କାରଖାନା ଆଉ କାରଖାନା ସହିତ ମୋର ସମ୍ପର୍କ, ତାର ଯା' ତାତ୍ପର୍ଯ୍ୟ ଅତାତ୍ପର୍ଯ୍ୟ ସବୁ ଶେଷ ହୋଇଯାଇଥାଏ, ଅତୀତର ଗହ୍ୱରକୁ ଚାଲିଯାଇଥାଏ—ବିସ୍ମୃତିର ଗର୍ଭକୁ, ଏଇଟି ବେଦାନାତୁର କରିଥିଲି ମତେ— ବ୍ୟଥା ଦେଉଥିଲା ଖୁବ୍ ବେଶି ।

## ଊଣେଇଶ

ଶୀତଦିନ, ଆଉ ପ୍ରାୟ କିଛି କାମ ନ ଥାଏ ମେଲାପଡ଼ିଆରେ । ଘରେ ପୁରୁଣା କାମରେ ସେଇ କେଉଁ ଯୁଗର କାମରେ ଖଟୁଥାଏ ମୁଁ । ଦିନସାରା ହାତରେ ରହୁଥାଏ ବହୁତ କାମ ଦିନ ବିତି ଯାଉଥାଏ ସେଥିରେ, ସଂଜଗୁଡ଼ିକ ଥାଏ କିନ୍ତୁ ମୁକୁଳା, ଘରର ସମସ୍ତେ ଆସି ଠୁଳ ହେଉଥାନ୍ତି ପୁଣି ଆଗଭଳି ପୁଣି ପଢ଼ି ଶୁଣାଉ ଥାଏ ‘ନବ’ ଓ ‘ମସ୍କୋ’ ଲିଫ୍‌ଲେଟ୍‌ରୁ ଉପନ୍ୟାସଗୁଡ଼ିକ, ଯେଉଁଗୁଡ଼ିକ ଭଲ ପାଉ ନ ଥାଏ ମୁଁ, ପ୍ରାଣମନ ଦେଇ ଘୃଣା କରୁଥାଏ ସେଗୁଡ଼ିକୁ—ଗୋପନରେ କିନ୍ତୁ ମୁଁ ପଢ଼ୁଥାଏ ଭଲା ଭଲ ଉଚ୍ଚକୋଟୀର ବହିସବୁ, ଏବଂ ଚେଷ୍ଟା କରୁଥାଏ କବିତା ଲେଖିବାକୁ ।

ଦିନେ ମୋ ମାଲିକାଣୀ ଲାଗିଥାନ୍ତି ସଂଜ ଉପାସନାରେ, ପ୍ରାର୍ଥନାରେ, ଟିକିଏ ଅସୁସ୍ଥ ଥାନ୍ତି ମାଲିକ, ପଡ଼ିଥାନ୍ତି ସେ, ମୁଁ ଥାଏ ତାଙ୍କ ପାଖରେ, କହିଲେ ସେ ମୋତେ :

“ତୋ କବିତା ଲେଖାକୁ ଖୁବ ଅଛା କହୁଛି ଈଶ୍ୱର, ସତକରେ ସେତେ ଭଲ ? ଶୁଣାଯାଉ କଣ ସବୁ ଲେଖିଛୁ ସେଥିରୁ କିଛି ।”

କେମିତି ଅଡ଼ୁଆ ଅଡ଼ୁଆ ସଂଙ୍କେ ତଥା ସଙ୍କୋଚଥା ଲାଗିଲା ମନା କରିବାକୁ । ଶୁଣାଇଲି ତାଙ୍କୁ କବିତାରୁ କେତୋଟି ପଢ଼ି, ଜଣାଯାଉଥାଏ ସେଗୁଡ଼ିକ ଭଲ ଲାଗୁନଥାଏ ତାଙ୍କୁ, ତଥାପି କହିଲେ ସେ :

“ରଖ, ଅଭ୍ୟାସଟା ରଖ, ଲେଖ, ଲେଖିଥା, ହୁଏତ କଏ ଜାଣେ ତୁ ଆଉ ଗୋଟାଏ ପୁଣକନ୍ ନ ହେବୁ ! ପଢ଼ିଚୁ, ପୁଣକନ୍ ପଢ଼ିଛୁ ?”

ମେ ହୁମା ଡାହାଣୀ ନେବେ କି ହୁଅନ୍ତୁ ବସ୍ତ,
ପ୍ରେତ ପ୍ରେତମାର ମରଣ କି ଅଛୁ ବାନ୍ଧି ?

ତାଙ୍କ ସମୟରେ, ପୁଣକନଙ୍କ ସମୟରେ ଲୋକେ ବିଶ୍ୱାସ କରୁଥିଲେ ଭୂତ ପ୍ରେତଙ୍କୁ, ତାଳ ବେତାଳଙ୍କୁ, କିନ୍ତୁ ମୁଁ ଭାବୁଥାଏ ଯେ ସେ ବିଶ୍ୱାସ କେବେ କରୁଥିବେ, ଲେଖିଥିବେ ବା ଅଛାରେ କୌତୁକରେ ।

“ହଁ, ଭଇ ତୋତେ ପଢ଼ାଇବା, ଶିକ୍ଷା ଦିଆଇବା ଉଚିତ ହୋଇଥାନ୍ତା, ଗାଁଏ ଠାଏଁ ଭାବ ହେଲେ ସେ ଅଗ୍ରଗତିକୁ ଅନେଇ, କିନ୍ତୁ ଡେରି ହୋଇଗଲା, ବହୁତ ଡେରି ହୋଇଗଲା ଏବେ ! ସନ୍ତାନକୁ ଜଣା ରୁ କେମିତି ଚଳିବୁ ଏ ସଂସାରରେ, ବୁଲିବୁ ତା' ସାଥୀରେ ପାଦ ପକାଇ । ତୋର ସେ ଟୀପା ଖାତାକୁ ଲୁଚାଇ ରଖ । ମାଇପି ଲୋକଙ୍କଠୁଁ, ନଇଲେ ଚଢ଼େଇବାକୁ ଆରମ୍ଭ କରିଦେବେ ସେମାନେ, ମାଇପେ ଗୁଡ଼ାକ; ବୁଝିଲୁ ଭଇ. ସୁଖ ପାଆନ୍ତି ଲୋକର ଠିକ୍ ଘା ହେଉଥିବା ସ୍ଥାନରେ ମାଡ଼ ଚଢ଼େଇବା ପାଇଁ ଆଘାତ ଦେବା ପାଇଁ ।”

ସେତେବେଳକୁ ମାଲିକ ମୋର କେମିତି ଭାରି ଚଞ୍ଚଳରୂପ ଭାବ ଚିନ୍ତାଶୀଳ ହୋଇ ଉଠିଥାନ୍ତି । ଶାନ୍ତ ହୋଇ ବସି କଣ ସବୁ ଭାବ ହେଉଥାନ୍ତି । ଆଉ ନିଜର ସ୍ୱଭାବକୁ ଦୃଷ୍ଟି ପକାଉଥାନ୍ତି ଅସ୍ଥିର ଭାବରେ, ଅନେକ ସମୟରେ ସଂକେତ ଘଣ୍ଟି ଦୁଆରମୁର୍ଦ୍ଧରେ ବାଜିଲା କ୍ଷଣି ଚମକି ପଡ଼ୁଥାନ୍ତି, କେବେ କେବେ ଦୁର୍ଣ୍ଣି ଅତି ସାମାନ୍ୟ କଥାରେ, ନଗଣ୍ୟ କଥାର ବନ୍ତର ଅଥଚ ଅବେଦ ବିଷାଦରେ ବିରକ୍ତ ହୋଇ ଉଠୁଥାନ୍ତି, ପାଚିରୁଣ୍ଡି କରି ସମସ୍ତଙ୍କ ଉପରେ, ଗାଳିମନ୍ଦ କରି ପ୍ରତ୍ୟେକଙ୍କୁ ଛୁଟି ପକାଉଥିଲେ ଘରୁ ଗଡଅଧିଆ ଉଚ୍ଚୁରବେ ଫେରିବା ପାଇଁ ପୁରାପୁରି ମାତାଲ ହୋଇ । ହଷ୍ଟ ଜଣା ପଡ଼ୁଥାଏ, ତାଙ୍କ ମନ ସବୁବେଳେ ଉତ୍ପୀଡ଼ିତ ହେଉଥାଏ

କଥା କେଉଁଥିରେ ଯେଉଁ ଟିକ କେବଳ ଜଣାଥାଏ ତାଙ୍କୁ ହିଁ—ଏଭଳି କଥା ଯାହା ଲାଗି ଦେଉଥାଏ ତାଙ୍କର ସମସ୍ତ ଦମ୍ଭ ସମସ୍ତ ବଳ, ଆତ୍ମିକ ଚେତନାକୁ ଯେଉଁ ହେତୁରୁ ସେ ହରାଇ ବସିଥାନ୍ତି, ଜୀବନପ୍ରତି ବିଶ୍ୱାସ, ଜୀବନପ୍ରତି ଆଗ୍ରହ, ରହିଥାନ୍ତି: ବଂଚିଥାନ୍ତି ଯେ ଅଭ୍ୟାସବଶରେ ହିଁ ।

ପ୍ରତି ରବିବାର ଦିନ ମୁଖ୍ୟଭୋଜନଟା (ଗ୍ରାଣ୍ଡ ଭୋଜନ) ସରିଲା ପରେ ଘଡ଼ି ଦିଅଟା ଯାଏ ଖୁବ୍ ଯାଉଥାଏ ମୁଁ ବୁଲିବାପାଇଁ ବାହାରକୁ, ଯାଉଥାଏ ସ୍ୱାମସ୍ୱାସ୍ୱା ଗଲି ଗଳିକୁ ! ଗଳିବାଲା ମାଲ୍ଟାଏ ଥାଏ ଯେମିତି ମୋଟା ଥାକୁଳ ସେମିତି ରୋଗାଏ ଅଦ୍ଭୁତ ଝାଲଝାଲୁଆ ଜୀବ । କି ମୋହ ଥାଏ ତାର ଗାଉଣା ବାଜଣା ପ୍ରତି ଏହା ଜାଣି ଆଖପାଖରେ ଯେତେ ଚାଇଜାର ହୋଟେଲ ଗାୟକଦଳ ଘୂରିଅଡୁ ଅସ ଠୁଳ ହେଉଥାନ୍ତି, ବୁଲୁ ହେଉଥାନ୍ତି, ସେଇ ଗଳିରେ ; ତାର ଭେଦକୀ, ବସ୍ତୁର ଆଉ ଗୃହା ପିଇବା ପାଇଁ—ଆଉ ସେ ଅକୁଣ୍ଠିତ ଢଙ୍ଗରେ ଚର୍ଚ୍ଚା କରୁଥାଏ ସେମାନଙ୍କ ଗୀତ ବାଜନାସ୍ୱରେ । ଅବୋଧ, ମଦ୍ୟପ ସେଇ ଗୀର୍ଜାଗାୟକଗୁଡ଼ିକ ଗାଉଥାନ୍ତି ଅସଙ୍ଗ ଅସଙ୍ଗ ହୋଇ ଇଚ୍ଛା ବରୁଦ୍ଧରେ ଗାଉଥାନ୍ତି ଗୀର୍ଜା ଗୀତସବୁ, କୁଚତ କେବେ ଅନ୍ୟଗୀତ, ଧର୍ମପରାୟଣ ମଦ୍ୟପ ସବୁ ବେଳେବେଳେ ଆପତ୍ତି କଲେ ମନ୍ଦଗଳି ସବୁ ସଂଗୀତ ଚର୍ଚ୍ଚାର ଜାଗା ନୁହେଁ, ସେ ଗଳିବାଲା ଡାକ ନେଉଥାଏ ତାର ସେଇ ନାୟକ ଅଷ୍ଟଥର୍ଦ୍ଦଙ୍କୁ ତା ନିଜର ବ୍ୟକ୍ତିଗତ କକ୍ଷକୁ ଆଉ ଦ୍ୱାରମୁହଁରେ କବାଟ ମାଖରେ କାନେଇ କାନେଇ ଯାହା ଶୁଣୁଥାଏ ସେଥିରୁ ଧର ପାରୁଥାଏ ମୁଁ ଗୀତ ପୁରୁ କ ଶବ୍ଦ ଟିକେ ଟିକେ ।

କିନ୍ତୁ ଅଧିକାଂଶ ସମୟରେ ଗାଁଟି ଯାକରେ ଯେତେ କାରିଗର ଓ ଶ୍ରମୀ ଗଳିରେ ଆସି ଜୁଟନ୍ତି ମଜା, ଅଭିନୟ କରୁଥାନ୍ତି ଆନନ୍ଦରେ । ଗଳିବାଲା ଆଖ ପାଖ ଘୂରିଆଡ଼ ଦରଗଣ୍ଡି ଆଣିବ ଗାୟକଦଳ, ଏମିତିକି ହାଟପାଲରେ ଯେଉଁ ଶ୍ରମୀମାନେ ଆସୁଥାନ୍ତି ସହରକୁ, ସେମାନଙ୍କ ଭିତରୁ ଲୋକ ଖୋଜି ନେଇ ଆଣି ଜୁଟାଉଥାଏ ନାଚଗୀତ ପାଇଁ, ତାଙ୍କୁ କହ ରଖିଥାଏ ତା' ଗଳିକୁ ଆସିବ ପାଇଁ ।

ଗଳିରେ ଗୋଟାଏ ୧୯୮ ପିମ୍ପା ସାମନାରେ ଷ୍ଟୁଲଟିଏ ପଡ଼ିଥାଏ, ସେଇଟି ଆସନ ହେଉଥାଏ ଗାୟକର, ପିମ୍ପାର ତଳଟା ମୁଣ୍ଡଟା ଗୋଲ୍‌ଫ୍ରେମ ହେଉଥାଏ ଗାୟକର ମୁଣ୍ଡପାଇଁ ।

ଓସ୍ତାଦ ଅଭିନେତା ଥିଲା କ୍ଲେଶଚଭ୍, ହାଡ଼ୁଆ ଚମ ଧିଡ଼୍ ଧିଡ଼୍ ଲୋକଟାଏ, ଜନ୍ ଡ଼ଆଣ କରୁଥାଏ ଘରେ, ବଢ଼ିଆ, ବଢ଼ିଆ ଗୀତର ଭଣ୍ଡାରଥାଏ ସେ, ଶିଉଳିଆ ନରମ, ଲେମ୍ବୁକମ୍ବୁ ଚେହେରା, ଦେହଯାକ ମେଞ୍ଚି ମେଞ୍ଚି ହୋଇ ଲାଲ ବାଳ, ଦାନ୍ତଟା ମୁରଦାରର ନାକ ପରି, ଚକ୍ ଚକ୍ ସ୍ୱପ୍ନିଳ ଆଖି ଯୋଡ଼ିକ ଛୋଟ ଛୋଟ, ନେଉଳିଆ ଅଚଳ ହୋଇ ଗୁଂଜା ହୋଇଥାଏ ଯେମିତି ଥୋପରେ ।

ବେଳେବେଳେ ଗାଇଲା ସମୟରେ ମୃଦୁ ଦେଉଥାଏ ସେହି ଖେଳା ଆଖି ଯୋଡ଼ିକୁ, ପିମ୍ପାର ତଳମୁଣ୍ଡରେ ଆଉଜେଇ ରଖିଥାଏ ମୁଣ୍ଡଟିକୁ ଉଜର, ଫୁଲେଇ ଦେଉଥାଏ ଗୁଡଟାକୁ ଗାଉଥାଏ ମୃଦୁ ମଧୁର କିନ୍ତୁ ଏକାବେଳକେ ହୃଦୟଜଣା ତାଳଲୟରେ !

ମେଲ ମେଲଗଲା ବୁହୁଡ଼ ପଟଳ ସମତଳ ଦେଖେ ଅହା !

ଲୁଚିଇ ଦେଲାସେ ନୟନପଥରୁ ଖୋଲା ରାଜପଥ ରାହା.... ।

ଗାଇ ଗାଇ ଉଠେ ଛୁଡ଼ା ହୋଇ ଯାଉଥାଏ, ଆଉଜୁଥାଏ ଗଛଟି ବାଡ଼କୁ, ଆଉ ମୁହଁଟି ତାର ଟେକା ହୋଇ ରହୁଥାଏ ଗୁଡକୁ, ହୃଦୟଭେଦୀ ସ୍ୱରରେ ମେଲି ଦେଉଥାଏ ।

ଆହା ବୁହୁଡ ଯେ ଘନ ଘୋର
 କାହିଁ ଯିବି କାହିଁ,
 କପଣ ଜାଣିବି—କେଉଁଟିରେ ସାଥୀ
 କେଉଁଟିରେ ପଥ ମୋର ।

କଣ୍ଠଟି ଶ୍ରେଷ୍ଠ, ସ୍ୱରଟି ସରୁ, କିନ୍ତୁ ତାର ଶେଷ ନ ଥାଏ ଯେପରି କ୍ଷୟ ନ ଥାଏ ଯେପରି ! ରୂପେଲି ସୂତାରେ ସେ ସିଲେଇ କରି ବୁଲୁଥାଏ ମଦଘଟିର ବିଷାଦମୟ ଜର୍ଜ୍ଜାଣ ଟୁପ୍‌ଟାପ୍ ପ୍ରଳାପକୁ । ଗୋଟିଏ ବୋଲି ହୃଦୟ ନ ଥାଏ, ଆତ୍ମା ନ ଥାଏ କାହାର ସେଠି । ସଙ୍ଗୀତରେ ତାର ସକରୁଣ ଆଳାପନ କୋହମୟ ଜୀବନର ଲକ୍ଷ୍ୟ ପାଇଁ ଅଭେଦ୍ୟ ହୋଇ ବର୍ତ୍ତି ରହିବା ଲାଗି ମୁହୂର୍ତ୍ତେ । ସମସ୍ତଙ୍କଠୁଁ ବଳି ବେହୋସ ମାତାଲ ଯେଉଁମାନେ ସେମାନେ ଅଶ୍ରୁପୂର୍ଣ୍ଣ ହୋଇ ହୋଇ ଗମ୍ଭୀର ହୋଇ ଉଠୁଥାନ୍ତି । ସାମନାର ଟେବୁଲଟାକୁ କଠୋର ଭାବରେ ଅନାଇ ରହି—ଆଉ ମୋର ହୃଦୟଟା ଫାଟିପଡ଼ିବାର ଉପକ୍ରମ କରୁଥାଏ ଉଚ୍ଛୁଳି ଉଠେ ଶକ୍ତିଶାଳୀ ଆବେଗରେ, ଭାବବିହ୍ୱଳତାରେ ଭୟଙ୍କର ହୋଇ ଯେଉଁ ଆବେଗ ଜାଗି ଉଠେ ପ୍ରାଣରେ ଯେତେବେଳେ ସୁଧାମୟୀ ସଙ୍ଗୀତର ବାଣୀ ସ୍ପର୍ଶ କରେ ଅନ୍ତର ଗଭୀରତାକୁ ।

ଗୀର୍ଜାଭଳି ନୀରବତାରେ ଆଚ୍ଛନ୍ନ ହୋଇଯାଉଥାଏ ଘରଟି ଗାୟକଟି ପ୍ରକାଶୁ ଥାଏ ଉଦାରପ୍ରାଣ ମହାନୁଭବ ପାଦ୍ରୀଟିପରି, କୌଣସି ଧର୍ମ ଉପଦେଶ ପ୍ରଚାର କରୁ ନଥାଏ ସେ, ପ୍ରଗାଢ଼ ଆନ୍ତରିକତାର ସହିତ ପ୍ରାର୍ଥନା କରୁଥାଏ ସମସ୍ତ ମନୁଷ୍ୟ ଜାତି ପାଇଁ, ଭାଷାରେ ମୂର୍ତ୍ତି ମନ୍ତ୍ର କିଛି ଉଚ୍ଚାରଣ କରୁଥାଏ ଏବଂ ଅସହାୟ ଦରିଦ୍ର ଦୁଃଖୀ ମନୁଷ୍ୟ ଜୀବନର ସକଳ ଯନ୍ତ୍ରଣାକୁ, ସମସ୍ତ ଦୁଃଖଶୋକକୁ, ପ୍ରତ୍ୟେକ ଦିଗରୁ ପ୍ରତ୍ୟେକ କଣରୁ ଏହି ସେହି ଶୃଙ୍ଖଳ ଲୋକଗୁଡ଼ାକ ଅପଲକ ଦୃଷ୍ଟିରେ

ଚାହିଁ ରହୁଥାନ୍ତି ତା'କୁ, ଶିଶୁ-ସୁଲଭ ଆଖିଗୁଡ଼ିକ ମେଲି ସେମାନଙ୍କର ଗମ୍ଭୀର ଧ୍ୟାନମଗ୍ନତାରେ ମିଟିମିଟି ହେଉଥାଏ 'ପଶୁ' ଭଳି ମୁହଁଗୁଡ଼ିକର ରଙ୍ଗ ଢଙ୍ଗ କେତେବେଳେ କମ୍ପିତ ଗୋଟାଏ ବାହାର ପ୍ରାଣରୁ ନିଃସରି ଆସୁଥାଏ ଗମ୍ଭୀର ନିଃଶ୍ୱାସ, ଦୃଢ଼ସ୍ୱରରେ ପ୍ରତ୍ୟୟ ଉତ୍ସାହୀ ପ୍ରମାଣକରି ସଙ୍ଗୀତ ଶକ୍ତିର ! ସେଭଳି ମୁହୂର୍ତ୍ତରେ ମନେହେଉଥାଏ ମୋର କଏ ବା ରହୁ ନ ଥାଏ, ଥାଆନ୍ତି ସମସ୍ତେ କୃତ୍ରିମ ଛଳନାମୟ ମିଥ୍ୟାର ଜୀବନ ଧରି ଅଥଚ ପ୍ରକୃତ ଅକୃତ୍ରିମ ଜୀବନ ଯାହା ଏଇ ସେଇଟି ଯେ ସେଇଟି ଖାଲି ଆଃ ।

ଦେଖାଯାଉଥାଏ ଦୂରରେ ଗୋଟାଏ କଣରେ ବସିରହିଛି ଫୁଲିଲା ମୁହଁ ଲାଇସୁଖା, ଲଗାମଛିନ୍ନ ଜୀବନଟା, ନିର୍ଲଜ୍ଜଭାବରେ ତାର ବହୁ ଭର୍ତ୍ସନା-ପ୍ରମୋଦିନୀ ଉଚ୍ଛୃଙ୍ଖଳ, ମୁଣ୍ଡଟି ଗୁଞ୍ଜିଦେଇଛି କେତେବେଳେ ମେଦବହୁଳ ହୃଷ୍ଟପୁଷ୍ଟ ବାହୁ ଯୋଡ଼ିକ ଭିତରେ—ଥରିଥରି ନିଃଶ୍ୱାସରେ, ଝରଝର ଲୁହ ପଖାଳି ପବିତ୍ର କରିବାରେ ଲାଗିଛି ତାର ନିର୍ଲଜ୍ଜ ଆଖିଯୋଡ଼ିକୁ । ବେଶି ଟିକେ ଦୂରରେ ନୁହେଁ ଟେବୁଲ ଉପରେ ସ୍ୱରକାତ ଲେଟେଇ ପଡ଼ିଛି ଗୁରୁଗମ୍ଭୀର ବର୍ଷିଷ୍ଠ ମୁହଁରେ ଗାୟକ ମିହୋପୋଲେସ୍କି । ଲୋମଶ ବୃଷସଟିଏ ବା ସୁଗଠିତ ମୂର୍ତ୍ତିଟିରେ ସୁବିପୁଳ ଆଖିହାଲକ ଯେନ—ପାଦ୍ରି ପୋଷାକହୀନ ପାଦ୍ରି ଭଳି ସମାନ ରୂପର ସମାନ ଆକୃତିର ଲୋକଟି, ସାମନାର ତାର ଟେବୁଲ ଉପରେ ଭୋଦକା ବୋତଲ, ନିର୍ନିମେଷ ଦୃଷ୍ଟିରେ ଚାହୁଁଚି ତାକୁ, ଉଠାଇ ନେଉଛି ଓଠ ପାଖକୁ ତା'ପରେ ଥୋଇ ଦେଉଛି ପୁଣି ନ ଛୁଇଁ, ନ ପିଇ ଥୋଇଦେଉଛନ୍ତି । ସାବଧାନରେ ଖୁବ ନିଃଶବ୍ଦରେ କୌଣସିମତେ ପିଇ ନ ପାରି ଅଶକ୍ତ ହୋଇ ଅକ୍ଷମ ହୋଇ ।

ଖଟିରେ ପ୍ରତ୍ୟେକେ ବସି ରହୁଥାନ୍ତି ନିଶ୍ଚଳ ହୋଇ, ସତେ ବା ଶୁଣୁଥାନ୍ତି ସମସ୍ତେ ମୁଗ୍ଧ ହୋଇ ବାନ୍ଧି କେଉଁ ଅଜ୍ଞାତର ବସ୍ତୁ ତ କିଛି, ନିକଟତମ କିଛି ହୃଦୟର, ସେମାନଙ୍କର ।

ଗୀତଟି ବୋଲିସାରି କ୍ଲେସ୍ଚଭ ଅଠ ବନସ୍ୱରେ ଖାଲି ବସି ପଡ଼ି ହଜି ଯାଉଥାଏ ସତେ ବା ଷ୍ଟୁଲଟିରେ—ଖଟିମାଲିକ ବଢ଼ାଇ ଦେଉଥାଏ ତା' ହାତକୁ ଭୋଦକା ଗିଲାସେ । ତୃପ୍ତିର ହସରେ କହୁଥାଏ ସେ ।

"ସାବାସ୍, ସାବାସ୍, ହଁ ହଁ, କେତେ ଗୀତକାର୍ ସତେ ! ଯଦିଓ ଗୀତ ନୁହେଁ, ଗଳ୍ପଟିଏ ଗାଇଲ ତମ, ଓସ୍ତାଦ ତମେ ସେଥିରେ, ସତ, ନିଘଟ ସତ, କେହି, କେହି କେବେ ଅସ୍ୱୀକାର କରିପାରିବ ନାହିଁ ।"

ତରବର ନ ହୋଇ ଧୀରେ ଭୋଦକା ପିଉଥାଏ କ୍ଲେସଚଭ, ଗଳାଖଙ୍କାରି ସଙ୍ଗୀକରି କହୁଥାଏ :

''ଗୀତବୋଲା, ଯିଏ ଇଚ୍ଛା ସିଏ ବୋଲିପାରେ, ଗଳା ଅଛି ଯାହାର ବୋଲି-ପାରେ, କିନ୍ତୁ, ମୁଁ କହୁ କେବଳ ଗୋଟିଏ ଯିଏ ଫୁଟେଇ ଦେଇପାରେ, ଖୋଲି ଦେଇପାରେ ଗୀତଟିର ମର୍ମଟି, ଆତ୍ମାଟି !''

"ଆହୁ ଆହୁ, ବଢ଼େଇ କାଢ଼ିବାଟା ଆହୁ ଚୋର !" ଚୂପରହୁ ସେ ଯା'ର କଛୁ ନାହିଁ ବଢ଼େଇ କାଢ଼ିବାକୁ ଗର୍ବ କରିବାକୁ, ଯିଏ ନେଇ ହେଲେ ବିଚଳିତ ନ ହୋଇ ମନ୍ତବ୍ୟ ଦେଲା ଗାୟକଟି । ମନ୍ତବ୍ୟ କଲା ଏକନିଷ୍ଠ ଜବରଦସ୍ତ ସ୍ୱରରେ ।

''ତୋ ନିଜ ବିଷୟରେ ଅତି ଆକାଶିଆ ଉଚ୍ଚା ଧାରଣାଟା ତମ ମନରେ, ଜ୍ଞେସଚଭ, ନାହିଁ ? ଖଟିମାଲିକ ମତ ଦେଲା ବିରକ୍ତିରେ ।

"ଉଚ୍ଚା, ମୋ ଅସ୍ଥାପର ତଠୁଁ ବେଶି ନୁହେଁ, ଆହୁର ଉଚ୍ଚା ନୁହେଁ ।"

ଘରକଣରୁ ଗର୍ଜନ ଶୁଭିଲା ମିଖପୋଲେସ୍କି :

"ତମେ, ତମେଗୁଡ଼ାକ କେମିତି ପସନ୍ଦ କରିବ, ଭଲ ପାଇବ ବା ଏଇ ଲୁଣ୍ଠିତ କନ୍ଦର୍ପ ଦେବଦୂତଟାର ଗୀତ, ତାର ଗାହଣା, ପୋକଗୁଡ଼ାକ, ଲଂଚୁଡ଼ା ପୋକଗୁଡ଼ାକ ତମେସବୁ ।"

ତାର ତ ପଡ଼ୁ ନ ଥାଏ କାହାର ସାଥିରେ, ସବୁବେଳେ ଅପଡ଼ ଆହୁ ଲଢ଼େଇ, ସବୁବେଳେ କଳିକଜିଆ ସମସ୍ତଙ୍କ ସାଙ୍ଗରେ, ଆହୁ ସବୁବେଳେ ସମସ୍ତଙ୍କ ଦୋଷ ଦେଖିବାରେ ଧୂରନ୍ଧର, ସେଥିଲାଗି ପ୍ରାୟ ପ୍ରତି ରବିବାର ଦିନ ଛେଇ ଖାଉଥାଏ ଗାୟକଗୁଡ଼ାକଙ୍କଠୁଁ ନଇଲେ ବା ଆହୁ ସ୍ତୁତି ଥାଏ ବା ପାଉଥାଏ ଚଢ଼ାଉ କରିବାକୁ ତା'ଉପରେ ସେଇଭଳି ଲୋକଙ୍କଠୁଁ ।"

ଖଟି ମାଲିକ ଭଲ ପାଉଥାଏ ଜ୍ଞେସଚଭର ଗୀତଗୁଡ଼ିକୁ, କିନ୍ତୁ ଘୃଣା କରୁଥାଏ, ମଣିଷଟିକୁ ଜ୍ଞେସଚଭକୁ । ସମସ୍ତଙ୍କ ଆଗରେ କହୁ ହେଉଥାଏ ଆପତ୍ତି ଅଭିଯୋଗ ଆଣି ଜ୍ଞେସଚଭ ବିରୁଦ୍ଧରେ । ସଙ୍ଗ ଧରିପଡ଼ି ଯାଉଥାଏ ଉପାୟ ଖୋଜୁଥାଏ ସେ, ପାଞ୍ଚ କରୁଥାଏ ଅପମାନ ଦେବା ପାଇଁ ତାକୁ ନଇଲେ ଥଟ୍ଟା ନକଲ କରି ତାକୁ ଯେମିତି ପରିହାସ ସୃଷ୍ଟି କରିବା ପାଇଁ । ସବୁବେଳେ ପ୍ରାୟ ଖଟିକୁ ଗଡ଼ୁଥାନ୍ତି ଯେଉଁମାନେ, ସେମାନଙ୍କୁ ଆହୁ ଜ୍ଞେସଚଭକୁ ଅଛପା ନ ଥାଏ ଖଟିମାଲିକର ଜାରସାଦଟା ।

"ଅଚ୍ଛା, ଗାୟକଟା ସେ. ଚମତ୍କାର ଗାୟକଟା', କିନ୍ତୁ ହେଲେ କଣ ହେବ ବଡ଼ ଆତ୍ମଗର୍ବୀଟାଏ, ଗିଲାସେ ପିଆଇ ତଳେ ଲେଟେଇ ଦେବାଟା ଦରକାର ତା'ପାଇଁ ।" ଇଏ ଥାଏ ଖଟିମାଲିକର ମତ, ଆହୁ ତା ପୃଷ୍ଠପୋଷକଙ୍କ ଭିତରୁ କେତେଜଣ ମୁଣ୍ଡ ଟୁଙ୍ଗାଉଥାନ୍ତି ସେଥିରେ ।

"କଥାଟିର ସତ ଅଛୁ, ପ୍ରକୃତରେ କେମିତ ଉପରମୁହାଁ ଲୋକଟାଏ ସେ ।"

"ଜଣ ଏମିତ ଅଛୁ ଯେ ତାର ଉପରମୁହାଁ ହେବାପାଇଁ, ଭଗବାନ ଦେଇଛନ୍ତ ଜଣ୍ଟା ତାଙ୍କୁ, ସେ ତ ନିଜେ କିଛୁ ଉଆର କର ନାହିଁ ସେଇଟି—ଅଉ ଏମିତ କ'ଣ ବା ଜଣ୍ଟା, ତା' ସ୍ୱରଟା, କିସ ବା ଅଧିକା ?" ଖଟି ମାଲିକଟାଏ କହୁଥାଏ ଜବର ସ୍ୱବରେ ।

'ହଁ, ହେ ସତକଥା, ତା ଜଣ୍ଟା, ତା' ସ୍ୱରଟା ଯେତେ ନୁହେଁ, ସେତେ ହେଉଚ ସେ ଯେମିତ ବ୍ୟବହାର କରୁଚ ତାଙ୍କୁ ।" କଥାରେ କଥା ମିଶାଇ କହୁଥାନ୍ତ ଅନ୍ୟମାନେ ।

ଏନେ ଗାୟକଟି ଗୀତଗୁଡ଼କ ବୋଲିଗଲା ପରେ, ତୃପ୍ତ ହୋଇ ତାର, ସେଇମାନ ବାହାର ଯାଇଥାଏ ଖଟିଘରୁ, ଖଟିମାଲିକ ଲଗାଇଲା ଲାଇସୁଖା ସାଙ୍ଗରେ ।

"ତୋ ହାତଟା କାହିଁକ ଦେଖାଉନୁ ଲୋ କ୍ଲେସଟର୍‌ଠି ମ୍ୟାରଅ ସ୍ନେହଦୋକମୋହନା ! ହାତ ଦେବାକୁ ତା'ଠି ଚେଷ୍ଟା କରିପାରୁନ, ଟିକିଏ ଡାମୁଡ଼ା କୁମୁଡ଼ା ଅକ୍ଲେଶରେ ତ କରିପାରଂରୁ ।"

"ଯଦ ବୟସ ଅଳ୍ପ ହୋଇଥାନ୍ତା, ଟୋକୀ ହୋଇଥାନ୍ତ ତେବେ ସିନା !" ସେ ମାଇପିଟି ଅଳ୍ପ ଟିକିଏ ହସିଦେଇ କହିଲା ।

"ଅଳ୍ପବୟସୀଗୁଡ଼ାକ, ଟୋକୀଗୁଡ଼ାକ କି କେଉଁ କାମପାଇଁ ଯୋଗ୍ୟ ? କେଉଁଥି ପାଇଁ ଅବା" । ଚିହାଇ ଜୋରକଲା ସେ ଲୋକଟା, ଖଟିମାଲିକ । ତୁଇ ତ କେବଳ ପାରିବୁ ଲୋ, ସମସ୍ତଙ୍କ ଭିତରେ ତୁଇ ଏକା । ଆଃ, ହୃଦୟଟା ତ କମିତ ମୋର ଫୁଲି ଉଠିବ ଆନନ୍ଦରେ କେତେ ଭଲ ଲାଗିବ ମୋତେ ମନକୁ ପାଇବ ମୋର ଯଦ ଦେଖେ ମୁଁ ସେ ଲୋଳେଇପାଳେଇ ହେଉଛୁ ତୋ ପାଖରେ, ତୋ ଉପରେ ପଡ଼ ଲାଳସାର ଲୋଳରେ ଭିଜେଇ ଦେଇଚ ତତେ । ହଁ, ମ, ଚେଷ୍ଟା କର ଟିକେ, ଚେଷ୍ଟାକର ସ୍ନେହଦୋକମୋହନା, ଆଃ, ମୋ ଧନ୍ୟବାଦଟା ରହିଲା ତୋ ପାଉଣା ।"

କଂରୁ ସେକଥୋକ ମନା କରିଦେଲା ସେ ଲାଇସୁଖା, ବସି ରହିଲା ସିମିତ, ବସି ରହିଲା ସିମିତ ହଲଚଲ ନ ହୋଇ ବସୁକ ପୃଥକତାରେ ତାର, ଆଖିପତା ଯୋଡ଼କୁ ନୁଆଇଁ, ଉଉଷର ଧଡ଼ିଟି ସାଥୀରେ ଖେଳ ଖେଳ ଆଙ୍ଗୁଳିରେ, ଉଦାସ ଅମନଯୋଗିନୀ ସ୍ୱବରେ ଏକସୁରିଆ ସ୍ୱରରେ କହିକହି ।

"ତମର ଦରକାର ଯୁବତୀଟିଏ, ଟୋକୀଟାଏ ଏଠି ? ମୁଁ ଯଦ ଅଳ୍ପ ବୟସୀ, ଯୁବାବୟସୀ ହୋଇଥାନ୍ତ କିଛୁ ସରନ୍ତ ନାହିଁ ତମ କଥାରେ ।"

ଖଟିବାଲା ଲଗିପଡ଼ିଥାଏ, ଚେଷ୍ଟା କରୁଥାଏ ପାରୁପର୍ଯ୍ୟନ୍ତ ଅନବରତ ହ୍ଲେସ୍‌ଚନ୍ଦ୍ରକୁ ମାତାଲ କରି ପକାଇବା । କିଂତୁ ହ୍ଲେସ୍‌ଚନ୍ଦ୍ର ଯୋଡ଼ିଏ ଛଡୋଟି ଗୀତ ଗାଉଥାଏ—ପ୍ରତ୍ୟେକଟିର ଶେଷରେ ଡିଗ୍ରିଏ ଲେଖାଏଁ ପିଉଥାଏ ଆଉ ଗୀତଟିକୁ ଗାଇସାରିଲା ପରେ ଶ୍ରେଷ୍ଠ ହ୍ୱାଚକୃଣା ସ୍କାର୍ଫ ବନ୍ଧୁଟ କଣ୍ଠରେ ଗୁଡ଼େଇ ଦେଉଥାଏ ଗଳାରେ, ତାର ଖସଖସିଆ ଅଲଗାଚାଲିଆ ବାଳରେ ମୁଣ୍ଡରେ ଟୋପିଟାଏ ମଡ଼ାଇ ବାହାର ଯାଉଥାଏ ଖଟିକୁ—

ଅନେକ ସମୟରେ ଖଟିମାଲିକ ଆଣି ଛୁଡ଼ା କରାଉଥାଏ ହ୍ଲେସ୍‌ଚନ୍ଦ୍ର ସଂଗେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ଗାୟକ କେଉଁଠୁ, ସେଭଳି ପ୍ରତିଦ୍ୱନ୍ଦ୍ୱିତା ସମୟରେ ଜାନସୀଆଁଙ୍କ ଗୀତ ଗାଇସାରି ପ୍ରଶଂସିତ ହେବା ପରେ ପରେ ଠିକ ଖଟି ମାଲିକ ଉତ୍ତେଜନା ଲୋକ ଲୋକ ବୁକ ଆବେଗରେ ଟିପ୍ପଣୀ କାଟୁଥାଏ ।

"ହଁ ଯେ ହେଲା ଯେ, ଆଉ ଜଣେ ଗାୟକ ମିଳିଛୁ ଏ ସ୍ଥାନରେ ଆସ, ଆଗେଇ ଆସ ଦୋସ୍ତ···ଟିକଏ ଅନୁଗ୍ରହ କର ।"

ବେଳେବେଳେ ନବାଗତ ମଧ୍ୟରୁ କାହାର କାହାର ସ୍ୱର ଯେ ହୃଦୟସ୍ପର୍ଶୀ ହେଉ ନ ଥାଏ ନୁହେଁ, କିନ୍ତୁ ଯେତେଦୂର ମନେ ଅଛି କେବେହେଲେ ମୁଁ ଶୁଣି ନ ଥାଏ ତାର କୌଣସି ପ୍ରତିଦ୍ୱନ୍ଦ୍ୱୀ, କେଉଁ ଶପଥର ଗାୟକ ଗାଇ ପାରିଛି ତାର ସାବଲୀଳତାରେ, ଆବେଗ ଓ ଉନ୍ମାଦନାରେ ।

"ହୁଁ, ଭଲ ବେଶ୍ ଭଲ ଅବଶ୍ୟ ଗଳା ଅଛି, ସ୍ୱର ଅଛି ତୋର, କିନ୍ତୁ, ଭାବ କି ଆତ୍ମା···" ଖଟିବାଲାଙ୍କୁ ମାନିବାକୁ ହେଉଥାଏ,—ଅନୁଶୋଚନା ବିନା ନୁହେଁ ଯଦିଓ ·

ହସି ଉଠୁଥାନ୍ତି ସମସ୍ତେ ।

"ଶୁଣୁଛ, ଜାନସୀଆଁଙ୍କ ଉପରେ ବ' ଘୁଷିଟା ପାହାର ବସିବ ନାହିଁ ଯେମିତ ।"

ହ୍ଲେସ୍‌ଚନ୍ଦ୍ର ଟାଆଁସିଆ ଖାଡ଼ା ଖାଡ଼ା ବାଳର ଲାଲ ଭ୍ରୂକୁ ହାଲକ ତଳରୁ ସମସ୍ତଙ୍କ ଆଡ଼କୁ ଅପଲକ ଆଖିରେ ଅନାଇ ରହି ଖଟିବାଲାକୁ କହୁଥାଏ ଭଦ୍ର ଅଉ ଶାନ୍ତ ଅନୁତ୍ତେଜିତ ଭାବରେ :

"କର, ଯେତେ ଇଚ୍ଛା ଚେଷ୍ଟା କର, ମୋ ଭଳି ଗାୟକଟାଏ ପାଇବ ନାହିଁ—ପ୍ରତିଭାଟି ମୋର ଭଗବାନଙ୍କ ଦାନ ।"

"କିଏ ଆମେ ନ ଆସିଛୁ ଯେ ଭଗବାନଙ୍କଠୁଁ ।"

"ନାଁ ପାଇବ ନାହିଁ ଜଣେ ହେଲେ, ତମ ଦୋକାନରେ ଯେତେ ମଦ ଅଛି, ତା' ବଦଳରେ, ତାକୁ ବିକଲେ ବା ।"

ଗାଢ଼ ରକ୍ତିମା ପ୍ରସରି ଯାଉଥାଏ ଖଣ୍ଡି ମାଳିକର ମୁହଁରେ—ଟୁପୁଟୁପୁ ଭୁଟୁଭୁଟୁ ହେଉଥାଏ ସେ ।

"ଦେଖାଯାଉ, ଦେଖାଯାଉ—ଦେଖିବା ଆମେ ଦେଖିବା ।"

ଢେ୍ସଟଭ କିନ୍ତୁ ଜୋର ଦେଇ ବାଧା କଲାଭଳି ସ୍ୱରରେ କହୁଥାଏ :

"ଗୀତ ଗାଇବାଟା ତ ଆଉ ତମର କୁକୁଡ଼ା ଲଢ଼େଇ ନୁହେଁ ? ତମେ ଏ କଥା ଜାଣ ଭଲକରି ।"

"କାହାକୁ ପାଠ ପଢ଼ଉଛ, କାହାକୁ ଶିଖାଉଛ ହେ ତମେ ?"

"ନାଁ, ମୁଁ ଶିଖାଉନି ପଢ଼ାଉନି ଦେଖାଇ ଦେଉଛି ଖାଲି ତମକୁ ଗୀତ ହେଉଛି ଆତ୍ମାର, ମର୍ମର—ଗୀତ, ଏହା ଆତ୍ମା ପାଇଁ ଉଦ୍ଦିଷ୍ଟ ।"

"ବହୁତ, ବହୁତ ହେଲାଣି ଏ ସବୁ ପରବର୍ତ୍ତୀ ଗୀତଟିଏ ହେଉ ବରଂ ।"

"ସବୁବେଳେ ପ୍ରସ୍ତୁତ ମୁଁ ଗାଇବା ପାଇଁ, ଇମିତକି ମୋ କବରରେ ମଧ୍ୟ, ଶୋଇଥିଲା ବେଳେ ମଧ୍ୟ ।" ହଁ, ଭରିଲା, ଗୀତ ଗାଇବା ପ୍ରସ୍ତାବରେ କ୍ଲେସଟଭ୍ । ଆଉ ଥରେ ଅଧେ କାଶି ଗଳା ସଫାକରି ଆରମ୍ଭ କରିଦେଲା ଗାଇବାକୁ ସେ ।

ଯେତେ ଯାହା ଛୋଟ କଥା ସଙ୍କୀର୍ଣ୍ଣତା, ଯେତେ କଥା ଭଣ୍ଡା, ଶବ୍ଦ ଖେଳର ଅଣ୍ଡା ଅଭିପ୍ରାୟର ମଳିନତା, ଯେତେ ଯାହା ଅଶିଷ୍ଟ, ଅଶ୍ଳୀଳ ଯେତେ ଯାହା ମଣିଷଟିର ନିଜସ୍ୱ ଉଭେଇ ଯାଉଥାଏ ଅଲୌକିକ ଭାବରେ, ଧୂମ କୁଣ୍ଡଳିଭଳି ···ପ୍ରତ୍ୟେକେ ସଚେତ ସଜାଗ ହୋଇ ଉଠୁଥାନ୍ତି, ସଚେତ ନିଶ୍ୱାସ ପାଇଁ ଅଉ ଏକ ଧରଣର ଜୀବନର—ଅଉ ଏକ ଜୀବନର ଯାହା ନିର୍ମଳ, ନିଷ୍କଳୁଷ ପବିତ୍ର, ଧ୍ୟାନମଗ୍ନ ପ୍ରେମ ଓ କରୁଣାର, ଦୁଃଖ ଓ ବିଷାଦରେ ପରିପୂର୍ଣ୍ଣ ।

ହୃଦୟରେ ମୋର ଜାଗରିତ ହେଉଥାଏ ଈର୍ଷା, ଈର୍ଷା ସେହି ଲୋକଟି ପ୍ରତି ତାର ପ୍ରତିଭା ଅଉ ଲୋକଙ୍କ ଉପରେ ସେ ଯେଉଁ ପ୍ରଭାବ ବିସ୍ତାରକରି ଦେଉଥାଏ ସେ ସବୁ ପ୍ରତି । କି ଅପୂର୍ବଭାବରେ ସେ ପ୍ରୟୋଗ କରୁଥାଏ, ବିସ୍ତାର କରୁଥାଏ ତାର' ସେ ଶକ୍ତି ! ଆକୁଳ ଭାବରେ କାମନା କରୁଥାଏ ମୁଁ ସେହି ଜୀବନ୍ତ ସାଁଥାଁଳିଟିର ସମ୍ପର୍କରେ ଆସନ୍ତି କି କପରି ? ସମସ୍ତେ ପାଉନ୍ତି ତା' ସାଥୀରେ, କଥା ହୁଅନ୍ତି ତା' ସାଥୀରେ—ନିଃଶେଷକରି ନିଜକୁ, କିନ୍ତୁ ସାହସ ହେଉ ନ ଥାଏ ମୋର ପାଖକୁ ଯାଇ କହିବାକୁ ଜଣେଇବାକୁ ମନସ୍କାମନାଟିକ ମୋର ଏପରି ଉଦ୍ଭ୍ରାନ୍ତଭାବରେ ସେ ଚାହୁଁଥାଏ ଚାରିଆଡ଼କୁ ତାର ଦୃଷ୍ଟି ପକାଉଥାଏ, କାହାକୁ ଚାରିଆଡ଼କୁ ତାର, ନିଷ୍ପ୍ରଭ ନିରକ୍ତ ଆଖିଯୋଡ଼ିକରୁ ମନେ ହେଉଥାଏ, କାହାକୁ ସେ ସେଠି ଦେଖିପାରୁ ନ ଥାଏ, ଦେଖୁ ନ ଥାଏ ଯିମିତ । ଆଉ ତା'ଠି ଥାଏ

ଏଭଳି କିଛି ଅପ୍ରୀତିକର ଅସୁଖର ଯାହା ମତେ ପଡ଼ୁଥାଇ ଦେଉ ନ ଥାଏ ତା' ପାଖରେ, ଠେଲି ରଖୁଥାଏ ଦୂରରେ—ଯଦିଚ ମୁଁ ଗୁହୁଁଥାଏ ଶ୍ରଦ୍ଧା କରିବ ଭକ୍ତ କରିବ ତାଙ୍କୁ । ସେ କେବଳ ଗୀତ ବୋଲିବା ସମୟରେ ନୁହେଁ, ତାହାର ମନକୁ ନ ପାଇଲାଭଳି କେମିତି ଗୋଟାଏ ବହଦୁଃଖିଆ ସ୍ୱର ଥାଏ ତାର, ବୁଢ଼ା ଲୋକପରି ମୁଣ୍ଡ ଉପରୁ ତଳକୁ କପାଳ ଉପରକୁ ଖସାଇ ଟାଣି ଟାଣି ନେଉଥାଏ ସେ ଟୋପିଟାକୁ ଆଉ ବେକରେ ତା'ର କମକ୍ଟମସ୍ତ ହାତବୁଣା ଲାଲ ସ୍କାର୍ଫ ଗୁଡ଼େଇ ହେଉଁ ହେଉଁ ରୂପ ଦେଖେଇ ହେଉଥାଏ ଅଡମ୍ବରରେ ଫୁଲ ପଣରେ କହୁଥାଏ ସେ ।

''ଏଇଟି ବୁଣିଛି, ସେଇ ରସିକା ସୁନ୍ଦରୀମାନଙ୍କ ମୋର—ମୋ ପାଇଁ ତରୁଣୀଟିଏ ଏକ ।''

ତେତେବେଳେ ଗୀତ ଗାଉ ନ ଥାଏ, ନଜକୁ ଫୁଲେଇ ଫମ୍ପେଇ ବସୁଥାଏ ଗମ୍ଭୀରଭାବେ—ଗୁରୁତ୍ୱ ଭାବି ଘଷି ହେଉଥାଏ ତାର ଲୃଷାର ହୁମାଲ ନାକଟିକୁ, ଆଉ ପଚାରିଲେ କିଛି ପ୍ରଶ୍ନର ଉତ୍ତର ଦେଉଥାଏ ସେ ଅନିଚ୍ଛାରେ କୁଣ୍ଠିତ ହୋଇ, ହଁ, ନ ଏଭଳି ଗୋଟିଏ ଦୁଇଟି ଏକସୁରିଆ ଶବ୍ଦରେ । ଅରେ କେଉଁଠିକି ବସିପଡ଼ୁଥିଲି ତା ପାଖରେ, ପଚାରିଥିଲି ତାଙ୍କୁ—ସେ ଉତ୍ତର ଦେଇଥିଲେ ମତେ ଏମିତି କି ମୋ ଆଡ଼କୁ ନ ଅନେଇ ଟିକିଏ—ଅରୁଚିଏ ପାଇଁ ବ :

''ଦୂର ହୁଅ ଟୋକା, ଯା, ଘୁଞ୍ଚ ଯା ।''

କିନ୍ତୁ ଖୁବ୍ ଭଲ ଲାଗୁଥାଏ ମୋତେ ମିଟୋପୋଲସ୍କି, ଖଟିରେ ପଶିପିବା ମାତ୍ରେ ସେ ଆଗେଇ ଯାଉଥିଲି ଖଟିର ଗୋଟିଏ କଣକୁ ଖୋଜି ଖୋଜି, ସ୍ୱର ବୋଝରେ ଭାଙ୍ଗିପଡ଼ୁଥିବା ଲୋକଭଳି ପାଦ ପକାଇ କ୍ଳାନ୍ତରେ, ଗୋଇଠାଟାଏ ମାରି ଠିକ୍‌କରି ନେଇ ଚୌକିଟାଏ, ମେଞ୍ଚାଟାଏ ହୋଇ ବସିପଡ଼ୁଥାଏ ସେଥିରେ, କହୁଣୀ ଦୁଇଟି ତାର ଭରା ପାଉଥାଏ ଟେବଲର, ଗହଳ ବାଳର ବୃହତ ମୁଣ୍ଡଟି ହାତ ଉପରେ ଦୁଇ ପାପୁଲିରେ, ଓଁ ଚୁଁ ପଦେ କିଛି ନ କହି ଆଗ ଚକ ଚକ ପିଇଯାଉଥାଏ ଦ, ତିନି ଗିଲାସ ଭୋଦକା, ଏମିତି ଦେ କରି ଗୁଡ଼ି ଦେଉଥାଏ ଓଠକୁ, ଗୁପି ଦେଉଥାଏ ଓଠକୁ ଓଠରେ, ସମସ୍ତେ ଚମକିପଡ଼ି ଅନଉଥାନ୍ତି ତାଙ୍କୁ ମୁହଁ ବୁଲେଇ ତା' ଅଡ଼କୁ, ଆଉ ସେ ସେମାନଙ୍କ ଉପରେ ଘୃଣାଣୀ ହାଣୁଥାଏ ବେପରୁଆ, ବେଖାତିର ଭାବରେ । ଚିବୁକଟି ଥାଏ ତା'ର ହାତ ଦୁଇଟିରେ, ଘୋଡ଼ାବାଳ ଭଳି କେସରିଆ ବାଳଗୁଡ଼ାକ ତାର ବିଶୃଙ୍ଖଳିତ ହୋଇ ଛନ୍ନଛତର ହୋଇ ପଡ଼ୁଥାଏ ଗୁରିଆଡ଼େ, ରକ୍ତିମ ସ୍ଫୀତ ମୁହଁରେ ତାର ।

''କାହିଁକି ଅନେଇଛ ? ଅନେଇଛ କାହିଁକି ? କଣ ସବୁ ଦେଖୁଛ ?'' ହଠାତ୍ ରାଗରେ ପାଟିକରି ଉଠୁଥାଏ ସେ ।

"ଦେଖୁଛୁ ଗୋଟିଏ ଭୂତ," ବେଳେବେଳେ ଜବାବ ଦେଇଥାନ୍ତି ସମସ୍ତେ ।

କେତେଗୁଡ଼ିଏ ସନ୍ତରେ ସେ ଆସୁଥାଏ, ଚୂପ୍‌ଚାପ୍ ପିଇସାରି କାଃଠେରେ ବାହାରିଯାଉଥାଏ ଲମ୍ବା ଲମ୍ବା ପାଦ ପକାଇ, ଟାଣିଓଟାରି ଗୋଡ଼କୁ, କିନ୍ତୁ ଅନେକ ଥର ଅବତାରଙ୍କ ଘାଟରେ ତୀବ୍ର ଭାବରେ ସମାଲୋଚନା କରି ସେ ଗାଳି ଦେଉଥାଏ ଜନସାଧାରଣଙ୍କୁ ।

"ମୁଁ ହେଉଛୁ ନିର୍ଦୋଷ, କଳୁଷରହିତ ଭକ୍ତ—ଏକ ସେବକ ଭଗବାନଙ୍କର । ସେଇ ଭାବରେ ହିଁ ପୂର୍ବକାଳର ଇଶାଯ୍ଯାଙ୍କ ପରି ଦୋଷୀ ସାବ୍ୟସ୍ତ କରୁଛୁ, ଅପରାଧୀ ସାବ୍ୟସ୍ତ କରୁଛୁ ତୁମକୁ । ଦୁର୍ଦ୍ଦଶାଗ୍ରସ୍ତ, ଅଭିଶପ୍ତମସ୍ତ ହେଉ ଏରଏଲ ନଗରୀ, ଏରଏଲ ନଗରୀ, ସେଇ ଯେଉଁଠି ନିବାସ କରନ୍ତି ସ୍ୱୈର, ତସ୍କର ଅମଙ୍ଗଳକାରୀ, ଘୃଣ୍ୟ, ଜଘନ୍ୟ ଇନ୍ଦ୍ରିୟଲାଳସାପ୍ରିୟ ଲୋକେ । ଦୁର୍ଦ୍ଦଶାଗ୍ରସ୍ତ ହେଉ ପୋତ ଏଇ ପୃଥିବୀର, ବିଶ୍ୱବ୍ରହ୍ମାଣ୍ଡର ଜଳପଥରେ ପାଲ ମେଲି ମେଲି ଯାତ୍ରା କରୁଛୁ ଯାହା, ଦୁର୍ଗନ୍ଧ ଓ ଦୂଷଣର, ପାପ ଆଉ କଳୁଷରାଶିର ବହନ କରି,ସେହି ଯେଉଁ ପାପ ଆଉ କଳୁଷର ମୂର୍ତ୍ତିମନ୍ତ ରୂପ ତମେ ସବୁ ! ହେ ଯେତେ ପୂର୍ବପାପୀ, ହେ ଯେତେ ଘୃଣପଙ୍କିଳ ଅବଶେଷ ସବୁ ଧରଣୀ ଗର୍ଭର, ଅଗଣିତ ତୁମର ସଂଖ୍ୟା, ହେ ତମେ ସବୁ ପାପୀ, ଅଭିଶପ୍ତବର୍ଗ, ଅପେକ୍ଷା କର, ତମର ସେହି ଦେହାବଶେଷକୁ ଘୃଣାରେ ପ୍ରତ୍ୟାଖ୍ୟାନ କରିବ, ଦଳନ କରିବ ପୃଥିବୀ ।"

ସ୍ୱରର ଗୁରୁଗମ୍ଭୀର, ଅନୁରଣରେ, ଝଂକୃତରେ କମ୍ପିତ ହୋଇ ଉଠୁଥାଏ ଝରକାର ପାନିଆଗ୍ଲା ସବୁ, ପୁଲକିତ ମୁଗ୍ଧ କରି ଦେଉଥାଏ ଶ୍ରୋତାମଣ୍ଡଳୀଙ୍କୁ, ଉତ୍ସାହିତ ଓ ଅନୁପ୍ରେରିତ କରୁଥାଏ ସେମାନଙ୍କୁ ପ୍ରଶସ୍ତି ଗାନ କରିବା ପାଇଁ ତାହାର ।

"ଏଃ, ବାଜି ରଖିପାରୁନି ମ ଏକଥା ଉପରେ, ଅସଲ ପୋଖତ ବଦ୍‌ମାସଟା,.ସଇତାନଟା ଏଁ ?"

ତା' ସଙ୍ଗରେ ବନ୍ଧୁତ୍ୱ ସ୍ଥାପନ କରିବା, ସମ୍ପର୍କ ସ୍ଥାପନ କରିବା ବାଟ ସହଜ, ଖାଲି ତାକୁ ସମ୍ମାନ ଦେଖାଇ ଚର୍ଚ୍ଚା କଲେ, ପିଇବାକୁ ଯାଚିଲେ ହିଁ ହୋଇ-ଯାଉଥାଏ ସବୁ, ନିଶ୍ଚିତ ଭାବେ ସେ ଆଗ ତମ ପାଇଁ ଆଦେଶ ଦେଉଥାଏ ଖଟିକୁ ସୁନ୍ଦର ସୁଶୋଭନ ଭୃଙ୍ଗାରରେ ଭୋଦକା ଦେବା ପାଇଁ ଆଉ ଲାଲମରିଚ ସାଥିରେ ଡହଡ଼ହ ଡାଲ୍‌ଲି ମାଂସ ଯୋଗାଇବା ପାଇଁ—ସେ ଭଲ ପାଉଥାଏ ଏଗୁଡ଼ାକୁ ଇମିତି ଖାଇବା ପାଇଁ, ତାର ତଣ୍ଡି ଆଉ ପେଟ ସେଥିରେ ଜଳି ଉଠୁଥାଏ, ଜଳୁଥାଏ ବୋଲି । ପଚ୍ଛିଲି ଯେତେବେଳେ କୋଉ କୋଉ ବନ୍ଧୁ ପଢ଼ିବା ଉଚିତ, ସେ ଠାଇକିନି ବଦମିଜାଜରେ ଶୁଣେଇଥିଲି ମତେ :

"କାହିଁକି ରେ, ପଢ଼ିବୁ ତୁ କାହିଁକି ?"

କିନ୍ତୁ ନରମ ହୋଇଯାଇଥିଲା, କୋମଳ ହୋଇ ଯାଇଥିଲା ସ୍ୱରଟି ତାହାର, ଦେଖିଥିଲି ଯେତେବେଳେ ତାର ପ୍ରଶ୍ନଟି ଆତଙ୍କିତ, ଭୟଗ୍ରସ୍ତ କରାଇ ଦେଇଥିଲା ମତେ—ଗୁନ ଗୁନ କହୁଥିଲା ମତେ :

"ପଢ଼ିଚୁ କି ? ଧର୍ମଗ୍ରନ୍ଥ ସବୁ ?"

"ହଁ ।"

"ପଢ଼ ସେହି ଧର୍ମୋପଦେଶ, ଯଥେଷ୍ଟ ହେଉକି ! ଜଗତଯାକର ଜ୍ଞାନ ଲୁଚିବାଛି ସେଥିରେ । କେବଳ ତମର ଏଠି ଯେଉଁ ଚତୁଷ୍କୋଣୀ ମଥା ବିଶିଷ୍ଟ ମୂର୍ଖଦଳ ଅଛନ୍ତି ବୁଝିବାକୁ ଅକ୍ଷମ ସେସବୁକୁ—ସେ ସବୁକୁ କେହି ବୁଝି ପାରନ୍ତି ନାହିଁ । ତୁ କିଏ, ଗୀତ ଗାଉ ଗାୟକ ପିଲା ?"

" ନାଁ ।"

"ନାଁ, କାହିଁକି ? ସବୁ ବୃତ୍ତି, ଧନ୍ଦା, ବ୍ୟବସାୟ ଭିତରେ ତ ସବୁଠୁଁ ବଳି ନିର୍ବୋଧ କାମ ସେଇଟା ।"

ପାଖ ଟେବୁଲ ଉପରୁ କିଏ ଜଣେ କହି ଉଠିଥିଲେ :

"ଆହେ, ତମ କଥା କ'ଣ ହେ ? ତୁମେ ଗାଅ କିକ ? ଗାୟକ ନୁହଁ ତମେ ?"

"ମୁଁ (ମୁଁ ଗାୟକ) ବାରଗୁଳା ମାଗନ୍ତାଟାଏ ମୁଁ, ଅଚ୍ଛା ! ଅଚ୍ଛା ?"

' ନାଁ, କିଛି ନାହିଁ ।"

"ହଁ, ନ ଥିବା କଥା ! ସେଇଟା ସ୍ୱାଭାବିକ ! କିଏ ବା ନ ଜାଣେ ତମ ମଗଜ-ମ୍ୟୁଜଟା ଫାଙ୍କା ବୋଲି, କିଛି ନାହିଁ ସେଥିରେ, କିଛି ପଶିବ ନାହିଁ କି ଧଶିବ ନାହିଁ କେବେହେଲେ; ହେଉ, ଭଗବାନ ଦୟା କରନ୍ତୁ !"

ଏଇଭଳି ଭଙ୍ଗୀରେ, ଏଇଭଳି ସ୍ୱରରେ ସେ କଥା କହୁଥାଏ ସମସ୍ତଙ୍କୁ, ମୋତେ ବି ଯଦିଓ ତାକୁ ଦୁ' ତିନିଥର ଚର୍ଚ୍ଚା କରି ସାରିଲା ପରେ ମଦ ଯୋଗାଇ କିଛିଏ ନରମି ଯାଇଥାଏ ସେ ମୋ ପ୍ରତି, ଏମିତିକି ଦିନେ ବିସ୍ମିତ କରିଦେଇ ମତେ ସେ କହୁଥାଏ :

"ଯେତେବେଳେ ମୁଁ ତୋତେ ଅନାଏ, ତତେ ଦେଖେ, ଚେଷ୍ଟା କରେ ବୁଝିବାକୁ କିଏ ତୁ, କ'ଣ ତୁ ଆଉ କାହିଁକି ବା ତୁ ? କୋଉଥିପାଇଁ ? କିନ୍ତୁ ମୋର କ'ଣ ଯାଏ ଆସେ, ମୋର କି ଭାବନା, ତୁ ଯୁଆଡ଼େ ଇଚ୍ଛା ସାଡ଼େ ଯାଅ—ନର୍କକୁ ଯା, ସଇତାନ ହାତକୁ ପଛେ !"

କ୍ଲେସଟଭ ସମ୍ପର୍କରେ ତାର ପ୍ରକୃତ ମତାମତଟା କ'ଣ ମୁଁ ଜାଣିପାରୁ ନ ଥାଏ, ସେ କ୍ଲେସଟଭଙ୍କୁ ଶୁଣୁଥାଏ, ତା' ଗୀତକୁ କାନଡ଼େରି ସନ୍ତୋଷ ଓ ଆନନ୍ଦରେ, ସଙ୍ଗା ଫୁଟି ପଡ଼ୁଥାଏ ହାବଭାବରୁ ଏମିତିକି ବେଳେବେଳେ ମୁରୁକେଇ ହସୁଥାଏ ସ୍ନେହରେ ଆଦରରେ, କେବେହେଲେ କିନ୍ତୁ କ୍ଲେସଟଭ ସାଥିରେ ସମ୍ପର୍କ ରଖିବାକୁ ଲୋଡ଼ୁ ନ ଥାଏ, ବରଂ ତା ବିଷୟରେ ଆଲୋଚନା କରୁଥାଏ ରୁକ୍ଷ ଭାବରେ ତୁଚ୍ଛ ତାଚ୍ଛଲ୍ୟରେ !

"ଚେହେଲିଆ, ଚେହେଲିଆଟାଏ ସେ—ସେ ଜାଣେ ନିଶ୍ୱାସ ନେବାକୁ ହେବ କିମିତି, ଭୁଟେ କ'ଣ ଗାଏ ସେ ? ତଥାପି ଗୋଟାଏ ଗଧ ସେ, ଗଧଟାଏ !"

"କାହିଁକି ?"

"ଜନ୍ମ ହୋଇଛୁ, ସେ ଗଧ ହୋଇ ସେହେତୁ !"

ତାର ମତଗତ ଧୀରସ୍ଥିର ଥିଲାବେଳେ ତା' ସହିତ କଥାବାର୍ତ୍ତା ହେବାକୁ ଉପଭୋଗ କରିଥାନ୍ତି, କିନ୍ତୁ କ'ଣ ହୁଅନ୍ତା ? ସେଭଳି ମୁହୂର୍ତ୍ତରେ ଘୂର୍ଣ୍ଣିଭଳି ଘୂରି ଘୂରି ହେଉଥାଏ ଆଉ ଚାରିଆଡ଼କୁ ଚାହୁଁଥାଏ ଆଚ୍ଛନ୍ନ ଦୁର୍ଦ୍ଦଶାଗ୍ରସ୍ତ ଦୃଷ୍ଟିରେ । କାହାଠୁଁ ଜଣେ ଶୁଣିଥିଲି, ସେ ଲୋକଟି ଜୀବନର ଅବଶିଷ୍ଟ ଦିନ-ଗୁଡ଼ିକ ପିଇ ପିଇ ମାତାଲ ଅବସ୍ଥାରେ କଟାଉଥାଏ, କିନ୍ତୁ ଦିନେ ପଢ଼ିଥିଲା ସେ କାଜାନ ଏକାଡ଼େମୀରେ, ହୁଏତ ହୋଇ ପାରିଥାନ୍ତା ପାଦ୍ରୀ । ପ୍ରଥମେ ପ୍ରଥମେ ବିଶ୍ୱାସ କରୁ ନ ଥିଲି, ହସି ଉଡ଼ାଇ ଦେଉଥିଲି ଏ କଥାକୁ । କିନ୍ତୁ ପରେ ତା' ସହିତ ଗପ କରୁ କରୁ ଅଜାଣତରେ କେମିତି କଥାରେ କଥାରେ କହିଲି ବିଶପ୍ କ୍ରିସାନ୍ଥଙ୍କ ନାଁଆଁ ।

"କ୍ରିସ୍ଥାନ୍ଥ ?" ମୁଣ୍ଡଟିକୁ ଝଟ୍କେଇ ହଲେଇ ଦେଇ କହିଲା ମିଟ୍ରୋପୋଲସ୍କି— "ସେ ମୋର ଶିକ୍ଷକ ଥିଲେ, ମଙ୍ଗଳ କରିଛନ୍ତି, କେତେ ଉପକାର କରିଛନ୍ତି ମୋର, ତାଙ୍କର ଶୁଭାଶିଷ ଥିଲା ମୋ ଉପରେ—କାଜାନର ଏକାଡ଼େମୀର ମନେ ଅଛି । କ୍ରିସାନ୍ଥ ଅଥ ସ୍ୱର୍ଣ୍ଣିମ ଫୁଲ, ପ୍ରକୃତରେ ଯାହା ବର୍ଣ୍ଣନା କରିଛନ୍ତି ପାମଭ୍ୱ ବେରନ୍ଦା—ପ୍ରକୃତ ସ୍ୱର୍ଣ୍ଣପ୍ରଭ ଥିଲେ ସେ—କ୍ରିସାନ୍ଥ ସେଇ !"

"କିନ୍ତୁ ପାମଭ୍ୱ ବେରନ୍ଦାଟି କିଏ ?" ପଚାରିଲି ମୁଁ । ମିଟ୍ରୋପୋଲସ୍କି କିନ୍ତୁ ସଂକ୍ଷେପରେ ଉତ୍ତର ଦେଲା ।

"ସେଥିରେ ତୋର କ'ଣ ଅଛି ରେ ?"

ଘରକୁ ଫେରିଗଲି ପରେ ଟିପା ଖାତାରେ ଲେଖିଥିଲି ସେ ଦିନ । "ନିଶ୍ଚିତ ଭାବରେ ପଢ଼ିବି ପାମଭ୍ୱ ବେରନ୍ଦା ।" କାହିଁକି କେଜୈ କାରଣରୁ

ମୋର ଧାରଣା ହୋଇଯାଇଥାଏ, ମୋ ମନକୁ ମୋ ଆତ୍ମାକୁ ଘାଣ୍ଟିତ ଯେଉଁ ପ୍ରଶ୍ନଗୁଡ଼ିକ, ଉତ୍ତର ପାଇବ ସେଗୁଡ଼ିକର ବେଶକ୍ ତା'ଠୁଁ ।

ଗାୟତ୍ରୀକଟି ଭଲ ପାଉଥାଏ ଅଦ୍ଭୁତ, ଅଦ୍ଭୁତ, ଉଦ୍ଭଟ ନାଁ ସବୁ, ଆଉ ଚଳନ୍ତ ଅଚଳନ୍ତ, ଯୋଡ଼ ବିଯୋଡ଼ ସାମନ୍ତ୍ରୀକ ଶବ୍ଦସବୁ ବ୍ୟବହାର କରିବା ପାଇଁ ।

"ଜୀବନଟା 'ଆନ୍‌ସିଆ' ନୁହେଁ," ଆଉ ଦିନେ କହିଥିଲ ସେ ।

"ଆନ୍‌ସିଆ କଣ ?" ପଚାରିଥିଲି ମୁଁ ।

"ପୀଡ଼ାନାଶକ ଔଷଧ ।" ଉତ୍ତର ଦେଇଥିଲ ସେ । ମଜା ଲାଗିଥିଲା ତାକୁ, ମୁଁ ମୁସ୍‌କିଲରେ ପଡ଼ିଛି । ପ୍ରହେଳିକାରେ ଷଢ଼ିଯାଉଛି ଦେଖି ।

ତା'ର ଏଭଳି ଶବ୍ଦସବୁ ପ୍ରୟୋଗ କଥା କଥାକେ । ଆଉ ସେ ଯେ ଏକାଡ଼େମିରେ ପଢ଼ିଥାଏ—ଏ କମ୍ ଘଟଣା ନ ଥିଲା ମୋ ପାଖରେ, ଏଥିରୁ ମୋର ଧାରଣା ହୋଇଯାଇଥିଲା, ଭାବୁଥିଲି ମୁଁ, ଜ୍ଞାନର ଭଣ୍ଡାର ଥିଲା ତା'ଠି, ଏଣୁ ବିରକ୍ତିକର ଲାଗୁଥିଲା ମୋତେ ତା'ଭଳି ପ୍ରାଜ୍ଞ ଲୋକ ଅନିଚ୍ଛାରେ ରହସ୍ୟ-ଜନକ ଗାଢରେ ପଦେଅଧେ କହିବାଟା । ଖୁବ୍ ସମ୍ଭବ ହେବ ହୁଏତ ମୁଁ ଜାଣି ନ ଥିଲି କେମିତି ଧରିବାକୁ ହେବ, ମନ ନେବାକୁ ହେବ ତା'ର ।

ତଥାପି, ସେ ତାର ଚିହ୍ନ ରଖିଯାଇଥିଲା ମୋ ପ୍ରାଣରେ, ମୋ ଆତ୍ମାରେ । ପୟଗମ୍ବର ଈଶାୟାଙ୍କ ଢଙ୍ଗରେ ତୀକ୍ଷ୍ଣ ସମାଲୋଚନା ତୀବ୍ର ନିନ୍ଦାବାଦ କରିବାରେ ମାତାଲର ସାହସିକତା ନିର୍ଭୀକତା ତା' ମନରେ ଗ୍ରୁପ୍ୟାପାତ କରୁଥିଲା ଦେଖୁ-ଥିଲି ମୋର ।

"ଓହେ' ରେ ଆବର୍ଜନା ଆଉ ଦୁର୍ଗନ୍ଧ ଯେତେ ଏହି ଧରିତ୍ରୀର, ଏଇ, ପୃଥିବୀର", ଗର୍ଜି ଉଠୁଥାଏ ସେ । "ଦୁଷ୍ଟ ଯିଏ, ଦୁର୍ଦ୍ଦାନ୍ତ ଯିଏ, ହେ ନିମ୍ନତ, ମହିମାମୟ ସେ, ସତ୍ ଯିଏ, ସଦାଗ୍ରସ୍ତ ଯିଏ, ନ୍ୟାୟବନ୍ତ ଯିଏ, ସେ ଆଜି ପରିତ୍ୟକ୍ତ ନିମ୍ନରେ ସେ । ଶୀଘ୍ର ଖୁବ ଶୀଘ୍ର ନିଷ୍ପାଲୋକର ପ୍ରକାଶ ହେବ ଶେଷ ବିସ୍ମୃର ଅବସର, କିନ୍ତୁ ବହୁତ ବିଳମ୍ବ ହୋଇଯାଇଥିବ ସେତେବେଳକୁ ।"

ଏହି ଚିତ୍କାର ଶୁଣି ହତାଶାର, ମନେପଡ଼ି ଯାଉଥାଏ ମୋର "ବଢ଼ିଆ ଯେଇଟି, ଭାରି ଚମତ୍କାର" ସେଇ ମେ ଧୋବଣୀ ନାଟାଲିଆ । ସେ କି ଶୋଚନୀୟ ଭାବରେ ଶେଷ ବିଗ୍ରହରେ ନରକଗାମିନୀ ହେବା ନିଶ୍ଚିତ ଥାଏ ଯାହାର, ମନେପଡ଼ି ଯାଉଥାଏ ରାଣୀ ମାର୍ଗଟ କଳୁଷାକ୍ତ ଗାଲଗଲ୍ପର, କୁଞ୍ଚିତ କେତେ କାହାଣୀର ଜଳଦ ପଟଳରେ ଆଚ୍ଛନ୍ନ ଯିଏ, ସେଭଳି ମାଳା ଥିଲା ଯାହାର ଗଳାରେ । ଆରେ ସେତେବେଳକୁ କେତେ କଥା ମନେ ରଖିବାକୁ ମିଳିସାରିଥାଏ ମତେ ।

ସଂକ୍ଷିପ୍ତ ସଂବାଦ ଟିକକର ସେହି ଲୋକଟି ସହିତ ମୋର, ସମାପ୍ତି ଘଟିଥିଲା ଅଦ୍ଭୁତ ଭାବରେ ।

ହଠାତ୍ ବସନ୍ତ ଭିତରେ ଭେଟିଲି ତାଙ୍କୁ ସୈନିକ ଗ୍ରାହଣୀ ନିକଟ ପଡ଼ିଆରେ—ଏକୁଟିଆ ବୁଲୁଥାଏ ସେଠାରେ ସେ, ଭୀଷଣ ଭାବରେ ଗ୍ରୀବ ଫୁଲେଇ ମୁହଁ ଫୁଲେଇ ଗର୍ବରେ, ମୁଣ୍ଡଟାକୁ ଟେକି ହଲାଇ ହଲାଇ ଓଟପକ୍ଷୀପରି ।

"କିରେ, ହାୱା ଖାଉଛୁ ?" ପଚାରିଲି ଶୁଣିଲି ବସିଲା ଖାସୁଖାସୁଆ ଗଳାରେ, "ଆ, ଏକାଠି ହାୱା ଖାଇବା ଆ, ମୁଁ ବି ବାହାରିଛୁ ଯେଉଁଏ ବୁଲି ଆସିବା ପାଇଁ । ଆରେ, ଗ୍ରେଗିଣା ମଣିଷଟାଏ ମୁଁ—ହଁ, ରେ ଦୋସ୍ତ ଗ୍ରେଗିଣାଟାଏ ମୁଁ ।"

ବେଶି ସମୟ ନୁହେଁ, ଟିକଏନାକୁ ବୁହେଁ ଆମେ ବୁଲିଚୁ କି ନାହିଁ ହଠାତ୍ ଆମ ଆଖିରେ ପଡ଼ିଲା ମଣିଷଟାଏ ଗୋଟାଏ ଗଛତରେ—ଗଛର କାଣ୍ଡକୁ ଆଉଜି ମେଣ୍ଟାଏ ହୋଇ ବସିଥାଏ ସେ—କୋଟଟି ତା'ର ଉପରକୁ ଠେଲି ହୋଇ ରହିଥାଏ ଗୋଟାଏ କାନକୁ ନିରୁଜକରି, ସତେ ଯିମିତି ସେ ଚେଷ୍ଟା କରୁଥାଏ କୋଟଟିକୁ କାଢି ଉତାରି ଦେବାପାଇଁ ।

"ପିଇ ଦେଇଛୁ, ମାତାଲଟିଏ ।" ଦେଖିବା ପାଇଁ ତାଙ୍କୁ ଅଟକିଯାଇ କଣ୍ଠସ୍ୱର ନିକର ଶୁଣାଇଲା ଗାସ୍କିକଟି ।

କିନ୍ତୁ ଅଳ୍ପ ଦୂରରେ କଅଁଳ ଘାସ ଉପରେ ଦେଖିଲୁ ପଡ଼ିଥିଲା ଗୋଟାଏ ବଡ଼ ପିସ୍ତଲ, ସେ ଲୋକଟିର ଟୋପି, ପୁରା ପିଆଯାଇ ନ ଥିବା ଗୋଟାଏ ଭୋଦକା ବୋତଲ, ବୋତଲଟିର ବେକଯାଏ ଭୋଦକା ଥିଲା ପଡ଼ିଥିଲା ସବୁ ଘାସ ଭିତରେ—ଲୋକଟିର ମୁହଁ ପୋତହୋଇ ରହିଥିଲା କବରରେ ପୋତହୋଇଥିବ କୋଟର କଲରରେ ସତେ ଯେମିତି ଲଜ୍ୟାରେ ଅପମାନରେ !

ମିନିଟିଏ ଖଣ୍ଡେ ଛିଡ଼ା ହୋଇ ରହିଲୁ ପଦେହେଲେ କିଛି ପାଟି ନଫିଟାଇ କିଛି ନ କହି । ତାପରେ ଗୋଡ଼ ଦୁଇଟାକୁ ନିକର, ମେଲାଇ ଫରକଟା କରିଦେଇ ମିଖୋପୋଲସ୍କି କହିଲା :

"ଏଃ, ଗୁଳିକରି ଦେଇଛୁ ନିଜକୁ ନିଜେ ।"

ମୁଁ ଦେଖିଲି ମାତ୍ରେ ଜାଣିପାରିଥାଏ ଲୋକଟି ମରିଯାଇଥାଏ—ମାତାଲ ଅବସ୍ଥା ନ ଥାଏ ବୋଲି । କିନ୍ତୁ ଏମିତି ଅପ୍ରତ୍ୟାଶିତ ଥିଲା ଘଟଣାଟି ସେଥି ସଂପର୍କରେ ମୋ ଧାରଣାକୁ ବାଧାଦେଇ ପୁରାଇ ନ ଥାଏ ମନରେ । ବେଶ ମନେଅଛି ଭୟ ନୁହେଁ କି ଦୟା ନୁହେଁ, କିଛି ଗୋଟାଏ ଅନୁଭୂତରେ ଆସୁ ନ ଥାଏ

ମୋର, ଯେତେବେଳେ ଗୃହିଣୀରହ୍ମ ସ୍ଥିର ଦୃଷ୍ଟିରେ ଦେଖୁଥାଏ ସୁବୃହତ୍ ମସୃଣ ଖପୁରଟିକୁ ଆଉ କୋଟର କଲର ଭିତରୁ ଅନ୍ତରାଳରେ ଉପରକୁ ଉଠିଥିବା ନୀଳ ପଡ଼ିଯାଇଥିବା କାନକୁ, ଅତି କଠିନ ଥାଏ ମୋ ପକ୍ଷରେ ବିଶ୍ୱାସ କରିବା ସେଭଳି ସ୍ନିଗ୍ଧ ସୁନ୍ଦର ସୁଗନ୍ଧମୟ ବସନ୍ତର ଦିନରେ ଆପଣାକୁ ଆପେ ହତ୍ୟା କରିପାରେ କିଏ ?"

ମିକ୍ସୋପୋଲସ୍କି ଜୋରରେ ଘନଘନ ରଗଡ଼ିବାକୁ ଲାଗିଲା ତାର ସ୍ଥିର ହୋଇ ନ ଥିବା ଗାଲ ଦୁଇଟିକୁ, ସତେ ଯେମିତି ହେମାଳ ହୋଇ ଯାଉ-ଥାଏ ସେ ଗାଲ ଦୁଇଟି…ଶୁଖିଲା ଚପ୍ଭଳି ଖାସୁଖାସୁଆ ସ୍ୱରରେ କହିଲା :

"ବୁଢ଼ାଲିଆଟା ! ସ୍ୱରଜା ଗ୍ରାମ୍ଭ ଆସିଥିବ ନିଶ୍ଚୟ, ନଇଲେ ବା ଟଙ୍କା ପଇସା ଯେଉଁ କଷ୍ଟରେ ପଡ଼ିଥିବ !"

ସେ ମତେ ସହରକୁ ପଠାଇଦେଲା ପୁଲିସକୁ ଡାକି ଆଣିବା ପାଇଁ, ନିଜେ ବସିରହିଲା ଗାତ ମୁହଁରେ ଗୋଡ଼ ଦୁଇଟିକୁ ଓହଳେଇ, କାନ୍ଧ ଉପରେ ଟସ ଲୋଗ୍ୱୋଗ୍ ପୁରୁଣା କୋଟଟାକୁ ଶକ୍ତକରି ଟାଣିଦେଇ, ପୋଲିସଟି ଲୋକର ଆତ୍ମହତ୍ୟା ଖବର ନେଲା ସାଙ୍ଗେ ସାଙ୍ଗେ ଦଉଡ଼ି ଦଉଡ଼ି ଫେରିଆସିଲି ମୁଁ—କିନ୍ତୁ ସେତେବେଳକୁ ଗାସ୍ଫକଟି ଅନ୍ତୁଧାରର ଅବଶିଷ୍ଟ ଭୋଦକାକୁ ଶେଷ କରିଦେଇ ଥାଏ । ମତେ ଦେଖି ସାର ବ୍ୟଙ୍ଗରେ ହଲେଇବାକୁ ଲାଗିଲା ଖାଲି ବୋତଲଟିକୁ ।

"ହେଇଏ, ତାକୁ ଖତମ କରିଛୁ ଯିଏ, ତାକୁ ନିପାତ କରିଛୁ ଯିଏ ଆକାଶଛୁଆଁ ପାଟିଟାଏ କରି ଫିଙ୍ଗିଦେଲା ସେ ଭୋଦକା ବୋତଲଟାକୁ ତଳେ, ଗୁଣ୍ଡଗୁଣ୍ଡା ହୋଇଗଲା ସେଇଟି ।"

ମୋ ପଛେ ପଛେ ଧାଇଁ ଧାଇଁ ଆସିଥାଏ ପୁଲିସ ଗୋଟିଏ, ଅନେଇଦେଲା ସେ ଗାତ ଭିତରକୁ, ମୁଣ୍ଡରୁ କାଢିଦେଲା ଟୋପିଟାକୁ, ଦୋଦୋପାଞ୍ଚ ହୋଇ କ୍ରୁଶ ଚିହ୍ନ ଆଙ୍କିସାରିଲା ପରେ ନିଜ ଗ୍ରୀବରେ ମୁହଁ ବୁଲାଇଲା ଗାସ୍ଫକଟି ଆଡ଼କୁ ।

"କିଏ ଯେ ?"

"ତୋର କି କାମ ସେଥିରେ ? କିଏ ମୁଁ ଜାଣିବାରେ ?"

ଅଳ୍ପ କିଛି ଟିକିଏ ବଗ୍ରିଶ ପୁଲିସ କହିଲା ଅଧିକ ଭଦ୍ରଭାବରେ ।

"ଏ କିମିତି କଥା, ମୁରଦାରଟା ପଡ଼ିଛି ସେଠି, ଆଉ ମଦ ପିଇ ତମେ ଚୂର ଅବସ୍ଥାରେ…"

"ମଦ ପିଇ ଚୂର୍‌ହୋଇ ରହିଛୁ କୋଡ଼ିଏ କୋଡ଼ିଏ ବର୍ଷ ହେଲ," ସ୍ମିତ ବାଢ଼େଇ ବାଢ଼େଇ ଗଙ୍ଗରେ କହିଲା ଗାୟକ :

ଯଥାର୍ଥ ଭାବେ ଜାଣିପାରୁଥାଏ ମୁଁ, ମୋଦକଜାତକ ପିଇବା ହେତୁ ଗିରଫ କରିନେବେ ତମକୁ ସେମାନେ । ଆଉ କେତେକ ଲୋକ ଦଉଡ଼ି ଦଉଡ଼ି ଆସି ପହଂଚିଗଲେ ସହରରୁ । ଗୋଟାଏ ଖୋଲା ଘୂରଚକିଆ ଘୋଡ଼ାଗାଡ଼ିରେ ଚଢ଼ି ପହଂଚିଗଲା କଠୋର ରୁକ୍ଷ ଚେହେରାର ପୁଲିସ ଅଫିସର । ଗାଡ଼ିରୁ ଓହ୍ଲାଇ ପଶିଗଲା ଗାଡ଼ି ଭିତରକୁ ଲୋକଟିର କୋଟଟାକୁ ଟେକି ଆଢ଼େଇଦେଲା ଦେଖିବା ଲାଗି ତା ମୁହଁଟା ।

"କିଏ ତାକୁ ପହିଲେ ଦେଖିଛୁ ?"

"ମୁଁ, ମୁଁ ଦେଖିଛୁ ।" କହିଲା ମିଲୋପୋଲସ୍କି ।

ପୁଲିସ ଅଫିସର ଘାରଡ଼େଇ ତାକୁ ତୀବ୍ର ଭାବରେ ଅନେଇଲା ଟିକିଏ, ହଠାତ୍‌ କହିବାକୁ ଲାଗିଲା ଟିକିଏ ସ୍ୱର ଲଚେଇ, 'ଭୟ ସଞ୍ଚାର କରେଇ' ସେଥିରେ ।

"ଆଃ, ଖୁସି, ମୁଁ ଦେଖିବାକୁ ପାଇ ତତେ, ବଢ଼ିଆ ଲୋକଟି ତୁ, ଚମତ୍କାର !"

ଠିକ ହୋଇଗଲେ ଦେଖଣାହାରିଏ—ହ' ଘୂରି ଓଜନ ସରିକି— ଅଣ-ନିଶ୍ୱାସୀ ହୋଇ ଉତ୍ତେଜନାରେ ଗୁଁଥି ରହିଲେ ଅପଲକ ନେତ୍ରରେ ଗାଡ଼ି ଭିତରକୁ । ଆଉ ତା' ମୁହଁରେ ଘେର ଖାଇଲେ ମୁଣ୍ଡ୍ରାକାଟି ବା—କିଏ ଜଣେ ପାଟି କରି କହି ଉଠିଲା ।

"ଆମ ଗାଁର, ସାହିର ପାଦ୍ରି ଟିଏ ଭଲେ ମୁଁ ଚହ୍ନେ ତାଙ୍କୁ ।"

ଟଳୁଥାଏ ଗାୟକଟି ପୁଲିସ ଅଫିସର ଆଗରେ ଛିଡ଼ା ହୋଇ, ଅନୁଚ୍ଚାରିତ ଭାବରେ ଯୁକ୍ତି କରୁଥାଏ, ବସିଲା ଗଳାରେ ପାଟି କରି କରି । ପୁଲିସ ଅଫିସର ସ୍ମିତରେ ତାର ଖୁନ୍ଦାଟାଏ ମାରି ଠେଲି ଦେଲା ତାକୁ, ସେଥିରେ ସେ ପଛକୁ ହଟି ଯାଇ ବସିପଡ଼ିଲା, ତରବର ନ ହୋଇ ଧୀରସୁସ୍ଥେ ପ୍ରଥମ ପୁଲିସ ଜଣକ ଦଉଡ଼ି ଖଣ୍ଡେ ବାହାର କରି ଆଣିଲା ପକେଟରୁ ହାତ ଯୋଡ଼ିକ ବାନ୍ଧିଲା ଗାୟକର, ଛିଡ଼ା ହୋଇ ରହିଲା ସେ, ପୁଲିସଟି ଗାୟକ ପଛରେ, କାଙ୍କର ଭଳି, ତେଣେ ପୁଲିସ ଅଫିସର ରାଗ ଝଡ଼େଇଲା ଲୋକଙ୍କ ଉପରେ ।

"ଯାଅ, ନକଲ ଏଠୁ, ଛତରା ମାଗିଖିଆ, କୋତରାଗୁଡ଼ାକ !"

ଆଉ ଜଣେ ପୁଲିସ ପୁଣି ଓଦାଳିଆ ଢଳଢଳ ଲାଲ ଆଖି, ନିଃଶ୍ୱାସ ପାଇଁ ପଲ୍ଲ ପଡ଼ ପାଟିରେ ଦଉଡ଼ି ଦଉଡ଼ି ଆସି ପହଂଚିଲା, ଗାୟକର ହାତରେ ବନ୍ଧା ହୋଇଥିବା ଦଉଡ଼ିର ହ'ମୁଣ୍ଡ ଧରି ଚୁପ୍‌ଚାପ ତାକୁ ନେଇ ଚାଲିଲା ସହରକୁ ।

ଏକାବେଳେକେ ସ୍ୱର୍ଗ ପଢ଼ ଦୁଃଖ ଆଉ ହତାଶାରେ ମୁଁ ଭୁଲି ଆସିଲି ସେଇ ପଢ଼ୁଆ ଗୁଡ଼ିକ, ସ୍ମୃତିରେ ମୋର ପ୍ରତିଧ୍ୱନିତ ହୋଇଉଠିଲା, ଶଇଗୃଡ଼ିକ ଡ଼ାମରା କାଉର କା' କା' କର୍କଶ ରାବ ଭଳି।

"ପଡ଼ୁ, ପଡ଼ୁ ଦୁଃଖରେ ପଡ଼ୁ, ଦୁର୍ଦ୍ଦଶାରେ ସଢ଼ୁରେ ଏଶଏଲ୍ ନଗରୀ।"

ମନରୁ ମୋର ଫିଙ୍ଗି ଦୂରକରି ପାରିଲି ନାହିଁ ସେହି କରୁଣ ଦୃଶ୍ୟ, ପୁଲିସ ଜଣକ ଧୀର ଭାବରେ ତରବର ନ ହୋଇ ଧୀରେ ସୁସ୍ଥେ ଦଉଡ଼ିଟି ବାହାର କରୁ-ଥିବାବେଳେ ଗମ୍ଭୀର ପୟଗମ୍ବର ମୂର୍ତ୍ତିଟି ଅତି ନମ୍ରରେ ତା'ର ବାଳବାଳୁଆ ଲାଲ୍ ହାତ ଦୁଇଟିକୁ ପିଠିପଟକୁ ନେଇ ଯାଉଛୁ ଭର୍ତ୍ତି କରି ଦେଉଛୁ କେଉଁଠି ଯେମିତି ଜୋରରେ, ସତେ ଯେମିତି ଏହି ଭାବଭଙ୍ଗୀର ପୁନରାବୃତ୍ତି କରୁଛୁ ସହସ୍ର ଥର ପାଇଁ।''

ପରେ ଜାଣି ପାରିଥିଲି ନିର୍ବାସିତ ହୋଇଥିଲେ ପୟଗମ୍ବର, ଆଉ ବେଶି କିଛି ଦିନ ପରେ ନୁହେଁ ଅଦୃଶ୍ୟ ହୋଇଯାଇଥିଲେ କ୍ଲେସଟଭ ଭଳି ବି। ଲାଭଜନକ ବିବାହରେ ଆବଦ୍ଧ ହୋଇ ଚାଲିଯାଇଥିଲେ ସେ ଗାଁଗହଳରେ ବାସ କରି ରହିବା ପାଇଁ, ସେଠି ଜୀବିକା ନିର୍ବାହ କରିବା ପାଇଁ ଖୋଲିଥିଲେ ଜାନ୍-ସୀଆଁ ଦୋକାନ।

ତା'ର ବିଦାୟ ପୂର୍ବରୁ କିନ୍ତୁ ମୋ ମାଲିକ, ମୋଠୁ ଅନେକ ଥର ଶୁଣିଲା-ପରେ ଜାନ୍-ସୀଆଁଲିଙ୍କର ଗୀତ ବୋଲି ଘେନ ପ୍ରଶଂସା ଦିନେ କରିଥିଲେ ମତେ।

"ନାଁ ମ, ନିଶ୍ଚେ ଯିବ ଖଟିକୁ, ଶୁଣିବ ତାଙ୍କୁ, ତା' ଗୀତବୋଲା।"

ପ୍ରକୃତରେ ଦିନେ ତାହା ହିଁ କରିଥିଲେ ସେ। ବସିଥିଲେ ଯାଇ ମୋ ସାମନାରେ ଟେବଲ ପାଖରେ, ବିସ୍ମୟ ଚକିତ ଦୃଷ୍ଟିରେ ଆଖି ଓସାରି, ଭୁରୁ ହାଲକ ଟେକା ହୋଇ ରହିଥିଲା କପାଳ ଉପରେ !

ଖଟିକୁ ଯିବା ବାଟରେ କିନ୍ତୁ ସେ ଚଡ଼େଇ ଚଡ଼େଇ ଲଗାଇଥାନ୍ତି ମୋ ସାଙ୍ଗରେ, ଏମିତି କି ଖଟିରେ ପଶି ସାରିଲା ପରେ ବି କୌତୁକ ଅଛା କରୁଥାନ୍ତି ମତେ, ଅନ୍ୟ ପୃଷ୍ଠପୋଷକମାନଙ୍କୁ ଆଉ ନିଶ୍ୱାସରୋଧୀ ବାସନାକୁ ଖଟିର। ଜାନ୍-ସୀଆଁଲି ଆରମ୍ଭ କରିଦେଇଥିଲେ ଯେତେ ଗୀତ ବୋଲା, ସୁର ଧରିଥିଲେ ଯେତେବେଳେ ହସିଥିଲେ ସେ—ମୋ ମାଲିକ ମୁରୁକେଇ ମୁରୁକେଇ ଘୃଣା ତାଚ୍ଛଲ୍ୟରେ ଭୁରୁଟେକା ନାକମୋଡ଼ା ରୀତିରେ ଆଉ ଗିଲାସରେ ଢାଳି ଲାଗିଥିଲେ ଦ୍ୱିଥର ନିଜ ପାଇଁ, କିନ୍ତୁ ହଠାତ ଏଭଳି ରୀତିଗତି ମଝିରେ ଚୁପ୍ ହୋଇଯାଇଥିଲେ ହଲଚଲ ନ ହୋଇ କହିଥିଲେ :

"ଏଁ ଏଁ ···କ ସଇତାନଟାରେ !"

ଥରକାଳ ସନ୍ତର୍ପଣରେ ଗିମିଡ ଥର ଥର ହାତରେ ଥୋଉଥିଲେ ବୋତଲ-ଟିକୁ ଟେବୁଲ ଉପରେ, ଶୁଣିବାକୁ ଲାଗିଥିଲେ ଗୀତ ।

ସତ କହୁଥିଲୁ ଠିକ୍ କହୁଥିଲୁ ସାଇ ।

ନିଃଶ୍ୱାସଟିଏ ପକାଇ କହୁଥିଲେ ସେ କ୍ଳେଶଚଭ ଗୀତ ଗାଇ ସାରିଲା ପରେ ପରେ "ଜାଣେ ସେ ଗାଇବା କ'ଣ, ଗାଇବାକୁ ହୁଏ କିମିତ, ଧୃତେଶ୍ୱକ, ଏମିତିକା ବ ଝାଲନାଲ କର ଗୁଡ଼ିଲା ଏଃ ।"

ଆଉ ଥରେ ଆରମ୍ଭ କରିଦେଲା ଗାଇବାକୁ ଜାନ-ସିଆଁଲ ମୁଣ୍ଡଟିକୁ ପଛକୁ ଛାଞ୍ଚାଡ଼ି ଦେଇ ତୋଳାଯୋଡ଼ିକୁ ଷ୍ଟିର ଅଚଞ୍ଚଳ ଭାବରେ ଲଖେଇ ଦେଇ ଛାତରେ :

ନିଃସଂଗିନୀ ବାଳା          ଗୁଲିଥିଲା ଏକା
ବାଟ କାଟି ବାଲିବନେ,
କେତେ ଧନୀ ଜନ          ନିଲସ୍ତ ତେଜି ସେ
ଆନ୍ଧା କ ଉଦାସ ମନେ !

"ହଁ, ସେ ଗାଇପାରେ" ଟୁପୁ ଟୁପୁ ହୋଇ କହି ହେଲେ ମାଲିକ ଅଳ୍ପ ଟିକିଏ ହସି ଦେଇ ମୁଣ୍ଡଟିକୁ ହଲେଇ ହଲେଇ ।

ବଂଶୀର ନିଃସ୍ୱନ ଭଳି ସୁ ମଧୁର ସ୍ୱରରେ ଗାଉଥାଏ କ୍ଳେସଚଭ :

"ସଜ ସଜ ପଡ଼େ          'ଅକାଲ ସୁରେ ତା
ବିଦେଶୀରେ କହେ ସୁହିଁ
ମୋ ଭଳି ଛେଉଣ୍ଡ          ନିଆଶ୍ରୀ ନାସ୍ୱରେ
କେହି କ ଲୋଡ଼ିଛୁ କାହିଁ ।

"ଅପୂର୍ବ, ଅପୂର୍ବ ଲୋକଟିଏ ।" ଲୁହ ଲୁହ ଚପା ଚପା ଗଳାରେ ଲାଲ ପଡ଼ିଥିବା ଆଖି ଦୁଇଟିକୁ ମିଟି ମିଟି କରି କହି ଉଠିଥିଲେ ପୁଣି ମାଲିକ ।

"ହେ ଭଗବାନ, ଅଦ୍ଭୁତ, ଅଦ୍ଭୁତ ଏ !"

ଲକ୍ଷ୍ୟ କରୁଥାଏ ମୁଁ ତାଙ୍କୁ, ହୃଦସ୍ପୃଠା ମୋର ଫାଟି ପଡ଼ୁଥାଏ ପୁଲକରେ ଠିକ୍ ଯେତେବେଳେ ପଣି ବିଷଣ୍ଣ ବିଷାଦମୟ କଥାଗୁଡ଼ିକ ଗୀତଟିର ବିଜୟ ଦର୍ପରେ ଉଠୁଥାଏ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଖଚିର, କୋଳାହଳ ଉପରେ ମୁହୂର୍ତ୍ତରୁ ମୁହୂର୍ତ୍ତ ଅଧିକରୁ ଅଧିକ ଶକ୍ତିଶାଳୀ, ଅଧିକ ପ୍ରବଳ ହୋଇ, ଅଧିକରୁ ଅଧିକ ମନୋରମ, ହୃଦୟମନକୁ ପ୍ଲାବିତ କରି ।

ଗାଁ ଆଁ ଟି ଯାକରେ      ଜଣେ କେହୁ ବୋଲି
ନାହିଁ ମୋ ଦୋସର ସାଥୀ,
ମୋ ଦୁଃଖେ ଥାଏ ମୁଁ      ଯୁବା ଯୁବତୀଏ
ଉଲ୍ଲାସେ ଉଠିଲେ ମାତି !
ଜଣେ ହେଲେ କେହୁ      ତରୁଣ ଆଖିରେ
ନୁହେଁ ରୂପସୀରେ ଗଣା,
ବେଶ ବାସ ବିନୁ      ରୂପ କି ଫୁଟେ ଲୋ
ଜନ-ମନ କରି ବଣା !
ବୁଢ଼ାଟିଏ ଅବା      ଆଦରିବ ମତେ
ବୁଢ଼ାଟି ସ୍ୱରଯାତ୍ରୀ !
ରାଜି ହେବି କି ମୁଁ      ତା' ସାଥେ ଜୀବନ
ଲୋତକେ କରିବି ଭରି !"

ଫକୋଟ କି ଲାଜ ନ ରଖି କାନ୍ଦିବାକୁ ଆରମ୍ଭ କରିଦେଇଥିଲେ ମାଲିକ—କେତେବେଳୁ ମୁଣ୍ଡଟି ନୁଆଁଇ ବସିଥାନ୍ତି ସେ, ସୁଁ ସୁଁ ଶବ୍ଦଟା କରି ଜୋରରେ ଅବାଧରେ ଝରି ପଡ଼ୁଥାଏ ଟୋପାକୁ ଟୋପା ଲୁହ ଆଣ୍ଠୁ ଉପରେ ତାଙ୍କର—ସେ ରୋକିବାକୁ ଚେଷ୍ଟା କରୁ ନଥାନ୍ତି ଆଦୌ ।

ତୃତୀୟ ଗୀତଟି ବୋଲି ହେଲା ପରେ ଏମିତି ଅଭିଭୂତ ହୃଦୟରେ କହିଥିଲେ ସେ ।

"ଆଉ, ଆଉ ଅଧିକ ସମୟ ବସି ପାରିବି ନାହିଁ ଏଠି, ନା, ପବନ ନାହିଁ । ଛିଃ କି କଦର୍ଯ୍ୟ ଗନ୍ଧ ଏଠି, ଆ ଆ ଯିବା, ଘରକୁ ଯିବା ଆ ଆ ।"

କିନ୍ତୁ, ରାସ୍ତା ଉପରକୁ ଆସିଲା ମାତ୍ରେ ବଦଳି ଯାଉଥିଲା ତାଙ୍କ ମତିଗତି ।

"ଯାଉ, ସଇତାନ ମୁହଁରେ ଯାଉସବୁ ପେଶ୍‌କଶ୍ । ଚାଲ ଯିବା ହୋଟେଲକୁ ; ଖିଆଯାଉ ଆଗ ସେଠି କିଛି, ମନ ହେଉନି ଘରକୁ ଫେରିବାଲାଗି ଏଇକ୍ଷଣି ଆ ଆ ।

ଭଡ଼ା ଘେନି ଭଡ଼ା ଓଟର ନ ଲଗାଇ, ଝଗଡ଼ା ନ କରି ସେ ଉଠି ବସିଲେ ଗୋଟିଏ ସ୍ଲେ (ବରଫରେ ଟଣା) ଗାଡ଼ି ଉପରେ, ନୀରବରେ ବସି ରହିଲେ ଗାଡ଼ିଟି ହୋଟେଲରେ ପହଂଚିବା ପର୍ଯ୍ୟନ୍ତ—ହୋଟେଲରେ ଯାଇ ବସିଲେ ଗୋଟିଏ କଣରେ, ଟେବୁଲ ପାଖରେ, ଫଗେ ଫଗେ କହିବାକୁ ଆରମ୍ଭ କରିଦେଲେ ଥିରି ଥିରି ମୃଦୁସ୍ୱରରେ, ଗମ୍ଭୀର କେଉଁ ଆଘାତରେ ସଜାଗ ହୋଇ ଉଠି, ଚାରିଆଡ଼କୁ ପ୍ରାୟ ଘନ ଘନ ଦୃଷ୍ଟି ପକେଇ ପକେଇ--

"ସେ ଭୂତାଛେଲଟାରେ, ପବନ ଟାଣିନେଲା ଯିମିତ ପ୍ରାଣଟା ମୋଠାରୁ—ପ୍ରାଣଟା ନେଇଗଲା ଯେମିତ—କେବେ ଘଟି ନଥିବା ଏମିତ ଗୋଟାଏ କଦର୍ଯ୍ୟ ଭାବନାରେ ପକାଇଦେଲା ମୋତେ, ଆଣିଦେଲା ସେମିତ ଗୋଟାଏ ମଡ଼ଗଡ଼, ଶୁଣ, ତୁ ତ ପଢ଼ୁ ବହୁତ, ଭାରି ବହୁତ, କମିତ କମିତ ଭଲ ବୁଝିବୁ ବୁଝେଇବୁ ସ୍ୱାକୁ ? ହେଇ, ଏଠି ମୁଁ ରହୁଛୁ, ଜୀଇଁ ରହୁଛୁ, ଚାଲୁଛୁ, ବର୍ଷ ପରେ ବର୍ଷ, ଦୀର୍ଘ ଗୁଳଣବର୍ଷ ପଛରେ ପଡ଼ିଗଲାଣି, ଚଳୁଛୁ, ଭାରିଯାଟିଏ ଆଉ ମୋ ଛୁଆପିଲାଙ୍କୁ ଧରି, ଅଥଚ ଜଣେ କିଏ କେଉଁଠି ନାହିଁ ଯାହା ସାଙ୍ଗରେ ମନଖୋଲା କଥାବାର୍ତ୍ତା କରିବ ଅରେ ଅଧେ ? ଏମିତ ମୁହୂର୍ତ୍ତ ଆସେ, ଯେତେବେଳେ ଭାବେ କାହା ଆଗରେ ହୃଦସ୍ଥଟାକୁ ଅଜାଡ଼ି ଦିଅନ୍ତି କି ? କହନ୍ତି କି ଯେତେ ଯାହା କହିବାକୁ ଅଛି ମୋର ? ନାଁ, କେହି ନାହିଁ କୁଆଡ଼େ କହିବ ଯାହାକୁ । ଯଦି କହି ବସେ ତାକୁ, ଭାରିଯାଟିକୁ; କାନରେ ପଶିବ ନାହିଁ ତାର, ·ମନରେ ପଶିବ ନାହିଁ ତାର ? ତା'ର ବା କଣ ଦରକାର ? ତାର ତ ପିଲାଏ ଅଛନ୍ତି, ଘରଦ୍ୱାର ଅଛି, ଜଞ୍ଜାଳ ଅଛି । ମୋ ଆତ୍ମାର ବାହାରେ ସେମାନେ । ତମର ଭାରିଯାଟି ହେଉଛି ତମର ସାଥୀ, ତମର ସଙ୍ଗିନୀ ପହିଲା ମିଳନ୍ତି ଜନ୍ମ ହେବାଯାଏ···ଏଇ ଏମିତ ସବୁ । ଅଃ, ସାଧାରଣ ଭାବରେ ମୋଟ ଉପରେ କହିଲେ, ମୋ ଭାରିଯାଟି, ଏଃ, ତୁ ତ ଦେଖିଛୁ, ଦେଖି ପାରିବୁ ନାଜେ ନାଜେ—ତା' ସାଙ୍ଗରେ ଥଟ୍ଟା ତାମସା, କି କୌତୁକ ଏଃ, ମାଉଁସ ମେଞ୍ଚାଏ. ମେଞ୍ଚାଏ ମାଉଁସ ସେ ! ଗୁଡ଼୍ ଗୁଡ଼୍, ଭାଇ ସେକଥା, ଆଃରେ ଭାଇ ଆଃ, କି, ଯନ୍ତ୍ରଣା ଏ ହୃଦସ୍ଥର ଏଃ ! କି ମୁଣ୍ଡବ୍ୟଥା ଏଃ !"

କମ୍ପ ଅ.ସିଲ ଭଲ ତୁହାକୁ ତୃହା ଥରି ଥରି ସେ ପିଇ ଶେଷ କରିଦେଲେ ହେମାଳିଆ ପିତା ବିୟର, ନିଶ୍ଚଳ ହୋଇ ବସିରହିଲେ, ଲମ୍ବାବାଳ କେରାକୁ କେରା ଖେଳେଇ ଖେଳେଇ ଖସ୍ଖସେଇ, ବସି ରହିଲେ ପୁଣି ଆରମ୍ଭ କରିବାଯାଏ କହିବାକୁ :

"ମୋଟ ଉପରେ ବୁଝିଲୁ ଭାଇ, ଜାରଜ, ଜାରଜ ହେଉଛନ୍ତି ଲୋକଗୁଡ଼ାକ, ସମସ୍ତ ଦେଖେ ମୁଁ, ମତେ ଭଲ ଲାଗେ ଗପ କରିବାକୁ ମ୍ୟୁଝିକ୍ (ଚାଷୀ) ଗୁଡ଼ାକ ସାଙ୍ଗରେ ଏଣୁ ଏଣୁ ଏମିତ, ଭଲକରି ବୁଝେଁ ମୁଁ, ଭଲ କରି ଜାଣେ କି ଖରାପ ଗତି ଘୂରିଆଡ଼େ, କମିତ ପଡ଼ିସଢ଼ି ରହିଛନ୍ତି ସେମାନେ, ସତ, ସତ ଭାଇ, ଗ୍ଲେର, ଗ୍ଲେର ସେଗୁଡ଼ାକ । ତୁ କ'ଣ ଭାବୁଛୁ ତୋ କଥା ଛୁଉଁଛି ତାଙ୍କ ମନକୁ ?

ନାଁ ଟିକିଏ ହେଲେ ନୁହେଁ, ଅଣୁମାତ୍ରାରେ ହେଲେ କାହିଁକି ହୁଅନ୍ତା ! ତମ ଏଇ ପିଓନ ଆଉ ଓସିପ୍ ଏକଥା ଦେଖ, ଅସଲ ସାଙ୍ଗ ଦୁର୍ଗନ୍ଧିଆ ଦୁ'ଟା, ଜାଣ, ସେମାନେ ଆସି ମତେ ସବୁ କହନ୍ତି—ଯାହା ତୁ କହୁଥାଉ, ବୁଝାଇ ଥାଉ ସେମାନଙ୍କୁ, ମୋ ସମ୍ପର୍କରେ ହେଲେ ବି, ଆରେ କେମିତ ଭଲ ଲାଗିବ ସେଏ କାହାକୁ, ଏମିତ ତୋତେ ଭଲ ଲାଗିବ ଭଲା !"

ଏମିତ ସ୍ତମ୍ଭୀଭୂତ ହୋଇ ଯାଇଥିଲି ମୁଁ, ଉତ୍ତର ଦେଇ ପାରିଲି ନାହିଁ ।

'ହେଉ, ବେଶ୍ କୁହ', ଅଳପ ହସି ପୁଣି କହିଲେ ମାଲିକ । "ବଢ଼ିଆ, ଧାରଣା, ବଢ଼ିଆ କଳ୍ପନାଟା ତୋର ସେଇ ପାରସ୍ୟକୁ ଯିବା ପ୍ରସ୍ତାବଟା, ଅନ୍ତତଃ ପକ୍ଷେ ତମେ ସେଠି ବୁଝିପାରିବ ନାହିଁ ଲୋକେ କ'ଣ କହନ୍ତି, କ'ଣ ଗଥାବାର୍ତ୍ତା ହୁଅନ୍ତି ସେଠି ବିଦେଶୀ ଭାଷାରେ । କିନ୍ତୁ ତମ ନିଜ ଭାଷାରେ ଧୂର୍ତ୍ତଙ୍କ ! କିଛି ନୁହେଁ, ଗୁଛା, ସ୍ୱାଜମାନିଆ ସବୁ, ଆସନା ସବୁ !"

"ଓପିସ୍ କ'ଣ ତମକୁ କହେ ? ଯାହାସବୁ ମୁଁ କହେ ତାକୁ ?" ପଚାରିଲି ମୁଁ ।

"ହଁ, ନିଶ୍ଚେ, କଣ ଆଶ୍ଚର୍ଯ୍ୟ ହୋଇଯାଉଛୁ ? ଆଉ କାହା ଅପେକ୍ଷା ମୋତେ ହିଁ କହେ, ମୋ ପାଖରେ ଗାଇ ହୁଏ ବେଶି, ପଚନଟାଏ, ହଣ୍ଡୁହଣ୍ଡିଆଟା ସେ—ଧୂର୍ତ୍ତି, କୋକଶିଆଳଟାରେ ଭାଇ ସେ, ନାଁ ପେଣ୍ଟକଭ କଥା ଖାଲି କଥା, ଲୁଏଁନା ଲୋକଙ୍କୁ ଲୁଏଁନା ତାଙ୍କ ମନକୁ ! ସତ ? ସତ କଣ ? କେଉଁ ନରକରେ ପଡ଼ି ରହେଁ ଜାଣିବାକୁ, ଶୁଣିବାକୁ ? ଶରତକାଳରେ ତୁଷାର ପଡ଼ ପଡ଼େ ଖସ୍ଖସ୍ ପଡ଼େ କାଦୁଅ ଉପରେ—ତରଳି ଯାଏ ସାଙ୍ଗେ ସାଙ୍ଗେ, କିଛି ରହେ ନାହିଁ ତାର, ରହିଯାଏ କେବଳ ଆଉ ଅଧିକା କିଛି କାଦୁଅ ଆଉ ଅଧିକ କିଛି ପଙ୍କ । ଭଲ ହେବ ଏଣିକି ପାଟି ନଫିଟାଉ ଯଦି, କିଛି ନ କହୁ କାହାକୁ, ଚୁପ ରହୁ !"

ପିଇବାକୁ ଲାଗିଲେ, ଗିଲାସ ପରେ ଗିଲାସ ବିୟର, କହିଚାଲିଲେ ଆହୁରି ବେଗରେ ଚଞ୍ଚଳ ଚଞ୍ଚଳ, ଆହୁରି ଅଧିକ କ୍ରୋଧରେ, ଅଧିକ ତୀବ୍ରତାରେ କ୍ଷଣିକ ପାଇଁ ମାତାଲ ନ ହୋଇ ଟେକା ନ ହରାଇ କହିବାକୁ ଲାଗିଲେ :

"କଥା ଅଛି, ପ୍ରବାଦ ଅଛି ସୁନାଭଳି ଖାଣ୍ଟି ନୀରବତା'—ଆଉ ମନେ ହେଉଛି ଆଜି ସୁନାର ମାନ ହେଉଛି କଥା । ଏଃ, ରେ ଭାଇ ଜୀବନ ବଡ଼ କରୁଣ, ବଡ଼ ବିଷାଦମୟ, ନିଃସଙ୍ଗ ! ସତରେ ଯାହା ଗାଉଥିଲି :

ଗାଆଁଟା ଯାକରେ ଜଣେ ହେଲେ କେହି ନାହିଁ ମୋ ଦୋସର ସାଥୀ—

ସ୍ୱଣଆଡ଼କୁ ଆଖି ଦେଇ ସ୍ୱରଟିକୁ ନୁଆଁଇଦେଲେ ସେ ।

"ବେଶିଦିନର ଘଟଣାର ନୁହେଁ, ମୁଁ ପ୍ରାୟ ଭେଟିଥିଲି କହିଲେ ତଳେ, ହାବୁଡ଼ି ଯାଇଥିଲି ମୋ ମନଲାଖି, ମୋର ଚିନ୍ତା ଚେତନାର, ଭାବ ଭାବନାର ଜଣକୁ ରମଣୀଟିଏ ଏଠି, ବିଧବା, —ମାନେ ତାର ସ୍ୱାମୀକୁ ଦଣ୍ଡ ହୋଇଥାଏ ନିର୍ବାସନ ସାଇବେରିଆକୁ—ଜାଲନୋଟ, ଜାଲମୁଦ୍ରା ତିଆରି କରୁଥିଲା ବୋଲି ସେ, ସେଇ ଅପରାଧରେ, ଏବେ ବି ଅଛି ଏଠି ଜେଲରେ, ମୋର ତ ସମ୍ପର୍କ ଜମିଗଲା ତା' ସାଥୀରେ ସେଇ ରମଣୀଟି ସାଥୀରେ, ଛଦାମଟିଏ ନ ଥାଏ କପେକଟିଏ ବୋଲି

ନ ଥାଏ ତା ପାଖରେ, ତେଣୁ ସେ ସ୍ଥିର କରିଥାଏ, ବୁଝିଲ ତ ଆମକୁ ପରସ୍ପର ସହିତ ପରିଚୟ କରାଇଦେଲା ଘଟଣାକ୍ରମେ, ମଧ୍ୟସ୍ଥି ଜଣେ ହୋଇ ! ଥରେ ଆଗ ଅନାଇଲି ତାକୁ, କେଡ଼େ କୋମଳାଙ୍ଗୀ, କେଡ଼େ ସରସ, ସୁକୁମାରୀ, ସୁଷମାମୟୀ ସେ ସତେ ! କହନ୍ତି, ସୌନ୍ଦର୍ଯ୍ୟ ଯାହାଙ୍କୁ କହନ୍ତି, କହନ୍ତି ଶୋଭା ସୁଷମା ବୋଲି । ସାକ୍ଷାତ ତନ୍ୱୀ କିଶୋରୀ, ଏମିତି ରୂପସୀ ସେ ! ଏଣୁ ଆରମ୍ଭ କରିଦେଲି ଦେଖିବାକୁ ତାକୁ, ଥରେ ଦି'ଥର, ତାପରେ କହିଲି ତାକୁ—ଏ କେମିତି କଥା, ତମ ଗିରସ୍ତ ଯାଇ ଜେଲରେ ତମେ ତ ସ୍କୁଲ୍ ନ ସିଧାସରଳ ସଙ୍କୀର୍ଣ୍ଣ ବାଟରେ, ତମେ କାହିଁକି ଯିବ ଯେ ତମ ଗିରସ୍ତ ସାଙ୍ଗରେ ସାଇଦେଇଥା, ବୁଝିଲୁ ! ସେ ଭାବୁଥିଲା ଯୋଜନା କରୁଥିଲା ଗିରସ୍ତ ପଛେ ପଛେ ଚାଲିବ ନିର୍ବାସନକୁ—କହିଲା ସେ ମତେ କହିଲା, ଯାହା ଇଚ୍ଛା ତା ହୁଅନ୍ତୁ ସେ, ମୋ ଗିରସ୍ତ ମୋ ପାଇଁ ଯଥେଷ୍ଟ, ଯଥେଷ୍ଟ ଭଲ ସେ, କାରଣ ଭଲପାଏ ମୁଁ ତାଙ୍କୁ—ଭଲପାଏ, ହୁଏତ ହୋଇପାରେ, ମୋର ସକାଶେ ଭୁଲ କାମଟାଏ ଦୋଷଟାଏ କରିବସିଲେ ସେ, ଆଉ ତାଙ୍କର ପାଇଁ ହିଁ ଯାହା ମୁଁ କରୁଛୁ ତୁମ ସାଥୀରେ କହିଲା ସେ । ଦରକାର ତାଙ୍କର ପଇସା କଡ଼ି, ଟଙ୍କା କଡ଼ି । ଭଦ୍ର ସେ, ସୁନ୍ଦର, ସୁରୁଚିର ସହିତ ଚଳିବାକୁ ଅଭ୍ୟସ୍ତ । ଏକୁଟିଆ ହୋଇଥାନ୍ତି ଯଦି ରହିଥାନ୍ତି, ଚଳିଥାନ୍ତି ସଚ୍ଚୋଟରେ ! ସତରେ ଭଲ ମଣିଷଟିଏ ତମେ, ତମ ପ୍ରତି ମୋର ଗୋଟାଏ କମିତି ସ୍ନେହମମତା ଆସିଗଲାଣି କହିଲା ସେ । କିନ୍ତୁ ଦେଖ, ଏକଥା ଉଠେଇବନି ମୋ ଆଗରେ—କହିବନି ଏ ବିଷୟରେ····ଛୁଡ୍ ନରକକୁ (ଯାହାନ୍ନାମକୁ) ଯାଉ ସବୁ । ଦେଇ ପକାଇଲି ତାକୁ ସବୁ ମୋ ପାଖରେ ଯାହା ଥିଲା—ଅଶୀଟଙ୍କା (ରୁବଲ) ପ୍ରାୟ ହେବ ଏବଂ କହିଲି ତାଙ୍କୁ ମାଫ୍‌କର ମୋତେ, ଭୁଲିଯା, ଆଉ ତମକୁ ଅନେଇ ପାରି ନାହିଁ ମୁଁ, ନା ଅନାଇ ପାରିବ ନାହିଁ—ତେଣିକି ଚାଲି ଆସିଲି ଏଇ ସେମିତି····।"

ଟିକଏନାକୁ ଅମିଗଲେ ସେ, ଆଉ ସେ ଅମିଲା ଭିତରେ ମାତାଲ ହୋଇ ଉଠିଲେ ଦେଖିଲି, ସଙ୍ଗେ ସଙ୍ଗେ ଲେଟିପଡ଼ିବେ, ଭାଜିପଡ଼ିବେ ଯେମିତି, ଥର ଥର କହିଲେ ସେ ଚୁପ୍‌ଚାପ୍ ହୋଇ :

"ତା ସାଙ୍ଗରେ ମିଶିଛୁ ଛଅ ଥର, ଥିଲି ଛଅ ଥର ତା ସଙ୍ଗରେ—କଳ୍ପନା କରି ପାରିବୁ ନାହିଁ, କଣ ଲାଗୁଥିଲା ମତେ, କ'ଣ ସେ ଅନୁଭୂତି ! ମନେ ହେଉଛୁ ଅନୁମାନ, ଆଉ ଛଅ ଥର ଖଣ୍ଡେ ଯାଇଥିବ ତା' ଘରକୁ—କିନ୍ତୁ ସାହାସ ପାଇନି ଭିତରକୁ ପଶିବା ପାଇଁ, ନା ସାହସୀ କରିପାରିନି ନିଜକୁ ମୁଁ, ଏବେ, ଏବେ ସେ ଚାଲିଗଲାଣି ଏଠୁ · ।"

ହାତ ଦୁଇଟି ରଖିଲେ ସେ ଟେବୁଲ ଉପରେ ଏବଂ ବାଜା ବଜେଇବାକୁ ଆରମ୍ଭ କରିଦେଲେ ଆଙ୍ଗୁଠିରେ ।

'ଭଗବାନ କରନ୍ତୁ, ଆଶା ମୋର ଭେଟ ନ ହେଉ ଆଉ ତା ସାଥୀରେ ପୁଣି ।'' ଖସ୍‌ଖସ୍ ସ୍ୱରରେ ଫୁସ୍‌ଫୁସେଇ କହିଲେ ସେ । ଯଦି ହୁଏ ଭଗବାନ ନ କରନ୍ତୁ, ସବୁ ସରିଯିବ, ଶେଷ ହୋଇଯିବ—ଶେଷ କଥା ହୋଇଯିବ ସେଇଟି ସବୁ କଥାର, ଆ ଆରେ ଘରକୁ, ଘରକୁ ଫେରିବା, ଆ ଆ !''

ବାହାରି ଆସିଲୁ ଆମେ, ଟଳଟଳ ହୋଇ ଭୁଣ୍ଡୁରୁ ଭୁଣ୍ଡୁର ହେଉଥାନ୍ତି ସେ :

''ଏବେ, ଦେଖ, ଏବେ ବୃଷ୍ଟିରେ ଭାଇ···ଏ···ବେ—''

ସେ ଯାହାସବୁ କହିଗଲେ, ଆଶ୍ଚର୍ଯ୍ୟ ହେଲି ନାହିଁ ସେଥିରେ, କିଛି ଦିନ ପୂର୍ବରୁ ବାରି ପାରିଥିଲି କ'ଣ ଗୋଟାଏ ଅସ୍ୱାଭାବିକ କିଛି ଘଟୁଛି ତାଙ୍କର, ଦେଖା-ଯାଉଛି ତାଙ୍କଠି ।''

କିନ୍ତୁ ମନଟା ଦବିଗଲା ମୋର, ହତାଶିଆ ଲାଗିଲା ମୋତେ ଜୀବନ ସମ୍ପର୍କରେ ତାଙ୍କର ମତାମତ ଶୁଣି, ବିଶେଷରେ ଓସିପ୍ ସମ୍ପର୍କରେ ଯାହାସବୁ କହିଗଲେ ମତେ, ସେଥିରେ ।

## କୋଡ଼ିଏ

ତିନୋଟି ଗ୍ରୀଷ୍ମକାଳ ବିତିଗଲା ମୋର ଓଭରସିଅର ଭାବେ ସୁକରିକରି ଖଟିବାରେ ସେଇ 'ମୃତ' ନଗରୀଟାରେ, ଜନଶୂନ୍ୟ କୋଠାଘରଗୁଡ଼ିକୁ ପ୍ରତି ଶରତ-ହେମନ୍ତରେ ଶ୍ରମିକମାନେ ଭାଙ୍ଗି ଖସାଇ ଦେଉଥାନ୍ତି ଅଚଳିଆ ପଥର ତିଆ ଦୋକାନଗୁଡ଼ିକୁ, ଟେକୁଥାନ୍ତି ପୁଣି ବସନ୍ତରେ—ଶ୍ରମିକମାନଙ୍କ ଏହି କାମକୁ ଲକ୍ଷ୍ୟକରି, ସେମାନଙ୍କ ଉପରେ ଦୃଷ୍ଟି ରଖିବାରେ—କାହିଁ କୁଆଡ଼େ କଟିଗଲେ ତିନୋଟି ଗ୍ରୀଷ୍ମକାଳ ।

ମାଲିକ ନିର୍ଦ୍ଧିତ କରି ଦେଇଥାନ୍ତି ଯେଉଁ ପାଞ୍ଚ ରୁବଲ ଦେଉଥାନ୍ତି ସେ ମତେ, ମୁଁ ଯେମିତି ଠିକ୍ ରୋଜଗାର କରେ ସେତକ । ଯଦି କୌଣସି ଗୋଟାଏ ଦୋକାନ ଘରେ ନୂଆ ଚଟାଣ ଗଢ଼ାଯିବା ପ୍ରଶ୍ନ ଉଠୁଥାଏ, ତେବେ ମତେ ଆଗ ଦୁଇଫୁଟ ଖୋଳି ଉଠାଇ ବାହାର କରିବାକୁ ହେଉଥାଏ ମାଟି । ସାଧାରଣ ଅଦକ୍ଷ ଶ୍ରମିକମାନେ ପ୍ରତ୍ୟେକେ ପାଉଥାନ୍ତି ସେଭଳି କାମ ପାଇଁ ଗୋଟିଏ ଲେଖାଏ ରୁବଲ, ମତେ କିନ୍ତୁ ମିଳୁ ନଥାଏ କିଛି । କିନ୍ତୁ ସେଭଳି କାମରେ ଲାଗି ପଡ଼ିଥିବା ବେଳେ ମୁଁ ଆଖିରଖି ପାରୁ ନ ଥାଏ ବଢ଼େଇମାନଙ୍କ ଉପରେ, ସେମାନେ ସୁଯୋଗ

ପାଇ ସେଭଳି ପରସ୍ପର ଘର ଦ୍ୱାରକବାଟ ଓ ଝରକାରୁ କାଢ଼ି ନେଉଥାନ୍ତି ତାଳ କଳଶୀ ପ୍ରଭୃତି ଆଉ ଚାଲଉଥାନ୍ତି ଗ୍ଲେଟ ଗ୍ଲେଟ ଗ୍ଲେର ।

ଶ୍ରମିକମାନେ ଆଉ କଣ୍ଟ୍ରାକ୍ଟର ଉଭୟେ ସବୁପ୍ରକାର ଉପାୟରେ ଚେଷ୍ଟା କରୁଥାନ୍ତି ମତେ ଠକିବା ପାଇଁ. ପ୍ରାୟ ସାମନାରେ ଖୋଲାଖୋଲି ଚୋର କରୁଥାନ୍ତି । ସତେ ଯେପରି ଅତି ଜରୁରୀ ଆବଶ୍ୟକତା ପଡ଼ିଥାଏ ତାଙ୍କର । ସବୁ ନ ଥାନ୍ତି କେବେହେଲେ ସେମାନେ, ଯେତେବେଳେ ଧରାପଡ଼ି ଯାଉଥାନ୍ତି ମୋ ଆଗରେ । କାଂରୁ କହୁଥାନ୍ତି ଆଶ୍ଚର୍ଯ୍ୟ ହୋଇ :

"ପାଞ୍ଚଟା ରୁବଲ ପାଇଁ ସେହି ଅନ୍ତଦୁହାଁ ହୋଇ ଲାଗି ରହିଛୁ ରୁ, ଯେମିତି ପାଞ୍ଚ ଲୁହେଁ କୋଡ଼ିଏ ରୁବଲ ସେତକ, ତତେ ଦେଖିଲେଇ କିଏ ନ ହସିବ ଯେ—"

ଦେଖେଇ ଦେଇଥାଏ ମାଲିକଙ୍କୁ ମୋତେ ନ ଦେଇ—ଗୋଟିଏ ମାତ୍ର ରୁବଲ ଖର୍ଚ୍ଚ ନ କରି ବ୍ୟସ୍ତ କମତି କରିବ, ସେ ତ୍ରୁଟିରେ ପଡ଼ୁଥାନ୍ତି ବହୁତ ବେଶି. କାଂରୁ ଆଖିପତା ପକେଇ ଥରେ ଦ'ଥର ସେ କେବଳ କହୁଥାନ୍ତି :

"ମୋତେ ଆଉ ବୋକା ବନେଇବା ପାଇଁ ଚେଷ୍ଟା କର ନା ।"

ଅନୁଭବ କଲି ମୁଁ ଚୋରମାନଙ୍କ ସହିତ ମୋର ସଲାସୂତର ସହଯୋଗ ଥାଏ ବୋଲି ସନ୍ଦେହ କରୁଥାନ୍ତି ସେ । ସନ୍ଦେହ କରୁଥାନ୍ତି ମୋତେ ଅପମାନଥା ନ ଦେଇ ବି । ତାଙ୍କର ସେଭଳି କାମ ହେତୁ ତାଙ୍କ ପ୍ରତି ଘୃଣା ଆସିଯାଉଥାଏ ମୋର ଏଭଳି ଗୁଲିଥାଏ ବ୍ୟବସ୍ଥାପନ, କାର୍ଯ୍ୟକଳାପ । ପ୍ରତ୍ୟେକ ତ ଚୋର କରୁଥାନ୍ତି ଆଉ ମାଲିକଙ୍କ ମନରେ ଟିକିଏ ହେଲେ ଦୟା ଜ କାରୁଣ ନ ଥାଏ ଅନ୍ୟ ସମ୍ପତ୍ତିବାଡ଼ ଆଣି ନିଜ ସମ୍ପତ୍ତିରେ ମିଶାଇ ଦେବା ବାଗରେ ।

ମେଳା ସରିଗଲାପରେ ସେ ଦୋକାନଗୁଡ଼ିକ ବୁଲି ଦେଖୁଥାନ୍ତି, କେଉଁଥିରେ କଭଳି ମରାମତି ଲୋଡ଼ାଥାଏ । ଅନେକ ସମୟରେ ହାବୁଡ଼ି ଯାଉଥାନ୍ତି, ତାଙ୍କ ଆଖିରେ ପଡ଼ିଥାଏ କିଏ ଭୁଲିରେ ଛାଡ଼ି ଯାଇଥିବା ଉଠାଚୁଲି (ମାସଖୋର), ଥାଳ ଥାଳିଆ, ଛୁରୀ କରୁଣି ଏମିତିକା କେବେକେବେ ପେଡ଼ିପେଟରା ବାକ୍ସ ସିନ୍ଦୁକ, ବଡ଼ ବଡ଼ କାଠ ତଡ଼ା ଭର୍ତ୍ତି ଜିନିଷପତ୍ର. ମୁରୁକେଇ ହସି କହୁଥାନ୍ତି ସେ :

'ଏଗୁଡ଼ାକର ତାଲିକା କର, ଏବଂ ଏଗୁଡ଼ିକ ରଖିଦିଅ ନେଇ ଭଣ୍ଡାର ଘରେ ।" ଭଣ୍ଡାରଘରୁ କେତୋଟି ନିର୍ଦ୍ଦିଷ୍ଟ ପ୍ରକାର ଜିନିଷପତ୍ର ସେ ପଠେଇ ପହଚେଇ ଦେଉଥାନ୍ତି ନିଜ ଘରେ, କହୁଥାନ୍ତି ମତେ ସେହି ଜିନିଷଗୁଡ଼ିକୁ ବାଦଦେଇ ଅବଶିଷ୍ଟ ଜିନିଷପତ୍ରର ସାନ ତାଲିକା କରିବା ପାଇଁ ।

ଧନ ସମ୍ପତ୍ତି ପ୍ରତି ମୋର ମୋହ ନ ଥାଏ, ମମତା ନ ଥାଏ ଆଦୌ, ସ୍ପୃହା ନ ଥାଏ କେବେ କିଛି ଅଳ୍ପଦରରେ ଆଣି ଅଧିକାର କରିବାକୁ ଏମିତିକି ବହିଗୁଡ଼ିକ ଥାଏ ଗୋଟାଏ ବୋଝପଣ ମତେ । ସମ୍ପତ୍ତି ବୋଲି ମୋର ଥାଏ ବେଦାସ୍ତରଙ୍କ ଟେଣ୍ଟେ ଶ୍ରେଷ୍ଠ ବହି, ଗୀତଗୁଡ଼ିକ ହେନଙ୍କର । ସ୍ପୃହା ଥିଲି ପୁଣି କନଙ୍କ ବହି କିଣିବା ପାଇଁ—କିନ୍ତୁ ସଦାଗରଙ୍କର ଏକମାତ୍ର ପୁରୁଣା ବହି ଦୋକାନି କଟକଣିଟିଆ, ଚଢ଼ଚଢ଼ିଆ ବୁଢ଼ାଟା ତା'ପାଇଁ ଦାମ ହାଙ୍କୁଥାଏ କାହିଁରେ କଣ । ମୋ ମାଲିକଙ୍କ ଘରେ ଖୁନ୍ଦାଖୁନ୍ଦି ହୋଇ ରହିଥିବା ଅସବାବପତ୍ର, କପଡ଼ାକମ୍ବଳ, ଆଇନା ଫାଇନା ଓ ଅନ୍ୟାନ୍ୟ ଜିନିଷପତ୍ରଗୁଡ଼ାକୁ ଦେଖିଲେ ଘୃଣା ହେଉଥାଏ ମୋର—ସେଗୁଡ଼ାକର ଅଢ଼ଙ୍ଗିଆ ବିରାଟ ବିରାଟ ଆକାର ପ୍ରକାର ଦେଖିଲେ, ଆଉ ସେଥିରେ ସବୁ କଲଙ୍କି ଆଉ ପୁଟର ବାସନା ନାକରେ ବାଜିଲେ ବିରକ୍ତ ଆସୁଥାଏ, ମନଟା କିମିତି ଶୀତେଇ ଉଠୁଥାଏ । ସାଧାରଣତଃ ଭଲ ଲାଗୁ ନଥାଏ ମୋତେ ମାଲିକର ଘର ବଖରାଗୁଡ଼ିକ, ଦିଶୁଥାଏ ମତେ ଟ୍ରଙ୍କସବୁ ଭର୍ତ୍ତି ହୋଇ ରହିଥାଏ ଅସନା ମସନା ଚିରାପୋଷରା ଜିନିଷରେ, ସବୁଠୁଁ ବେଶି ଘୃଣ୍ୟ ଲାଗୁଥାଏ ମାଲିକ ଯେତେବେଳେ ଗାଡ଼ି ଗାଡ଼ି ଅନ୍ୟମାନଙ୍କର ଜିନିଷପତ୍ର ବୋହି ଆଣୁଥାନ୍ତି, ଘରଭର୍ତ୍ତି ଅଧିକା ଅଦରକାରି ଜିନିଷରେ ମିଶାଇ ଦେଉଥାନ୍ତି । ରାଣୀ ମାର୍ଗଟର ଘରେ ବି ଖୁନ୍ଦି ହୋଇଥିଲା ଅସବାବପତ୍ର, କିନ୍ତୁ ଅନ୍ତତଃପକ୍ଷେ ସେଗୁଡ଼ିକ ଦିଶୁଥିଲା ସୁନ୍ଦର, ରୁଚିକର, ରୁଚିର ଚିହ୍ନ ଥିଲା ସେଥିରେ ।

ସମୁଦାୟ ଜୀବନଟା ମତେ ଲାଗୁଥାଏ ଅସଂଲଗ୍ନ, ଅସଙ୍ଗତ, ଗୁଡ଼ାଏ ସେଥିରେ ସ୍ପଷ୍ଟ ଭାବରେ ଏକାବେଳକେ ଅର୍ଥହୀନ, ମନେ ହେଉଥାଏ, ହେଇ ଆମେ ଆମେ ଏଠି ମରାମତି କରୁଛୁ ଦୋକାନଗୁଡ଼ିକୁ, ବସନ୍ତର ବନ୍ୟାରେ ବୁଡ଼ିଯିବା ପାଇଁ—ବନ୍ୟାରେ ଘରର ଚଟାଣଗୁଡ଼ିକ ଫାଟି ଫୁଲି ଉଠିବା ପାଇଁ, ଦ୍ୱାରସବୁ ଝୁଲି ଓହଳି ପଡ଼ିବା ପାଇଁ । ବନ୍ୟା ଘୁଞ୍ଚିଗଲେ ପରେ ଦେଖାଯାଉଛି ସଢ଼ିଯାଉଛି କଡ଼ି କାଠ ସବୁ । ବର୍ଷ ପରେ ବର୍ଷ, ଯୁଗଯୁଗ ଧରି ମେଳାପଡ଼ିଆ ବୁଡ଼ିଯାଉଥାଏ ବଢ଼ିରେ ସଙ୍ଗିରୁଜ ନଷ୍ଟ ହୋଇ ଯାଉଥାଏ, ତା'ଫଳରେ କୋଠାଘରଗୁଡ଼ିକ, ରାସ୍ତାଘାଟ ସବୁ ସେହି ବର୍ଷକିଆ ବଢ଼ି ଯୋଗୁଁ କ୍ଷତିଗ୍ରସ୍ତ ହେଉଥାଏ ବିପୁଳ ପରିମାଣରେ, ଆଉ ପ୍ରତ୍ୟେକେ ଜାଣିଥାନ୍ତି ରୁଏଁ ରୁଏଁ ଦ୍ୱୀପଭୂତ ହେବନାହିଁ କେବେହେଲେ ବଢ଼ି ରୋକା ହେବ ନାହିଁ ବଢ଼ି ଆପେ ଆପେ ।

ପ୍ରତ୍ୟେକ ବସନ୍ତରେ ବରଫ ତରଳିଲେ ବଡ଼ ବଡ଼ ମୁଣ୍ଡା ବରଫ ଖଣ୍ଡ ଠେଲି ଭସାଇ ନେଉଥାଏ ପନ୍ଟୁନ, ଶ୍ରେଷ୍ଠ ଶ୍ରେଷ୍ଠ ଡଙ୍ଗାଗୁଡ଼ାକୁ, ଲୋକେ ଦୀର୍ଘନିଃଶ୍ୱାସ ଛାଡ଼ୁଥାନ୍ତି ହତାଶାରେ, ଫୁଁଢି ଫୁଁଢି ହେଉଥାନ୍ତି କାତର ଭାବରେ, ନୂଆ ନୂଆ ଡଙ୍ଗା ତିଆରି କରୁଥାନ୍ତି ଯାହା ପୁଣି ବରଫ ତରଳି ଭସାଇ ନେଉଥାଏ କେମିତି ସେ ଲୋକଗୁଡ଼ାକ ଘୂରୁଥାନ୍ତି ଫେର ଖାଉଥାନ୍ତି ଏଭଳି ଏକ କଦର୍ଯ୍ୟ ପାପଚକ୍ରରେ ।

ଓପିପ୍‌କୁ ଯେବେ ପଚାରିଲି ଏ କଥା, ଆଶ୍ଚର୍ଯ୍ୟ ହୋଇଗଲି ସେ, ହସି ଉଡ଼ାଇ ଦେଲି କଥାଟାକୁ ଥଟ୍ଟା କରି ମତେ ।

"ଦେଖ ହୋ ଏ ଡାମରୀକାଉଟାକୁ, କେମିତି କାଆ କାଆ ରାବ ଦେଉଛି, ତୋର କଣ ଅଛି ରେ ଏଥିରେ ? ତୋର କ ଯାଏ ଆସେ ଏ ସବୁରେ ?

ତା' ପରେ ସେ ଉତ୍ତରଦେଲି ଗମ୍ଭୀର ହୋଇ, ଗୁରୁତ୍ୱ ଦେଇ ଉତ୍ତର ଦେଲି ସେ, ଅବଶ୍ୟ ବୟସକୁ ସ୍ୱୀକାରି ଅସ୍ୱାଭାବିକ ଭାବରେ ସ୍ୱଚ୍ଛ ନୀଳ ଆଖିରେ ପରିହାସର ଝଲସଟାକୁ ପୂରା ନଭେଇ ନ ଦେଇ କହିଲି ସେ !

"ଶୁଣ ଗୁଲକ୍ ତୁ କନା, ଏମିତି ସବୁ ଘଟଣା ଦେଖି ନେଉଛୁ ? ହୁଏତ ଏ ତୋର ଧନ୍ଦା ନୁହେଁ, ତୋ ବ୍ୟବସାୟ ନୁହେଁ ଏ, ପୁଣି ହୁଏତ କେବେ ଦିନେ ଏହାର ସଦ୍‌ବ୍ୟବହାର କରିପାରୁ ତୁ—ହେଇ ଏଠି ଆହୁ କିଛି ତୋ ପାଇଁ, ଲକ୍ଷ୍ୟ କରି ରଖିବାକୁ "

ତା' ପରେ ନରମିବାକୁ ଲାଗିଲି, ଶୁଖିଲି ଶୁଟିଲି ଖଣ୍ଡ ବାକ୍ୟଗୁଡ଼ିଏ, ମଝିରେ ମଝିରେ ଲୋକକଥା ଚଗଚମାଳରୁ କାଣ୍ଡିଏ ଲେଖାଏଁ ଖଞ୍ଜିଦେଇ ସେଥିରେ ଅଜାଡ଼ିବାକୁ ଲାଗିଲି—ଏକାବେଳକେ ଅପ୍ରତ୍ୟାଶିତ ତୁଳନା ସବୁ—ଚତୁରତାମୟୀ ଉକ୍ତି ସବୁ ।

"ହେଇ, କେତେ ଲୋକଙ୍କର ଆପତ୍ତି, କେତେ ଲୋକଙ୍କର ଅଭିଯୋଗ ସବୁ, ଏଲ୍ଗ ଜମି, ପ୍ରତି ବସନ୍ତରେ କ୍ଷୟ ଖାଉଛି ଭଲ୍‌ଗା—ବୋହି ନେଉଛି ମାଟିଗୁଡ଼ାକ ଗର୍ଭକୁ ତା'ର, ପୋତିହୋଇ ପଡ଼ୁଛି ଠାଆକୁ ଠାଆ—ଅଗଭୀର ହୋଇ ହଠୁଛି । ହେଇ, ପୁଣି ଆହୁ କେତେଙ୍କର ଅଭିଯୋଗ ପୋତିହୋଇ ପଡ଼ୁଛି ଭଲ୍‌ଗା, ଅଗଭୀର ହୋଇଯାଉଛି ଭଲ୍‌ଗା ଯେ, ବସନ୍ତ କାଳର ନାଳୀଗୁଡ଼ାକ, ଗ୍ରୀଷ୍ମକାଳର ବର୍ଷା, ଖୋଲ ଖୋଲ ଫିଟାଇ ଦେଉଛି ବଡ଼ ବଡ଼ ପାଣି ମାହାଳ, ସେହି ବାଟେ ଧସିହୋଇ ପଶିଯାଉଛି ଜମିମାନ ଭଲ୍‌ଗାରେ ।"

ଦୁଃଖରେ ନୁହେଁ କି ଅଭିଯୋଗ ବାଢ଼ି ନୁହେଁ, ସେ କହିଯାଉଥାଏ, ଜୀବନ ବନ୍ଧୁଙ୍କରେ ଯେଉଁ ଅଭିଯୋଗ, ସେଥି ସକାଶେ ଜ୍ଞାନରେ ତାର କଥାଗୁଡ଼ିକ, ଯଦଓ ସମର୍ଥନ କରୁଥାଏ, କଲବଉର କରୁଥାଏ ମୋର କଥାକୁ, ମୋର ଚନ୍ତା ଭାବନାକୁ ବଡ଼ କଠୋର କର୍କଶ ଲାଗୁଥାଏ ଶୁଣିଲେ ।

"ଆଉ ଗୋଟିଏ କଥା ଅଛି,—ନାଆଁ !"

ଜାଣିଥିଲି ମୁଁ ଏଭଳି ଗୋଟିଏ ଗ୍ରୀଷ୍ମକାଳ ଯାଉ ନ ଥାଏ, ଯେଉଁ ସମୟରେ ଭଲ୍‌ଗା ଆଡ଼ପାଖରେ ଦୂରରେ ଜଙ୍ଗଲ ପୋଡ଼ିଯାଉ ନ ଥାଏ, ପ୍ରତି ଜୁଲାଇ ଆକାଶ ଢାଙ୍କହୋଇ ଯାଉଥାଏ କେଶରିଆ ରଙ୍ଗର ଧୂମକୁଣ୍ଡଳୀରେ, ସେତିକିବେଳେ

ନିମ୍ନମୁଖୀ ରଶ୍ମି ଶ୍ମାନ ତେଜସ୍ୱାନ ସୂର୍ଯ୍ୟ ଗୁଡ଼ି ରହୁଥାଏ ଧରଣୀକୁ ଗୋଟିଏ କ୍ଷତ-ବିକ୍ଷତ ଚକ୍ଷୁଭଳି !

"ଜଙ୍ଗଲ ସବୁ, କି ମୂଲ୍ୟ ସେଗୁଡ଼ିକର—କିଛି ନୁହେଁ ।" କହିଲା ଓସିପ୍ । "ସାମନ୍ତ ଭଦ୍ରଲୋକଙ୍କର ନହେଲେ ବା ଜାର୍‌ଙ୍କର, ମ୍ୟୁଟିକ (ଗ୍ରାମୀ) ଗୁଡ଼ାକଙ୍କର କି ସ୍ୱତ୍ୱାଧିକାର ସେଥିରେ, ସହରଗୁଡ଼ାକ ଜଳିପୋଡ଼ି ପାଉଁଶ ହୋଇଯାଏ, ଯେତେବେଳେ ଏମିତି କିଛି ଖରାପ ଘଟଣା ହୁଏ ନାହିଁ, ସେଇଟା ଧନୀ ଯେତେକ ଇହଲୀ ସବୁ ବଡ଼ ବଡ଼ ସହରରେ, ତାଙ୍କୁ, ସେହି ଧନୀଗୁଡ଼ାକଙ୍କୁ ଦୟା ଦେଖାଇ ଲାଭ କ'ଣ ? କିନ୍ତୁ ଛୋଟ ଛୋଟ ସହର ଆଉ ଗାଁ ଗହଳ କଥା ବିଚାର, କେତେ ଗାଁଆ ବା ପୋଡ଼ି ଛାରଖାର ହୋଇ ନ ଯାଏ ଗ୍ରୀଷ୍ମ ଋତୁରେ ? ନିଶ୍ଚୟ ପକ୍ଷେ ଶହେ ଖଣ୍ଡେ, ପ୍ରକୃତ କ୍ଷତି, ପ୍ରକୃତ ଲୋକସାନ ତ ଏଇ !"

ପ୍ରଶାନ୍ତରେ ହସଟିଏ ହସିଲା ସେ ।

"ଆମର ଯନ୍ତ୍ରଣା ଅଛି, ଯନ୍ତ୍ରଣାରେ ସଢ଼ୁ ଆମେ ସବୁ, ଆମର ମନ୍ତ୍ରଣା ନାହିଁ, କାରଣ ବୁଦ୍ଧି ନାହିଁ, ମସ୍ତିଷ୍କ ନାହିଁ । ତମେ ଆଗ ଦେଖିପାରିବ ଗୋଟିଏ ଲୋକର ଶ୍ରମର ଉପକାର, ମଙ୍ଗଳମୟ ଲାଭ ଯାହା ନ ମିଳୁ ତାକୁ, ଜମିବାଡ଼ିକୁ କିନ୍ତୁ ମିଳୁ ଜଆଁକୁ, ମିଳୁ ପାଣିକୁ ।"

"ହସୁଛ କାହିଁକି ଯେ ?"

"କାହିଁକି ନୁହେଁ ? ଜଆଁକୁ ତମେ ବୁଡ଼ାଇ ଦେଇପାରିବ ନାହିଁ ଲୁହରେ, ଲୁହ ଖାଲି ଫୁଲେଇ ଦିଏ ବଢ଼ିପାଣିକୁ ।"

ମନରେ ମୋର ଦୃଢ଼ ପ୍ରତ୍ୟୟ ଆସିଥିଲା ଏହି ସୁଦୃଶ୍ୟ ବୃଦ୍ଧଟି, ଯେତେ ଲୋକଙ୍କୁ ଜାଣିଥିଲି ଭେଟିଥିଲି ମୁଁ ସେମାନଙ୍କ ମଧ୍ୟରେ ଥିଲା ବିଜ୍ଞ, ସୁଜ୍ଞାନୀ···କିନ୍ତୁ କାହିଁକି କେଜାଣି ? ମୁଁ ଆବିଷ୍କାର କରିପାରି ନ ଥିଲି କେଉଁଥି ପ୍ରତି ଥିଲା ତାର ଅନୁରାଗ, କେଉଁଥିପାଇଁ ଥିଲା ବିରାଗ—ଭଲପାଉ ଥିଲା କାହାକୁ ନ ପାଉଥିଲା କ'ଣ ?

ଏହି ବିଷୟ ଭାବୁଥାଏ ମୁଁ, ଗମ୍ଭୀର ସ୍ୱରରେ [illegible] ମୋର ଏହି ଚିନ୍ତାର ଅଗ୍ନିକୁ କଥାର କୋଇଲଖଣ୍ଡ, କାଠଖଣ୍ଡଗୁଡ଼ିକ ତାହି ଜଳାଇ ରଖି କହିଲା :

"ଦେଖ, ଲୋକେ ନଷ୍ଟ କରୁଛନ୍ତି ଶକ୍ତି, ନିଜର ଆଉ ଅନ୍ୟମାନଙ୍କର, ଧର, ଏଇ ତୋ ମାଲିକଙ୍କ ପ୍ରଶ୍ନ. ତତେ କେମିତି ଖଟେଇ ଖଟେଇ ଶୋଷି ନେଉଛନ୍ତି ସେ, ନହେଲେ ବା ଭାବ ଶ୍ଳୋକକା କଥା, ଏହାକୁ ତ କଳନା ନାହିଁ, ପଣ୍ଡିତ ବିଦ୍ୱାନ ଲୋକର ମସ୍ତିଷ୍କରେ ଭୁଲେଇବା ପାଇଁ, ଏତେ ବିରାଟ, ଏତେ ବିଶାଳ ଏ, ବୁଝିବାକୁ

ଏତେ ଜଟିଳ । କୁଡ଼ିଆଘରଟି ପୋଡ଼ିଗଲେ ଆଉ ଗୋଟାଏ ଛୁଡ଼ା କରେଇ ପାରିବ, କିନ୍ତୁ ଭଲ ଲୋକଟିଏ ଯଦି ନଷ୍ଟ ହୋଇଯାଏ, ଧ୍ୱଂସ ପାଏ, ତାକୁ ଆଉ ସଜାଡ଼ି ହେବ ନାହିଁ, ଠିକ୍ କରି ହେବ ନାହିଁ । ଉଦାହରଣ ଦେଖ, ଅର୍ଡ଼େର୍ଲିଷ୍ଟ ନଇଲେ ଗ୍ରିଗୋରି, ଭାବ ଦେଖି ସେ ମ୍ୟୁଟ୍ଙ୍କଟା କେମିତି ଧୂଆଁ ହୋଇଗଲା । ସେ ସବୁଠୁଁ ବଳି ଉଜ୍ଜ୍ୱଳ ଗ୍ରୀଗୋରି ନୁହଁ—ସେ ଥିଲା ହୃଦୟବାନ (ମ୍ୟୁଟ୍ଟିକଟା) ସ୍ପ୍ରୀଟାଏ, ହୁଏତ ନଡ଼ା ଗଦାଟି ହୋଇଥିବ ଯିମିତି ଭାବେ ହଠାତ୍‌କିନା ଜଳିଉଠିଲା, ଜଳିଗଲା ସେ, ମାଇପେ ସବୁ ବେଢ଼ି ଯାଉଥିଲେ ତାକୁ, ଚଢ଼ାଉ କରୁଥିଲେ ତା' ଉପରେ –''କୀଟଗୁଡ଼ାକ ମୁରଦାରକୁ ବଳି ପଡ଼ି ।''

''ତୁମେ କାହାଁକି ମାଲିକକୁ ମୋର କହିଦେଉଛ, ଯାହା ସବୁ କହୁଛି ମୁଁ ତମକୁ ?'' ପଚାରିଲି ଏମିତି ଖାଲି କୌତୂହଳରେ କୌଣସି ଗୋଟାଏ ଉଷ୍ମ ବା କଠୋର ଭାବ ନ ଥାଏ ମନରେ ମୋର ।

ସେ ଉତ୍ତର ଦେଲା ସରଳ ଭାବରେ, ଏମିତି ଧୀର ଭଦ୍ରଭାବରେ ।

''ଯେମିତି ସେ ଜାଣିପାରିବେ କି କ୍ଷତିକାରକ ଚିନ୍ତା ସବୁ ପଶୁଛି ତୋ ମନରେ ; ତାଙ୍କର ଶିକ୍ଷା ଦେବାର କଥା ତତେ, କିଏ ତାହା କରିବ ଯଦି ତୋ' ମାଲିକ ତୋ' ପାଇଁ ତା' ନ କରନ୍ତି । ଅସୂୟା ବା ଈର୍ଷାରେ କହେ ନାହିଁ ତାଙ୍କୁ, କହେ ତୋ ପ୍ରତି ଦୟାରେ ମମତାରେ ହିଁ, ତୁ ତ ନିର୍ବୋଧ ପିଲାଟିଏ ନୋହୁଁ, କିନ୍ତୁ ଗୋଟାଏ ରାକ୍ଷସ ଅଛି ତୋ ଏଇ ମଥା ଭିତରେ, ଗୋଳେଇ ଘାଣ୍ଟି ହୋହଲଉଛି କଥାଗୁଡ଼ାକୁ । ତୁ ଯଦି କିଛି ଚୋରିକରୁ ମୁଁ ଉଁ ଚୁଁ କହିବି ନାହିଁ, ତୁଣ୍ଡି ବାନ୍ଧି ରହିବି ମୁହଁରେ ; ତୁ ଯଦି ବୁଲୁ, ମିଶୁ ଝିଅମାନଙ୍କ ସାଙ୍ଗରେ— ତେବେ ବି ମୁଁ ପାଟି ଫିଟାଇବି ନାହିଁ । ପିଇଦେଇ ମାତାଲ ହୋଇଗଲେ, ମୂକ ପାଲଟି ରହିବି ମୁଁ କିନ୍ତୁ କହିବି ସବୁବେଳେ ତୋର ମାଲିକଙ୍କୁ, ତୋର ସେଇ ଅଦ୍ଭୁତ ନିର୍ଲଜ ଧାରଣା ଓ ଭାବନା ସମ୍ପର୍କରେ, ତେଣୁ ତୁ ବି ଜାଣିପାରିବୁ ସବୁ, ସବୁ ଯେମିତି ।''

''ଆଉ, ମୁଁ କଥାବାର୍ତ୍ତା ହେବି ନାହିଁ ତୁମ ସହିତ, କିଛି କହିବି ନାହିଁ ତମକୁ ।''

''ଚୁପ୍ ରହିଲେ କ୍ଷଣକ ପାଇଁ ।''

ଟାରିବରେ ହାତ ପାପୁଲିରୁ ଆଲକାତରା ନଖେଇ ନଖେଇ ବାହାର କଲା, ତା'ପରେ ସ୍ନେହମୟ ଗୃହିଣୀରେ ଅନେଇ ମତେ କହିଲା :

''ହିଁ, କହିବୁ, ତୁ କହିବୁ — ମିଛ କହୁଛୁ ତୁ । ମୋ ସାଥୀରେ ନ ହେଲେ ଆଉ କାହା ସାଥୀରେ କଥା କହିବୁ ତୁ ମୋ ଛଡ଼ା ଆଉ କେହି ନାହିଁ ଏଠି ।''

୬୫

ଏଇ ସେଇ ମୁହୂର୍ତ୍ତରେ ଲଗିଲା, ସୁରୁଚିସମ୍ପନ୍ନ, ସାରଲ୍ୟ ସ୍ୱଚ୍ଛତା ସତ୍ତ୍ୱେ ଓସିପ୍‌ର ସାମଞ୍ଜସ୍ୟ ଥିଲା ଚୋଇଲା ଭୁଂଜାଲ ସ୍ୱାଦୋଭ ସହିତ, ଏତେ ଉଦାସୀନ ପ୍ରତ୍ୟେକଙ୍କ ପାଇଁ, ପ୍ରତ୍ୟେକ ବିଷୟରେ ।

ବେଳେବେଳେ ତାକୁ ଦେଖି ମନେ ପଡ଼ୁଥିଲା ଧର୍ମାନ୍ଧ ପିଓନ ସ୍ୱିସିଲସ୍କି କେତେବେଳେ ବା ପୁଣି ସହିସ ପିଓନ, ଆହୁରି କେତେବେଳେ ଜଣା ଯାଉଥିଲା ତାର ସିମିତ ସମାନ କେତେ ସାଧାରଣ ଗୁଣରେ ମେଳ ଥିଲା ମୋ ଅଜାଙ୍କ ଗୁଣଗୁଡ଼ିକ ସହିତ । ଏ ଦଗରୁ ହେଉ ବା ସେ ଦଗରୁ ହେଉ ବା କୌଣସି ଗୋଟିଏ ଦଗରୁ ହେଉ ତା'ର ସାମଞ୍ଜସ୍ୟ ଥିଲା ଯେତେ ଯେତେ ବୃଦ୍ଧଙ୍କୁ ଦେଖିଥିଲି ମୁଁ ସେମାନଙ୍କ ସହିତ । ସମସ୍ତେ ସେମାନେ ଅତି ବିସ୍ମୟକର ଭାବରେ ଥିଲେ ମନୋରମ, କିନ୍ତୁ ଅନୁଭବ କରୁଥାଏ ମୁଁ କଠିନ ଆଉ ବିରକ୍ତିକର ହୋଇପାରେ, ସେମାନଙ୍କ । ସହିତ ରହିବା ଚଳପ୍ରଚଳ ହେବା, ସେମାନେ ପ୍ରତ୍ୟେକ ସିମିତ ତମ ଆତ୍ମା ଭିତରେ ପଶି ଯାଇଥାନ୍ତେ—ତମ ମନପ୍ରାଣକୁ କୋରି କୋରି ଖାଇଯାଇଥାନ୍ତେ, ସୁବିଜ୍ଞ ଉପଦେଶ ଗୁଡ଼ିକରେ—ବୁଦ୍ଧି ଆଉ ଜ୍ଞାନର ତୀବ୍ରତାରେ । ଓସିପ୍ କ'ଣ ଥିଲା ଲୋକଟିଏ ଉତ୍କୃଷ୍ଟ ଧରଣର ? ନା ନିକୃଷ୍ଟ ? ନାଁ, ଖ୍ୱଳକ,ଚତୁର ଥିଲା ସେ, ଦେଖି ପାରୁଥିଲି ବେଶ୍ ସ୍ପଷ୍ଟ ! କିନ୍ତୁ ତା'ର ବହୁମୁଖୀ ପ୍ରତିଭାଦୀପ୍ତ ମସ୍ତିଷ୍କ ଓ ମାନସିକ ତୀକ୍ଷ୍ଣତାରେ ମୁଗ୍ଧ ହୋଇ ଚମତ୍କୃତ ହେବା ସଙ୍ଗେ ସଙ୍ଗେ ଉପଲବ୍ଧି କରିଥିଲି ମୁଁ ତାର ଚିନ୍ତା ଓ ଚେତନାର ପ୍ରଣାଳୀର ପ୍ରାଣଘାତୀ ପ୍ରଭାବ ପଡ଼ୁଥିଲା ମୋ ଉପରେ । ଥିଲା ସେ ସବୁ ଦଗରୁ—ସକଳ ଦଗରୁ ବିରୋଧୀ ବୈରଭାବାପନ୍ନ ମୋ ଚିନ୍ତାର ମୋ ଚେତନାର ।

ଉଦ୍ଭଟକର ଭାବନା ସବୁ, ଚିନ୍ତାସବୁ ଉତ୍ତପ୍ତ ହୋଇ ଟକମକ ଫୁଟିବାକୁ ଲାଗିଥିଲା ସେପରି ମୋ ପ୍ରାଣରେ ମୋ ଅନ୍ତରରେ ।

"ଲୋକେ ସମସ୍ତେ ବିଷମ, ଅଜ୍ଞାତ, ଅପରିଚିତ ବୈରିତାପୂର୍ଣ୍ଣ ପ୍ରତ୍ୟେକେ ପ୍ରତ୍ୟେକଙ୍କ ପ୍ରତି—ଯେତେ ଯାହା ନୀତିଯୁକ୍ତ କଥା କହନ୍ତୁ, ଯେତେ ଯାହା ଯେଉଁଭଳି ଭାବରେ ପରସ୍ପରକୁ ଦେଖି ହସନ୍ତୁ ପଛେ ମୃଦୁ ମଧୁରଭାବେ, କେହି ଜଣେ ହେଲେ ଆବଦ୍ଧ ନୁହେଁ ଜୀବନ ସହିତ, ପ୍ରୀତିର ପ୍ରଶସ୍ତର ଦୃଢ଼ ବଂଧନରେ-- ଅ.ଇ ମା ମୋର, ମୋ ଆଈ ମା' କେବଳ ସିଏ ଭଲପାଏ ଜୀବନକୁ, ଭଲ ପାଏ ଲୋକଙ୍କୁ ଆଉ ସେହି ଚମତ୍କାର ନାସ୍ତାଟି ସ୍ୱାଣୀ ମାର୍ଗଟ ।

କେତେବେଳେ କିମିତି ଏଇସବୁ ଚିନ୍ତା କି ସମାନ ଏଇଭଳି କେତେ ଭାବନା, ସ୍ତୂପୀକୃତ ହୋଇ ପରିଣତ ହେଉଥାଏ କୃଷ୍ଣଗମ୍ଭୀର କଳାପଟଳରେ ଜୀବନଟାକୁ ମୋର ନିରାନନ୍ଦମୟ ନିଃଶ୍ୱାସରୋଧୀକରି । କିନ୍ତୁ ଆଉ ଅନ୍ୟ ପ୍ରକାର ଜୀବନ କ'ଣ ଅଛି ? ଉଠୁଥାଏ ବାରମ୍ବାର ଏହି ପ୍ରଶ୍ନଟି, ବି କେମିତି ମୁକୁଳି ପାରିବ

ଏପରି ଜୀବନରୁ । ପ୍ରକୃତରେ ତ ଓସିପ୍ ଛଡ଼ା ଆଉ କେହି ନାହିଁ କେଉଁଠି ଯାହା ସହିତ କଥା ହୋଇପାରିବ ମୁଁ । ଏଣୁ ଆଗ ଅପେକ୍ଷା ଅଧିକ ମାତ୍ରାରେ ମୁହିଁ ବୁଲାଇଲି ତା' ଆଡ଼କୁ ଆଉଜିଲି ତା' ଉପରେ ।

ସ୍ପଷ୍ଟ ଆଗ୍ରହର ସହିତ ଶୁଣୁଥିଲେ ସେ ମୋର ଆକୁଳ ଆବେଗମୟ ହୃଦୟର ଉଚ୍ଛ୍ୱାସମୟ କଥନକୁ, ପଚାରୁଥାଏ ପ୍ରଶ୍ନ ଚତୁରାକର, ସନ୍ଧାନ ନେଉଥାଏ ତଥ୍ୟର ତତ୍ତ୍ୱର—ତାପରେ କହୁଥାଏ ଶାନ୍ତ ସ୍ୱରରେ ।

''କାଠହଣା ଚଢ଼େଇ ଦେଖିଛୁ, ଖାଲି ଏକଜିଦିଆ ଉଦ୍ଧାଳୁ କିନ୍ତୁ, ତା' ପ୍ରତି ଭୟ ନ ଥାଏ ବି କାହାର ? ପ୍ରାଣର ଋଣ ଦେଇ ମୋର ପରାମର୍ଶ ହେଉଚି ତତେ—ଯା' କୌଣସି ଗୋଟିଏ ଧର୍ମପୀଠରେ ମଠରେ ଭର୍ତ୍ତି ହୁଅ ଯା'. ସେଠି ରହି ପାରିବୁ ତୁ ବସ୍ତୁତ ହେବାଯାଏ ତୋର, ରହିପାରିବୁ ଧର୍ମବିଶ୍ୱାସୀ ଭକ୍ତମାନଙ୍କୁ ଚମତ୍କାର କଥାଗୁଡ଼ିକରେ ତୋର ସାନ୍ତ୍ୱନ ଦେଇ ଆଶ୍ୱାସନା ଯୋଗାଇ । ମନରେ ଶାନ୍ତି ତୋ ପାଇଁ, ଲାଭ ମଠବାସୀ ପାଦ୍ରି ଓ ସନ୍ନ୍ୟାସୀଙ୍କ ପାଇଁ ମିଳିବ ସେଠ । ସମସ୍ତ ହୃଦୟରେ ମୋର କହୁଚି ତତେ, ପରାମର୍ଶ ଦେଉଚି ତତେ, କରି ଏହା । ମୋର ଆଶଙ୍କା, ଏ ସଂସାରରେ ଚଳିବା ପାଇଁ ସାମର୍ଥ୍ୟ ଆସି ନାହିଁ ତୋର ।''

ମୋର ମନ ନ ଥାଏ ଏ ମଠ ଫଠରେ ପଶିବା ପାଇଁ, କିନ୍ତୁ ଅନୁଭବ କରୁଥାଏ ମୁଁ ଅବୋଧ, ଅଦୃଶ୍ୟ ଜଟିଳତମ, ସୁଡଙ୍ଗମୟ ପଥରେ ହଜିଯାଇଛି ମୁଁ—କେମିତି ହିଁକିଏ ଉଦ୍ଧାରିଆ ହେବ ଚତୁରାଟା ତାର, ଆକୁଳ ହୋଇ ଉଠୁଥାଏ ମୁଁ, ଜୀବନଟା ପ୍ରତୀତ ହେଉଥାଏ ଶରତ ହେମନ୍ତର ବନାନୀପରି—ମୋ ପାଇଁ ଅବଶେଷ ନ ରଖି କିଛି ସୁବିପୁଳ ସୁବିଶାଳ ଶୂନ୍ୟତାରେ ସେଠି, ସେହି ଯେଉଁଠି ପ୍ରତ୍ୟେକ କନ୍ଦ ବିକନ୍ଦ, ପ୍ରତ୍ୟେକ କୋଣବିକୋଣ—ପ୍ରତ୍ୟେକ ବିଭକ୍ତ ମାର୍ଗ-ଅମାର୍ଗ ସହିତ ଘନିଷ୍ଠ ପରିଚୟ ଥାଏ ମୋର ।

ଭୋଦକା ଛୁଉଁ ନ ଥାଏ ମୁଁ—ଧାଉଁ ନ ଥାଏ ପ୍ରେମ ନିବେଦନ କରି ଝିଅଗୁଡ଼ିକ ସହିତ ତାଙ୍କ ପଛେ ପଛେ ବା—ଆମ୍ଭାକୁ ଉନ୍ମତ୍ତତାର (ମାତାଲପଣ) ମଧ୍ୟକୁ ଠେଲି ନେବାର ଏହି ଦୁଇଟି ପନ୍ଥା ପରିବର୍ତ୍ତେ—ଏହି ଦୁଇଟି ସ୍ଥାନରେ ଥାଏ ମୋ ପାଇଁ ବହିଗୁଡ଼ିକ । କିନ୍ତୁ ଯେତିକି ଯେତିକି ଅଧ୍ୟୟନରେ ମଗ୍ନ ହେଉଥାଏ—ସେତିକି ସେତିକି କଠିନ ହେଉଥାଏ ବଞ୍ଚିବାଟା, ଜୀବନ ଧରିବାଟା ଏଭଳି ଭାବ ବିଭବହୀନ ନିବିଡ଼ ଶୂନ୍ୟତାର ଗାତରେ—ସେହି ଯେଉଁଥିରେ କଟୁଥାଏ ଅଧିକାଂଶଙ୍କର ଜୀବନ ।

ସେହି ମାଝ ପନ୍ଦର ପୂରିଥାଏ ମତେ—କିଂରୁ ଏମିତି ମୁହୂର୍ତ୍ତି ଥାଏ ଯେତେବେଳେ ଲାଗୁଥାଏ ବୁଢ଼ା ହୋଇଗଲିଣି ମୁଁ ! ହୃଦୟଟା ମୋର ଫୁଲି

ସ୍ତର ସ୍ତର ହୋଇ ଉଠିଥାଏ । ଯେତେ ଯାହା ଅନୁଭବ କରିଥାଏ, ଜୀବନରେ ଯେଉଁଥିରେ ଗତି କରିଥାଏ ସେ ସବୁ ପୁଣି ଯାହାସବୁ ପଢ଼ିଥାଏ । ବିଚ୍ଛିନ୍ନ, ବିଲଗ୍ନ ରୂପେ ଚିନ୍ତା କରିଥାଏ ଗଭୀର ସ୍ତବରେ—ସେହି ସବୁରେ, ମୋ ମନରେ ଯେତେ ଯେଉଁ କଥାର ଘଟନାର ଗଭୀର ଗ୍ରସ୍ଥାପାତ ହୋଇଥାଏ ଜଳାଧାର ଭଳି ବିରାଟ—ସେସବୁର ଆଧାର ଥାଏ ଅନ୍ଧକାରମୟ ସାଜସରଞ୍ଜାମର ଘରଭଳି—ବହୁ ବିଚିତ୍ର ବହୁରୂପୀ ବହୁଗଠନର ଆସବାବରେ ଜଞ୍ଜପଣରେ ଭର୍ତ୍ତି—ଯାହାକୁ ବାଛି-ବଛିର ଅଲଗା ଅଲଗା ରୂପେ ଦେଖିବା ପାଇଁ ଶକ୍ତି ସାମର୍ଥ୍ୟ ନ ଥାଏ ମୋର ।

ଆଜି ସେହି ସ୍ତବଗ୍ରସ୍ତା ବିଷୟର 'ସ୍ତର'—ସେଗୁଡ଼ିକର ସଂଖ୍ୟାର ବାହୁଲ୍ୟ ସତ୍ତ୍ୱେ—ମତେ ସୁଦୃଢ଼ ପ୍ରତିଷ୍ଠମାନ କରି ନ ଥାଏ, ଦୋଲାୟିଥାଏ, ଅସ୍ଥିରରେ ବାୟୁ, ଆନ୍ଦୋଳିତ ଜଳଯାନ, ଜାହାଜରେ 'ଜଳ' ପରି ।

ବରଦାସ୍ତ କରିପାରୁ ନ ଥାଏ ମୁଁ, ବୀଭତ୍ସ ଲାଗୁଥାଏ ମତେ, ଆପତ୍ତି, ଅଭିଯୋଗ, ଦୁଃଖ ଦୁର୍ଦ୍ଦଶା, ରୁଚିହୀନତା, ଅସୁସ୍ଥ ମନଭାବ, ଅନାଚାର, ଅବିଶ୍ୱାସ, ସବୁ ଦୃଷ୍ଟିରେ ପଡ଼ିଲା ମାତ୍ରେ, ପାଶବିକତା ଦୈହିକ ପ୍ରହାର ଏପରିକି ମୌଖିକ ଗାଳିଗୁଲଜ, କୁତ୍ସାରଟନା ଉଦ୍ରେକ ହେଉଥାଏ ଅନ୍ତରଆତ୍ମାରେ ମୋର । ସ୍ୱତଃ ପ୍ରବୃତ୍ତିଗତ ଘୃଣା ଉତ୍କଟ ଆଉ ପ୍ରବଳ—ଏହା ହିଁ ଅକ୍ଳେଶରେ ପରିଣତ ନିର୍ମମ କ୍ରୋଧାଗ୍ନିରେ ଉନ୍ମତ୍ତ ହୋଇ ଜାନୁଆର ଭଳି ବିରୋଧ କରି ଝାସ ଦେଉଥାଏ ଲଢ଼େଇରେ, ଲଢ଼ୁଥାଏ ମୁଁ ଦୁର୍ଦ୍ଦାନ୍ତ ହୋଇଉଠେ—ଯନ୍ତ୍ରଣା ପାଇବାକୁ ପରେ କେବଳ ଦାରୁଣ ଅନୁଶୋଚନାର ତୀବ୍ରତମ ବେଦନାରେ ଦୁଃଖରେ ।

ଏଭଳି କେତେ ମୁହୂର୍ତ୍ତ ଆସୁଥାଏ, ଯେତେବେଳେ ପ୍ରବଳ ଆବେଗମୟ ଆକାଂକ୍ଷାରେ ଅଭିଭୂତ ହୋଇ ଯେ କୌଣସି ଲୋକପ୍ରଢ ଅତ୍ୟାଚାରୀ ଉତ୍ପୀଡ଼କର ଚରମ ଉତ୍ତର ଦେବାପାଇଁ—ଏକାବେଳେକେ ଅନ୍ଧଭଳି ଧସେଇ ପଶିଯାଉଥାଏ ଜୋର କଳିତ କରାଳ ମାରଧର ଭିତରେ ଲକ୍ଷ୍ୟ ପଡ଼ୁଥାଏ ଯାଇ କଳହକାରୀଙ୍କ ଉପରେ । ଏବେ ମଧ୍ୟ (ଆଜି ଯାଏ ବି) ଦୁଃଖ ଓ ଲଜ୍ଜାରେ ଅଭିଭୂତ ହୋଇଯାଏ ମୋର କ୍ଲୀବତ୍ୱରୁ ଉଦ୍‌ଭୂତ ହତାଶାର ଆକ୍ଷେପର ବା ପ୍ରକୋପଗୁଡ଼ିକୁ ମନେ ପଡ଼ିଗଲେ ।

ଦୁଇଟି ପୁରୁଷର, ଦୁଇଟି ଜୀବାତ୍ମାର ବା ଅଧିଷ୍ଠାନ ଥିଲା ମୋର ଅନ୍ତରରେ—ସେଥିମଧ୍ୟରୁ ଗୋଟିଏ ଆବର୍ଜନା ଆଉ ବହୁ ଜଘନ୍ୟ ବୀଭତ୍ସତାର ଆତିଶଯ୍ୟ—ଦେଖି ଦେଖି ଯେପରି ସଂଯତ ହୋଇ ଯାଇଥିଲା ଶାନ୍ତିପାଇଁ—ଜୀବନର ଅତି ଭୟଙ୍କର ତୁଚ୍ଛତା, ହୀନତା ଓ ଜଞ୍ଜାଳସବୁ ଘୋର ସନ୍ଦେହୀ ସଂଶୟୀ କରିଦେଇଥିଲା ତାକୁ ! ଅସହାୟ କରୁଣାର୍ଦ୍ର ଦୃଷ୍ଟିରେ ସେ ଦେଖୁଥିଲା ନିଜ ସମେତ ସମସ୍ତଙ୍କୁ,

ଯାହାଙ୍କ ସଂସ୍ପର୍ଶରେ ଆସୁଥିଲା ସେମାନଙ୍କୁ । ଏହି ପୁରୁଷଟି ବ୍ୟାକୁଳ ଭାବରେ କାମନା କରୁଥିଲା—ଶାନ୍ତ, ସଂଯତ ଜଞ୍ଜାଳମୁକ୍ତ, ଅବସରମୟ ଜୀବନ କଟାଇବା ପାଇଁ । ଜନପଦଠୁଁ, ଜନସାଧାରଣଙ୍କଠୁଁ ଦୂରରେ ବହୁ ଦୂରରେ । ସ୍ୱପ୍ନ ଦେଖୁଥିଲା ସେ ଯିବ ପାରସ୍ୟକୁ ଯିବ, ଅନ୍ତେବାସୀ ହେବ ଧର୍ମାଳୟରେ ମଠରେ କେଉଁଠି, ରହିବ ବା ଅରଣ୍ୟାନୀ ମଧ୍ୟରେ କୁଟୀର ରଚନା କରି ଅଥବା ରେଲବାଇ ଗାର୍ଡ଼ର ବସାରେ କିମ୍ବା ନଗରୀର ଉପକଣ୍ଠରେ କେଉଁଠି ହେବ ଗୋଟାଏ ପ୍ରହରୀ ଭଙ୍ଗୀରେ— । ଯେତେ ଅଳ୍ପ ହେବ ଲୋକଙ୍କର ସମାଗମ, ଯେତେ ଅଳ୍ପ ହେବ ସେମାନଙ୍କ ସଂସ୍ରବ, ଯେତେଦୂରର, ଅତିଦୂରର ହେବ ତାହା, ସେତେ ମଙ୍ଗଳକର ହେବ ତା'ପ୍ରତି ।

ଅନ୍ୟ ପୁରୁଷଟି, ଜନବଜ୍ଜନରେ ସତ୍ମାତନ୍ତି ପୁସ୍ତକଗୁଡ଼ିକରେ ସବଳ ଭାବରେ ଘୋଷିତ ଅନୁପ୍ରାଣିତ ହୋଇ ଉପଲବ୍ଧି କରୁଥିଲା ଜୀବନର ଭୟଙ୍କର ରୁକ୍ଷତା, ପ୍ରାତ୍ୟହିକ ଜଞ୍ଜାଳ, ବୈଷୟିକତା ଏଭଳି ନିର୍ମମ ଏଭଳି ନିର୍ଦ୍ଦୟ ଶକ୍ତ ପ୍ରୟୋଗ କରୁଛି, ଯେଉଁଥିରେ କି ସହଜରେ ଅତି ଛିନ୍ନ ହୋଇଯିବ ସେ ସମସ୍ତ ଭାବରେ କଳୁଷାକ୍ତ ପଙ୍କିଳ ପଦତଳରେ ! ତେଣୁ ସେ ଆହ୍ୱାନ କରିଥିଲା ଆହରଣ କରି ସଂହତ କରୁଥିଲା ତାର ସମସ୍ତ ବଳ ଆତ୍ମରକ୍ଷା ପାଇଁ, ଦନ୍ତ ପାଟି ଦେଖାଇ ମୁଷ୍ଟିବଦ୍ଧ ହାତରେ ପ୍ରସ୍ତୁତ ହୋଇ ଉଦ୍ୟତ ହୋଇ ରହୁଥିଲା ସର୍ବଦା ପ୍ରାୟ ଲଢ଼େଇ ପାଇଁ, ଯୁକ୍ତତର୍କ ପାଇଁ । ତା'ର ପ୍ରୀତିପ୍ରବଣତା, ସ୍ନେହାନୁରାଗ, ସଦୟ ମନୋଭାବରେ ପ୍ରକାଶ ପାଉଥିଲା ତା'ର କ୍ରିୟାକଳାପରେ—ଫରାସୀ ଉପନ୍ୟାସର ଦୁଃସାହସୀ ବୀର ଚରିତ୍ର ଭଳି ସତେ ଯେପରି ଛିଡ଼ାହୋଇ ଯାଇଥିଲା ଖଡ଼୍ଗ କୋଷମୁକ୍ତ କରି—ସାମାନ୍ୟ ମାତ୍ର ପ୍ରରୋଚନାରେ ଛିଡ଼ାହୋଇ ଯାଇଥିଲା ଯୁଦ୍ଧ କରିବାର ଭଙ୍ଗୀରେ...... ।

ଥାଏ ସେହି ସମୟରେ ଠିକ୍, ଦେଖାଦେଇଥାଏ, ମୋର ଏକ ଘୋର ଶତ୍ରୁ, କୁତ୍ସିତ ଅତି ଜଘନ୍ୟ—ମାଳୟ ପୋଲୋଭିସ୍କାୟା ସାହର ବେଶ୍ୟାଳୟଗୁଡ଼ିକ ମଧ୍ୟରୁ ଗୋଟିକର ପ୍ରହରୀ, ତା' ସହିତ ମୋର ସଂପର୍କ ଜନ୍ମିଥାଏ, ପରିଚୟ ଘଟିଥାଏ—ଦିନେ ସକାଳେ ମୁଁ ମେଳାପଡ଼ିଆକୁ ଯାଉଥାଏ, ଦେଖୁଥାଏ ଯେତେ-ବେଳେ ଗୋଟିଏ ଘୋଡ଼ାଗାଡ଼ି ଭିତରୁ ସେ ଟାଣିଓଟାରି ବାହାରକରି ଆଣୁଥାଏ ସୁରାପାନ ଅବସ୍ଥାରେ ଗୋଟିଏ ଯୁବତୀକୁ । ଗୋଡ଼ ଦୁଇଟିକୁ ଶକ୍ତ ଭାବରେ ମୁଠେଇ ଧରିଥାଏ ସେ ତାର—ସେଥିରୁ ଗୁଡ଼େଇ ଲେସ୍ବକୋଷ୍ଟ ହୋଇ ଖିସି ପଡ଼ୁଥାଏ ମୋଜା ହଳକ—ଅତି ଅଶ୍ଳୀଳ କୁତ୍ସିତ ଭାବରେ ସେ ଟିକୁଥାଏ ରହି ରହି ସେଇ ଗୋଡ଼ ଦୁଇଟିକୁ—କଟୀଯାଏ ଯୁବତୀର ଦେହକୁ ଉଲଗ୍ନ କରିଦେଇ ଧୂରାପୂରା, ଟିକୁଥାଏ ଆନନ୍ଦରେ ହସି ହସି, ମେଞ୍ଚାକୁ ମେଞ୍ଚା ଛେପ ପକାଇ ତା' ଉପରେ—ଆକୁଳାୟିତକେଶା ଯୁବତୀଟି ସେତେବେଳେ କିଛି ଦୃଶ୍ୟ ହେଉ ନ ଥାଏ ତାକୁ, କିଛି

ଦେଖିବାର ବା ·ବୁଝିବାର ଅବସ୍ଥାରେ ନ ଥାଏ ସେ । ଓହଳ ପଡ଼ିଥାଏ ତା'ର ଅଧରଟି,ଓଠ ଦୁଇଟି,ଟଙ୍କା ପରେ ଟଙ୍କାପାଇ ଖସି ଖସି ଆସୁଥାଏ ସେ - ହାତ ଦୁଇଟି ତା'ର ଝୁଲିପଡ଼ିଥାଏ ଦୁର୍ବଳ ହୋଇ, ସତେ ଯେପରି ହୁଗୁଳା ହୋଇ ଯାଇଥାଏ— କୁଷି ତଳରୁ (କାଖ ଖୋଲରୁ) ଘୋଷାରି ହେଉଥାଏ ତାର ମୁଣ୍ଡ ପଛେ ପଛେ, ଚକ୍ରପଟାଙ୍ଗଥାଏ ସେ—ମୁଣ୍ଡଟି ଠକକନ ବାଜି ଗାଡ଼ିର ଭିତର ଆସନରେ ପିଟି ହୋଇଯାଇ ପାଦରଖା ସ୍ଥାନରେ, ଶେଷରେ ଠାଇକିନା ଲେଉଟି ପଡ଼ିଥାଏ ରାସ୍ତା କଡ଼ ଚଲାବାଟରେ ।

ଇନସ୍ପେକ୍ଟର୍, ସନ୍ତ୍ରୀଟି—ଦେଖୁଥାଏ ସେତେବେଳେ ଦୁ'ଚାରି ଚାବୁକ ବସାଇଦେଲା ଘୋଡ଼ା ଦେହରେ ଏବଂ ଗାଡ଼ିଟି ଚଲାଇ ନେଇ ଗୁଲିଗଲା ସେଠାରୁ, ଦରୁଆନଟା ରେଲଡ଼ବାର ଲୁହାଦଣ୍ଡା ଧରି ଉଠାଇଲା ଭଳି ଗୋଡ଼ ଦୁଇଟା ଧରି ଟେକିଦେଇ ମୂବଣିର ଘୋଷାରିବାରେ ଲାଗିଲା ତାକୁ ରାସ୍ତା କଡ଼ରେ, ଏକା- ବେଳକେ ଉଦ୍‌ଭ୍ରାନ୍ତ ଭଳି ଉନ୍ମତ୍ତ ବେଗରେ ଧାଇଁଗଲି ସେ ଦରୁଆନଟା ପାଖକୁ—ଭାଗ୍ୟକୁ କହନ୍ତୁ ହୁଏତ ଫିଙ୍ଗି ଦେଇଥିଲି କିମ୍ବା ଆକସ୍ମିକ ଭାବରେ ହାତରୁ ମୋର ଖସିପଡ଼ିଥିଲା ଧରିଥିବା ଯେଉଁ ସାତଫୁଟ ଲମ୍ବର 'ମାର୍ବଲ' ଗଜ (ଭୂମି ସମତଳକାରୀ ଗଜଟା), ସେଥିପାଇଁ ରକ୍ଷାପାଇ ଯାଇଥିଲୁ ଦୁହେଁ ଯାକ, ସେ ଓ ମୁଁ —ନଚେତ୍ ପରିଣାମ ଯେ କି ଗୁରୁତର କି ଭୟାନକ ହୋଇ ନ ଥାନ୍ତା ! ପୂର୍ବବେଗରେ ଧାଇଁଯାଇ କୁଦିପଡ଼ି ତା ଉପରକୁ ଧକ୍କା ମାରି ଲେଟେଇଦେଲି ତଳେ, ତା'ପରେ ଉଠିଯାଇ ଦ୍ୱାରମୁହଁକୁ, ତୋରଣ ପାଖକୁ ଜୋରରେ ଜୋରରେ ହତାଶିଆ ହୋଇ ବଜାଇଲି ଘଣ୍ଟିଟାକୁ—ଘଣ୍ଟି ଶବ୍ଦ ଶୁଣି ପାଗଳ ପଣ୍ଟୁଙ୍କ ପରି ଅନ୍ଦରୁ ଧାଇଁ ଆସିଲେ କେତେଜଣ, ମୋର କି ଥାଏ ସାମର୍ଥ୍ୟ ସେମାନଙ୍କୁ ବୁଝେଇ କହିବାକୁ—ଯନ୍ତ୍ରପାତିତକ ଧରି ଏକମୁହାଁ ଛୁଟି ପଳାଇଥିଲି ସେଠୁ ।

ନଈକୂଳ ରାସ୍ତାରେ ଖଣ୍ଡେଦୂର ଆଗରେ ପହଂଚିଲି ଇନ୍‌ସ୍ପେକ୍ଟର ସନ୍ତ୍ରୀ ପାଖରେ—ଗାଡ଼ି ଉପରୁ ତା' ଆସନରୁ ଉଚ୍ଚରୁ ତଳକୁ ଅନେଇ ଦେଖିଦେଇ ମତେ କହିଲା ସାବାସ୍‌କରି ପସନ୍ଦକରି ମୋ କଥାକୁ ।

"ବଢ଼ିଆ, ବଢ଼ିଆ ମାଡ଼ଟି ଚଢ଼ାଇଲ୍ ତାକୁ—ଠିକ୍ କଲ୍ ଠିକ ।"

ରାଗରେ ପଚାରିଲି ତାକୁ, କାହିଁକି ସେ ଛାଡ଼ିଦେଲା ସେଠି ଦରୁଆନଟାକୁ ମୂବଣିଟା ସହିତ ସେମିତି ନିର୍ଲଜ ବ୍ୟବହାର କରିବା ପାଇଁ ।

"ଛାଡ଼ ନରକକୁ ଯାଉ ସେ ଟୋକାଟା, ନରକକୁ !" ଦୃଢ଼ ଅବଚେତନ ଘୃଣାରେ କହିଲା ସେ । ସେ ଭଦ୍ରଲୋକଗୁଡ଼ାକ ଟଙ୍କାପଇସା ଦେଇଥିଲେ ମତେ ତାକୁ ଟେକି ଭର୍ତ୍ତି କଲାବେଳେ ଗାଡ଼ି ଭିତରେ, ସେତିକି ଯାହା ମୋର ଦରକାର, ଅଉ କେଉଁଥିରେ ମୋର କଣ ଥିଲା ?"

"କିନ୍ତୁ ସେ ବରୁଆନଟା ଯଦି ମାରି ଦେଇଥାନ୍ତା ଜୀବନରେ ତେବେ ?"

"ସେ, ସେ ଟୋକାଭଳିଆ ଜୀବନଟାକୁ ମାରିଦେବା ଏତେ ସହଜ ନୁହେଁରେ ବାବୁ, ଏତେ ସିଧାସଳଖ ନୁହେଁ ।" ସେ ମନ୍ତବ୍ୟଟା ଦେଲା ମାତାଲକୁ ବାରନାରୀ ବେଶ୍ୟାକୁ ହତ୍ୟା କରିବାର ବିଶେଷ ଦକ୍ଷତା ହାସଲ କରିଥିବା ଲୋକଙ୍କ ପରି ନିଶ୍ଚିତ ପ୍ରତିଶ୍ରୁତିରେ, ବିଶ୍ୱାସମୟ ଦମ୍ଭରେ ।

ସେ ଘଟଣା ପରେ ବରୁଆନ ସଙ୍ଗରେ ମୋର ପ୍ରାୟ ସାମନା ସାମନି ଭେଟ ହୋଇଯାଉଥାଏ ପ୍ରତ୍ୟେକ ଦିନ ସକାଳେ । ମୁଁ ଆସୁଥାଏ ଯେତେବେଳେ ସାହି ରାସ୍ତାରେ, ଦେଖୁଥାଏ ଓଳୋଉଥାଏ ଦ୍ୱାରମୁହଁ, ରାସ୍ତାକଡ଼କୁ ବା ବସିଥାଏ ପାହାଚ ଉପରେ ମୋତେ ଅପେକ୍ଷାକରି ଯିମିତି—ତା ପାଖ ହେଲା ମାତ୍ରକେ ସେ ଉଠି ଛିଡ଼ାହୋଇ ପଡ଼ୁଥାଏ, କାମିଜର ଅସ୍ତିନ ଟେକି, ଧମକ ଦେଇ କହୁଥାଏ :

"ଚ୍ଃ, ଯଦି ଗୁଣ୍ଡ୍ରୁଗୁଣ୍ଡା କରି ନ ଦେଇଛୁ ତେ' ଦେହକୁ, ଦେଉଚ ଯେ, ତେହେରି ଭଙ୍ଗି ଦେଉଚ ଟୋକାର, ଆଜ୍ଞାକରି ପାନେ ଦେଉଚ !"

ଷୋଳର ବର୍ଷରୁ ବେଶୀ ହିଁକେ ହୋଇଥିବ ବୟସ ତାର, ରୋଗିଟିଆ, ଅଳ୍ପ ଉଚ୍ଚ, ଧନୁଭଳି ବଙ୍କାଗୋଡ଼ିଆ, ପେଟଟି ବାହାରି ପଡ଼ିଥାଏ ଗର୍ଭିଣୀ ସ୍ତ୍ରୀର ପେଟ ଭଳି, ସେଠି ଛିଡ଼ାହୋଇ ମତେ ଅନେଇ ହସୁଥାଏ, ଖତେଇ ବିଗୁଲେଇ ହୋଇ ଯେମିତି । ତା' ମୁହଁ ଫିକା ପଡ଼ିଯାଇଥାଏ ଦୁଃଖରେ—ତା' ଆଖିଯୋଡ଼ିକୁ ଅନେଇଲେ କେମିତି ଗୋଟାଏ ଦୟା ଅନୁକଂପାର, ଧୀର, ମଧୁର ପ୍ରକୃତିର ଦୀପ୍ତି ଜୁଳୁଜୁଳୁ କରୁଥାଏ ସେଥିରେ । ଲଢ଼େଇ କରିବାକୁ ଦକ୍ଷତା ନ ଥାଏ ତା'ର. ହାତଯୋଡ଼ିକ ମୋ ହାତଠୁଁ ଲମ୍ବରେ ଛୋଟ, ଦୁଇ ତିନି ଥର ଆକ୍ରମଣ ପରେ ସେ ପଛେଇ ପଛେଇ ଯାଇ ବାଡ଼ପାଖକୁ, ଆଶ୍ଚର୍ଯ୍ୟ ହୋଇ ଧଇଁସଇଁ, ହୋଇ ଆତ୍ମସମର୍ପଣ କରୁଥାଏ ସେ ।

"ଉଃ, ଟିକିଏ ମୁହୂର୍ତ୍ତଟାଏ ଉଃ ରେ ବଣଭୁଆଁଟା, ଉଃ !"

ଚଟା ଲାଗିଲା ମତେ ତା' ସଙ୍ଗେ ଇମିତି କେତେ ଥର ଲଢ଼େଇକରି, ଦିନେ କହିଲି ତାକୁ :

"ଦେଖ୍ ବୋକା, ଏଣିକି ଛାଡ଼ିଦେ' ମୋତେ, ମୋ ବାଟରେ ଯାଏ ମୁଁ, ଛାଡ଼ିବୁ ତ ?"

"ଲଢ଼ା ଲଢ଼ିଟା ଆରମ୍ଭ କଲୁ କାହିଁକି ?" ଭର୍ତ୍ସନା କଲାଭଳି ପଚାରିଲି ସେ, ପଚାରିଲି ତାକୁ କାହିଁକି ସେ ସେପରି ଦୁର୍ବ୍ୟବହାର କରିଥିଲା ତାକୁ—ଗାଳିମନ୍ଦ କରିଥିଲା ସେ ଯୁବତୀଟିକୁ ।

" ତୋର ଏତେ ଚନ୍ତା କାହିଁକ ରେ ? ତୋର ଦୟାମାୟା ଅଛ ତା' ପ୍ରତ ? ତାକୁ ଦୟା କରୁ ରୁ ?"

'ହଁ, ନଶ୍ଚୟ କରେ ।"

ତାପରେ କହଲ ସେ 'ଗୋଟାଏ ବୋକା, ମସ୍ତବୋକା, ଗଧ୍ୟୁଟାଏ ତୁ, ମିଛୁଆ, ଡାହା ମିଛୁଆ, ଛିଃ, ଦେଖାଇ ଦେଉଛୁ ଯେ, ବଡେଇ ଦେଉଚ ଯେ ତତେ ।"

ମତେ ସେହ ବାଟରେ ଯିବାକୁ ପଡ଼ୁଥାଏ କାମକୁ—କାମକୁ ଯିବାପାଇଁ ସବୁଠୁଁ କମ୍ ବାଟ ଥାଏ ବୋଲ । ମୁଁ ଆରମ୍ଭ କରଦେଲ ଅନ୍ତୁର ଚଞ୍ଚଳ ଉଠିବାକୁ ଯିମିତ ଏଡ଼େଇ ଦେଇଯାଇ ପାରବ ଦଳୁଆନକୁ, ମୋର ସକଳ ଚେଷ୍ଟା ସତ୍ତ୍ୱେ କେତୁଦନ ପରେ ଦେଖିଲ ପାହାଚ ଉପରେ ଗୋଟାଏ ପାଉଁସିଆ ରଙ୍ଗର ବଲେଇକୁ କୋଳରେ ଧର ବସିଛ—ତାକୁ ଆଉଁସି, ଗେଲ କରୁଛ ତା'ପାଖରେ ଟନ ପାହୁଣ୍ଡ ହେବ ଦୂରରେ ପହଞ୍ଚିଚଛ ନାହିଁ, ସେ ଭୂଷ୍‌କନ ଉଠିପଡ଼ଲ, କୁଦାଟାଏ ମାରଲ ବା, ଜାବୁଡ଼ ଧରଲ ବଲେଇଟିର ପଛଗୋଡ଼ ଦୁଇଟାକୁ— ଗୋଟାଏ ପଥର ଖଣ୍ଡ ଦେହରେ ପିଟିଦେଲ ତା ମୁଣ୍ଡକୁ ଏମିତ ଜୋରରେ ଏମିତ ବୀଭତ୍ସଭାବେ—ମୋ ଦେହଯାକ ଛୁଙ୍କ ବୁଡ଼ଗଲ ଉଷ୍ଣରକ୍ତରେ ବଲେଇଟାର ! ତା'ପରେ ସେ ହଲେଇ ହଲେଇ ମୃହ୍ଫୁଭିକରେ ଫିଙ୍ଗିଦେଲ ସେଇଟାକୁ ମୋ ପାଦ ପାଖକୁ– ଫାଟକ ପାଟରେ ଛିଡ଼ାହୋଇ ଡ଼ାକ ଛାଡ଼ଲ—

"ଏ, କେଶ୍ ଏବେ ?"

କ'ଣ ଆଉ କହବାକୁ ଥିଲ ବା ମୋର ? ଯୋଡ଼ାଏ କୁକୁର ପର ଗଡ଼ାଗଡ଼ି ହେବାକୁ ଲଟିଲୁ ଦୁହିଁଙ୍କୁ ଦୁହେଁ ସେହ ଅଗଣାଟାରେ—ଦୁଃଖରେ, ଯନ୍ତ୍ରଣାରେ, ବେଦନାରେ ନବାକ ବମ୍ଢ଼ ହୋଇଯାଇଥାଏ ମୁଁ—ରକ୍ତାକଡ଼ରେ ଘାସଲଟି ଭିତରେ ନଜକୁ ନଜେ କଗୁଡ଼ ଦେଲ ନେଇ ଗୁଆଁକୁ ଗୁଆଁ—ଲୋଟିଗଲ ଓଠ ଦୁଇଟାକୁ କାମୁଡ଼—ଅ଼ଜ ମୋର ମନେପଡ଼ଲେ ଏଘଟଣା ଘୃଣାରେ କ୍ରୋଧରେ ଥର ଉଠେ ଦେହଟା ମୋର ଅଉେଠେ ଅନ୍ତରମ୍ମା—ଆଶ୍ଚର୍ଯ୍ୟ ଲାଗେ କେମିତ ଯେ ସେତେବେଳେ ପାଗଲ ହୋଇଯାଇ ନ ଥିଲ କ—ଖୁନ୍‌କର ବସି ନ ଥିଲ କେଜାଣି !!

ଏମିତ ବୀଭତ୍ସ, ଏମିତ ଜଘନ୍ୟ ଘୃଣାର ଘଟଣା ଆଜ ମୁଁ ବର୍ଣ୍ଣନା କରୁଛ କାହିଁକ ? ବର୍ଣ୍ଣନା କରବାଟା ଯଥାର୍ଥ ହେଉଚ, ଉଚତ ହେଉଚ— ହଁ, ତମେ ଯେମିତ ହେ ମୋର ଶାନ୍ତ, ସୁଶୀଳ, ସୁଭଦ୍ର ପାଠକ, ତମେ ଯେମିତ ଏହା ଅଖାତର ସୁଦୂର ଅତୀତର ଘଟଣା ନୁହେଁ—ତମେ ହିଁ ଉପହାସ କର କପୋଲକଳ୍ପିତ ବୀଭତ୍ସିକା, ଘୃଭତ୍ସତା, କ୍ରୂରତା—ତୁମେ ହିଁ ଖୁସି ହୁଅ,

ଅମୋଦ ପାଅ, ହୃତକଂପନକାରୀ ଉତ୍ସୁକର ଘଟଣାର ଗଳ୍ପମାନ ପଢ଼ି, ତଳେହେଲେ ମୁହଁ ଫେରାଅ ନାହିଁ, ବିମୁଖ ନୁହେଁ ତୁମେ—ଯେତେ ଲୋମହର୍ଷଣକାରୀ ଅଦ୍ଭୁତ କଳ୍ପନାର କାହାଣୀରେ, ପୁଲକରେ ଶିହରିତ ହୁଏ ତୁମର ଦେହ, ସଲସଲେଇ, ଭୁରୁଭୁରେଇ ଉଠିଲେ ତମର ମନ, ତୁମର ଇନ୍ଦ୍ରିୟସବୁ—କିନ୍ତୁ ଜାଣେ ମାତ୍ର ମୁଁ, ଜାଣେ ମୁଁ ପ୍ରକୃତରେ ବିଭୀଷିକା କ'ଣ, ବୀଭତ୍ସତା କ'ଣ । ବିଭୀଷିକା, ବୀଭତ୍ସତା ଜାଣେ ମୁଁ—ପ୍ରାତ୍ୟହିକ ଜୀବନର । ସ୍ୱଭାବେ ମୁଁ ନ୍ୟାୟତଃ ଅଧିକାର ଏ ମୋର, ଜନ୍ମଧାର୍ଯ୍ୟ ଧର୍ମ ଏ ମୋର—ତୁମର ଦେହ, ମନ ଓ ପ୍ରାଣକୁ, ତୁମର ସମଗ୍ର ଚେତନାକୁ - ଥରେଇ ଥରେଇ ଶିହରାଇଦେବା ସେଇ ସବୁ ବର୍ଣ୍ଣନା କରି ତୁମ ଆଗରେ ସେଇ ସବୁ ବିଭୀଷିକା କ'ଣ, ଶୁଣାଇ ଶୁଣାଇ, ଦେଖାଇ ଦେଖାଇ ତମକୁ, ଯେମିତିକି ଜାଣିପାରିବ ତମେ, ହୃଦୟଙ୍ଗମ କରିପାରିବ ତମେ - କେଉଁଠି ଚଳୁଛ ଜୀବନ ଧରି ରହିଛ ତମେ—ପୁଣି ଆଚ୍ଛା ଚଳୁଛ ବା କେମିତି ଜୀବନଟା କଟୁଛି ତୁମର କେମିତି ?

ଅତି ଜଘନ୍ୟ, ଅତି କଦର୍ଯ୍ୟ, ଅତି ପଙ୍କିଳ ଜୀବନ ଆମର, ଘୃଣ୍ୟ ଆବିଳତା ମଧ୍ୟରେ ଜୀବନ ବିତୁଛି ଆମର—ନାଁ, କେହି, କେହି କେବେ ଅସ୍ୱୀକାର କରି-ପାରିବ ନାହିଁ ।

ଭଲପାଏ ମୁଁ, ଭଲପାଏ ମନୁଷ୍ୟ ଜାତିକୁ, ମନୁଷ୍ୟକୁ—ଆତଙ୍କରେ ସଙ୍କୁଚିତ ହୋଇ ଉଠେ ମୁଁ, ଥରି ଉଠେ ସମୁଦାୟ ହୃଦୟ ମୋର—ତଳେ ମାତ୍ର ଦୁଃଖ, ଅଣୁମାତ୍ର କଷ୍ଟ କି ଯନ୍ତ୍ରଣା ଦେବାରେ କାହା ପ୍ରତି—ଅଜ୍ଞାନତା ମଧ୍ୟରେ ଦୁଃଖର କାରଣ ହୋଇ ଉଠିବା, କାହା ପ୍ରତି—ଏଥିଯୋଗୁଁ ହିଁ ଭଲପାଏ ବୋଲି ମନୁଷ୍ୟ ଜାତିକୁ—ସଙ୍କୁଚିତ ହୁଏ ବୋଲି ଯନ୍ତ୍ରଣା ଦେବାକୁ, ଦେଖେ ମୁଁ ବୁଝେ ମୁଁ, ସ୍ୱଭାବପ୍ରବଣ ହେବା ଉଚିତ ନୁହେଁ ଆମର—ଉଚିତ ନୁହେଁ ପୁଣି ସୁଗମ୍ଭୀର ସତ୍ୟ ଯାହା, ଉପେକ୍ଷାପାଦୀ ଦୁଃଖଦାୟକ ସତ୍ୟଯାହା (ଜାକଜମକମୟ) ଝଲମଲ ଅର୍ଥହୀନ ଶବର ଆଡ଼ମ୍ବରରେ—ଆଟୋପରେ ସୁଦୃଶ୍ୟ, ସୁଶ୍ରାବ୍ୟ, ମିଥ୍ୟାର ମୋହମୟ ରମଣୀୟତାରେ ଗୋପନ କରି ରଖିବା ତାହା—! ନିକଟରେ, ଅତି ନିକଟରେ ଘନିଷ୍ଠ ଭାବରେ, ଅଙ୍ଗାଙ୍ଗୀ ଭାବରେ ସମପ୍ରାଣରେ ଛୁଡ଼ା ହେବାକୁ ହେବ ଆମ ଜୀବନର ସହିତ, ଛୁଡ଼ା ହେବାକୁ ହେବ ଘନସୂତ୍ରବଦ୍ଧ ହୋଇ । ଆମର ହୃଦୟରେ, ମନରେ, ଆମର ପ୍ରାଣର ପ୍ରତ୍ୟେକ ରନ୍ଧ୍ରରେ ନିହିତ ଯେଉଁ ସୁମଙ୍ଗଳ ଆଶା, ଆକାଙ୍କ୍ଷା, ଅଭିଳାଷ, ଯେଉଁ ମହତ୍ତ୍ୱ ମହନୀୟତା ମାନବିକତା, ଯେଉଁ ଅପାର ପ୍ରୀତି-ମମତା ମନୁଷ୍ୟ ଜାତିପ୍ରତି—ଅକାଡ଼ି ଦେବାକୁ, ଅକାଡ଼ି ଦେବାକୁ ଅକାତରରେ ଜୀବନଗର୍ଭରେ—ଜୀବନରେ ।

ବିଶେଷଭାବରେ କ୍ଷୁବ୍ଧ ହୋଇ ଉଠୁଥିଲି ମୁଁ, ଘୋର ଅପମାନରେ ଲଜ୍ଜାରେ, କ୍ରୋଧରେ ମୂହ୍ୟମାନ ହୋଇଯାଉଥିଲି ମୁଁ । ନାସ୍ତିକାତି ପ୍ରତି

ଯେଉଁ ଦୃଷ୍ଟିଭଙ୍ଗୀ, ଯେଉଁ ମନୋଭାବ ଥିଲା ଗୃହୀତ, ପ୍ରଚଳିତ ସେହି ଦୃଷ୍ଟି-ଭଙ୍ଗୀରେ : ମୋର ଅଧ୍ୟୟନ, ଅନୁଶୀଳନ ଶିଖାଇଥିଲା, ଦର୍ଶାଇଥିଲା ମତେ, ନାରୀଠୁଁ ବଳି ସୁନ୍ଦରର ଅର୍ଥବହ ନାହିଁ କିଛି । ନାହିଁ କିଛି ଆଉ ଜୀବନରେ— !! ଏହି ଧାରଣା, ଏହି ମତ ମୋର ଦୃଢ଼ୀଭୂତ ହୋଇଥିଲା ମୋର ଆଈ ମା ଆଉ ତା'ର କୁମାରୀ ମେଘ ଓ ସୁବର୍ଣ୍ଣା ଭସିଳସା ସେନ ଗଳ୍ପଗୁଡ଼ିକରେ । ଅଭାଗୀ ସେହି ଧୋବଣୀ ନାଟାଲିଆ ଆଉ ସେହି ଶତ ଶତ, ସହସ୍ର ସହସ୍ର, ସୁମଧୁର ସ୍ମୃତିରେ ହସରେ, ଗୃହିଣୀରେ, ସେହି ଯେଉଁଥିରୁ, ସେହି ଯାହା ଯୋଗୁଁ ମୁଁ ପୁଣି ଦେଖିଥିଲି ନାରୀକୁ, ଜନନୀକୁ ଜୀବନର, ଧାତ୍ରୀ, ପାଳୟିତ୍ରୀକୁ ସୃଷ୍ଟିର ଜୀବନର ଆନନ୍ଦରୁ ପ୍ରୀତିରୁ ବଞ୍ଚିତ,—ଆନନ୍ଦ ଓ ପ୍ରୀତିର ଅଭାବରେ ଉତ୍ପୀଡ଼ିତ ଅସ୍ତିତ୍ୱକୁ ସେ କି ମାଧୁର୍ଯ୍ୟମୟ କି କମନୀୟ କରୁ ନ ଥିଲା ପ୍ରତ୍ୟେକ ଦୁର୍ଦ୍ଦିନରେ ଦୁର୍ଦ୍ଦଶାରେ ବି ।

ପ୍ରତ୍ୟେକ ରଚନା ତୁର୍ଗେନେଭଙ୍କର ମୁଖ୍ୟତଃ ଥିଲା ନାରୀର ଗୌରବ-ଗାନରେ—ମହିମାମଣ୍ଡିତ କୀର୍ତ୍ତିର ପ୍ରଶସ୍ତିରେ—ଆଉ ମୋର 'ଗୁଣୀ' ମାର୍ଗଟ ଥିଲେ ମୋ ପାଇଁ—ନାରୀଜାତି ସମ୍ପର୍କରେ ଯାହା ଜାଣିପାରିଥିଲି ମୁଁ, ଦେଖିଥିଲି ମୁଁ ସେହିସବୁ ସୁମଙ୍ଗଳମୟ ମହାନ ଭାବାନୁଭବ କିମ୍ବା କର୍ମର ଅବତାର । ସେହି ସବୁ ଜ୍ଞାନର ଉପଲବ୍ଧିର ଆକର । ସେହି ଯେଉଁସବୁ ଅକ୍ଷୁଣ୍ଣ ପ୍ରାଚୁର୍ଯ୍ୟମୟ ଅବଦାନ ଥିଲା ହାଇନ୍ ଆଉ ତୁର୍ଗେନେଭଙ୍କର ।

ମେଳା ପଡ଼ିଆରୁ ଫେରୁଥିଲାବେଳେ ଘରକୁ, ଅନେକ ସମୟରେ ମୁଁ ଛିଡ଼ା ହୋଇ ରହୁଥାଏ ପାହାଡ଼ଟି ଉପରେ, ଝେମଲିନ୍ ଗ୍ରାମ ପାଖରେ, ଦେଖୁଥାଏ ମୁଗ୍ଧ ଆଖିରେ ଭଲଗା ଭିତରେ ବୁଡ଼ିଯାଉଥାଏ ସୂର୍ଯ୍ୟ, ଶିଖାୟିତ ଜ୍ୱଳନ୍ତ ସ୍ରୋତ-ସ୍ୱିନୀ ପ୍ରବାହିତ ହୁଏ ଆକାଶରେ, ମୋର ପ୍ରିୟତମ ପାର୍ଥିବ ଜନ୍ମମାଟି ସେତେବେଳେ ରୂପ ଧରେ ବିଚିତ୍ର ବର୍ଣ୍ଣ ବିଭାସରେ, ନୀଳରକ୍ତିମରାଗରେ ମୟୂରପକ୍ଷୀର ସେଇଭଳି କେତେ ମୁହୂର୍ତ୍ତରେ କେତେ କଥା ଅନୁଭବ କରୁଥାଏ ମୁଁ, କେବେ କେବେ ଏ ଧରଣୀ ଏ ପୃଥିବୀ ବିଶାଳକାୟ ଅପରାଧୀ କୂଳରୁ ନୌକା ଯେପରି ଅଥବା ଗ୍ରହଶୃଙ୍ଖଳ ଟଣା [illegible] ଓଟର ହେଉଛି କେଉଁ କେତେକ ଅଦୃଶ୍ୟ ରଜ୍ଜୁରେ, ବନ୍ଧନ[illegible] !

ମୋର ସମସ୍ତ ଚିନ୍ତା, ସମସ୍ତ କଳ୍ପନା କିନ୍ତୁ, ଅଧିକରୁ ଅଧିକ ଥରେ ଅନେକ ସମୟରେ ହିଁ ପ୍ରଖର ବେଗରେ ଧାଇଁଥାଏ ପୃଥିବୀର ବ୍ୟାପ୍ତିର ଦିଗକୁ ତାର ଅତିକ୍ରମଣୀୟ ବ୍ୟାପ୍ତିର ସୀମା ପ୍ରତି, ସେହି ନଗରୀଗୁଡ଼ିକ ସମ୍ବନ୍ଧରେ ପଢ଼ିଥାଏ ମୁଁ ବହିପତ୍ରରେ—ପୁଣି ସେହି ଅପରିଚିତ ବୈଦେଶିକ ବିଚିତ୍ର ଦେଶଗୁଡ଼ିକ ଆଡ଼କୁ ଯେଉଁଥିରେ ଲୋକେ ଜୀବନ ନିର୍ବାହ କରୁଥାନ୍ତି, ଚଳପ୍ରଚଳ ହେଉଥାନ୍ତି ଭିନ୍ନ ରୀତିରେ ଭିନ୍ନ ରୁଚିରେ—ବିଦେଶୀ ଲେଖକମାନଙ୍କର ପୁସ୍ତକଗୁଡ଼ିକରେ ଚର୍ଚ୍ଚିତ

ହୋଇଥାଏ ଜୀବନ ଅଧିକ ସ୍ୱଚ୍ଛ, ଅଧିକ ପରିଚ୍ଛନ୍ନ, ଅଧିକ ସ୍ମରଣୀୟ ତୁଳନାତ୍ମକ ଦୃଷ୍ଟିରୁ ଅଳ୍ପ ଜଞ୍ଜାଳମୟ, ଅଳ୍ପ ଉତ୍ପୀଡ଼ିତ, ସେହି ଜୀବନଠାରୁ—ସେହି ଯେଉଁ ଜୀବନ ଧୀର ମନ୍ଥର ଭାବରେ, ବୈଚିତ୍ର୍ୟହୀନ-ଚରିତ୍ର ଅପରିବର୍ତ୍ତିତ ଏକ ଭଙ୍ଗୀରେ ଏକ ଛାଞ୍ଚରେ ଗଢ଼ୁଥିଲା ଅବିରାମ ମୋର ଚତୁର୍ଦ୍ଦିଗରେ, ଏହା ହିଁ ଆଣିଇ ଦିଏ ମୋ'ର ହୃଦୟ ଓ ବିଷାଦକୁ· ଶାନ୍ତ କରି ପ୍ରାଣକୁ ମୋର, ସଞ୍ଚାର କରୁଥାଏ ସେଥିରେ ଆଶା'ର ଉଦ୍‌ବୋଧନ ସମ୍ଭବ, ସମ୍ଭବ ଉନ୍ନତ ଜୀବନର ସୃଷ୍ଟି, ଉନ୍ନତ ଜୀବନର ସୃଷ୍ଟି ଉନ୍ନତ ଜୀବନର ପ୍ରକାଶ ।

ଅଥଚ ମୁଁ ପ୍ରାୟ ସବୁବେଳେ ଭାବି ଭାବି କଳ୍ପନା କରୁଥାଏ, ଯଦି କେବେହେଲେ ଯଦି ଭେଟିବ କଷ୍ଟସହ ସରଳ, ନିଷ୍କପଟ, ଜ୍ଞାନବନ୍ତ ଲୋକ ସଙ୍ଗରେ କେଉଁଠି, ସେହି ଯିଏ ଦେଖାଇବ ମତେ ପଥ କଢ଼ାଇ, ଦେଖାଇବ ମତେ, ପ୍ରଶସ୍ତ ଏକ ଉଦାର ଉଜ୍ଜ୍ୱଳ ରାଜପଥକୁ ।

ଯେବେ ବସିଥାଏ ମୁଁ ଗୋଟିଏ ବେଞ୍ଚ ଉପରେ କ୍ରେମଲିନ ପ୍ରାଚୀର ପାଖରେ, ମାମୁଁ ସ୍ଲାକଭ ଆସି ବସିପଡ଼ନ୍ତି ସେଠି, ଦେଖି ନ ଥାଏ କେତେବେଳେ ଆସି ପହଞ୍ଚିଯାଇଥାନ୍ତି ସେ— ଅନେଇ ଦେଇ ସଙ୍ଗେ ସଙ୍ଗେ ଚିହ୍ନି ପାରି ନ ଥିଲି ତାଙ୍କୁ— ଯଦିଓ ଆମେ ଦୁହେଁ ରହୁଥିଲୁ ସମାନରେ ସେହି ଏକ ସହରରେ, ରହୁଥିଲୁ ବର୍ଷ ବର୍ଷ କାଳ, କ୍ୱଚିତ ଆମର ଭେଟ ହେଉଥିଲା ପରସ୍ପର ସହିତ, ତା' ପୁଣି ଅତି ଅଳ୍ପ ସମୟ ପାଇଁ, ଆକସ୍ମିକ ଭାବରେ—

"କରେ ରୁ 'ହଣ୍ଟୋ' ମାରି ଉଠିଲୁଣି, ଡ଼ାଳପତ୍ର ମେଲିଲୁଣି," ମତେ ଟିକିଏ ହଲେଇ ଠେଲିଦେଇ ଅଟଳ ଭାବରେ କହିଲେ ସେ—ଆଉ ଆମେ ଦୁହେଁ ଗପିବାକୁ ଆରମ୍ଭ କରିଦେଲୁ ବନ୍ଧୁ ବାନ୍ଧବ ଭାବରେ ନୁହେଁ, ବହୁଦିନରୁ ପରସ୍ପରର ଜଣାଶୁଣା, ଗରିବ ଲୋକ ଦୁଇଟି ଭାବରେ ।

ଆଉ ମା କହୁଥାଏ ମତେ, ମାମୁଁ ସ୍ଲାକୋଭ କେଉଁଦିନୁ ଉଡ଼ାଇଦେଇ ସାରିଥିଲେ ତାଙ୍କର ଧନସମ୍ପତ୍ତି— ଯାହା ବା ଥିଲା ସମ୍ବଳ ଗୋଟିଏ ବନ୍ଦୀ ନିବାସ-ସ୍ଥଳୀ (କଲୋନୀର) ଓ୍ୱାର୍ଡ଼ର ବା ପ୍ରହରୀ ସହକାରୀ ହୋଇଥିଲେ କିଛିଦିନ, କିନ୍ତୁ ତାଙ୍କର ଏ ନୈକରୀର ଇତି ହୋଇଥିଲା କରୁଣ ଭାବରେ, ଥରେ ପ୍ରହରୀଟି ପଡ଼ିଲା ଦେହ ଦୁଃଖରେ—ମାମୁଁ ସ୍ଲାକୋଭ ଯେତେବେଳେ ତାଙ୍କ ଫ୍ଲାଟଘରେ ରହଣୀ ଘରେ ବନ୍ଦୀମାନଙ୍କୁ ଦେଖି ସେମାନଙ୍କ ପାଇଁ ଚଳାଇଲେ ଖିଆପିଆ, ନାଚତାମସା, ମଜ୍ଜା ମଜଲିସ । ଏ କଥା ଫିଟି ବାହାରିଲା ଯେତେବେଳେ ପଦାକୁ, ଚାକିରିରୁ ବରଖାସ୍ତ ହେଲେ ସେ—ବନ୍ଦୀଗୁଡ଼ାକୁ ରାତିରେ ମୁକୁଳେଇ ଦେଇଥିବା ଅଭିଯୋଗରେ ତାଙ୍କ ବିରୁଦ୍ଧରେ ମକଦ୍ଦମା ଜାରି ହେଲା, ବିଚାର ଚାଲିଲା । ପ୍ରକୃତରେ କିନ୍ତୁ ବନ୍ଦୀଗୁଡ଼ିକ ଭିତରୁ ଜଣେହେଲେ କେହି ପଳାଇ ଯାଇ ନ ଥାଏ, ଜଣେ

କେବଳ ଗୋଟାଏ ପାତ୍ରର ଗଳା ଟିପିଦେବାକୁ ଚେଷ୍ଟା କରୁଥିଲ—ଏଇ ଅପରାଧରେ ଧରା ପଡ଼ିଯାଇଥାଏ, ତଦନ୍ତଟା ଟାଣିଓଟାଣି ହୋଇ ଚାଲିଲା ବହୁତ-ଦିନ । କିନ୍ତୁ ତାର ଫଳାଫଳ ଯାହା ହେଲା, କେବେ କୋର୍ଟରେ ବନ୍ଧୁରାଜସ୍ଥରେ ପହଞ୍ଚିଲା ନାହିଁ ! ବନ୍ଦୀଗୁଡ଼ିକ ଅଉ ବନ୍ଦୀଶାଳାର ପ୍ରହରୀଯାକ କୌଣସି ମତେ ଉପାୟ କରି ରକ୍ଷା କରିଦେଲେ ଦୟାଶୀଳ, ହୃଦୟବାନ ମାମୁଁଙ୍କୁ ମୋର—ଲଜ୍ଜା ଓ ଅପମାନରୁ—ମୋ ସଙ୍ଗରେ ଭେଟ ହୋଇଗଲା ବେଳକୁ ସେ ଆଉ କାମ କରୁନଥାନ୍ତି କେଉଁଠି, ପୋଷୁଥାଏ, ତାଙ୍କୁ ଚଳଉଥାଏ ତାଙ୍କ ପୁଅ—ଥାଏ ସେ ରୁକାଲ୍ଫିନ-କଭ୍ ଗୀର୍ଜାର ଗାୟକ ଦଳରେ—ବିଖ୍ୟାତ ଗାୟକ ଦଳଟି ଥିଲା ସେଇଟି—ସେଥିରେ ଥାଇ ଗୀତ ଗାଉଥାଏ ସେ—ତାଙ୍କ ପୁଅ ଘେନ ମାମୁଁ ଯାହାସବୁ କହିଲେ—ବଡ଼ ଅଦ୍ଭୁତ ।—

"ଏବେ ସେଇ ଗୁରୁଗମ୍ଭୀର ଧାର୍ମିକ ହୃଦୟଶୀଳ ହୋଇଗଲେଣି—ସ୍ୱର ଗୁରୁତ୍ୱମୟ ତାର ସ୍ୱରଟା—ଏକା, ଏକା ଗାଉଛି—'ଏକୁଟିଆ ଗାୟକ' । ରାତି ଯାଇ ଆଜି ନବୁଚ ଯତ କେତେ ବେଳେ ମୋର ହୃଦୟର ହୋଇଯାଉଛି ଚୁଲି ଲଗାଇବାରେ (ସାମୋଭର) ଜଳାଇବାରେ, ପୋଷାକପତ୍ରରେ ବ୍ରୁସ ମାରି ଝାଡ଼ି ଝୁଡ଼ି ରଖିବା ପାଇଁ, ଖାସା ସିଧା ସରଳ ରୁଟବନ୍ତ ପିନ୍ଧିବ, ବଡ଼ ପରିଷ୍କାର ପରିଚ୍ଛନ୍ନ ଚାଲିଚଳଣ ।"

ମାମୁଁ ନିଜେ ଦଣୁଥାନ୍ତି କିମିତି ବୁଢ଼ା ହୋଇ ଯାଉଥାନ୍ତି, ମଇଳା, ମେଲଛା କୋତରା, ତେବେ କିମିତି ସତେଜ ବଳୁଆ ବି ତାଙ୍କର ମହଳିଆ ଧରଣରେ କୃଷ୍ଣ-କୁଞ୍ଚିଆ କେଶଗୁଡ଼ିକ ପତଳା ହୋଇ ଆସିଥାଏ, ତାହାର ପଡ଼ିଥାଏ କାନ ଦୁଇଟା—ଲଲ ଲଲ ଶିରାର ଜାଲ ଘୋଡ଼େଇ ପକାଇଥାଏ ତାଙ୍କର ଡୋଳା ଦୁଇଟିକୁ, ଡୋଳା ପାଖର ଧଳା ଅଂଶକୁ ଆଉ ସିଲ୍କ ଭଳି ଭଳି ଶୁଭ୍ରସ୍ୱଚ୍ଛ ଗଣ୍ଡ ଦୁଇଟିର ଚମକୁ—ଅଟକିଲିଆ, ନଇଁଜିଆ ଢଙ୍ଗରେ କଥା କହୁଥାନ୍ତି ସେ—ସ୍ୱରଭଙ୍ଗୀରୁ ମନେ ହେଉଥାଏ ପାଟି ଭିତରେ କିଛି ଗାକିଛନ୍ତି, ରଖିଥାନ୍ତି ଯେମିତି, ସେଥିଲାଗି କଥା ତାଙ୍କର ବାଧା ପାଉଥାଏ, ଲଗ୍ ଲଗ ଗିଳି ହୋଇଯାଉଥାଏ, ଅଥଚ ତାଙ୍କର-ଦାନ୍ତଗୁଡ଼ିକ ଥାଏ ବେଶ୍ ଶକ୍ତ, ଦମ୍ଭ ।

ମତେ ଭାରି ଖୁସି ଲାଗିଲା ସୁଯୋଗଟାଏ ମିଳି ଯାଇଥାଏ ବୋଲି ଏମିତି ଗୋଟିଏ ଲୋକ ସଙ୍ଗେ ପଦେ ଅଧେ କଥା ହେବାକୁ । ଯିଏ ଜାଣିଥାନ୍ତି ଶୋକ-ହୃଦୟ ହେବାକୁ ଆଉ ମନମଉଜିଆ ହେବା କଥା, ଯିଏ ଜୀବନରେ ଦେଖିଥାନ୍ତି ଅନୁଭବ କରିଥାନ୍ତି ଅନେକ କିଛି, ଆଉ ଯାହାଙ୍କୁ ମାଲୁମ ଅନେକ ବିଷୟ—ଭଲରୂପେ ମନେଥାଏ ମୋର ତାଙ୍କର ବେପରୁଆ, ଅଟ୍ଟାଳିଆ ହାସ୍ୟରସର ଗୀତସବୁ ଆଉ ତାଙ୍କ ସମ୍ପର୍କରେ ଅଜା ମୋର କହୁଥାନ୍ତି କଥା ।

"ସେ ଥିଲେ ଗୀତ ବୋଲିବାରେ ଡେଭିଡ୍ ଆଉ କାମ କରିବାରେ ଅବସେଲୋମ ।"

ସେଇ ତରୁଣୀଟିରେ ଝୁଲି ଝୁଲି ଅଳସବିଳାସରେ, ହାଉଆ ଖାଇ ଆନନ୍ଦରେ, ଆମ ପାଖ ଦେଇ ଆସି ଚାଲିଯାଉଥାନ୍ତି ଆମକୁ ସବୁ ଟପି ନଗରୀର ଉଚ୍ଚ ଆଭିଜାତ ଶ୍ରେଣୀର ମାନଜାସ୍ତୁ, ମାନଜାସ୍ତୁମାନେ, ସରକାରୀ ଉଚ୍ଚ ଅଫିସର, ମନ-ଫୁଲାଣି, ରୂପଦେଖାଣି, କୋମଳାଙ୍ଗୀ, ଫୁଲାକୁ ଫୁଲା ନରମ ତୁଳା ଭଳି ତରୁଣୀ କେତେ—ମାମୁଁ ମୋର ପିନ୍ଧିଥାନ୍ତି ଲେସ୍‌କୋଟ୍ କଳାକୋଟର କୋଟଟିଏ, ଷ୍ଟିଙ୍ଗ ଚେପା ହୋଇ ଯାଇଥିବା ଟୋପିଟିଏ, କଳଙ୍କିଆ ଲୁହାଭଳି ଦିଶୁଥିବା ବୁଟ୍ ଯୋଡ଼ା ହଲେ, ବେଞ୍ଚରେ ସଙ୍କୁଚିତ ହୋଇ ବସିଥାନ୍ତି ସେ, ମିଶି ଯାଉଥାନ୍ତି ଯେମିତି ସେ ସେଥିରେ—ସ୍ପଷ୍ଟ ଜାଣି ହେଉଥାଏ ନିଜର ରୂପ ଭେକ ଦେଖି ଲାଜ ମାଡ଼ୁଥାଏ ତାଙ୍କୁ । ଚାଲିଲୁ ଆମେ ଯୋଚଆନାସ୍କି ନାଲୀ ଉପରକୁ, ଖଟିଗୁଡ଼ିକ ଭିତରୁ ଗୋଟିଏ, ସେଠି ବସିଲୁ ଯାଇ ଝରକା ପାଖ ଗୋଟିଏ ଟେବୁଲରେ, ଝରକାରେ ଦିଶୁଥାଏ ବାହାର, ବାହାର ବଜାରଟି ।

"ମନେପଡ଼ୁଛି—କେମିତି ଗାଉଥିଲ ତମେ :—

ଭିକାରୀଟିଏ ଝୁଲାଇଦେଲା କନାକବାଟଟି ଶୁଖିବା ପାଇଁ

ଆଉ ଗୋଟିଏ ଆସିଲା କାହୁଁ ଚୋରାଇ ନେଇ ଚାଲିଲା କାହିଁ !"

ଆଉ ଥରେ ଆବୃତ୍ତି କଲି ଯେତେବେଳେ ପଦଟିକୁ, ପ୍ରଥମ କରି ଧରି ପାରିଲି ତାର ମର୍ମଟିକ— ବ୍ୟଙ୍ଗ ! ବୁଝି ପାରିଲି । ଉପରକୁ ଏତେ ଆମୋଦୀ, ଏତେ ମଉଜିଆ ଲାଗୁଥିଲେ ଯେଉଁ ମାମୁଁ ମୋର, ପ୍ରକୃତ ସେଥିରେ ତାରବାଡ଼ଘେରା ନିବୃତ ଆଉ ତିକ୍ତ ମନର ।

ଚକିତ ସ୍ୱରରେ ଉତ୍ତର ଦେଲେ ସେ, ଗିଲାସରେ ଭୋଦକା ଢାଳୁ ଢାଳୁ ସେ ନିଜେ ।

"ଆରେ ହଁ, ଆଃ—ହଁ, ଜୀବନଟା କଟାଇ ଦେଇଚି ମୋର ଜୀବନ ଭଳି ଜୀବନ, ହସକୌତୁକ, ମଜ୍ଜକ ମଜଲିସ ଯାହା ପାଇବାରେ ପାଇଛି ମୁଁ— ଯଥେଷ୍ଟ ନୁହେଁ କିନ୍ତୁ—ସେଇଟି ମୋର ଗୀତ ନୁହେଁ—ତାକୁ ଲେଖିଥିଲି ଇସ୍କୁଲର (ସେମିନାରୀ) ଶିକ୍ଷକଙ୍କ ଭିତରୁ ଜଣେ କବି—କ'ଣ ତାର ନାଆଁଟି ? ନା, ମନେ ନାହିଁ ଆଉ ମନେ ନାହିଁ ପାସୋର ଗଲାଣି । ଆମେ ଦୁହେଁ ସାଙ୍ଗ ଥିଲୁ ! ସେ ଆଉ ମୁଁ । ସାଙ୍ଗ ପରି ସାଙ୍ଗ—କିନ୍ତୁ ସେ, ପିଇ ପିଇ ମରିଗଲା, ମରିବା ଲାଗି ହିଁ ସେ ପିଇ ଲାଗିଲା । ପଦାରେ ବରଫ ହେମାଳରେ ଜମାଟ ବାନ୍ଧିଲା ଓଃ, କେତେ ଲୋକଙ୍କୁ ଦେଖିଛି ମୁଁ, ପିଇ ପିଇ

ଖତମ୍ କରି ଦେଇଛନ୍ତି ନିଜ ନିଜକୁ, ମରିବା ପାଇଁ, ଖତମ୍ ହେବା ଲାଗି ହିଁ ପିଇଛନ୍ତି ! ଯେ ପିଇଛନ୍ତି, ଅତୀତର ଗଣନା—ତାକୁ ଗଣିହେବ କ'ଣ ? କାହିଁକି ? ତୁ ପିଉ କରେ ? ପିଉ ? ନାଁ, ନାଁ, କେବେ ପିଇନୁ ନାହିଁଟି । ହୁଁ, ଉଃ, ଟିକେ, ଶୁଣ୍ ଟିକେ, ତୋ' ଅଜାଙ୍କ ସଙ୍ଗେ ଦେଖାହୁଏ ମୋର ଅନେକ ସମୟରେ, ବଡ଼ ଶୋକାତୁର ବୁଢ଼ାଟିଏ ? ଲାଗୁଛି, ମୁଣ୍ଡଫୁଣ୍ଡ ଗଲଣି ତାଙ୍କର, ଦୁର୍ବଳ ହୋଇଗଲଣି ମଗଜଟା ତାଙ୍କର ।"

ଗୋଟିଏ ଢଉଁଟି ଗିଲାସ ପିଇ ସାଂଙ୍ଗଲ୍ ପରେ ଷ୍ଟେଡକା, ଖାଡ଼ା ହୋଇ ବସିଲେ ସେ—ସଜାଡ଼ି ସଳଖ କରିନେଲେ କାନ୍ଧକୁ, ଦିଶିଲେ ହଠାତ୍ ଯୌବନ ଫେରି ଆସିଲା ଯେମିତି ତାଙ୍କର—ଆରମ୍ଭ କରିଦେଲେ ଗପିବାକୁ ଅଧିକ ଟିକେ ଉତ୍ତେଜନାରେ ।

ପଚାରିଲେ ତାଙ୍କୁ, ବନ୍ଦୀମାନଙ୍କ ସମ୍ବନ୍ଧ ତାଙ୍କର କାରବାର ବିଷୟରେ ।

"ଓଃ, ତା କାନରେ ବାଜୁଛି ଶୁଣୁଛି କଥା ।" ଜାଣିବାକୁ ଚାହିଁଲେ ସେ । ସ୍ୱରଟିକୁ ଟିକେ ନୀଚେଇ ଦେଇ ଚାରିଆଡ଼କୁ ଆଖିବୁଲାଇ ଆଣି କହିଲେ ସେ ।

"ଅରେ ବଂଧା ହେଲେ, ଅପରାଧୀ ହେଲେ ସେମାନେ, କଣ ହେଲା ଯେ ? ମୁଁ ବିଚାରକ ନୁହେଁ, ବିଚାରକ ନୁହେଁ ସେମାନଙ୍କର, ଦେଖିଲି, ଆମର ଭଳି ତ ସେମାନେ, ଆଉ ଦଶ କି ପାଞ୍ଚ ଜଣଙ୍କ ସହ ସମାନ, ତେଣୁ କହିଲି ସେମାନଙ୍କୁ ଆସରେ ଭାଇ ଆସ ସାଙ୍ଗ ସୁଙ୍ଗା ହୋଇ ବନ୍ଧୁ ଭାବେ ଚାଲିବା ଆସ, ହସ କୌତୁକ ମଉଜ ମଜଲିସରେ ମାତିବା ଟିକେ—ଏଇ ଯେମିତି ଗୀତଟିରେ କୁହା ହୋଇଛି—

ଭାଗ୍ୟ ପଟ୍ଟେ ହେଉରେ ଯାହା, ହେବାରେ ଖୁସି ମଉଜ ଆସ
ସରିବା ଯାଏ ଯାହା ଆମ, ସରିବା ଯାଏ ରହୁଛି ଆମ
ମୂର୍ଖ ସିଏ, ଅବୋଧ ସିଏ, ନୁଆଁଏ ମଥା ଯେ ଦୁଃଖ ପାଶେ
ଜୀବନ ସିନା ଖୁସିର ଖେଳ, ହସକୌତୁକର ପାଏରେ ରାଜ ମୋହନ ମେଳା
ଆସରେ ଆସ ବିତାଇ ଦେବା, ଖୁସିଲାଗି ବଂଚିବା ଏଇ ଯେ ସତ, ଏଇଯେ ସତ,

ହସିଦେଇ ଚାହିଁଲେ ସେ, ଚାହିଁଲେ ସେ ବାହାରକୁ ଝରକା ବାଟେ—ଅନ୍ଧାର ହୋଇ ଆସୁଥାଏ, ନାଲୀ ପାଖ ଗଳିଟାରେ—ନାଲି କରେ କରେ ତଳେ ଦୋକାନଗୁଡାକ, ମୁହଁଲୁଚି ହୋଇ ଆସୁଥାଏ—ମାଛିଅନ୍ଧାର ପରେ ପରେ ।

"ସତରେ, ଅବଶ୍ୟ ସତ, ଭାରି ଖୁସି ହୋଇଥିଲେ ସେମାନେ ବନ୍ଦୀଶାଳାରେ କଣ ବା ଥିଲା, ମାନ୍ଦା, ଜନାଡ ମାନ୍ଦା—ଜମ୍ପ୍ରାଣ" ମୁଛକୁ ଅଇଁ

ଆଉଁସି କହି ଚାଲିଲେ ସେ, ମାମୁଁ "ଜେଣ୍ଡ ନାଆଁ ଡକା, ଉପସ୍ଥାନଟା ନଆ ଦିବା ସାଙ୍ଗେ ସାଙ୍ଗେ, ଠିକ ମରେ ପରେ ସେମାନେ ଆସି ହାଜର ହୋଇ ଯାଉଥିଲେ ମୋ ପାଖରେ, ଆସୁଥିଲେ ମୋତେ ଭେଟିବା ପାଇଁ, ତା'ପରେ ଖିଆପିଆ, କେତେପ୍ରକାର ଖାନା : ଖେଦକା, କେତେବେଳେ ସେସବୁ ମୋର, ଦେଉଥିଲି ମୁଁ, କେତେବେଳେ ସେମାନଙ୍କର, ଯୋଗାଡ଼ କରୁଥିଲେ ସେମାନେ । ଜନନୀ ଜନ୍ମଭୂମି ଆକାଶରେ ଭରତଥା ସାଜ, ଭରତଥା ପିଠିରେ ମସଗୁଲ ହୋଇ ଏକଦମ ! ଗୀତ ଆଉ ନାଚ ଭଲ ଲାଗେ ମତେ, କେଇଜଣ ଚମତ୍କାର ଗାଇଲାବାଲା ନାଚିଲାବାଲା ଥିଲେ ତାଙ୍କ ଭିତରେ ବଢ଼ିଆ, ଖୁବ ବଢ଼ିଆ, ଚମତ୍କାର ସତେ ! କିଏ ହେଲେ କାହିଁକି ବିଶ୍ୱାସ କରନ୍ତା, କହିଲେ କ'ଣ କରିବୁ ଆରେ, ସେମାନଙ୍କର ବେଢ଼, ଶିଙ୍କୁଳି ଲାଗିଥିବ ନାଚିବୁ କେମିତି, ନାଁ ପାରିବୁ ନାହିଁ, ଜେଣ୍ଡ ତାଙ୍କୁ ଅନୁମତିଟା ଦେଇଥାଏ, କାଢ଼ିପକାଇବାକୁ ସେତେବେଳେ—ଏଇଟାଇ ସତ, ବୁଝିଲୁ ଏଇଟାଇ । ସେମାନେ ନିଜେ ନିଜେ କରିପାରୁଥାନ୍ତି ତାହା; କାହାର ଲୋଡ଼ା ହେଉ ନ ଥାନ୍ତି ସେଥିପାଇଁ—କହ୍ନାର ବିଦ୍ୟା, କଳାଚରୁର ବୁଦ୍ଧିଆ ଲୋକଗୁଡ଼ାକ ଚାଲାକ ହଁ ! କିନ୍ତୁ ମିଛ ଗୁଚ୍ଛା ଅଜବ କଥା, ଯାର ମାନେ ନାହିଁ କିଛୁ, ବୁଝିଲୁ—ମୋର ସେମାନଙ୍କୁ ଫିଟାଇ ଦେବାଟା, ମୁକୁଳେଇ ଦେବାଟା, ସହରକୁ ଯାଇ ସୈର କରିବା ପାଇଁ ସେମାନେ ! ହେବ, କେହି କେହି ଜଣେ ପ୍ରମାଣ କରି ନାହାନ୍ତି, ଅଜଯାଏ ଏଇଟା ।"

ଚୁପ ହୋଇଗଲେ ସେ ! ବସି ରହିଲେ ଏକ ଲୟରେ ଅନେଇ ଗଳିଟାକୁ ଯେଉଁଠି ପୁରୁଣା ଜନପଥ ସବୁ କାରବାର—ଦୋକାନ ଘରଗୁଡ଼ାକ ବନ୍ଦ କରିଦେବାକୁ ଆରମ୍ଭ କରିଦେଇଥିଲେ, ସେମାନଙ୍କ ଦୋକାନ ଘରଗୁଡାକୁ—ଧଡ଼ଧଡ଼ ଘଡ଼୍ ଘାଡ଼୍ କଳଣି ପକାଇ, କେଁ କାଁ ଶବ୍ଦରେ ତାଲା ବନ୍ଦ କରି—ଆଉ ଦୁମ୍ ଦାମ କରି ପଟା ଖସେଇ, ଦୋକାନ ପଟାଗୁଡ଼ିକୁ ତା'ପରେ, ସେକ ଢଳଖୁସିଆ ମନ, ଉଛୁଳିଆ ଆଖିମିଟିକାରେ କହି ଲାଗିଲେ ସେ ।

"ସତ କହିବାକୁ ଗଲେ, କହିବାଟା ଦରକାର ହୁଏ ଯଦି, ପ୍ରକୃତରେ ଦିନେ ତାଙ୍କ ଭିତରୁ ଜଣେ ଯାଇଥିଲା ରାତିରେ ବାହାରକୁ, କିନ୍ତୁ ତାକୁ ଦଣ୍ଡ ମିଳି ନଥିଲା ଶିଙ୍କୁଳିରେ ବଂଧା ହୋଇ ରହିବା ପାଇଁ—ଏଣୁ ବେଢ଼ି ପଡ଼ି ନ ଥିଲା ତା'ଠି—ଏମିତି ଗୋଟା ସ୍ଥାନୀୟ ସ୍କୁଲଟାଏ ନହିଁ ଜନଭ ଗୋରଡ଼ର ? ରକ୍ଷିତାଟିଏ ଥାଏ ତା'ର, ରଖିଥାଏ ସେ ମାଇକିନିଆଟିକୁ ପେଣ୍ଟ୍ରେକ୍ ନଇକୂଳରେ, ଗୀର୍ଜାର ପାଦ୍ରୀ ସଙ୍ଗରେ କୌତୁକଟା ରଙ୍ଗରହସ୍ୟଟା, ସେଇଟା ଥିଲା ଗୋଟାଏ ଅସ୍ୱାଭାବିକ ଘଟଣା—ଏମିତି କିଛୁ ଷଡ଼ଯନ୍ତ୍ର କରିବା କାମ ନୁହେଁ—ସେ ଅପରାଧୀ ଆସାମୀଟା ପାଦ୍ରୀଟିକୁ ଖବର ଦେପାଖଟାଏ ଦୋଲି—ଘଟଣା ଘଟିଲା ଗୋଟିଏ ଶୀତଦିନର ରାତିରେ—ଶୀତଦିନର ଝଡ଼ବତାସ ରାତିରେ—ସମସ୍ତେ ଶିଖିଥାନ୍ତି

ଉପର ଗରମ କୋଟ—କଏ କମିଛ ବାରଆନ୍ତା ବା ପାଦ୍ରି କଏ ବେପାରୀ କଏ ?"

ଚମକପ୍ରଦ ଲାଗିଲା କଥାଟା ମତେ, ସେ ବି ହସି ହସି କହିଲେ :

"ଏଣୁ, ବୁଝିଲୁ ସେ ବି ସେ ଆସାମୀଟାପୁ ବାର ପାରଲା ନାହିଁ ।"

ହଠାତ୍, ଅଦ୍ଭୁତ ସାବଲୀଳତାରେ, ସହଜ ଗତିଶୀଳତାରେ ମାମୁଁଙ୍କର ମତିଗତି, ମନୋଭାବଟା ବଦଳିଗଲା—ପାଲଟିଗଲା କ୍ରୋଧରେ—ଠେଲି ଘଞ୍ଚାଇ ଦେଲେ ସେ ଖାଇବା ଥାଳିଆଟିକୁ ବଙ୍କେଇ ଅଣ୍ଟିଲା କରିନେଲେ ମୁହଁଟାକୁ ବିମୁଖରେ, ଟପୁଟପୁ କହିଗଲେ ସିଗାରେଟ୍ ଖଣ୍ଡେ ଲଗାଉ ଲଗାଉ :

"ପ୍ରତ୍ୟେକ ସେମାନେ ଚୋରି କରନ୍ତି, ଡକାୟତି କରନ୍ତି ପରସ୍ପରଠୁଁ, ତାପରେ ଧରନ୍ତି, ପଚାରନ୍ତି ସେମାନେ ପରସ୍ପରକୁ—ପଠାନ୍ତି ବନ୍ଦୀଶାଳାକୁ, ଜେଲ ଖାନାକୁ, ନଇଲେ ବା କଠିନ ଶ୍ରମ କରିବା ପାଇଁ ସାଇବେରିଆକୁ ! ମତେ ମତେ କଲୁ ସେଥିକି ଟାଣିଲା ସେବା ଟାଣୁଛୁ ? ଥୁଃ, ଥୁଃ, ତାଙ୍କ ଉପରେ ଥୁଃ, ମୋ ନିଜର ଆତ୍ମା ଅଛି, ମନ ଅଛି ବିବେକ ଅଛି—ଦେଖାରଖା କରିବା ପାଇଁ ସେସବୁକୁ ଅଛି ।"

ଆଖି ଆଗରେ ମୋର ଭାସି ଉଠିଲା ବାଲବାଳୁଆ ରୂପଟି, ମୂର୍ତ୍ତିଟି କୋଇଲା ଭୁସ୍ଗାଲର । ସେ ମଧ୍ୟ ଭଲ ପାଉଥିଲା ହେବାକୁ ଥୁଃ, ଥୁଃ ତାଙ୍କ ଉପରେ ଆଉ ତା' ନାଆଟି ବି ଥିଲା ସ୍ବାକଭ ।

"କ'ଣ ସବୁ ଭାବୁଛ ରେ ?" ଥରେକନ ପଚାରିଲେ ମାମୁଁ ।

"ସେଇ ଅପରାଧୀ ଆସାମୀଗୁଡ଼ିକଙ୍କ ପାଇଁ ତମ ମନରେ କ'ଣ ଦୁଃଖ ହେଉଥିଲା ଖୁବ୍ !"

"ତାଙ୍କ ପାଇଁ ଦୁଃଖ କରିବ, ମନରେ କଷ୍ଟ କରିବା ଥିଲା ସହଜ, ଅତି ସହଜ, ଏତେ ବଢ଼ିଆ ଲୋକଗୁଡ଼ାକ—ହଁ, କେଡ଼େ ଚମତ୍କାର ସବୁ ! ବେଳେବେଳେ ତାଙ୍କ ଆଡ଼କୁ ଅନେଇ ରହି ଭାବୁଥିଲି, ତୁମ ଘୋଡାଗୁଡ଼ାକରେ ରଙ୍ଗ ଲଗାଇବା ପାଇଁ କାଳି ଦେବା ପାଇଁ ଯୋଗ୍ୟ ନୁହଁ ମୁଁ—ଆଉ, ହେଉ, ଏଠି ତୁମର ରକ୍ଷକ ତୁମର ପ୍ରହରୀ, କଂଗୁଆଳି ପ୍ରଗଳ୍ଭମ୍ବର, ଚଟାପଟ୍ ଦକ୍ଷ, ଯୋଗ୍ୟ ସଇତାନଗୁଡ଼ାକ—ଧୂର୍ତ୍ତ ଆଉ ଗୁଲକ ସବୁ—କୋଳଙ୍ଗିଆଳିଆ !"

ସୁରୁ ଆଉ ସ୍ନାତକଥା, ମୃଦୁ ମଧୁର, ଉଲ୍ଲାସମୟ ଭାବରେ ଉତ୍ତେଜିତ କରି ଦେଇଥାଏ ସେତେବେଳକୁ, କହିଲାବେଳକୁ ଏତକ ଝରକା କାନ୍ଥ ଉପରେ କହୁଣି ଦ'ଟାକୁ ଭରା ଦେଇ, ହଲଦିଆ ହାତରେ ଅଙ୍ଗୁଳି ମଝିରେ ସିଗାରେଟ ଖଣ୍ଡେ ହଲେଇ ହଲେଇ କହିଲା ପାପ୍ର ସଚେତନ ସ୍ବରରେ ।

"ଶୁଣିଆଛୁ ଯଦ, ଶୁଣିଆଛୁ କ କେବେ, ତାଙ୍କ ଭିତରୁ ଜଣେ କହୁଥିଲା, ଗପୁଥିଲା ଯେମିତ, ଏକଆଖିଆ ଜଣାଟିଏ ସେ, ମୂର୍ତ୍ତି ଖୋଲେଇ କାମ କରୁଥିଲା ଧାରୁରେ, ତାହିରେ—ଘଣ୍ଟା ଠିଆର କରୁଥାଏ ବା—ଗିରଫ ହୋଇଥିଲା ଜାଲମୁଦ୍ରା ଜାଲ ନୋଟ ତିଆର କରୁଥିଲା ବୋଲି, ବନ୍ଧୁର ହୋଇଥିଲା ତାର ଖସି ପଳାଇଯିବା ଅପରାଧରେ—ବୁଝିଲୁ ମଶାଲ ଭଳି ଦପ୍‌ଦପ୍ ହୁଉଥିଲା ନିଭୁଥିଲା, ରହି ରହିକା ଗୀତ ଗାଉଥିଲା, ଗାଉଥିଲା ଚଢ଼େଇଟି ପରି, ବୁଢ଼ାଅ ମତେ, କହୁଥିଲା ସେ ବେଳେ-ବେଳେ ମତେ—ମୁ ତା'ଶାଳାରେ ମୁଦ୍ରା ତିଆରି କରିପାରିବ ! ଆଉ ମୁଦ୍ରା ତିଆରି କରି ପାରିବ ନାହିଁ" ମୁଁ ଏଃ ! ହଁ, କହ, ତାଙ୍କୁ ବୁଢ଼ାଅ ମତେ ମ !—କେହି ତାଙ୍କୁ ବୁଝେଇ ସମନେଇ ପାରୁ ନଥିଲେ, ଏମିତକ ମୁଁ ବ ନୁହେଁ, ଆଉ ମୁଁ ତାଙ୍କର ରକ୍ଷକ ତାଙ୍କର ପ୍ରହରୀ ପୁଣି ! ! ତା'ପରେ ଆଉ ଗୋଟିଏ ଥିଲା, ଆଉ ଗୋଟିଏ ନାମଜାଦା ଚୋର ମହୋର'—ମହୋର ଚୋର, ରୂପସୁପ ଧୀର, ଶାନ୍ତ ପ୍ରକୃତିର ଲୋକଟି, ସଫ ପୁରୁଷ ଯାହାକୁ କହନ୍ତି ପରିଷ୍କାର ପରିଚ୍ଛନ୍ନ—ଫୁଲବାବୁ ଭଳି କେତେକାଂଶରେ, କେତେ ଭଦ୍ର ଭାବରେ କଥା କହୁଥାଏ ସେ, କେତେ ନମ୍ରତାରେ କହୁଥାଏ ସେ, ଅନେକ ସମୟରେ ଲୋକେ କାମ କରନ୍ତି, ଖଟନ୍ତି, ଚଳି ପଡ଼ିବାଯାଏ ଆଉ ସେମିତିକା ଇଚ୍ଛା ପିଲ୍ଲ ନାହିଁ, ମୋର ଅରେ ଚେଷ୍ଟା କରିଥିଲି କହୁଥାଏ ସେ, ବୁଝିଲୁ, 'ଖଟିଲି ଯେ ଖଟିଲି ଆଙ୍ଗୁଠି ଟିପଗୁଡ଼ାକ ଘୋରି ହୋଇ ଛୁଡ଼ିଗୁଡ଼ି ଗଲି ଯାଏଁ—କିନ୍ତୁ କୋଉଥି ପାଇଁ କାହିଁକ ?"

କାଣି କଉଡ଼ିଟା ପାଇଁ, କଡ଼ାଏ, ଦୁ'କଡ଼ା ପାଇଁ ଗୋଟାଏ କୁପେକ୍ ପାଇଁ ଭୁକ୍କାଟାରେ ପିଇବ, ପିଅ, ବୁଢ଼ା ଆଙ୍ଗୁଠି ଟିପରେ ଟିପେ ସେଇ ଟିପ ଯେ, ତରଳ ସତ୍ତ୍ୱ ଯାହାକୁ ଲଗାନ୍ତି ମିଳାଇ କଲାବେଳେ—ଖେଳିବ, ଖେଳ ଦୁ'ସ୍କର ବାଜି ଭାଇ ! ! ଆଉ କେଉଁଠି ଗୋଟାଏ ମାଇକିନିଆ ହାତରେ, ନାଆଁକୁ ମାତ୍ର ନଉକୁଣା ଭାବରେ, ଦଶ କହୁ—ଦଶ କହୁ ତମ ନଜର, ତାର ପୀରତି ଲାଗି, ଟିକଏନାକୁ ତାର ଆଦର ସୋହାଗ ଲାଗେ । ଆଉ ତା'ପରେ ପୁଣି ତମେ ଯେଉଁଠି ଥିଲ ସେଠି—ଏଃ ପୂର୍ବପର ଭାଙ୍ଗି ପଡ଼ି ହା ହତାଶ ହୋଇ, ଆଉଟୁ ପାଉଟୁ ହୋଇ ଖେଳରେ । ନାଁ, ବାବୁ—ଏ ଖେଳ ମୋର ନୁହେଁ, ଏ ଖେଳ ଖେଳିବ ନାହିଁ କେବେ—"

କହୁଁ କହୁଁ ମାମୁଁ ସ୍ୱାକଭ ନଇଁପଡ଼ି ଆଉଜିଲେ ଟିକେ ଭର ଦେଇ ଟେବୁଲ ଉପରେ—ବାଳଗୁଡ଼ିକ ତାଙ୍କର ପାଚି ଲାଲ ପଡ଼ିଯାଇଥାଏ ମୂଳରୁ—ଏମିତି ଉତ୍ତେଜିତ ହୋଇ ଉଠିଥିଲେ ସେ ଟାଣିଟୁଣି ହୋଇ ନାଚିବାକୁ ଲାଗିଲା ତାଙ୍କର ଗ୍ରେଟ ଗ୍ରେଟ କାନ୍ଧ ଦୁଇଟି ।

"ସେମାନେ ମୂର୍ଖ ନୁହନ୍ତି ରେ, ବୋକା ନୁହଁନ୍ତି ରେ ଭାଇ ! ଠିକ ଦେଖନ୍ତି ସବୁ, ଠିକ ଦିଗରୁ ପ୍ରତ୍ୟେକ କଥା ଦେଖନ୍ତି,—ଏଃ, ଯାଉ, କରକଲୁ ଯାଉ,

ନରକକୁ ଯାଉ ସବୁ । ଏଇ ଧର ମୋ କଥା, ଉଦାହରଣ କରି କ'ଣ ହୋଇଛି, କଣ ହୋଇ ଆସିଛି ଜୀବନଟା ମୋର ?—ଏମିତିକା ଲଜ୍ଜା ଲାଗୁଛି ମନେ ପକାଇବା ପାଇଁ ସେ କଥା । ଯାହା ଭଲ, ଯାହା ମଙ୍ଗଳର, ତାହା ସବୁ ନେଇଚ, ପାଇଚ ମୁଁ - ଦୂଷ କନ୍ନ ପାଣି ଉଷ୍ମର ପଡ଼ିଲା ଭଳି, ଚପି ଚୁପି ହୋଇ କେବେ କେମିତି, ଅଜସ୍ର ନେଇଛି ପାଇଛି, (ଲୁଚେଇ ଛପେଇ), ବୁଝିଲୁ କି ନା ଗୁପ୍ତରେ ଅଜାଣତରେ ସମ୍ପର୍କ—(ହୁଏତ ଅଯତ୍ ଉପାୟରେ) ଅର୍ଜିଚ ଦୁଃଖ, ଅର୍ଜିଚ କଷଣ, ଦୈନ୍ୟ କରିଚ, ସୁଖେ ଟିକେ, ଆମୋଦ ଟିକେ ! ପାଟି କରୁଥାନ୍ତୁ ବାପା, କହୁଥାନ୍ତୁ ସ୍ୱା' କରନା, ତା' କରନା ! ରଡ଼ି ଛାଡ଼ୁଥାଏ, ଖରଯା ସ୍ୱା' କରନା, ତା' କରନା ! ଆଉ ମୁଁ ଉପମର ସରଯାଉଥାଏ ବେଙ୍କ ଖର୍ଚ୍ଚିବାକୁ, ଚନ୍ଦାଚନ୍ଦା ହେବାକୁ ଟଙ୍କାଟିଏ ପାଇଁ—ଭୁବଲଟିଏ ପାଇଁ । ତେଣୁ ବୁଝିଲୁ ନିସିଗଲା ପରି ପଳାଇଗଲା କେତେବେଳେ ଜୀବନଟା, ଛାଡ଼ିଦେଇ ମୋତେ ଚାଲିଗଲା ଦିନଗୁଡ଼ାକ ଅଜାଣତରେ, ଆଉ ହେଇ ଏବେ ମୁଁ ବୁଢ଼ା, ପାଚିଲା ବୟସରେ ମୋ'ର ପୁଅର କିଙ୍କର ମୁଁ, ନୌକର, ବୋଲକରା ! ଲୁଚେଇ ବା ଲାଭ କ'ଣ ତୋଠୁଁ, ତା ପାଖରେ ଖଟୁଚି ମୁଁ, ତା ସେବାରେ ଲାଗୁଚି ମାଟିରେ ମିଶି ଏକାବେଳକେ, ବନସ୍ଥୀ ହୋଇ ଦାନ୍ତରେ ତରଣ ଧରିରେ ଖାଇ ! ଆଉ ସେ ପାଟି କରୁଚି, ହୁକୁମ ଝାଡ଼ୁଚିରେ ମୋ ଉପରେ, ଅସଲ ଭଦ୍ରଲୋକଟାଏ, ସାଆନ୍ତଟାଏ ପରି । ସେ ଡାକୁଚି ମତେ ବାପା ବୋଲି କହୁ ଶୁଭୁଛି ମୋତେ ବୋଲକରା ଚାକିରିଆ, ଏଇଥିପାଇଁ କ'ଣ ଜନ୍ମ ହୋଇଥିଲି, ଜନ୍ମ କ'ଣ ମୋର ଏଇଥିପାଇଁ ? ସରି ସରି ଯାଉଛି ସବୁ ଶେଷ ନିଃଶ୍ୱାସ ଛାଡ଼ିବା ପାଇଁ । ମୋ ପୁଅର ରହୁଥାନ୍ତୁ ଚାକର ହୋଇ ବୋଲକରା ହୋଇ ? ଏଇଥିପାଇଁ ଏମିତି ହୋଇ ନ ଥାନ୍ତା ଯଦି କେଉଁଥିପାଇଁ ତେବେ କେଉଁଥିପାଇଁ ବଂଚିଥାନ୍ତୁ ବା ଆଉ ଜୀବନଧରି, ରହିଥାନ୍ତୁ କହିଲୁ ? କେତେ ବା ସୁଖ କେତେ ବା ଆନନ୍ଦ ପାଇଲି ମୁଁ ଜୀବନରୁ—ପାଇଲି ଏ ଜୀବନରେ ?''

ଠିକ୍ ମନଯୋଗ ଦେଇ ଶୁଣୁ ନ ଥିଲି ମୁଁ, ଅଡମଡ ହୋଇ ଉତ୍ତର ପାଇବା କଥା ନ ଭାବି କହିଲି ମୁଁ :

''ଜାଣେ ନା ମୁଁ କିମିତି ବଂଚିବାକୁ ହେବ, ଜୀବନ ଧରି ରହିବାକୁ ହେବ ପୁଣି ..''

ଘୁଙ୍ଗୁଡ଼ିଆ ସ୍ୱରଟାଏ ଶୁଭିଲା ତାଙ୍କର

''ହୁଃ !, ଜାଣେ କିଏ ମ ? କାହାକୁ ଜଣେ ଭେଟି ନାହିଁ ଆଜିଯାଏ ଯେ ଜାଣିଥିବ । ଲୋକେ ବଂଚିଚନ୍ତି, ଚାଲିଛନ୍ତି ଜୀବନ ଧରି ଏମିତି ଅଭ୍ୟାସରେ—ଖୋଟାଏ ଅଭ୍ୟାସରେ ।''

ଆଜି ଅରେ ସ୍ୱରରେ ତାଙ୍କର ସୁରୁସୁରେଇ ଫୁଟିପଡ଼ିଲା କ୍ରୋଧ ଅଭିବ'ଥିତ ଆହତ ପ୍ରାଣର ମୂର୍ଚ୍ଛନା ଗୋଟାଏ ।

"ଆଉ ଗୋଟିଏ ଲୋକ ଥିଲା ଓରେଲର, ଦଣ୍ଡ ପାଇଥିଲା ଜନାବାଗ୍ ପାଇଁ । ସେ ଆସିଥାଏ ଭଦ୍ର ସମାଜରୁ, ନାଚୁଥାଏ ଚମତ୍କାର, ବଢ଼ିଆ ନାଚୁଣିଆଟାଏ ସେ । ଲୋକଙ୍କୁ ହସାଉଥାଏ ସେ 'ଖନକା' ଯେଜ ଗୀତଟିଏ ବୋଲି :

ଖନକା ଗ୍ଲେ ଖନକା ଗ୍ଲେ.
କବର ସବୁ ମଶାଣି ସବୁ ଘ୍ରଘ୍ରକା
ମୁହଁଟି ତାର ଶାନ୍ତ ପୁଣି ଅତି ଗମ୍ଭୀର ଖନକା ଆଲେ ଖନକା ଆଲେ ?
ତାହିଁକ ଭୁଲୁ କାହାକୁ ଅବା ଝୁର ଝୁରକା
ଏହାଠୁଁ ବଳି ପାଉନୁ କଲେ ବଢ଼ିଆ ଜାଗା ଖୋଳଖୋଳକା ?

"କିନ୍ତୁ ମୋ ମତରେ କ ଣ ବା କୌତୁକିଆ ହସିଲା ଭଳି ଅଛି ଏ ପଦକରେ ଏ ଗୀତରେ ? ସତ, ଜୀବନ୍ତ ସତ, ଯେତେ ମୋଡ଼ମୋଡ଼ ହୋଇ ଯେତେ ଗଳପ୍ତୁଶ୍ଚି ଯେତେ କେଁ କା କେଁ ସ୍ୱ ହୁଅ ଯେତେ ଚିତ୍କାର କର—ମୁକ୍ତ ଅଛୁ କେଉଁଠି ! ମଶାଣିରୁ ଖସି ପଳେଇବ କିଏ କେଉଁଠି ! କବରଖାନାରୁ ? ଆଉ ମୁଁ ଯେତେବେଳେ ଯାଇ ପହଂଚିବ ସେଠି, କଡ଼ାକର ଭଲ ବିଗ୍ଭରିବ, ମୁଁ ଅପରାଧୀ ଅସାମୀଟା ଥିଲି କି ? ମୁଁ ଜଗୁଆଳି ବା ଓ୍ୟାର୍ଡ଼ର ଥିଲି କି ?

କହୁ କହୁ କ୍ଲାନ୍ତ ହୋଇ ପଡ଼ିଲେ ସେ, ଢକ ଢକ ପିଇଗଲେ ଭୋଦକା, ଖାଲି ଗିଲାସଟା ମୂର୍ଦ୍ଧରେ, ଚଢ଼େଇଟି ପରି ଟେରେଇ ଗ୍ଭହିଁଲେ ଗୋଟିଏ ଆଖିରେ ପତା ଟେକ, ଟାଣି ଲଗଲେ ସିଗାରେଟ୍‌କୁ ନିଶ୍ଚଳ ନୀରବତାରେ ନିଶ ହଲକରେ ତାଙ୍କର କୁଣ୍ଡଳୀ କାଟି ଲଗିଲା ଧୂଆଁ !

ସେହି ପଥର ମହାରଣା ପିଓନ, ମାମୁଁ ଯ୍ୱାକଭଙ୍କ ସହିତ ଯାହାର ମେଳ ସାମଞ୍ଜସ୍ୟ ନ ଥିଲା ଆଦୌ, ସେହି ପିଓନକୁ ଭଲ ଲଗୁଥିଲା କହି ହେବାକୁ :

"ଯେତେ ଯାହା ଚେଷ୍ଟାକରୁ ଲୋକ, ଯେତେ ପାରିବ ଆଶା କରୁ ସେ, ଯିବ ସେ, ଗ୍ଭଲିବ କବରକୁ କଫିନକୁ ନିଶ୍ଚୟ । କେତେ ଯେ କେତେ ପ୍ରବାଦ ପ୍ରବଚନ ଲୋକକଥା ପ୍ରକାଶ କରୁ ନ ଥିଲା ଏଇ ଖବରଟିକୁ ।

ଇଚ୍ଛା ହେଉ ନ ଥାଏ ମୋର ମାମୁଁଙ୍କୁ ଆଉ କିଛି ପଗ୍ଭରିବାକୁ, ତାଙ୍କ ପ୍ରତି ଦୟା ଆସୁଥାଏ ମନରେ, ଅବସାଦ ଲଗୁଥାଏ, ଅବଶ ଲଗୁଥାଏ ତାଙ୍କ ପାଖରେ, ତାଙ୍କ ଗହଣରେ ବସି, ମନେ ନ ପକାଇ ରହି ପାରିଲି ନାହିଁ, ତାଙ୍କର ସେହି ହସ-ଖୁସିର ସେହି ଉଲ୍ଲାସ-ମୁଖର ଗୀତଗୁଡ଼ିକ, ଗିଟାରର ଝଂକୃତ, ବିଷାଦର

ବେଦନାର ଘନ ଅନ୍ଧକାର ଭିତରେ, ଆନନ୍ଦର ଚମକପ୍ରଦ ଜ୍ୟୋତିର୍ମୟ ବନ୍ୟାସ ଆଣିଥିଲା ଯେଉଁ ଗୀତ ଗୀତାଣୀ ସବୁ ତା ଭୁଲି ପାରି ନ ଥିଲେ ମଉଜିଆ କୌତୁକିଆ ତ୍ସିଗାନୋକଙ୍କ, ନାଁ ଭୁଲି ପାରିନଥିଲେ ତାଙ୍କୁ, ଅପଲକ ଆଖିରେ ଅନେଇ ରହି ଏକ ଲୟରେ ଦେଖୁଥିଲେ ଝଲମଲିତ ଲେସ୍କୋଭୋସ୍ତ ହୋଇ ଯାଇଥିବା ମାମୁଁ ସ୍ମାକୋଭଙ୍କର ରୂପକୁ, ହୃଦୟରେ ବିହ୍ୱଳ ହୋଇ ଭାବି ନ ପାରି ସମ୍ଭାଳି ହୋଇ ପାରିଲେ ନାହିଁ, ସେ କ'ଣ ମନେ ରଖିଥିଲେ ଭଲି ତସିଗାନୋକଙ୍କ କେମିତି ବାଛି ଦେଇଥିଲେ "ସ୍ତୃଣ" କାଠରେ !

କିନ୍ତୁ ଉଠାଇଲେ ନାହିଁ ସେ କଥା, ପଚାରିଲେ ନାହିଁ ତାଙ୍କୁ ସେ କଥା ।

ମୁହଁ ବୁଲାଇ ଚାହିଁଲି ତାଙ୍କୁ—ଉପତ୍ୟକାଟିକୁ, ଗଛଟିକୁ ଅଗଷ୍ଟ ମାସ କୁହୁଡ଼ିରେ ଗୋଟି ପୁଞ୍ଜା ମୁହଁ ଯାଏ ତାଙ୍କି ହୋଇ ଯାଇଥାଏ ସେଇଠି । ଗର୍ଭରୁ ତାର, ଉର୍ଦ୍ଧ୍ୱକୁ ଉଠି ଆସୁଥାଏ ସେଓ ଆଉ ଚେରଭୁଜର ସୁମଧୁର ମହକ, ସଙ୍କୀର୍ଣ୍ଣ ଗଳିରାସ୍ତାରେ ସହରକୁ ପଡ଼ିଥାଏ ଯେଉଁଠି ରହି ରହି ଝଲସି ଯାଉଥାଏ ଅଳ୍ପ ଠାଏ ଠାଏ, ଘୁରଅନ୍ତେ ମୋର ଯେତେ ଯାହା ଥାଏ କେଉଁଠି ବା ସେଥିରୁ ହୃଦୟସ୍ପର୍ଶୀ ଭାବରେ ଅପରିଚିତ ଥାଏ ମୋର—ବା କାରୁଣ୍ୟର ଗୀତ ତାରେ ଅଜ୍ଞାତ ଥାଏ ମୋର—ହେଇ ଭାସି ଆସିଲା ଷ୍ଟିମରଟିର ହୁଇସିଲ୍‌ଟା—ସିଟି ଶବ୍ଦଟା, ରବିନସ୍କକୁ ଯିବା ଲାଗି ବନ୍ଧା ଷ୍ଟିମରଟିର—ହେଇ ପୁଣି ସେଠୁ ଦୂରରୁ ଫାର୍ମ ଅଭିମୁଖେ ବାହାରିବ ଯେଉଁ ଷ୍ଟିମରଟି ତାର……।"

"ଆ, ଆରେ, ହଁ—ଯିବାକୁ ହେବ ଯେ ମୋତେ ! ଯାଏ ମୁଁ," କହିଲେ ମାମୁଁ ଥିଉକନ ।

ଖଟିର ଦୁଆର ମୁହଁରେ ହାତକୁ ହାତ ମିଳାଇଲେ ସେ—ହାତଟିକୁ ଚିପି ଧରି ଜୋରରେ କହିଲେ ରଙ୍ଗରସିଆ ସ୍ୱରରେ ନିଜର !

"ଶୁଖିଲା, ନୀରସିଆ, କଣ୍ଟେଇଜିଆ ହୋଇ ରହ, ନାଁ ଦେଖ୍ ଲାଗୁଚି କେମିତି ନୀରସିଆ ହୋଇ, ଉଦାସିଆ ହୋଇ ବୁଲୁଚୁ ତୁ । ଖୁସି ରହ, ତାଜା ରହ—ମନକୁ ଖୁସିରଖ ସବୁବେଳେ—ପିଲାଟାଏ ତୁ, କଣ ବା ବୟସ ହୋଇଛି ତୋର ! ମନେ-ରଖିଆ, ଗୋଟିଏ ବୋଲି କଥା, ଯାହାହେଉ, ଯେଉଁ ବାଟଧରି ପଛକେ ଭାଗ୍ୟ, ହସଖୁସିରେ ଆନନ୍ଦରେ ମାତି ରହିବା ଆମେ—ଅଚ୍ଛା, ବିଦାୟ—କେମିତି ମୋ ବାଟଟା ରସ୍‌ପେନସ୍କି ଗୀର୍ଜାଟା ଟପି, ହେଉ, ବିଦାୟ !"

ହସଖୁସିଆ, ମନମଉଜିଆ ମାମୁଁଟି ମୋର ଚାଲିଗଲେ—ଯାହା କହିଗଲେ ସେଥିରେ—ମୋତେ ଆହୁରି ବେଶି ଆଗ ଅପେକ୍ଷା ଚିନ୍ତା ବିଭ୍ରାଟରେ ପକାଇ—ଭାବନାରେ ଘାଣ୍ଟି ଚକଟି ।

ଝଟିଲ ପାହାଡ଼ ଉପରକୁ ସହରଟିର --ଆଗେଇଲି ପଡ଼ିଆ-ବିଲ ଭିତର ଦେଇ. ଉଠିଆସି ସାରାଆଏ ପୂର୍ଣ୍ଣିମାର ଜହ୍ନଟା—ଖଣ୍ଡକୁ ଖଣ୍ଡ ବଉଦ ଓହ୍ଲାପଡ଼ି ଝାପି ଝାପି ବାଟ କାଟି କାଟି ଚାଲିଥା ଏ ଆକାଶରେ—ନିଜ ନିଜର ଗ୍ରାଇବେ ନେମ୍ବାନ ହର; ଚୋବୁଦେଇ ମୋର ଗ୍ରାଇଟିକୁ, ବିଲ, ପଡ଼ିଆ ମାଳରେ ସମୁଦାୟ, ସହରଟିକୁ ଚାରିପାଖ ପରିକ୍ରମା କରି ପହଞ୍ଚିଲି ଯାଇ ଓଟକିସ୍ ସହରଠାରେ ଭଲଗ ନଈ-କୂଳରେ—ଭଲଗା କଢ଼ରେ କେତିକାଲି ଧୂକଧର ଘାସ ଗହଳରେ, କେଜାଣି କେତେବେଳ ଯାଏ ଚହ୍ନିତ ବେଳ ନିଷ୍ଟପ୍ତ, ନିର୍ମେଘନସ୍ତନରେ ଅନେଇ ରହିଲି, ମେ ତପିନୀଟିକୁ, ଅନେଇ ରହିଲି ତୃଣମସ୍ତ ଭୂମିକୁ, ପାନ୍ଥକୁ ନିଷ୍ଟଳ, ନିସ୍ତବ୍ଧ ଧରିତ୍ରୀଟିକୁ ଧୀରେ ଧୀରେ ମାଳକୁ ମାଳ ମେଘଗ୍ରସ୍ତ ଝାପି ଝାପି ଉଠିଲା ସ୍ରୋତ ଧାରରେ ଭଲ୍‌ଗାର—ବେଳକୁ ବେଳ ଅଧିକରୁ ଅଧିକ ଉଜ୍ଜଳ ହୋଇ ଉଠି ପ୍ରାନ୍ତରର ବୃକ୍ଷ ଛୁଇଁ ଛୁଇଁ, ଛୁଇଁଲା ମାଟେ ସତେ ଯେମିତ ତଳୁ ପଖାଳି ପଖାଳି ନିଜ ନିଜର ଯାତ୍ରାପଥରେ ଜଳସ୍ରୋତରେ । ପତ୍ୟେକଟି ବୃକ୍ଷଆଡ଼ର ଘୋର ଅଚ୍ଛନ୍ନ ହୋଇଗଲା ତନ୍ଦ୍ରାରେ, ଶାନ୍ତ ସମାହିତ ହୋଇ ଉଠିଲା—ପ୍ରତ୍ୟେକଟି ଗଢ଼କଲା ଅମଙ୍ଗ ଅମଙ୍ଗ ହୋଇ ଆବଶ୍ୟକତାର ବଳପ୍ରୟୋଗରେ—ପ୍ରୟୋଜନର ଖାଢରରେ ଯେମିତ - ଗଢ଼କଲା ଜୀବନପାଇଁ ଆକୁଳ ଆବେଗରେ ଗଢ଼ଶୀଳତାରେ ଅନୁପ୍ରେରିତ ନ ହୋଇ ।

ପ୍ରବଳଭାବରେ ଇଚ୍ଛା ହେଲା ମୋର, ପ୍ରବଳ ଆଘାତ କରିବାକୁ ପାଦରେ, ମାରନ୍ତ କି ଗୋଇଠାଟାଏ ଏ ଭୂମିକୁ—ଏଦେଶକୁ, ଆଉ ସତେ ନିଜକୁ ମଧ୍ୟ, ପ୍ରତ୍ୟେକଟି ବସ୍ତୁ କି ସଜୀବ କି ଜଡ଼, ମୋ ସମେତ ସମସ୍ତ ଉଲ୍ଲାସରଘୂର୍ଣ୍ଣିରେ ଘୂରିଯାନ୍ତା ଗିରିଘିରି ହୋଇ ଘୂରିଯାନ୍ତା । ଢଗବଢଗ ପାସୋରି ପ୍ରାଣଭୋଲା ଉନ୍ମତ୍ତ ନୃତ୍ୟରେ ଲୋକଙ୍କର ସେଇ—ସେଇ ଯେଉଁମାନେ ପ୍ରଣୟରେ ପ୍ରୀତିରେ ଆଶ୍ଳେଷରେ ଆଉଛି ପରସ୍ପରର ସହିତ ପ୍ରଣୟରେ-ପ୍ରୀତିରେ ନିବିଡ଼ ଜୀବନର ସହିତ । ସେହି ଏ ଜୀବନର ଯାହାର କଳ୍ପନା ଯାହାର ସ୍ୱପ୍ନରେ, ରଚନା ଓ ବିନ୍ୟାସ ଅନ୍ୟ ଜୀବନ ପାଇଁ, ଅତୁଳ ଅଧିକ ଆତୁର ଅଧିକ ସତ, ଅଧିକ ସୁନ୍ଦର ଅଧିକ ସାହସିକ ଭାବିଲି, ଭାବିଲି ମୁଁ, ନିଜକୁ ନିଜେ ଚେତାଇ ଗ୍ରାଏଁ ଗ୍ରାଏଁ ମନକୁ ମନ ଭାବିଲି ମୁଁ —"ଯଦି କିଛୁ ନ କରେ ମୁଁ, ହଜିଯିବ, ସରିଯିବ ମୁଁ ।"

ଅନେକ ସମୟରେ ନିରୁଦ୍ଦେଶ୍ୟ ଭାବରେ ବୁଲୁଥିଲି ମୁଁ ବିଲବନ ପ୍ରାନ୍ତରରେ ଶରତ କାଳର ନିଷ୍ପ୍ରଭ ବନଗୁଡ଼ିକରେ, ସେଇ ଯେତେବେଳେ ଦେଖିପାରୁ ନ ଥିଲି ସୂର୍ଯ୍ୟ, ତାର ସ୍ୱରୂପ ଅନୁଭବ କରିପାରୁନଥିଲି—ଏକାବେଳେ ବିସ୍ମୃତ ହୋଇ ରହିଥିଲି ତ ର ଅସ୍ତିତ୍ୱ ସମ୍ପର୍କରେ । ଭୁଲିଯାଇ ହରାଇଥିଲି ବନଗହନରେ ବାଟ ଘାଟ, ଯଦି ମୁଁ ଖୋଜୁଥିଲି ସଙ୍କୀର୍ଣ୍ଣ ଶାଖା ବାଟଗୁଡ଼ିକ ଉଦ୍‌ବିଗ୍ନ ହୋଇ ପଛକୁ ଫେରାଇ ନେବାଲାଗି ନିଜକୁ, ଖୋଜୁଥିଲି କ୍ଲାନ୍ତ ଭାବରେ ହାନ୍ତରେ,

ଦାନ୍ତଚପି ନିର୍ଭୀକ ଭାବରେ ପଶିଯିବା ପାଇଁ ଅରଣ୍ୟର ମର୍ମ କେନ୍ଦ୍ରରେ ଠିକ୍—ଘନଗହ୍ୱଳ ଗୁଳ୍ମଲତାର ଭିତରେ—ବିପଦଜନକ ଖାଲଖମା ଭିତରେ ବାଟ କାଟି କାଟି ଦୃଢ଼ସଂକଳ୍ପରେ ! ଆଜି ପ୍ରତ୍ୟେକ ଥର ନିଧାର୍ଯ୍ୟ ଭାବରେ, ବାହାର ଆସୁଥିଲି ଅରଣ୍ୟର ଗର୍ଭରୁ, ବାହାର ଆସୁଥିଲି ଠିକ୍ ରାସ୍ତାକୁ, ଠିକ୍ ବାଟକୁ ମୋର !

ଆଜି ଏହା ହିଁ ଥିଲା ମୋର ସିଦ୍ଧାନ୍ତ, ମୋର ସଂକଳ୍ପ ।

ସେହି ବର୍ଷ ଶରତ ଋତୁରେ ସେଠା ଗୁଡ଼ି ମୁଁ ସ୍ଥଲିଲି ଜାଜାନଙ୍କୁ, ଆଶାରଖି, ବନ୍ଧୁଧର ହୃଦୟରେ କେମିତ କିଛୁ ଉପାୟ ପାଇବ, ନିଶ୍ଚୟ ପଡ଼ିବା ପାଇଁ ସେଠାରେ—ପାଇବ ନିଶ୍ଚୟ ।

